| (ପୃଷ୍ଠା) | (ସ୍ତମ୍ଭ) | (ପଙ୍କ୍ତି) | (ଅଶୁଦ୍ଧ) | (ଶୁଦ୍ଧ) |
|---|---|---|---|---|
| ୩୨୮ | ୨ | ୧୨ | ଏଦ୍ଧା | ଏଦ୍ଧାର |
| ୩୨୯ | ୨ | ୧୮ | ଜଗତ୍ | ଜଗଦ୍ |
| ୩୩୦ | ୧ | ୧୮ | ପ୍ରେଯଡେନ୍ସି | ପ୍ରେସିଡେନ୍ସି |
| ,, | ,, | ୨୮ | ଅନୁଷ୍ଠୁତ | ଅନୁଷ୍ଠିତ |
| ,, | ୨ | ୯ | ବକ୍ତତା | ବକ୍ତୃତା |
| ,, | ,, | ୧୯ | ,, | ,, |
| ୩୩୧ | ୧ | ୩ | ୮୬୯ | ୧୮୬୯ |
| ,, | ,, | ୧୨ | Thershold | Threshold |
| ,, | ,, | ୧୫ | ଗନ୍ଥିକା | ଗାନ୍ଥିକା |
| ,, | ,, | ୨୦ | ଓଗଟ୍ୟୁଣ୍ଟୋଲ | ଓରଟ୍ୟୁଣ୍ଟେଲ |
| ,, | ୨ | ୯ | ବକ୍ତତା | ବକ୍ତୃତା |
| ୩୩୨ | ୨ | ୨୪ | ଜନ୍ମ | ଜନ୍ମ |
| ,, | ,, | ୨୭ | Tripss | Tripos |
| ୩୩୩ | (ତଳଧାଡ଼) | | ପ୍ରତକଳ | ପ୍ରତକୂଳ |
| ୩୩୪ | ୨ | ୧୩ | ମହତ୍ଵବାନ | ମହତ୍ଵଦାନ |
| ,, | ,, | ୨୫ | ଅନ୍ଦାଳନ | ଅନ୍ଦୋଳନ |
| ୩୩୫ | ୧ | ୧୭ | ଗୌରହରଫି | ହରଫିଗୌର |
| ,, | ୧ | ୨୧ | କମୁନେଲ୍ସମ୍ | କମୁନେଲ୍ସମର |
| ,, | ୨ | ୩୨ | Sociologie | Sociology |
| ୩୩୬ | ୨ | ୪ | କପୋରସନ୍ | କର୍ପୋରେସନ୍ |
| ୩୩୭ | ୧ | ୫ | ପଠଣି | ପଠାଣି |
| ,, | ,, | ୨୫ | ଜ୍ୟେଷ୍ଟ | ଜୈ୍ୟଷ୍ଠ |
| ,, | ୨ | ୧୨ | ସିମ୍ବକ | ସ୍ୟମ୍ବକ |
| ୩୩୮ | ୧ | ୩ | କର୍ମ | କରମ |
| ,, | ୧ | ୮ | ଜଳ | ଶୀଳ |
| ୩୩୯ | ୧ | ୭ | ଜନ୍ମ | ଜନ୍ମ |
| ,, | ୨ | ୧୩ | ୯୦୧ | ୧୯୦୧ |
| ୩୪୦ | ୧ | ୧୮ | ମଯୂର | ମୟୂର |
| ୩୪୧ | ୨ | ୭ | ଗର୍ଭମେଣ୍ଟଙ୍କ | ଗଭର୍ଣ୍ଣମେଣ୍ଟଙ୍କ |
| ,, | ୨ | ୮ | ପ୍ରସଙ୍କଉଠରେ | ପ୍ରସେଙ୍କଉଠରେ |
| ୩୪୨ | ୧ | ୧୨ | ଦୟୂମଣୀ | ଦୟୂମଣି |
| ୩୪୩ | ୧ | ୨୧ | ଫୋନନ | ଫୁକନ୍ |
| ୩୪୪ | ୧ | ୧୩ | Honores | Honors |
| ,, | ୨ | ୨୦ | ୧୯୨ | ୧୯୨୧ |
| ୩୪୫ | ୧ | ୭ | ବଦ୍ୟାଳୟସୂର | ବଦ୍ୟାଳୟୂର |
| ୩୪୫ | ୨ | ୨୮ | ଚରଷାମୃତ | ଚରଣାମୃତ |
| ୩୪୬ | ୧ | ୨୨ | ମ୍ରୁୟମାଣ | ମ୍ରିୟମାଣ |
| ୩୪୭ | ୧ | ୨୩ | ଯାତାଯୂତ | ଯାତାୟାତ |
| ,, | ୨ | ୧ | ଅମାନୁଷକ | ଅମାନୁଷିକ |
| ,, | ,, | ୧୩ | ସର୍ପଦଂଷ୍ଟ୍ର | ସପଦଂଷ୍ଟ୍ର |
| ୩୪୮ | ୨ | ୧୭ | ଅମୋଦ | ଅନାଦ |
| ୩୪୯ | ୧ | ୯ | ଶଳପାଣି | ଶୂଳପାଣି |
| ,, | ୨ | ୪ | ଅଦ୍ଵୈବବାଦ | ଅଦ୍ଵୈତବାଦ |
| ,, | ,, | ୧୭ | ଜୋତଷ | ଜ୍ୟୋତିଷ |
| ୩୫୩ | ୧ | ୧ | ଅଙ୍ଗନନ୍ଦକାସଙ୍କନ | ଅଙ୍ଗନାନନ୍ଦକାସଙ୍କଳ |
| ୩୫୪ | ୧ | ୧ | ସୁହାଶୁନ୍ୟ | ସୁହାଶୂନ୍ୟ |
| ,, | ,, | ୧୨ | ପ୍ରାଣାୟୂମ | ପ୍ରାଣାୟାମ |
| ,, | ୨ | ୧୫ | ଭ୍ରୁଯୁଗଳ | ଭ୍ରୂଯୁଗଳ |
| ୩୫୫ | ୨ | ୫ | ପ୍ରାଣାୟୂମ | ପ୍ରାଣାୟାମ |
| ,, | ,, | ୯ | ପୁରଣ | ପୂରଣ |
| ୩୫୮ | ୧ | ୨୩ | ରୁପେ | ରୂପେ |
| ,, | ୨ | ୯ | ପାଷାଣ୍ଡ | ପାଷଣ୍ଡ |
| ,, | ୨ | ୨୭ | ବନ୍ଦୁବଲ୍ଲ | କେନ୍ଦୁବଲ୍ଲ |
| ,, | (ତଳଧାଡ଼) | | ଶ୍ଵେଗ | ସ୍ଵେଗ |
| ୩୫୯ | ୨ | ୨୫ | ଗତଗୋବନ୍ଦ | ଗୀତଗୋବନ୍ଦ |
| ୩୬୦ | ୧ | ୨ | ନିଷପ୍ତ | ନିକ୍ଷିପ୍ତ |
| ,, | ,, | ୬ | ମର୍ଚ୍ଛା | ମୂର୍ଚ୍ଛା |
| ,, | ,, | ,, | ମର୍ଚ୍ଛିତା | ମୂର୍ଚ୍ଛିତା |
| ,, | ୨ | ୧୨ | ସ୍ନାନ | ସ୍ଥାନ |
| ୩୬୧ | ୧ | ୨ | ପାଇଥିଲେ | ପାଉଥିଲେ |
| ୩୬୨ | ୧ | ୩ | ଦୁରରେ | ଦୂରରେ |
| ୩୬୫ | ୧ | ୩ | ବସାଙ୍କ | ଦାଶଙ୍କ |
| ,, | ,, | ୧୮ | ପ୍ରତପୋଦାନ | ପ୍ରତିପାଦନ |
| ୩୬୭ | ୨ | ୧୭ | ଫଯାରକ | ଫାସାରକ |
| ୩୬୯ | ୧ | ୩୦ | ଦୁରେ | ଦୂରରେ |
| ୩୭୦ | ୧ | ୧୮ | ତଣ୍ଡୁଲଚୂର୍ଣ୍ଣ | ତଣ୍ଡୁଳଚୂର୍ଣ୍ଣ |
| ୩୭୨ | ,, | ୮ | ମନୁଷ୍ୟର ଅଧିକାର | ଅଧିକାର ମନୁଷ୍ୟର |
| ୩୭୩ | ୨ | ୩୧ | ସ୍ମରଣ | ସ୍ମରଣ |

| (ପୃଷ୍ଠା) | (ସ୍ତମ୍ଭ) | (ପଙ୍କ୍ତି) | (ଅଶୁଦ୍ଧ) | (ଶୁଦ୍ଧ) |
|---|---|---|---|---|
| ୩୭୫ | ୧ | ୧୨ | ଅଦ୍ଧଂକାଂର | ଅଦ୍ଧଂକାର |
| ୩୭୬ | ୧ | ୧୪ | ସତେ | ସତତ |
| ,, | ,, | ୧୬ | ଚତୁଃଷଷ୍ଠି | ଚତୁଃଷଷ୍ଟି |
| ୩୭୭ | ୨ | ୩ | ମୂର୍ଚ୍ଛା | ମୂର୍ଚ୍ଛା |
| ,, | ,, | ୮ | ପାଷ | ପଷ |
| ,, | ,, | ୨୩ | କୁର୍ମାଦ | କୂର୍ମାଦ |
| ,, | ,, | ୨୭ | ରକ୍ଷଣବେକ୍ଷଣ | ରକ୍ଷଣାବେକ୍ଷଣ |
| ୩୭୯ | ୧ | ୧୫ | ପ୍ରବାହୃତ | ପ୍ରବାହିତହେବା |
| ୩୮୧ | ୨ | ୨୫ | ବଶୀଭତ | ବଶୀଭୂତ |
| ୩୮୨ | ୧ | ୯ | କଦ୍ଧବ | କରବ |
| ୩୮୩ | ୧ | ୨୬ | ପ୍ରହରରେ | ପ୍ରହର |
| ୩୮୪ | ୧ | ୨୨ | ନଷ୍ଟ | ନାଶ |
| ୩୮୫ | ୧ | ୨୩ | ଚଶ୍ୱାସ | ନଶ୍ୱାସ |
| ୩୮୬ | ୧ | ୧ | ବାୟୁ | ବାୟୁ |
| ୩୮୯ | ୧ | ୨୮ | ସ୍ୱର୍ଗକାମ | ସ୍ୱର୍ଗକାମୀ |
| ୩୯୦ | ୧ | ୭ | ବ୍ରତସ୍ଥି | ବେଦବସ୍ଥି |
| ,, | ୧ | ୨୧ | ବଭସ୍ତ | ବୀଭତ୍ସ |
| ,, | ୧ | ୨୫ | ଦେବବସ୍ଥୀ | ବେଦବସ୍ଥି |
| ୩୯୧ | ୨ | ୧୬ | ନବଦ୍ୱାସ୍ୱ | ନବଦ୍ୱାର |
| ୩୯୨ | ୧ | ୬ | କାଲ୍ପି | କଲେ |
| ,, | ୨ | ୨୦ | ଶକୁନ | ଶକୁନ୍ତ |
| ,, | ୨ | ୨୦ | କନ୍ୟା | କନ୍ୟାକୁ |
| ,, | ୨ | ୨୨ | ଶକୁନ | ଶକୁନ୍ତ |
| ,, | ୨ | ୩୧ | ସିଞ୍ଚନ | ସେଚନ |
| ୩୯୩ | ୧ | ୩ | ସିଞ୍ଚନ | ସେଚନ |
| ୩୯୩ | ୧ | ୧୯ | କରବା | କରବାର |
| ୩୯୩ | ୨ | ୬ | ଅତଥି ସତ୍କାର | ଅତଥିସତ୍କାର |
| ୩୯୪ | ୧ | ୧୪ | ଭରତକୁ | ଭରତଙ୍କୁ |
| ,, | ୧ | ୧୯ | ମନ୍ଦରେ | ମନ୍ଦରରେ |
| ୩୯୬ | ୧ | ୧୯ | ଉଜ୍ଜ୍ୱଳୁଁ | ଉଜ୍ଜ୍ୱଳରୁ |
| ୩୯୮ | ୧ | ୩୦ | ସଞ୍ଜିବନୀ | ସଞ୍ଜୀବନୀ |
| ୩୯୯ | ୧ | ୧୩ | ରୁକଣୀ | ରୁକ୍ମଣୀ |
| ୪୦୦ | ୧ | ୩୧ | ସ୍ୱମୀଙ୍କୁ | ସ୍ୱାମୀଙ୍କୁ |
| ,, | ୨ | ୨୪ | କର୍କଟ | କର୍କଟକ |
| ୪୦୪ | ୧ | ୨୪ | ପ୍ରହ୍ଲାଦୂତ | ପ୍ରବାହୃତ |
| ୪୦୭ | ୧ | ୫ | ପାଚ | ପାଁଚ |
| ୪୦୭ | ୨ | ୩୨ | ପାସ୍ଯାଏ | ହୁଏ |
| ୪୦୮ | ୨ | ୧ | କାନଫୁକା | କାନଫୁଙ୍କା |
| ୪୧୦ | ୧ | ୨୪ | କାର୍ଯ୍ୟକସ୍ୱ | କାର୍ଯ୍ୟକାସ୍ୱ |
| ୪୧୧ | ୨ | ୨୫ | କର | କଲେ |
| ୪୧୩ | ୨ | ୨୨ | ସମ | କ୍ଷମ |
| ,, | ,, | ୨୪ | ଅନସ୍ଥାଶଙ୍କା | ଅନଷ୍ଟାଶଙ୍କା |
| ୪୧୭ | ୨ | ୮ | ସାମ୍ରାଜ୍ଞୀ | ସମ୍ରାଜ୍ଞୀ |
| ୪୧୯ | ୨ | ୬ | କାୟମନବାକ୍ୟ | କାୟମନୋବାକ୍ୟ |
| ,, | ୨ | ୯ | ଶୁଭ୍ରଶୀଷ | ଶୁଭ୍ରଶିଷ |
| ୪୨୧ | ୨ | ୧୯ | ବଦ୍ୱାଳୟ | ବଦ୍ୟାଳୟ |
| ୪୨୨ | ୧ | ୧୩ | ଉତ୍କର୍ଷତା | ଉତ୍କର୍ଷ |






# ପ୍ରାର୍ଥନା

ଓଁ

ତେଜୋଽସି ତେଜୋମୟି ଧେହି ।
ବୀର୍ଯ୍ୟମସି ବୀର୍ଯ୍ୟଂ ମୟି ଧେହି ।
ବଲମସି ବଲଂ ମୟି ଧେହି ।
ଓଜୋଽସ୍ୟୋଜୋ ମୟି ଧେହି ।
ମନ୍ୟୁରସି ମନ୍ୟୁଂ ମୟି ଧେହି ।
ସହୋଽସି ସହୋମୟି ଧେହି । ( ଯଜୁ—୧୯।୮ )

ହେ ପରମାତ୍ମନ୍ ! ତୁମେ ତେଜସ୍ୱୀ ଅଛ; ମୋ ହୃଦୟରେ ତେଜ ସ୍ଥାପନ କର । ତୁମେ ବୀର୍ଯ୍ୟବାନ୍ **ଅଛ, ମୋ** ହୃଦୟରେ ବୀର୍ଯ୍ୟ ସ୍ଥାପନ କର । ତୁମେ ବଳବାନ୍ ଅଛ, ମୋ ହୃଦୟରେ ବଳ ସ୍ଥାପନ କର । ତୁମେ ସାମର୍ଥ୍ୟବାନ୍ ଅଛ, ମୋ ହୃଦୟରେ ସାମର୍ଥ୍ୟ ସ୍ଥାପନ କର । ତୁମେ ଉତ୍ସାହମୟ ଅଛ, ମୋ ହୃଦୟରେ ଉତ୍ସାହ ସ୍ଥାପନ କର । ତୁମେ ସହନ ଶକ୍ତି ଯୁକ୍ତ ଅଛ, ମୋ ହୃଦୟରେ ସହନଶକ୍ତି ସ୍ଥାପନ କର ।



## ବ୍ରହ୍ମସ୍ତୁତି ।

ପାଦୌ ମହୀମୟଂ ସ୍ୱକୃତୈବ ଯସ୍ୟ,
ଚତୁର୍ବିଧୋ ଯତ୍ର ହି ଭୂତସର୍ଗଃ ।
ସର୍ବଂ ମହାପରୁଷ ଅସ୍ୱତନ୍ତ୍ର,
ପ୍ରସୀଦତାଂ ବ୍ରହ୍ମ ମହାବିଭୂତଃ । ୧ ।

ଚତୁର୍ବିଧ ଭୂତସୃଷ୍ଟିବିକଶିତ ଏହି ମହୀମଣ୍ଡଳ ଯାହାଙ୍କର ପାଦୋଦ୍ଭୂତ, ଯେ ବୈଦିକବାନ ଦର ବୋଧ ହୋଇ ମଧ୍ୟ ଅସ୍ୱତନ୍ତ୍ର ଓ ସ୍ୱାଧୀନ, ସେହି ମହତୀ ଐଶ୍ୱର୍ଯ୍ୟପୂର୍ଣ୍ଣ ଅପ୍ରତ୍ୟକ୍ଷସ୍ୱରୂପ ପରବ୍ରହ୍ମ ଅମ୍ଭମାନଙ୍କ ପ୍ରତି ପ୍ରସନ୍ନ ହେଉନ୍ତୁ । ୧ ।

ଅନ୍ତସ୍ଥ ଯଦେତ ଉଦାରବୀର୍ଯ୍ୟଂ
ସିଧନ୍ତି ଜୀବନ୍ତ୍ୟବ ବର୍ଦ୍ଧମାନାଃ

**ଓଁ ଶ୍ରୀ ଭଗବତେ ବାସୁଦେବାୟ ନମଃ ।**

ଲୋକା ଯତୋଽଥାଖିଳ ଲୋକପାଳାଃ
ପ୍ରସୀଦତାଂ ନଃ ସ ମହାବିଭୂତିଃ । ୨ ।

ଯେଉଁ ଉଦାରଶକ୍ତି ମହାପୁରୁଷଙ୍କର ତେଜଃ ସ୍ୱରୂପ ଅନ୍ତଃରୁ ଭୂରାଦି ସପ୍ତଲୋକ ଓ ଲୋକପାଳ ସମୂହ ଜନ୍ମଲାଭ କରିଅଛି, ଓ ଜୀବନଧାରଣ କରି ବର୍ଦ୍ଧିତ ହେଉଅଛି, ସେହି ମହତୀ ଐଶ୍ୱର୍ଯ୍ୟ ପୂର୍ଣ୍ଣ ଅପ୍ରମେୟ ସ୍ୱରୂପ ପରମବ୍ରହ୍ମ ଆମ୍ଭମାନଙ୍କର ମଙ୍ଗଳ ବିଧାନ କରନ୍ତୁ । ୨ ।

ସୋମଂ ମନୋ ଯସ୍ୟ ସମାମନନ୍ତି,
ଦିବୌକସାଂ ଯୋ ବଳମନ୍ନ ଆୟୁଃ ।
ଈଶୋ ନଗାନାଂ ପ୍ରଜନଃ ପ୍ରଜାନାଂ,
ପ୍ରସୀଦତାଂ ନଃ ସ ମହାବିଭୂତିଃ । ୩ ।

ଯେ ସୋମରସ ଦେବତାମାନଙ୍କର ବଳ, ଅନ୍ନ ଓ ଆୟୁଃ ସ୍ୱରୂପ, ଯାହା ବୃକ୍ଷ ସକଳକୁ ଉତ୍ପନ୍ନ କରିଥାଏ, ଯାହା ଜାତ ପ୍ରାଣୀମାନଙ୍କୁ ପ୍ରକର୍ଷରୂପେ ବର୍ଦ୍ଧିତ କରିଥାଏ, ଯାହାର ମନ ସେହି ରସସ୍ୱରୂପ ସୋମରସର ଆମନନରେ ତତ୍ପର, ମହତୀ ଐଶ୍ୱର୍ଯ୍ୟ ପୂର୍ଣ୍ଣ, ସେହି ଅପ୍ରମେୟ ସ୍ୱରୂପ ପରମବ୍ରହ୍ମ ଆମ୍ଭମାନଙ୍କର ମଙ୍ଗଳ ବିଧାନ କରନ୍ତୁ । ୩ ।

ଅଗ୍ନି ମୁଖଂ ଯସ୍ୟ ତୁ ଜାତ ବେଦାଃ,
ଜାତଃ କ୍ରିୟାକାଣ୍ଡ ନିମିତ୍ତଜନ୍ମା ।
ଅନ୍ତଃ ସମୁଦ୍ରେ ନୁପଚନ୍ ସ୍ୱଧାତୂନ୍,
ପ୍ରସୀଦତାଂ ନଃ ସ ମହାବିଭୂତିଃ । ୪ ।

କ୍ରିୟାକାଣ୍ଡ ପ୍ରତିପାଦ୍ୟ କର୍ମହେତୁ ଉତ୍ପନ୍ନ ଜାତ ବେଦା ( ଜାତ ପ୍ରଜ୍ଞ ) ଅଗ୍ନି ଯାହାର ମୁଖ ସ୍ୱରୂପ, ଯେ ଉଦର ମଧ୍ୟରେ ଅବସ୍ଥିତ ରହି ସମୁଦ୍ରରେ ବାଡ଼ବରୂପ ପରି ସ୍ୱଧାତୁ ଓ ଉଦକାଦି ପରିପାକ କରନ୍ତି—ସେହି ମହାଐଶ୍ୱର୍ଯ୍ୟଶାଳୀ ପରମବ୍ରହ୍ମ ଆମ୍ଭମାନଙ୍କ ପ୍ରତି ପ୍ରସନ୍ନ ହେଉନ୍ତୁ । ୪ ।

ଯଚ୍ଚକ୍ଷୁ ରାସୀତ୍ ତରଣିର୍ଦେବଯାନଂ,
ତ୍ରୟୀମୟୋ ବ୍ରହ୍ମଣ ଏଷ ଧିଷ୍ଣ୍ୟମ୍ ।
ଦ୍ୱାରଞ୍ଚ ମୁକ୍ତେ ରମୃତଞ୍ଚ ମୃତ୍ୟୁଃ,
ପ୍ରସୀଦତାଂ ନଃ ସ ମହାବିଭୂତିଃ । ୫ ।

ସେହି ସୂର୍ଯ୍ୟ ଯାହାର ଚକ୍ଷୁଃ ସ୍ୱରୂପ, ଯେ ଅର୍ଚ୍ଚିରାଦି ମାର୍ଗଦେବତା, ଯେ ତ୍ରୟୀ ବିଦ୍ୟାରୂପା, ଯେ ପରମବ୍ରହ୍ମର ଉପାସନାସ୍ଥାନ, ଯେ ଦେବଯାନତ୍ୱ ହେତୁ ମୁକ୍ତିର ଦ୍ୱାର ସ୍ୱରୂପ, ପୁଣ୍ୟଲୋକତ୍ୱ ହେତୁ ଅମୃତ ସ୍ୱରୂପ ଏବଂ କାଳରୂପତ୍ୱ ହେତୁ ମୃତ୍ୟୁ ସ୍ୱରୂପ, ସେହି ମହାନ୍ ଐଶ୍ୱର୍ଯ୍ୟଶାଳୀ ପରମବ୍ରହ୍ମ ଆମ୍ଭମାନଙ୍କର ମଙ୍ଗଳ ବିଧାନ କରନ୍ତୁ । ୫ ।

ପ୍ରାଣାଦଭୂଦ୍ୟସ୍ୟ ଚରାଚରାଣାଂ,
ପ୍ରାଣଃ ସହୋବଳମୋଜଶ୍ଚ ବାୟୁଃ ।
ଅନ୍ୱାସ୍ମ ସମ୍ରାଜମିବାନୁଗଂ ବୟଂ,
ପ୍ରସୀଦତାଂ ନଃ ସ ମହାବିଭୂତିଃ । ୬ ।

ଯେ ପ୍ରାଣ ସମସ୍ତ ଚରାଚର ସହିତ ଅବିଧର୍ମବାନ୍ ଅର୍ଥାତ୍ ଯାହା ସମସ୍ତ ବିଶ୍ୱର ସହିତ ସମସ୍ତଙ୍କର ଆଦିରେ ଉତ୍ପନ୍ନ ହୋଇଥିଲା, ବୁଦ୍ଧ୍ୟାଦ୍ୟଧିଷ୍ଠିତ ଅନ୍ୟେମାନେ ଯେଉଁ ପ୍ରାଣକୁ ଭୃତ୍ୟ ଯେପରି ସମ୍ରାଟଙ୍କର ଅନୁବର୍ତ୍ତନ କରେ, ତଦ୍ରୂପ ଅନୁଗମନ କରୁଁ—ସେହି ପ୍ରାଣ ଯେଉଁ ମହାପ୍ରାଣରୁ ଉତ୍ପନ୍ନ ହୋଇଅଛି ସେହି ମହା ଐଶ୍ୱର୍ଯ୍ୟଶାଳୀ ପରମବ୍ରହ୍ମ ଆମ୍ଭମାନଙ୍କର ମଙ୍ଗଳ ବିଧାନ କରନ୍ତୁ । ୬ ।



[illegible] ।

# ଧର୍ମ

ଧ, ଧାତୁରୁ ଧର୍ମ ଶବ୍ଦ ନିଷ୍ପନ୍ନ । ଧାରଣ କରେ ଯେ—ପତିତଙ୍କୁ ଉଦ୍ଧାର କରେ ଯେ, ସେ ଧର୍ମ । ଯେ ଯାହାର ପ୍ରକୃତିତ୍ୱ ଅକ୍ଷୁଣ୍ଣ ରଖି—ସର୍ବ ପ୍ରଯତ୍ନେ ତାହାର ଶକ୍ତିର ସୁବିଧାନ କରେ—ତାହା ତାହାର ଧର୍ମ । ଧର୍ମ ନାନାସ୍ଥାନରେ ନାନା ଅର୍ଥରେ ବ୍ୟବହୃତ ହେଲେ ମଧ୍ୟ ମୂଳ ଏକ ଲକ୍ଷ୍ୟ ଅଭିବ୍ୟକ୍ତ କରେ । ପ୍ରାକୃତିକ ଧର୍ମ—ଦ୍ରବ୍ୟର ପ୍ରକୃତିକୁ ଧର୍ମ କହନ୍ତି । ଯାହାର ଯାହା ସ୍ୱଭାବ, ତାହା ତାହାର ଧର୍ମ । ଯେପରି ଜଳର ଧର୍ମ ଶୀତଳତା, ଅଗ୍ନିର ଧର୍ମ ଉଷ୍ଣତା ।

ଧର୍ମ ପ୍ରତ୍ୟେକ ମାନବର ସର୍ବପ୍ରଯତ୍ନେ ଅନୁଷ୍ଠେୟ । ଶାସ୍ତ୍ରରେ ଅଛି "ସତ୍ୟାତ୍ ନାସ୍ତି ପରୋ ଧର୍ମଃ" । ସତ୍ୟଠାରୁ ଧର୍ମ ନାହିଁ । ଯାହା ପ୍ରତ୍ୟକ୍ଷ ଇନ୍ଦ୍ରିୟ ବିଷୟୀଭୂତ ତାହା ସତ୍ୟ ଏବଂ ଯାହା ସତ୍ୟ ତାହା ଧର୍ମ । ସତ୍ୟରେ ଜଗତର ଅସ୍ତିତ୍ୱ ଏବଂ ଅସତ୍ୟରେ ଜଗତର ଧ୍ୱଂସ । ଏଣୁ ସତ୍ୟର ଆବଶ୍ୟକତା ବର୍ଣ୍ଣନା କରିବା ବାହୁଲ୍ୟ ମାତ୍ର ।

"ବେଦପ୍ରତିପାଦ୍ୟ ପ୍ରୟୋଜନବଦର୍ଥୋ ଧର୍ମଃ" । ବେଦ-କର୍ତ୍ତୃକ ପ୍ରତିପାଦିତ ଏବଂ ପ୍ରୟୋଜନୀୟ ଯାହା ତାହାହିଁ ଧର୍ମ । ବେଦ ଶବ୍ଦେ ଅର୍ଥାତ୍ ସତ୍ୟ । ସତ୍ୟେ ଯାହା ପ୍ରତିପାଦ୍ୟ ତାହାହିଁ ସତ୍ୟ । ସତ୍ୟେ ଯାହାର ପ୍ରୟୋଜନ ତାହା ମଧ୍ୟ ଅବଶ୍ୟ ସତ୍ୟ—ସୁତରାଂ ଏ ସୂତ୍ରର ତାତ୍ପର୍ଯ୍ୟ ମଧ୍ୟ ପୂର୍ବପରି ।

'ଜୀବେ ଦୟା ନାମେ ଭକ୍ତି' ଧର୍ମର ଲକ୍ଷଣ ବୋଲି ମହାପୁରୁଷ ଚୈତନ୍ୟଦେବ କହିଅଛନ୍ତି । ମହାମତି ଚାଣକ୍ୟ ଏହି ବାକ୍ୟର ପ୍ରତିପୋଷଣ କରି "ଆତ୍ମବତ୍ ସର୍ବଭୂତେଷୁ ଯଃ ପଶ୍ୟତି ସ ପଣ୍ଡିତଃ" ବୋଲି ଉଲ୍ଲେଖ କରିଅଛନ୍ତି । ସର୍ବଜୀବେ ଆତ୍ମଭାବ ସର୍ବ ଶାସ୍ତ୍ରରେ ସର୍ବଜାତିର, ଧର୍ମ ଶାସ୍ତ୍ରର ଉକ୍ତି । ଖ୍ରୀଷ୍ଟଧର୍ମ ପ୍ରବର୍ତ୍ତକ ଯୀଶୁଖ୍ରୀଷ୍ଟ ମଧ୍ୟ ତାଙ୍କର ଶିଷ୍ୟବୃନ୍ଦଙ୍କୁ କହିଅଛନ୍ତି "ତୁମ୍ଭମାନଙ୍କର ପିତାଙ୍କୁ (ଈଶ୍ୱରଙ୍କୁ) ହୃଦୟର ସହିତ ପ୍ରୀତିକର ଓ ପ୍ରତିବେଶୀଗଣଙ୍କୁ ଆପଣାପରି ଜ୍ଞାନକର" । ସର୍ବଜୀବେ ଆତ୍ମଭାବ ସାମାନ୍ୟ ସାଧନାର ବିଷୟ ନୁହେ । ଏହି ଆତ୍ମଭାବହିଁ ମୁକ୍ତିର ସୋପାନ ।

ସ୍ୱାଧ୍ୟାୟ ନିରତ, ବ୍ରହ୍ମଚର୍ଯ୍ୟ, ଦାନ, ଯଜନ, ଅକାର୍ପଣ୍ୟ, ଅନାୟାସ, ଅହିଂସା, ଜିତେନ୍ଦ୍ରିୟ, ଶୌଚ୍ୟ, ଦୟା ଏହି କେତୋଟିର ଅନୁଷ୍ଠାନ ମାନବ ଧର୍ମ ବୋଲି ମହାତ୍ମା କୃଷ୍ଣ ଦ୍ୱୈପାୟନ ବର୍ଣ୍ଣନ କରିଅଛନ୍ତି ।

ଆର୍ଯ୍ୟୋଦ୍ଦେଶ୍ୟ ରତ୍ନମାଳାରେ ଲିଖିତ ଅଛି "ଯାହାର ସ୍ୱରୂପ ଈଶ୍ୱରାଜ୍ଞା ଯଥାବତ୍ ପାଳନ ଏବଂ ପକ୍ଷପାତ ରହିତ, ନ୍ୟାୟ ଓ ସକଳର ହିତକରଣ, ଯାହା ପ୍ରତ୍ୟକ୍ଷାଦି ପ୍ରମାଣଦ୍ୱାରା ସୁପରୀକ୍ଷିତ ଏବଂ ବେଦୋକ୍ତ ହେତୁ, ସକଳ ମନୁଷ୍ୟର ଏକମାତ୍ର ମାନିବାର ଯୋଗ୍ୟ, ତାହାକୁ ଧର୍ମ କହନ୍ତି" ।

ଧର୍ମରେ ଈଶ୍ୱର ପ୍ରତିଷ୍ଠା ଏବଂ ଧର୍ମହିଁ ପାପକ୍ଷୟାନ୍ତେ ମୋକ୍ଷ ଲାଭର ସେତୁ ସ୍ୱରୂପ । ସୁତରାଂ ଧର୍ମାଚରଣ ମାନବ ମାତ୍ରକେ ଅବଶ୍ୟ କର୍ତ୍ତବ୍ୟ ।

ଶାସ୍ତ୍ରରେ ଅଛି—

ଏକ ଏବ ସୁହୃଦ୍‌ଧର୍ମୋ ନିଧନେଽପ୍ୟନୁଯାତି ଯଃ
ଶରୀରେଣ ସମଂ ନାଶଂ ସର୍ବଂ ନଶ୍ୟତ୍ତୁ ଗଚ୍ଛତି ।

ଅର୍ଥାତ୍ ଧନ, ମାନ, ବିଷୟ, ଆଶୟ, ସ୍ତ୍ରୀ, ପୁତ୍ର, ବନ୍ଧୁ ବାନ୍ଧବ ସମସ୍ତ ଶରୀର ସହିତ ନଷ୍ଟ ହୋଇଯାଏ । ଧର୍ମହିଁ କେବଳ ଏକମାତ୍ର ସୁହୃଦ, ଯାହିଁକି, ଧର୍ମ ମୃତ୍ୟୁ ପରେହିଁ ଆମ୍ଭମାନଙ୍କ ସଙ୍ଗରେ ଗମନ କରେ ।

ଶ୍ରୁତି ସ୍ମୃତିରେ ଯେ ବିହିତ କର୍ମ ନିର୍ଦ୍ଦିଷ୍ଟ ଅଛି, ମନୁଷ୍ୟ ଯେବେ ତଦନୁଯାୟୀ କାର୍ଯ୍ୟ କରେ, ତାହା ହେଲେ ଇହ-କାଳରେ କୀର୍ତ୍ତି ଓ ପରକାଳରେ ଅନନ୍ତ ସୁଖର ଅଧିକାରୀ ହୁଏ । ଆହୁରି ମହାଭାରତରେ ଅଛି—

ବିଦ୍ୟା ବିତ୍ତଂ ବପୁଃ ଶୌର୍ଯ୍ୟଂ କୁଲେ ଜନ୍ମ ନିରୋଗିତା ।
ସଂସାରୋଚ୍ଛିତ୍ତି ହେତୁଶ୍ଚ ଧର୍ମାଦେବ ପ୍ରବର୍ତ୍ତତେ ।

ବିଦ୍ୟା, ବିତ୍ତ, ଦେହ, ଶୌର୍ଯ୍ୟ, କୁଳୀନ ଓ ଶ୍ରେଷ୍ଠ-ବଂଶରେ ଜନ୍ମଗ୍ରହଣ କରିବା, ଦେହ ରୋଗହୀନ ହେବା, ସଂସାରବନ୍ଧନରୁ ମୁକ୍ତ ହେବା, ସମସ୍ତ ଧର୍ମରୁ ପ୍ରସୂତ ହୁଏ ।

ଅତଏବ ଧର୍ମୋପାର୍ଜନ ବ୍ୟତୀତ ଇହ ପରକାଳରେ ସୁଖ ଭୋଗର ଅନ୍ୟ ଉପାୟ ନାହିଁ । ସେହି ଧର୍ମାର୍ଜନ ନିମିତ୍ତ ମନୁ କହିଅଛନ୍ତି—

ତପଃ ପରଂ କୃତେଯୁଗେ ତ୍ରେତାୟାଂ ଜ୍ଞାନମୁଚ୍ୟତେ
ଦ୍ୱାପରେ ଯଜ୍ଞମିତ୍ୟାହୁର୍ଦାନମେକଂ କଲୌଯୁଗେ ।

ସତ୍ୟଯୁଗରେ ତପସ୍ୟା, ତ୍ରେତାଯୁଗରେ ଜ୍ଞାନ, ଦ୍ୱାପର ଯୁଗରେ ଯାଗଯଜ୍ଞ ନିର୍ଦ୍ଦିଷ୍ଟ ଥିଲା । କଳିଯୁଗରେ ମନୁଷ୍ୟ ଅଳ୍ପାୟୁ, ଅଳ୍ପଜ୍ଞାନୀ; ଅତଏବ ଦାନ ଏକମାତ୍ର ଧର୍ମ ।

ଅତ୍ରୁର ମହାନିର୍ବାଣ ତନ୍ତ୍ରରେ ଅଛି—

'କଲୌଦାନଂ ମହେଶାନି ସର୍ବସିଦ୍ଧିକରଂ ଭବେତ୍' ।

କଳିଯୁଗରେ ଏକମାତ୍ର ଦାନ ସମୁଦାୟ ସିଦ୍ଧିର କାରଣ । ପୁଣି

ଦାତବ୍ୟ ମିତି ଯଦ୍ଦାନଂ ଦୀୟତେଽନୁପକାରିଣେ ।
ଦେଶେକାଲେ ଚ ପାତ୍ରେ ଚ ତଦ୍ଦାନଂ ସାତ୍ତ୍ୱିକଂ ସ୍ମୃତଂ ।

ପ୍ରତ୍ୟୁପକାରର ପ୍ରତ୍ୟାଶା ନ କରି ଦେଶକାଳ ପାତ୍ରର ଉତ୍ତମତା ବିଚାର ପୂର୍ବକ, କେବଳ କର୍ତ୍ତବ୍ୟାନୁରୋଧରେ ଯେ ଦାନ କରାଯାଏ ତାହାହିଁ ସାତ୍ତ୍ୱିକ ଦାନ ।

ଏଣୁ ସମସ୍ତଙ୍କର ଫଳାକାଂକ୍ଷା ବର୍ଜିତ ହୋଇ କର୍ତ୍ତବ୍ୟାନୁରୋଧରେ ଦାନ କରିବା କର୍ତ୍ତବ୍ୟ ।

ଦାନ ବ୍ୟତୀତ ତପସ୍ୟା ମଧ୍ୟ ଅନ୍ୟ ଉପାୟ । ଉପାସନାର ନାମ ତପସ୍ୟା ଏବଂ ତାହା କରିବାକୁ ହେଲେ ଚିତ୍ତର ଏକାଗ୍ରତା ଦରକାର । ଶାସ୍ତ୍ର ବିହିତ କର୍ମକାଣ୍ଡ ଅନୁସାରେ ସାଧନା କଲେ ଚିତ୍ତର ଏକାଗ୍ରତା ଲାଭ ଏବଂ ଇଷ୍ଟଦେବଙ୍କ ଆରାଧନାରେ ତାହା ସମ୍ପାଦିତ ହୋଇଥାଏ ।

ଅତଏବ ଏହି ଦୁଇ ଉପାୟରେ ମନୁଷ୍ୟ ଧାର୍ମିକ ହୋଇ ଅନନ୍ତ ସୁଖର ଅଧିକାରୀ ହୁଏ ।



## ଭାଷା

ଯହିଁରେ ମନୁଷ୍ୟମାନେ ନିଜ ନିଜର ମନୋଭାବ ବ୍ୟକ୍ତ କରନ୍ତି, ତାହାର ନାମ ଭାଷା । ସଂସ୍କୃତ ଶାସ୍ତ୍ରରେ ୧୮ ଟି ଭାଷାର ଉଲ୍ଲେଖ ଅଛି । ଯଥା:—

୧ ସଂସ୍କୃତା, ୨ ପ୍ରାକୃତା, ୩ ଉଦୀଚୀ, ୪ ମହାରାଷ୍ଟ୍ରୀ, ୫ ମାଗଧୀ, ୬ ଅର୍ଦ୍ଧ ମାଗଧୀ, ୭ ଶକାଭୀରୀ, ୮ ଶାବନ୍ତୀ, ୯ ଦ୍ରାବିଡ଼ୀ, ୧୦ ଓଡ୍ରକଳୀ, ୧୧ ପାଶ୍ଚାତ୍ୟା, ୧୨ ପ୍ରାଚ୍ୟା, ୧୩ ବାହ୍ଲିକା, ୧୪ ବନ୍ତିକା, ୧୫ ଦାକ୍ଷିଣାତ୍ୟା, ୧୬ ପୈଶାଚୀ, ୧୭ ଆବନ୍ତୀ, ୧୮ ଶୌରସେନୀ । ବିଭିନ୍ନ ଦେଶର ବର୍ଣ୍ଣମାଳା ବିଭିନ୍ନ, ଏବଂ ସେମାନଙ୍କ ସଂଖ୍ୟାରେ ମଧ୍ୟ ତାରତମ୍ୟ ଅଛି ।



## ପଣ୍ଡିତ ଲକ୍ଷଣ

ଯାହାଙ୍କର ଆତ୍ମଜ୍ଞାନ ସମ୍ୟକ୍ ଆରମ୍ଭ ହୁଏ ଅର୍ଥାତ୍ ଯେ ଅକର୍ମା ବା ଆଳସୀ ନୁହନ୍ତି, ସୁଖ, ଦୁଃଖ, ହାନି, ଲାଭ, ମାନ, ଅପମାନ, ନିନ୍ଦା, ସ୍ତୁତିରେ କଦାପି ହର୍ଷ ବା ଶୋକ ନକରନ୍ତି, ସର୍ବଦା ଧର୍ମରେ ମନକୁ ନିଶ୍ଚଳ ରଖନ୍ତି ଏବଂ ଯାହାଙ୍କ ମନକୁ ବିଷମ ସମ୍ବନ୍ଧୀୟ ଉତ୍ତମ ଉତ୍ତମ ପଦାର୍ଥମାନ ଆକର୍ଷଣ କରି ନପାରେ, ସେ କେବଳ ପଣ୍ଡିତ ହୁଅନ୍ତି । ସର୍ବଦା ଧର୍ମଯୁକ୍ତ କର୍ମର ଅନୁଷ୍ଠାନ, ଅଧର୍ମଯୁକ୍ତ କର୍ମର ତ୍ୟାଗ, ଈଶ୍ୱର, ବେଦ ଓ ସତ୍ୟାଚାରର ନିନ୍ଦା ନ କରିବା, ଈଶ୍ୱରଙ୍କଠାରେ ଶ୍ରଦ୍ଧା ଓ ଭକ୍ତି କରିବା, ଏହା ଜ୍ଞାନୀମାନଙ୍କର ଲକ୍ଷଣ । ଯେ କଠିନ ବିଷୟମାନ ଶୀଘ୍ର ଜାଣି ପାରନ୍ତି, ବହୁକାଳ ପର୍ଯ୍ୟନ୍ତ ନାନାବିଧ ଶାସ୍ତ୍ର ପଢ଼ା ଶୁଣା କରିଥାନ୍ତି, ଯାହା ଜାଣନ୍ତି ତାହା ପରୋପକାରରେ ଲଗାନ୍ତି, କେବଳ ଆପଣାର ସ୍ୱାର୍ଥସାଧନ ସକାଶେ କୌଣସି କର୍ମ କରନ୍ତି ନାହିଁ, ପଚରା ନଗଲେ ନିଜର ଅଭିମତ ପ୍ରକାଶ କରନ୍ତି ନାହିଁ, ଅନୁଚିତ ସମୟରେ ଅର୍ଥାତ୍ ଅନ୍ୟ କେହି କହୁଥିବା ସମୟରେ ପ୍ରତିବନ୍ଧକ ହୁଅନ୍ତି ନାହିଁ, ସେମାନେ ପଣ୍ଡିତ । ଯେଉଁମାନେ ଅପ୍ରାପ୍ତ ବସ୍ତୁକୁ ପାଇବା ଇଚ୍ଛା କରନ୍ତି ନାହିଁ, ନଷ୍ଟ ହେବାର ପଦାର୍ଥ ପାଇଁ ଶୋଚନା କରନ୍ତି ନାହିଁ, ପୁଣି ବିପଦ କାଳରେ ମୋହଯୁକ୍ତ ନହୋଇ ଧୈର୍ଯ୍ୟାବଲମ୍ବନ କରନ୍ତି, ସେମାନେ ପଣ୍ଡିତ । ଯେଉଁମାନେ ସକଳ ବିଦ୍ୟାରେ ଧୁରନ୍ଧର, ପ୍ରଶ୍ନୋତ୍ତର କରିବାରେ ନିପୁଣ, ବିଚକ୍ଷଣ, ଶାସ୍ତ୍ର ପ୍ରକରଣରେ ସୁବକ୍ତା, ଯଥାଯୋଗ୍ୟ କର୍ମ-କୁଶଳ, ବିଲକ୍ଷଣ ସ୍ମୃତିମାନ୍ ଶାସ୍ତ୍ରମାନଙ୍କର ଗୂଢ଼ ଅର୍ଥମାନ ସହଜରେ ବ୍ୟକ୍ତ କରି ପାରନ୍ତି, ସେମାନେ ପଣ୍ଡିତ । ଯାହାଙ୍କର ପ୍ରଜ୍ଞା ସତ୍ୟାର୍ଥର ଅନୁକୂଳ, ଯେଉଁମାନେ ଯୁକ୍ତିସଙ୍ଗତ ବାକ୍ୟ ଶ୍ରବଣ କରନ୍ତି, ଯେଉଁମାନେ ଆର୍ଯ୍ୟ ଅର୍ଥାତ୍ ଶ୍ରେଷ୍ଠ ଧାର୍ମିକ ପୁରୁଷମାନଙ୍କର ମର୍ଯ୍ୟାଦା ଲଙ୍ଘନ କରନ୍ତି ନାହିଁ, ସେହିମାନେ କେବଳ 'ପଣ୍ଡିତ' ପଦର

ଯୋଗ୍ୟ । ଯେଉଁ ବାଳକ ବାଳିକାମାନେ ଏହିପରି ଜ୍ଞାନୀ ପୁରୁଷ ଓ ସ୍ତ୍ରୀମାନଙ୍କ ଠାରୁ ଶିକ୍ଷାଲାଭ କରନ୍ତି ସେମାନେ ବିଦ୍ୟା, ଧର୍ମ, ଏବଂ ଉତ୍ତମାଚରଣରେ ଉନ୍ନତି ଲାଭ କରି ଜୀବନରେ ସୁଖ ପ୍ରାପ୍ତ ହୁଅନ୍ତି ।



## ବ୍ରାହ୍ମଣର ଲକ୍ଷଣ

( ସ୍ୱାଧ୍ୟାୟ ) ସକଳ ବିଦ୍ୟା ପଢିବା, ପଢ଼ାଇବା, (ବ୍ରତ) ବ୍ରହ୍ମଚର୍ଯ୍ୟ, ସତ୍ୟଭାଷଣାଦି ନିୟମ ପାଳନ କରିବା, (ହୋମ) ଅଗ୍ନିହୋତ୍ରାଦି କରିବା, ( ତ୍ରୈବିଦ୍ୟେନ ) ବେଦବିହିତ କର୍ମୋପାସନା, ଜ୍ଞାନ ଓ ବିଦ୍ୟାର ଗ୍ରହଣ, ( ଇଜ୍ୟୟା ) ପକ୍ଷେଷ୍ଟ୍ୟାଦି କରିବା, ( ସୁତୈଃ ) ସନ୍ତାନୋତ୍ପତ୍ତି କରିବା, ( ମହାଯଜ୍ଞ ) ବ୍ରହ୍ମ, ଦେବ, ପିତୃ, ବୈଶ୍ୱଦେବ ଓ ଅତିଥି ସେବା ଏହି ପଞ୍ଚ ମହାଯଜ୍ଞ, ( ଯଜ୍ଞୈଃ ) ଶିଳ୍ପ ଓ ବିଜ୍ଞାନାଦି ଶିକ୍ଷା । ଏହି ଆଠପ୍ରକାର ଅନୁଷ୍ଠାନ ଦ୍ୱାରା ବ୍ରାହ୍ମଣର ଶରୀର ବେଦ ଓ ପରମେଶ୍ୱରଙ୍କର ଆଧାର ରୂପେ ନିର୍ମାଣ କରାଯାଏ ଏହି ସକଳ ସାଧନା ବ୍ୟତୀତ କେହି ଲୋକ ବ୍ରାହ୍ମଣ ହୋଇପାରିବେ ନାହିଁ ।



## ବ୍ରହ୍ମଚାରୀ ଲକ୍ଷଣ

ବ୍ରହ୍ମଚାରୀ ଓ ବ୍ରହ୍ମଚାରିଣୀମାନେ ମଦ୍ୟ, ମାଂସ, ଗନ୍ଧ, ମାଲ୍ୟ, ରସ, ପୁରୁଷସଙ୍ଗ, ଅମ୍ଳପଦାର୍ଥ, ପ୍ରାଣୀହିଂସା, ଅଙ୍ଗ-ମର୍ଦ୍ଦନ, ବିନା କାରଣରେ ଉପସ୍ଥ ସ୍ପର୍ଶନ, ଚକ୍ଷୁରେ ଅଞ୍ଜନ, ଛତା ଜୋତା ଧାରଣ, କାମ, କ୍ରୋଧ ଲୋଭ ମୋହ, ଭୟ ଶୋକ, ଈର୍ଷା, ଦ୍ୱେଷ, ନାଚ, ଗାନ, ବାଦ୍ୟ, ଦ୍ୟୁତ, ଅନ୍ୟ କୌଣସି ଲୋକର କଥା ଓ ନିନ୍ଦା, ମିଥ୍ୟା, ସ୍ତ୍ରୀ ସହବାସ, ଅନ୍ୟଲୋକର ହାନି ଇତ୍ୟାଦି ଦୁଷ୍କର୍ମମାନ ସର୍ବଦା ପରିତ୍ୟାଗ କରିବେ, ସବୁବେଳେ ଏକାକୀ ହୋଇ ଶୟନ କରିବେ, କଦାଚ ବୀର୍ଯ୍ୟ ସ୍ଖଳନ କରିବେ ନାହିଁ । ଯେ ପ୍ରକାର ହେଉ, ଇଚ୍ଛାପୂର୍ବକ ବୀର୍ଯ୍ୟ ସ୍ଖଳନ କଲେ ବ୍ରହ୍ମଚର୍ଯ୍ୟ ନଷ୍ଟ ହୋଇଯାଏ ।



## ସତ୍ପୁରୁଷ ଲକ୍ଷଣ

ସର୍ବଦା ପ୍ରିୟସତ୍ୟ ଅର୍ଥାତ୍ ଅନ୍ୟର ହିତକାରକ ବାକ୍ୟ କହିବା ଉଚିତ ଏବଂ କୌଣସିକଥା ସତ୍ୟହେଲେ ସୁଦ୍ଧା ଅପ୍ରିୟ ହେଲେ କହିବା ଉଚିତ ନୁହେ । ଯଥା—କଣାକୁ କଣା ବୋଲି କହିବ ନାହିଁ । କୌଣସି ଲୋକକୁ ସନ୍ତୁଷ୍ଟ ବା ପ୍ରସନ୍ନ କରାଇବା ପାଇଁ କଦାପି ମିଥ୍ୟା କହିବ ନାହିଁ । ସର୍ବଦା ଭଦ୍ର ଅର୍ଥାତ୍ ସମସ୍ତଙ୍କର ହିତକର ବଚନ କହିବା ଉଚିତ । ବିନା କାରଣରେ କୌଣସି ଲୋକ ସହିତ ଶତ୍ରୁତା ବା ବିବାଦ କରିବା ବିଧି ନୁହେ । ଯେଉଁ କଥାମାନ ଅପ୍ରିୟ ହେଲେ ମଧ୍ୟ ଅନ୍ୟର ହିତକର ହୁଏ ତାହା ନ କହି ରହିବା ଉଚିତ ନୁହେ ।

ଏ ସଂସାରରେ ନିରନ୍ତର ଅନ୍ୟକୁ ପ୍ରସନ୍ନ କରିବା ପାଇଁ ତାହାଙ୍କର ପ୍ରିୟକଥା କହିବା ଲୋକ ଅନେକ ଅଛନ୍ତି ପରନ୍ତୁ ଶୁଣିବାକୁ ଅପ୍ରିୟ ଏବଂ କଲ୍ୟାଣକର ବଚନ କହିବା ଓ ଶୁଣିବା ଲୋକ ଅତ୍ୟଳ୍ପ ଅଛନ୍ତି । ଅନ୍ୟର ଦୋଷ ଗୁଣ ତାଙ୍କ ଆଗରେ କହିବା ଏବଂ ଆପଣାର ଦୋଷ ନିଜେ ବୁଝିବା, ପୁଣି ଅନ୍ୟର ଗୁଣ କେବଳ ତାହାଙ୍କ ପଛରେ କହିବା ସତ୍ପୁରୁଷଙ୍କର କର୍ତ୍ତବ୍ୟ । ଯେ ପର୍ଯ୍ୟନ୍ତ ମନୁଷ୍ୟ ଅନ୍ୟଠାରେ ଆପଣାର ଦୋଷ ବ୍ୟକ୍ତ କରେ ନାହିଁ; ସେ ପର୍ଯ୍ୟନ୍ତ ଗୁଣଯୁକ୍ତ ହୁଏ ନାହିଁ ।



## ବିଦ୍ୟାର୍ଥୀର ଲକ୍ଷଣ

ବିଦ୍ୱାନ୍ ଓ ବିଦ୍ୟାର୍ଥୀମାନଙ୍କର ଲକ୍ଷଣ ଏହି ଯେ ସେମାନେ ବୈରବୁଦ୍ଧି ଛାଡ଼ି ସମସ୍ତ ଲୋକଙ୍କୁ କଲ୍ୟାଣକର ଉପଦେଶ ଦେବେ । ଉପଦେଷ୍ଟା ମାନଙ୍କର ମିଷ୍ଟ ଓ ସୁଶୀଳ ଭାଷାରେ ଉପଦେଶ ଦେବା ଉଚିତ । ଯେଉଁମାନେ ଧର୍ମର ଉନ୍ନତି ଚାହାନ୍ତି ସେମାନେ ସର୍ବଦା ସତ୍ୟ କହନ୍ତି ଏବଂ ସତ୍ୟୋପଦେଶ ଦିଅନ୍ତି । ଯେଉଁ ଲୋକ ଆପଣାର ମନ ବଚନକୁ ଶୁଦ୍ଧ ଓ ସଂଯତ ରଖନ୍ତି ସେହି ଲୋକ କେବଳ ବେଦର ଅର୍ଥ ହୃଦୟଙ୍ଗମ କରି ପାରନ୍ତି । ଅଜ୍ଞର ମନେ

ରଖିବାକୁ ହେବ ଯେଉଁମାନେ ନମ୍ର ଓ ସୁଶୀଳ ହୁଅନ୍ତି ଏବଂ ବିଦ୍ୱାନ୍ ଓ ବୃଦ୍ଧମାନଙ୍କୁ ସେବା କରନ୍ତି, ସେମାନେ ଆୟୁ, ବିଦ୍ୟା, କୀର୍ତ୍ତି ଏବଂ ବଳ ଲାଭ କରନ୍ତି । ଯେଉଁମାନେ ସମ୍ମାନକୁ ବିଷ ଓ ଅପମାନକୁ ଅମୃତ ତୁଲ୍ୟ ମନେ କରନ୍ତି ସେହିମାନେ ସମସ୍ତ ବେଦ ଓ ପରମେଶ୍ୱରଙ୍କୁ ଜାଣି ପାରନ୍ତି ।

ସନ୍ଧ୍ୟୋପାସନା, ପଞ୍ଚ ମହାଯଜ୍ଞ ଏବଂ ବେଦ ପଠନ ପାଠନ ନିତ୍ୟ କରିବାକୁ ହେବ । କୌଣସି ଦିନ ହେଲେ ଛାଡ଼ିବାକୁ ହେବନାହିଁ । ଏଥିରେ ଅନଧ୍ୟାୟ ବିଷୟକ ଅନୁରୋଧ ରହିପାରେ ନାହିଁ । ନିତ୍ୟକର୍ମରେ ଅନଧ୍ୟାୟ ନାହିଁ । ସତ୍‌କର୍ମ କରିବାକୁ ସ୍ୱାଧ୍ୟାୟ ଓ ଅସତ୍ କର୍ମ କରିବାକୁ ଅନଧ୍ୟାୟ କହନ୍ତି ।



## ପାଷଣ୍ଡ ଲକ୍ଷଣ

( ୧ ) ଧର୍ମଧ୍ୱଜୀ—ଯେଉଁମାନେ କିଛି ଧର୍ମ କରନ୍ତି ନାହିଁ, ପରନ୍ତୁ ଧର୍ମ ନାମରେ ଲୋକଙ୍କୁ ଠକୁଥାନ୍ତି ।

( ୨ ) ସଦାଲୁବ୍ଧ—ଯେଉଁମାନେ ସର୍ବଦା ଅତିଶୟ ଲୋଭଯୁକ୍ତ ହୋଇ କାର୍ଯ୍ୟ କରନ୍ତି ।

( ୩ ) ଛାଦ୍ମିକ—କପଟାଗ୍ରହୀ ।

( ୪ ) ଲୋକଦମ୍ଭକ—ଯେଉଁମାନେ ଲୋକମାନଙ୍କ ଆଗରେ ଆପଣାର ବଡ଼ାଇ କହୁଥାନ୍ତି ।

( ୫ ) ହିଂସ୍ର—ଯେଉଁମାନେ ଅନ୍ୟଠାରେ ବୈର ବୁଦ୍ଧି କରନ୍ତି, ପ୍ରାଣଘାତକ ହୁଅନ୍ତି ।

( ୬ ) ସର୍ବାଭିସନ୍ଧକ—ଯେଉଁମାନେ ଭଲ ମନ୍ଦ ସବୁଥିରେ ମିଶନ୍ତି, ଏହି ଲୋକମାନଙ୍କୁ ବିଡ଼ାଳ ବ୍ରତିକ କୁହାଯାଏ, ଅର୍ଥାତ୍ ଏମାନେ ବିଡ଼ାଳ ସମାନ ନୀଚ ଜୀବ ଅଟନ୍ତି ।

( ୭ ) ଅଧୋଦୃଷ୍ଟି—ଯେଉଁମାନେ ଆପଣାକୁ ଧର୍ମାତ୍ମା ବୋଲି ପରିଚୟ ଦେବା ନିମନ୍ତେ ସର୍ବଦା ତଳକୁ ଦୃଷ୍ଟି ରଖନ୍ତି ।

( ୮ ) ନୈଷ୍କୃତିକ—ଯେଉଁମାନେ ଅତ୍ୟନ୍ତ ଈର୍ଷାଯୁକ୍ତ ଅର୍ଥାତ୍ କୌଣସି ସାମାନ୍ୟ କ୍ଷତି ପରିଶୋଧ କରିବା ପାଇଁ ଅନ୍ୟର ପ୍ରାଣ ପର୍ଯ୍ୟନ୍ତ ନଷ୍ଟ କରିବାକୁ ବସନ୍ତି ।

( ୯ ) ସ୍ୱାର୍ଥସାଧନ ତତ୍ପର—ଦ୍ରୋହ, ଦଗା, କପଟ, ଇତ୍ୟାଦି ଦ୍ୱାରା ହେଉ ପଛକେ ନିଜର ସ୍ୱାର୍ଥସାଧନ କରିନେବା ଲୋକ ।

( ୧୦ ) ଶଠ—ଯେଉଁମାନେ ନିଜର ଭ୍ରମ ବୁଝିପାରି ମଧ୍ୟ ହଠ କରନ୍ତି ।

( ୧୧ ) ମିଥ୍ୟାବିନୀତ—ଯେଉଁମାନେ ବାହାରେ ସନ୍ତୋଷ, ସାଧୁତା ଏବଂ ଭକ୍ତି ଦେଖାନ୍ତି କିନ୍ତୁ ଭିତରେ ଦୁଷ୍କାର୍ମ ଓ ଦୌର୍ଜନ୍ୟ କରନ୍ତି ଏହି ବକବ୍ରତି ଅର୍ଥାତ୍ ବକସମାନ ନୀଚଲୋକ ବୋଲି ବୁଝିବ ।

ଉପରୋକ୍ତ ଲକ୍ଷଣମାନଙ୍କର ଲୋକଙ୍କୁ ପାଷଣ୍ଡ କହନ୍ତି ।



## ସନ୍ନ୍ୟାସିମାନଙ୍କର ଧର୍ମ୍ମ ।

ପକ୍ଷପାତ ରହିତ ନ୍ୟାୟାଚରଣ, ସତ୍ୟ ଗ୍ରହଣ, ଅସତ୍ୟର ପରିତ୍ୟାଗ, ବେଦୋକ୍ତ ପରମେଶ୍ୱରଙ୍କର ଆଜ୍ଞାପାଳନ, ପରୋପକାର, ସତ୍ୟଭାଷଣାଦି ଧର୍ମାଚରଣ ସବୁ ଆଶ୍ରମିମାନଙ୍କର ଅର୍ଥାତ୍ ମନୁଷ୍ୟମାତ୍ରର କର୍ତ୍ତବ୍ୟ; ବିଶେଷତଃ ସନ୍ନ୍ୟାସି ମାନଙ୍କର ଧର୍ମ ଏହି :—

ଏଣେ ତେଣେ ନ ଚାହିଁ ଭୂମି ଉପରେ ଦୃଷ୍ଟି ରଖି ଚାଲିବ, ସର୍ବଦା ପାଣିକି ବସ୍ତ୍ରରେ ଛାଣି ପିଇବ, ସର୍ବଦା ସତ୍ୟ କହିବ ଏବଂ ମନରେ ବିଚାର ପୂର୍ବକ ସତ୍ୟଗ୍ରହଣ ଓ ମିଥ୍ୟା ପରିତ୍ୟାଗ କରିବ । ଉପଦେଶ ବା ସଂବାଦ ଦେଲାବେଳେ ଯେବେ କେହି କ୍ରୋଧ କରେ ବା ନିନ୍ଦାକରେ ତେବେ ତାହାଠାରେ କ୍ରୋଧ କରିବ ନାହିଁ କିନ୍ତୁ ତାହାର କଲ୍ୟାଣ ବାଞ୍ଛା କରିବ । ମୁଖରୁ ଯେଉଁ ବଚନ ନିଃସୃତ ହୁଏ ତାହା ମୁଖ, ନାସିକା, ଚକ୍ଷୁ, କର୍ଣ୍ଣ ଏହି ସପ୍ତରନ୍ଧ୍ରରେ ପରିବ୍ୟାପ୍ତ ଥାଏ । ସେହି ବଚନ ସର୍ବଦା ସତ୍ୟ ହେବା ଉଚିତ । ସନ୍ନ୍ୟାସିମାନେ ପରମାତ୍ମାଙ୍କଠାରେ ଆପଣା ଆତ୍ମାକୁ ସ୍ଥିରରଖି, ସୁଖ ଦୁଃଖାଦିର ଅପେକ୍ଷା ନ କରି ମଦ୍ୟମାଂସାଦି ବର୍ଜନ କରି, ଅଧ୍ୟାତ୍ମ ସୁଖାଭିଳାଷୀ ହୋଇ, ଏହି ସଂସାରରେ ବିଦ୍ୟା ଓ ଧର୍ମ ବଢ଼ାଇବା ସକାଶେ ସର୍ବଦା ଭ୍ରମଣ କରନ୍ତି । କେଶ, ନଖ, ଦାଢ଼ି, ନିଶ ଛେଦନ କରି, ଏକ ଜଳପାତ୍ର ଓ ଦଣ୍ଡ ଧାରଣ

କର, ଗେରୁଅବସ୍ତ୍ର ପରିଧାନ କର, କୌଣସି ପ୍ରାଣୀର ହିଂସା ନ କର, ଶାନ୍ତ ଏବଂ ସ୍ଥିର ମନରେ ବିଚରଣ କରନ୍ତୁ । ଇନ୍ଦ୍ରିୟମାନଙ୍କୁ ଅଧର୍ମାଚରଣରୁ ନିବୃତ୍ତ କର, ରାଗ, ଦ୍ୱେଷ ଛାଡ଼ି, କୌଣସି ପ୍ରାଣୀଠାରେ ବୈରଭାବ ନ କର, ନିଜର ମୋକ୍ଷ ସାଧନ କରନ୍ତୁ । ସଂସାରରେ ଯେ କୌଣସି ଆଶ୍ରମର ଲୋକ ହେଉ, ସନ୍ନ୍ୟାସିକୁ ଦୁଷିତ ବା ଭୂଷିତ କରୁ, ତାହା ପ୍ରତି ସନ୍ନ୍ୟାସିର କୌଣସି ପକ୍ଷପାତ ରଖିବା ଉଚିତ ନୁହେ । ସନ୍ନ୍ୟାସୀ ନିଜେ ଧର୍ମାତ୍ମା ଏବଂ ଅପରକୁ ଧର୍ମାତ୍ମା କରିବାକୁ ସର୍ବଦା ଯତ୍ନ କରନ୍ତୁ । ମନୁଷ୍ୟ ଆଦି ସମସ୍ତ ପ୍ରାଣିଙ୍କୁ ସତ୍ୟୋପଦେଶ ଓ ବିଦ୍ୟାଦାନ କରିବା ସନ୍ନ୍ୟାସିମାନଙ୍କର ମୁଖ୍ୟ କର୍ମ ଅଟେ । ବ୍ରାହ୍ମଣ ବା ବ୍ରହ୍ମବିତ୍ ସନ୍ନ୍ୟାସିର କର୍ତ୍ତବ୍ୟ ଏହି ଯେ ସେ ଓଁକାର ବା ସପ୍ତବ୍ୟାହୃତି ବିଧିପୂର୍ବକ ଯଥାଶକ୍ତି ସମ୍ଭବ ପ୍ରାଣାୟାମ କରିବେ । ପରନ୍ତୁ ପ୍ରାଣାୟାମର ସଂଖ୍ୟା ତିନିରୁ ଊଣା ହେବ ନାହିଁ । ଏହା ସନ୍ନ୍ୟାସିମାନଙ୍କର ପରମ ତପ । ପ୍ରାଣାୟାମ ଦ୍ୱାରା ମନ ଆଦି ଇନ୍ଦ୍ରିୟର ଦୋଷ ଦୂରୀଭୂତ ହୁଏ, ଅତଏବ ସନ୍ନ୍ୟାସିଲୋକ ନିତ୍ୟ ପ୍ରାଣାୟାମ କରି ନିଜର ଆତ୍ମା, ଅନ୍ତଃକରଣ ଓ ଇନ୍ଦ୍ରିୟମାନଙ୍କର କଳଙ୍କ କ୍ଷାଳନ କରନ୍ତୁ ଏବଂ ଧାରଣାଦ୍ୱାରା ପାପ, ପ୍ରତ୍ୟାହାରଦ୍ୱାରା ସଙ୍ଗଦୋଷ ଏବଂ ଧ୍ୟାନ ଦ୍ୱାରା ଅନୀଶ୍ୱର ଗୁଣ ଅର୍ଥାତ୍ ହର୍ଷ, ଶୋକ ଓ ଅବିଦ୍ୟାଦି ଜୀବର ଦୋଷ ସମୂହକୁ ଭସ୍ମୀଭୂତ କରନ୍ତୁ । ଯୋଗାଭ୍ୟାସଦ୍ୱାରା ସନ୍ନ୍ୟାସିମାନେ ଉଚ୍ଚ ନୀଚ ସକଳ ପଦାର୍ଥରେ ଏବଂ ନିଜ ଆତ୍ମାରେ ସର୍ବବ୍ୟାପୀ ସର୍ବଜ୍ଞ ପରମାତ୍ମାଙ୍କର ଗତିବିଧି ଦେଖି ପାରନ୍ତି, ଓ ବେଦୋକ୍ତ କର୍ମାନୁଷ୍ଠାନ, ପୁଣି ଅତ୍ୟୁଗ୍ର ତପଶ୍ଚରଣ ଦ୍ୱାରା ସନ୍ନ୍ୟାସୀ କେବଳ ଏହି ସଂସାରରେ ମୋକ୍ଷଲାଭ କରନ୍ତି । ଯେତେବେଳେ ସନ୍ନ୍ୟାସୀ ସକଳ ପାର୍ଥିବ ପଦାର୍ଥ ପ୍ରତି ନିଃସ୍ପୃହ ରହନ୍ତି, ଆକାଙ୍କ୍ଷା ରହିତ ହୁଅନ୍ତି, ପୁଣି ସ୍ୱଭାବରେ ବାହାର ଭିତର ସର୍ବଦା ପବିତ୍ର ରହନ୍ତି, ସେତେବେଳେ ସେ ଏହି ଦେହରେ ଏବଂ ପରଲୋକରେ ନିରନ୍ତର ସୁଖ ପ୍ରାପ୍ତ ହୁଅନ୍ତି ।



## ସମସ୍ତ ଆଶ୍ରମର କର୍ତ୍ତବ୍ୟ

୧—ସର୍ବଦା ଧୈର୍ଯ୍ୟ ଏବଂ ସନ୍ତୋଷ ରଖିବା ।

୨—କ୍ଷମା ଅର୍ଥାତ୍ ନିନ୍ଦାସ୍ତୁତି, ମାନାପମାନ ହାନିଲାଭାଦିରେ ସହନଶୀଳ ରହିବା ।

୩—ମନକୁ ସର୍ବଦା ଧର୍ମରେ ନିଯୋଗ କରିବା ଏବଂ ଅଧର୍ମରୁ ନିବୃତ୍ତ ରଖିବା ଅର୍ଥାତ୍ ମୁହୂର୍ତ୍ତଏ ମାତ୍ର ଅଧର୍ମ କରିବାକୁ ଅଣୁମାତ୍ର ସୁଦ୍ଧା ଇଚ୍ଛା ନ କରିବା ।

୪—ଅସ୍ତେୟ—ଅର୍ଥାତ୍ ଚୋରି ନ କରିବା, ଛଳ, କପଟ ଓ ବିଶ୍ୱାସଘାତକତାରେ କୌଣସି ବ୍ୟବହାର କରିବା, ତଥା ବେଦ-ବିରୁଦ୍ଧ ଉପଦେଶ ଦେବା ଏବଂ ବିନାନୁମତିରେ ପରଦ୍ରବ୍ୟ ଗ୍ରହଣ କରିବାକୁ ଚୋରି କହନ୍ତି । ଏହି ଚୋରି ଛାଡ଼ିବାହିଁ ଅସ୍ତେୟ ।

୫—ଶୌଚ—ମାନସିକ ବା ଶାରୀରିକ ରାଗ, ଦ୍ୱେଷ, ପକ୍ଷପାତ ତ୍ୟାଗକରି ଭିତର, ପୁଣି ଜଳ, ମୃତ୍ତିକା ଏବଂ ମାର୍ଜନାଦି ଦ୍ୱାରା ବାହାର ପବିତ୍ର ରଖିବା ।

୬—ଇନ୍ଦ୍ରିୟ ନିଗ୍ରହ—ଇନ୍ଦ୍ରିୟମାନଙ୍କୁ ଅଧର୍ମାଚରଣରୁ ନିବୃତ୍ତ କରି ସର୍ବଦା ଧର୍ମରେ ଲଗାଇବା ।

୭—ଧୀ—ମାଦକ ଦ୍ରବ୍ୟ ଓ ଅନ୍ୟାନ୍ୟ ବୁଦ୍ଧିନାଶକ ପଦାର୍ଥ, ଦୁଷ୍ଟ ସଙ୍ଗ, ଆଳସ୍ୟ ପ୍ରମାଦାଦି ଛାଡ଼ି ସ୍ୱାସ୍ଥ୍ୟଜନକ ଶ୍ରେଷ୍ଠ ପଦାର୍ଥ ସେବନ, ସତ୍ପୁରୁଷ ସଙ୍ଗ ଓ ଯୋଗାଭ୍ୟାସ ଦ୍ୱାରା ବୁଦ୍ଧି ବଢ଼ାଇବା ।

୮—ବିଦ୍ୟା—ପୃଥିବୀଠାରୁ ଆରମ୍ଭ କରି ଈଶ୍ୱର ପର୍ଯ୍ୟନ୍ତ ସମସ୍ତ ପଦାର୍ଥର ଯଥାର୍ଥ ଜ୍ଞାନ, ଉକ୍ତ ଜ୍ଞାନର ଯଥାଯୋଗ୍ୟ ପ୍ରୟୋଗ, ଆତ୍ମାରେ ଯାହା ସତ୍ୟ ମନରେ ତାହାକୁ ସତ୍ୟ ଜ୍ଞାନ କରିବା, ମନରେ ଯାହା ବଚନରେ ତାହା, ବଚନରେ ଯାହା କର୍ମରେ ତାହା ଆଚରଣ କରିବା ବିଦ୍ୟା, ଏହାର ବିପରୀତ ଯେ ସେ ଅବିଦ୍ୟା ।

ସତ୍ୟ—ଯେଉଁ ପଦାର୍ଥ ଯାହା ତାହାକୁ ତାହାହିଁ ବୁଝିବା, ତାହାହିଁ ବୋଲିବା ଏବଂ ତାହାହିଁ କରିବା ।

ଅକ୍ରୋଧ--କ୍ରୋଧାଦି ଦୋଷ ଛାଡ଼ି ଶାନ୍ତି ଆଦି ଗୁଣ ଗ୍ରହଣକରିବା



## ଗୃହାଶ୍ରମ

ସକଳ ଆଶ୍ରମର ଲୋକେ ଗୃହସ୍ଥାଶ୍ରମରେ ପୋଷ୍ୟତା ଲାଭ କରନ୍ତି । ଗୃହୀର ସାହାଯ୍ୟ ବ୍ୟତିରେକେ ଅନ୍ୟ ଆଶ୍ରମର ଲୋକେ ନିଜ ନିଜ କାର୍ଯ୍ୟ ନିର୍ବାହ କରି ପାରନ୍ତି ନାହିଁ । ବ୍ରହ୍ମଚାରୀ, ବାନପ୍ରସ୍ଥ ଓ ସନ୍ନ୍ୟାସୀ, ତିନି ଆଶ୍ରମିମାନଙ୍କୁ ଗୃହସ୍ଥ

ନିତ୍ୟ ଅହ୍ଲାଦ ଦାନ କରେ । ଅତଏବ ଗୃହସ୍ଥାଶ୍ରମ ସବୁ ଆଶ୍ରମ-ଠାରୁ ଶ୍ରେୟସ୍କାଶ୍ରମ ଅର୍ଥାତ୍ ସମସ୍ତ ବ୍ୟବହାରରେ ଧୂରନ୍ଧର । ଏଣୁ ମୋକ୍ଷ ଇଚ୍ଛା କରିବା ଲୋକେ ଗୃହସ୍ଥାଶ୍ରମ ଅବଲମ୍ବନ କରନ୍ତୁ । ଯେଉଁ ଗୃହସ୍ଥ ଭୀରୁ ଓ ଦୁର୍ବଳ ସେମାନେ ଆଶ୍ରମଧର୍ମ ପାଳନ କରିପାରନ୍ତି ନାହିଁ । ଯେଉଁମାନେ ଇହ ଓ ପରଜନ୍ମରେ ସୁଖ ଇଚ୍ଛା କରନ୍ତି ସେମାନଙ୍କର ଗୃହସ୍ଥାଶ୍ରମ ଧର୍ମ ଉତ୍ତମରୂପେ ପାଳନ କରିବା କର୍ତ୍ତବ୍ୟ । ଜୀବନର ସକଳ ବ୍ୟବହାର ଗୃହାଶ୍ରମ ଉପରେ ନିର୍ଭର କରେ । ଗୃହାଶ୍ରମ ନ ଥିଲେ, ସନ୍ତାନୋତ୍ପତ୍ତି ନ ହେଲେ, ବ୍ରହ୍ମଚର୍ଯ୍ୟ, ବାନପ୍ରସ୍ଥ ଓ ସନ୍ନ୍ୟାସ ଆଶ୍ରମ କିପରି ହେବ ? ଯେଉଁମାନେ ଗୃହାଶ୍ରମ ନିନ୍ଦା କରନ୍ତି ସେମାନେ ନିନ୍ଦନୀୟ; ଯେଉଁମାନେ ପ୍ରଶଂସା କରନ୍ତି ସେମାନେ ପ୍ରଶଂସନୀୟ ହୁଅନ୍ତି । ଏ କଥା ମନେ ରଖିବାକୁ ହେବ ଯେ, ଯେଉଁ ଗୃହରେ ସ୍ତ୍ରୀ ପୁରୁଷ ସର୍ବଦା ପରସ୍ପର ପ୍ରତି ପ୍ରସନ୍ନ, ବିଦ୍ୱାନ ଓ ପୁରୁଷାର୍ଥୀ ଏବଂ ସକଳ ବ୍ୟବହାର ଜାଣନ୍ତି, ସେହି ଗୃହ କେବଳ ସୁଖ ଶାନ୍ତିର ଆସ୍ପଦ । ବ୍ରହ୍ମଚର୍ଯ୍ୟ ଏବଂ ସ୍ୱୟଂବର ବିବାହ ଗୃହାଶ୍ରମ ସୁଖର ମୂଳକାରଣ ଅଟେ ।



## ଆଚାର୍ଯ୍ୟଙ୍କର ଶିଷ୍ୟମାନଙ୍କ ପ୍ରତି ଉପଦେଶ

ତୁମ୍ଭେମାନେ ସର୍ବଦା ସତ୍ୟ କହ । ଧର୍ମାଚରଣ କର, କଠୋର ବ୍ରହ୍ମଚର୍ଯ୍ୟ ସହକାରେ ସମସ୍ତ ବିଦ୍ୟାଶିକ୍ଷାକର । ଆଚାର୍ଯ୍ୟଙ୍କର ଯାହା ପ୍ରିୟ ତାହାଙ୍କୁ ତାହା ଦିଅ । ତା' ପରେ ବିବାହ କର । ସନ୍ତାନ ଉତ୍ପତ୍ତି କର । ଅସାବଧାନତାରେ କେବେହେଁ ସତ୍ୟ ଓ ଧର୍ମ ପରିତ୍ୟାଗ କର ନାହିଁ । ଆରୋଗ୍ୟକୁ ହେୟ କର ନାହିଁ । ଚାତୁର୍ଯ୍ୟ ଓ ନୈପୁଣ୍ୟ ସମ୍ପାଦନରେ ଅବହେଳା କର ନାହିଁ । ଐଶ୍ୱର୍ଯ୍ୟ ଏବଂ ବୃଦ୍ଧି ସମ୍ପାଦନ କର । ଅଧ୍ୟୟନ ଓ ଅଧ୍ୟାପନାରେ କଦାପି ଅବହେଳା କର ନାହିଁ । ଦେବତା, ବିଦ୍ୱାନ୍ ବ୍ୟକ୍ତି, ମାତା, ପିତା ଓ ଅତିଥି ସେବାରେ ହେଳା କରନାହିଁ, ଧାର୍ମିକ ହୁଅ । ପାପ ପରିତ୍ୟାଗ କର । ଆମ୍ଭମାନଙ୍କର ଭଲ ଗୁଣ ଓ କର୍ମ ଗ୍ରହଣ କର । ମନ୍ଦଗୁଣ ଓ କର୍ମ ତ୍ୟାଗକର । ଆମ୍ଭମାନଙ୍କ ମଧ୍ୟରେ ଯେଉଁ ବ୍ରାହ୍ମଣମାନେ ଉତ୍ତମ ପଣ୍ଡିତ ଏବଂ ଧାର୍ମିକ ସେମାନଙ୍କ ସଙ୍ଗରେ ରହ, ସେମାନଙ୍କ ଠାରେ ବିଶ୍ୱାସ କର । ଦାନ କର । ଶ୍ରଦ୍ଧାରେ ହେଉ, ଅଶ୍ରଦ୍ଧାରେ ହେଉ, ଶୋଭାଡ଼ମ୍ବର ସହକାରେ ହେଉ, ଲଜ୍ଜାରେ ହେଉ ବା ଭୟରେ ହେଉ, ଯେ କୌଣସି ଭାବରେ ହେଉ ଦିଅ । ଯଦି ତୁମ୍ଭର ଧର୍ମରେ, କର୍ମରେ ବା ଉପଦେଶ ପ୍ରଣାଳୀରେ ସନ୍ଦେହ ହୁଏ ତେବେ ଯୋଗୀ ହୁଅନ୍ତୁ ବା ନ ହୁଅନ୍ତୁ, ସଚ୍ଚରିତ୍ର, ନିଷ୍ପକ୍ଷପାତୀ, ଧାର୍ମିକ, ବିଦ୍ୱାନ୍ ବ୍ରାହ୍ମଣମାନଙ୍କ ମାର୍ଗ ଅନୁସରଣ କର । ଏହାହିଁ ତୁମ୍ଭମାନଙ୍କ ପ୍ରତି ଆଦେଶ, ଉପଦେଶ, ବେଦ, ଉପନିଷଦ୍ ଓ ଶିକ୍ଷା ଅଟେ । ଏହିପରି ତୁମ୍ଭମାନଙ୍କର ଆଚାର, ବିଚାର, ଚାଲି, ଚଳନ ହେବା ଉଚିତ ।



## ସୃଷ୍ଟି ରହସ୍ୟ

ସୃଷ୍ଟିର ତତ୍ତ୍ୱ ନିରୂପଣ କରିବା ଅତିଶୟ କଠିନ । କିପରି ଏ ଅନନ୍ତ ବ୍ରହ୍ମାଣ୍ଡ ଉଦ୍ଭୂତ ହେଲା, କିଏ ଏହାର କର୍ତ୍ତା ? କିପରି ଏହା ପରିଚାଳିତ ହେଉଅଛି, ଏ ବିଷୟ ଚିନ୍ତା କଲେ ବିସ୍ମୟର ସୀମା ରହେ ନାହିଁ । ତଥାପି ବେଦ, ପୁରାଣ, ସ୍ମୃତି ଓ ତନ୍ତ୍ର ପ୍ରଭୃତି ମତାନୁସାରେ ଏ ବିଷୟ ଲିଖିତ ହେଲା । ପ୍ରଥମରେ ଯେ ସତ୍ୟ ଓ ଆନନ୍ଦସ୍ୱରୂପ ସେହି କେବଳ ବିଦ୍ୟମାନ ଥିଲେ ଏବଂ ଜଗତ୍ ଅନ୍ଧକାରରେ ଆବୃତ ଥିଲା । ମନର ପ୍ରାଥମିକ ବୀଜ କାମ ପ୍ରଥମତଃ ଉତ୍ପନ୍ନ ହେଲା ଏବଂ ସେଥିରୁ ରେତଃ ଜାତହେଲା । ଅବ୍ୟକ୍ତରୁ ଅଣ୍ଡ, ଅଣ୍ଡରୁ ବ୍ରହ୍ମା ଓ ବ୍ରହ୍ମାରୁ ପ୍ରଜା ସୃଷ୍ଟି ହୁଏ । ତଦନନ୍ତର ସୂର୍ଯ୍ୟ ଓ ଦେବତାମାନଙ୍କର, ଦିକ୍, ଆକାଶାଦି ପଞ୍ଚଭୂତ ଓ ସତ୍ତ୍ୱ, ରଜଃ, ତମ ଏବଂ ଉଦ୍ଭିଦାଦି ଓ ଜୀବଜନ୍ତୁର ସୃଷ୍ଟି-ହେଲା । ପରିଶେଷରେ ମାନବର ସୃଷ୍ଟି । ସୃଷ୍ଟି ସମ୍ବନ୍ଧରେ ଏହା ବେଦର ମତ ।

ପୌରାଣିକମାନେ କହନ୍ତି, ଯେତେବେଳେ ଜଗତ୍ ପାପଭାରରେ ପ୍ରପୀଡ଼ିତ ହୁଏ, ବ୍ରହ୍ମାର ଇଚ୍ଛାନୁସାରେ ତାହା ଜଳମଗ୍ନ ହୁଏ । ଏ ସମୟରେ ଚେତନ, ଅଚେତନ ଓ ଉଦ୍ଭି-ଦାଦି ଚନ୍ଦ୍ର ପର୍ଯ୍ୟନ୍ତ ବିଲୁପ୍ତ ହୁଏ । କେବଳ ବୈବସ୍ୱତ ମନୁ

ଜୀବିତ ଥାଆନ୍ତି । ସେ ସପ୍ତର୍ଷି ମଣ୍ଡଳ ସହିତ ସପରିବାରରେ ଏବଂ ପ୍ରତ୍ୟେକ ନିଷ୍ପାପ ଜୀବର ଏକ ଏକ ଦମ୍ପତି ସହଯୋଗରେ ଏକ ବିରାଟ ଜଳଯାନ ନିର୍ମାଣ କରି ସେଥିରେ ଆଶ୍ରୟ ଗ୍ରହଣ କରନ୍ତି । ସେତିକିବେଳେ ଭଗବାନ୍ ମତ୍ସ୍ୟରୂପ ଧାରଣ କରିଥାଆନ୍ତି । ମନୁ ମତ୍ସ୍ୟରୂପୀ ଭଗବାନଙ୍କ ଶୃଙ୍ଗରେ ନୌକା ବନ୍ଧନ ପୂର୍ବକ ମହାପ୍ରଳୟରୁ ସୃଷ୍ଟି ରକ୍ଷା କରନ୍ତି ।




ମତାନ୍ତରେ




କେହି କେହି ପୌରାଣିକ କହନ୍ତି, ସନାତନ ବିଷ୍ଣୁ ଏହି ବିଶ୍ୱ ବ୍ରହ୍ମାଣ୍ଡର ସୃଷ୍ଟି, ସ୍ଥିତି ଓ ସଂହାରକର୍ତ୍ତା । ସୃଷ୍ଟି ପୂର୍ବରେ କୌଣସି ପଦାର୍ଥ ନ ଥିଲା । ସେହି ସମୟରେ ଇନ୍ଦ୍ରିୟ ଓ ବୁଦ୍ଧିର ଅଗୋଚର ପ୍ରକୃତି, ପୁରୁଷ ଓ ବ୍ରହ୍ମ ବିଦ୍ୟମାନ ଥିଲେ । ତଦୁପରି ବିଷ୍ଣୁଙ୍କର ପ୍ରକୃତି ଓ ପୁରୁଷ ପରି କାଳ ନାମରେ ଆଉ ଏକ ରୂପ ଅଛି । ପ୍ରକୃତି ଓ ପୁରୁଷ ସେହି କାଳ ସହିତ ସୃଷ୍ଟି ସମୟରେ ଯୋଜିତ ଓ ପ୍ରଳୟ କାଳରେ ବିଯୋଜିତ ହୁଅନ୍ତି । ସତ୍ତ୍ୱ, ରଜଃ ଓ ତମଃ ଏହି ଗୁଣତ୍ରୟର ସାମ୍ୟାବସ୍ଥା ମହା ପ୍ରଳୟକାଳରେ ପ୍ରକୃତି ଓ ପୁରୁଷରେ ପୃଥକ୍ ପୃଥକ୍ ଅବସ୍ଥିତ କରନ୍ତି । ଯେଉଁ ସମୟରେ ସୃଷ୍ଟିର କାଳ ସମୁପସ୍ଥିତ ହୁଏ, ପରବ୍ରହ୍ମ ସ୍ୱୀୟ ଇଚ୍ଛାନୁସାରେ ଜଗତର ଉପାଦାନ କାରଣ ସ୍ୱରୂପ ପ୍ରକୃତିରେ ଓ ନିମିତ୍ତ କାରଣ ସ୍ୱରୂପ ପୁରୁଷରେ ଅନୁପ୍ରବିଷ୍ଟ ହୋଇ, ସୃଷ୍ଟିର ଉନ୍ମେଷ କରନ୍ତି । ଏକମାତ୍ର ଭଗବାନ୍ ସୃଷ୍ଟି, ପାଳନ ଓ ସଂହାର କରଣ ହେତୁ ବ୍ରହ୍ମା, ବିଷ୍ଣୁ ଓ ମହେଶ୍ୱର ନାମରେ ଅଭିହିତ ହୁଅନ୍ତି । ସୃଷ୍ଟି ସ୍ଥିତି ପ୍ରଳୟ ପରମପୁରୁଷଙ୍କର ନିତ୍ୟ ସିଦ୍ଧକାର୍ଯ୍ୟ ପ୍ରଥମତଃ ନିର୍ଗୁଣ ପରମ ପୁରୁଷରୁ ତ୍ରିଗୁଣାତ୍ମିକା ମାୟାରେ ପ୍ରକାଶ ହେଲେ ଏକ ତେଜୋମୟ ମୂର୍ତ୍ତିର ଆବିର୍ଭାବ ହୁଏ । ସେହି ମୂର୍ତ୍ତିର ସଗୁଣ ବ୍ରହ୍ମ, ସେ ମୂର୍ତ୍ତିତ୍ରୟରେ ତ୍ରିମୂର୍ତ୍ତି ହୋଇ, ସୃଷ୍ଟି ସ୍ଥିତି ଓ ପ୍ରଳୟ କାର୍ଯ୍ୟର ଅଧିଷ୍ଠାତ୍ରୀ ରୂପେ କୀର୍ତ୍ତିତ ହୋଇ ଥାଆନ୍ତି ।

ପୁଣି କାହାରି ମତରେ




**ପଙ୍ଗୁ ପାରଇ ଲଙ୍ଘି ଗିରି ।**

୨ ରତ୍ନକୋଷ

## ପୁରାଣ ସଂହିତା ।

ମହର୍ଷି କୃଷ୍ଣ ଦ୍ୱୈପାୟନ ବେଦବ୍ୟାସ ମନୁଷ୍ୟମାନଙ୍କୁ ସାଧାରଣଙ୍କର ହୃଦୟଙ୍ଗମ କରିବା ନିମିତ୍ତ ଓ ଜଡ଼ାକ୍ରାନ୍ତ ବିଷୟାସକ୍ତ ମାନବଗଣଙ୍କୁ ଜ୍ଞାନ ସତ୍ପଥରେ ଆନୟନାର୍ଥ, ନାନା କୌଶଳରେ ଓ ଭିନ୍ନ ଭିନ୍ନ ଛନ୍ଦରେ ପୁରାଣଶାସ୍ତ୍ର ଲେଖି ଅଛନ୍ତି ଏହି ପୁରାଣ ପାଠ କିମ୍ବା ଶ୍ରବଣ କଲେ ସକଳ ଶାସ୍ତ୍ର ପାଠ ବା ଶ୍ରବଣର ଫଳ ମିଳେ । ଏହାର ମର୍ମ ଅବଗତ ହେଲେ ଜଗତରେ ଧର୍ମ ସମ୍ବନ୍ଧରେ ଅଜ୍ଞାତ ଆଉ କିଛି ରହେ ନାହିଁ । ଏହି ପୁରାଣ ଶାସ୍ତ୍ର ସର୍ଗ, ପ୍ରତିସର୍ଗ, ବଂଶ, ମନ୍ୱନ୍ତର ଏବଂ ବଂଶାନୁଚରିତ ଏହି ପଞ୍ଚଲକ୍ଷଣ ସମ୍ବଳିତ । ପୁଣି କୌଣସି କୌଣସି ପୁରାଣ ଦଶଲକ୍ଷଣ ସମ୍ବଳିତ । ଏହା ମହାପୁରାଣ ଓ ଉପପୁରାଣ ଏହି ଦୁଇ ଭାଗରେ ବିଭକ୍ତ । ଏହି ମହାପୁରାଣର ସଂଖ୍ୟା ଅଷ୍ଟାଦଶ ଓ ସେଥିରେ ଅନେକ ଶ୍ଳୋକ ଅଛି । ଯଥା :—

୧—ବ୍ରହ୍ମପୁରାଣ ଶ୍ଳୋକ ସଂଖ୍ୟା ୧୦ ସହସ୍ର ।
୨—ପଦ୍ମ ପୁରାଣ ୫୫ ସହସ୍ର ।
୩—ବିଷ୍ଣୁ ପୁରାଣ ୨୩ ସହସ୍ର ।
୪—ବାୟୁ ପୁରାଣ ୨୪ ସହସ୍ର ।
୫—ଭାଗବତ ପୁରାଣ ୧୮ ସହସ୍ର ।
୬—ନାରଦୀୟ ପୁରାଣ ୨୫ ସହସ୍ର ।
୭—ମାର୍କଣ୍ଡେୟ ପୁରାଣ ୯ ସହସ୍ର ।
୮—ଅଗ୍ନି ପୁରାଣ ୧୫ ସହସ୍ର ।
୯—ଭବିଷ୍ୟ ପୁରାଣ ୧୪ ସହସ୍ର ।
୧୦—ବ୍ରହ୍ମବୈବର୍ତ୍ତ ପୁରାଣ ୧୮ ସହସ୍ର ।
୧୧—ଲିଙ୍ଗ ପୁରାଣ ୧୧ ସହସ୍ର ।
୧୨—ବରାହ ପୁରାଣ ୧୪ ସହସ୍ର ।
୧୩—ସ୍କନ୍ଦପୁରାଣ ୮୧ ସହସ୍ର ।
୧୪—ବାମନ ପୁରାଣ ୧୦ ସହସ୍ର ।
୧୫—କୂର୍ମ ପୁରାଣ ୧୭ ସହସ୍ର ।
୧୬—ମତ୍ସ୍ୟପୁରାଣ ୧୪ ସହସ୍ର ।
୧୭—ଗରୁଡ଼ ପୁରାଣ ୧୯ ସହସ୍ର ।
୧୮—ବ୍ରହ୍ମାଣ୍ଡ ପୁରାଣ ୧୯ ସହସ୍ର ଶ୍ଳୋକରେ ନିବଦ୍ଧ ।

ଏଥି ମଧ୍ୟରୁ ବିଷ୍ଣୁ ପୁରାଣ ଶ୍ରୀମଦ୍ ଭାଗବତ, ପଦ୍ମପୁରାଣ, ବ୍ରହ୍ମବୈବର୍ତ୍ତ ପୁରାଣ ଓ ମାର୍କଣ୍ଡେୟ ପୁରାଣ ଏହି ପାଞ୍ଚଖଣ୍ଡି ସାତ୍ତ୍ୱିକ, ବରାହ, ବ୍ରହ୍ମ, ଲିଙ୍ଗ ଓ ମତ୍ସ୍ୟ ତାମସିକ ଏବଂ ଅବଶିଷ୍ଟ ୯ ଖଣ୍ଡି ପୁରାଣ ରାଜସିକ । ଏହି ଅଷ୍ଟାଦଶ ମହାପୁରାଣ ମଧ୍ୟରେ ଶ୍ରୀମଦ୍ ଭାଗବତ ସର୍ବୋତ୍କୃଷ୍ଟ ଉପାଦେୟ ରହି ବିଶେଷ । ଏହି ଗ୍ରନ୍ଥ ଆଧ୍ୟାତ୍ମିକ ତତ୍ତ୍ୱରେ ପରିପୂର୍ଣ୍ଣ । ଅଷ୍ଟାଦଶ ପୁରାଣ ମଧ୍ୟରେ ସ୍କନ୍ଦପୁରାଣ ସର୍ବାପେକ୍ଷା ବୃହତ୍ । ୧୮ ଖଣ୍ଡି ମହାପୁରାଣ ମଧ୍ୟରେ ଯେଉଁ ଯେଉଁ ବିଷୟ ଅଛି ସ୍କନ୍ଦ ପୁରାଣରେ ମଧ୍ୟ ତହି ସମୁଦାୟ ବିଷୟ ଆଲୋଚିତ ହୋଇ ଅଛି ।



## ଉପ ପୁରାଣ ।

ପୁରାଣ ପର ଉପପୁରାଣ ମଧ୍ୟ ୧୮ ଖଣ୍ଡି । ଯଥା :—
୧—ସନତ୍ କୁମାର ୨—ନାରସିଂହ ୩—କାର୍ତ୍ତିକେୟ କଥିତ ୪—ଶିବ ଧର୍ମ ୫—ଦୁର୍ବାସନକୃତ ୬—ନାରଦ କଥିତ ୭—କାପିଳ ୮—ବାମନ ୯—ଔଶାନନ ୧୦—ବ୍ରହ୍ମାଣ୍ଡ । ୧୧—ବାରୁଣ ୧୨—କାଳିକା ୧୩—ମାହେଶ୍ୱର ୧୪—ଶାମ୍ବ ୧୫—ସୌର ୧୬—ପରାଶର ୧୭—ମାରୀଚ ଓ ୧୮—ଭାର୍ଗବ । ବର୍ତ୍ତମାନ ଏଥିମଧ୍ୟରୁ ଅଧିକାଂଶ ଦୁଷ୍ପ୍ରାପ୍ୟ ।



## ମନ୍ୱାଦି ସଂହିତା

ସଂହିତା ୨୦ ଖଣ୍ଡ । ଯଥା :—୧ ମନୁ, ୨ ଯାଜ୍ଞବଲ୍କ୍ୟ, ୩ ବିଷ୍ଣୁ, ୪ ଯମ, ୫ ଅଙ୍ଗିରା, ୬ ବଶିଷ୍ଠ, ୭ ଦକ୍ଷ; ୮ ସମ୍ବର୍ତ୍ତ ୯ ଶାତାତପ, ୧୦ ପରାଶର, ୧୧ ଗୌତମ, ୧୨ ହାରୀତ, ୧୩ ଆପସ୍ତମ୍ବ, ୧୪ ଉଶନା, ୧୫ ବ୍ୟାସ, ୧୬ କାତ୍ୟାୟନ, ୧୭ ବୃହସ୍ପତି, ୧୮ ଦେବଳ, ୧୯ ନାରଦ, ଓ ୨୦ ପୈଠିନସୀ ।



## ଭଗବାନଙ୍କର ଅବତାର ।

( ୧ ) ବିରାଟ ପୁରୁଷ ପ୍ରଥମେ ବ୍ରହ୍ମାରୂପରେ ଅବତୀର୍ଣ୍ଣ ହୋଇ ସନତ୍ କୁମାରାଦ୍ଦି ସୃଷ୍ଟିକରଣାର୍ଥ ବ୍ରହ୍ମଚର୍ଯ୍ୟ ଆଚରଣ କରିଥିଲେ । କୁମାର ଅବତାର ।

( ୨ ) ତଦନନ୍ତର ସେ ରସାତଳଗତ ପୃଥିବୀକୁ ଉଦ୍ଧାର କରିବା ପାଇଁ ବରାହରୂପ ଧାରଣ କରିଥିଲେ ।

( ୩ ) ତୃତୀୟ ଅବତାରରେ ସେ ନାରଦରୂପ ଧାରଣ ପୂର୍ବକ ନିଷ୍କାମ ବୈଷ୍ଣବ ଧର୍ମ କୀର୍ତ୍ତନ କରିଥିଲେ ।

( ୪ ) ଅନନ୍ତର ଭଗବାନ୍ ନରନାରାୟଣାତ୍ମକ ଯୁଗଳମୂର୍ତ୍ତି ଧାରଣ କରି ଅର୍ଥାତ୍ ଅର୍ଦ୍ଧନାରୀଶ୍ୱର ହୋଇ ଦୁଷ୍କର ତପୋନୁଷ୍ଠାନ କଲେ ।

( ୫ ) ଏଥିପରେ ସେ ଅଣିମାଦି ସିଦ୍ଧିସମ୍ପନ୍ନ ଯୋଗିଶ୍ରେଷ୍ଠ କପିଳ-ଅବତାର ହୋଇ ଆସୁରୀ ମୁନିଙ୍କୁ ସାଂଖ୍ୟ-ଶାସ୍ତ୍ର କହିଥିଲେ ।

( ୬ ) ତଦନନ୍ତର ଅତ୍ରିମୁନିଙ୍କ ପୁତ୍ରରୂପେ ଦତ୍ତାତ୍ରେୟ ନାମରେ ଜାତ ହୋଇ ଆସୁରୀ, ଅଳର୍କ ଓ ପ୍ରହ୍ଲାଦାଦିଙ୍କୁ ଆତ୍ମବିଦ୍ୟା ଶିକ୍ଷା ପ୍ରଦାନ କରିଥିଲେ ।

( ୭ ) ତତ୍ପରେ ସେ ଆକୂତୀ ଦେବୀଙ୍କ ଗର୍ଭରେ ରୁଚି ଔରସରେ ଯଜ୍ଞ ନାମ ଧାରଣକରି ଅବତୀର୍ଣ୍ଣ ହୋଇଥିଲେ । ଏ ସ୍ୱାୟମ୍ଭୁବ ମନ୍ୱନ୍ତରକୁ ରକ୍ଷାକରିଥିଲେ ।

( ୮ ) ଅଷ୍ଟମ ଅବତାରରେ ଭଗବାନ୍ ମେରୁଦେବୀଙ୍କ ଗର୍ଭରେ ନାଭିଦେବଙ୍କ ଔରସରେ ଋଷଭ ଅବତାର ହୋଇ-ଥିଲେ । ସେ ବୁଦ୍ଧିମାନ୍ ମାନବମାନଙ୍କୁ ପରମହଂସର ପଥ ଦେଖାଇ ଥିଲେ ।

( ୯ ) ନବମ ଅବତାରରେ ସେ ପୃଥୁ ନାମକ ରାଜା ହୋଇ ଜନ୍ମ ଗ୍ରହଣ କରିଥିଲେ । ଏବଂ ପୃଥିବୀ ଦୋହନ କରି ନାନାବିଧ ରତ୍ନ ଓ ଔଷଧି ଆବିଷ୍କାର କରିଥିଲେ ।

(୧୦) ତଦନନ୍ତର ସେ ମତ୍ସ୍ୟରୂପୀ ହୋଇ ଚାକ୍ଷୁଷ ମନ୍ୱନ୍ତରରେ ଜଳପ୍ଲାବନକାଳେ ମହୀରୂପ ନୌକାରେ ଆରୋହଣ କରାଇ, ବୈବସ୍ୱତମନୁଙ୍କୁ ରକ୍ଷା କରିଥିଲେ ।

(୧୧) ଏକାଦଶ ଅବତାରରେ ଭଗବାନ୍ ସୁରାସୁରଙ୍କ ସମୁଦ୍ର-ମନ୍ଥନ ସମୟରେ କୂର୍ମରୂପ ଧାରଣ କରି, ମନ୍ଦର ଭୂଧରକୁ ପୃଷ୍ଠରେ ବହନ କରିଥିଲେ ।

(୧୨) ଅନନ୍ତର ସେ ଧନ୍ୱନ୍ତରିରୂପେ ସାଗର ଗର୍ଭରୁ ଅମୃତ ଆଣିଥିଲେ ।

(୧୩) ତତ୍ପରେ ସେ ମୋହିନୀ ମୂର୍ତ୍ତି ଧାରଣ କରି ଅସୁରଗଣଙ୍କୁ ମୋହିତ କଲେ ଓ ଦେବଗଣଙ୍କୁ ଅମୃତ ପାନ କରାଇ ଥିଲେ ।

(୧୪) ଚତୁର୍ଦ୍ଦଶ ଅବତାରରେ ଭଗବାନ୍ ନରସିଂହ-ରୂପ ଧାରଣ କରି ଅତ୍ୟାଚାରୀ ହିରଣ୍ୟକଶିପୁଙ୍କୁ ସଂହାର କରି ଥିଲେ । ଏହା ସତ୍ୟ ଯୁଗର ଶେଷ ଅବତାର ।

(୧୫) ତତ୍ପରେ ସେ ବାମନ ରୂପେ ଅବତୀର୍ଣ୍ଣ ହୋଇ ବଳି ରାଜାଙ୍କ ନିକଟରୁ ତ୍ରିପାଦ ଭୂମି ଭିକ୍ଷା ଗ୍ରହଣ କଲେ ।

(୧୬) ଅନନ୍ତର ପରଶୁରାମ ଅବତାରରେ ପୃଥିବୀକୁ ୨୧ ବାର ନିଃକ୍ଷତ୍ରିୟ କଲେ ।

(୧୭) ତତ୍ପରେ ସେ ସତ୍ୟବତୀଙ୍କ ଗର୍ଭରେ ପରାଶର ଋଷିଙ୍କ ଔରସରେ ବ୍ୟାସରୂପେ ଜାତ ହୋଇ ବେଦବୃକ୍ଷର ଶାଖା କରିଥିଲେ ।

(୧୮) ତଦନନ୍ତର ରାମରୂପେ ଅବତୀର୍ଣ୍ଣ ହୋଇ ସାଗରବନ୍ଧନ ପ୍ରଭୃତି କାରକାର୍ଯ୍ୟ ସମ୍ପନ୍ନ କରିଥିଲେ ।

(୧୯।୨୦) ତତ୍ପରେ ସେ ଯଦୁବଂଶରେ ରାମକୃଷ୍ଣ ଯୁଗଳ ରୂପେ ଅବତୀର୍ଣ୍ଣ ହୋଇ ଧରଣୀର ଭାର ହରଣ କରିଥିଲେ ।

(୨୧) ଏଥିଉତ୍ତାରୁ ସେ ବୁଦ୍ଧରୂପେ ଜାତ ହୋଇ ଦେବବିଦ୍ୱେଷୀ ବ୍ୟକ୍ତିମାନଙ୍କୁ ବିମୋହିତ କରିଥିଲେ ।

(୨୨) ପୁଣି କଳି ଅବସାନରେ ରାଜାମାନେ ଅଧାର୍ମିକ ହୋଇ ଉଠିଲେ ସେ କଳ୍କି ଅବତାର ହେବେ । ଏହି କଳି ଶେଷରେ ଶମ୍ଭଳ ( ସମ୍ବଲପୁର ) ବାସୀ ବିଷ୍ଣୁଶର୍ମା ନାମକ ବ୍ରାହ୍ମଣ ଔରସରେ ଜନ୍ମଗ୍ରହଣ କରିବେ । ବୈଶାଖମାସ ଶୁକ୍ଳ ଦ୍ୱାଦଶୀରେ ଜାତ ହେବେ । ସେ ଭାର୍ଗବଙ୍କର ନିକଟରୁ ଶାସ୍ତ୍ର ଶିକ୍ଷା କରି, ମହାଦେବଙ୍କ ନିକଟରୁ ସର୍ବଗ ଅଶ୍ୱ ଓ ସର୍ବଜ୍ଞ ଶୁକ ଲାଭ କରିବେ । ତତ୍ପରେ ଶାନ୍ତନୁନନ୍ଦନ ଦେବାପି ଓ ସୂର୍ଯ୍ୟକୁଳୋଦ୍ଭବ ମରୁ ଓ ନିଜ ଭ୍ରାତାମାନଙ୍କ ସଙ୍ଗରେ ବେଦ, ବର୍ଣ୍ଣାଶ୍ରମ ଧର୍ମ ପୁନଃ ସଂସ୍ଥାପନ ପାଇଁ ବଦ୍ଧପରିକର ହେବେ ଓ ଦେବଦତ୍ତ ଅଶ୍ୱରେ ଆରୋହଣ କରି ଦେବଦତ୍ତ ଅସି ଗ୍ରହଣ କରିବେ ଏବଂ ମ୍ଳେଚ୍ଛମାନଙ୍କୁ ସମୂଳେ ନିର୍ମୂଳ କରି ଅଶ୍ୱମେଧ ଯଜ୍ଞର ଅନୁଷ୍ଠାନ ପୂର୍ବକ, ଦକ୍ଷିଣାରୂପେ ସମଗ୍ର ପୃଥିବୀକୁ ବ୍ରାହ୍ମଣସାତ୍ କରିବେ । ପରିଶେଷରେ ମହାପ୍ରଳୟ ଉପସ୍ଥିତ ହୋଇ ପୃଥିବୀ ଧ୍ୱଂସ ହେଲେ ସେ ଅନ୍ତର୍ଦ୍ଧାନ ହେବେ ।

ଏହିସବୁ ଅବତାରମାନଙ୍କ ମଧ୍ୟରୁ କେହି ଅଂଶ, କେହି ବା କଳା । ଶ୍ରୀକୃଷ୍ଣ ଷୋଳକଳାରେ ପରିପୂର୍ଣ୍ଣ ଥିଲେ ।

ଯେତେବେଳେ ମର୍ତ୍ତ୍ୟବାସୀ ଦୈତ୍ୟମାନଙ୍କ ଦ୍ୱାରା ପ୍ରପୀଡ଼ିତ ହୁଅନ୍ତି ସେତେବେଳେ ଭଗବାନ୍ ଯୁଗେ ଅବତୀର୍ଣ୍ଣ ହୋଇ ମାନବମାନଙ୍କୁ ଉଦ୍ଧାର କରନ୍ତି । ପବିତ୍ର ହୋଇ ଭକ୍ତି ସହିତ ଭଗବାନଙ୍କ ଜନ୍ମ ରହସ୍ୟ ଦୁଇସନ୍ଧ୍ୟା ପାଠ କଲେ ସମସ୍ତ ଦୁଃଖ ବିନଷ୍ଟ ହୋଇ ଥାଏ ।



## ଷଟ୍‌ଚକ୍ର ନିରୂପଣ ।

ମାନବ ଦେହରେ ସପ୍ତ ସମୁଦ୍ର, ସପ୍ତଦ୍ୱୀପା ପୃଥିବୀ, ସୁମେରୁ ଗିରି, ସମସ୍ତ ନଦ ନଦୀ, ପର୍ବତ, ମୁନି, ଋଷି, ଗ୍ରହ, ନକ୍ଷତ୍ର, ପୁଣ୍ୟତୀର୍ଥ ବାସ କରୁଅଛି । ବିଶେଷତଃ ଆକାଶ, ବାୟୁ ଅଗ୍ନି, ଜଳ, ପୃଥିବୀ ପ୍ରଭୃତି ପଞ୍ଚଭୂତ, ସ୍ୱର୍ଗ, ମର୍ତ୍ତ୍ୟ, ପାତାଳ ଏବଂ ଜଗତ ମଧ୍ୟରେ ଯେତେ ଜୀବ ଅଛି, ସେ ସକଳ ଦେହ ମଧ୍ୟରେ ଅବସ୍ଥିତି କରୁଅଛି ଏବଂ ସେହି ସକଳ ବସ୍ତୁ ମେରୁଦଣ୍ଡ ବେଷ୍ଟନ ପୂର୍ବକ ସ୍ୱ ସ୍ୱ କାର୍ଯ୍ୟ ସମ୍ପାଦନରେ ନିଯୁକ୍ତ ଅଛି । ଅଧିକନ୍ତୁ ମାନବଦେହର ଅଭ୍ୟନ୍ତରରେ ସାର୍ଦ୍ଧତ୍ରିକୋଟି ନାଡ଼ୀ ଅଛି, ସେମାନଙ୍କ ମଧ୍ୟରୁ ଚତୁର୍ଦ୍ଦଶ ନାଡ଼ୀ ଶ୍ରେଷ୍ଠ । ଯଥା :— ଇଡ଼ା, ପିଙ୍ଗଳା, ସୁଷୁମ୍ନା, ହସ୍ତିଜିହ୍ୱା, କୁହୁ, ସରସ୍ୱତୀ, ପୂଷା ଶଙ୍ଖିନୀ, ଗାନ୍ଧାରୀ, ପୟସ୍ୱିନୀ, ବାରୁଣୀ, ଅଳମ୍ବୁଷା, ବିଶ୍ୱୋଦରୀ ଯଶସ୍ୱିନୀ । ଏମାନଙ୍କ ମଧ୍ୟରେ ଇଡ଼ା, ପିଙ୍ଗଳା ଓ ସୁଷୁମ୍ନା ଏହି ତିନି ନାଡ଼ୀ ଶ୍ରେଷ୍ଠତର ଏବଂ ଏମାନଙ୍କ ମଧ୍ୟରୁ ସୁଷୁମ୍ନା ସର୍ବଶ୍ରେଷ୍ଠ । ଏହି ସୁଷୁମ୍ନା ନାଡ଼ୀ ମୂଳାଧାରଠାରୁ ସହସ୍ରାର ପର୍ଯ୍ୟନ୍ତ ସ୍ଥିତ । ଯେପରି ବୃହତ୍ ବ୍ରହ୍ମାଣ୍ଡର ମଧ୍ୟଦେଶରେ ସୁମେରୁ ପର୍ବତରେ ଭୂର୍ଲୋକାଦି ସପ୍ତସ୍ୱର୍ଗ ଅଛି, ତଦ୍ରୂପ ନର ଦେହର ମେରୁଦଣ୍ଡରେ ଏହି ସୁଷୁମ୍ନା ନାଡ଼ୀ ଆଶ୍ରୟ କରି, ଛଅ ଗ୍ରନ୍ଥିରେ ମୂଳାଧାରାଦି ପର୍ଯ୍ୟନ୍ତ ପଦ୍ମାକାରେ ଛଅ ପଦ୍ମ ଅଛି । ଯଥା :— ମୂଳାଧାର, ସ୍ୱାଧିଷ୍ଠାନ, ମଣିପୁର, ଅନାହତ, ବିଶୁଦ୍ଧ, ଆଜ୍ଞାଖ୍ୟ ସର୍ବୋପରି ସହସ୍ରାର, ଯାହାକୁ ସତ୍ୟଲୋକ ବୋଲି ବର୍ଣ୍ଣନା କରିଯାଏ । ଏହି ସକଳ ପ୍ରଧାନ ନାଡ଼ୀ ଅଧୋମୁଖୀ ବିସତନ୍ତୁ ସମ ଅର୍ଥାତ୍ ପଦ୍ମସୂତ୍ର ପରି ଅତି ସୂକ୍ଷ୍ମ, ତାହାକୁ ବ୍ରହ୍ମରନ୍ଧ୍ର କହନ୍ତି । ଏହି ଶିବାନାଡ଼ୀକୁ ଯୋଗିଗଣ ଅମୃତାନନ୍ଦକାରକ ବୋଲି ବର୍ଣ୍ଣନା କରି ଅଛନ୍ତି । ସେହି ସୁଷୁମ୍ନାର ବାମଭାଗରେ ଇଡ଼ା ଚନ୍ଦ୍ରସ୍ୱରୂପ ଓ ଦକ୍ଷିଣଭାଗରେ ପିଙ୍ଗଳା ସୂର୍ଯ୍ୟସ୍ୱରୂପ । ଏହି ଦୁଇ ନାଡ଼ୀ ଧନୁକାକାରରେ ପ୍ରତ୍ୟେକେ ଚକ୍ରେ ଚକ୍ରେ ବେଷ୍ଟନ କରି, ମୂଳାଧାର ଠାରୁ ଆଜ୍ଞାଚକ୍ରର ଜାନୁରେ ଭ୍ରୂସନ୍ଧିହିତ ନାନାବିଷୟ ପର୍ଯ୍ୟନ୍ତ ଯାଇ ସୁଷୁମ୍ନାରେ ମିଳିତ ହୋଇଅଛି; କେବଳ ଆଜ୍ଞାଚକ୍ର ବ୍ୟତୀତ ବିଶୁଦ୍ଧ ଚକ୍ର ପର୍ଯ୍ୟନ୍ତ ପଞ୍ଚପଦ୍ମକୁ ବେଷ୍ଟନ କରି ରହିଅଛି । ସେମାନେ ସକଳ ଶରୀରରେ ଏକ ଏକ ଅଙ୍ଗପର୍ଯ୍ୟନ୍ତ ଯାଇ ନିବୃତ୍ତହୋଇ, ତତ୍ତତ୍ ସ୍ଥାନୀୟ କାର୍ଯ୍ୟ ସମ୍ପନ୍ନ କରେ । ଏହି ସକଳ ନାଡ଼ୀ ଶାଖା ପ୍ରଶାଖାକ୍ରମେ ସାର୍ଦ୍ଧତ୍ରିକୋଟି ନାଡ଼ୀ, ଓତପ୍ରୋତ ଅର୍ଥାତ୍ ବସ୍ତ୍ରର ଟାଣି ପଡ଼ିଆ ପରି ସର୍ବ ଶରୀରକୁ ବ୍ୟାପି ରହିଅଛି । ଏହି ସକଳ ନାଡ଼ୀ ବାୟୁ ସଞ୍ଚାର ରହିତ ଶୁଦ୍ଧ ଭୋଗକୁ ହରଣ କରନ୍ତି ।



## ମୂଳାଧାର ଚକ୍ର

ଗୁହ୍ୟ ଦ୍ୱାରର ଊର୍ଦ୍ଧ୍ୱରେ ଲିଙ୍ଗମୂଳର ଅଧଃ ଚତୁର ଅଙ୍ଗୁଳ ବିସ୍ତୃତ ଯେ ସ୍ଥାନ ଅଛି, ତାହାକୁ ମୂଳାଧାର ପଦ୍ମ ବୋଲିଯାଏ । ଏହି ପଦ୍ମ ବନ୍ଧୁକ ପୁଷ୍ପପରି ରକ୍ତିମାକାର ଏବଂ ବ ଶ ଷ ସ ଏହି ଚତୁର୍ବର୍ଣ୍ଣରେ ଚତୁର୍ଦ୍ଦଳ ବିଶିଷ୍ଟ ଅଟେ, ତତ୍‌କର୍ଣ୍ଣିକାର ମଧ୍ୟରେ ତ୍ରିକୋଣାକାର ଯୋନିମଣ୍ଡଳ ଅଛି, ତାହାମଧ୍ୟରେ ବିଦ୍ୟୁଲ୍ଲତାକାର ପରଦେବତା କୁଣ୍ଡଳିନୀ ଶକ୍ତି ଅବସ୍ଥାନ କରୁଛନ୍ତି । ସେ ସର୍ପାକୃତି ସାର୍ଦ୍ଧତ୍ରିସଙ୍କୁଚିତ ଶଙ୍ଖାବର୍ତ୍ତ ପରି ବଳୟାକାର ହୋଇ ସୁଷୁମ୍ନା ନାଡ଼ୀର ଦ୍ୱାର ଅବରୋଧ କରିଅଛି ଅର୍ଥାତ୍ ଯେ ଦ୍ୱାରବାଟେ ବ୍ରହ୍ମଦ୍ୱାରକୁ ଗମନ କରିବାକୁ ହୁଏ, କୁଣ୍ଡଳିନୀଦେବୀ ସୁପ୍ତାବସ୍ଥାରେ ସେହି ଦ୍ୱାର ସମ୍ମୁଖରେ ଆଚ୍ଛାଦନ କରି ରହିଅଛି । ଅତଏବ ଯୋଗିଗଣ ପ୍ରଥମତଃ କୁଣ୍ଡଳିନୀ ଚେତନ କରିବାର ଉପାୟ ଅବଲମ୍ବନ କରି ଥାଆନ୍ତି । ବିଶେଷତଃ କୁଣ୍ଡଳିନୀ ଶକ୍ତି ବାକ୍ୟର ଅଧିଷ୍ଠାତ୍ରୀ ଦେବୀ ଏବଂ ଗୁପ୍ତବର୍ଣ୍ଣରୂପା, ସୁତରାଂ ମୂଳାଧାରରେ ଉକ୍ତ ସୁଷୁମ୍ନାଦ୍ୱାରରେ ଆଘାତ କଲେ, ବର୍ଣ୍ଣ ସକଳ ଅବ୍ୟକ୍ତ ନାଦରୁ ବିକୃତ ରୂପେ ବହିର୍ଗତ ହୁଏ ।

# ଷଟ୍‌ଚକ୍ର ନିରୂପଣ ।



ଯେପରି ବୀଣାଯନ୍ତ୍ରର ତାର ମଧ୍ୟରେ ଅବ୍ୟକ୍ତରୂପ ସ୍ୱରର ଅବସ୍ଥାନ ଅଛି ମୂଳରେ ଆଘାତ ପାଇଲେ ସ୍ୱର ସକଳର ବ୍ୟକ୍ତରୂପ ଅଧିଷ୍ଠାନ ହୁଏ, ସେହିପରି କୁଣ୍ଡଳିନୀ ଶକ୍ତିର ପ୍ରଭାବରେ ବାକ୍ୟର ଉତ୍ପତ୍ତି ହୁଏ, ସୁତରାଂ ତାହାଙ୍କୁ ବାଗ୍‌ଦେବୀ ବୋଲି ତନ୍ତ୍ରରେ ଉକ୍ତ ହୋଇଅଛି । 'କୁଳ' ଶବ୍ଦରେ ଯୋନି; ସେସ୍ଥାନ ବିଷୟରେ କୁଣ୍ଡଳିନୀ ବୋଲି ଆଖ୍ୟାତ ହୋଇଅଛି । ଏହିଠାରେ କାମବୀଜ ବିରାଜମାନ, ଯେହି ବୀଜ ଇଚ୍ଛାଶକ୍ତି ଓ ଜ୍ଞାନଶକ୍ତିର ସହିତ ଯୁକ୍ତ ହୋଇ ସର୍ବଶରୀରସ୍ଥ ପ୍ରତିଚକ୍ରରେ ଭ୍ରମଣ କରେ । ପୁଣି ତହିଁ ସ୍ୱୟମ୍ଭୁନାମେ ଲିଙ୍ଗ ଏବଂ ଡାକିନୀ-ନାମ୍ନୀ ଶକ୍ତି ଅଧିଷ୍ଠାତ୍ରୀ ଅଛନ୍ତି । ସଦ୍‌ଗୁରୁର ଉପଦେଶକ୍ରମେ ବିଧିମତ କୁମ୍ଭକଦ୍ୱାରା କୁଳ କୁଣ୍ଡଳିନୀଙ୍କୁ ଧ୍ୟାନ କଲେ ଅଚିରକାଳରେ ସର୍ବସିଦ୍ଧେଶ୍ୱର ହୋଇ ପାରିଯାଏ ।



## ସ୍ୱାଧିଷ୍ଠାନ ଚକ୍ର

ଲିଙ୍ଗମୂଳରେ ଯେ ଦ୍ୱିତୀୟ ପଦ୍ମ ଅଛି, ତାହାର ନାମ ସ୍ୱାଧିଷ୍ଠାନ ଚକ୍ର । ଏହି ପଦ୍ମ ରକ୍ତବର୍ଣ୍ଣ ଏବଂ ବ ଭ ମ ଯ ର ଲ ଏହି ଷଡ୍‌ବର୍ଣ୍ଣେ ଷଡ୍‌ଦଳ ବିଶିଷ୍ଟ । ସେଠାରେ ବାଳାଖ୍ୟ ନାମରେ ସିଦ୍ଧଲିଙ୍ଗ ଏବଂ ରାକିଣୀ ନାମରେ ଶକ୍ତି ଅଧିଷ୍ଠାନ କରନ୍ତି । ଯେ ସାଧକ ସର୍ବଦା ଯେହି ସୁନ୍ଦର ସ୍ୱାଧିଷ୍ଠାନ ପଦ୍ମର ଧ୍ୟାନ କରିବାକୁ ସକ୍ଷମ ହୁଏ, ସେ ସର୍ବଜ୍ଞ ହୁଏ ।



## ମଣିପୂରକ ଚକ୍ର

ନାଭିମୂଳରେ ଯେ ତୃତୀୟ ପଦ୍ମ ଅଛି, ତାହାର ନାମ ମଣିପୂରକ ଚକ୍ର । ଏହି ପଦ୍ମ ସ୍ୱର୍ଣ୍ଣବର୍ଣ୍ଣ ଏବଂ ଡ ଢ ଣ ତ ଥ ଦ ଧ ନ ପ ଫ ଏହି ଦଶବର୍ଣ୍ଣରେ ଦଶଦଳ ବିଶିଷ୍ଟ ଅତି ସୁଶୋଭିତ । ସେଠାରେ ରୁଦ୍ରାଖ୍ୟ ସିଦ୍ଧଲିଙ୍ଗ ଏବଂ ଲାକିନୀ ନାମ୍ନୀ ଶକ୍ତି ଅଧିଷ୍ଠାତ୍ରୀ ଅଛନ୍ତି । ଏହି ମଣିପୂରକ ଚକ୍ରକୁ ବିଧିମତ ଧ୍ୟାନ କରି ପାରିଲେ ଯୋଗୀ ପାତାଳସିଦ୍ଧ ହୁଅନ୍ତି । ଏହି ପଦ୍ମର ଊର୍ଦ୍ଧ୍ୱଦେଶରେ ଦ୍ୱାଦଶକଳାଯୁକ୍ତ ସୂର୍ଯ୍ୟମଣ୍ଡଳରୂପ କାଳାଗ୍ନି ଅଛି । ଏହି କାଳାନଳ ଜଗଦୀଶ୍ୱରଙ୍କର ଅଂଶ ଅର୍ଥାତ୍ ସାକ୍ଷାତ୍ ମହାକାଳ ସ୍ୱରୂପ । ଏହି ଅଗ୍ନି ଜୀବଦେହରେ ପାଚକାଗ୍ନି ରୂପେ ବାସ କରି ସମୁଦାୟ ଆହାରୀୟ ବସ୍ତୁ ପରିପାକ କରନ୍ତି । ଅତଏବ ଯୋଗୀମାନେ ଉପବାସାଦି ଅନଶନରୁ ବିରତ ହୋଇ ଯଥାକାଳେ ନିୟମାନୁସାରେ ଏହି ବୈଶ୍ୱାନରଙ୍କୁ ଅନ୍ନାଦି ଆହୂତି ପ୍ରଦାନ କରନ୍ତି ।



## ଅନାହତ ଚକ୍ର

ଜୀବ ହୃଦୟରେ ଅତି ସୁଶୋଭିତ ଯେ ଚତୁର୍ଥ ପଦ୍ମ ଅଛି, ତାହାର ନାମ ଅନାହତ ଚକ୍ର । ସେ ପଦ୍ମ ରକ୍ତବର୍ଣ୍ଣ ଏବଂ 'କ ଖ ଗ ଘ ଙ ଚ ଛ ଜ ଝ ଞ ଟ ଠ' ଏହି ଦ୍ୱାଦଶବର୍ଣ୍ଣରୂପ ଦ୍ୱାଦଶ ଦଳାନ୍ୱିତ ଅଟେ । ସେଠାରେ ପିନାକ ନାମ ସିଦ୍ଧଲିଙ୍ଗ ଏବଂ କାକିନୀ ନାମ୍ନୀ ଶକ୍ତି ଅବସ୍ଥାନ କରନ୍ତି । ଏହି ପଦ୍ମର କର୍ଣ୍ଣିକାର ମଧ୍ୟରେ ଷଟ୍‌କୋଣାକାର ପୀଠରେ 'ଯଂ' ଇତ୍ୟାକାର ବର୍ଣ୍ଣ ଶୋଭିତ । ସେହି ମହାର ବାୟୁମନ୍ତ୍ର । ସେଥିରେ ପ୍ରାଣନାମକ ବାୟୁ ନିୟତ ଅବସ୍ଥିତି କରେ । ସେହି ପ୍ରାଣ ପୂର୍ବଜନ୍ମକୃତ କର୍ମଫଳରେ ବାଧ୍ୟ ଅର୍ଥାତ୍ ପ୍ରାପ୍ତାଭିମାନିନୀ ହେବାରୁ ନାନା-ପ୍ରକାର ବାସନାରେ ଅଳଂକୃତ ହୋଇ ଜୀବର ହୃଦୟରେ ବାସ କରେ । କାର୍ଯ୍ୟଭେଦରେ ସେହି ଏକ ପ୍ରାଣବାୟୁ ବିବିଧ ନାମ ଧାରଣ କରେ, ଯଥା :—ପ୍ରାଣ, ଅପାନ, ସମାନ, ଉଦାନ, ବ୍ୟାନ ଏହି ପଞ୍ଚପ୍ରାଣ ଶରୀର ଅନ୍ତଃସ୍ଥ ହୁଅନ୍ତି ଅର୍ଥାତ୍ ହୃଦୟେ ପ୍ରାଣ, ମୂଳାଧାରେ ଅପାନ, ନାଭିମଣ୍ଡଳେ ସମାନ, କଣ୍ଠଦେଶେ ଉଦାନ ବାସ କରନ୍ତି ଏବଂ ବ୍ୟାନ ବାୟୁ ସର୍ବ ଶରୀରରେ ଭ୍ରମଣ କରେ । ପୁଣି ନାଗ, କୂର୍ମ, କୃକର, ଦେବଦତ୍ତ, ଧନଞ୍ଜୟ ଏହି ପଞ୍ଚପ୍ରାଣ ବହିଃସ୍ଥ ବୋଲି ଗଣ୍ୟ ହୋଇଅଛି । କ୍ଷୁଧା, ତୃଷା, ଉଦ୍‌ଗାର, ହିକ୍କା, ଜୃମ୍ଭକ ଏହି ପଞ୍ଚକର୍ମ ଏହି ବହିଃସ୍ଥ ପଞ୍ଚବାୟୁ ଦ୍ୱାରା ସମ୍ପନ୍ନ ହୁଏ । କିନ୍ତୁ ଏହି ଦଶପ୍ରାଣ ଯଦ୍ୟପି ପ୍ରଧାନ, ତଥାପି ପ୍ରାଣାଦି ଅନ୍ତଃସ୍ଥ ପଞ୍ଚପ୍ରାଣକୁ ଅତି ପ୍ରଧାନ କୁହାଯାଏ । ତନ୍ମଧ୍ୟରୁ ସର୍ବସାଧାରଣ ବ୍ୟକ୍ତି ପ୍ରତି ଭୋଜନର ପୂର୍ବରେ ଉକ୍ତ ଅନ୍ତଃସ୍ଥ ପଞ୍ଚପ୍ରାଣକୁ ଅଗ୍ରେ ପଞ୍ଚଗ୍ରାସ ପ୍ରଦାନର ବିଧି ଅଛି । ଅତଏବ ହୃଦୟସ୍ଥ ଏହି

ଅନାହତ ଚକ୍ର ଓ ତଦନ୍ତ ପଦାର୍ଥ ସକଳ ଯେ ସାଧକ ଧ୍ୟାନ କରିବାକୁ ସକ୍ଷମ ହୁଏ, ସେ ଜିତେନ୍ଦ୍ରିୟ ହୁଏ ଏବଂ ତାହାର ଖେଚରତ୍ୱ, ଭୂଚରତ୍ୱ, ଅମରତ୍ୱ, ତ୍ରିକାଳଜ୍ଞତ୍ୱ ପ୍ରଭୃତି ସର୍ବସିଦ୍ଧି ହୁଏ ।



## ବିଶୁଦ୍ଧ ଚକ୍ର

କଣ୍ଠମୂଳରେ ଯେ ପଞ୍ଚମ ପଦ୍ମ ଅଛି, ତାହାର ନାମ ବିଶୁଦ୍ଧ ଚକ୍ର । ସେହି ପଦ୍ମ ଧୂମ୍ରବର୍ଣ୍ଣ ଏବଂ 'ଅ ଆ ଇ ଈ ଉ ଊ ଋ ୠ ଌ ଏ ଐ ଓ ଔ ଅଂ ଅଃ' ଏହି ଷୋଡ଼ଶବର୍ଣ୍ଣାତ୍ମିକା ଷୋଡ଼ଶ-ଦଳ ସମନ୍ୱିତ ଅଟେ । ସେଠାରେ ହୁଟଲାନ୍ତ ନାମେ ସିଦ୍ଧ ଲିଙ୍ଗ ଏବଂ ଶାକିନୀ ନାମ୍ନୀ ଶକ୍ତିର ଅବସ୍ଥାନ । ଯେ ସାଧକ ସେହି ଚକ୍ରକୁ ନିସ୍ତୃତ ଧ୍ୟାନ କରନ୍ତି ସେ ସାକ୍ଷାତ୍ ବାଗୀଶ୍ୱର ଓ ବଜ୍ରସମ ଦୃଢ଼ ଶରୀର ହୋଇ ଚିରଜୀବୀ ହୁଅନ୍ତି ।



## ଆଜ୍ଞା ଚକ୍ର

ଭ୍ରୂଦ୍ୱୟ ମଧ୍ୟରେ ଯେ ଷଷ୍ଠ ପଦ୍ମ ଅଛି, ତାହାର ନାମ ଆଜ୍ଞାଚକ୍ର । ସେହି ପଦ୍ମ ଶୁକ୍ଳବର୍ଣ୍ଣ ଏବଂ 'ହ କ୍ଷ' ଏହି ଦୁଇ ବର୍ଣ୍ଣରେ ଦ୍ୱିଦଳାନ୍ୱିତ ଅଟେ । ସେଠାରେ ଅର୍ଦ୍ଧନାରୀଶ୍ୱର ସିଦ୍ଧ ଲିଙ୍ଗ ଏବଂ ହାକିନୀ ଶକ୍ତି ଅଧିଷ୍ଠାନ କରନ୍ତି । ସେହି ପଦ୍ମମଧ୍ୟରେ କର୍ଣ୍ଣିକାରେ ଶରଚ୍ଚନ୍ଦ୍ର ପରି ଠଂ ଜ୍ୟୋତିର୍ଲିଙ୍ଗ ଯୋଗିଗଣଙ୍କର ନିତ୍ୟଧ୍ୟେୟ । ତାହା ମଧ୍ୟରେ ନବ କୋଣ ଏକ ଯନ୍ତ୍ର ଅଛି । ସେହି ଯନ୍ତ୍ର ମଧ୍ୟରେ ଚନ୍ଦ୍ରବୀଜ ଦେଦୀପ୍ୟମାନ ଅଛନ୍ତି । ସେହି ପରମ ତେଜୋରୂପ ପରଂବ୍ରହ୍ମ ଶିବରୂପୀ ହଂସ ଆକାରରେ ବିରାଜମାନ । ଯାହା ଜ୍ଞାନରେ ଯୋଗିଗଣ ପରମ ହଂସ ନାମରେ ପରିଚିତ ହୁଅନ୍ତି ଏବଂ ପରମ ସିଦ୍ଧି ଲାଭ କରନ୍ତି । ସେହି ପଦ୍ମମୂଳରେ ଇଡ଼ା ପିଙ୍ଗଳା ଉଭୟ ନାଡୀ ସୁଷୁମ୍ନା ନାଡ଼ୀରେ ମିଳିତ ହୋଇଅଛି । ତନ୍ନିମିତ୍ତ ଏହି ସ୍ଥାନ ପ୍ରୟାଗ ତୀର୍ଥ ନାମରେ କଥିତ । କାରଣ, ଇଡ଼ା, ପିଙ୍ଗଳା ଓ ସୁଷୁମ୍ନା ଗଙ୍ଗା, ଯମୁନା ଓ ସରସ୍ୱତୀ ବୋଲି ବର୍ଣ୍ଣିତ । ସେହି ତିନିଗୁରୁ ନିଯୋଗ ଦ୍ୱାରା ତ୍ରିବେଣୀ ବୋଲାଯାଏ । ତଦୂର୍ଦ୍ଧ୍ୱରେ ଲଲାଟସ୍ଥ ପୀଠସ୍ଥ ସପ୍ତମ ପଦ୍ମ ବୋଲି ଉଲ୍ଲିଖିତ । ତାହା ସର୍ବ ଶାସ୍ତ୍ରରେ ଗୁହ୍ୟତମ ଅର୍ଥାତ୍ ଷଟ୍‌ଚକ୍ରର ଅତିରିକ୍ତ । ସେହିଠାରେ ନାଦ ବିନ୍ଦୁ ଏବଂ ଚିତ୍ତଶକ୍ତି ବିରାଜିତ ଅଛନ୍ତି । ମୂଳାଧାରାଦି ବିଶୁଦ୍ଧାଖ୍ୟ ପଞ୍ଚଚକ୍ର ଧ୍ୟାନର ଯେ ଫଳ, ତାହା ସମ୍ୟକ୍ ରୂପେ ସେହି ଏକ ଆଜ୍ଞାଚକ୍ର ଧ୍ୟାନରେ ହୁଏ । ବିଶେଷତଃ ଯେ ସାଧକ ସେହି ଚକ୍ରକୁ ଧ୍ୟାନ କରି ରସନାକୁ ତାଳୁମୂଳରେ ନିବିଷ୍ଟ ପୂର୍ବକ ସହସ୍ରାରଚ୍ୟୁତ ଅମୃତ ପାନ କରିବାରେ ସକ୍ଷମ ହୁଏ, ସେ ଯକ୍ଷ, ଗନ୍ଧର୍ବ, କିନ୍ନର, ଅପ୍ସରାଦି ସର୍ବଲୋକର ପୂଜିତ ହୁଏ, । ପୁଣି ସାଧକ ମୃତ୍ୟୁ ସମୟରେ ଯଦି ସେହି ପଦ୍ମ ସ୍ମରଣ ପୂର୍ବକ ପ୍ରାଣତ୍ୟାଗ କରିପାରନ୍ତି, ତେବେ ସେ ପରମାତ୍ମାରେ ଲୀନ ହୋଇ ଯାଆନ୍ତି, ତାହାଙ୍କର ଆଉ ପୁନର୍ଜନ୍ମ ହୁଏ ନାହିଁ ।



## ସହସ୍ରାର ବର୍ଣ୍ଣନ

ତାଳୁ ମୂଳର ଊର୍ଦ୍ଧ୍ୱଦେଶରେ ଦିବ୍ୟରୂପ ସହସ୍ରଦଳ ପଦ୍ମ ଅଛି । ସେହି ପଦ୍ମ ଅଧୋବକ୍ତ୍ର, ଶୁକ୍ଳ, ରକ୍ତ, ପୀତ, କୃଷ୍ଣ ଏବଂ ହରିଦ୍ରାଦି ନାନାବର୍ଣ୍ଣରେ ସୁଶୋଭିତ ଏବଂ ତଦ୍ରୂପ ସକଳ ସର୍ବଶକ୍ତି ସମନ୍ୱିତ । ତାହାର ଶୋଭା ବର୍ଣ୍ଣନ କରିବାକୁ କେହି ସମର୍ଥ ନୁହନ୍ତି । ସେହି ପଦ୍ମ ନିମ୍ନଭାଗରେ "ହ ସ କ୍ଷ ମ ଳ ବ ର ଯଂ" ଏହି ଦ୍ୱାଦଶ ବର୍ଣ୍ଣରେ ଦ୍ୱାଦଶ ଦଳ ଏକ ଅପୂର୍ବ ପଦ୍ମ ଊର୍ଦ୍ଧ୍ୱମୁଖରେ ଅଛନ୍ତି । ସେହି ସହସ୍ରଦଳ ପଦ୍ମର କର୍ଣ୍ଣିକାନ୍ତର୍ଗତ ଗୁରୁରୂପୀ ପରମାତ୍ମା ଶୁଦ୍ଧ ପାଦେଦତୁଲ୍ୟ ଏବଂ ଅଗ୍ନିସମ ତେଜଃ ପୁଞ୍ଜ ଓ କୋଟି ସୂର୍ଯ୍ୟ ସମପ୍ରଭ, ଅଥଚ କୋଟି ଚନ୍ଦ୍ରତୁଲ୍ୟ ସୁଶୀତଳ; ନିତ୍ୟ, ନିରଞ୍ଜନ, ନିର୍ଗୁଣ, ନିଷ୍କାମ, ଦ୍ୱୈତ ରହିତ ଅର୍ଥାତ୍ ଆଦି, ଅନ୍ତ ଓ ମଧ୍ୟ ଶୂନ୍ୟ । ଏହି ବିଶୂନ୍ୟ ରହିତ ସାକ୍ଷାତ୍ ପରଂବ୍ରହ୍ମ ସେଠାରେ ନିତ୍ୟ ଅବସ୍ଥାନ କରୁଅଛନ୍ତି । ସେହି ସର୍ବବ୍ୟାପୀ ଏବଂ ସର୍ବ ଜୀବର ସହସ୍ରାରରେ ଆତ୍ମାରୂପେ ବାସ କରୁଅଛନ୍ତି । ତାହାର ସତ୍ତାହେତୁ ସର୍ବେନ୍ଦ୍ରିୟର ଚେଷ୍ଟା ଆବିର୍ଭାବ ହୁଏ ଏବଂ ତାହାର ନିଃସତ୍ତ୍ୱେ ଇନ୍ଦ୍ରିୟମାନଙ୍କର ଚେଷ୍ଟାର ତିରୋଭାବ ଘଟେ । ଆତ୍ମା ନିତ୍ୟବସ୍ତୁ, ତାହାର

ବିନାଶ ନାହିଁ । ଅତଏବ ତାହାର ସେହି ବାସସ୍ଥାନ ଅର୍ଥାତ୍ ଉକ୍ତ ସହସ୍ରଦଳ ପଦ୍ମହିଁ ନିର୍ବାଣ ମୁକ୍ତିର ଆଳୟ । ଯେ ସାଧକ ନିୟତ ସେହି ସ୍ଥାନର ଧ୍ୟାନ କରନ୍ତି, ତାହାର ଶୀଘ୍ର ସକଳ ସିଦ୍ଧିଲାଭ ହୁଏ । ସେହି ସହସ୍ରଦଳ କମଳରୁ କ୍ଷରିତ ସୁଧା ଯେ ପାନ କରନ୍ତି, ସେହି ଯୋଗୀ ପରମାତ୍ମାରେ ଲୟ ପ୍ରାପ୍ତ ହୁଅନ୍ତି ।



# ଗାୟତ୍ରୀ

ଓଁ ଭୂର୍ଭୁବଃ ସ୍ୱଃ । ତତ୍ସବିତୁ ର୍ବରେଣ୍ୟଂ ଭର୍ଗୋ-
ଦେବସ୍ୟ ଧୀମହି । ଧିୟୋ ଯୋନଃ ପ୍ରଚୋଦୟାତ୍

ଯେ ସର୍ବ ଜଗତ୍ ଜୀବନର ଆଧାର, ପ୍ରାଣଠାରୁ ଅଧିକ ପ୍ରିୟ, ପୁଣି ସ୍ୱୟମ୍ଭୂ ଅଟନ୍ତି, ସେ ପ୍ରାଣବାଚକ ହେବାରୁ ପରମେଶ୍ୱରଙ୍କ ନାମ ଅଟେ ଭୂଃ

ଯେ ସବୁ ଦୁଃଖରୁ ଅତୀତ, ଯାହାଙ୍କ ସଙ୍ଗରେ ଜୀବ ସବୁ ଦୁଃଖରୁ ଉଦ୍ଧାର ପାଏ ସେ ଭୁବଃ, ଏଣୁ ଈଶ୍ୱରଙ୍କ ନାମ ଭୁବଃ

ଯେ ନାନାବିଧ ଜଗତରେ ବ୍ୟାପକ ହୋଇ ସମସ୍ତଙ୍କୁ ଧାରଣ କରନ୍ତି, ଏଣୁକରି ଈଶ୍ୱରଙ୍କ ନାମ ସ୍ୱଃ

ସବିତୁଃ—ଯେ ସମସ୍ତ ଜଗତର ଉତ୍ପାଦକ, ପୁଣି ସବୁ ଐଶ୍ୱର୍ଯ୍ୟର ଦାତା ଅଟନ୍ତି ।

ଦେବସ୍ୟ—ଯେ ସବୁ ସୁଖ ଦିଅନ୍ତି ଏବଂ ସମସ୍ତେ ଯାହାଙ୍କୁ ପାଇବା ଇଚ୍ଛା କରନ୍ତି ସେହି ପରମାତ୍ମାଙ୍କର ।

ବରେଣ୍ୟଂ—ସ୍ୱୀକାର କରିବାକୁ ଯୋଗ୍ୟ, ଅତି ଶ୍ରେଷ୍ଠ ।

ଭର୍ଗଃ—ଶୁଦ୍ଧସ୍ୱରୂପ ଏବଂ ପବିତ୍ରକାରୀ ଚେତନ ବ୍ରହ୍ମସ୍ୱରୂପ ।

ତତ୍—ସେହି ପରମାତ୍ମାଙ୍କ ସ୍ୱରୂପକୁ

ଧୀମହି—ଆମେମାନେ ଧାରଣ କରୁଁ ।

ଯଃ—ଜଗଦୀଶ୍ୱର, ଯେ ସବିତା ଦେବ ପରମାତ୍ମା

ନଃ—ଆମ୍ଭମାନଙ୍କର । ଧିୟଃ-ବୁଦ୍ଧିକି ।

ପ୍ରଚୋଦୟାତ୍—ପ୍ରେରଣ କରନ୍ତୁ ଅର୍ଥାତ୍ ମନ୍ଦ କର୍ମରୁ ନିବୃତ୍ତ କରି ସତ୍କର୍ମରେ ପ୍ରବର୍ତ୍ତାନ୍ତୁ । ହେ ପରମେଶ୍ୱର, ସଚ୍ଚିଦାନନ୍ଦ ସ୍ୱରୂପ, ହେ ନିତ୍ୟଶୁଦ୍ଧ ବୁଦ୍ଧ ମୁକ୍ତସ୍ୱଭାବ, ହେ ଅଜ, ନିରଞ୍ଜନ, ନିର୍ବିକାର, ହେ ସର୍ବାନ୍ତର୍ଯ୍ୟାମୀ । ହେ ସର୍ବାଧାର, ଜଗତ୍ପତେ, ସମସ୍ତ ଜଗଦୁତ୍ପାଦକ, ହେ ଅନାଦି ବିଶ୍ୱମ୍ଭର, ସର୍ବବ୍ୟାପୀ, ହେ କରୁଣାମୃତବାରିଧି, ହେ ପରମାତ୍ମନ, ତୁମ୍ଭର ଶୁଦ୍ଧ ଚୈତନ୍ୟ ସ୍ୱରୂପ ଆମ୍ଭେ ଧାରଣ କରୁଅଛୁଁ, ଆମ୍ଭର ଅନ୍ତର୍ଯ୍ୟାମୀ ସ୍ୱରୂପ ଆମ୍ଭର ଆତ୍ମା ଓ ବୁଦ୍ଧିକୁ ଦୁଷ୍ଟାଚାର ଓ ଅଧର୍ମ ମାର୍ଗରୁ ନିବୃତ୍ତ କରି ଶ୍ରେଷ୍ଠାଚାର ଓ ସତ୍ୟମାର୍ଗରେ ପ୍ରବର୍ତ୍ତାଅ, ତୁମ୍ଭକୁ ଛାଡ଼ି ଅନ୍ୟ କୌଣସି ବସ୍ତୁକୁ ଆମ୍ଭେ ଧ୍ୟାନ କରି ନପାରୁଁ, କାରଣ ତୁମ୍ଭ ତୁଲ୍ୟ ବା ତୁମ୍ଭଠାରୁ ଅଧିକ ଅନ୍ୟ କେହି ନାହିଁ । ତୁମ୍ଭେ କେବଳ ଆମ୍ଭର ପିତା, ରାଜା, ନ୍ୟାୟକର୍ତ୍ତା ଏବଂ ସକଳ ସୁଖ ଦାତା ।



# ଯମ

( ୧ ) କାହାର ସହିତ ବୈର ନ କରିବା, ସମସ୍ତଙ୍କ ସଙ୍ଗରେ ସର୍ବଦା ପ୍ରୀତି ରଖିବା ।

( ୨ ) ସର୍ବଦା ସତ୍ୟ କହିବା, କେବେହେଁ ମିଥ୍ୟା ନ କହିବା

( ୩ ) ଚୋରି ନ କରିବା, ସତ୍ୟ ବ୍ୟବହାର କରିବା ।

( ୪ ) ଜିତେନ୍ଦ୍ରିୟ ହେବା, ଲମ୍ପଟାଗ୍ରସ୍ତ ନ ହେବା ।

( ୫ ) ନିରଭିମାନୀ ହେବା, କେବେହେଁ ଅଭିମାନ ନ କରିବା

ଏହି ପାଞ୍ଚପ୍ରକାର ସାଧନାକୁ ଯମ କୁହାଯାଏ । ପୁଣି ଏହା ଉପାସନାର ପ୍ରଥମ ସୋପାନ ।



# ନିୟମ

( ୧ ) ରାଗ ଦ୍ୱେଷ ଛାଡ଼ି ଭିତର ଓ ଜଳାଦି ଦ୍ୱାରା ବାହାର ନିର୍ମଳ ରଖିବା ।

( ୨ ) ଧର୍ମମାର୍ଗରେ ପୁରୁଷାର୍ଥ କରିବା, ଲାଭ ହାନିରେ ବିଚଳିତ ନ ହେବା, ଆଳସ୍ୟ ପରିତ୍ୟାଗ କରି ଶ୍ରଦ୍ଧା ଓ ସନ୍ତୋଷ ସହକାରେ ପୁରୁଷାର୍ଥ କରିବା ।

( ୩ ) ସୁଖ ଓ ଦୁଃଖରେ ସହନଶୀଳତା, ଅଧର୍ମ ଛାଡ଼ି ଧର୍ମାଚରଣ କରିବା ।

( ୪ ) ସତ୍ୟ ଶାସ୍ତ୍ର ଅଧ୍ୟୟନ, ଅଧ୍ୟାପନ ଏବଂ ସାଧୁସଙ୍ଗ କରିବା ଓ ପରମାତ୍ମାଙ୍କର ପ୍ରଧାନ ନାମ "ଓଁ" ନିତ୍ୟ ଜପ କରିବା ।

( ୫ ) ଆପଣାର ଜୀବାତ୍ମାକୁ ପରମେଶ୍ୱରଙ୍କ ଇଚ୍ଛାନୁକୂଳ ସମର୍ପଣ କରିଦେବା । ଏହି ପାଞ୍ଚପ୍ରକାର ସାଧନାକୁ ନିୟମ ବୁଝାଯାଏ । ଏହା ଉପାସନାର ଦ୍ୱିତୀୟ ଅଙ୍ଗ ।



## ଆସନ

ଜୀବ ଜନ୍ତୁଙ୍କର ସଂଖ୍ୟା ଯେତେ, ଆସନର ସଂଖ୍ୟା ସେତେ । ସେମାନଙ୍କ ମଧ୍ୟରୁ ଚତୁରଶୀତି ପ୍ରକାର ଆସନ ପ୍ରଧାନ । ମର୍ତ୍ତ୍ୟଲୋକରେ ବତିଶ ପ୍ରକାର ଆସନ ପ୍ରଶସ୍ତ । ଯଥା:—

ସିଦ୍ଧି, ପଦ୍ମ, ଭଦ୍ର, ମୁକ୍ତ, ବଜ୍ର, ସ୍ୱସ୍ତିକ, ସିଂହ, ଗୋମୁଖ, ବୀର, ଧନୁଃ, ମୃତ, ଗୁପ୍ତ, ମତ୍ସ୍ୟ, ମତ୍ସ୍ୟେନ୍ଦ୍ର, ଗୋରକ୍ଷ, ପଶ୍ଚିମୋତ୍ତାନ, ଉତ୍କଟ, ସଙ୍କଟ, ମୟୂର, କୁକ୍କୁଟ, କୂର୍ମ, ଉତ୍ତାନକୂର୍ମକ, ଉତ୍ତାନମଣ୍ଡୁକ, ବୃକ୍ଷ, ମଣ୍ଡୁକ, ଗରୁଡ଼, ବୃଷ, ଶଲଭ, ମକର, ଉଷ୍ଟ୍ର, ଭୁଜଙ୍ଗ ଏବଂ ଯୋଗ ।

ଏମାନଙ୍କ ମଧ୍ୟରୁ ସ୍ୱସ୍ତିକ, ଗୋମୁଖ, ପଦ୍ମ, ବୀର, ସିଂହ, ଭଦ୍ର, ମୁକ୍ତ ଓ ମୟୂର ପ୍ରଧାନ । ଏମାନଙ୍କର ଲକ୍ଷଣ ପୃଥକ୍ ପୃଥକ୍ ରୂପେ ତଳେ ଦିଆଗଲା ।

ଜାନୁ ଓ ଉରୁର ମଧ୍ୟରେ ପାଦତଳ ଦ୍ୱୟ ସମ୍ୟକ୍‌ରୂପେ ସଂସ୍ଥାପନ ପୂର୍ବକ ସରଳ କାୟ ହୋଇ ସୁଖରେ ଉପବେଶନକୁ ସ୍ୱସ୍ତିକାସନ କହନ୍ତି ।

ସୀବନୀର ବାମଭାଗରେ, ବାମରେ ଦକ୍ଷିଣ ଗୁଲ୍ଫ ଏବଂ ଦକ୍ଷିଣରେ ବାମ ଗୁଲ୍ଫ ଏହିରୂପେ ଦୁଇପଦର ଗୁଲ୍ଫ ସ୍ଥାପନ ପୂର୍ବକ ଉପବେଶନର ନାମ ସ୍ୱସ୍ତିକାସନ ।

ପୃଷ୍ଠପାର୍ଶ୍ୱରେ ଅର୍ଥାତ୍ ଶରୀରର ପଶ୍ଚାତ୍ ପାର୍ଶ୍ୱରେ ବାମଦିଗରେ ଦକ୍ଷିଣ ଗୁଲ୍ଫ ଏବଂ ଦକ୍ଷିଣ ଦିଗରେ ବାମ ଗୁଲ୍ଫ ସଂସ୍ଥାପନ କରି, ଗୋମୁଖାକାରରେ ଉପବେଶନର ନାମ ଗୋମୁଖାସନ ।

ଦୁଇ ହସ୍ତରେ ଦୁଇ ପଦର ଅଙ୍ଗୁଷ୍ଠ ଦ୍ୱୟକୁ ବ୍ୟୁତ୍କ୍ରମେ ଅର୍ଥାତ୍ ଦକ୍ଷିଣ ହସ୍ତ ଦ୍ୱାରା ବାମ ପଦର ଅଙ୍ଗୁଷ୍ଠ ଏବଂ ବାମ ହସ୍ତଦ୍ୱାରା ଦକ୍ଷିଣ ପଦର ଅଙ୍ଗୁଷ୍ଠ ଦୃଢ଼ରୂପେ ବନ୍ଧନକରି, ଦୁଇ ପଦ ତଳ ଦୁଇ ଉରୁର ଉପରେ ସ୍ଥାପନ ପୂର୍ବକ ଉପବେଶନ କରିବାକୁ ପଦ୍ମାସନ କହନ୍ତି ।

ଏକ ଉରୁର ଉପରେ ଏକପଦ ଓ ଅନ୍ୟ ଉରୁର ଉପରେ ଅନ୍ୟପଦ ସ୍ଥାପନ ପୂର୍ବକ ଉପବେଶନ କଲେ ବୀରାସନ ହୁଏ ।

ଅଣ୍ଡକୋଷର ନିମ୍ନଦେଶରେ ସୀବନୀର ଦକ୍ଷିଣ ପାର୍ଶ୍ୱରେ ବାମ ଗୁଲ୍ଫ ଏବଂ ବାମପାର୍ଶ୍ୱରେ ଦକ୍ଷିଣ ଗୁଲ୍ଫ ସଂସ୍ଥାପନ କରି, ଅଙ୍ଗୁଳି ପ୍ରସାରଣ ପୂର୍ବକ ଦୁଇହସ୍ତ ଜାନୁଯୁଗଳରେ ଅର୍ପଣ କରି, ବିବୃତ ମୁଖରେ ଏକାଗ୍ରଚିତ୍ତରେ ନାସା ପ୍ରଦର୍ଶନ ପୂର୍ବକ ଅବସ୍ଥାନକୁ ସିଂହାସନ କହନ୍ତି ।

ବୃଷଣର ନିମ୍ନଦେଶରେ ସୀବନୀର ଉଭୟ ପାର୍ଶ୍ୱରେ ଗୁଲ୍ଫ ନିକ୍ଷେପ କରି, ଦୁଇ ପାର୍ଶ୍ୱରେ ଦୁଇ ହସ୍ତ ଦ୍ୱାରା ଦୁଇପାଦ ଦୃଢ଼ରୂପେ ବନ୍ଧ କରି ସୁସ୍ଥିର ହୋଇ ଉପବେଶନ କରିବାକୁ ଭଦ୍ରାସନ କହନ୍ତି ।

ବାମ ଗୁଲଫ ଦ୍ୱାରା ସୂକ୍ଷ୍ମ ସୀବନୀକୁ ସର୍ବତୋଭାବେ ନିପୀଡ଼ିତ କରି, ସେଥିରେ ପୁଣି ଦକ୍ଷିଣ ଗୁଲ୍ଫ ଦ୍ୱାରା ସେହିରୂପ କରତଃ ଉପବେଶନ କରିବାକୁ ମୁକ୍ତାସନ କହନ୍ତି ।

ହସ୍ତଦ୍ୱୟକୁ ତଳ ଦ୍ୱାରା ମୃତ୍ତିକାରେ ସମ୍ୟକ୍ ଅବସ୍ଥାନ ପୂର୍ବକ ଦୁଇ କହୁଣି ନାଭିର ଦୁଇ ପାର୍ଶ୍ୱରେ ସଂସ୍ଥାପନ କରି ମସ୍ତକ ଓ ପଦଦ୍ୱୟର ଦଣ୍ଡବତ୍ ଆକାଶକୁ ଉତ୍ତୋଳନ ପୂର୍ବକ ଅବସ୍ଥାନର ନାମ ମୟୂରାସନ ।



## ପ୍ରାଣାୟାମ

ପ୍ରାଣାୟାମ ଚାରି ପ୍ରକାର :—

( ୧ ) ବାହ୍ୟ ବିଷୟ ( ୨ ) ଆଭ୍ୟନ୍ତର ( ୩ ) ସ୍ତମ୍ଭବୃତ୍ତି ( ୪ )ବାହ୍ୟାଭ୍ୟନ୍ତରାକ୍ଷେପୀ ।

( ୧ ) ଯେପରି ବମନ ଦ୍ୱାରା ଉଦର ମଧ୍ୟରୁ ଅନ୍ନଜଳ ଇତ୍ୟାଦି ବେଗ ପ୍ରାପ୍ତ ହୋଇ ବାହାର ହୁଏ, ନାଭିମଣ୍ଡଳ ବା

ମୂଳେନ୍ଦ୍ରିୟକୁ ଚପି ଧରି ପ୍ରାଣବାୟୁକୁ ବାହାର କରିବାକୁ ହେବ । ଯେ ପର୍ଯ୍ୟନ୍ତ ପାରିବେ, ପ୍ରାଣବାୟୁକୁ ବାହାରେ ରଖିବ । ଯେତେବେଳେ ଅସହ୍ୟ ବୋଧ ହେବ ସେତେବେଳେ ଧୀରେ ଧୀରେ ବାୟୁ ଗ୍ରହଣ କରିବ । ଆପଣାର ସାମର୍ଥ୍ୟ ଓ ଇଚ୍ଛାନୁସାରେ ବାରମ୍ବାର ଏହିପରି କରିବ । ଏହି ସମୟରେ ମନେ ମନେ ଓଁକାର ଜପ କରୁଥିବ । ଏହି ପ୍ରକାର କରିବା ଦ୍ୱାରା ମନ ପବିତ୍ର ଓ ସ୍ଥିର ହୁଏ ।

( ୨ ) ବାହାର ବାୟୁକୁ ଭିତରେ ନେଇ ରୁଦ୍ଧ କରି ରଖିବା ।

( ୩ ) ନିଶ୍ୱାସ ବା ପ୍ରଶ୍ୱାସ ବେଳେ ଯେ କୌଣସି ଅବସ୍ଥାରେ ହଠାତ୍ ପ୍ରାଣବାୟୁକୁ ରୁଦ୍ଧ କରି ରଖିବ ।

( ୪ ) ପ୍ରାଣବାୟୁର ସ୍ୱାଭାବିକ ଗତିର ବିପରୀତ ଗତି ଅର୍ଥାତ୍ ପ୍ରାଣବାୟୁ ଭିତରକୁ ଯାଉଥିବା ବେଳେ ବଳପୂର୍ବକ ଭିତର ବାୟୁ ବାହାର କରିବ ଏବଂ ଭିତର ବାୟୁ ବାହାରକୁ ଆସୁଥିବା ବେଳେ ବଳପୂର୍ବକ ବାହାର ବାୟୁ ଭିତରକୁ ନେବ । ଏହିପରି ବାୟୁର ଗତି ବଦଳାଇ ଦେବାଦ୍ୱାରା ନିଃଶ୍ୱାସ ପ୍ରଶ୍ୱାସ ଉଭୟର ଗତିରୋଧ କରାଯାଇ ପାରେ ।



## ପ୍ରାଣାୟାମ ଦ୍ୱାରା ଉପକାର

ଏଥିରେ ଆପଣାର ପ୍ରାଣ ବଶୀଭୂତ ହୁଏ, ମନ ଏବଂ ଇନ୍ଦ୍ରିୟ ସ୍ୱାଧୀନ ହୁଏ, ଚିତ୍ତ ସ୍ଥିର ଓ ଏକାଗ୍ର ରହେ, ବଳବୀର୍ଯ୍ୟ ବଢ଼େ ପୁରୁଷାର୍ଥ ସାଧିତ ହୁଏ, ବୁଦ୍ଧି ସୂକ୍ଷ୍ମ ଏବଂ ତୀକ୍ଷ୍ଣ ହୋଇ ବହୁତ କଠିନ ଓ ସୂକ୍ଷ୍ମ ବିଷୟମାନ ଶୀଘ୍ର ଅବଧାରଣ କରିପାରେ । ପୁରୁଷ ଓ ସ୍ତ୍ରୀ ଉଭୟେ ଏହିପ୍ରକାର ଯୋଗାଭ୍ୟାସ କରିବେ ।



## ଖଗୋଳ ବିବରଣ

ଏହି ବ୍ରହ୍ମାଣ୍ଡ ଅର୍ଥାତ୍ ଗ୍ରହ ଉପଗ୍ରହାଦି ପରିପୂରିତ ଆକାଶମଣ୍ଡଳ, ସଚ୍ଛିଦ୍ର କଣ୍ଠାହିଦ୍ୱୟର ଗୋଲାକାର ସମ୍ପୁଟବତ୍ । ଏଥିରେ ଭୂଲୋକ, ଭୁବର୍ଲୋକ, ସ୍ୱର୍ଲୋକ, ମହର୍ଲୋକ, ଜନଲୋକ, ତପୋଲୋକ ଓ ସତ୍ୟଲୋକ ଏହି ସପ୍ତ ଭୁବନ ବିଦ୍ୟମାନ । ବ୍ରହ୍ମାଣ୍ଡ ପରିଧି ଆକାଶ କକ୍ଷ ନାମରେ ଅଭିହିତ । ସେଥି ମଧ୍ୟରେ ପରିବହ, ପରିବହ, ସୁବହ, ସଂବହ ଓ ଉଦ୍‌ବହ ଏହି ପଞ୍ଚବାୟୁ ଅଧୋଧଃ ଭାବରେ ଶନି, ବୃହସ୍ପତି, ସନ୍ଧ୍ୟା, କେତୁ, ମଙ୍ଗଳ, ସୂର୍ଯ୍ୟ ଶୁକ୍ର, ବୁଧ ଓ ଚନ୍ଦ୍ରଗ୍ରହ ଏବଂ ଦକ୍ଷିଣୋତ୍ତରରେ ଧ୍ରୁବତାରାଦ୍ୱୟବଦ୍ଧ ନକ୍ଷତ୍ରଚକ୍ର ପ୍ରବହନାମା ବାୟୁ ଗୃହୀତ ହୋଇ ସର୍ବଦା ପଶ୍ଚିମଗତିରେ ପରିଭ୍ରମଣ କରୁଅଛି । ତଦନନ୍ତର ଅଧୋଧଃ କ୍ରମେ ସିଦ୍ଧ, ବିଦ୍ୟାଧର, ମେଘ, ବିଦ୍ୟୁତ୍ ପ୍ରଭୃତି ଯୁକ୍ତ ଆବହନାମା ବାୟୁମଣ୍ଡଳ ସଦା ଉତ୍ତରଗତିରେ ଭ୍ରମଣ କରୁଅଛି । ସେଥି ମଧ୍ୟରେ ଈଶ୍ୱରଙ୍କର ଅଚିନ୍ତ୍ୟ ଶକ୍ତିବଳରେ ଭୂଲୋକ ଶୂନ୍ୟରେ ଅବସ୍ଥାନ କରୁଅଛି । ପୃଥିବୀର ଅନ୍ତର୍ଗତ ନାଗାଦିର ସମାଶ୍ରିତ, ଦିବ୍ୟଔଷଧିରସୋପେତ, ପରମ ରମଣୀୟ ପାତାଳରେ, ରସାତଳ, ମହାତଳ, ତଳାତଳ, ସୁତଳ, ବିତଳ ଓ ଅତଳ ନାମରେ ସପ୍ତତାଳ ଊର୍ଦ୍ଧ୍ୱୋର୍ଦ୍ଧ୍ୱ କ୍ରମେ ଅବସ୍ଥାନ କରୁଅଛି । ସୁମେରୁ ( ଉତ୍ତର କେନ୍ଦ୍ରର ) ଉପର ଉତ୍ତରରେ ( ଶୂନ୍ୟରେ ) ଗୋଟିଏ ଏବଂ ବଡ଼ବାନଳର (ଦକ୍ଷିଣ କେନ୍ଦ୍ରର) ଉପର ଦକ୍ଷିଣରେ (ଶୂନ୍ୟରେ) ଆଉ ଗୋଟିଏ ଧ୍ରୁବତାରା ଅବସ୍ଥିତ । ଏହି ବ୍ରହ୍ମାଣ୍ଡ ବା ଆକାଶ ମଣ୍ଡଳର କକ୍ଷ୍ୟା—୧୮,୭୧,୨୦,୮୦,୮୬,୪୦,୦୦,୦୦୦, ବ୍ୟାସ—୫, ୧୫, ୩୮, ୪୩, ୧୧, ୯୨, ୭୨, ୭୨୧, ଏବଂ ପୃଥିବୀ ଠାରୁ ଉଚ୍ଚତା ୨, ୧୨, ୭୧, ୨୧, ୧୫, ୫୬, ୩୬, ୩୬୩ ଯୋଜନ ।



## ନାନାତତ୍ତ୍ୱ

ପୃଥିବୀର ଚତୁର୍ଦ୍ଦିଗରେ ୪୫ ମାଇଲ ପର୍ଯ୍ୟନ୍ତ ବାୟୁ ଅଛି, ତଦୁପରେ ନିର୍ବାତ ପ୍ରଦେଶ ।

ଶବ୍ଦର ଗତି ପ୍ରତି ୮ ସେକେଣ୍ଡରେ ଏକମାଇଲ ।

୨୪ ତାରିଖ ଜୁନ ବର୍ଷର ମଧ୍ୟରେ ସର୍ବାପେକ୍ଷା ବଡ଼ଦିନ ।

୨୪ ତାରିଖ ଡିସମ୍ବର ବର୍ଷର ମଧ୍ୟରେ ସର୍ବାପେକ୍ଷା ଛୋଟଦିନ ।

୨୧ ତାରିଖ ଅକ୍ଟୋବର ଓ ୨୧ ତାରିଖ ଅପ୍ରେଲ ଦିବାରାତ୍ର ସମାନ ହୁଏ । ଇଂରେଜମାନେ ଏହାକୁ ଇକୁଇନକ୍ସ କହନ୍ତି ।

ସେ ପ୍ରାଣୀ ପଣ୍ଡିତ ବଖାଣେ ॥

୩ ର ବୃକୋଷ

## ପବନର ଗତି ଓ ପ୍ରକାର

| | | | | |
|---|---|---|---|---|
| ପବନ | ୧ ଘଣ୍ଟାରେ | ୧ ମାଇଲ | ଗତି କଲେ | ଜଣାଯାଏ ନାହିଁ । |
| ,, | ,, | ୨ ,, | ,, | ଅତ୍ୟଳ୍ପ ଜଣାଯାଏ । |
| ,, | ,, | ୫ ,, | ,, | ମୃଦୁ ପବନ ହୁଏ । |
| ,, | ,, | ୧୦ ,, | ,, | ଚଞ୍ଚଳ ପବନ ହୁଏ । |
| ,, | ,, | ୨୦।୨୫ ,, | ,, | ବଡ଼ ଚଞ୍ଚଳ ପବନ ହୁଏ । |
| ,, | ,, | ୩୫ ,, | ,, | ଖର ପବନ ହୁଏ । |
| ,, | ,, | ୪୫ ,, | ,, | ପ୍ରଖର ପବନ ହୁଏ । |
| ,, | ,, | ୫୦ ,, | ,, | ଝଡ଼ ହୁଏ । |
| ,, | ,, | ୬୦ ,, | ,, | ବଡ଼ ଝଡ଼ ହୁଏ । |
| ,, | ,, | ୮୦ ,, | ,, | ତୋଫାନ ହୁଏ । |
| ,, | ,, | ୧୦୦ ,, | ,, | ବଡ଼ ତୋଫାନ ହୁଏ । |

# ପୃଥିବୀ

## ପୃଥିବୀର କ୍ଷେତ୍ରଫଳ ଏବଂ ଲୋକସଂଖ୍ୟା

ପୃଥିବୀର କ୍ଷେତ୍ରଫଳ ଊଣାଇଶ କୋଟି ପଞ୍ଚଷଠି ଲକ୍ଷ ପଚିଶହଜାର ବର୍ଗମାଇଲ ମଧ୍ୟରୁ ଜଳଭାଗ ଚଉଦକୋଟି ଦଶଲକ୍ଷ ପଚିଶ ହଜାର ବର୍ଗମାଇଲ ଅଟେ ।

| ମହାଦେଶର ନାମ— | ( କ୍ଷେତ୍ରଫଳ ) | ( ଲୋକସଂଖ୍ୟା ) |
|---|---|---|
| ଆସିଆ— | ଏକ କୋଟି ସତୁରି ଲକ୍ଷ ବର୍ଗମାଇଲ | ଏକ ଶତ ଏକ କୋଟି ତେରଶ ଲକ୍ଷ |
| ଅଫ୍ରିକା— | ଏକ କୋଟି ଏଗାର ଲକ୍ଷ ବର୍ଗମାଇଲ | ଚଉଦ କୋଟି ତେରଶ ଲକ୍ଷ |
| ଉତ୍ତର ଅମେରିକା— | ଅଶୀଲକ୍ଷ ବର୍ଗମାଇଲ | ଚଉଦ କୋଟି ଷାଠିଏ ଲକ୍ଷ |
| ଦକ୍ଷିଣ ଅମେରିକା— | ଅଠସ୍ତରି ଲକ୍ଷ ବର୍ଗମାଇଲ | ଛଅକୋଟି ଗୋଟିଏ ଲକ୍ଷ |
| ମେରୁ ପ୍ରଦେଶ— | ପଚିଶ ଲକ୍ଷ ବର୍ଗମାଇଲ | ....................... |
| ଇଉରୋପ— | ସଇଁତିରିଶ ଲକ୍ଷ ପଚିଶ ହଜାର ବର୍ଗମାଇଲ | ଅଠଚାଳିଶ କୋଟି ପଚିଶ ଲକ୍ଷ |
| ଅଷ୍ଟ୍ରେଲିଆ— | ଚଉତିରିଶ ଲକ୍ଷ ପଚିଶ ହଜାର ବର୍ଗମାଇଲ | ପଚାଅଶି ଲକ୍ଷ |
| ମୋଟ | ପାଞ୍ଚକୋଟି ପଞ୍ଚାବନ ଲକ୍ଷ ବର୍ଗମାଇଲ | ଏକଶତ ଚଉରାଅଶି କୋଟି ପଞ୍ଚାନବେ ଲକ୍ଷ |

## ବିଭିନ୍ନ ଦେଶର କ୍ଷେତ୍ରଫଳ, ଜନସଂଖ୍ୟା ଓ ରାଜଧାନୀ ।

| | ବର୍ଗମାଇଲ | ଜନସଂଖ୍ୟା | ରାଜଧାନୀ | ଜନସଂଖ୍ୟା |
|---|---|---|---|---|
| ଆଫଗାନସ୍ଥାନ | ୨୪୫,୦୦୦ | ୬,୩୮୦,୦୦୦ | କାବୁଲ | ୧,୦୦୦,୦୦୦ |
| ଭୁଟାନ୍ | ୨୦,୦୦୦ | ୨୫୦,୦୦୦ | ପଖାନା | ... ... |

ହେ ଛାତ୍ର ଇଷ୍ଟ ଧର୍ମ ପାଳ ।

| | ବର୍ଗମାଇଲ୍ | ଜନସଂଖ୍ୟା | ରାଜଧାନୀ | ଜନସଂଖ୍ୟା |
|---|---|---|---|---|
| ସିଲୋନ ବା ଲଙ୍କା | ୨୫, ୫୦୦ | ୪,୫୦୦, ୦୦୦ | କଲମ୍ବୋ | ୨୫୦, ୦୦୦ |
| ଚିନ | ୪,୨୭୦; ୦୦୦ | ୪୪୧, ୦୦୦, ୦୦୦ | ପେକିଂ<br>ନାନ୍କିନ୍ | ୧,୦୦୦, ୦୦୦ |
| ଭାରତବର୍ଷ | ୧୮୦୫୦୦୦ | ୩୫୨୯୮୭୮୬୭ | ଦିଲ୍ଲୀ | ୪୪୭,୪୪୨ |
| ଇରାକ | ୧୫୦୦୦୦ | ୩୦୦୦୦୦୫ | ବାଗ୍ଦାଦ୍ | ୧୭୦୦୦୦ |
| ଜାପାନ | ୨୬୦୮୦୦ | ୮୪୦୦୦୦୦୦ | ଟୋକିଓ | ୨୦୦୦୦୦୦ |
| ମାଲୟ | ୩୧୦୦୦ | ୩୫୦୦୦୦୦ | ସିଙ୍ଗାପୁର | ୩୬୦୦୦୦ |
| ନଜଦ ଓହେଜାଜ୍ | ୧୦୦୦୦୦୦ | ୧୫୦୦୦୦୦ | ରିୟାଦ | ୨୦୦୦୦ |
| ନେପାଳ | ୫୪୦୦୦ | ୫୬୦୦୦୦୦ | କାଠମାଣ୍ଡୁ | ୮୦୦୦୦ |
| ପାଲଷ୍ଟାଇନ | — | ୧୦୦୦୦୦୦ | ଯେରୁସିଲମ | ୭୩୦୦୦ |
| ପର୍ସିଆ | ୬୩୦୦୦୦ | ୧୦୦୦୦୦୦୦ | ତେହେରାନ | ୨୧୦୦୦୦ |
| ଶ୍ୟାମ | ୧୯୫୦୦୦ | ୧୫୧୩୦୦୦ | ବଙ୍ଗକକ୍ | ୪୫୦୦୦୦ |
| ଅସିଆଟିକ୍ ଟର୍କି | ୪୦୦୦୦୦ | ୧୨୦୦୦୦୦୦ | ଅଙ୍ଗୋରା | ୭୫୦୦୦ |
| ତିବ୍ବତ | ୭୫୦୦୦୦ | ୩୦୦୦୦୦୦ | ଲାସା | ୩୦୦୦୦ |

## ଆଫ୍ରିକା

| | | | | |
|---|---|---|---|---|
| ଆବିସିନିଆ | ୩୫୦୦୦୦ | ୧୧୦୦୦୦୦୦ | ଆଡ୍ଡିସ୍ ଆବେବା | ୫୦୦୦୦ |
| ଇଜିପ୍ଟ | ୩୬୩୨୦୦ | ୧୪୦୦୦୦୦୦ | କାଇରୋ | ୧୦୭୦୦୦୦ |
| ଲାଇବେରିଆ | ୪୮୦୦୦ | ୨୧୦୦୦୦୦ | ମନରୋଭିଆ | ୮୦୦୦ |
| ମରୋକୋ | ୩୧୪୦୦୦ | ୫୦୦୦୦୦୦ | ଫେଜ୍ — | — |
| ସୁଦାନ | ୧୦୦୦୦୦୦ | ୬୦୦୦୦୦୦ | ଖାର୍ଟୁମ | ୩୧୦୦୦ |
| ଇଉନାଇଟେଡ ଷ୍ଟେଟ୍ ଅବ୍ ଆଫ୍ରିକା | ୮୦୦୦୦୦ | ୮୦୦୦୦୦୦ | ପ୍ରିଟୋରିଆ<br>କେପଟାଉନ | ୮୩୦୦୦<br>୨୨୦୦୦୦ |

## ଉତ୍ତର ଆମେରିକା

| | | | | |
|---|---|---|---|---|
| କାନାଡ଼ା | ୩୫୪୬୨୩୦ | ୯୯୪୦୦୦୦ | ଓଟୋୱା | ୧୦୮୦୦୦ |
| ମେକ୍ସିକୋ | ୭୬୯୦୦୦ | ୧୬୪୦୦୦୦୦ | ମେକ୍ସିକୋ | ୭୧୫୦୦୦ |
| ଇଉନାଇଟେଡ୍ ଷ୍ଟେଟ୍ ଅବ୍ ଆମେରିକା | ୩୦୨୬୦୦୦ | ୧୨୨୭୯୮୦୦୦ | ୱାସିଂଟନ | ୪୮୭୦୦୦ |

## ଦକ୍ଷିଣ ଆମେରିକା

| | | | | |
|---|---|---|---|---|
| ଆର୍ଜେଣ୍ଟାଇନା | ୧୧୩୨୦୦୦ | ୧୦୦୦୦୦୦୦ | ବୁଏନସ୍ ଏଅରସ୍ | ୧୮୭୦୦୦୦ |
| ବଲିଭିଆ | ୭୦୦୦୦୦ | ୨୮୦୦୦୦୦ | ସୁକର | ୧୧୧୦୦୦ |
| ବ୍ରାଜିଲ | ୩୩୦୦୦୦୦ | ୩୦୭୫୦୦୦୦ | ରିଓଡ଼ି ଜେନରୋ | ୧୧୭୦୦୦୦ |
| ଚିଲି | ୨୯୦୦୦୦ | ୪୦୦୦୦୦୦ | ସାଣ୍ଟିଆଗୋ | ୫୫୦୦୦୦ |

| | ବର୍ଗମାଇଲ | ଜନସଂଖ୍ୟା | ରାଜଧାନୀ | ଲୋକସଂଖ୍ୟା |
|---|---|---|---|---|
| ପେରୁ | ୩୫୨୦୦୦ | ୫୫୦୦୨୦୦ | ଲିମା | ୧୮୦୦୦୦ |
| ଉରୁଗ୍ୱେ | ୭୨୨୦୦ | ୧୬୨୩୦୦୦ | ମଣ୍ଟିଭିଡ଼ିଓ | ୪୪୦୪୦୦ |
| ଭେନେଜୁଏଲା | ୩୭୩୬୩୦ | ୩୦୨୬୦୦୦ | କାରାକାସ | ୧୩୫୨୫୦ |

## ଇଉରୋପ

| | ବର୍ଗମାଇଲ | ଜନସଂଖ୍ୟା | ରାଜଧାନୀ | ଲୋକସଂଖ୍ୟା |
|---|---|---|---|---|
| ବେଲଜିଅମ | ୧୧୪୦୦ | ୬୭୦୦୦୦୦ | ବ୍ରସେଲ୍ସ | ୮୦୨୦୦୦ |
| ବୁଲଗେରିଆ | ୪୦୦୦୦ | ୫୫୦୦୦୦୦ | ସୋଫିଆ | ୨୧୩୦୦୦ |
| ଚେକୋ ସ୍ଲୋଭାକିଆ | ୫୪୬୦୦ | ୧୪୩୦୦୦୦୦ | ପ୍ରେଗ୍ | ୭୭୭୦୦୦ |
| ଡେନମାର୍କ | ୧୫୦୦୦ | ୩୪୩୫୦୦୦ | କୋପେନହେଗେନ | ୭୩୧୫୫୪ |
| ଫ୍ରାନ୍ସ | ୨୧୩୦୦୦ | ୪୦୦୦୦୦୦୦ | ପାରିସ | ୩୦୦୦୦୦୦ |
| ଜର୍ମାନୀ | ୧୮୨୨୦୦ | ୬୩୦୦୦୦୦୦ | ବର୍ଲିନ | ୪୦୦୦୦୦୦ |
| ଗ୍ରେଟ୍‌ବ୍ରିଟେନ ଏବଂ ଉତ୍ତର ଆୟର୍ଲାଣ୍ଡ | ୯୫୦୩୦ | ୪୪୫୦୦୦୦୦ | ଲଣ୍ଡନ୍ | ୮୦୦୦୦୦୦ |
| ଗ୍ରୀସ | ୪୯୦୦୦ | ୭୦୦୦୦୦୦ | ଆଥେନ୍ସ | ୭୦୦୦୦୦ |
| ହଙ୍ଗେରୀ | ୩୬୧୮୦ | ୮୦୦୦୦୦୦ | ବୁଡାପେଷ୍ଟ | ୧୨୦୦୦୦୦ |
| ଆଇରିସ ଫ୍ରି ଷ୍ଟେଟ | ୨୬୭୦୦ | ୩୦୦୦୦୦୦ | ଡବ୍ଲିନ୍ | — |
| ଇଟାଲୀ | ୧୨୦୦୦୦ | ୪୨୦୦୦୦୦୦ | ରୋମ | ୭୭୮୦୦୦ |
| ନେଦରଲ୍ୟାଣ୍ଡସ୍ | ୧୨୬୭୦ | ୭୫୨୬୦୦୦ | ହେଗ୍ | ୩୯୮୦୦୦ |
| ନରୱେ | ୧୨୪୦୦୦ | ୨୬୮୯୦୦୦ | ଓସଲୋ | ୨୫୧୩୦୦ |
| ପୋଲଣ୍ଡ | ୧୫୦୦୦୦ | ୨୬୦୦୦୦୦୦ | ୱାରସ | ୧୦୦୦୦୦୦ |
| ରୁମାନିଆ | ୧୭୦,୦୦୦ | ୧୮୦୦୦୦୦୦ | ବୁଖାରେଷ୍ଟ | ୮୦୦୦୦୦ |
| ରୁସିଆ | ୧୪୯୨୦୦୦ | ୧୦୮,୧୦୦୦୦୦ | ମସ୍କୋ | ୧୭୦୦୦୦୦ |
| ସ୍ପେନ | ୧୯୭୬୦୦ | ୨୧୭୭୩୦୦୦ | ମାଡ୍ରିଡ୍ | ୭୫୦୦୦୦ |
| ସୁଇଡେନ୍ | ୧୬୩୦୦୦ | ୬,୦୭୪୦୦୦ | ଷ୍ଟକହୋଲ୍ମ | ୪୫୩୦୦୦ |
| ସୁଇଜରଲେଣ୍ଡ | ୧୫୯୫୦ | ୪,୦୦୦୦୦୦ | ବର୍ନ | ୧୦୫,୦୦୦ |
| ଟର୍କି | ୧୦,୦୦୦ | ୭,୦୦୦,୦୦୦ | ଆଙ୍ଗୋରା | — |
| ଜୁଗୋସଲଭିଆ | ୨୪୮,୦୫୦ | ୧୩୦୦୦୦୦୦ | ବେଲ୍ଗ୍ରେଡ୍ | ୨୪୦,୦୦୦ |

## ଓସାନିଆ

| | | | | |
|---|---|---|---|---|
| ଅଷ୍ଟ୍ରେଲିଆ | ୩୦୦୦୦୦୦ | ୬୦୦୦୦୦୦ | କାନବେରା | ୮୦୦୦ |
| ନିଉଜିଲଣ୍ଡ | ୧୦୫,୦୦୦ | ୧୪୭୧୦୦୦ | ୱେଲିଙ୍ଗଟନ | ୧୨୭୦୦୦ |

# ବିଭିନ୍ନ ଦେଶର ଶାସନତନ୍ତ୍ର ।

## ଅଷ୍ଟ୍ରିୟା ।

ଆଠଗୋଟି ପ୍ରଦେଶ ଦ୍ୱାରା ଗଠିତ ସାଧାରଣ ତନ୍ତ୍ର ସଂଷ୍ଟ୍ରଫଘ ବା ରିପବ୍ଲିକେନ୍ ଫେଡ୍ରେସନ ।

ପ୍ରେସିଡେଣ୍ଟ ବା ଶାସନକର୍ତ୍ତା ନିର୍ବାଚିତ ହୁଅନ୍ତି ।

ନଭେମ୍ବର ୧୨, ୧୯୧୮ ମସିହାରେ ପ୍ରଥମ ସାଧାରଣ ତନ୍ତ୍ର ସ୍ଥାପିତ ।

ରାଜଧାନୀ—ଭିଏନା ।

କ୍ଷେତ୍ରଫଳ— ବତିଶ ହଜାର ଏକଶତ ପଚସ୍ତରି ବର୍ଗ ମାଇଲ ।

ଜନସଂଖ୍ୟା—ଛଅଷଠି ଲକ୍ଷ ଅଠସ୍ତରି ହଜାର ପାଞ୍ଚଶତ ସତେଇଶ ।

## ବେଲଜିଅମ

ରାଜଧାନୀ—ବ୍ରସେଲ୍ସ ।

କ୍ଷେତ୍ରଫଳ—ଏଗାର ହଜାର ସାତଶତ ପଚିଶ ବର୍ଗମାଇଲ ।

ଲୋକସଂଖ୍ୟା—ଏକାଅଶୀ ଲକ୍ଷ ଊନତିରିଶ ହଜାର ଆଠଶତ ଚଉଦ ।

ରାଜା—ନିୟମତନ୍ତ୍ର ଶାସନ (Constitutional)

ରାଜା ସିନେଟ୍ ଓ ଚେମ୍ବର ଅଫ ରିପ୍ରେଜେଣ୍ଟେଟିଭ୍‌ସଙ୍କ ଦ୍ୱାରା ଶାସନ କାର୍ଯ୍ୟ ଚଳାନ୍ତି ।

## ଚୀନ

ରାଜଧାନୀ—ପେକିଂ

କ୍ଷେତ୍ରଫଳ—ବୟାଳିଶ ଲକ୍ଷ ସତୁରି ହଜାର ବର୍ଗମାଇଲ ।

ଜନ . ଖ୍ୟା—ଚଉରାଳିଶ କୋଟି ନବେ ଲକ୍ଷ ପଚିଅଶୀ ହଜାର ନଅଶ ତେପନ ।

ସାଧାରଣତନ୍ତ୍ର—ଫେବୃଆରୀ୧୨,ସନ୧୯୧୨ରେ ପ୍ରତିଷ୍ଠିତ

ଶାସନକର୍ତ୍ତା—ପ୍ରେସିଡେଣ୍ଟ

## ଡେନ୍‌ମାର୍କ

ରାଜଧାନୀ—କୋପେନ ହେଗେନ୍

କ୍ଷେତ୍ରଫଳ—ପନ୍ଦର ହଜାର ବୟାଳିଶ ବର୍ଗମାଇଲ ।

ଜନସଂଖ୍ୟା—ପଇଁତିରିଶ ଲକ୍ଷ ଏକାବନ ହଜାର ।

ରାଜା—ନିୟମତନ୍ତ୍ର ଶାସନ (Constitutional)

## ଗ୍ରୀସ

ରାଜଧାନୀ—ଏଥେନ୍ସ

କ୍ଷେତ୍ରଫଳ—ପଚିଶ ହଜାର ଦୁଇଶ ପଚସ୍ତରି ବର୍ଗମାଇଲ

ଜନସଂଖ୍ୟା—ବାଷଠି ଲକ୍ଷ ଚବିଶହଜାର ଛଅଶତ ଚଉରାଅଶୀ

ସନ ୧୯୨୪ ମସିହା ମାର୍ଚ୍ଚ ୨୫ ତାରିଖରେ ଏଠାରେ ସାଧାରଣ ତନ୍ତ୍ର ପ୍ରତିଷ୍ଠିତ ହେଲା । ପ୍ରେସିଡେଣ୍ଟ ଦୁଇଟି ସଭା ସହାୟତାରେ ଦେଶର ଶାସନ କାର୍ଯ୍ୟ ନିର୍ବାହ କରନ୍ତି ।

## ହଙ୍ଗେରି

ରାଜଧାନୀ—ବୁଡ଼ାପେଷ୍ଟ

କ୍ଷେତ୍ରଫଳ—ଛତିଶ ହଜାର ଏକଶତ ଅଶୀ ବର୍ଗମାଇଲ

ଜନସଂଖ୍ୟା—ଛୟାଅଶୀଲକ୍ଷ ଷାଠିଏ ହଜାର ସାତଶତ ସତାଅଶୀ

ଏହା ୧୯୧୮ ମସିହା ନଭେମ୍ବର ୧୭ ତାରିଖରେ ଅଷ୍ଟ୍ରିୟା ସାମ୍ରାଜ୍ୟରୁ ବିଚ୍ୟୁତ ହୋଇ ଏବଂ ସାଧାରଣ ତନ୍ତ୍ର ଶାସନ ପ୍ରତିଷ୍ଠିତ ହେଲା ।

ରିଜେଣ୍ଟ ଦୁଇଗୋଟି ସଭାଦ୍ୱାରା ଶାସନ କାର୍ଯ୍ୟ ନିର୍ବାହ କରନ୍ତି ।

## ଇଟାଲି

ରାଜଧାନୀ—ରୋମ

ଏକଲକ୍ଷ ଉଣେଇଶ ହଜାର ସାତଶ ତେୟାଳିଶ ବର୍ଗମାଇଲ

ଲୋକସଂଖ୍ୟା—ଚାରିକୋଟି ଏଗାର ଲକ୍ଷ ତେସ୍ତରି ହଜାର

( ରାଜତନ୍ତ୍ର ଶାସନ )

## ଜାପାନ ସାମ୍ରାଜ୍ୟ

ରାଜଧାନୀ—ଟୋକିଓ

କ୍ଷେତ୍ରଫଳ—ଦୁଇଲକ୍ଷ ଷାଠିଏ ହଜାର ସାତଶତ ତେୟାଶୀ ।

ଲୋକସଂଖ୍ୟା—ଆଠକୋଟି ଚବିଶ ଲକ୍ଷ ଚଉବନ ହଜାର ଚାରିଶ ଅଣାନବେ ।

ସମ୍ରାଟ୍ ଦୁଇଗୋଷ୍ଠି ସଭା ଦ୍ୱାରା ଶାସନ କାର୍ଯ୍ୟ ପରିଚାଳନା କରନ୍ତି ।

## ଶ୍ୟାମ

ରାଜଧାନୀ—ବଂକକ୍

କ୍ଷେତ୍ରଫଳ—ଏକଶତ ପଞ୍ଚାନବେ ହଜାର ବର୍ଗମାଇଲ ।

ଲୋକସଂଖ୍ୟା—ଏକକୋଟି ପନ୍ଦରଲକ୍ଷ ଛ ହଜାର ଦୁଇଶ ସାତ

ସ୍ୱେଚ୍ଛାତନ୍ତ୍ର ଶାସନ ପ୍ରଣାଳୀ ରାଜାଙ୍କ ଦ୍ୱାରା ପ୍ରଚଳିତ ।

## ସ୍ପେନ

ରାଜଧାନୀ—ମାଡ୍ରିଡ ।

କ୍ଷେତ୍ରଫଳ—ଏକଲକ୍ଷ ଛୟାନବେ ହଜାର ସାତଶ ବର୍ଗ ମାଇଲ ।

ଲୋକସଂଖ୍ୟା—ଏକଷଠିଲକ୍ଷ ଏକଚାଳିଶ ହଜାର ପାଞ୍ଚଶ ଏକସ୍ତରି ।

ସନ ୧୯୩୧ ମସିହା ଅପ୍ରେଲ ମାସ ୧୪ ତାରିଖରେ ସାଧାରଣ ତନ୍ତ୍ର ସ୍ଥାପିତ ହେଲା । ଏଠାକାର ଶାସନ କର୍ତ୍ତାଙ୍କ ପଦବୀ—ପ୍ରେସିଡେଣ୍ଟ ଅବ୍ ଦ କେବିନେଟ୍ ଏଣ୍ଡ ମିନିଷ୍ଟାର ଅବ୍ ୱାର୍ ।

## ସଇଡେନ୍

ରାଜଧାନୀ—ଷ୍ଟକହଲମ

କ୍ଷେତ୍ରଫଳ—ଏକଲକ୍ଷ ତେସ୍ତର ହଜାର ଏକଶତ ଷଅଚାଳିଶ ବର୍ଗମାଇଲ ।

ଲୋକସଂଖ୍ୟା—ଏକଷଠି ଲକ୍ଷ ଏକଚାଳିଶ ହଜାର ପାଞ୍ଚଶ ଏକସ୍ତରି ।

ନିୟମ ତନ୍ତ୍ର ଶାସନ ପ୍ରଣାଳୀ ପ୍ରତିଷ୍ଠିତ; ରାଜା ଦୁଇଟି ସଭା-ଦ୍ୱାରା ଶାସନ କାର୍ଯ୍ୟ ନିର୍ବାହ କରନ୍ତି ।

## ସୁଇଜରଲାଣ୍ଡ

ରାଜଧାନୀ—ବର୍ନ୍

କ୍ଷେତ୍ରଫଳ—ପନ୍ଦରହଜାର ନଅଶତ ପଚାଶ ବର୍ଗମାଇଲ ।

ଲୋକସଂଖ୍ୟା—ଚାଳିଶଲକ୍ଷ ଛଅଷଠି ହଜାର

ଦୁଇଗୋଷ୍ଠି ସଭାଦ୍ୱାରା ଗଠିତ ପାର୍ଲିଆମେଣ୍ଟ ସହାୟତାରେ ପ୍ରେସିଡେଣ୍ଟ ଶାସନ କାର୍ଯ୍ୟ ନିର୍ବାହ କରନ୍ତି ।



## ତୁର୍କସ୍ଥାନ ।

ରାଜଧାନୀ— କନଷ୍ଟାଣ୍ଟି ନୋପ୍ଲ

କ୍ଷେତ୍ରଫଳ—ନଅହଜାର ଦୁଇଶତ ଛପନ ବର୍ଗ ମାଇଲ

ଲୋକସଂଖ୍ୟା—ଏକକୋଟି ଛବିଶଲକ୍ଷ ଷାଠିଏ ହଜାର ଦୁଇଶ ପଚସ୍ତରି ।

ସନ ୧୯୨୪ ମସିହା ମାର୍ଚ୍ଚ ମାସ ତା ୩ ରିଖରେ କାମାଲ ପାଶା ତୁରସ୍କର ଖାଲିଫା ଶାସନ ଉଠାଇ ଦେଇ ସାଧାରଣ ତନ୍ତ୍ର ସ୍ଥାପନ କଲେ ଏବଂ ଏହାଙ୍କ ଦ୍ୱାରା ଅବରୋଧ ପ୍ରଥା ରହିତ ହେଲା । ଲାଟିନ୍ ଅକ୍ଷରରେ ଦେଶ ପ୍ରଚଳିତ ଭାଷା ବ୍ୟବହୃତ ହେଲା । ଏସେମ୍ବିଲର ଡେପୁଟି ମାନଙ୍କ ମଧ୍ୟରେ ପ୍ରେସିଡେଣ୍ଟ ନିର୍ବାଚିତ ହୁଅନ୍ତି ଏବଂ ଲୋକ ପ୍ରତିନିଧିମାନଙ୍କ ଦ୍ୱାରା ଗଠିତ ଗ୍ରେଣ୍ଡ ନେସନେଲ ଏସେମ୍ବିଲ୍ ପ୍ରେସିଡେଣ୍ଟଙ୍କ ସାହାଯ୍ୟରେ ଦେଶ ଶାସନ କରନ୍ତି ।

## ରୁଷିଆ

ରାଜଧାନୀ—ପେଟ୍ରୋଗାର୍ଡ

କ୍ଷେତ୍ରଫଳ—ବୟାଳିଶ ଲକ୍ଷ ଏକାବନ ହଜାର ସାତଶ ଛୟାଳିଶ ବର୍ଗ ମାଇଲ

ଲୋକସଂଖ୍ୟା—ଚଉଦକୋଟି ଅଣସ୍ତରି ଲକ୍ଷ ଚଉଷଠି ହଜାର ତିନିଶ ଛଅଷଠି ।

ଏଠାରେ ସମତନ୍ତ୍ର ଶାସନ ପ୍ରଚଳିତ ।

ପ୍ରେସିଡେଣ୍ଟ ଅଫ୍ ଦ କାଉନ୍ସିଲ ଅଫ ପିପଲ୍ସ କମିଶନର ଶାସନ କାର୍ଯ୍ୟ ନିର୍ବାହ କରନ୍ତି ।

## ଆମେରିକା

ରାଜଧାନୀ—ନିଉୟର୍କ

କ୍ଷେତ୍ରଫଳ—ସତାଇଶ ଲକ୍ଷ ଅଠାଇଶ ହଜାର ତିନିଶ ପଞ୍ଚାଶୀ ବର୍ଗ ମାଇଲ ।

ଜନସଂଖ୍ୟା—ତେରକୋଟି ସତୁରିଲକ୍ଷ ଅଠହଜାର ଚାରିଶ ପଚିଶ ।

ସିନେଟ୍ ଏବଂ ହାଉସ୍ ଅଫ ରିପ୍ରେଜେଣ୍ଟେଟିଭ୍ସ ଦ୍ୱାରା ଗଠିତ କଂଗ୍ରେସ ଏବଂ ପ୍ରେସିଡେଣ୍ଟଙ୍କ ଦ୍ୱାରା ଶାସନ କାର୍ଯ୍ୟ ନିର୍ବାହିତ ହୁଏ ।

## ପର୍ତ୍ତୁଗାଲ

ରାଜଧାନୀ—ଲିସବନ୍

କ୍ଷେତ୍ରଫଳ—ଚଉବିଶ ହଜାର ପାଞ୍ଚଶ ବର୍ଗ ମାଇଲ

ଜନସଂଖ୍ୟା—ଏକକୋଟି

୧୯୧୦ ମସିହା ଅକ୍ଟୋବର ୫ ତାରିଖରେ ଏଠାରେ ସାଧାରଣ ତନ୍ତ୍ର ସ୍ଥାପିତ । ଶାସନ କର୍ତ୍ତା—ପ୍ରେସିଡେଣ୍ଟ ।

## ପାରସ୍ୟ

ରାଜଧାନୀ—ତେହେରାଣ

କ୍ଷେତ୍ରଫଳ—ଛଅଲକ୍ଷ ତିରିଶ ହଜାର ବର୍ଗ ମାଇଲ ।

ଜନସଂଖ୍ୟା—ଏକକୋଟି

ନିର୍ବାଚିତ ଶାସନ କର୍ତ୍ତା—ସାହା ( ରାଜା )

## ନରଓ୍ୱେ

ରାଜଧାନୀ—ଖ୍ରୀଷ୍ଟିଆନିଆ

କ୍ଷେତ୍ରଫଳ—ଏକଶ ପଚିଶହଜାର ଛୟାଅଶୀ ବର୍ଗ ମାଇଲ

ଜନସଂଖ୍ୟା—ଅଠାଇଶ ଲକ୍ଷ ନଅହଜାର ପାଞ୍ଚଶ ଚଉଷଠି

ନିୟମ ତନ୍ତ୍ର ( ରାଜତନ୍ତ୍ର ) ଶାସନ ।

## ଇଜିପ୍ଟ

ରାଜଧାନୀ—କାଇରୋ

କ୍ଷେତ୍ରଫଳ—ତିନିଲକ୍ଷ ତେଷଠି ହଜାର ଏକଶତ ଏକାଅଣି ବର୍ଗ ମାଇଲ ।

ଜନସଂଖ୍ୟା—ଏକକୋଟି ଏକଚାଳିଶ ଲକ୍ଷ ଅଠଷଠିହଜାର ସାତଶ ଛପନ

ଦୁଇଟି ସଭା ସହାୟତାରେ ରାଜା ଦେଶ ଶାସନ କରନ୍ତି ।

## ଫ୍ରାନ୍ସ

ରାଜଧାନୀ—ପାରିସ

କ୍ଷେତ୍ରଫଳ—ଦୁଇଶ ବାରହଜାର ଆଠଶ ପଞ୍ଚାନବେ ବର୍ଗ ମାଇଲ

ଜନସଂଖ୍ୟା—ଚାରିକୋଟି ସାତଲକ୍ଷ ତେୟାଳିଶ ହଜାର ଆଠଶ ଏକାବନ

ଦୁଇଟି ସଭାଦ୍ୱାରା ନିର୍ବାଚିତ ପ୍ରେସିଡେଣ୍ଟ ଏହାର ଶାସନ କାର୍ଯ୍ୟ ଚଳାନ୍ତି ।

## ଜର୍ମାନୀ

ରାଜଧାନୀ—ବର୍ଲିନ

କ୍ଷେତ୍ରଫଳ—ଏକଲକ୍ଷ ବୟାଅଶୀ ହଜାର ଦୁଇଶତ ବର୍ଗ ମାଇଲ

ଜନସଂଖ୍ୟା—ଛଅକୋଟି ପଚିଶଲକ୍ଷ ବୟାନବେ ହଜାର ପାଞ୍ଚଶତ ପଚସ୍ତରି

୧୯୧୯ ମସିହା ଜୁଲାଇ ୩୧ ତାରିଖରେ ଏଠାରେ ସାଧାରଣ ତନ୍ତ୍ର ସ୍ଥାପିତ ହେଲା । ଦୁଇଟି ସଭା ସାହାଯ୍ୟରେ ପ୍ରେସିଡେଣ୍ଟ ଏଠା ଶାସନ କାର୍ଯ୍ୟ ଚଳାନ୍ତି ।

## ଗ୍ରେଟ ବ୍ରିଟେନ୍

ରାଜଧାନୀ—ଲଣ୍ଡନ

କ୍ଷେତ୍ରଫଳ—ଅଠାଅଶୀ ହଜାର ସାତଶତ ଅଣ୍ଟେଳିଶ ବର୍ଗ ମାଇଲ

ଜନସଂଖ୍ୟା—ଚାରିକୋଟି ଏକସ୍ତରି ଲକ୍ଷ ଅଣ୍ଟେଳିଶ ହଜାର ଦୁଇଶ ତେଷଠି

ରାଜାଙ୍କ ଅଧୀନରେ ଏଠାରେ ପ୍ରଜାତନ୍ତ୍ର ଶାସନ ପ୍ରଚଳିତ ।

## ହଲାଣ୍ଡ

ରାଜଧାନୀ—ହଗ୍

କ୍ଷେତ୍ରଫଳ—ବାର ହଜାର ସାତସ ଏକଷଠି ବର୍ଗମାଇଲ

ଜନସଂଖ୍ୟା—ଅଣାଅଶିଲକ୍ଷ ଅଠେଇଶ ହଜାର ଏକଶ ଚଉରାଳିଶ

ବର୍ତ୍ତମାନ ଶାସନକର୍ତ୍ତ୍ରୀ—ରାଣୀ

ଦୁଇଟି ସଭା ଦ୍ୱାରା ନିୟମତନ୍ତ୍ର ଶାସନ ପ୍ରଚଳିତ ।

## ଆଇରିସଫ୍ରି ଷ୍ଟେଟ

ରାଜଧାନୀ—ଡବଲିନ
କ୍ଷେତ୍ରଫଳ—ଛବିଶ ହଜାର ଛଅଶତ ବର୍ଗମାଇଲ
ଜନସଂଖ୍ୟା—ଊନତିଂଶ ଲକ୍ଷ ଏକସ୍ତରି ହଜାର ନଅଶତ ବୟାନବେ

ଦୁଇଟି ସଭା ଏବଂ ଗଭର୍ଣ୍ଣର ଜେନେରେଲଙ୍କୁ ନେଇ ଶାସନ କାର୍ଯ୍ୟ ନିର୍ବାହିତ ହୁଏ । ରାଜା ଏହି ଦୁଇସଭା ଦ୍ୱାରା ଆଇନ ପ୍ରଣୟନ କରନ୍ତି ।



## ବିଦେଶୀୟ ମୁଦ୍ରା

( ଇଂରାଜୀ ମୁଦ୍ରାର ଅନୁପାତ )

| ( ଦେଶ ) | ( ପ୍ରଧାନମୁଦ୍ରା ) | ( ପା—ସି—ପେ ) |
|---|---|---|
| ଅଷ୍ଟ୍ରିଆ | ଶିଲିଂ | ୦—୦—୬. ୯୩ |
| ବେଲଜିଅମ | ଫ୍ରେଙ୍କ | ୦—୦—୯. ୫୧ |
| ଲଙ୍କା | ଟଙ୍କା | ୦—୧—୬ |
| ଚୀନ | ୟୁଆନ | ୦—୧—୬ |
| ଡେନମାର୍କ | କ୍ରୋନ୍ | ୦—୧—୧. ୨୫ |
| ଇଜିପ୍ଟ | ପ୍ୟାସ ଟ୍ରେ | ୧—୦—୬. ୨୫ |
| ଫ୍ରାନ୍ସ | ଫ୍ରାଙ୍କ | ୦—୦—୧, ୯୩ |
| ଗ୍ରୀସ | ଡ୍ରେକମା | ୦—୦—୦, ୬୪ |
| ଜର୍ମାନ | ରିକ୍ସମାର୍କ | ୦—୦-୧୧, ୭୫ |
| ହଂକଂ | ଡ଼ୋଲାର | ୦—୧—୯, ୮୧ |
| ହଙ୍ଗେରି | ପେଙ୍ଗୋ | ୦—୦—୮, ୬୨ |
| ଭାରତ | ଟଙ୍କା | ୦—୧—୬ |
| ଇଟାଲି | ଲାଇରା | ୦—୦—୨, ୬ |
| ଜାପାନ | ଜ୍ୟାନ୍ | ୦—୨—୦, ୫୦ |
| ମେକ୍ସିକୋ | ପେସସ୍ | ୦—୨—୦, ୫୦ |
| ଉ: ଆଫ୍ରିକା | ପେସ୍‌ଟ୍ରେ | ୧— —୬, ୫୦ |
| ହଲଣ୍ଡ(ନେଦରଲେଣ୍ଡ) | ଫ୍ଲୋରିନ୍ | ୦—୧—୬, ୮୨ |
| ନରୱେ | କ୍ରୋନ୍ | ୦—୧—୧, ୫୦ |
| ପାରସ୍ୟ | ପହଲଭି | ୧—୦—୦ |
| ପୋଲାଣ୍ଡ | ଜ୍ଲୋଟି | ୦—୦—୫, ୫୦ |
| ପର୍ତ୍ତୁଗାଲ | ଏସ୍‌କ୍ୟୁଡୋ | ୦—୪—୫, ୨୫ |
| ରୋମାନିଆ | ଲିଉ | ୦—୦—୦, ୩ |
| ରୁଷିଆ | ରବଲ୍ | ୦—୨—୧, ୩୩ |
| ସ୍ପେନ | ପେସେଟା | ୦—୦—୯, ୫୨ |
| ସୁଇଡେନ | କ୍ରୋନ | ୦—୧—୧, ୫୦ |
| ସୁଇଜରଲେଣ୍ଡ | ଫ୍ରାଙ୍କ | ୦—୦—୯, ୫୨ |
| ତୁରସ୍କ | ପେସ୍‌ଟ୍ରେ | ୦—୧୮—୦ |
| ଯୁକ୍ତରାଜ୍ୟ(ଆମେରିକା) | ଡ଼ୋଲାର | ୦—୪—୧, ୩୨ |
| ଯୁଗସ୍ଲେଭିଆ | ଦିନାର୍ | ୦—୦—୯, ୫୨ |

ଅଷ୍ଟ୍ରେଲିଆ, ଜାମେକା, ନିଉଜିଲେଣ୍ଡ ଏବଂ ଦକ୍ଷିଣ ଆଫ୍ରିକାର ସମ୍ମିଳିତ ରାଜ୍ୟ ଗ୍ରେଟବ୍ରିଟେନର ମୁଦ୍ରା ପରି ।



## ପୃଥିବୀର କ୍ଷୁଦ୍ରତମ ପ୍ରଜାତନ୍ତ୍ର ରାଜ୍ୟ ।

ଇଉରୋପ ମହାଦେଶର ଇଟାଲୀଦେଶ ନିକଟରେ ସେନ୍-ମେରିନୋ ନାମକ ଏକ ସ୍ୱତନ୍ତ୍ର ପ୍ରଜାତନ୍ତ୍ର ରାଜ୍ୟ ଅଛି । ଏହାର କ୍ଷେତ୍ରଫଳ ୩୮ ବର୍ଗମାଇଲ ଏବଂ ଲୋକସଂଖ୍ୟା ୧୨ ହଜାର—ଭାରତର ଯେ କୌଣସି ସାଧାରଣ ସହରଠାରୁ ମଧ୍ୟ ଛୋଟ ବୋଲି କହିଲେ ଚଳେ । ତଥାପି ତାହା ଆଜି ଏକ ସ୍ୱାଧୀନ ରାଜ୍ୟରୂପେ ପୃଥିବୀର ସମ୍ମାନ ଆକର୍ଷଣ କରିଅଛି । ଏହାର ଶାସନ କାର୍ଯ୍ୟ ପ୍ରଜା ସାଧାରଣଙ୍କ ଦ୍ୱାରା ନିର୍ବାଚିତ ପ୍ରତିନିଧିମାନଙ୍କ କର୍ତ୍ତୃକ ପରିଚାଳିତ ହୁଏ । ଏହି ପ୍ରତିନିଧିମାନଙ୍କ ସଭାକୁ ଗ୍ରେଟ୍‌କାଉନ୍‌ସିଲ ବୋଲି କୁହାଯାଏ । ଶାସନଯନ୍ତ୍ରର ସୁପରିଚାଳନ ନିମିତ୍ତ ଏହି ସଭା ପ୍ରତିଛଅମାସରେ ଦୁଇଜଣ ସଭ୍ୟଙ୍କୁ ନିର୍ବାଚିତ କରେ ଏବଂ ସେହି ଦୁଇଜଣହିଁ ପ୍ରେସିଡେଣ୍ଟ ପରି କାର୍ଯ୍ୟ କରନ୍ତି ।

ଗତ ଇଉରୋପୀୟ ମହାସମର ଲାଗିଥିଲାବେଳେ ଏହି ସେନ୍‌ମେରିନୋ ଦେଶ ଜର୍ମାନୀର ବିରୁଦ୍ଧରେ ଯୁଦ୍ଧ ଘୋଷଣା କରିଥିଲା । ସାମାନ୍ୟ ଯେ କେତେ ଡଜନ୍ ତାର ସୈନ୍ୟ ଥିଲେ ସେ ସମସ୍ତ ଇଟାଲିର ସୈନ୍ୟମାନଙ୍କ ସହିତ ମିଳିତ ହୋଇ ଯୁଦ୍ଧକ୍ଷେତ୍ରକୁ ଅଗ୍ରସର ହୋଇ ଥିଲେ ।

ଭାତ ଜନନୀ ଉପକାର ।

ଅନ୍ଧୁର ଏକ ଆଶ୍ଚର୍ଯ୍ୟର ବିଷୟ ଏହି ଯେ, ଏହି ଦେଶଟି ଯେପରି ପୃଥିବୀର କ୍ଷୁଦ୍ରତମ ପ୍ରଜାତନ୍ତ୍ର ଦେଶ, ସେହିପରି ମଧ୍ୟ ପ୍ରାଚୀନ ତମ ପ୍ରଜାତନ୍ତ୍ର ଦେଶ । ଏହି ଦେଶରେ ବର୍ତ୍ତମାନ ଯେଉଁ ଶାସନପଦ୍ଧତି ଚଳୁଅଛି, ତାହାର ପରମାୟୁ ଏକ ହଜାର ବର୍ଷ । ଇଟାଲୀର ଅନୁକରଣରେ ବର୍ତ୍ତମାନ ଏହି ଦେଶରେ ଫେସିଷ୍ଟି ଶାସନ ପ୍ରବର୍ତ୍ତିତ ହୋଇଅଛି ।



## ବିଭିନ୍ନଦେଶର ପାର୍ଲିଆମେଣ୍ଟ ମେମ୍ବରଙ୍କ ବାର୍ଷିକ ବେତନ

ଇଂଲଣ୍ଡ—ରାସ୍ତାଖର୍ଚ୍ଚା ସହିତ ଚାରିଶ ପାଉଣ୍ଡ
ଫ୍ରାନ୍ସ—ବାଷଠି ହଜାର ଫ୍ରାଙ୍କ—ଏହା ବାଦ୍ ରେଲରେ ଯାତାୟାତର ସୁବିଧା
ଜର୍ମେନୀ—ବାର ହଜାର ମାର୍କ୍ସ ଏବଂ ଏପରି ରାସ୍ତାଖର୍ଚ୍ଚା
ଇଟାଲୀ—ପନ୍ଦର ହଜାର ଲାୟାର ଏବଂ ରାସ୍ତାଖର୍ଚ୍ଚା
ସୁଇଡେନ୍—ପଇଁତିରିଶ ହଜାର କ୍ରୁନର୍ ( ରାସ୍ତାଖର୍ଚ୍ଚା ସହିତ )
ଆମେରିକାର ଯୁକ୍ତରାଜ୍ୟ—ଦଶ ହଜାର ଡଲାର ( ରାସ୍ତାଖର୍ଚ୍ଚା ସହିତ )

## ପ୍ରିଭି କାଉନ୍‌ସିଲ

ଲଣ୍ଡନ ନଗରରେ ଅର୍ଥାତ୍ ବିଲାତରେ ସମ୍ରାଟ୍‌ଙ୍କର ଯେ ପ୍ରଧାନ ଅଦାଲତ ଅଛି, ତାହାର ନାମ ପ୍ରିଭି କାଉନ୍‌ସିଲ । ହାଇକୋର୍ଟ ସଦୃଶ ସେଠାକାର କାର୍ଯ୍ୟ ପ୍ରଣାଳୀ । ସେଠାରେ ମଧ୍ୟ ତିନି ଚାରି ଜଣ ବିଚାରପତି ଏକତ୍ର ହୋଇ ବିଚାର କରନ୍ତି । ବ୍ରିଟିଶ ଅଧିକାରଭୁକ୍ତ ଯେତେ ଦେଶ ଅଛି ସମସ୍ତ ଦେଶର ସମସ୍ତ ମୋକଦ୍ଦମାର ଅପିଲ ଏଠାରେ ହୋଇଥାଏ । ପ୍ରିଭି-କାଉନ୍‌ସିଲରେ ଅପିଲ କରିବାକୁ ହେଲେ, ପ୍ରଥମେ ସ୍ଥାନୀୟ ହାଇକୋର୍ଟରେ ଜଜ୍‌ଙ୍କ ନିକଟ ଆବେଦନ କରିବାକୁ ହୁଏ । ସେ ଯଦି ଦରଖାସ୍ତକାରୀର ଆବେଦନ ଆବଶ୍ୟକ ଓ ଯୁକ୍ତିସଙ୍ଗତ ବିବେଚନା କରନ୍ତି ତେବେ ପ୍ରିଭି କାଉନ୍‌ସିଲରେ ଅପିଲ କରିବାକୁ ଆଦେଶ ଦିଅନ୍ତି । ଜଜ୍‌ଙ୍କ ନିକଟରୁ ଆଦେଶ ପାଇଲେ ଅପୀଲର ସମସ୍ତ ଖରଚ ଅଦାଲତରେ ଜମା କରିବାକୁ ହୁଏ । ଏହି ଖରଚ ନଗଦ ଟଙ୍କା ହେଲେ ଚଳେ ଅଥବା ଅପର କୌଣସି ସ୍ଥାବର ସମ୍ପତ୍ତି—ଯେପରି ଘର, ବଗିଚା, ଜମି, କୋମ୍ପାନୀର କାଗଜ ସିକ୍ୟୁରିଟି ସ୍ୱରୂପ ରଖିଲେ ମଧ୍ୟ ଚଳେ । ବିଲାତରେ ଶେଷ ଅପୀଲ । ସେଠାକାର ବିଚାରକଗଣ ଯାହା ନିଷ୍ପତ୍ତି କରିଦେବେ, ତାହା ଉପରେ ଆଉ ଅପୀଲ ନାହିଁ ଓ ସମସ୍ତ ହାଇକୋର୍ଟ ସେହି ନିଷ୍ପତ୍ତିଙ୍କୁ ନଜିର ସ୍ୱରୂପ ମାନି ଚଳିବାକୁ ବାଧ୍ୟ । ସକଳ ମୋକଦ୍ଦମାର ବିଲାତରେ ଅପୀଲ ହୁଏ ନାହିଁ, ସୁତରାଂ ହାଇକୋର୍ଟରୁ ଯାହା ନିଷ୍ପତ୍ତି ହୁଏ । ଅପରାପର ସ୍ଥାନର ନିମ୍ନ ଅଦାଲତ ସମୂହ ସେହି ନିଷ୍ପତ୍ତି ନଜିର ସ୍ୱରୂପ ମାନି ଚଳିବାକୁ ବାଧ୍ୟ । ଏହି ସକଳ ନଜିର ସାଧାରଣଙ୍କର ଓ ଉକିଲମାନଙ୍କର ଅବଗତି ନିମିତ୍ତ ପୁସ୍ତକାକାରରେ ମୁଦ୍ରିତ ହୋଇ ବିକ୍ରୀତ ହୋଇଥାଏ । ଏହାକୁ ରିପୋର୍ଟ କହନ୍ତି । ଏଥିରେ ବିଚାରକଙ୍କର ରାୟ, ଉକିଲମାନଙ୍କର ବକ୍ତୃତାର ସ୍ଥୂଳମର୍ମ ଓ ପ୍ରଧାନ ପ୍ରଧାନ ସମସ୍ତ ମୋକଦ୍ଦମାର ବିବରଣ ଲେଖା ହୋଇଥାଏ । ଏହି ସକଳ ନଜିର ଆଇନ ସ୍ୱରୂପେ ବ୍ୟବହୃତ ହୋଇଥାଏ ଓ ପ୍ରତ୍ୟେକେ ମାନି ଚଳନ୍ତି ।



## ବ୍ରିଟିଶ ସାମ୍ରାଜ୍ୟର ଲୋକସଂଖ୍ୟା ।

ଶେଷ ଜନଗଣନା ହିସାବରୁ ଜଣା ଯାଇଅଛି ଯେ, ବ୍ରିଟିଶ ସାମ୍ରାଜ୍ୟର ସର୍ବମୋଟ ଲୋକସଂଖ୍ୟା ୪୮୫୦୦୦୦୦୦ ଅଟେ, ଏଥି ମଧ୍ୟରୁ କେବଳ ଇଉନାଇଟେଡ୍ କିଙ୍ଗଡମ୍ ବା ଗ୍ରେଟ୍‌ବ୍ରିଟେନର ଲୋକସଂଖ୍ୟା ୪୭୨୨୭୩୮୨ ।

ଇଂଲଣ୍ଡ ଏବଂ ଓଏଲ୍‌ସର ଲୋକସଂଖ୍ୟା ୩୬୮୮୫୨୪୨
ସ୍କଟଲାଣ୍ଡର ଲୋକସଂଖ୍ୟା ୪୮୮୨୨୮୮
ଆୟାରଲାଣ୍ଡର ଲୋକସଂଖ୍ୟା ୪୩୭୦୦୦୦
ନିକଟବର୍ତ୍ତୀ ଅନ୍ୟାନ୍ୟ ଦ୍ୱୀପଗୁଡ଼ିକର ଲୋକସଂଖ୍ୟା ୧୪୯୮୫୨

ଏତଦ୍ ବ୍ୟତୀତ ଅନ୍ୟାନ୍ୟ ପ୍ରଧାନ ୨ ଉପନିବେଶ ଗୁଡ଼ିକର ଲୋକସଂଖ୍ୟା ନିମ୍ନରେ ପ୍ରଦତ୍ତ ହେଲା :—

ଭାରତବର୍ଷ ( ୧୯୩୦ ଗଣନା ) ୩୫୨୯୮୬୮୬
ଅଷ୍ଟ୍ରେଲିଆ ୬୨୫୦୦୦୦

| | |
|---|---|
| ନ୍ୟୁଜିଲାଣ୍ଡ | ୧୪୬୦୦୦୦୦ |
| କାନଡ଼ା | ୯୯୩୪୫୦୦ |
| ନେଟାଲ | ୧୦୨୨୪୩୧ |
| କେପକଲୋନି | ୨୬୮୧୧୮୫ |
| ଟ୍ରାନ୍ସଭାଲ | ୨୦୮୫୮୩୬ |
| ଅରେଞ୍ଜ ଫ୍ରି ଷ୍ଟେଟ୍ | ୬୨୮୩୬୦ |
| ରୋଡେସିଆ | ୧୮୬୬୦୦୦ |
| ୟୁଗାଣ୍ଡା ( ୧୯୨୧ ର ଗଣନା ) | ୩୪୧୦୮୫୬ |
| ଉତ୍ତର ନାଇଜେରିଆ | ୯୦୦୦୦୦୦ |
| ଦକ୍ଷିଣ ନାଇଜେରିଆ | ୮୦୦୦୦୦୦ |



## ବିଭିନ୍ନ ଶାସନ ପ୍ରଣାଳୀ ।

ପୃଥିବୀରେ ବିଭିନ୍ନ ଦେଶରେ ବିଭିନ୍ନ ଶାସନ ପ୍ରଣାଳୀ ପ୍ରଚଳିତ । ତାହା ସାଧାରଣତଃ ଛଅ ପ୍ରକାର । ଯଥା :— ( ୧ ) ପୂର୍ଣ୍ଣ ଯଥେଚ୍ଛାଚାର ( ୨ ) ଯଥେଚ୍ଛାଚାର ( ୩ ) ପୂର୍ଣ୍ଣ ରାଜତନ୍ତ୍ର ( ୪ ) ରାଜତନ୍ତ୍ର ( ୫ ) ପ୍ରଜାତାନ୍ତ୍ରିକ ରାଜତନ୍ତ୍ର ଓ ( ୬ ) ସାଧାରଣ ତନ୍ତ୍ର ।

ଯେଉଁ ଦେଶରେ କୌଣସି ଆଇନ କାନୁନ ନାହିଁ, ରାଜାଙ୍କ ଇଚ୍ଛାରେ ସମସ୍ତ କାର୍ଯ୍ୟ ସମ୍ପାଦିତ ହୁଏ, ତାହାକୁ 'ପୂର୍ଣ୍ଣ ଯଥେଚ୍ଛାଚାର' କହନ୍ତି ।

ଯେଉଁ ଦେଶରେ ରାଜାଙ୍କ ଇଚ୍ଛାହିଁ ଆଇନ ସେ ଦେଶର ଶାସନ ପ୍ରଣାଳୀ 'ଯଥେଚ୍ଛାଚାର' ।

ଯେଉଁ ଦେଶରେ ଆଇନ କାନୁନ ଅଛି ଏବଂ ରାଜା ସେହି ଆଇନ ଅନୁସାରେ ଚଳନ୍ତି, ସେ ଦେଶର ଶାସନ ପ୍ରଣାଳୀର ନାମ 'ପୂର୍ଣ୍ଣ ରାଜତନ୍ତ୍ର' ଯେପରି ଜାପାନ ।

ଯେଉଁ ଦେଶରେ ରାଜାଙ୍କ କ୍ଷମତା ସୀମାବଦ୍ଧ, ସେ ଦେଶର ଶାସନ ପ୍ରଣାଳୀକୁ 'ରାଜତନ୍ତ୍ର' କହନ୍ତି ।

ଯେଉଁ ଦେଶରେ ରାଜା, ପ୍ରଜାପ୍ରତିନିଧି ମାନଙ୍କର ସମ୍ପୂର୍ଣ୍ଣ ଅଧୀନ ତାହାକୁ 'ପ୍ରଜାତାନ୍ତ୍ରିକ ରାଜତନ୍ତ୍ର' କହନ୍ତି । ଯେପରି ଇଂଲଣ୍ଡ ।

ଯେଉଁ ଦେଶରେ କୌଣସି ରାଜା ନାହାନ୍ତି, ସେଠାରେ 'ସାଧାରଣତନ୍ତ୍ର' ପ୍ରଚଳିତ । ଯେପରି ଆମେରିକା ।



## ପୃଥିବୀରେ କେତେକ ଦେଶର ନିରକ୍ଷରଙ୍କ ସଂଖ୍ୟା ।

| | | |
|---|---|---|
| ତୁର୍କୀ ( ୧୯୨୭ ର ଗଣନା ) | ଶତକଡ଼ା | ୯୧.୮ |
| ଭାରତ ( ୧୯୨୧ ର ଗଣନା ) | ,, | ୯୦.୦ |
| ଇଜିପ୍ଟ ( ୧୯୨୭ ର ଗଣନା ) | ,, | ୮୫.୭ |
| ବ୍ରାଜିଲ ( ୧୯୨୦ ର ଗଣନା ) | ,, | ୬୭.୦ |
| ପର୍ତ୍ତୁଗାଲ ( ୧୯୨୦ ର ଗଣନା ) | ,, | ୬୫.୦ |
| ମେକ୍ସିକୋ (୧୯୨୧ର ଗଣନା) | ,, | ୬୪.୯ |
| ସୋଭିଏଟ୍ ରୁଷିଆ (୧୯୨୬ର ଗଣନା) | ,, | ୪୮.୭ |
| ସ୍ପେନ ( ୧୯୨୦ ର ଗଣନା ) | ,, | ୪୩.୦ |
| ଗ୍ରୀସ ( ୧୯୨୮ ର ଗଣନା) | ,, | ୪୩.୧ |
| ପୋଲାଣ୍ଡ ( ୧୯୨୧ ର ଗଣନା ) | ,, | ୩୨.୭ |
| ଇଟାଲୀ ( ୧୯୨୧ ର ଗଣନା ) | ,, | ୨୬.୮ |

( ୧୯୩୦ ର ) ଭାରତରେ ୩୫୨୮୭୭୨୮ ମଧ୍ୟରୁ ଶିଶୁ ଓ ବାଳକ ସମେତ ୨୮୧୩୧୩୧୫ ଜଣ ମାତ୍ର ଶିକ୍ଷିତ ଅର୍ଥାତ୍ ସମୁଦାୟ ଜନ ସଂଖ୍ୟାର ଶତକଡ଼ା ପ୍ରାୟ ୮ ଜଣ ଶିକ୍ଷିତ ଓ ୯୨ ଜଣ ଅଶିକ୍ଷିତ ଏବଂ ନିରକ୍ଷର ।



## ପୃଥିବୀର କୃଷି (ଧାନ ଜମି ।)

| ଦେଶ | ଏକର |
|---|---|
| ଭାରତବର୍ଷ | ୮୦,୬୮୬,୦୦୦ |
| ଇଟାଲୀ | ୩୪୦,୦୦୦ |
| ଜାପାନ | ୭,୬୩୯,୦୦୦ |
| ଇଣ୍ଡୋ ଚାଇନା | ୧୧,୬୮୨,୦୦୦ |
| ଯୁକ୍ତସାମ୍ରାଜ୍ୟ | ୮୯୨,୦୦୦ |
| ବୁଲଗେରିଆ | ୧୦,୦୦୦ |

| ଦେଶ | ଏକର |
|---|---|
| ଇଜପ୍ଟ (ମିଶର) | ୨୩୧,୦୦୦ |
| ଅଷ୍ଟ୍ରେଲିଆ | — |
| କାନଡ଼ା | — |
| ଜର୍ମାନୀ | — |
| ଗ୍ରେଟବ୍ରିଟେନ | — |

## ଗୋହମ ଜମି ।

| ଦେଶ | ଏକର |
|---|---|
| ଭାରତବର୍ଷ | ୩୦,୩୦୪,୦୦୦ |
| ଇଟାଲୀ | ୧୧,୨୭୯,୦୦୦ |
| ଯାପାନ | ୧,୧୪୯,୦୦୦ |
| ଇଣ୍ଡୋଚାଇନା | — |
| ଯୁକ୍ତ ସାମ୍ରାଜ୍ୟ | ୫୪,୧୮୭,୦୦୦ |
| ବୁଲଗେରିଆ | — |
| ଇଜପ୍ଟ ( ମିଶର ) | ୧,୪୧୫,୦୦୦ |
| ଅଷ୍ଟ୍ରେଲିଆ | ୧୦,୮୩୩,୦୦୦ |
| କାନଡ଼ା | ୨୨,୦୪୭,୦୦୦ |
| ଜର୍ମାନୀ | ୩,୭୨୨,୦୦୦ |
| ଗ୍ରେଟ ବ୍ରିଟେନ | ୧,୫୯୯,୦୦୦ |

ବାର୍ଷିକ ପ୍ରାୟ ୭ କୋଟି ମହଣ ଧାନ ଭାରତବର୍ଷରୁ ବିଦେଶକୁ ରପ୍ତାନୀ ହୋଇଥାଏ ।

## ବାଣିଜ୍ୟର ଅବନତି ।

ବିଗତ ବର୍ଷ କଲିକତା ବନ୍ଦରରୁ କେତେ ଜାହାଜ ବିଦେଶକୁ ରପ୍ତାନୀ ହୋଇଅଛି ଏବଂ କେତେ ବିଦେଶରୁ ଭାରତକୁ ଆସିଅଛି ତାହାର ଗୋଟିଏ ହିସାବ ପ୍ରକାଶିତ ହେଲା ।

୧୯୩୧ ମାର୍ଚ୍ଚ ମାସରେ କଲିକତାକୁ ୩୪୫ ଲକ୍ଷ ଟଙ୍କାର ଜାହାଜ ଆସିଥିଲା । ଗତ ଫେବୃୟାରୀ ମାସରେ ୨୭୦ ଲକ୍ଷ ଟଙ୍କାର ଜାହାଜ ଆସିଅଛି ।

ଅପ୍ରେଲ ମାସରେ ୩୬୮ ଲକ୍ଷ ଟଙ୍କାର ଜାହାଜ ବିଦେଶକୁ ରପ୍ତାନୀ ହୋଇଅଛି । ପୂର୍ବ ବର୍ଷ ୪୨୪ ଲକ୍ଷ ଟଙ୍କାର ଜାହାଜ ରପ୍ତାନୀ ହୋଇଥିଲା ।

ବିଦେଶରୁ ଆସୁଥିବା କେଉଁ କେଉଁ ଜାହାଜ କେତେ କମି ଯାଇଛି ତାହାର ଗୋଟିଏ ହିସାବ ନିମ୍ନରେ ଦିଆଗଲା ।

| | |
|---|---|
| ତୁଲାଜାହାଜ | ୭ ଲକ୍ଷ |
| କଳକବଜା | ୮ ଲକ୍ଷ |
| ରଙ୍ଗନବାତ | ୪ ଲକ୍ଷ |
| ସିଗାରେଟ | ୫ ଲକ୍ଷ |

## ବିଭିନ୍ନ ରାଜ୍ୟର କର ପରିମାଣ ।

ଲଣ୍ଡନ ତା ୧୫।୧୨।୩୨

ପାର୍ଲିଆମେଣ୍ଟରେ ବିଲାତ ଅର୍ଥମନ୍ତ୍ରୀ ଚେମ୍ବରଲେନ୍ କହିଛନ୍ତି ଯେ, ଗ୍ରେଟ୍ ବ୍ରିଟେନର ଲୋକସଂଖ୍ୟାରେ ଜଣ ପିଛା ହାରାହାରି ୨୪୫ ଟଙ୍କା ବାର୍ଷିକ ଟିକସ ଅଦାୟ ହେଉଛି, ଫ୍ରାନ୍ସରେ ଜଣପିଛା ୭ଶହ ଟଙ୍କା ଅଦାୟ ହେଉଛି । ଆମେରିକାରେ ଜଣ ପିଛା ରାଷ୍ଟ୍ର ସରକାର ଟିକସ ପରିମାଣ ବାର୍ଷିକ ପ୍ରାୟ ୭୫ ଟଙ୍କା, ଜର୍ମାନୀରେ ରାଷ୍ଟ୍ରୀୟ ସରକାର ଟିକସ ପରିମାଣ ଜଣପିଛା ପ୍ରାୟ ୮୦ ଟଙ୍କା, ଇଟାଲୀରେ ଜଣପିଛା ପ୍ରାୟ ୩୨୦ ଟଙ୍କା ଅଦାୟ ହୁଏ ।

## ବିଭିନ୍ନ ଦେଶର ବ୍ୟୋମଯାନ ।

( ସାଧାରଣ )

| ଦେଶର ନାମ | ବ୍ୟୋମଯାନର ସଂଖ୍ୟା— | ଯୁଦ୍ଧ ଚାଳକଙ୍କ ସଂଖ୍ୟା |
|---|---|---|
| ଆମେରିକା | ୪୦୦୦ | ୫୦୦୦ |
| ଫ୍ରାନ୍ସ | ୧୦୦୦ | ୧୦୦୦ |
| ଜର୍ମାନୀ | ୪୦୦ | ୪୦୦ |
| ବ୍ରିଟେନ | ୩୦୦ | ୮୦୦ |
| ଜାପାନ | ୧୦୦ | ୩୦୦ |
| ଇଟାଲୀ | — | ୧୦୦୦ |

ଏତଦ୍‌ବ୍ୟତୀତ

## ଯୁଦ୍ଧ ବ୍ୟୋମଯାନ ।

| | |
|---|---|
| ଆମେରିକା | ୧୫୧୦ |
| ଫ୍ରାନ୍ସ | ୪୫୧୦ |
| ଇଟାଲି | ୧୮୦୦ |
| ବ୍ରିଟେନ | ୧୫୦୦ |
| ସୋଭିଏଟ ରୁଷିଆ | ୧୪୦୦ |
| ଯାପାନ | ୬୦୦+ନୌଯୁଦ୍ଧ ପାଇଁ ୪୦୦ |



## ବିଭିନ୍ନ ଦେଶରେ ବିବାହର ବୟସ ।

ଅଷ୍ଟ୍ରେଲିଆରେ ସ୍ତ୍ରୀ ଓ ପୁରୁଷ ୧୪ ବର୍ଷରେ
ଜର୍ମାନିରେ ସ୍ତ୍ରୀ ୧୪ ବର୍ଷରେ ଓ ପୁରୁଷ ୧୮ ବର୍ଷରେ
ବେଲଜିଅମ୍‌ରେ ସ୍ତ୍ରୀ ୧୫ ବର୍ଷରେ ଓ ପୁରୁଷ ୧୮ ବର୍ଷରେ
ସ୍ପେନରେ ସ୍ତ୍ରୀ ୧୨ ବର୍ଷରେ ଓ ପୁରୁଷ ୧୪ ବର୍ଷରେ
ଫ୍ରାନ୍ସରେ ସ୍ତ୍ରୀ ୧୫ ବର୍ଷରେ ଓ ପୁରୁଷ ୧୮ ବର୍ଷରେ
ଗ୍ରୀସ୍‌ରେ ସ୍ତ୍ରୀ ୧୨ ବର୍ଷରେ ଓ ପୁରୁଷ ୧୪ ବର୍ଷରେ
ହଙ୍ଗେରିରେ—କେଥଲିକ ସ୍ତ୍ରୀ ୧୨ ବର୍ଷରେ ପୁରୁଷ ୧୪ ବର୍ଷରେ
ଓ ପ୍ରୋଟେଷ୍ଟାଣ୍ଟ ସ୍ତ୍ରୀ ୧୫ ବର୍ଷରେ ଓ ପୁରୁଷ ୧୮ ବର୍ଷରେ
ପର୍ତ୍ତୁଗାଲରେ ସ୍ତ୍ରୀ ୧୨ ବର୍ଷରେ ଓ ପୁରୁଷ ୧୪ ବର୍ଷରେ
ରୁଷିଆରେ ସ୍ତ୍ରୀ ୧୬ ବର୍ଷରେ ଓ ପୁରୁଷ ୧୮ ବର୍ଷରେ
ସେକ୍ସନିରେ ସ୍ତ୍ରୀ ୧୬ ବର୍ଷରେ ଓ ପୁରୁଷ ୧୮ ବର୍ଷରେ
ସୁଇଜରଲେଣ୍ଡରେ ସ୍ତ୍ରୀ ୧୨ ବର୍ଷରେ ପୁରୁଷ ୧୪ ବର୍ଷରେ
ଏବଂ ତୁର୍କିରେ ଯୌବନ ଅବସ୍ଥାରେ ବିବାହ କରନ୍ତି ।



## ବିଭିନ୍ନ ଜାତୀୟ ପ୍ରାଣିମାନଙ୍କର ଗର୍ଭଧାରଣ ସମୟ

ମାଂସାହାରୀ ପ୍ରାଣିମାନଙ୍କର ଗର୍ଭଧାରଣ ସମୟ ତୃଣାହାରୀ ପ୍ରାଣୀମାନଙ୍କ ଅପେକ୍ଷା ଉଣା ।

| ( ତୃଣାହାରୀ ପ୍ରାଣୀ ) | ( ଗର୍ଭଧାରଣ କାଳ ) |
|---|---|
| ହାତୀ | ୨୦ ବା ୨୧ ମାସ |
| ଓଟ | ୧୨ ମାସ |
| ମଇଁଷି | ,, |
| ଗଧ | ,, |
| ଘୋଡ଼ା | ୧୧ ମାସ |
| ଗାଈ | ୯ ମାସ |
| ହରିଣ | ୮ ମାସ |
| ଛେଳି, ମେଣ୍ଢା | ୫ ମାସ |
| ଘୁଷୁରି | ୪ ମାସ |
| ଠେକୁଆ | ୩୦ ଦିନ ବା ୩୧ ଦିନ |
| ମୂଷା | ୨୮ ଦିନ |
| ମାଙ୍କଡ଼ | ୭ ମାସ |
| ରାଜହଂସ | ୩୦ ଦିନ |
| ପାତିହଂସ | ୪୨ ଦିନ |
| ପାରା | ୨୧ ଦିନ |
| ଶୁଆ, ଶାରୀ, ବଣି | ୪୦ ଦିନ |

| ( ମାଂସାହାରୀ ପ୍ରାଣୀ ) | ( ଗର୍ଭଧାରଣ କାଳ ) |
|---|---|
| ଭାଲୁ | ୯ ମାସ |
| ସିଂହ | ୧୦୮ ଦିନ |
| କୋକିଶିଆଳୀ, ଗଧିଆ ବାଘ, କୁକୁର | ୬୨ ଦିନ |
| ବିରାଡ଼ି | ୫୫ ଦିନ |

ମନୁଷ୍ୟ ୨୭୦ ଦିନ ଠାରୁ ୩୦୦ ଦିନ ପର୍ଯ୍ୟନ୍ତ ।



## ବିଭିନ୍ନ ପ୍ରାଣିମାନଙ୍କର ସନ୍ତାନ ପ୍ରସବ ସଂଖ୍ୟା

| | |
|---|---|
| ହାତୀ, ଘୋଡ଼ା, ଓଟ | ଗୋଟିଏ ଲେଖାଏଁ |
| ସିଂହ | ,, କିନ୍ତୁ ସମୟ ସମୟରେ ୨।୩।୫ ଟି ପର୍ଯ୍ୟନ୍ତ |
| ଠେକୁଆ | ପ୍ରତିବର୍ଷ ୭ ଥର । ଥରକେ ୪ ଠାରୁ ୧୨ ପର୍ଯ୍ୟନ୍ତ । |

ଯୋଡ଼ାଏ ଠେକୁଆ ୪ ବର୍ଷରେ ୧୦ ଲକ୍ଷ ସନ୍ତାନ ବୃଦ୍ଧି କରିପାରନ୍ତି ବୋଲି ପରୀକ୍ଷିତ ହୋଇଅଛି । ଦକ୍ଷିଣ ଉଏଲ୍ସରେ ଏମାନଙ୍କ ଉପଦ୍ରବ ନିବାରଣ କରନ୍ତୁ ୨ ହଜାର ଲୋକ ନିଯୁକ୍ତ ଅଛନ୍ତି ।

ମନୁଷ୍ୟ— ଥରକେ ଗୋଟିଏ ଓ ସମୟ ସମୟରେ ୨୩ ଗୋଟି ସନ୍ତାନ ପ୍ରସବ କରିବାର ଦୃଷ୍ଟ ହୁଏ ।



## ମାନ୍ଦ୍ରାଜରେ ମଧ୍ୟାହ୍ନ ୧୨ଟା ସମୟରେ ପୃଥିବୀର ଘଡିମାନଙ୍କର ସମୟ ।

| ଦେଶ | ସମୟ | |
|---|---|---|
| ଏଥେନ୍ସ | ୮ । ୧୪ | ସକାଳ |
| ବୋମ୍ବାଇ | ୧୧ । ୩୧ | ,, |
| ବୋଷ୍ଟନ ( ଇଉନାଇଟେଡ଼ ଷ୍ଟେଟ୍ସ ) | ୧ । ୫୭ | ,, |
| କେପଟାଉନ | ୭ । ୫୩ | ,, |
| କନଷ୍ଟାଣ୍ଟିନୋପ୍ଲ | ୭ । ୩୫ | ,, |
| ଡବ୍ଲିନ | ୬ । ୧୪ | ,, |
| ଏଡ଼ିନବର୍ଗ | ୬ । ୨୭ | ,, |
| ଗ୍ଲାସଗୋ | ୬ । ୨୨ | ,, |
| ଜେରୁଜିଲମ | ୯ । ୦ | ,, |
| ଲିସବନ | ୬ । ୨୨ | ,, |
| ମାଦ୍ରିଦ | ୬ । ୨୪ | ,, |
| ମସ୍କୋ | ୯ । ୯ | ,, |
| ମନିର୍ | ୭ । ୨୫ | ,, |
| ନିଉୟର୍କ | ୧ । ୫୩ | ,, |
| ପେନ୍‌ଜେନ୍ସ | ୬ । ୧୭ | ,, |
| ଫିଲାଡ଼େଲଫିଆ | ୧ । ୩୮ | ,, |
| କୁଇବେକ | ୧ । ୫୪ | ,, |
| ସେଣ୍ଟପିଟର୍ସବର୍ଗ | ୮ । ୪୦ | ,, |
| ସୁଏଜ | ୬ । ୪୯ | ,, |
| ଷ୍ଟକହଲମ୍ | ୭ । ୫୧ | ,, |
| ଭିଏନା | ୭ । ୪୫ | ,, |
| ବର୍ଲିନ | ୭ । ୩୩ | ଅପରାହ୍ଣ |
| କଲିକତା | ୦ । ୩୩ | ,, |
| କୋପେନହେଗେନ୍ | ୭ । ୨୯ | ,, |
| ଫ୍ଲୋରେନ୍ସ | ୭ । ୨୪ | ,, |
| ମାଲ୍ଟା | ୭ । ୩୭ | ,, |
| ମେଲବୋର୍ନ | ୪ । ୧୯ | ,, |
| ପାରିସ | ୭ । ୪ | ,, |
| ପେକିନ | ୨ । ୨୫ | ,, |
| ରୋମ | ୭ । ୨୯ | ,, |
| ରଟରଡାମ | ୬ । ୫୭ | ,, |
| ସିଡ଼ନି | ୪ । ୪୪ | ,, |



## ଗ୍ରୀନଉଇଚର ଘଡ଼ିରେ ଯେତେବେଳେ ( ମଧ୍ୟାହ୍ନ ) ୧୨ଟା ତେତେବେଳେ ଅନ୍ୟସ୍ଥାନ ଘଡ଼ିର ସମୟ ।

| ସ୍ଥାନ | ସ୍ଥାନୀୟ ସମୟ ଘ. | ମି. | | ପ୍ରକୃତ ସମୟ ଘ. | ମି. | |
|---|---|---|---|---|---|---|
| ଏଡ଼େଲେଡ଼ | ୯ | ୧୪ | ସନ୍ଧ୍ୟା | ୯ | ୩୦ | ସନ୍ଧ୍ୟା |
| ଅକଲେଣ୍ଡ | ୧୧ | ୩୯ | ,, | ୧୧ | ୩୦ | ,, |
| ବର୍ଲିନ୍ | ୧୨ | ୫୪ | ,, | ୧ | ୦ | ,, |
| ବୋମ୍ବାଇ | ୪ | ୫୧ | ,, | ୫ | ୩୦ | ,, |
| କଲିକତା | ୫ | ୫୩ | ,, | ୫ | ୩୦ | ,, |
| କେପଟାଉନ | ୧ | ୧୪ | ,, | ୨ | ୦ | ,, |
| ଚିକାଗୋ | ୬ | ୧୦ | ସକାଳ | ୬ | ୦ | ସକାଳ |
| କନଷ୍ଟାଣ୍ଟିନୋପ୍ଲ | ୧ | ୫୭ | ସନ୍ଧ୍ୟା | ୨ | ୦ | ସନ୍ଧ୍ୟା |
| କୋପେନହେଗେନ | ୧୨ | ୫୦ | ,, | ୧ | ୦ | ,, |
| ମାନ୍ଦ୍ରାଜ | ୫ | ୨୧ | ,, | ୫ | ୩୦ | ,, |
| ମାଦ୍ରିଦ | ୧୧ | ୪୫ | ସକାଳ | ୧୨ | ୦ | ମଧ୍ୟାହ୍ନ |
| ମେଲବୋର୍ନ | ୯ | ୪୦ | ,, | ୧୦ | ୦ | ସକାଳ |
| ମସ୍କୋ | ୨ | ୩୦ | ସନ୍ଧ୍ୟା | ୨ | ୧ | ସନ୍ଧ୍ୟା |
| ନିଉୟର୍କ | ୭ | ୪ | ସକାଳ | ୭ | ୦ | ସକାଳ |
| ନିଉଫାଉଣ୍ଡଲେଣ୍ଡ | ୮ | ୨୯ | ,, | ୮ | ୦ | ,, |
| କୁଇବେକ | ୭ | ୧୮ | ,, | ୭ | ୦ | ,, |

| | ଘ: | ମି: | | ଘ: | ମି: | |
|---|---|---|---|---|---|---|
| ଲଣ୍ଡନ | ୭ | ୪୬ | ସନ୍ଧ୍ୟା | ୮ | ୦ | ସନ୍ଧ୍ୟା |
| ରୋମ | ୧୨ | ୫୦ | | ୧ | ୦ | ,, |
| ବଟରହାମ | ୧୨ | ୧୮ | ,, | ୧୨ | ୦ | ମଧ୍ୟାହ୍ନ |
| ପେଟ୍ରୋଗାଡ୍ | ୨ | ୧ | ସନ୍ଧ୍ୟା | ୨ | ୧ | ସନ୍ଧ୍ୟା |
| ଭିଏନା | ୧ | ୫ | ,, | ୧ | ୦ | ,, |
| ଓ୍ୱେଲିଂଟନ | ୧୧ | ୩୯ | ,, | ୧୧ | ୩୦ | ,, |
| ୟୋକୋହୋମା | ୯ | ୧୮ | ,, | ୯ | ୦ | ,, |
| ସେନଫ୍ରାନ୍ସିସ୍କୋ | ୩ | ୫୦ | ସକାଳ | ୪ | ୦ | ସକାଳ |
| ଭାଙ୍କୋଭର | ୩ | ୩୮ | ,, | ୪ | ୦ | ,, |



## ଲିଗ୍ ଅଫ୍ ନେସନ୍ସ ବା ଜାତିସଂଘ ।

୧୯୨୦ ମସିହା ଜାନୁୟାରୀ ମାସ ୧୦ ତାରିଖରେ ଯେତେବେଳେ ଜର୍ମାନୀ ସହିତ ସନ୍ଧିପତ୍ର ଗୃହୀତ ହେଲା, ସେତେବେଳେ ଏହି ଲିଗ୍ ଅଫ୍ ନେସନସ୍ ବା ଜାତିସଂଘର ସୃଷ୍ଟି ହୋଇଥିଲା । ଏହାର କାର୍ଯ୍ୟ ପଦ୍ଧତି ୨୬ ଗୋଟି ବିଭିନ୍ନ ପ୍ରକରଣ(articles) ରେ ନିରୂପିତ ହୋଇଅଛି ଏବଂ ସର୍ବସାଧାରଣଙ୍କ ନିକଟରେ ତାହା କଭେନାଣ୍ଟ ( covenant ) ବା ପରସ୍ପର ସାହାଯ୍ୟମୂଳକ ଚୁକ୍ତି ନାମରେ ପରିଚିତ । ଦେଶ ଦେଶ ଓ ଜାତି ଜାତି ମଧ୍ୟରେ ଯେପରି ବିବାଦ ବିସମ୍ବାଦ ନ ହେବ ଏବଂ ଯଦି କୌଣସି କାରଣରୁ ମନୋମାଳିନ୍ୟର ସୂତ୍ରପାତ ହୁଏ, ତେବେ ତାହା ଯେପରି ଉତ୍ତରୋତ୍ତର ବର୍ଦ୍ଧିତ ନ ହୋଇ ଶୀଘ୍ର ମୀମାଂସିତ ହୋଇଯିବ, ସେଥିପାଇଁ ଏହି କଭେନାଣ୍ଟରେ କେତେଗୁଡ଼ିଏ ମୌଳିକ ନିୟମ ପ୍ରଣୀତ ହୋଇଅଛି । ପୃଥିବୀରେ ଯେଉଁ ବିଭିନ୍ନ ଜାତି ଏହି ସଂଘର ସଭ୍ୟ ଶ୍ରେଣୀଭୁକ୍ତ ହୋଇଅଛନ୍ତି, ସେମାନେ ତାର ଏହି ମୌଳିକ ନିୟମଗୁଡ଼ିକ ସାଧାରଣତଃ ମାନି ଚଳିଥାନ୍ତି । ଏହାର ଫଳରେ ବିଭିନ୍ନ ଦେଶ ମଧ୍ୟରେ କୌଣସି କାରଣରୁ ବାଦବିବାଦ ଉପସ୍ଥିତ ହେଲେ ତାର ସମାଧାନ ପାଇଁ ପ୍ରଥମେ ଜାତିସଂଘକୁ ଅନୁରୋଧ ନ କରି କେହି କାହା ଉପରେ ହଠାତ୍ ବଳ ପ୍ରୟୋଗ କରି ପାରନ୍ତି ନାହିଁ । ବର୍ତ୍ତମାନ ପୃଥିବୀର ୫୪ ଗୋଟି ବିଭିନ୍ନ ଜାତି ବା ଅନ୍ୟ କଥାରେ କହିଲେ ସାରା ପୃଥିବୀର ତିନିଚତୁର୍ଥାଂଶ ଦେଶ ଏହି ଜାତିସଂଘର ସଭ୍ୟପଦ ସ୍ୱୀକାର କରିଅଛନ୍ତି । କିନ୍ତୁ ଆମେରିକା ଓ ରୁଷିଆ—ପୃଥିବୀର ଏହି ଦୁଇଟି ପ୍ରଧାନ ଦେଶ ଏପର୍ଯ୍ୟନ୍ତ ତାର ସଭ୍ୟ ହୋଇ ନାହାନ୍ତି ଏହାବୋଲି ଯେ ସେମାନେ ସଂଘର ବିରୁଦ୍ଧାଚରଣ କରନ୍ତି, ତାହା ନୁହେଁ, ବରଂ ତାର ଉଦ୍ଦେଶ୍ୟ ସାଧନ ପଥରେ ନାନାଭାବରେ ସାହାଯ୍ୟ କରନ୍ତି । ଆମେରିକା ଜାତିସଂଘର ସଭ୍ୟ ନ ହେଲେହେଁ ଅନେକ ହିତକର କାର୍ଯ୍ୟରେ ଯେପରି ସହଯୋଗିତା କରି ଆସିଅଛି, ତାହା ଯେ କୌଣସି ଦେଶପକ୍ଷରେ ଗୌରବ ବିଷୟ ।

ଜାତିସଂଘର କାର୍ଯ୍ୟପ୍ରଣାଳୀ କେବଳ ଏହି ଗୋଟିଏ ଦିଗରେ ସୀମାବଦ୍ଧ ନୁହେଁ । ଅନ୍ତର୍ଜାତିକ ବିବାଦ ବିସଂବାଦର ନ୍ୟାଯ୍ୟାନ୍ୟାଯ୍ୟ ବିଚାର ପାଇଁ ତାର ଉଦ୍ୟମରେ ହେଗ୍ ସହରରେ ଗୋଟିଏ ସ୍ଥାୟୀ ବିଚାରାଳୟ ସ୍ଥାପିତ ହୋଇଅଛି । ତାର ମଧ୍ୟସ୍ଥତାରେ ମଧ୍ୟ ଅନେକ ସ୍ଥଳରେ ଦେଶ୨ ମଧ୍ୟରେ ଶତ୍ରୁତା ସହଜରେ ମୀମାଂସିତ ହୋଇଅଛି । ଶତ ସହସ୍ର ନିରାଶ୍ରୟ ଲୋକ ମଧ୍ୟ ତାର ବାହୁଚ୍ଛାୟାତଳେ ଆଶ୍ରୟ ପାଇ ଜୀବିକା ଅର୍ଜନରେ ସମର୍ଥ ହୋଇଅଛନ୍ତି । ଗ୍ରୀସରେ ପ୍ରାୟ ୧୦୦୦୦୦୦ ଲୋକ ତାର ଉଦ୍ୟମରେ ଉପାର୍ଜନକ୍ଷମ କାର୍ଯ୍ୟ ପାଇ ପାରିଅଛନ୍ତି । ଜର୍ମାନୀ ଏବଂ ତୁରସ୍କର ପୂର୍ବତନ ଔପନିବେଶିକ ରାଜ୍ୟଗୁଡ଼ିକ ଆଜି ତାର ତତ୍ତ୍ୱାବଧାନରେ ସୁଚାରୁରୂପେ ଶାସିତ ହେଉଅଛି । ବହୁ ସାମାଜିକ ସମସ୍ୟାର ସମାଧାନରେ ମଧ୍ୟ ତାର କାର୍ଯ୍ୟ ପ୍ରଶଂସନୀୟ । ଅଫିମ ଓ ବିଷାକ୍ତ ଦ୍ରବ୍ୟ ( drug) ର ନିୟନ୍ତ୍ରଣ ଏବଂ ସ୍ତ୍ରୀ ଓ ବାଳକ ବାଳିକାମାନଙ୍କ ରକ୍ଷଣାବେକ୍ଷଣ ଦିଗରେ ସେ ଯାହା କରିଅଛି, ତାର ସୁଫଳ ଯେ ବହୁଦିନଧରି ପୃଥିବୀ ବକ୍ଷରେ ସୁଖଶାନ୍ତି ଖେଳାଇବ, ତହିଁରେ କୌଣସି ସନ୍ଦେହ ନାହିଁ ।"



## ନାଇନ ପାୱାର ଟ୍ରିଟି ବା ନବଶକ୍ତି ସନ୍ଧି

"ପୃଥିବୀର ନଅଗୋଟି ବିଭିନ୍ନ ଶକ୍ତି ଏହି ସନ୍ଧିପତ୍ରରେ ସ୍ୱାକ୍ଷର କରିଅଛନ୍ତି । ପ୍ରେସିଡେଣ୍ଟ ହାର୍ଡିଂଙ୍କ ନିମନ୍ତ୍ରଣରେ ଓ୍ୱାସିଂଟନଠାରେ ୧୯୨୧ରେ ଏ ସମ୍ପର୍କରେ ଗୋଟିଏ ସମ୍ମିଳନୀ ଅନୁଷ୍ଠିତ ହୋଇଥିଲା । ଏଥିରେ ପୃଥିବୀର ଯେଉଁ ନଅଗୋଟି ପ୍ରଧାନ ଶକ୍ତି ସମବେତ ହୋଇଥିଲେ, ସେମାନଙ୍କ ମଧ୍ୟରେ

ମତୁଚ ଭଳ ଛୋଇଥିଲେ ।

ଯୁକ୍ତରାଜ୍ୟ (United States) ଗ୍ରେଟବ୍ରିଟେନ୍, ଫ୍ରାନ୍ସ, ଇଟାଲି, ଜାପାନ, ଚୀନ, ବେଲଜିୟମ୍, ନେଦରଲାଣ୍ଡସ୍ ଏବଂ ପର୍ତ୍ତୁଗାଲର ନାମ ଉଲ୍ଲେଖଯୋଗ୍ୟ । ଭବିଷ୍ୟତ୍‌ରେ ଭୀଷଣ ଯୁଦ୍ଧରେ ସୂତ୍ରପାତ କରିବା ପାଇଁ ଯେପରି କୌଣସି ଶକ୍ତି ଅଧିକ ପରିମାଣରେ ଯୁଦ୍ଧ ଉପକରଣ ଆଉ ପ୍ରସ୍ତୁତ ନ କରନ୍ତି, ଏହାହିଁ ସେ ସମ୍ମିଳନୀର ଆଲୋଚ୍ୟ ବିଷୟ ଥିଲା । ସେହି ଆଲୋଚନା ଚାଲିଥିଲା ବେଳେ ଚୀନଦେଶର ପ୍ରତିନିଧି ମିଷ୍ଟର ଶେଜ୍ ତାଙ୍କ ନିଜ ଦେଶର ରାଜନୈତିକ ପରିସ୍ଥିତିର କଥା ଉଲ୍ଲେଖ କରି ଦଶୋଟି ସମସ୍ୟା ମଧ୍ୟ ସେଠାରେ ଉପସ୍ଥାପିତ କରିଥିଲେ ଏବଂ ଚୀନ ଦେଶର ସୀମାଗତ ଅଖଣ୍ଡତା (Territorial integrity) ଏବଂ ରାଜନୈତିକ ତଥା ଶାସନଗତ ସ୍ୱାଧୀନତା ସ୍ୱୀକାର କରିବାକୁ ଅନ୍ୟାନ୍ୟ ଶକ୍ତିମାନଙ୍କୁ ଆହ୍ୱାନ କରିଥିଲେ । ପୃଥିବୀର ଅନ୍ୟାନ୍ୟ ଶକ୍ତିମାନେ ଚୀନରେ ବ୍ୟବସାୟ ବାଣିଜ୍ୟ ପ୍ରଭୃତି ବିଷୟରେ ଯେପରି ଖୋଲାଦ୍ୱାର ନୀତି (open door policy) ଅବଲମ୍ବନ କରନ୍ତି ଅର୍ଥାତ୍ ଅନ୍ୟମାନଙ୍କ ସହିତ ସମାନ ଅଧିକାର ଲାଭ କରି ସନ୍ତୁଷ୍ଟ ରହନ୍ତି ଏବଂ କୌଣସି ବିବାଦ ବିସମ୍ବାଦର ସୂତ୍ରପାତ ହେଲାବେଳେ ନିରପେକ୍ଷତା ଅବଲମ୍ବନ କରନ୍ତି, ସେ ପ୍ରସଙ୍ଗ ମଧ୍ୟ ସେଠାରେ ଉପସ୍ଥାପିତ ହୋଇଥିଲା । ଚୀନରେ ରାଜନୈତିକ, ଶାସନଗତ ଏବଂ ସୀମାଗତ ଅଧିକାର ସ୍ଥାପନ କରିବା ଉଦ୍ଦେଶ୍ୟରେ ଭବିଷ୍ୟତ୍‌ରେ କେହି ଯେପରି ଚୀନ ସରକାରଙ୍କର ସ୍ୱାଧୀନତା ଉପରେ ହସ୍ତକ୍ଷେପ ନ କରନ୍ତି, ସେଥିପାଇଁ ମଧ୍ୟ ଚୀନ ପ୍ରତିନିଧି ଅନ୍ୟଶକ୍ତିମାନଙ୍କର ଦୃଷ୍ଟି ଆକର୍ଷଣ କରିଥିଲେ । ସମ୍ମିଳନୀରେ ପୃଥିବୀର ଅନ୍ୟଶକ୍ତିମାନଙ୍କ ପକ୍ଷରୁ ଯେ ସକଳ ପ୍ରତିନିଧି ଯୋଗ ଦେଇଥିଲେ ସେମାନେ ଚୀନ ପ୍ରତିନିଧିଙ୍କର ଏହି ସମସ୍ତ ପ୍ରସ୍ତାବ ପ୍ରତି ଅନୁକୂଳ ମତ ଦେଖାଇ ବିଚାର କରିଥିଲେ । ନାନା ଆଲୋଚନା ପରେ ଶେଷରେ ସେହି ବର୍ଷ ନଭେମ୍ବର ମାସରେ ମିଷ୍ଟର ରୁଟ (Mr. Root) ନାମକ ଆମେରିକାର ଜଣେ ପ୍ରତିନିଧି ଏ ପ୍ରସଙ୍ଗରେ ଚାରିଗୋଟି ପ୍ରସ୍ତାବ ସମ୍ମିଳନୀରେ ଆଗତ କଲେ । ସେଥିରେ ଅନ୍ୟାନ୍ୟ ପ୍ରତିନିଧିମାନେ ଏକମତ ହୋଇ ପ୍ରକାଶ କଲେ ଯେ, ଚୀନ ଦେଶର ସୀମାଗତ ଅଖଣ୍ଡତା, ରାଜ୍ୟର ସର୍ବାଙ୍ଗ ଏକଛତ୍ର ଆଧିପତ୍ୟ ଏବଂ ସର୍ବୋପରି ରାଜନୈତିକ ସ୍ୱାଧୀନତା ପୃଥିବୀର ଶକ୍ତିପୁଞ୍ଜ ସ୍ୱୀକାର କରିବେ । ଶିଳ୍ପ ବାଣିଜ୍ୟ ପ୍ରଭୃତି ବିଷୟରେ ସମସ୍ତଙ୍କୁ ସମାନ ସୁବିଧା ପ୍ରଦତ୍ତ ହେବ ଏବଂ ସେଥିରେ ଅସନ୍ତୁଷ୍ଟ ହୋଇ କେହି କୌଣସି ପ୍ରକାର ବିଶେଷ ସୁବିଧା ବା ସ୍ୱତନ୍ତ୍ର ଯୋଗ ଦାବି କରି ପାରିବେ ନାହିଁ । ସର୍ବସମ୍ମତିକ୍ରମେ ସମ୍ମିଳନୀରେ ଏହି ପ୍ରସ୍ତାବମାନ ଅନ୍ୟ କେତୋଟି ଉପପ୍ରସ୍ତାବ ସହିତ ଗୃହୀତ ହୋଇଥିଲା । ସେହି ଦିନଠାରୁ ଚୀନ ଦେଶ ଅନ୍ୟାନ୍ୟ ଶକ୍ତିମାନଙ୍କ ଚକ୍ଷୁରେ ଗୋଟିଏ ସ୍ୱାଧୀନ ଦେଶରୂପେ ବିବେଚିତ ହୋଇ ଆସୁଅଛି ।"



## ଅଟାଉଆ ଚୁକ୍ତି

"ଅଟାଉଆଠାରେ ବ୍ୟବସାୟ ବାଣିଜ୍ୟର ପ୍ରସାର ପାଇଁ ଯେଉଁ ସାମ୍ରାଜ୍ୟ ସମ୍ମିଳନୀ ବସିଥିଲା, ତହିଁରେ ବ୍ରିଟିଶ ସାମ୍ରାଜ୍ୟ ମଧ୍ୟରେ ବିଭିନ୍ନ ରାଜ୍ୟ ଗୁଡ଼ିକ ପରସ୍ପରକୁ ବ୍ୟବସାୟ ବାଣିଜ୍ୟରେ କିପରି ସୁବିଧା ଓ ସୁଯୋଗ ଦେବେ, ତାହା ସ୍ଥିର କରାଯାଇ ଏକ ଚୁକ୍ତିପତ୍ର ସ୍ୱାକ୍ଷରିତ ହୋଇଥିଲା । ଇଂଲଣ୍ଡ, ଆୟର୍ଲଣ୍ଡ, କାନଡ଼ା ଓ ଅଷ୍ଟ୍ରେଲିଆ ପ୍ରଭୃତିରୁ ଲୋକ ପ୍ରତିନିଧିମାନେ ସେହି ସେହି ଦେଶର ପାର୍ଲିଆମେଣ୍ଟ ପକ୍ଷରୁ ପ୍ରେରିତ ହୋଇଥିଲେ ଓ ନିଜ ନିଜ ଦେଶର ସ୍ୱାର୍ଥ ପ୍ରତି ଦୃଷ୍ଟି ଦେଇ ବିଭିନ୍ନ ପ୍ରକାର ସର୍ତ୍ତରେ ସେମାନେ ଇଂଲଣ୍ଡ ସହିତ ଚୁକ୍ତିପତ୍ର ସ୍ୱାକ୍ଷର କରି ଅଛନ୍ତି । ବ୍ରିଟିଶ ସରକାରଙ୍କ ଅଧୀନସ୍ଥ ଭାରତ ସରକାରଙ୍କ ଦ୍ୱାରା ମନୋନୀତ ଭାରତ ପ୍ରତିନିଧି ନିଜର ସ୍ୱାଧୀନ ବିବେକ ବୁଦ୍ଧିରେ ଜଳାଞ୍ଜଳି ଦେଇ ଭାରତର ଶୁଭାଶୁଭ ପ୍ରତି ଦୃଷ୍ଟି ନ ରଖି ଯେଉଁ ଚୁକ୍ତିପତ୍ରରେ ସ୍ୱାକ୍ଷର କରିଅଛନ୍ତି ସେଥିରେ ଭାରତର ଯେ କି ଭୀଷଣ କ୍ଷତି ସାଧିତ ହେବ ତାହା କଳ୍ପନା କରି ହେଉନାହିଁ । ଏପରି ଏକ ଚୁକ୍ତିପତ୍ର ଆଗତ କରିବାରେ ଇଂଲଣ୍ଡର ଗୂଢ଼ ସ୍ୱାର୍ଥ ଅଛି । ଗତ କେତେକ ବର୍ଷ ଧରି ବ୍ରିଟିଶ ବ୍ୟବସାୟ ବାଣିଜ୍ୟର ଭୀଷଣ ଅଧୋଗତି ସଙ୍ଘଟିତ ହୋଇଅଛି ଏବଂ ତଜ୍ଜନିତ ବ୍ରିଟେନର ବର୍ତ୍ତମାନ ଆର୍ଥିକ ସଙ୍କଟ ଉପସ୍ଥିତ ହୋଇଅଛି । ଏହି ସଙ୍କଟରୁ ଦେଶ ଓ ଜାତିକୁ ଉଦ୍ଧାର କରିବା ପାଇଁ ସେ ନାନାପ୍ରକାର ଯତ୍ନ ଓ ଉଦ୍ୟମ କରି ବିଫଳ ମନୋରଥ ହେଉଅଛି ଏବଂ ସର୍ବୋପରି ଭାରତର ବର୍ଜନ ଆନ୍ଦୋଳନ ତାର ଅଗ୍ରଗତିକୁ ନିଷ୍ଠୁର ଭାବରେ ପ୍ରତିହତ କରୁଅଛି । ତେଣୁ ନିଜ ଅଧୀନସ୍ଥ ସାମ୍ରାଜ୍ୟ ଭିତରେ ନିଜର

ବାଣିଜ୍ୟ କପର ଅବାଧରେ ଚାଲିବ, ସେହି କଳନାରୁ ଏ ଚୁକ୍ତିପତ୍ରର ଉତ୍ପତ୍ତି ହୋଇଅଛି ବୋଲି କହିଲେ ଚଳେ। ସେହି ଚୁକ୍ତିପତ୍ର ବଳରେ ଇଂଲଣ୍ଡ ନିଜଦେଶରେ ଭାରତୀୟ ଲୁହା ପ୍ରଭୃତି କେତୋଟି ଜିନିଷ ବିନା ଶୁଳ୍କରେ ବିକ୍ରୟ ପାଇଁ ସୁବିଧା ଦେବେ ଏବଂ ପ୍ରତ୍ୟୁତ୍ତରରେ ଭାରତ ଇଂଲଣ୍ଡକୁ ମଧ୍ୟ ସେହିପରି ବିନା ଶୁଳ୍କରେ ଶିଳ୍ପଜାତ ଦ୍ରବ୍ୟର ବିକ୍ରୟ ପାଇଁ ସୁବିଧା ଦେବ। ଫଳତଃ ଭାରତରେ ବିଲାତି ଦ୍ରବ୍ୟର ପ୍ରସାର ଅଧିକ ହେବ; କାରଣ ତା ଉପରେ କୌଣସି ଶୁଳ୍କ ନ ଥିବା ହେତୁ ସେ ଅନ୍ୟାନ୍ୟ ବୈଦେଶିକ ଶକ୍ତିଠାରୁ ଅଳ୍ପମୂଲ୍ୟରେ ଜିନିଷ ଯୋଗାଇ ପାରିବ। ବ୍ୟବସାୟ ବାଣିଜ୍ୟ ବିଶାରଦମାନେ କହନ୍ତି ଯେ, ଏହି ଚୁକ୍ତିଫଳରେ ଭାରତୀୟ ବଜାରରେ ଅନ୍ୟାନ୍ୟ ରାଜ୍ୟ ତୁଳନାରେ ଇଂଲଣ୍ଡର ବିଶେଷ ଆଧିପତ୍ୟ ପ୍ରତିଷ୍ଠିତ ହେବ ଏବଂ ସେଥିରେ ଭାରତର ବାଣିଜ୍ୟ ମଧ୍ୟ ଭୀଷଣଭାବରେ ପ୍ରତିହତ ହେବ ଏବଂ ଜନସାଧାରଣ ଅଳ୍ପ ମୂଲ୍ୟରେ ବ୍ରିଟିଶ ପଣ୍ୟ କ୍ରୟକରି ସ୍ୱଦେଶୀ ପଣ୍ୟ ପ୍ରତି ବିମୁଖ ହେବେ। ବ୍ରିଟେନ ଭିନ୍ନ ଅନ୍ୟାନ୍ୟ ଦେଶର ପଣ୍ୟ ଉପରେ ଭାରତ ସରକାର ଶୁଳ୍କ ଧାର୍ଯ୍ୟ କରିବା ଫଳରେ ସେହି ସେହି ଦେଶର ଭାରତୀୟ ପଣ୍ୟ ଉପରେ ମଧ୍ୟ ଶୁଳ୍କ ବସାଇବେ ଏବଂ ତାର ଫଳରେ ସେହି ସେହି ଦେଶର ଜନସାଧାରଣ ଭାରତୀୟ ଦ୍ରବ୍ୟ ଅଧିକ ପରିମାଣରେ କ୍ରୟ କରିବେ ନାହିଁ। ଏହିପରି ନାନାଦିଗରୁ ଅଟାୱା ଚୁକ୍ତିପତ୍ର ଭାରତର କ୍ଷତି କରିବ ଓ ତାହାର ରାଜନୈତିକ ଏବଂ ଆର୍ଥିକ ପରିସ୍ଥିତିକୁ ଜଟିଳ କରିଦେବ।"



## କେଲଗ ପାକ୍ଟ

୧୯୨୫ ମସିହାରେ ମିଷ୍ଟର ଏଫ, ବି, କେଲେଗ ଯୁକ୍ତ-ରାଜ୍ୟର ( United States ) ରାଜଦୂତ ରୂପେ ଲଣ୍ଡନ ସହରରେ ଅବସ୍ଥାନ କରିଥିଲେ। ଏହାର ଅଳ୍ପ କେତେକ ମାସ ପରେ ସେ ଉଆସିଂଟନରେ ଆମେରିକାର ଷ୍ଟେଟ ସେକ୍ରେ-ଟେରି ପଦବୀ ମଧ୍ୟ ଲାଭ କରିଥିଲେ। ଏହି ଷ୍ଟେଟ ସେକ୍ରେଟେରି ପଦବୀରେ ଥିଲାବେଳେ ସେ ପୃଥିବୀରୁ ଯୁଦ୍ଧ ଓ ରକ୍ତପାତ ବନ୍ଦ କରିବା ଉଦ୍ଦେଶ୍ୟରେ ବିଭିନ୍ନ ୫୦ ଗୋଟି ଶକ୍ତିଙ୍କର ମତାମତ ଗ୍ରହଣ କରି ଗୋଟିଏ ଚୁକ୍ତି ପତ୍ରର ( Pact ) ସୂତ୍ରପାତ କରିଥିଲେ। ଅନ୍ତର୍ଜାତିକ ବିବାଦ ବିସମ୍ବାଦର ସୁମୀମାଂସା ପାଇଁ ଯୁଦ୍ଧ ଓ ରକ୍ତପାତକୁ ଏହି ଚୁକ୍ତିପତ୍ରରେ ନିନ୍ଦା କରା ଯାଇଥିଲା ଏବଂ ଦେଶ ଦେଶ ଓ ଜାତି ଜାତି ମଧ୍ୟରେ ସୁହୃଦଭାବ ସ୍ଥାପନର ତାହା ଘୋର ଅନ୍ତରାୟ ବୋଲି ଘୋଷଣା କରାଯାଇଥିଲା। ପୃଥିବୀର ୫୦ ଗୋଟି ବିଭିନ୍ନ ଶକ୍ତି, ଯେଉଁ-ମାନେ କେଲେଗଙ୍କ ନିମନ୍ତ୍ରଣରେ ସମବେତ ହୋଇଥିଲେ, ସେମାନେ ସମସ୍ତେ ଏଥିରେ ଏକମତ ଏବଂ ଭବିଷ୍ୟତରେ ବିବାଦ ବିସମ୍ବାଦର ସୂତ୍ରପାତ ହେଲେ ଶାନ୍ତିମୂଳକ ଉପାୟରେ ତାର ସମାଧାନ କରିବାକୁ ସ୍ୱୀକାର କରି ସେହି ଚୁକ୍ତିପତ୍ରରେ ସ୍ୱାକ୍ଷର କରିଥିଲେ। ତେଣୁ ସେହି ଚୁକ୍ତି ପତ୍ରଟି ମିଷ୍ଟର କେଲଗଙ୍କ ନାମାନୁସାରେ କେଲଗ ପାକ୍ଟ ନାମରେ ଅଭିହିତ ହୋଇଅଛି।"



## ବିଭିନ୍ନ ଦେଶର ବାର୍ଷିକ ଆୟ ପରିମାଣ

(୧୯୦୦ ଖ୍ରୀଷ୍ଟାବ୍ଦରେ ଡିଗ୍‌ବି ସାହେବଙ୍କ ପ୍ରକାଶିତ ପ୍ରତ୍ୟେକ ଲୋକର ବାର୍ଷିକ ଆୟ ପରିମାଣ )

| ( ଦେଶର ନାମ ) | ( ଆୟର ପରିମାଣ ) | |
|---|---|---|
| ଭାରତ | ୧ | ପାଉଣ୍ଡ |
| ରୁଷିଆ | ୧୧ | ,, |
| ଇଟାଲି | ୧୨ | ,, |
| ଅଷ୍ଟ୍ରିୟା | ୧୫ | ,, |
| ସ୍ପେନ | ୧୬ | ,, |
| ସୁଇଜରଲେଣ୍ଡ | ୧୯ | ,, |
| ନରୱେ | ୨୦ | ,, |
| ହଲଣ୍ଡ | ୨୨ | ,, |
| ଜର୍ମାନୀ | ୨୨ | ,, |
| କାନାଡ଼ା | ୨୬ | ,, |
| ଫ୍ରାନ୍ସ | ୨୭ | ,, |
| ମାର୍କିନ-ଯୁକ୍ତରାଜ୍ୟ | ୩୯ | ,, |
| ଅଷ୍ଟ୍ରେଲିଆ | ୪୦ | ,, |
| ସ୍କଟଲାଣ୍ଡ | ୪୫ | ,, |

ପ୍ରତି ପାଉଣ୍ଡର ମୂଲ୍ୟ ଟ ୧୫ ।



# ଇଂରାଜୀ ଭାଷା

ଖ୍ରୀଷ୍ଟିଆନମାନଙ୍କର ଧର୍ମ ପୁସ୍ତକ ବାଇବେଲ ୬୬ ଖଣ୍ଡରେ ବିଭକ୍ତ । ସେଥିରେ ୧୧୮୯ ପରିଚ୍ଛେଦ, ୩୧୧୭୩ ଶ୍ଳୋକ, ୭୭୩୬୪୬ ଶବ୍ଦ ଏବଂ ୩୫୬୭୬୮୦ ଅକ୍ଷର ଅଛି ।

ବିଲାତରେ ପଲ୍ଲୀଗ୍ରାମର ଲୋକ ୨୦୦ ଶବ୍ଦରୁ ଅଧିକ ଜାଣନ୍ତି ନାହିଁ । ୫୦୦ ଶବ୍ଦ ଜାଣିଥିଲେ ଏକପ୍ରକାର ଇଂରାଜୀ ବୁଝିପାରି ହୁଏ । ଉତ୍ତମୋତ୍ତମ ପୁସ୍ତକ ଓ ସମ୍ବାଦ ପତ୍ର ପାଠ କରିବାକୁ ହେଲେ ୬ ହଜାର ଶବ୍ଦ ଜାଣିବା ଆବଶ୍ୟକ ।

ସେକ୍ସପିଅର ୧୬ ହଜାର ଶବ୍ଦ ବ୍ୟବହାର କରି ଯାଇ-ଅଛନ୍ତି । ମିଲ୍‌ଟନ ୮ ହଜାର ଶବ୍ଦ ବ୍ୟବହାର କରିଅଛନ୍ତି । ବିଲାତରେ ଜଣେ ଉଚ୍ଚ ଶିକ୍ଷିତ ବ୍ୟକ୍ତି ୩୪ ହଜାରରୁ ଅଧିକ ଶବ୍ଦ ଜାଣନ୍ତି । ସର୍ବ ପ୍ରଥମେ ଇଂରାଜୀ ଭାଷାରେ ଯେ ପୁସ୍ତକ ମୁଦ୍ରିତ ହୁଏ ତାହାର ନାମ ଡକ୍‌ଟେଟସ୍ ଏଣ୍ଡ ସେଇଂସ ଅଫ ଫିଲଜଫାର ।



# ଇଂରାଜମାନଙ୍କର ସଭ୍ୟତା

ଦୁଇଟି ଅପରିଚିତ ବ୍ୟକ୍ତିଙ୍କୁ ପରସ୍ପର ପରିଚିତ କରି-ଦେବା ପୂର୍ବେ, ଉଭୟଙ୍କର ମନୋଭାବ ଜ୍ଞାତ ହେବା କର୍ତ୍ତବ୍ୟ, ଅର୍ଥାତ୍ ସେମାନେ ଉଭୟେ ପରିଚିତ ହେବାକୁ ଇଚ୍ଛା କରନ୍ତି କି ନାହିଁ ।

ଯଦ୍ୟପି କୌଣସି ଭଦ୍ରଲୋକ କୌଣସି ଭଦ୍ରମହିଳା ସହିତ ପରିଚିତ ହେବାକୁ ଇଚ୍ଛା କରନ୍ତି ତେବେ ଅଗ୍ରେ ତାହା-ଙ୍କୁହିଁ ସେହି ମହିଳା ସକାଶେ ଗମନ କରିବାକୁ ହେବ । ମହିଳା ଅଗ୍ରେ ଭଦ୍ରଲୋକର ଗୃହକୁ ଆସିବେ ନାହିଁ । ଯଦି ଦୁହେ ପୁରୁଷ ଅଥବା ଦୁହେଁ ସ୍ତ୍ରୀଲୋକ ହୁଅନ୍ତି, ତେବେ ଯାହାର ସମ୍ମାନ ଅଧିକ, ତାହାଙ୍କ ନିକଟ ଯାଇ ଅପରକୁ ପରିଚିତ ହେବାକୁ ହେବ ।

କୌଣସି ଭଦ୍ରଲୋକ ଅପର କୌଣସି ଭଦ୍ରଲୋକ ସହିତ ପରିଚିତ ହେବାକୁ ହେଲେ, ମସ୍ତକ ଅବନତ କରି ସମ୍ମାନ ପ୍ରଦର୍ଶନ କରିବା ଉଚିତ, ସେକହ୍ୟାଣ୍ଡ କରିବା ବିଧି ନୁହେ ।

କୌଣସି ବନ୍ଧୁଙ୍କ ଗୃହରେ ମିଳନ ହୋଇ ପୂର୍ବ ଯଦି ପରସ୍ପର ପରିଚିତ ନ ହୁଅନ୍ତି, ତେବେ ସେହି ଉଭୟ ବ୍ୟକ୍ତିଙ୍କର ଆଳାପ କରିବା ଉଚିତ ହୁଏ ନାହିଁ ।

ଜଣେ ବନ୍ଧୁର ସହିତ ଭ୍ରମଣକାଳ ନ ଯଦି ଅପର କୌଣସି ବନ୍ଧୁ ଆସି ଉପସ୍ଥିତ ହୁଅନ୍ତି, ତେବେ ତାହା ସହିତ ପୂର୍ବବନ୍ଧୁର ପରିଚୟ କରିଦେବା ଉଚିତ ନୁହେ ।

କୌଣସି ଭଦ୍ରମହିଳା ସହିତ ଅପର କୌଣସି ଲୋକକୁ ପରିଚିତ କରିବାକୁ ହେଲେ ସେହି ଭଦ୍ରମହିଳାଙ୍କର ଅନୁମତି ନେବା ଆବଶ୍ୟକ ।

କୌଣସି ଭଦ୍ରଲୋକ ସହିତ ପ୍ରାତଃ ସାକ୍ଷାତ୍ ସମୟରେ ଟୁପି ହାତରେ ଧରି ଓ ଛତା ବାହାରେ ରଖି ଯିବା ସଭ୍ୟତା ।

କାହାର ସହିତ କଥୋପକଥନ ସମୟରେ ଯଦି କୌଣସି ଭଦ୍ରମହିଳା ସେ ସ୍ଥାନ ଦେଇ ଯାଆନ୍ତି ତେବେ ଉଠି ଠିଆ-ହେବା ଉଚିତ ।

ନାଚର ଅବସରରେ ଯେ ପରିଚୟ ହୁଏ, ତାହା କ୍ଷଣସ୍ଥାୟୀ । ଯେହି ପରିଚୟ ସୂତ୍ରରେ ଯଦି କୌଣସି ଭଦ୍ରଲୋକ କୌଣସି ମହିଳା ସହିତ ଆଳାପ କରନ୍ତି, ତେବେ ଯେହି ମହିଳା ତାହାଙ୍କ ସହିତ ଅପରିଚିତ ପରି ବ୍ୟବହାର କଲେ ଦୋଷ ହୁଏ ନାହିଁ ।

ପରିଚୟ ପାଇଁ କୌଣସି ବ୍ୟକ୍ତିକୁ ପତ୍ର ଲେଖିଲେ, ତତ୍ସଙ୍ଗେ ଆପଣା ନାମର କାର୍ଡ଼ ଡାକ ଦ୍ୱାରା ପ୍ରେରଣ କରିବା କର୍ତ୍ତବ୍ୟ । ସ୍ୱୟଂ ହାତରେ ନେଇଯିବା ଅସଭ୍ୟତା ।

ଯାହା ସହିତ ନୂତନ ପରିଚୟ ହେଲା, ତାହାଙ୍କୁ ସମ୍ମାନ ପ୍ରଦର୍ଶନର ଇଚ୍ଛା ଥିଲେ, ଅପର ବନ୍ଧୁବାନ୍ଧବ ସହ ତାହାଙ୍କୁ ଭୋଜନର ନିମନ୍ତ୍ରଣ କରିବା କର୍ତ୍ତବ୍ୟ ।

ତୁମ୍ଭ ସହିତ ଦେଖା ସାକ୍ଷାତ୍ କରିବାକୁ ଆସିଲେ, ତୁମ୍ଭର ମଧ୍ୟ ତାଙ୍କ ସହିତ ସାକ୍ଷାତ୍ କରିବା ଉଚିତ—ଦେଖା ନ ହେଲେ କାର୍ଡ଼ ରଖି ଆସିଲେ ମଧ୍ୟ ଚଳେ ।

କୌଣସି ଶୋକସୂଚକ ସମ୍ବାଦ ଶୁଣିଲେ, ସପ୍ତାହ ମଧ୍ୟରେ ଦୁଃଖ ପ୍ରକାଶ ପାଇଁ ଦେଖା କରିବା ଉଚିତ ।



**କେବେହେଁ ପରେ ନ କହିବ ।**

## ଜର୍ମାନୀ ଯୁଦ୍ଧର ବିବରଣ

ଭାରତର ସାହାଯ୍ୟ ୧୩ଲକ୍ଷ ଲୋକ ଓ ୩୧୨ କୋଟି ଟଙ୍କା ।

ଗତ ମହାଯୁଦ୍ଧରେ ମୋଟ ୧୧୯୮୨୨୧ ଜଣ ନିହତ, ୨୧୧୧୮୬୦ ଜଣ ନିରୁଦ୍ଦିଷ୍ଟ, ୭୨୧୫୫୧୨ ଜଣ ଗୁରୁତର ଆହତ ଓ ୧୪୦୦୨୦୩୧ ଜଣ ଅଳ୍ପ ଆହତ ହୋଇଥିଲେ । ଏହି ଯୁଦ୍ଧରେ ମୋଟ ୫୫ ହଜାର କୋଟି ଟଙ୍କା ଖରଚ ହୋଇଥିଲା । ତାହା ପ୍ରାୟ ୧ ହଜାର କୋଟି ଟଙ୍କା ମୂଲ୍ୟର ସମ୍ପତ୍ତି ନଷ୍ଟ ହୋଇଥିଲା । ନିହତ ବ୍ୟକ୍ତି ମାନଙ୍କୁ ପ୍ରାୟ ୧୦ ହଜାର କୋଟି ଟଙ୍କା କ୍ଷତିପୂରଣ ଦିଆ ଯାଇଥିଲା ।

ଅକ୍ଷମ ହୋଇଥିବା ସୈନିକମାନଙ୍କ ସାପ୍ତାହିକ ୪୦ ଶିଲିଙ୍ଗ, ଉନ୍ମାଦଗ୍ରସ୍ତ ଲୋକମାନଙ୍କୁ ୪୦ ଶିଂ, ଅନ୍ଧଙ୍କୁ ୪୦ ଶିଂ, ଡାହାଣ ହାତ କଟି ଯାଇଥିବା ଲୋକଙ୍କୁ ୩୨ ଶିଂ ଓ ମୂକ ହୋଇଥିବା ଲୋକଙ୍କୁ ୨୮ ଶିଂ ହିସାବରେ ସାପ୍ତାହିକ ପେନସନ୍ ପ୍ରଦତ୍ତ ହୋଇଥିଲା ।

ସେହି ଯୁଦ୍ଧରେ ଭାରତ ୧୩ ଲକ୍ଷ ଲୋକ ଓ ୩୧୨ କୋଟି ଟଙ୍କା ସାହାଯ୍ୟ କରିଥିଲା ।

ଏହି ମହାଯୁଦ୍ଧରେ ୫୦ ହଜାର କୋଟି ଟଙ୍କା ପୋଡ଼ି ଜଳି ଯାଇଥିଲା ।

ବ୍ରିଟିଶ ସାମ୍ରାଜ୍ୟର ଖର୍ଚ୍ଚ ପ୍ରାୟ ୧୭ ହଜାର ଟଙ୍କା ।

ଭାରତରୁ ୧୫୦ କୋଟି ଟଙ୍କା ନିଆଯାଇ ବିଲାତକୁ ପଠାଯାଇଥିଲା ଓ ସେଥିରେ ୧୭ ଦିନ ଯୁଦ୍ଧ ଖର୍ଚ୍ଚ ଚଳିଥିଲା ।

ଯୁଦ୍ଧ ଶେଷ ଅଡ଼କୁ ଦୈନିକ ଖର୍ଚ୍ଚ ୯—୧୦ କୋଟି ଟଙ୍କା ।

ଏହି ଯୁଦ୍ଧରେ ବିଲାତସରକାରଙ୍କ ଋଣ ୧୩ ହଜାର କୋଟି ଟଙ୍କା

ଆମେରିକା ,, ୪ ,, ,,

ଫ୍ରାନ୍ସ ,, ୧୦ ,, ,,

୧୯୧୯ ଫେବ୍ରୁୟାରୀ ୧୦ ରେ ପାରିସ ସଭାରେ ନିର୍ଦ୍ଧାରିତ ହେଲା ଜର୍ମାନୀ ମିତ୍ର ପକ୍ଷକୁ ୩୨ ହଜାର କୋଟି ଟଙ୍କା ଦେବ ।

୧୯୨୧ ମଇ ୧ରେ ମିତ୍ର ପକ୍ଷକୁ ୯ ହଜାର ,,

୧୯୨୪ ରେ ୟଙ୍ଗ ପ୍ଲାନ ,, ୨ ହଜାର ,,

ଅର୍ଥାତ୍ ଟ ୧ ୧ ରେ ଟ ୦ /୩ ହିସାବ ରହିଲା ।

## ୧୯୧୪-୧୯୧୮ (ଜର୍ମ୍ମାନଯୁଦ୍ଧ)

ମୃତ—

| | |
|---|---|
| ଇଂରାଜ ସାମ୍ରାଜ୍ୟ— | ୧୧ ଲକ୍ଷ |
| ଫ୍ରାନ୍ସ— | ୧୩ ଲକ୍ଷ ୯୪ ହଜାର |
| ରୁଷିଆ— | ୩୦ ଲକ୍ଷ |
| ଜର୍ମ୍ମାନ— | ୨୦ ଲକ୍ଷ ୫୧ ହଜାର |
| ଅଷ୍ଟ୍ରିଆ ହଙ୍ଗେରି— | ୧୦ ଲକ୍ଷ |
| ବେଲଜିୟମ— | ୩୮ ହଜାର |
| ଇଟାଲି— | ୪ ଲକ୍ଷ ୬୦ ହଜାର |
| ରୁମାନିଆ— | ୩ ଲକ୍ଷ ୩୭ ହଜାର |
| ସର୍ଭିୟା— | ୧ ଲକ୍ଷ ୨୮ ହଜାର |
| ବୁଲଗେରିଆ— | ୧ ଲକ୍ଷ ୧ ହଜାର |
| ତୁର୍କି— | ୩ ଲକ୍ଷ |
| ପର୍ତ୍ତୁଗାଲ— | ୭ ହଜାର |
| ସର୍ବମୋଟ | ୯୧ ଲକ୍ଷ ୧୫ ହଜାର |

### ଅକର୍ମ୍ମଣ୍ୟ ଲୋକ—

| | |
|---|---|
| ଆଖିଫୁଟା ଲୋକ— | ୩୧୫୯୨ |
| ଏକାବେଳକେ ଗୋଡ଼କଟା | ୨୪୩୫୯ |
| ହାତକଟା ଲୋକ | ୧୦୯୪୭ |
| ଅନ୍ୟପ୍ରକାର ଆହତ ଓ ଅକର୍ମ୍ମଣ୍ୟ | ୪ ଲକ୍ଷ ୭୭୨୧୧ |
| ରୋଗଗ୍ରସ୍ତ | ୭ ଲକ୍ଷ ୯୪୯୮୭ |
| ପାଗଳ | ୯୫୯୫ |
| ସର୍ବମୋଟ | ୧୩ ଲକ୍ଷ ୩୮୭୧୧ |

## ଇଉରୋପୀୟ ମହାସମରରେ କ୍ଷତି—

( ପରବର୍ତ୍ତୀ ସମ୍ବାଦ )

ପୃଥିବୀର ଯେଉଁ ଶକ୍ତିମାନେ ଏହି ଭୀଷଣ କାଳସମରରେ ବ୍ୟାପୃତ ହୋଇଥିଲେ, ସେମାନଙ୍କର ଧନ, ଜନ ପ୍ରଭୃତି ସକଳ ପ୍ରକାର କ୍ଷତି ଏକତ୍ର କଲେ ଜଣାଯାଏ ଯେ, ସେ ଯୁଦ୍ଧରେ ସର୍ବମୋଟ ୯,୦୦୦,୦୦୦ ଲୋକ ନିହତ ହୋଇଥିଲେ ଏବଂ ୨୦,୦୦୦,୦୦୦ ଲୋକ ଆହତ ହୋଇଥିଲେ । ଏହା ଛଡ଼ା ଏହି ଯୁଦ୍ଧରେ ସର୍ବମୋଟ ୫୦ କୋଟି ହଜାର ଅର୍ଥାତ୍ ୫୦୦,୦୦୦,୦୦୦,୦୦୦ ଟଙ୍କା ନଷ୍ଟ ହୋଇଥିଲା ।

ଅମୃତ ବଜାର ବଚନ ।

ଉଲ୍ଲିଖିତ ହତାହତ ଓ ନଷ୍ଟସମ୍ପଦର ପରିମାଣ ମଧ୍ୟରୁ କେବଳ ବ୍ରିଟିଶ ସାମ୍ରାଜ୍ୟରୁ ୧୦୯୦୦୦୦ ଲୋକ ନିହତ ହୋଇଥିଲେ ଏବଂ ୨୦୦୦୦୦୦ ଲୋକ ଆହତ ହୋଇଥିଲେ । ତାହା ଛଡ଼ା ଟ ୧୮୦୦୦୦୦୦୦୦୦୦୦୯ ମଧ୍ୟ ଖର୍ଚ୍ଚ ହୋଇଥିଲା ।

ବ୍ରିଟିଶ ସାମ୍ରାଜ୍ୟର ଉଲ୍ଲିଖିତ ହତାହତ ଓ କ୍ଷତ ମଧ୍ୟରୁ କେବଳ ଭାରତ ସାମ୍ରାଜ୍ୟରୁ ୧୩୦୦୦୦ ଲୋକ ନିହତ ହୋଇଥିଲେ । ଭାରତ ଏହି ଯୁଦ୍ଧରେ ୧୦ ଲକ୍ଷ ସୈନ୍ୟ ଯୋଗାଇଥିଲା ଏବଂ ୧୫୦ କୋଟି ଟଙ୍କା ମଧ୍ୟ ସାହାଯ୍ୟ କରିଥିଲା ।

ବ୍ରିଟିଶ ସାମ୍ରାଜ୍ୟକୁ ଏହି କାଳସମରରେ ସର୍ବମୋଟ ଟ ୧୮୦୦୦୬୦୦୦୦୦୦ ଖର୍ଚ୍ଚ କରିବାକୁ ହୋଇଥିଲା । ଏହା ମଧ୍ୟରୁ ବ୍ରିଟିଶ ସରକାର ଟ ୧୩୩୩୩୩୩୩୩୩୩୩୩୩୯ ଋଣ କରି ଖର୍ଚ୍ଚ କରିଥିଲେ । ଏ ପର୍ଯ୍ୟନ୍ତ ସେ ଏହି ଋଣ ଜାଲରୁ ମୁକ୍ତ ହୋଇ ନାହାନ୍ତି । ବର୍ତ୍ତମାନ ଏହି ଯୁଦ୍ଧ ବାବଦରେ ବ୍ରିଟିଶ ସରକାରଙ୍କର ପ୍ରାୟ ଟ ୧୧୩୩୩୩୩୩୩୩୩୩୩ ଋଣ ଅଛି ଏବଂ ଏଥିପାଇଁ ତାଙ୍କୁ ଦୈନିକ ଏକ କୋଟି ଦଶ ଲକ୍ଷ ଟଙ୍କା ସୁଧ ଦେବାକୁ ହୁଏ ।



# ରୁଷିଆର ଉନ୍ନତି

ରୁଷ ସରକାର ନିଜ ଦେଶକୁ ପୃଥିବୀର ଆଦର୍ଶ ସ୍ଥାନୀୟ କରିବେ ବୋଲି କୃଷି ଓ ଶିକ୍ଷାର ଉନ୍ନତି କଲେ ଅକାତରରେ ପ୍ରଭୂତ ଅର୍ଥ ବ୍ୟୟ କରୁଛନ୍ତି । ଶିକ୍ଷାପାଇଁ ୧୯୩୦ ସାଲରେ ୩୩ ହଜାର ପାଠାଗାର, ୪୦ ହଜାର ପୁସ୍ତକାଗାର, ୧୬୫ଟି ଶିଳ୍ପ ବିଦ୍ୟାଳୟ ଓ ୧୨ଟି ଶିଳ୍ପ କଲେଜ ପ୍ରତିଷ୍ଠିତ ହୋଇଥିଲା । ଉପରୋକ୍ତ ସ୍କୁଲ କଲେଜରେ ପଢ଼ୁଥିବା ଛାତ୍ରମାନଙ୍କ ମଧ୍ୟରୁ ଶତକଡ଼ା ୯୫ ଜଣ ଛାତ୍ର ସରକାରୀ ବୃତ୍ତି ପାଆନ୍ତି । ଶିଳ୍ପ ଭବନର ପ୍ରତିଷ୍ଠା ପାଇଁ ରାଜକୋଷରୁ ୭୭୦ କୋଟି ଟଙ୍କା ଖରଚ ହୋଇଅଛି । ଏତଦ୍‌ବ୍ୟତୀତ ବୈଜ୍ଞାନିକମାନଙ୍କ ଚେଷ୍ଟାରେ ହୀରକ, ସ୍ୱର୍ଣ୍ଣ, ରୌପ୍ୟ, ସୀସକ, ଲୌହ, ପାରଦ, ତାମ୍ର, ଅଭ୍ର ଓ ଲବଣ ଆଦି ପ୍ରଚୁର ପରିମାଣରେ ବାହାରି ଶିଳ୍ପର ପ୍ରସାର ଦିଗରେ ଯଥେଷ୍ଟ ସାହାଯ୍ୟ କରୁଅଛି । ଖନିଜ ଦ୍ରବ୍ୟର ଆବିଷ୍କାର ପାଇଁ ସରକାର କୋଟି କୋଟି ଟଙ୍କା ବ୍ୟୟ କରୁଅଛନ୍ତି ।

କୃଷକ କୁଳର ସାଧାରଣ ଜ୍ଞାନ ଓ ବୁଦ୍ଧିବୃତ୍ତିର ବୃଦ୍ଧି ପାଇଁ ଅସଂଖ୍ୟ ଦୈନିକ, ସାପ୍ତାହିକ, ପାକ୍ଷିକ ଓ ମାସିକ ପତ୍ରିକାମାନ ବାହାରୁଛି । କୃଷକ ଓ ଶ୍ରମିକ ସମ୍ପ୍ରଦାୟ ମଧ୍ୟରେ ବହୁ ପୁସ୍ତକ ଓ ପତ୍ର ପତ୍ରିକା ସରକାରଙ୍କ ପକ୍ଷରୁ ବିନାମୂଲ୍ୟରେ ବିତରିତ ହେଉଅଛି ।

ଯେଉଁ କୃଷକମାନେ ଦେଶର ସମ୍ବାଦ ଉତ୍ତମରୂପେ ରଖିବେ ଏବଂ ଜାଣିବେ ସେମାନଙ୍କୁ ରାଜକୋଷରୁ ପୁରସ୍କାର ଦେବାର ମଧ୍ୟ ବ୍ୟବସ୍ଥା କରା ଯାଇଅଛି । ଏହିପରି କର୍ତ୍ତୃପକ୍ଷଙ୍କ ପ୍ରଯତ୍ନରେ ସାଧାରଣ ଶ୍ରେଣୀର ଅଭ୍ୟୁତ୍ଥାନ ପାଇଁ ରୁଷରେ ଗୁରୁ- ଅଦ୍ଭୁତ ଉଦ୍ୟମ ଚାଲିଛି ।

ରୁଷରେ ଆଦର୍ଶ କୃଷିକ୍ଷେତ୍ର କରାଯାଇ ଦେଶର ଜାତୀୟ ସମ୍ପଦ ବଢ଼ା ଯାଉଅଛି । ସେଠାରେ ଯେଉଁମାନେ ବାସ କରନ୍ତି ସେମାନଙ୍କର ସବୁପ୍ରକାର ସୁବିଧା ପାଇଁ ବ୍ୟବସ୍ଥା କରା ଯାଇଛି ।



# ଜାପାନର ସ୍ୱାସ୍ଥ୍ୟନୀତି

ନିମ୍ନଲିଖିତ ଉପଦେଶମାନ ଜାପାନର ସ୍ୱାସ୍ଥ୍ୟ ବିଭାଗର କର୍ତ୍ତୃପକ୍ଷ ସେ ଦେଶରେ ପ୍ରଚାର କରିଅଛନ୍ତି ।

୧ । ଗୃହର ବହିର୍ଦ୍ଦେଶ ବା ବାହାରର ଉନ୍ମୁକ୍ତ ସ୍ଥାନରେ ଯେତେ ସମୟ ପାର, ଅବସ୍ଥାନ କରିବ । ଦୀର୍ଘକାଳ ରୌଦ୍ର ସେବନ ଏବଂ ବ୍ୟାୟାମ କରିବ । ତୁମ୍ଭର ନିଃଶ୍ୱାସ ଯନ୍ତ୍ରରେ ଗଭୀର ଓ ନିୟମିତ ହେବ ତହିଁ ପ୍ରତି ଦୃଷ୍ଟି ରଖିବ ।

୨ । ଡିମ୍ବ, ଉଦ୍ଭିଦ, ଫଳ ଏବଂ ସଜ ଦୁଧ ତୁମ୍ଭର ପ୍ରଧାନ ଖାଦ୍ୟ ଓ ପାନୀୟ ହେବ । ସଜ ଦୁଧ ଯେତେ ଅଧିକ ପାର, ପାନ କରିବ । ଖାଦ୍ୟଦ୍ରବ୍ୟ ଉଚିତମତ ଚର୍ବଣ କରିବ ଏବଂ ଅହୋରାତ୍ର ମଧ୍ୟରେ ଏକାଧିକ ଥର ମାଂସ ଭୋଜନ କରିବ ନାହିଁ ।

୩ । ପ୍ରତିଦିନ ସ୍ନାନ କରିବ ଏବଂ ଯଦି ସହ୍ୟ କରିପାର ତାହାହେଲେ ସପ୍ତାହରେ ଥରେ ବା ଦୁଇଥର ଶରୀରକୁ ବାମ୍ଫ ଅଣି ଦେବ ।

୪ । ନିତାନ୍ତ ଟାଣ ବସ୍ତ୍ର ବ୍ୟବହାର କରିବ ନାହିଁ । କାର୍ପାସ ବସ୍ତ୍ର ବ୍ୟବହାର ପକ୍ଷରେ ଶ୍ରେଷ୍ଠ । ମଥାର ଟୋପି ଅଧିକ

ଛାଡ଼ି ନ ହେବା ଏବଂ ଯୋଗ୍ୟ ଭାତ୍ରରେ ପଦ ଦ୍ୱୟ ସ୍ୱଚ୍ଛନ୍ଦରେ ରହିବା ପ୍ରତି ଦୃଷ୍ଟି ରଖିବ ।

୫ । ଅଧିକ ରାତି ପର୍ଯ୍ୟନ୍ତ ଜାଗରଣ କରିବ ନାହିଁ ଏବଂ ପ୍ରତ୍ୟୁଷ ସମୟରେ ଶଯ୍ୟା ତ୍ୟାଗ କରିବ ।

୬ । ଗାଢ଼ ଅନ୍ଧକାରମୟ ଏବଂ ଶବ୍ଦହୀନ ପ୍ରକୋଷ୍ଠ ( ବଖରା ) ରେ ଶୟନ କରିବ । ସେହି କକ୍ଷର ଗବାକ୍ଷ ଖୋଲା ରଖିବ ।

୭ । ପୁରୁଷ ପକ୍ଷରେ ଅନ୍ୟୁନ ସାଢ଼େ ୬ ଘଣ୍ଟା ଓ ସ୍ତ୍ରୀ ଲୋକଙ୍କ ପକ୍ଷରେ ଅନ୍ୟୁନ ସର୍ବୋଚ୍ଚ ୮ ଘଣ୍ଟା ( ଆଠ ଘଣ୍ଟା ପନ୍ଦର ମିନିଟ୍ ) ନିଦ୍ରା ଯିବା ଉଚିତ ।

୮ । ପ୍ରତି ସପ୍ତାହରେ ଏକଦିନ ସମ୍ପୂର୍ଣ୍ଣରୂପେ ବିଶ୍ରାମ କରିବ, ସେ ଦିନ କୌଣସି ପ୍ରକାରେ ଲେଖା ପଢ଼ାର କାର୍ଯ୍ୟ କରିବ ନାହିଁ ।

୯ । କ୍ରୋଧ, ହର୍ଷ ପ୍ରଭୃତି ମାନସିକ ଉତ୍ତେଜନା ପରିତ୍ୟାଗ କରିବ । ଭବିଷ୍ୟତ ଚିନ୍ତା କରି ଅଥବା ଦୈବ କର୍ତ୍ତୃକ ନିର୍ଯ୍ୟାତିତ ହୋଇ ଅତିରିକ୍ତ ମାନସିକ ପରିଶ୍ରମ କରିବ ନାହିଁ । ମନ୍ଦ ବିଷୟର ଆଲୋଚନା ପରିତ୍ୟାଗ କରିବ ।

୧୦ । ଅବିବାହିତ ହୋଇ ରହିବ ନାହିଁ । ବିଧବା ଏବଂ ପତ୍ନୀଭ୍ରଷ୍ଟ ବ୍ୟକ୍ତିମାନେ ଯେତେ ଶୀଘ୍ର ସମ୍ଭବ ପୁନଶ୍ଚ ବିବାହ କରିବେ ।

୧୧ । ସୁରା ବା ତମାଖୁ ତ ଦୂରର କଥା,—ଅତିରିକ୍ତ ମାତ୍ରାରେ ଚା ଅବା କାଫି ସୁଦ୍ଧା ପାନ କରିବ ନାହିଁ ।

୧୨ । ଯେଉଁ କକ୍ଷ ଅତ୍ୟନ୍ତ ଉଷ୍ଣ ଅଥବା ଯେଉଁ କକ୍ଷରେ ବାୟୁର ଯାତାୟାତ ନାହିଁ, ସେହି କକ୍ଷରେ ବାସ କରିବ ନାହିଁ ।

୧୩ । ମଧ୍ୟେ ମଧ୍ୟେ ଦୂରବର୍ତ୍ତୀ ସ୍ଥାନକୁ ଭ୍ରମଣ କରିବା ନିମନ୍ତେ ଯିବ ଏବଂ ଯେତେବେଳେ ଯେଉଁ ସ୍ଥାନରେ ଉପସ୍ଥିତ ହେବ, ସେତେବେଳେ ମନେ କରିବ, ଯେପରି କେବଳ ସେହି ସ୍ଥାନରେ ତୁମ୍ଭଙ୍କୁ ଜୀବନର ଅବଶିଷ୍ଟ କାଳ ବାସ କରି ରହିବାକୁ ହେବ, ଏବଂ ଯେତେବେଳେ ଯେଉଁ ସ୍ଥାନକୁ ଗଲେ ମଧ୍ୟ ସେହି ସ୍ଥାନରେ କାହାରି ହେଲେ କିଛି ଉପକାର କରିବ । ସ୍ଥାନୀୟ ଅଧିବାସୀମାନଙ୍କ ସହିତ ବନ୍ଧୁତ୍ୱ ସ୍ଥାପନ କରିବ ଏବଂ ସର୍ବଦା ସତ୍ୟକଥା କହିବ ।



## ମିଶର ( Egypt ) ର ଚିତ୍ର ।

ବୋମ୍ବାଇ ଠାରୁ ଇଂଲଣ୍ଡ ଯିବା ବାଟରେ ଲୋହିତ ସାଗର କୂଳେ କୂଳେ ସୁଏଜ ଖାଲ ଦେଇ ସଇଦ୍ ବନ୍ଦର ପାଖେ ବାହାରିବା ଯାଏ, ଯେଉଁ ଅଣଓସାରିଆ ଦେଶ ଖଣ୍ଡ ବାମ ପାର୍ଶ୍ୱରେ ସାହାରା ମରୁଭୂମିରୁ ବାରି ହୋଇ ଦିଶେ ତାହାର ନାମ ମିଶର । ଏହା ଆଉ ଦୀର୍ଘରେ ୧୨,୦୩୩ ବର୍ଗ ମାଇଲ ଏବଂ ଉର୍ବର ଭୂମିରେ ବାସ କରୁଥିବା ଲୋକଙ୍କର ସଂଖ୍ୟା ପ୍ରାୟ ୧ କୋଟି ୨୭ ଲକ୍ଷ ୫୦ ହଜାର । ସ୍ଥୂଳତଃ ଏହି ଲୋକମାନେ ୪ ଭାଗରେ ବିଭକ୍ତ । ଯଥା:—( ୧ ) ଫେଲାଇନ୍ ବା ଚଷା—( ୨ ) ବେଦୁଇନ ବା ମେଷ ଓ ଗୋପାଳକ—( ୩ ) ବେର୍‌ବାରିନ୍ ନାମକ ଗୋଟିଏ ନିଗ୍ରୋ ଏବଂ ଆରବ ମିଶ୍ରିତ ଜାତି—( ୪ ) 'କପ୍ଟ' ମିଶରର ଆଦିମ ଅଧିବାସୀ । ଏହା ଦୁଇ ଦେଶରେ ବିଭକ୍ତ । ଯଥା :—ଉତ୍ତର ମିଶର ଓ ଦକ୍ଷିଣ ମିଶର । ତାହା ପୁଣି ୧୪ ଟି ପ୍ରଦେଶରେ ବିଭକ୍ତ ହୋଇ ଜିଲ୍ଲା ଓ ତାଲୁକରେ ବିଭକ୍ତ ହୋଇଅଛି । ସମୁଦାୟ ମିଶର ୫ ଗୋଟି ଶାସକଙ୍କ ଅଧୀନ । ଏହି ସ୍ୱାଧୀନ ଦେଶର ବର୍ତ୍ତମାନ ରାଜା ସୁଲତାନ୍ ଅହମ୍ମଦ ଫୁୟାଦ ପାଶା । ତାଙ୍କୁ ଉପଦେଶ ଦେବା ପାଇଁ ଗୋଟିଏ ପ୍ରାଦେଶିକ ସମ୍ମିଳନୀ ( ଦେଶୀୟ ଲୋକଙ୍କର ) ଓ ରାଜାଙ୍କର ଖାସ ଗୋଷ୍ଠି ଅଛି । ଏହାର ସୈନ୍ୟ ସଂଖ୍ୟା ୧୮ ହଜାର । ଏଠା ଅଧିବାସୀମାନେ ୧୯ ବର୍ଷ ଠାରୁ ୨୭ ବର୍ଷ ମଧ୍ୟରେ ତିନିବର୍ଷ ପର୍ଯ୍ୟନ୍ତ ସୈନ୍ୟଦଳଭୁକ୍ତ ହୋଇ ଯୁଦ୍ଧ ଶିକ୍ଷା କରିବାକୁ ବାଧ୍ୟ । କାଇରୋ ପ୍ରାଚୀନ ସାମରିକ ଦୁର୍ଗ ତରୁଣ ମିଶରର ଯୁଦ୍ଧ ଶିକ୍ଷାର୍ଥୀ ମାନଙ୍କର ଶିକ୍ଷା—କେନ୍ଦ୍ର । ଏଠାକାର କୃଷି ଯୋଗ୍ୟ ଭୂମିର ପରିମାଣ ୧୩ ହଜାର ବର୍ଗ ମାଇଲ । ଗହମ ଅନ୍ୟାନ୍ୟ ରବି ଫସଲ, କପା ଓ ଆଖୁ ଏଠାରେ ପ୍ରଧାନ କ୍ଷେତ୍ରଜାତ ଦ୍ରବ୍ୟ । ମିଶରରେ ଖଜୁରୀ ଅପର୍ଯ୍ୟାପ୍ତ ପରିମାଣରେ ହୁଏ । ସୋରିଷ, ରାଶି, ପିଆଜ, ଲେମ୍ବୁ, କଦଳୀ, କାକୁଡ଼ି, ତରଭୁଜ ଏବଂ ଅଳଭ୍ୟ ମଧ୍ୟ ଚାଷ କରାଯାଏ । ସୁନା ଓ କେତେ ପ୍ରକାର ପଥର—ମାଟି, ଲୁଣ, ଫିଟିକିରି ଓ ଧାତୁ ଜନିତ ଦ୍ରବ୍ୟ ଏଠାରେ ପ୍ରଧାନ ଖଣିଜ ଦ୍ରବ୍ୟ । ସେଥିରୁ ୧୦ କୋଟି ୫୦ ଲକ୍ଷ ଟଙ୍କା ପ୍ରତିବର୍ଷ ଲାଭ ହୁଏ ।

ଏଠା ଚିଣି, ଗାଲିଚା ଓ କାର୍ପେଟ ବିଦେଶରେ ବିଶେଷ ଆଦର ପାଏ ।

ଫ୍ରାନ୍ସ ଓ ଆମେରିକା ସହିତ ମିଶରର ବାଣିଜ୍ୟ ବ୍ୟବସାୟ କରେ । ଏଠାରେ ସ୍ୱର୍ଣ୍ଣ ମୁଦ୍ରା ପ୍ରଚଳିତ; ସେଥିର ମୂଲ୍ୟ ଆମ ହିସାବରେ ପ୍ରାୟ ୫ ୧୬୯ ଙ୍କା ।

ହାରାହାରି ବର୍ଷକୁ ୫ ହଜାର ଜାହାଜ ନାଇଲ ନଦୀ ବାଟେ ଏ ଦେଶକୁ ଯିବା ଆସିବା କରେ ଓ ସେହି ଜଳ-ବାଣିଜ୍ୟ ବାଣିଜ୍ୟରୁ ବର୍ଷକୁ ହାରାହାରି ୧୫ କୋଟି ଟଙ୍କା ଦେଶକୁ ଆସେ ।

ଏଠାରେ ୨୩୧୧ ମାଇଲ ରେଲପଥ ରାଜାଙ୍କର ଖାସ ସମ୍ପତ୍ତି ଏବଂ ସ୍ୱାଧୀନ କମ୍ପାନୀମାନଙ୍କର ପ୍ରାୟ ୭୨୦ ମାଇଲ ରେଲପଥ ଅଛି । ଏଠା ପ୍ରଧାନ ପ୍ରଧାନ ସ୍ଥାନମାନଙ୍କରେ ତାର ସଂଯୋଗ ଅଛି ଏବଂ ମୋଟା ମୋଟି ତାରର ଲମ୍ବ ୨୧ ହଜାର ୫ଶହ ୭ ମାଇଲ ।

ମିଶରରେ ଆରବୀ ଭାଷା ପ୍ରଚଳିତ । ଏଠାରେ ଖ୍ରୀଷ୍ଟ-ଧର୍ମାବଲମ୍ବୀଙ୍କ ସଂଖ୍ୟା ପ୍ରାୟ ୧ ଲକ୍ଷ ୬୦ ହଜାର ।

ଏ ଦେଶରେ ଅବରୋଧ ପ୍ରଥା ପ୍ରଚଳିତ । ସମ୍ଭ୍ରାନ୍ତବଂଶୀୟା ମହିଳାମାନେ ଯାନରେ ବାହାରକୁ ବାହାରିଲେ ମଧ୍ୟ (ବୋରଖାଁଓ) ନାମକ ପରିଚ୍ଛଦ ବ୍ୟବହାର କରନ୍ତି । ସେହି ପରିଚ୍ଛଦ ସମସ୍ତ ଅଙ୍ଗ ଆଚ୍ଛାଦନ କରି ପାଦ ଯାଏ ଲମ୍ବିଥାଏ । କେବଳ ଚକ୍ଷୁ ଦୁଇଟିରେ ଦୁଇଟି ଜାଲି ଥାଏ । ସାଧାରଣ ମହିଳାମାନେ ଏବଂ ନିମ୍ନଶ୍ରେଣୀର ସ୍ତ୍ରୀମାନେ ହାଟ ବଜାରକୁ କାର୍ଯ୍ୟାନୁରୋଧରେ ଆସିଲେ ନାକ ଉପରେ ଖଣ୍ଡିଏ ଧାତୁନିର୍ମିତ ଖୋଳ ପିନ୍ଧି ତାହା ଉପରେ କାଳିଆ ଲୁଗାର ଅବଗୁଣ୍ଠନ ବ୍ୟବହାର କରନ୍ତି । ମୁଣ୍ଡ ଉପରେ ଖଣ୍ଡେ ଲୁଗା ଥାଏ । ତାହା ଭ୍ରୂଲତା ପର୍ଯ୍ୟନ୍ତ ଲମ୍ବିଥାଏ । ତା ପରେ ପୁଣି ନାକ ଉପରେ ଧାତୁ ଖୋଳ ସାହାଯ୍ୟରେ ଆଉ ଖଣ୍ଡିଏ ଲୁଗା ଘୋଡ଼ାଇବା ପାଇଁ ବ୍ୟବହାର କରନ୍ତି । ଏଣୁ ଆଖି ବ୍ୟତୀତ ସମସ୍ତ ଅଙ୍ଗ ସମ୍ପୂର୍ଣ୍ଣ ଆଚ୍ଛାଦିତ ହୁଏ ।

ମିଶର ଅଧିବାସୀଙ୍କ ମଧ୍ୟରୁ ପୁରୁଷଙ୍କ ଭିତରେ ହଜାରକରେ ୧୨୦ଜଣ ଓ ମହିଳାଙ୍କ ମଧ୍ୟରେ ହଜାରକରେ ୧୮ଜଣ ଲେଖି ପଢ଼ି ଜାଣନ୍ତି । ଏଠାରେ ଅନେକ ଗୁଡ଼ିଏ ବିଶ୍ୱବିଦ୍ୟାଳୟ ଅଛି । ଏହା ଛଡ଼ା ଉଚ୍ଚ ଇଂରାଜୀ ସ୍କୁଲ, ପ୍ରାଥମିକ ସ୍କୁଲ, ମକ୍ତାବ ଓ କଲେଜ ପ୍ରଭୃତି ଅଛି ।

ସେଠା ଲୋକେ ଚଞ୍ଚଳ ପ୍ରକୃତ ବିଶିଷ୍ଟ ନୁହନ୍ତି । ସେମାନଙ୍କର ଧର୍ମ ବିଶ୍ୱାସ ଅଟଳ ଏବଂ ଧର୍ମରକ୍ଷା ପାଇଁ ପ୍ରାଣ-ତ୍ୟାଗ କରିବାକୁ କୁଣ୍ଠିତ ନୁହନ୍ତି । ସେମାନେ ବୁଦ୍ଧିମାନ୍ ଓ ସାହସୀ । ମିଶର ରମଣୀମାନେ ଯେପରି ସୁନ୍ଦରୀ ଓ ମଧୁରଭାଷିଣୀ ସେହିପରି ଶାନ୍ତିପ୍ରିୟା । ସେମାନେ ପରିଶ୍ରମ କରୁଥିବାରୁ ସେମାନଙ୍କର ଗଠନ ସୁନ୍ଦର, ସବଳ ଓ ଗୌର ।



## ଫରାସିରାଷ୍ଟ୍ର ବିପ୍ଳବ

ଚତୁର୍ଦ୍ଦଶ ଲୁଇ ଫ୍ରାନ୍ସର ରାଜସିଂହାସନରେ ବସିଲା ପରେ ନିଜ ହାତରେ ସମସ୍ତ ରାଜକାର୍ଯ୍ୟ କ୍ଷମତା ରଖିଲେ ଏବଂ ନିମ୍ନ-ଶ୍ରେଣୀରୁ କେତେକଙ୍କୁ ସାମନ୍ତ ଶ୍ରେଣୀଭୁକ୍ତ କଲେ । ପୁଲିସ କର୍ମଚାରୀ ଓ ସୈନ୍ୟମାନଙ୍କ ସହାୟତାରେ ସେ ରାଜ୍ୟ ମଧ୍ୟରେ ଯଥେଚ୍ଛାଚାର କରିବାକୁ ଲାଗିଲେ । ଗୁପ୍ତଚରଙ୍କ ଠାରୁ ରାଜ୍ୟର ସାମାନ୍ୟ ଘଟଣା ସୁଦ୍ଧା ଅବଗତ ହେଉଥିଲେ । ସେ ମଠାଧିକାରୀମାନଙ୍କୁ ତଡ଼ି ଦେଇ ଦେବସ ସମ୍ପତ୍ତିମାନ ଯଥେଚ୍ଛା ବିତରଣ କଲେ ଓ ପ୍ରଭୂତ ଅର୍ଥ ଗ୍ରହଣ କରି ରାଜକାର୍ଯ୍ୟ ପଦ-ମାନ ପ୍ରଦାନ କଲେ । ବଂଶମର୍ଯ୍ୟାଦା ବା ଗୁଣମର୍ଯ୍ୟାଦା ପ୍ରତି ତାଙ୍କର ଆଦୌ ଦୃଷ୍ଟି ନ ଥିଲା । ପୁଣି ନୂତନ କରି ଓ ଶୁଳ୍କ କର ବସାଇଲେ । ସମସ୍ତ କର ମଧ୍ୟରେ ଲବଣକର ଅତ୍ୟନ୍ତ କଷ୍ଟପ୍ରଦ ହେଲା । କେହି ବାଣିଜ୍ୟ ବ୍ୟବସାୟ କରି ପାରିଲେ ନାହିଁ । ଦରିଦ୍ର ପ୍ରଜାମାନେ ଅବୈଧ ଉପାୟରେ ଲବଣ ସଂଗ୍ରହ ଆରମ୍ଭ କଲେ । ନାନାପ୍ରକାର ଉତ୍ପୀଡ଼ନରେ ପ୍ରଜାମାନେ ହାହାକାର କରିବାକୁ ଲାଗିଲେ । ରାଜା ଓ ରାଜକର୍ମଚାରୀମାନେ ପ୍ରଜାମାନଙ୍କ ଦୁଃଖ ଦେଖି ସୁଦ୍ଧା ଆମୋଦ ପ୍ରମୋଦରେ କାଳ କଟାଇଲେ । ଲୁଇ ଅତ୍ୟନ୍ତ ବିଳାସୀ, ଅମିତବ୍ୟୟୀ ଓ ଆଡ଼ମ୍ବରପ୍ରିୟ ଥିଲେ । ତାଙ୍କ ପରେ କୁଚରିତ୍ର ପଞ୍ଚଦଶ ଲୁଇ ରାଜା ହେଲେ । ଏହାଙ୍କ ସମୟରେ ରାଜ୍ୟର ଅଧୋଗତି ଆରମ୍ଭ ହେଲା । ଇଂରେଜମାନେ ଆମେରିକାର କେନେଡ଼ା ନୋଭାସ୍କୋଶିଆ ପ୍ରଭୃତି ଫରାସୀ ଅଧିକୃତ ଭୂଭାଗମାନ ଅଧିକାର କଲେ । ଏହାଙ୍କ ପରେ ଷୋଡ଼ଶ ଲୁଇ ରାଜା ହେଲେ । ସେ ଏକ ସୁନ୍ଦରୀ ରାଜକନ୍ୟାଙ୍କୁ ବିବାହ କରି

ରାଜାର ଉଚ୍ଚପଦସ୍ଥ ବ୍ୟକ୍ତି ଓ ସାମନ୍ତମାନଙ୍କୁ ଭୂରି ଭୋଜନ ଦେଲେ, ମାତ୍ର ନୀଚପ୍ରଜାମାନେ ମୁଠାଏ ଅନ୍ନ ପ୍ରାର୍ଥନା କରି ମଧ୍ୟା ପାଇଲେ ନାହିଁ ।

ପଞ୍ଚଦଶ ଲୁଇ ବହୁ କୋଟି ଟଙ୍କା ଋଣ କରିଥିଲେ । ଷୋଡ଼ଶ ଲୁଇ ସଦୁଦ୍ଦେଶ୍ୟପ୍ରଣୋଦିତ ଚେଷ୍ଟା କରି ତାହା ପରିଶୋଧ କରି ପାରିଲେ ନାହିଁ । ଏହା ପରେ ନଜର ବ୍ୟୟ ନିମିତ୍ତ ପ୍ରଭୂତ ଅର୍ଥ ଆବଶ୍ୟକ ହେଉଥିଲା । ମନ୍ତ୍ରୀମାନେ ସେହି ବ୍ୟୟ ନିର୍ବାହ ସକାଶେ ନୂତନ କରର ପ୍ରସ୍ତାବ କରି ମଧ୍ୟା କୃତକାର୍ଯ୍ୟ ହେଲେ ନାହିଁ । ଦୁଇଶତ ବର୍ଷ ପୂର୍ବରୁ ଜାତୀୟ ସଭାର ଅସ୍ତିତ୍ୱ ଲୋପ ପାଇଥିଲା । ମନ୍ତ୍ରୀମାନେ ସେହି ସଭା ଆହ୍ୱାନ କଲେ । ସେ ସଭାକୁ ପ୍ରଜାମାନେ ଆପଣା ମଧ୍ୟରୁ ଉପଯୁକ୍ତ ପ୍ରତିନିଧି ନିର୍ବାଚନ କରି ପଠାଇଲେ । ମାତ୍ର ଏହି ସଭାର ସହିତ ରାଜାଙ୍କର ମତଭେଦ ହେବାରୁ ରାଜପ୍ରେରିତ ରକ୍ଷିବର୍ଗ ସଭ୍ୟମାନଙ୍କୁ ସଭାଗୃହରୁ ତଡ଼ିଦେଲେ; ମାତ୍ର ସେମାନେ ଅନ୍ୟତ୍ର ସଭା କରି ପ୍ରତିଜ୍ଞାବଦ୍ଧ ହେଲେ ଯେ, ଯେତେଦିନ ପର୍ଯ୍ୟନ୍ତ ଦେଶର ଶୃଙ୍ଖଳା ସ୍ଥାପିତ ନ ହୋଇଛି ସେ ପର୍ଯ୍ୟନ୍ତ କୌଣସି କ୍ରମରେ ସଭା ଭଙ୍ଗ କରିବେ ନାହିଁ । ଗ୍ରେବିଏଲ୍ ମିରାବୋ, ରବସ୍‌ପିଏର ପ୍ରଭୃତି ମହାବାଗ୍ମୀମାନଙ୍କ ତେଜୋମୟୀ ବକ୍ତୃତାରେ ସଭ୍ୟମାନେ ଅତ୍ୟନ୍ତ ଉତ୍ତେଜିତ ହେଲେ । ଏହା ପରେ ଦରିଦ୍ର ପ୍ରଜାବୃନ୍ଦ ଏକତ୍ରିତ ହୋଇ ନଗର ମଧ୍ୟରେ ନାନାପ୍ରକାର ବିଶୃଙ୍ଖଳାଚରଣ କଲେ ଓ ରାଜଦ୍ରୋହୀ ହୋଇ ଉନ୍ମତ୍ତ ତୁଲ୍ୟ ହେଲେ । ସେମାନଙ୍କ ମଧ୍ୟରୁ କେହି କେହି ରାଜସୈନ୍ୟଙ୍କ ଦ୍ୱାରା ନିହତ ହେଲେ । ବିଦ୍ରୋହୀମାନେ ବଳପୂର୍ବକ କମାଣମାନ ଅଧିକାର କରି କାରାଗାରର ଦୁର୍ଗ ଭାଙ୍ଗି ଦେଲେ ଓ ସେହି ବାଷ୍ଟିଲ କାରାଗାରରେ ଶତ ଶତ ନିରପରାଧ ବ୍ୟକ୍ତି-ଯେଉଁମାନେ ଅବିଚାରରେ ପଞ୍ଚଦଶ ଲୁଇଙ୍କ ଆଦେଶରେ ବନ୍ଦୀ ହୋଇଥିଲେ, ସେମାନଙ୍କୁ ମୁକ୍ତ କରିଦେଲେ । ଏଥି ଉତ୍ତାରୁ ସମଗ୍ର ଫ୍ରାନ୍ସରେ ବିଦ୍ରୋହାନଳ ଜଳି ଉଠିଲା । ସୈନ୍ୟମାନେ ମଧ୍ୟ ସେଥିରେ ଯୋଗ ଦେଲେ । ଏହି ରାଜାଙ୍କ ରାଜତ୍ୱରେ ଇଉନାଇଟେଡ୍ ଷ୍ଟେଟ୍‌ବାସିମାନେ ଇଂରାଜଙ୍କ ସଙ୍ଗେ ମହା ସମର କରି ସ୍ୱଦେଶକୁ ସ୍ୱାଧୀନ କଲେ । ଫ୍ରାନ୍ସ ଅଧିପତି ସୈନ୍ୟ ପଠାଇ ଇଉନାଇଟେଡ୍ ଷ୍ଟେଟବାସିଙ୍କୁ ସାହାଯ୍ୟ କରିଥିଲେ । ଯେଉଁ ସୈନ୍ୟମାନେ ସେଠାରେ ଯୁଦ୍ଧରେ ବୀରତ୍ୱ ଦେଖାଇ ପ୍ରତିଷ୍ଠା ଲାଭ କରିଥିଲେ ସେମାନେ ସ୍ୱଚକ୍ଷୁରେ ସେ ଦେଶବାସିଙ୍କୁ ସ୍ୱାଧୀନ ହେବାର ଦେଖି ଆସିଲେ ଏବଂ ନିଜ ଦେଶକୁ ସେହିପରି ସ୍ୱାଧୀନ କରିବାର ଇଚ୍ଛା ସ୍ୱତଃ ବଳବତୀ ହେଲା । ଏମାନେ ପ୍ରଥମେ ସେ ବିଦ୍ରୋହରେ ଯୋଗ ଦେଇ ବିଦ୍ରୋହର ବଳବୃଦ୍ଧି କଲେ । ବିଦ୍ରୋହୀମାନେ ବାଭବଶାଳୀ ଉଚ୍ଚ ବଂଶଜମାନଙ୍କ ସର୍ବସ୍ୱାନ୍ତ କରିବାକୁ ଲାଗିଲେ । ବିଦ୍ରୋହର ୨ୟ ବର୍ଷରେ ବିଦ୍ରୋହୀମାନେ ମିରାବୋଙ୍କୁ ଅଧ୍ୟକ୍ଷ ପଦରେ ନିର୍ବାଚନ କଲେ ଏବଂ ସେ ରାଜ୍ୟକୁ ୮୫ ଭାଗରେ ବିଭକ୍ତ କରି ଶାସନକର୍ତ୍ତା ନିଯୁକ୍ତ କଲେ । ଏଥିରେ ରାଜାଙ୍କର କୌଣସି ପ୍ରଭବ ରହିଲା ନାହିଁ । ଅର୍ଥାଭାବ ହେତୁ ମିରାବୋଙ୍କ କାର୍ଯ୍ୟ ସୁଫଳପ୍ରଦ ହେଲା ନାହିଁ । ସାମନ୍ତମାନେ ବିଦ୍ରୋହ ଭୟରେ ନିଜ ନିଜର ଧନରତ୍ନାଦି ଘେନି ଅନ୍ୟ ଦେଶକୁ ପଳାଇ ଗଲେ ଏଣୁ ଫ୍ରାନ୍ସ ନିଃସ୍ୱ ହେଲା । ବିଦ୍ରୋହୀମାନେ ମିରାବୋଙ୍କ ଅଧୀନରେ ରହିଲେ । କିଛିକାଳ ପରେ ମିରାବୋଙ୍କର ମୃତ୍ୟୁ ହେବାରୁ ଲୁଇ ରାଜପ୍ରାସାଦରୁ ପଳାଇ ଗଲେ, ମାତ୍ର ଧୃତ ହୋଇ ରାଜଧାନୀକୁ ଆସିଲେ ।

ତିନିବର୍ଷପରେ ଜାତୀୟ ସଭା ନବଗଠିତ ହେଲା । ପ୍ରଥମ ସଭା ସାମନ୍ତମାନଙ୍କୁ ଭୂମି ଓ କ୍ଷମତାଶୂନ୍ୟ, ସୈନ୍ୟ ସଂଖ୍ୟା ହ୍ରାସ, ଦଣ୍ଡବିଧିର ପରିବର୍ତ୍ତନ ଏବଂ କେତେଗୁଡ଼ିଏ ଅନ୍ୟାୟ କର ଉଠାଇ ଦେଇଥିଲେ ।

ଲୁଇଙ୍କ ଦୁର୍ଦ୍ଦଶା ଦେଖି ପ୍ରସିଆ ଓ ଅଷ୍ଟ୍ରିଆ ରାଜାଦ୍ୱୟ ବିଦ୍ରୋହ ଦମନ ପାଇଁ ଯଥେଷ୍ଟ ସୈନ୍ୟ ପଠାଇଥିଲେ, ମାତ୍ର ସେମାନେ ନିଜେ ପରାସ୍ତ ହେଲେ । ଲୁଇ ପୁଣି ପଳାଇ ଯିବାରେ ଧୃତ ଓ ବନ୍ଦୀ ହେଲେ । ତାଙ୍କର ବିଚାର ଆରମ୍ଭ ହେଲା । ସେ ପ୍ରଜାଙ୍କର ଅନିଷ୍ଟସାଧନ ପାଇଁ ଷଡ଼ଯନ୍ତ୍ର କରିଥିଲେ ବୋଲି ବିଚାରକମାନେ ତାଙ୍କୁ ବିନା ବିଚାରରେ ପ୍ରାଣଦଣ୍ଡାଜ୍ଞା ପ୍ରଦାନ କଲେ । ପ୍ରାସାଦରେ ଗିଲଟିନ ନାମକ ବଧଯନ୍ତ୍ରରେ ତାଙ୍କର ଶିର ବିଚ୍ୟୁତ ହେଲା । ତତ୍ପରେ ତାଙ୍କର ପତ୍ନୀ ମଧ୍ୟ ସେହି ଦୁର୍ଦ୍ଦଶା ଭୋଗ କଲେ । ଏହା ଉତ୍ତାରୁ ଅନେକ ସମ୍ଭ୍ରାନ୍ତ ଓ ରାଜପକ୍ଷୀୟ ବ୍ୟକ୍ତି ବଧଯନ୍ତ୍ରରେ ନିହତ ହେଲେ । ବିଦ୍ରୋହୀମାନଙ୍କ ମଧ୍ୟରେ ମତଭେଦ ହେବାରୁ ନାନାଦଳ ସଂଗଠିତ ହେଲା ଏବଂ ଅନେକ ମହାପ୍ରାଣୀ ବଧ ଦଣ୍ଡରେ ଦଣ୍ଡିତ ହେଲେ । ଫ୍ରାନ୍ସରେ ସାଧାରଣ ତନ୍ତ୍ର ଶାସନ ସ୍ଥାପିତ ହେବାର ଦେଖି ଇଉରୋପର ସମସ୍ତ ରାଜା ସମବେତ ଶକ୍ତିଦ୍ୱାରା ଫରାସୀମାନଙ୍କୁ ପରାଜିତ କରି ଲୁଇଙ୍କ ଭ୍ରାତାଙ୍କୁ ରାଜା କରାଇ-

ବାର ଉଦ୍ଦେଶ୍ୟରେ ଫ୍ରାନ୍ସକୁ ଚତୁର୍ଦ୍ଦିଗରୁ ଆକ୍ରମଣ କଲେ । ଏହି ସମୟରେ ମହାବୀର ନେପୋଲିଅନ୍ ବୋନାପାର୍ଟ ସେନାପତି ହୋଇ ସମସ୍ତଙ୍କୁ ପୁନଃ ପୁନଃ ପରାଜୟ କଲେ ଓ ସେମାନେ ବାଧ୍ୟ ହୋଇ ଫ୍ରାନ୍ସ ସଙ୍ଗେ ସନ୍ଧିବନ୍ଧନ କଲେ । ନେପୋଲିଅନ୍ ଯେପରି ବୀର ସେହିପରି ପଣ୍ଡିତ ଓ ରାଜନୀତିଜ୍ଞ ଥିଲେ । ଫ୍ରାନ୍ସବାସୀ ତାଙ୍କୁ ଫ୍ରାନ୍ସର ଶାସନରେ ନିଯୁକ୍ତ କଲେ ଏବଂ ଅଳ୍ପଦିନ ପରେ ତାଙ୍କୁ ସମ୍ରାଟ୍ ବୋଲି ଘୋଷଣା କଲେ । ତଦନନ୍ତର ଇଉରୋପର ରାଜନ୍ୟବର୍ଗ ବାରମ୍ବାର ଯୁଦ୍ଧକରି ପରାସ୍ତ ହେଲେ ଏବଂ ଶେଷରେ ନେପୋଲିଅନ୍ ଓଆଟରଲୁର ଯୁଦ୍ଧ କ୍ଷେତ୍ରରେ ପରାଜିତ ହେବାରୁ ସେ ମୃତ୍ୟୁପର୍ଯ୍ୟନ୍ତ ସେଣ୍ଟହେଲେନା ଦ୍ୱୀପରେ ବନ୍ଦୀ ହୋଇ ରହିଲେ । ତତ୍ପରେ ଷୋଡ଼ଶ ଲୁଇଙ୍କ ଦୁଇଭ୍ରାତା ଅଳ୍ପଦିନ ରାଜତ୍ୱ କଲେ । ଦେଶବାସୀ ଏଥିରେ ସନ୍ତୁଷ୍ଟ ନ ହୋଇ ଅନ୍ୟ ଏକ ବ୍ୟକ୍ତିଙ୍କୁ ସିଂହାସନ ଦାନ କଲେ । କେତେବର୍ଷ ପରେ ପୁଣି ରାଷ୍ଟ୍ରବିପ୍ଳବ ଉପସ୍ଥିତ ହୋଇ ସାଧାରଣତନ୍ତ୍ର ଶାସନ ସ୍ଥାପିତ ହେଲା । ଏଥିପରେ ନେପୋଲିଅନଙ୍କ ଭ୍ରାତୃଷ୍ପୁତ୍ର ଫ୍ରାନ୍ସର ସମ୍ରାଟ୍ ହେଲେ । ଏହାଙ୍କ ଶାସନ ପରେ ଫ୍ରାନ୍ସରେ ସାଧାରଣତନ୍ତ୍ର ଶାସନ ଦୃଢ଼ଭିତ୍ତିରେ ସ୍ଥାପିତ ହେଲା ।



## କେତେକ ସମ୍ରାଟଙ୍କର ନିଜ ସମ୍ପତ୍ତିର ଦୈନିକ ଆୟ

| | | |
|---|---|---|
| ରୁଷିଆ ସମ୍ରାଟ୍‌ଙ୍କର | ୫୦୦୦ | ପାଉଣ୍ଡ |
| ତୁର୍କି ସୁଲତାନଙ୍କର | ୩୭୦୦ | ,, |
| ଅଷ୍ଟ୍ରିୟା ସମ୍ରାଟ୍‌ଙ୍କର | ୨୦୦୦ | ,, |
| ଜର୍ମାନ ସମ୍ରାଟ୍‌ଙ୍କର | ୧୭୦୦ | ,, |
| ଇଟାଲୀ ରାଜାଙ୍କର | ୧୬୦୦ | ,, |
| ପଞ୍ଚମ ଜର୍ଜ୍ଜଙ୍କର | ୧୩୦୦ | ,, |
| ବେଲ୍‌ଜିଅମ୍ ମହାରାଜାଙ୍କର | ୧୩୦୦ | ,, |
| ଫ୍ରାନ୍ସ ସଭାପତିଙ୍କର | ୧୦୦୦ | ,, |
| ଇଉନାଇଟେଡ୍ ଷ୍ଟେଟ୍ସ ସଭାପତିଙ୍କର | ୨୫ | ,, |

( ଏକ ପାଉଣ୍ଡ = ଟ ୧୫ ଟଙ୍କା )

ଏବେ ଯେଉଁ ଦେଶ ସ୍ୱାଧୀନ ହୋଇଅଛି, ସେ ଦେଶରେ ଅଗ୍ନି ଲୁପ୍ତ ହୋଇଅଛି ।



## ପୁସ୍ତକାଦି ପ୍ରକାଶ ସଂଖ୍ୟା

୧୯୩୧ ଅକ୍ଟୋବର ଠାରୁ ୧୯୩୨ ସେପ୍ଟେମ୍ବର ପର୍ଯ୍ୟନ୍ତ ଗ୍ରେଟ ବ୍ରିଟେନରେ ୧୫୫୭୪ ଖଣ୍ଡ ବହି ଓ ଏହା ପୂର୍ବ ବର୍ଷ ୧୪୮୬୭ ଖଣ୍ଡ ପ୍ରକାଶିତ ହୋଇଥିଲା ।

୧୯୨୯-୩୦ ରେ ଭାରତରେ ଇଉରୋପୀୟ ଭାଷାରେ ୨୩୩୨ ଖଣ୍ଡ ବହି

ଭାରତୀୟ ଭାଷାରେ ୧୪୮୧୫ ,,

ଏହାଛଡ଼ା ବଙ୍ଗଳାରେ ଅନେକ କେତେଖଣ୍ଡ ବହି ପ୍ରକାଶିତ ହୋଇଥିଲା ୧୯୩୦-୩୧ ରେ ବଙ୍ଗଳାରେ ମୋଟ ପ୍ରକାଶିତ ପୁସ୍ତକ ସଂଖ୍ୟା-୫୩୨୪

ସେଥି ମଧ୍ୟରୁ ୩୯୦୩ ପୁସ୍ତକ ଓ ୧୧୨୧ ସାମୟିକ ପତ୍ରିକା । ପୁସ୍ତକ ମଧ୍ୟରୁ ମୌଳିକ ଲେଖା ୩୬୫୮ ଖଣ୍ଡ ଓ ଅବଶିଷ୍ଟ ପରବର୍ତ୍ତୀ ସଂସ୍କରଣ ।

| | | |
|---|---|---|
| ୧୯୨୯ ରେ | ,, | ୩୧୩୨ |
| | ପାଠ୍ୟପୁସ୍ତକ | ୧୧୭୭ |
| ୧୯୩୦ | ,, | ୧୬୫୭ |



## ଭାରତ ଓ ଭାରତ ବାହାରେ ପତ୍ର ପତ୍ରିକାର ହିସାବ

( ୧୯୨୯-୩୦ )

| | | | |
|---|---|---|---|
| ମାନ୍ଦ୍ରାଜ— | ୩୦୯, | ବମ୍ବେ— | ୩୧୪ |
| ବେଙ୍ଗଲ— | ୭୨୩, | ଯୁକ୍ତପ୍ରଦେଶ- | ୨୨୭ |
| ପଞ୍ଜାବ— | ୪୨୫, | ବର୍ମା— | ୧୬୧ |
| ବିହାରଓଡ଼ିଶା | ୧୩୭, | ମଧ୍ୟପ୍ରଦେଶ ଓ ବେରାର | ୫୫ |
| ଆସାମ— | ୪୩, | ଦିଲ୍ଲୀ— | ୮ |
| ସୀମାନ୍ତ ପ୍ରଦେଶ— | ୧୩, | | |
| ସର୍ବମୋଟ— | ୨୮୧୩ | | |

କାନାଡ଼ାର ଲୋକସଂଖ୍ୟା ଏକ କୋଟିରୁ କିଛି ବେଶୀ ମାତ୍ର ୧୯୩୦ ରେ ସର୍ବମୋଟ ୧୬୧୯ ଗୋଟି ପତ୍ରିକା ପ୍ରକାଶିତ ହୋଇଥିଲା ।

ଯୁକ୍ତ ସାମ୍ରାଜ୍ୟର ( ଆମେରିକା ) ୧୨ କୋଟି ୨୦ ଲକ୍ଷ ମାତ୍ର ୧୯୩୦ ରେ ପତ୍ର ପତ୍ରିକାର ସଂଖ୍ୟା ୨୦୨୨୪

୧୯୩୧ ରେ ୨୧୧୯୧

ଜାପାନରେ ୧୯୨୯ ରେ ୨୧୧୧୧ ପୁସ୍ତକ ଓ ୯୧୯୧ ପତ୍ର ପତ୍ରିକା । ଏଥିରୁ ଭାରତୀୟ ପତ୍ର ପତ୍ରିକା ଗୁଡ଼ିକ କିପରି ହୀନାବସ୍ଥା ହୀନ, ସହଜରେ ବୁଝି ହେବ ।



# ଆମେରିକା କୃଷି

କୃଷି ଯେ ଦେଶର ସର୍ବ ପ୍ରଧାନ ଜାତୀୟ ସମ୍ପଦ ଆମେରିକା ତାହା ଜାଣି ପାରିଛି । ସେଠା କୃଷିଜାତ ଦ୍ରବ୍ୟର ବ୍ୟବସାୟ ପ୍ରତିବର୍ଷ ୧୫ ହଜାର କୋଟି ଟଙ୍କାର ବୋଲି ଧରି ଯାଇଅଛି । ଏହା ସମୂହ ଜାତୀୟ ସମ୍ପଦର ଏକ ପଞ୍ଚମାଂଶ ଅଟେ । ଗତ ୨୦।୩୦ ବର୍ଷ ମଧ୍ୟରେ ଆମେରିକା ତାର କୃଷିର ଏପରି ଉନ୍ନତି କରିଅଛି । ପୂର୍ବରେ ସେଠାରେ ବର୍ଷକେ ଯେଉଁ ଶାକ ସବଜୀ ଥରେ ମାତ୍ର ହେଉଥିଲା ବର୍ତ୍ତମାନ ତାହା ବାରମାସ ଯାକ ଉତ୍ପନ୍ନ ହେଉଅଛି । ନାନାପ୍ରକାର ଶସ୍ୟ ପାଇଁ ସେଠାରେ ଚାଷ ଜମିର ଅଭାବ ନାହିଁ । ଦିନକୁ ଦିନ ଚାଷ ଜମିର ପରିମାଣ ବଢ଼ୁଛି । ଗୋଲଆଳୁ ଚାଷ ପୂର୍ବାପେକ୍ଷା ଶତକଡ଼ା ୧୩ ଭାଗ ବର୍ଦ୍ଧିତ ହୋଇଅଛି । ପିଆଜ ଚାଷ ୮ ହଜାର ଏକରରୁ ୯ ହଜାର ଏକର ହୋଇଅଛି ଏବଂ ବିଲାତି ବାଇଗଣ ଚାଷ ୨ ଲକ୍ଷ ଏକର ଭୂମି ପରିବର୍ତ୍ତେ ୪ ଲକ୍ଷ ୬୦ ହଜାର ଏକର ପରିମିତ ଭୂମିରେ ହେଉଅଛି । ଅନ୍ୟାନ୍ୟ ପ୍ରକାର କୃଷି ମଧ୍ୟ ଏହି ଅନୁସାରେ ବର୍ଦ୍ଧିତ ହୋଇଅଛି ।



# ଚୀନାମାନଙ୍କର ରୀତି ନୀତି

ଗୃହର କେହି ମରିଗଲେ ୧୦୦ ଦିନ ମଧ୍ୟରେ ସେହି ଗୃହରେ କେହି ବିବାହ କରନ୍ତି ନାହିଁ । କେହି ଏଥିର ଅନ୍ୟ ଆଚରଣ କଲେ ସେ ଦାମ୍ପତ୍ୟ ସୁଖରୁ ବଞ୍ଚିତ ହେବ ବୋଲି ସମସ୍ତଙ୍କର ବିଶ୍ୱାସ ।

ମୃତ ବ୍ୟକ୍ତିର ଶବ 'କଫିନ' ବା ଆବରଣ ମଧ୍ୟରେ ଗୃହରେ ଥିବା ସମୟରେ କେହି ବିବାହ କରି ବଧୂ ଆନୟନ କରିପାରେ । କଫିନ ଶ୍ମଶାନ ବା ସମାଧି ସ୍ଥାନକୁ ପ୍ରେରିତ ହେଲାରୁ ବିବାହ ନିମନ୍ତେ ୧୦୦ ଦିନ ପର୍ଯ୍ୟନ୍ତ ଅପେକ୍ଷା କରିବାକୁ ପଡ଼େ ।

ଚୀନଦେଶରେ କୌଣସି ପ୍ରବୀଣା କନ୍ୟାକୁ ପ୍ରଥମେ ଦେଖି ଆସିବା ପରେ ବିବାହ ସମ୍ବନ୍ଧ ସ୍ଥିର କରାଯାଏ । କୌଣସି ନବୀନା ଦେଖି ଗଲେ ତାହା ଅକଲ୍ୟାଣକର ବିବେଚିତ ହୋଇଥାଏ ।

କୌଣସି ପରିଣୀତା କନ୍ୟା ଶ୍ୱଶୁରାଳୟକୁ ଯିବା ସମୟରେ ଯଦି ତାହାର ପାଦୁକା ବା ଜୋତାର ଫିତା ମୋଡ଼ି ହୋଇଯାଏ, ତାହା ହେଲେ ସ୍ୱାମୀକୁଳର ଅଶୁଭ ହୁଏ ବୋଲି ଲୋକଙ୍କର ବିଶ୍ୱାସ ।

କନ୍ୟା ଶ୍ୱଶୁରାଳୟକୁ ଯିବାବେଳେ ତାହାର ପାଲିଙ୍କିର ପଶ୍ଚାତ୍‌ରେ ଚନା ଏବଂ ମାଂସର ପୁଟୁଳା ବାନ୍ଧି ଦିଆଯାଇ ଥାଏ । ଏପରି କରିବାର ଉଦ୍ଦେଶ୍ୟ ଏହି ଯେ ପିଶାଚବୃନ୍ଦ କେହି କନ୍ୟାର ଅନିଷ୍ଟ କରି ପାରିବେ ନାହିଁ ।

କନ୍ୟାର ବିବାହ ସମୟରେ କନ୍ୟାକୁ ଗୋଟାଏ ବୋଝରେ ବସାଇ ବସ୍ତ୍ରାଦି ପରିଧାନ କରି ଯାଇଥାଏ । ଏପରି କଲେ ସମସ୍ତ ଜୀବନରେ ତାହାର ସର୍ବାଙ୍ଗୀନ କୁଶଳ ହେବ ବୋଲି ଚୀନାମାନଙ୍କର ବିଶ୍ୱାସ ।

କନ୍ୟାର ବିବାହ ପରେ ୪ମାସ ପର୍ଯ୍ୟନ୍ତ ଯେଉଁ ଗୃହରେ କେହି ସନ୍ତାନ ପ୍ରସବ କରିଅଛି ବା ମରିଅଛି, ସେ ଗୃହରେ ଦମ୍ପତିର ପ୍ରବେଶ କରିବା ନିଷିଦ୍ଧ । ଅନ୍ୟଥା କଲେ ଦାମ୍ପତ୍ୟ ପ୍ରଣୟରେ ବ୍ୟାଘାତ ଜନ୍ମେ ଏବଂ ଆଜୀବନ ସେମାନେ ସୁଖୀ ହୋଇ ପାରନ୍ତି ନାହିଁ ବୋଲି ସେମାନଙ୍କର ବିଶ୍ୱାସ । କନ୍ୟାର ବିବାହ ପୂର୍ବ ରାତ୍ରିରେ, କନ୍ୟା ଜୀବଦ୍ଦଶା ପର୍ଯ୍ୟନ୍ତ ପିତା ମାତାଙ୍କ ସହିତ ଏକତ୍ର ବସି କେବଳ ଅର୍ଦ୍ଧଭୋଜନ କରି ଯାଏ।

କରଥାଏ । ବିବାହ ପରେ ସେ ଆଉ ପିତୃଗୃହକୁ ଆସିବା ନିଷିଦ୍ଧ, ଶ୍ୱଶୁରାଳୟକୁ ଯିବା ଦିନ ପିତ୍ରାଳୟରେ ଅର୍ଦ୍ଧଭୋଜନ କରି ଯାତ୍ରା କରିଥାଏ ।



## ବିଭିନ୍ନ ଦେଶର ରାଜପଥର ପଥିକ

ଲଣ୍ଡନ ସହରର ରୟେଲ ଏକ୍ସଚେଞ୍ଜ ହାଉସ ସମ୍ମୁଖସ୍ଥ ରାଜପଥରେ ପ୍ରତ୍ୟହ ୫୦ ହଜାର ଗାଡ଼ି ଏବଂ ୫ ଲକ୍ଷ ଲୋକ ଗମନାଗମନ କରିଥାନ୍ତି ।

ଲଣ୍ଡନର ପିକାଡେ଼ଲି-ସାର୍କସ ନାମକ ସ୍ଥାନର ରାଜପଥରେ ୧୨ ଘଣ୍ଟା ମଧ୍ୟରେ ୧୬ ହଜାର ୧ଶହ ୪୦ ଗାଡ଼ି ଏବଂ ୬୮ ହଜାର ୭ ଶହ ୪୦ ଜଣ ଲୋକ ଯିବା ଆସିବା କରନ୍ତି ।

ଜର୍ମାନୀର ରାଜଧାନୀ ବାର୍ଲିନ ନଗରର ଅନ୍ତର୍ଗତ ଫ୍ରେଡ଼ରିକଷ୍ଟ୍ରାସି ନାମକ ସ୍ଥାନରେ ପ୍ରତ୍ୟହ ୩ ଲକ୍ଷ ଲୋକ ଗମନାଗମନ କରନ୍ତି ।

ମାଦ୍ରିଦର ପୋର୍ଟୋ ଡେଲସୋଲ ନାମକ ସ୍ଥାନରେ ପ୍ରତିଦିନ ୩ ଲକ୍ଷ ୫୦ ହଜାର ଲୋକ ଗମନାଗମନ କରନ୍ତି ।

ଅଷ୍ଟ୍ରିୟାର ରାଜଧାନୀ ଭିଏନା ନଗରର ଗ୍ରାବେଲ ନାମକ ପଥରେ ପ୍ରତ୍ୟହ ୨ ଲକ୍ଷ ୭୫ ହଜାର ଲୋକ ଯାତାୟାତ କରନ୍ତି ।

ରୁଷ ରାଜଧାନୀ ପ୍ରେଟ୍ରୋଗ୍ରାଡ଼ର ନେଭେସ୍କି ନାମକ ରାଜପଥରେ ଘଣ୍ଟାରେ ୩ ଲକ୍ଷ ଲୋକ ଯିବା ଆସିବା କରନ୍ତି ।

ପାରିସର ପ୍ଲେସାଡେଏଲ ଅପେରା ରାଜପଥରେ ଅଭିନୟ ରଜନୀରେ ୭୩ ହଜାର ଗାଡ଼ି ଓ ୪ ଲକ୍ଷ ୫୦ ହଜାର ଲୋକର ସମାଗମ ହୁଏ ।

ଜାପାନର ରାଜଧାନୀ ଟୋକିଓ ନଗରର ଓ ଡୋ଼ରି ନାମକ ରାଜପଥରେ ପ୍ରତିଦିନ ୩ ଲକ୍ଷ ଲୋକ ଯିବା ଆସିବା କରନ୍ତି ।

ମାର୍କିନ ଦେଶର ଚିକାଗୋ ନଗରସ୍ଥ ଷ୍ଟେଟ୍ ଷ୍ଟ୍ରୀଟ୍ ପଥରେ ୪ ଲକ୍ଷ ଲୋକ ନିତ୍ୟ ଭ୍ରମଣ କରିଥାନ୍ତି ।

ନିଉୟର୍କର ବ୍ରାଡେ଼ୱେ ରାଜପଥରେ ନିତ୍ୟ ୫ ଲକ୍ଷଲୋକ ପର୍ଯ୍ୟଟନ କରିଥାନ୍ତି ।

୩ଲକ୍ଷ ୫୦ ହଜାର ଲୋକ ପ୍ରତ୍ୟହ କଲିକତାରେ ହାବଡ଼ା ସେତୁ ଅତିକ୍ରମ କରିଥାନ୍ତି ।



## ବିଭିନ୍ନ ଦେଶର ବିବାହ ସମ୍ବନ୍ଧରେ ବିଶ୍ୱାସ

ବିଲାତୀ ମହିଳାମାନଙ୍କ ମତରେ ସପ୍ତାହ ମଧ୍ୟରେ କେବଳ ଶୁକ୍ରବାର ବିବାହ ସକାଶେ ପ୍ରଶସ୍ତତର ।

ବିଲାତ ବାସୀମାନଙ୍କ ମତରେ ଜୁନ୍ ଏବଂ ଅକ୍ଟୋବର ଏହି ମାସଦ୍ୱୟ ବିବାହ ପକ୍ଷରେ ପ୍ରଶସ୍ତ । ଯଦି ଏହି ମାସଦ୍ୱୟ ମଧ୍ୟରେ ପୂର୍ଣ୍ଣିମା କିମ୍ବା ଗ୍ରହଣ ସମୟରେ ବିବାହ କାର୍ଯ୍ୟ ସମ୍ପନ୍ନ ହୁଏ, ତେବେ ( କାହାରି କାହାରି ମତରେ) ଉକ୍ତ ମିଳନ ବା ବିବାହର ଫଳ ନିଶ୍ଚୟ ଶୁଭ ହୋଇଥାଏ ।

ସ୍କଟଲାଣ୍ଡ ଦେଶରେ ବର୍ଷର ଶେଷ ଦିବସ ବିବାହ ପକ୍ଷରେ ପ୍ରଶସ୍ତ ବୋଲି ଧରାଯାଇଥାଏ । ଯେବେ ବିବାହ କୌଣସି ମାସର ପୂର୍ଣ୍ଣିମା ଦିନ ସମ୍ପାଦିତ ହୁଏ, ତେବେ ଦମ୍ପତି ଚିରକାଳ ସୁଖରେ କାଳକ୍ଷେପଣ କରିବେ ବୋଲି ବିଶ୍ୱାସ କରାଯାଇଥାଏ ।

ବିବାହ ପକ୍ଷରେ ବର ନିର୍ବାଚନ ମଧ୍ୟ ଅତିଶୟ ଲୋଡ଼ା । ଇଂଲଣ୍ଡ ଓ ସ୍କଟଲାଣ୍ଡର କୌଣସି କୌଣସି ଅଂଶର ଲୋକଙ୍କ ମତରେ ରବିବାର ଅତ୍ୟନ୍ତ ପ୍ରଶସ୍ତତର ବୋଲି ଅନୁମିତ ହୁଏ । ଯଦିବା କୌଣସି ଇଂରେଜ ଯୁବତୀ ଶୁକ୍ରବାରରେ ବିବାହ କରନ୍ତି ନାହିଁ, ତଥାପି ଫରାସୀ ଯୁବତୀ ମାସର ପ୍ରଥମ ଶୁକ୍ରବାରକୁ ବିବାହର ସର୍ବୋତ୍କୃଷ୍ଟ ଦିନ ବୋଲି ମନେ କରନ୍ତି ।

ଇୟର୍କସାୟାରରେ କୌଣସି ଯୁବତୀ ବିବାହ ପରେ ଧର୍ମମନ୍ଦିରରୁ ଯେତେବେଳେ ପିତୃଗୃହକୁ ପ୍ରତ୍ୟାଗମନ କରି ଗୃହର ପ୍ରାଙ୍ଗଣ ଅତିକ୍ରମ କରୁଥାଏ, ସେହି ସମୟରେ କୌଣସି ପୁରୁଷ ଲୋକ ଦ୍ୱିତଳ ଗୃହର କୌଣସି ଗବାକ୍ଷ ପଥରେ ପିଷ୍ଟକ ପରିପୂର୍ଣ୍ଣ ଗୋଟାଏ ପାତ୍ର ପ୍ରାଙ୍ଗଣକୁ ନିକ୍ଷେପ କରିଥାନ୍ତି । ଯଦି ପାତ୍ରଟି ଭଗ୍ନ ହୋଇଯାଏ; ତାହାହେଲେ ବିବାହ ତାହା ପକ୍ଷରେ ଶୁଭପ୍ରଦ ହେବ, ନୋହିଲେ ତାହାର ଅଦୃଷ୍ଟରେ କଷ୍ଟ ଅଛି ବୋଲି ବିଶ୍ୱାସ କରାଯାଇ ଥାଏ ।



ପ୍ରାଣୀଙ୍କ ଠାରେ ବନ୍ଧୁତ୍ୱ ।

## ବିଖ୍ୟାତଲୋକଙ୍କ ପୂର୍ବ ଜୀବନୀ

ଇଂଲଣ୍ଡର ସୁବିଖ୍ୟାତ ଉପନ୍ୟାସ ଲେଖକ ଓ କବି ସର୍ ୱାଲଟର ସ୍କଟ ବାଲ୍ୟକାଳରେ ବଡ଼ ନିର୍ବୋଧ ଥିଲେ । ତାଙ୍କ ମାତା କହୁଥିଲେ "ପୁଅଟା ନିତାନ୍ତ ଅମନନକ" ରଜଲା ସେରିଡ଼ାନଙ୍କ ମାତା ତାହାଙ୍କୁ ଅତି ସହଜ କଥା ବୁଝାଇବାକୁ ଅସମର୍ଥ ହୋଇ ଭାବୁଥିଲେ, ତାଙ୍କର ପୁଅର କିଛି ହେବ ନାହିଁ ମାତାଙ୍କ ମୃତ୍ୟୁ ପରେ ତାଙ୍କର ବୁଦ୍ଧି ବୃତ୍ତି ସୁବିକଶିତ ହୋଇଥିଲା ଏବଂ ଅବଶେଷରେ ସେ ଜଣେ ପ୍ରସିଦ୍ଧ ପଣ୍ଡିତ, ଦାର୍ଶନିକ, କବି, ରାଜନୀତିବିଦ୍ ଓ ବାଗ୍ମୀ ହୋଇଥିଲେ । ପରିହାସପଟୁତା ପାଇଁ ତାଙ୍କର ବିଶେଷ ଖ୍ୟାତି ଥିଲା । ଡବ୍‌ଲିନ୍ ବିଶ୍ୱବିଦ୍ୟାଳୟର ପରୀକ୍ଷାରେ ଉତ୍ତୀର୍ଣ୍ଣ ହୋଇ ପାଶ କରିଥିଲେ । ନିଉଟନ୍, ସେକ୍ସପିଅର, ଗୋଲ୍‌ଡସ୍ମିଥ, ମାଇକେଲ, ଏଞ୍ଜେଲୋ ପ୍ରଭୃତି ଜଗଦ୍‌ବିଖ୍ୟାତ ବ୍ୟକ୍ତିମାନେ ମଧ୍ୟ ବିଶ୍ୱବିଦ୍ୟାଳୟ ପରୀକ୍ଷାରେ ଅକୃତକାର୍ଯ୍ୟ ହୋଇଥିଲେ ।

ଟମ୍ ମୁର ଜଣେ ସୁବିଖ୍ୟାତ କବି । ଥରେ ତାଙ୍କର ମାତା ତାଙ୍କର କାନ ଧରି ଜଣେ ମୁଦିର ଦୋକାନକୁ ଟାଣି ଆଣି ସମସ୍ତଙ୍କ ଆଗରେ କହିଲେ "ଏ ଟୋକାଟା କିଛିମାତ୍ର ଶିଖି ପାରିଲା ନାହିଁ ।"

ଡିଉକ୍ ଅବ୍ ଓ୍ୟେଲିଂଟନ ପାଠାଭ୍ୟାସରେ ଅତ୍ୟନ୍ତ ଅମନୋଯୋଗୀ ଥିଲେ । ବାଲ୍ୟକାଳରେ ସେ ଆୟର୍ଲଣ୍ଡରେ ଅଧ୍ୟୟନ କରୁଥିଲେ । ସେ ସ୍କୁଲକୁ ଯାଇ ପ୍ରାୟ ସର୍ବଦା ଛୁରୀରେ ଡେକ୍ସ ପରେ ନିଜର ନାମ ଲେଖୁଥିଲେ ଏବଂ ସେଥିପାଇଁ ଶିକ୍ଷକମାନେ ତାଙ୍କୁ ତିରସ୍କାର କରୁଥିଲେ । ସେହି ଅମନୋଯୋଗୀ ବାଳକ ଅବଶେଷରେ ଅର୍ଦ୍ଧଜଗତର ଅଧୀଶ୍ୱର ନେପୋଲିଅନଙ୍କୁ ଯୁଦ୍ଧରେ ଜୟ କରି ଜଗଦ୍‌ବିଖ୍ୟାତ ହୋଇଥିଲେ ।

ଆୟର୍ଲାଣ୍ଡର ଏକ କଲେଜରେ ଏକ ବାଳକ ଅଧ୍ୟୟନ କରୁଥିଲେ । ସେଠା ଚୌକି, ମେଜ, ଆଲମାରି ପ୍ରଭୃତିରେ ନିଜ ନାମ ଅଙ୍କିତ କରି ରଖିବା ତାଙ୍କର ଗୋଟାଏ ରୋଗ ପରି ହୋଇଥିଲା । ଶିକ୍ଷାରେ ଅତିଶୟ ଅମନୋଯୋଗୀ ହେବାରୁ ସେ କୌଣସି କାର୍ଯ୍ୟକୁ ଉପଯୁକ୍ତ ହେବେ ନାହିଁ ବୋଲି ଜଣେ ଅଧ୍ୟାପକ ମତ ପ୍ରକାଶ କଲେ । ଉତ୍ତରରେ ସେ ବାଳକ କହିଥିଲେ "ମୁଁ ଆପଣଙ୍କ ଅପେକ୍ଷା ଶ୍ରେଷ୍ଠ ହେବି ।" ତାଙ୍କ ନାମ ରସେଲ । ଉତ୍ତରକାଳରେ ସେ ଇଂଲଣ୍ଡର ଲର୍ଡ ଚ୍ୟାନସେଲର ହୋଇଥିଲେ । ଲର୍ଡ ରସେଲ ଇଂଲଣ୍ଡର ବାରିଷ୍ଟରମାନଙ୍କ ମଧ୍ୟରେ ସର୍ବ ପ୍ରଧାନ ପଦ ପାଇଥିଲେ ।



## ଜଣପିଛା ବାର୍ଷିକ ଆୟ

| | | |
|---|---|---|
| (୧) | ଆମେରିକାର ଯୁକ୍ତରାଜ୍ୟରେ | ଟ ୧୭୨୭୯ |
| (୨) | କାନାଡ଼ାରେ | ଟ ୭୨୦୯ |
| (୩) | ଇଂଲଣ୍ଡରେ | ଟ ୬୩୦୧ |
| (୪) | ଜାପାନରେ | ଟ ୩୫୧୧ |
| (୫) | ଭାରତରେ (କର୍ଜନ ସାହେବଙ୍କ ମତରେ) | ଟ ୩୦୯ |
| ,, | (ଅଧ୍ୟାପକ ଫିଣ୍ଡଲେ ସିରାଜଙ୍କ ମତରେ) | ଟ ୧୧୨୯ |



## ନୋବେଲ ପୁରସ୍କାର

ସୁଇଡେନର ଉଦାରମନା ଆଲଫ୍ରେଡ଼ ବାର୍ଣ୍ଣହାର୍ଡ ନେବେଲ ଷ୍ଟକହୋମ୍ ନଗରୀରେ ୧୮୩୩ ମସିହା ଅକ୍‌ଟୋବର ମାସ ତା ୨୧ ରିଖରେ ଭୂମିଷ୍ଠ ହୋଇଥିଲେ । ସେ ଜୀବନରେ ରସାୟନିକ ଓ ଡିନାମାଇଟ୍ ପ୍ରଭୃତିର ଆବିଷ୍କାର କରି ଯଥେଷ୍ଟ ଖ୍ୟାତି ସହିତ ବିପୁଳ ଅର୍ଥ ଉପାର୍ଜନ କରିଥିଲେ । ସେ ନିଜ ଦେଶରେ ବାରୁଦ ଗନ୍ଧକ ପ୍ରଭୃତି ଉଚ୍ଚତର ଜ୍ୱଳନଶୀଳ ଦ୍ରବ୍ୟ ସବୁର ଯାହାକୁ ଇଂରାଜୀରେ (Explosives.) କହନ୍ତି— ସୂକ୍ଷ୍ମ ଗବେଷଣା କରିଥିଲେ ମଧ୍ୟ ଦେଖିଥିଲେ ଯେ ଯଦି ନାଇଟ୍ରୋଗ୍ଲିସେରିନକୁ କିସେଲଗୁଟର ( Kieselguteur. ) ପ୍ରଭୃତି କୌଣସି ଶୋଷକ ପଦାର୍ଥ ସହିତ ମିଶାଇ ଦିଆଯାଏ ତାହାହେଲେ ତାହା ବ୍ୟବହାରୋପଯୋଗୀ ହୋଇ ଯାଇବ— ଏହି ସିଦ୍ଧାନ୍ତରେ ଉପନୀତ ହୋଇ ଏହି ମିଶ୍ରଣକୁ ୧୮୬୭ ଖ୍ରୀଷ୍ଟାବ୍ଦରେ ଡିନାମାଇଟ୍ ( Dinamite ) ନାମ ଦେଇ

ପରୀକ୍ଷିତ କରିଥିଲେ । ଏହି ଡିନାମାଇଟ୍‌ର ସର୍ବ ସ୍ୱତ୍ୱ ତାଙ୍କ ଦ୍ୱାରା ରକ୍ଷିତ ହୋଇଥିଲା-ଆହୁରି ମଧ୍ୟ ସେ ନାଇଟ୍ରୋଗ୍ଲି-ସେରିନ୍ ଏବଂ ଗନ୍‌କଟନ୍ ନାମକ ଗୋଟିଏ ଜ୍ୱଳନକ୍ଷମ ଦ୍ରବ୍ୟ ମିଶାଇ ଗିଲେଟାଇନ୍ ପ୍ରସ୍ତୁତ କରିଥିଲେ, ଯାହାକି ଡିନାମାଇଟ ଅପେକ୍ଷା ଗୁଣରେ ଅଧିକ ମାରାତ୍ମକ । ତାହା ଛଡ଼ା ବାଲିଷ୍ଟାଇଟ ନାମକ ଜ୍ୱଳନ ଓ ମାରଣଶୀଳ ଦ୍ରବ୍ୟ ତାଙ୍କ ଦ୍ୱାରା ଉଦ୍ଭାବିତ ହୋଇଥିଲା ।

ଏହିପରି ବିସ୍ଫୋରକ ଓ ଜ୍ୱଳନଶୀଳ ଯୁଦ୍ଧୋପକରଣର ଉଦ୍ଭାବନ ଦ୍ୱାରା ନୋବେଲ ଯଥେଷ୍ଟ ଅର୍ଥ ଉପାର୍ଜନ କରିଥିଲେ ଅର୍ଥାଗମର ସୁବିଧା ସଙ୍ଗେ ସଙ୍ଗେ ନୋବେଲ ରସାୟନିକ ଜଗତରେ ଏହି ସମୟରେ ବିପୁଳ ଖ୍ୟାତି ଲାଭ କରିଥିଲେ । ଦାନବୀର ନୋବେଲ ତାଙ୍କ ଶେଷ ଜୀବନରେ ତାଙ୍କର ଅର୍ଜିତ ସଞ୍ଚିତ ଧନକୁ ନିଜର ଉତ୍ତରାଧିକାରୀମାନଙ୍କ ହସ୍ତରେ ଅର୍ପଣ ନ କରି ବିଶ୍ୱମାନବର ଉନ୍ନତିକଳ୍ପେ କେତେ ଜଣ ଟ୍ରଷ୍ଟିଙ୍କ ହସ୍ତରେ ଅର୍ପଣ କରି ଗୋଟିଏ ଉଇଲ କରିଦେଲେ-ସେହି ଅର୍ଥର ପରିମାଣ ଟ ୨,୬୨,୫୦,୦୦୦ ( ଦୁଇ କୋଟି ବାଷଠି ଲକ୍ଷ ପଚାଶ ହଜାର ଟଙ୍କା ) [ ଉଇଲର ମର୍ମ ଏହି ] ପ୍ରତିବର୍ଷ ମାନବଚେଷ୍ଟାର ନାନା ବିଭାଗରେ ବିଶ୍ୱମାନବର କଲ୍ୟାଣ ନିମିତ୍ତ ଯେଉଁମାନଙ୍କର କାର୍ଯ୍ୟ ସର୍ବଶ୍ରେଷ୍ଠ ହେବ, ସେମାନଙ୍କ ମଧ୍ୟରେ ଏହି ଅର୍ଥର ଆୟ ସମାନ ଭାଗରେ ବିଭକ୍ତ କରି ଦେବାକୁ ହେବ । ପୁରସ୍କାରଟି ପାଞ୍ଚଭାଗରେ ବିଭକ୍ତ । ପାଞ୍ଚଗୋଟି ବିଭିନ୍ନ କର୍ମ ବିଭାଗର କର୍ମୀଙ୍କୁ ପାଞ୍ଚଗୋଟି ପୁରସ୍କାର ଦିଆଯାଇଥାଏ ଯଥା :—

(୧) ପଦାର୍ଥ ବିଜ୍ଞାନ (Physics)
(୨) ରସାୟନ ଶାସ୍ତ୍ର (Chemistry)
(୩) ଚିକିତ୍ସାବିଦ୍ୟା ଓ ଶାରୀରତତ୍ତ୍ୱ ବିଦ୍ୟା (Medical Science and Physiology.)
(୪) ସାହିତ୍ୟ
(୫) ଜଗତରେ ଯୁଦ୍ଧବିଗ୍ରହ ଓ ଶାନ୍ତି ପ୍ରତିଷ୍ଠା (ଏହି ବିଷୟରେ କୌଣସି ବ୍ୟକ୍ତି ବିଶେଷ କିମ୍ବା ସମାଜ ବିଶେଷର ଦାବୀ ରହିପାରେ )

କୌଣସି କୌଣସି ସମୟରେ ଦୁଇଜଣ ବ୍ୟକ୍ତି ସମ-ଭାବରେ ପୁରସ୍କାର ଯୋଗ୍ୟ ବିବେଚିତ ହେଲେ ଏହି ପୁରସ୍କାର ଦୁଇଜଣଙ୍କୁ ଦିଆ ଯାଇଥାଏ-ଗୋଟିଏ ଗୋଟିଏ ପୁରସ୍କାରର ମୂଲ୍ୟ ପ୍ରାୟ ଟ ୧,୧୦,୦୦୦ ( ଏକ ଲକ୍ଷ କୋଡ଼ିଏ ହଜାର ଟଙ୍କା )

ଏହି ପୁରସ୍କାର ପାଇଁ ସ୍ତ୍ରୀ ପୁରୁଷ ଜାତି ବର୍ଣ୍ଣ ନିର୍ବିଶେଷରେ ବିବେଚିତ ହୋଇ ପାରିବେ । ସମଗ୍ର ପୃଥିବୀରେ ଏହି ନୋବେଲ ପୁରସ୍କାର ଲାଭ ଅସାମାନ୍ୟତା ଲାଭର ନାମାନ୍ତର ବୋଲି ବିବେଚିତ ହୁଏ ।

୧୮୯୬ ମସିହା ଡିସେମ୍ବର ମାସ ୧୦ ତାରିଖରେ ବିଜ୍ଞାନୀ କର୍ମୀ ନୋବେଲ ଇହଲୀଳା ସାଙ୍ଗ କରିଥିଲେ ।

ସାହିତ୍ୟ ବିଭାଗର ପୁରସ୍କାର ନିମିତ୍ତ ବିଷୟ ହେଉଛି The most remarkable literary work ( dans le sens d'idealisme ) ଏହି ବିଭାଗର ପୁରସ୍କାର ଲାଭର ଗୋଟିଏ ନିୟମ ଏହି ଯେ ଯେଉଁ ପୁସ୍ତକ ଏହି ପୁରସ୍କାର ପାଇବାକୁ ଉପଯୁକ୍ତ ବିବେଚିତ ହେବ, ତାହା ପୃଥିବୀର ଯେ କୌଣସି ଭାଷାରେ ଲେଖା ହେଉ ଆପତ୍ତି ନାହିଁ, କିନ୍ତୁ ତାହାର ଅନ୍ତତଃ ଗୋଟିଏ ଇଉରୋପୀୟ ଭାଷାରେ ଅନୁବାଦ ଥିବା ପ୍ରୟୋଜନ । ସୁଇଡେନର "Academy of Literature" ବା ସାହିତ୍ୟ ପରିଷଦ ଉପରେ ସାହିତ୍ୟ ପାଇଁ ଏହି ପୁରସ୍କାର ପ୍ରଦାନର ବିଗ୍ଭର ଭାର ନ୍ୟସ୍ତ ଅଛି ।

ସ୍ୱ ୧୯୦୧ ଖ୍ରୀଷ୍ଟାବ୍ଦରୁ ଅର୍ଥାତ୍ ନୋବେଲଙ୍କ ପରଲୋକଗମନର ପ୍ରାୟ ପାଞ୍ଚବର୍ଷ ପରେ ଏହି ପୁରସ୍କାରଦାନର ଆରମ୍ଭ ହୋଇଅଛି ।

ନିମ୍ନରେ ଯଥାକ୍ରମେ ସାହିତ୍ୟ ପାଇଁ ନୋବେଲ ପୁରସ୍କାର ଲାଭ କରିଥିବା ସାହିତ୍ୟରଥୀମାନଙ୍କର ବିଷୟ ସଙ୍କ୍ଷେପରେ ବିବୃତ ହେଲା ।

୧୯୦୧—ସଲି ପ୍ରୁଧୋମ ( Suley prudhomme ) ଫରାସୀଙ୍କର ସେ ତାଙ୍କର ସୁବିଖ୍ୟାତ କାବ୍ୟଗ୍ରନ୍ଥ "Stumset poems" ପାଇଁ ଏହି ପୁରସ୍କାର ଲାଭ କରିଥିଲେ ।

ଜନ୍ମ—୧୮୩୯ । ମୃତ୍ୟୁ—୧୯୦୭

୧୯୦୨—ଥିଓଡର ( Theodore Mommsen ) ରୋମ ସାମ୍ରାଜ୍ୟର ଇତିହାସ ଲେଖିଥିଲେ ଏହି ପୁରସ୍କାର ପାଇଥିଲେ ।

ଜନ୍ମ—୧୮୧୭ । ମୃତ୍ୟୁ—୧୯୦୩

୧୯୦୩—ବ୍ୟୋର୍ଣ୍ଣଷ୍ଟର୍ଣ୍ଣ ବ୍ୟୋର୍ଣ୍ଣସନ୍ ( Biohrnstrne Biohrnson ) ନରୱେର ସର୍ବଶ୍ରେଷ୍ଠ କବି—କ୍ଷୁଦ୍ର ଗଳ୍ପ ଲେଖିବାରେ କୃତତ୍ୱ ପାଇଁ ସେ ଏହି ପୁରସ୍କାର ପାଇଥିଲେ ।

ଜନ୍ମ—୧୮୩୨ । ମୃତ୍ୟୁ—୧୯୧୩

୧୯୦୪—(୧) ଫ୍ରେଡ଼ରିକ ମିଷ୍ଟ୍ରାଲ (Frederic Mistral)
(୨) ଜୋସେ ଏଚେଗ୍ୟାରେ ( Jose Echegaray )
(୧) ଫ୍ରେଡ଼ରିକ ମିଷ୍ଟ୍ରାଲଙ୍କ ଜନ୍ମଭୂମି ଫ୍ରାନ୍ସଅନ୍ତର୍ଗତ ପ୍ରଭେନ୍ସ ( Provence ) ପ୍ରଭେନ୍ସର ପ୍ରାଦେଶିକ ଭାଷାରେ ଖଣ୍ଡିଏ କାବ୍ୟ ଲେଖି ଏହି ପୁରସ୍କାର ପାଇଥିଲେ ।

ଜନ୍ମ—୧୮୩୦

(୨) ଜୋସେ ଏଚେଗ୍ୟାରେ ଊନବିଂଶ ଶତାବ୍ଦୀର ସର୍ବଶ୍ରେଷ୍ଠ ନାଟ୍ୟକାର ।

ଜନ୍ମ—୧୮୩୨

୧୯୦୫—ହେନରିକ ସିଙ୍କିଭିଚ୍ (Henryk Sinkiewicz) ପୃଥିବୀ ବିଖ୍ୟାତ ଉପନ୍ୟାସ 'କ୍ୱୋ ଭାଡସ' (Quo Vadis ) ରଚନା କରି ଏହାର ଅଧିକାରୀ ହୋଇଥିଲେ ।

ଜନ୍ମ—୧୮୪୬

୧୯୦୬—ଗିଓସୁଏ କାର୍ଦୁଚି ( Giosue Carducci ) ଇଟାଲୀୟ ଭାଷାରେ 'ସୟୁତାନ୍' ନାମଧେୟ କବିତା ଲେଖି ପୁରସ୍କାର ସହିତ ଯଥେଷ୍ଟ ଖ୍ୟାତି ଅର୍ଜନ କରିଥିଲେ ।

ଜନ୍ମ—୧୮୩୬ । ମୃତ୍ୟୁ—୧୯୦୭

୧୯୦୭—ରୁଡ୍ୟାର୍ଡ କିପ୍‌ଲିଙ୍ଗ ( Rudyard Kipling ) ( British Imperialism ) ବ୍ରିଟିଶ ସାମ୍ରାଜ୍ୟବାଦ ବିଷୟରେ ଲେଖି ସେ ଏହାର ଅଧିକାରୀ ହୋଇଥିଲେ ।

୧୯୦୮—ରୁଡ୍‌ଲଫ୍ ଅୟୁକେନ୍ ( Rudolph Eucken ) ଜର୍ମାନଦାର୍ଶନିକ । ଅୟୁକେନ୍ ଦର୍ଶନ ଶାସ୍ତ୍ରରେ ପ୍ରଭୂତ ଗବେଷଣା କରି ଚିନ୍ତାରାଜ୍ୟରେ ଅଦ୍ଭୁତ ଆଦର୍ଶ ଅନୁସନ୍ଧାନ କରିଥିଲେ ।

୧୯୦୯—ସେଲମା ଲେଗାରଲଫ୍ ( Selma Legerlof ) ସୁଇଡେନ୍‌ର ମହିଳା ଉପନ୍ୟାସ ଲେଖିକା ।

ଜନ୍ମ—୧୮୫୮

୧୯୧୦—ପଲ୍ ହେୟୁସି ( Paul Heyse ) ଜଣେ ଜର୍ମାନ୍ ଔପନ୍ୟାସିକ। ସେ ଜର୍ମାନ୍‌ଭାଷାରେ କ୍ଷୁଦ୍ର ଗଳ୍ପ ଲେଖି ନୋବେଲ ପ୍ରାଇଜ୍ ଲାଭ କରିଥିଲେ ।

୧୯୧୧—ମରିସ୍ ମେଟରଲିଙ୍କ ( Maurice Maeterlink ) ଜାତିରେ ବେଲ୍‌ଜିୟାନ୍; ନାଟ୍ୟକାର ଓ ଦାର୍ଶନିକ ।

ଜନ୍ମ—୧୮୬୨

୧୯୧୨—ଜେରହାର୍ଟ ହପ୍ଟମ୍ୟାନ (Gerhart Hanptmeu) ଆଧୁନିକ ଜର୍ମାନୀର ଶ୍ରେଷ୍ଠ ନାଟ୍ୟକାର ।

୧୯୧୩—ରବୀନ୍ଦ୍ରନାଥ ଠାକୁର ( Rabindra Nath Tagore ) ବଙ୍ଗଳା କାବ୍ୟ, ଉପନ୍ୟାସ, ନାଟକ ଓ ଗଳ୍ପ ଲେଖକ । ଭାବଗର୍ଭିକ କବିତାମାଳା "ଗୀତାଞ୍ଜଳି" ଓ ଅନ୍ୟାନ୍ୟ କେତେକ ଖଣ୍ଡ କବିତାର ଇଂରାଜୀ ଅନୁବାଦ ବଳରେ ସେ ନୋବେଲ ପ୍ରାଇଜ୍ ଲାଭ କରିଥିଲେ ।

୧୯୧୪ ଠାରୁ ୧୯୩୦ ପର୍ଯ୍ୟନ୍ତ ଭାରତରୁ ଅନ୍ୟ କେହି ସେପରି ସର୍ବଶ୍ରେଷ୍ଠ ସମ୍ମାନ ଲାଭ କରି ନାହାନ୍ତି । ପୁଣି ୧୯୩୧ ରେ ମାନ୍ଦ୍ରାଜ ଇଉନିଭରସିଟିର ପ୍ରଫେସର ଭେଙ୍କଟ ରମଣ ଡିଙ୍କରେ ପାଶ୍ଚାତ୍ୟ ଜଗତରୁ ବର ମାଳା ପାଇଲେ ।



# ପୃଥିବୀର ସୁନା ହିସାବ

୧୯୩୧ ସାଲ ଶେଷ ବେଳକୁ ପୃଥିବୀରେ କେତେ ସୁନା ମହଜୁଦ୍ ଥିଲା, ତାହାର ଗୋଟିଏ ହିସାବ ଅନ୍ତର୍ଜାତିକ ସଙ୍ଘ ପକ୍ଷରୁ ପ୍ରକାଶିତ ହୋଇଅଛି ।

୧୯୩୧ ଶେଷବେଳକୁ ପୃଥିବୀର ବଡ଼ବଡ଼ ଦେଶରେ ୧୫୬୩ କୋଟି ଡଲାର ସୁନା ଗଚ୍ଛିତ ଥିଲା । ଏଥି ମଧ୍ୟରୁ କେଉଁ ଦେଶରେ କେତେ ସୁନା ଥିଲା ତହିଁର ହିସାବ ନିମ୍ନରେ ପ୍ରଦତ୍ତ ହେଲା ।

| | | | |
|---|---|---|---|
| ଇଉରୋପ | ୩୧୮ | କୋଟି | ଡଲାର |
| ଫ୍ରାନସ୍ | ୨୭୮ | ,, | ,, |
| ବ୍ରିଟିଶ ସାମ୍ରାଜ୍ୟ | ୫୯ | ,, | ,, |
| ଆଫ୍ରିକା | ୭ | ,, | ,, |
| ଉତ୍ତର ଆମେରିକା | ୪୧୯ | ,, | ,, |
| ଯୁକ୍ତପ୍ରଦେଶ | ୪୦୫ | ,, | ,, |
| ଦକ୍ଷିଣ ଆମେରିକା | ୩୫ | ,, | ,, |
| ଏସିଆ | ୪୫ | ,, | ,, |
| ଅଷ୍ଟ୍ରେଲିଆ | ୫ | ,, | ,, |
| ନିଉଜିଲାଣ୍ଡ | ୨ | ,, | ,, |

( ଏକ ଡଲାର= ୨ ୩/ )

## ପୃଥିବୀରେ ଶ୍ରେଷ୍ଠତମ ଲେଖକଙ୍କର ଆୟ

ଉଏଲସ ଓ ଶ (H. G. Wells and Bernard shaw) ବିଳାତର ୨ଜଣ ବିଶିଷ୍ଟ ଲେଖକ । ତାଙ୍କର ବହି ଲେଖାରୁ ଆୟ ୧୦ ଲକ୍ଷ ବର୍ଷକୁ ପ୍ରାୟ ଟଙ୍କା ହେବ ।

## ବିଳାତ ଚିତ୍ର

ବିଳାତ ବା ଲଣ୍ଡନ ପୃଥିବୀରେ ବୃହତ୍ତମ ନଗରୀ । ଧନ ଦୌଲତ ଓ ଜନସଂଖ୍ୟାରେ ଏହା ଅନ୍ୟ ସହରମାନଙ୍କୁ ପରାଜୟ କରିଅଛି । ସମୁଦ୍ରରୁ ପ୍ରାୟ ୬୦ ମାଇଲ ଦୂର ଟେମସ୍ ନଦୀର ଦୁଇ ପାଖରେ ପ୍ରାୟ ୧୮ ମାଇଲ ଲମ୍ବରେ ଏହି ସହର ବିଦ୍ୟମାନ । ଲଣ୍ଡନର କ୍ଷେତ୍ରଫଳ ୭୧୯ ବର୍ଗମାଇଲ ଓ ଜନସଂଖ୍ୟା ପ୍ରାୟ ୮୦ ଲକ୍ଷ ଅର୍ଥାତ୍ ୭ଟା କଲିକତା ମିଶିଲେ ବା ଦେଢ଼ ଶହ କଟକ ମିଶିଲେ ଏହାର ଲୋକସଂଖ୍ୟା ସହିତ ସମାନ ହେବ । ସେଠା ସମସ୍ତ ଧନ ସମ୍ପତ୍ତିର ମୂଲ୍ୟ ପ୍ରାୟ ଆଠହଜାର କୋଟି ଟଙ୍କା ଅର୍ଥାତ୍ ପ୍ରତ୍ୟେକ ଲୋକ ଦଶ ହଜାର ଟଙ୍କା ସମ୍ପତ୍ତିର ମାଲିକ । ଏ ଦେଶର ବାର୍ଷିକ ଆୟ ପ୍ରାୟ ଏଗାରଶହ କୋଟି ଟଙ୍କା ।

ଲଣ୍ଡନଟି ତିନଭାଗରେ ବିଭକ୍ତ, ଯଥା :—ସିଟି, ପଶ୍ଚିମ ଲଣ୍ଡନ ଓ ପୂର୍ବ ଲଣ୍ଡନ । ବ୍ୟାଙ୍କ ଅଫ୍ ଇଂଲଣ୍ଡ, ରଏଲ ଏକ୍ସଚେଞ୍ଜ, ଅନ୍ୟାନ୍ୟ ବ୍ୟାଙ୍କ ଓ ବେପାରୀ ମହାଜନଙ୍କ ଅଫିସ ଯେଉଁ ଏରିଆ (Area) ରେ ଅଛି ତାହାକୁ ସିଟି କହନ୍ତି ପୂର୍ବେ ଏହି ସ୍ଥାନଟି ଲଣ୍ଡନ ସହର ଥିଲା । ଏଠାରେ ଦୋକାନ ପାଟ ନାହିଁ ।

ପଶ୍ଚିମ ଲଣ୍ଡନରେ ବଡ଼ ବଡ଼ ହୋଟେଲ, ରେସ୍ତୋରାଁ, ସିନେମା ଥିଏଟର, କ୍ଲବ୍, ନାଚଖାନା, ନାଇଟ୍ କ୍ଲବ୍, ବଜାର, ଦୋକାନ ସବୁ ଅଛି । ଏଠାରେ ଜିନିଷର ମୂଲ୍ୟ ଟିକିଏ ବେଶୀ ।

ପୂର୍ବ ଲଣ୍ଡନର ବାସିନ୍ଦାମାନେ ଭାରି ଗରିବ । ଏଠା ବଜାରରେ ଖାଇବା ପିନ୍ଧିବାର ପୁରୁଣା ଜିନିଷମାନ ଛଡ଼ା ଅଉ କିଛି ମିଳେ ନାହିଁ । ଘର ସବୁ ପୁରୁଣା ଧରଣର ।

ଏହା ଛଡ଼ା ଅନ୍ୟ ଜାଗାମାନ ଅଛି । ସେଠାରେ ବାସୋପଯୋଗୀ ଘରଗୁଡିକ ଅବସ୍ଥିତ । ସେମାନ ବୃହତ୍ତର ଲଣ୍ଡନର ଅନ୍ତର୍ଗତ ।

ଲଣ୍ଡନ ସହରଟି ଏପରି ପରିଷ୍କାର ଓ ପରିଚ୍ଛନ୍ନ ଯେ, ଇଚ୍ଛାକଲେ, ଭାତ କୁଡ଼ାଇ ଖାଇ ପାରିବ । ଜୋତାରେ ପଲିସ୍ ଲଗାଇ ୧୦ ମାଇଲ ବାଟ ବୁଲିଆସିଲେ ସୁଦ୍ଧା ସେଥିରେ ଧୂଳି ଲାଗିବ ନାହିଁ । ଏଠାରେ ଲୋକେ ଭଲ ବେପାର ଜାଣନ୍ତି । ସେଠା ଉଲ୍ ଉଆର୍ଥ ଦୋକାନରେ ସବୁ ଜିନିଷ ଶସ୍ତା ଏବଂ ସେଲଫରିଜ୍ ଦୋକାନରେ ବାପ ମା ଛଡ଼ା ସବୁ ମିଳେ । ଦୋକାନ ଉପର ଛାତରେ ଏକ ଫୁଲ ବଗିଚା ଅଛି । କେବଳ ତାହା ଦେଖିବାକୁ ଯାଇ ଅନେକ ଲୋକ ଅନେକ ଜିନିଷ କିଣନ୍ତି । ସେଥିରେ ବିକେତା ପ୍ରାୟ ଦୁଇ ହଜାର ସ୍ତ୍ରୀ ହେବେ । ସେଲଫ୍ରିଜ୍ ଭଳି ବଡ଼ ବଡ଼ ଦୋକାନମାନଙ୍କରେ ପର୍ବ ପର୍ବାଣୀ ସମୟରେ ଦୈନିକ ବିକ୍ରୀ ପ୍ରାୟ କୋଟିଏ ଟଙ୍କା ହୋଇଥାଏ । କ୍ରେତାଙ୍କ ମଧ୍ୟରୁ ଶତକଡ଼ା ପ୍ରାୟ ୮୫ ମାଇପେ, ୧୦ ପିଲା ଓ ବାକୀ ଟିକେ ମର୍ଦ୍ଦ । ସେଠା ଦୋକାନୀମାନେ ବଡ଼ ସଚ୍ଚୋଟ କାରବାର କରନ୍ତି । ଦୋକାନରେ ଦୋକାନୀ ନ ଥିଲେ ସୁଦ୍ଧା କ୍ରେତା ପଇସା ରଖିଦେଇ ଜିନିଷ କିଣି ନିଅନ୍ତି । ଅଳ୍ପରୁ ସେଠି କଳ ବସି ଜିନିଷପତ୍ର ବିକ୍ରିକରେ । ସେ କିଛି ନ କହିଲେ ସୁଦ୍ଧା କେହି ତାକୁ ଭୁଲାଇ ପାରେ ନାହିଁ । ଦୋକାନୀ ଶୋଇ ପଡ଼ିବା ବେଳେ ଏବଂ ରବିବାର ଦିନ ଯେତେବେଳେ ସବୁ ଦୋକାନ ବନ୍ଦ ଥାଏ, ଯନ୍ତ୍ର ଦୋକାନ ଖୋଲା ଥାଏ । ଏଠି ପୋଷାକ ପରିଚ୍ଛଦ ଦୋକାନ ସବୁଠାରୁ ଅଧିକ । ସେଠା ଗୋଟେ ଗୋଟେ ଦୋକାନରେ ଦୁଇହଜାର ଅଢ଼େଇ ହଜାର ବିକିବା ଲୋକ ଅଛନ୍ତି ।

ଲଣ୍ଡନରେ ସୂର୍ଯ୍ୟ ଖୁବ୍ ଅଳ୍ପ ଅଳ୍ପ ଦିଅନ୍ତି ଏବଂ ଏଠା ଲୋକଙ୍କର କୌଣସି ଋତୁଜ୍ଞାନ ନାହିଁ । ଏଠି ସବୁଦିନେ ବର୍ଷା ହୁଏ । ମାଞ୍ଚେଷ୍ଟର, ବର୍ମିଂହାମ, ଏଡିନବରା, ଗ୍ଲାସଗୋ ଆଦି ଉତ୍ତରାଞ୍ଚଳରେ ଶୀତଋତୁର କମାସ ମଧ୍ୟରେ ଦିନେ କେହି ଦିନରେ ସୂର୍ଯ୍ୟଙ୍କୁ ଓ ରାତିରେ ଚନ୍ଦ୍ର ତାରା ପ୍ରଭୃତିଙ୍କୁ ଦେଖି ପାରନ୍ତି ନାହିଁ । ଏଠାରେ ସୂର୍ଯ୍ୟୋଦୟ ଓ ସୂର୍ଯ୍ୟାସ୍ତ ଉପରେ ଦିନର ସୀମା ନିର୍ଭର ନ କରି ଘଣ୍ଟା ଉପରେ ନିର୍ଭର କରେ ।

ଲଣ୍ଡନର ଜମିଯାକ ନିଷ୍କର ବାହେଲା ଓ ତାହା ଅଳ୍ପ କେତେଜଣ ଲର୍ଡଙ୍କ ହାତରେ । ଲୋକେ ସେମାନଙ୍କ ଠାରୁ କେତେ ବର୍ଷ ପାଇଁ ପଟ୍ଟା ପ୍ରଭୃତି କରି ନେଇ ଗୃହ ନିବାସ କରନ୍ତି, ମାତ୍ର ସେଥିରେ ସେମାନଙ୍କର ଆଦୌ ସ୍ୱତ୍ୱ ହୁଏ ନାହିଁ । ପୁଣି କଳ କାରଖାନାମାନ ଅତ୍ୟନ୍ତ କମ୍ ଲୋକଙ୍କ ହାତରେ । ଏଣୁ ମାଲିକ୍ ଅତି କମ୍ ଓ ଅଧୀନସ୍ଥ ଲୋକ ବହୁତ ବେଶୀ ଅର୍ଥାତ୍ ପ୍ରାୟ ଶତକଡ଼ା ୯୦ ଜଣ ଅନ୍ୟ ଦଶଜଣଙ୍କର ଅଧୀନସ୍ଥ ।

ଏଠାରେ ଜଳ, ସ୍ଥଳ, ଆକାଶ ଓ ପାତାଳ ଚାରିପ୍ରକାର ଯାନର ପ୍ରଚଳନ ଅଛି । ମଟର ସଂଖ୍ୟା ପ୍ରାୟ ୩୫ ଲକ୍ଷ ଏବଂ ଏକା ଜେନେରାଲ ମଟର କମ୍ପାନୀର ଦଶହଜାର ଖଣ୍ଡ ମଟର ଅଛି । ପୁଣି ଦରମାନିଆ ମଟର ଡ୍ରାଇଭରଙ୍କ ସଂଖ୍ୟା ପ୍ରାୟ ଅଢ଼େଇ ଲକ୍ଷରୁ କମ୍ ନୁହେଁ ଏବଂ ପ୍ରତିଦିନ ହାରାହାରି ପ୍ରାୟ ୧୦ ଜଣ ନିରୀହଲୋକ ନିହତ ଓ ପ୍ରାୟ ୨ ଶହ ଜଣ କ୍ଷତ ବିକ୍ଷତ ହୁଅନ୍ତି । ମଟର ବସ୍‌ର ସୁବିଧା ଖୁବ୍ ଭଲ, ସେଥିରେ ଶୋଇବାର ଓ ମୁହଁ ହାତ ଧୋଇବା ପାଇଁ ପାଣି ଏବଂ ପାଇଖାନାର ସୁବିଧା ଅଛି । ଟ୍ରାମ ଏବଂ ବସ୍ ଗୁଡିକ ସବୁ ଦୋତାଲା । ଏକସମୟରେ ଗୋଟାଏ ବସ୍ ୭୦ ଜଣ ଲୋକଙ୍କୁ ନେଇପାରେ । ମଟର ଲାଇସେନ୍ସରୁ ସରକାର ବାର୍ଷିକ ୪୫ କୋଟି ଟଙ୍କା ପାଆନ୍ତି । ସହରର ମାଟିତଳେ ଦେଢ଼ଶହ ମାଇଲ ପୋଲ ସେଥିରେ ରେଲ ଗ୍ୱଲେ । ସେ ରେଲଓଏର ପ୍ରାୟ ଦେଢ଼ଶହ ଷ୍ଟେସନ ଅଛି । ସେ ରେଳ ଖରାଦିନେ ଥଣ୍ଡା ଓ ଶୀତଦିନେ ଉଷୁମ । ଗାଡ଼ିର ଦରଜା ଗୁଡ଼ିକ ବୈଦ୍ୟୁତିକ ଶକ୍ତି ଚାଳନ ଦ୍ୱାରା ଆପେ ଆପେ ଖୋଲେ ଓ ଲୋକମାନେ ବାହାରିବା ସଙ୍ଗେ ସଙ୍ଗେ ଯିବାଲୋକେ ପଶିଯାଆନ୍ତି ଏବଂ ସେମାନେ ଆପେ ଆପେ ବନ୍ଦ ହୋଇଯାଏ । ଉକ୍ତ ରେଳର ଗତି ଘଣ୍ଟାକେ ପ୍ରାୟ ୫୦ ମାଇଲ ହେବ । ସେଥିରେ ଫାଷ୍ଟ ଓ ଥାର୍ଡ ଦୁଇଟି ଶ୍ରେଣୀ । ଶତକଡ଼ା ୩ ଜଣ ୧ମରେ ଓ ୯୭ ଜଣ ୩ୟରେ ଯାତାୟାତ କରନ୍ତି । ୧ମଶ୍ରେଣୀ ଭଡ଼ା ମାଇଲ ପ୍ରତି ପ୍ରାୟ ୫୦ ୵ ଓ ୩ୟ ଶ୍ରେଣୀର ଭଡ଼ା ପ୍ରାୟ ସାଢ଼େ ତିନି ପଇସା । ଥାର୍ଡକ୍ଲାସ ଗାଡିମାନ ଏଠା ୨ୟ ଶ୍ରେଣୀ ଗାଡ଼ିଠାରୁ କେତେକ ପରିମାଣରେ ଭଲ । ଏହା ଛଡ଼ା ଉଡ଼ା କଳରେ ସବୁ ପ୍ରକାର ସୁବିଧା ଓ ସେ ଘଣ୍ଟାରେ ହାରାହାରି ଶହେ ମାଇଲ ଯାଏ ।

ଲଣ୍ଡନର ପୋଲିସ ବଡ଼ ବିଚକ୍ଷଣ ଓ ଧୈର୍ଯ୍ୟଶୀଳ । ଏ ପୁଲିସ ସଙ୍ଘକୁ ମେଟ୍ରୋପଲିଟାନ ପୋଲିସ କହନ୍ତି । ଏହି ପୋଲିସ ବାସ୍ତବିକ ଅର୍ଥରେ ସର୍ବ ସାଧାରଣଙ୍କର ଆଜ୍ଞାବାହୀ କିଙ୍କର ( Public Servant ) । ଜନ ସାଧାରଣଙ୍କର ହିତ ସାଧନ କରିବା, ସେମାନଙ୍କୁ ବିପଦରୁ ରକ୍ଷା କରିବା, ବାଟ ହୁଡିଥିଲେ ଠିକ ରାସ୍ତା ଦେଖାଇ ଦେବା, ଦଙ୍ଗା ହାଙ୍ଗାମା ବନ୍ଦ କରି ଶାନ୍ତିରକ୍ଷା କରିବା, ଲୋକ-ମଙ୍ଗଳ-କାମ କରି ଲୋକପ୍ରିୟ ହେବା ଏମାନଙ୍କର କାର୍ଯ୍ୟ ।

ଏଠାରେ ୧୫୨ ଜଣ ଲୋକଙ୍କର ବାର୍ଷିକ ଆୟ ପନ୍ଦର ଲକ୍ଷ ଟଙ୍କାରୁ ବେଶୀ ହିସାବରେ । ଏଠା ଲୋକଙ୍କର ହାରାହାରି ଦୈନିକ ଆୟ ୫୩୲ । ଶିଳ୍ପ ଓ ବାଣିଜ୍ୟ ଦ୍ୱାରା ଏଠା ଲୋକେ ଧନୀ ହୁଅନ୍ତି । ଏଠାରେ କୃଷକ ଶତକଡ଼ା ୫ ଓ ଶିଳ୍ପ ବାଣିଜ୍ୟ ବ୍ୟବସାୟୀ ଶତକଡ଼ା ୮୦ । ପରିଶ୍ରମ ପ୍ରତି କାହାର ଘୃଣା ବା ଅବହେଳା ନାହିଁ । ରେଜିଷ୍ଟାର୍ଡ ଶ୍ରମିକ ସଂଖ୍ୟା ପ୍ରାୟ ପନ୍ଦର ଲକ୍ଷ । ଏଠାରେ ପ୍ରଚୁର ପରିମାଣରେ ଲୁହା ଓ ପଥର କୋଇଲା ମିଳେ ଏଣୁ ଶିଳ୍ପୀ କର୍ମକାରଙ୍କ ସଂଖ୍ୟା ଢ଼େର ବେଶୀ । ମାତ୍ର କୃଷି ପ୍ରତି କାହାର ଦୃଷ୍ଟି ନାହିଁ । କାରଣ ସେଠା ସେଠାରେ ଲାଭଜନକ ନୁହେଁ । ଅତଏବ ମଫସଲରେ ଯଥେଷ୍ଟ ଜମି ପଡ଼ିଆ ପଡ଼ିଛି । କିନ୍ତୁ ଲୋକେ ଶସ୍ୟ ଓ ଫଳ ପାଇବା ପାଇଁ ଅନ୍ୟ ଦେଶ ଉପରେ ନିର୍ଭର କରୁଛନ୍ତି । ଖୁଚୁରା ଖର୍ଚ୍ଚ ଛଡ଼ା ଅନ୍ୟାନ୍ୟ ଖର୍ଚ୍ଚରେ ଅର୍ଥାତ୍ ୨।୩ ପାଉଣ୍ଡରୁ ଅଧିକ ହେଲେ ଚେକ ଦିଆ ନିଆ ଚାଲେ । ଥ୍ରେଡ୍ ନିଡ଼ଲ୍ ଷ୍ଟ୍ରିଟ୍, ବିଶ୍ୱର ପୃଥିବୀର ଟଙ୍କା ବଜାର । ସେଠାରେ ସବୁଦେଶର ବ୍ୟାଙ୍କ ଅଛି । ଓଲଡ୍ ବ୍ରଡ୍ ଷ୍ଟ୍ରିଟ୍ ଲୋମ୍ବାର୍ଡ ଷ୍ଟ୍ରିଟ୍ ପ୍ରଧାନ ବ୍ୟାଙ୍କି ଏରିଆ ( Area ) ସରକାର ଇନ୍‌କମ୍‌ଟେକ୍ସରୁ ବାର୍ଷିକ ପ୍ରାୟ ୪ଶହ କୋଟି ଟଙ୍କା ପାଆନ୍ତି । ଏଠାରେ ତଥାପି ବହୁତ ବେକାର, ମାତ୍ର ସମସ୍ତେ ସରକାରରୁ

ଯଥେଷ୍ଟ ଅନେକ ସଙ୍ଗ ମିଳ ।

ସାହାଯ୍ୟ ପାଆନ୍ତି । ବର୍ତ୍ତମାନ ବେକାର ସଂଖ୍ୟା ୨୭ ଲକ୍ଷ । ଅବିବାହିତ ପୁରୁଷ ହପ୍ତାକୁ ଟ ୧୫୯, ବିବାହ ପରେ ସ୍ତ୍ରୀ ହପ୍ତାକୁ ଟ ୧୨୯ ଓ ପିଲା ପାଇଁ ସ୍ୱତନ୍ତ୍ର । କିନ୍ତୁ ବୟସ୍କ ପୁରୁଷମାନେ ଦିନକୁ ୮ ଘଣ୍ଟା ପରିଶ୍ରମ କରି ହପ୍ତାକୁ ହାରାହାରି ଟ ୫୦୯ ପାଆନ୍ତି । ଶ୍ରମିକମାନଙ୍କ ମଜୁରି ବାର୍ଷିକ ପ୍ରାୟ ୧୨ ଶହ କୋଟି ଟଙ୍କା ।

ଲଣ୍ଡନ ପାର୍ଲିଆମେଣ୍ଟରେ ୭୧୫ ଜଣ କମନ୍ସ ସଭ୍ୟ ଓ ଲର୍ଡ୍ସ ସଭ୍ୟ ସଂଖ୍ୟା ୭୦୦ ରୁ ଅଧିକ ନୁହେଁ । ପ୍ରଧାନ ମନ୍ତ୍ରୀ ଓ କାବିନେଟ୍‌ର ଅନ୍ୟ ମନ୍ତ୍ରୀମାନଙ୍କ ଦରମା ସମାନ । ବର୍ଷକୁ ପ୍ରତ୍ୟେକେ ପ୍ରାୟ ୭୭୪ ହଜାର ଟଙ୍କା ଓ ପାର୍ଲିଆମେଣ୍ଟର ମେମ୍ବରମାନେ ପ୍ରତ୍ୟେକେ ମାସିକ ୫୪ହଜାର ଟଙ୍କା ଓ କେବିନାଟ୍ ମନ୍ତ୍ରୀ ମାସିକ ୩୪ ହଜାର ଟଙ୍କା ପାଆନ୍ତି, ମାତ୍ର ଏବେ କାହିଁତ ଯୋଗୁଁ କଟି ଯାଉଛି ।

ବିଲାତର ପରିବାର କହିଲେ ସ୍ତ୍ରୀ ଓ ପୁରୁଷ ଅଉ ତାଙ୍କ ପିଲା ଝିଲାଙ୍କୁ ବୁଝାଏ । ଏହା ଛଡ଼ା କ୍ୱଚିତ୍ ଛୋଟ ଭାଇ ଭଉଣୀ ବା ବୁଢ଼ୀ ମା ଥାଆନ୍ତି । ମାତ୍ର କୁକୁର ତାଙ୍କ ପରିବାରର ଏକ ପ୍ରାଣୀ । ବିବାହ ପରେ ପୁତ୍ର ପିତା ମାତାଙ୍କଠାରୁ ଅଲଗା ହୋଇ ରହେ, ନିଜ ଆୟରେ ଚଳେ, ବଳିଲେ କିଛି ବାପ ମାଙ୍କୁ ଦିଏ, ନୋହିଲେ ନାହିଁ । ସ୍ତ୍ରୀମାନେ ଯେବେ ରୂପବତୀ ହୁଅନ୍ତି ଅନେକ ସ୍ଥଳରେ ସ୍ୱାମୀମାନେ ସକାଳର ସବୁ କାମ ନିଜେ କରନ୍ତି କିନ୍ତୁ ସନ୍ଧ୍ୟାରେ ସ୍ତ୍ରୀ ସବୁ କରେ । ସେଠା ସ୍ତ୍ରୀମାନେ ଗୃହର ଲକ୍ଷ୍ମୀ-ଘର କାମ କରିବାକୁ ଆଦୌ ଲଜ୍ଜା ବା ଘୃଣା ବୋଧ କରନ୍ତି ନାହିଁ-ସ୍ୱାମୀ ପ୍ରତି ଆସ୍ଥା, ଆଦର ଓ ପ୍ରେମ ଯଥେଷ୍ଟ ।

ଲଣ୍ଡନରେ ପ୍ରାଥମିକ ଶିକ୍ଷା ବାଧ୍ୟତାମୂଳକ ଓ ବେତନ ହୀନ । ସ୍ୱାସ୍ଥ୍ୟ ଓ ଶିକ୍ଷାର ଉନ୍ନତି ପାଇଁ ୧ମ ବର୍ଷରୁ ୪ ବର୍ଷ ଯାଏଁ ପିଲାମାନେ ନର୍ସରୀ ସ୍କୁଲରେ ରହନ୍ତି । ତା ପରେ ପ୍ରାଇମେରୀ ଓ ସେକେଣ୍ଡରୀ ସ୍କୁଲରେ ପଢ଼ନ୍ତି । ଶ୍ରମିକ ଶିକ୍ଷାର ଉନ୍ନତି ପାଇଁ ମଧ୍ୟ ଯଥେଷ୍ଟ ପ୍ରଲୋଭନ ଅଛି । ବ୍ରିଟିଶ ମିଉଜିଅମ୍ ସେଠାରେ ବଡ଼ ଲାଇବ୍ରେରୀ । ସେଠାରେ ୩୦ ଲକ୍ଷ ବନ୍ଧା ବହି ଏବଂ ଅକ୍ସଫୋର୍ଡ ଲାଇବ୍ରେରୀରେ ୨୦ ଲକ୍ଷ ଭଲ ବନ୍ଧା ବହି ଅଛି । ବହିଗୁଡ଼ିକ ଯେଉଁ ଆଲମାରିରେ ଅଛି ତାକୁ ଯଦି ଲମ୍ବାକରି ରଖାଯାଏ ତେବେ ସେ ସବୁ ୨୭ ମାଇଲ ପର୍ଯ୍ୟନ୍ତ ବ୍ୟାପି ଯିବ । ଲାଇବ୍ରେରୀ ଓ ଖବର କାଗଜର ବହୁଳତା ଓ ସିନେମା, ଥିଏଟର ବୃଦ୍ଧି ଏବଂ ଭଲମାନ ପିଲାମାନଙ୍କୁ ଶିକ୍ଷା ପାଇଁ ପ୍ରରୋଚିତ କରେ । ଏହା ଛଡ଼ା ରେଡିଓ ଓ ସେଟ୍‌ଟିଏ ପ୍ରତିଘରେ ଥାଏ । ପ୍ରତିଦିନ ସଭା, ସମିତି ଓ ଲେକଚର ହେତୁ ଲଣ୍ଡନର ତରୁଣ ତରୁଣୀଙ୍କର ଧୀମତ୍ତା ଯଥେଷ୍ଟ ।

ବିଲାତର ବୋର୍ଡ ମ୍ୟୁନିସିପାଲିଟି ଗୁଡ଼ିକ ମିଶି ବାର୍ଷିକ ପ୍ରାୟ ୫୫୦ କୋଟି ଟଙ୍କା ଲୋକ ସାଧାରଣଙ୍କ ଉପକାରରେ ଖର୍ଚ୍ଚ କରନ୍ତି ଏବଂ ସେଥି ମଧ୍ୟରୁ ବର୍ଷରେ ପ୍ରାଇମେରୀ ଶିକ୍ଷା ପ୍ରଚାରରେ ୮୨ କୋଟି ଟଙ୍କା, ଗରିବଙ୍କ ଘର ତିଆରି କରି ଦେବାପାଇଁ ୩୨ କୋଟି ଟଙ୍କା, ସାଧାରଣ ଲାଇବ୍ରେରୀ ଏବଂ ମିଉଜିଅମ ଓ ଅର୍ଗ୍ୟାନିଜେସନ ପ୍ରଭୃତି ପାଇଁ ପ୍ରାୟ ୨୪ କୋଟି ଟଙ୍କା, ପାଗଳଖାନାରେ ପ୍ରାୟ ୮ କୋଟି ଟଙ୍କା, ଦରିଦ୍ରମାନଙ୍କୁ ରିଲିଫ ଦେବାରେ ୫୮ କୋଟି ଟଙ୍କା, ରାସ୍ତା ଓ ପୋଲ ପ୍ରଭୃତିର ରକ୍ଷଣାବେକ୍ଷଣ ପାଇଁ ପ୍ରାୟ ୭୭ କୋଟି ଟଙ୍କା ଏବଂ ସ୍ୱାସ୍ଥ୍ୟୋନ୍ନତିରେ ଆୟର ପ୍ରାୟ ଏକପଞ୍ଚମାଂଶ ଏବଂ ପୁଲିସ, ଫାୟାର ବ୍ରାଇଗେଡ଼ ଓ ସରକାର ପରିଚାଳିତ ବିଭାଗରେ ଶତକଡ଼ା ୭ ଅଂଶ ଖର୍ଚ୍ଚ ହୁଏ । ଅସୁସ୍ଥତା ଯୋଗୁ ସେଠା ଡାକ୍ତରଖାନାକୁ ବାର୍ଷିକ ପ୍ରାୟ ୭୫ ଲକ୍ଷ ଲୋକ ଆସନ୍ତି ।

ବିଲାତର ପ୍ରତି ବସ୍ତିରେ ପାର୍କ ଓ ଖେଳ ପଡ଼ିଆ ଅଛି । ଲଣ୍ଡନ ସହରର ଏକ ଏକର ଜମିର ଦାମ ଦେଢ଼କୋଟି ଟଙ୍କା । ସେଠାରେ ହାଇଡ଼ ପାର୍କ, ଗ୍ରିନୱିଚ ପାର୍କ, ଉଏଷ୍ଟ ମିନଷ୍ଟାର ପାର୍କ ଭଳି ଶତ ଶତ ଏକର ବଗିଚା ବଡ଼ ବଡ଼ ପାର୍କମାନ ଅଛି । ସେ ଗୁଡ଼ିକ ଯେପରି ପରିଷ୍କାର ପରିଚ୍ଛନ୍ନ ସେହିପରି ନୟନମନପ୍ରୀତିକର । ସେ ପାର୍କର ଚାରିପାଖରେ ଲୁହାର ବାଡ଼ ଓ ବାଡ଼ର କଡ଼େ୨ ବଡ଼ ବଡ଼ ଗଛ, ଭିତର ଆଡ଼କୁ ଫୁଲ ବଗିଚା, ଆହୁରି ଭିତରକୁ ଛୋଟ ଛୋଟ ଝରଣା ଓ ଜଳସ୍ରୋତମାନ ଅଛି । ପାର୍କମାନ ନାନାପ୍ରକାର ଆମୋଦର ଓ ସ୍ୱାସ୍ଥ୍ୟୋନ୍ନତିର ମୂଳ ସୋପାନ । ପ୍ରେମିକ ପ୍ରେମିକାଙ୍କର ଗୁପ୍ତ-ପ୍ରେମ ପାଇଁ, ନିଶାମିଳନ ପାଇଁ, ପ୍ରୀତି ବାକ୍ୟାଳାପ ପାଇଁ, ପ୍ରକୃତିର ସୌନ୍ଦର୍ଯ୍ୟ ଉପଭୋଗ କରିବା ପାଇଁ ଏ ଭଳି ସ୍ଥାନ ବିରଳ । ପୁଣି ସାମନା ପାଖରେ ନାନା ବିଷୟର ଆଲୋଚନା,

ବିଲାତର ଜନସାଧାରଣଙ୍କ ଜୀବନ ଜାଣିବା ପାଇଁ ଏହି ସ୍ଥାନ ଆଦର୍ଶ ।

ବିଲାତର ନାରୀମାନେ ସ୍ୱାଧୀନା । ସେମାନଙ୍କ ମଧ୍ୟରୁ କେହି ନିରକ୍ଷର ନୁହନ୍ତି । ଜୀବନର ପ୍ରାୟ ପ୍ରତ୍ୟେକ କ୍ଷେତ୍ରରେ ତାର ନ୍ୟାଯ୍ୟ ସ୍ଥାନ ଲାଭ କରିଛି । ସେମାନଙ୍କ ପାଇଁ ସ୍ୱତନ୍ତ୍ର ବିଦ୍ୟାଳୟମାନ ଅଛି । ସେଥିରେ ସାଧାରଣ ଶିକ୍ଷା ସଙ୍ଗେ ସଙ୍ଗେ ସଙ୍ଗୀତ ଗାୟନ, ରନ୍ଧନ ଓ ଗୃହକର୍ମ ପ୍ରଭୃତି ନାନା ବିଷୟ ଶିକ୍ଷା ଦିଆଯାଏ । ପୁଣି ହାଇସ୍କୁଲ ଛାଡିଲେ ସର୍ଟହ୍ୟାଣ୍ଡ, ଟାଇପ୍ ରାଇଟିଂ, ଏକାଉଣ୍ଟିଂ, କମର୍ସିଆଲ ଶିକ୍ଷା ଲାଗି କଲେଜମାନ ଅଛି । ଯେଉଁମାନେ ଦୁପରୋକ୍ତ ଟେକ୍‌ନିକଲ୍ ବିଭାଗମାନଙ୍କୁ ଯାଆନ୍ତି ନାହିଁ ସେମାନେ ଡାକ୍ତରୀ ପ୍ରଭୃତି ବା ବିଶ୍ୱବିଦ୍ୟାଳୟକୁ ଯାଆନ୍ତି । ସେଠାରେ ଛାତ୍ର ଛାତ୍ରୀମାନେ ଅବାଧରେ ମିଳାମିଶା ହୋଇ ପଢ଼ନ୍ତି । ଏହା ଫଳରେ ସେମାନଙ୍କ ଜୀବନରେ ପ୍ରେମ ବା ବନ୍ଧୁତା ଉଦ୍ରେକ ହୋଇଥାଏ ଏବଂ ତାର ପରିଣତ ବିବାହରେ ।

ସରକାରୀ ସାହାଯ୍ୟ ଯୋଗୁ ଲଣ୍ଡନବାସୀ କ୍ରମେ ଉନ୍ନତରୁ ଉନ୍ନତତର ହେଉଛନ୍ତି । ଶିକ୍ଷା ପାଇଁ ଜଣପିଚ୍ଛା ସେଠା ସରକାର ବାର୍ଷିକ ୫୩୨ ଓ ମୋଟରେ ୫୧୪୦ କୋଟି ଟଙ୍କା, ସ୍ୱାସ୍ଥ୍ୟୋନ୍ନତି ପାଇଁ ଜଣପିଚ୍ଛା ବାର୍ଷିକ ୫୨୨ ଓ ମୋଟରେ ୯୨ କୋଟି ଟଙ୍କା ବୁଢ଼ାଙ୍କ ପେନସନ୍ ଫଣ୍ଡ ୧୦ କୋଟି, ବିଧବା ଓ ନିରାଶ୍ରୟ ପିଲାଙ୍କ ପାଇଁ ଆଶ୍ରୟ ପ୍ରଭୃତି ପାଇଁ ୫୨ କୋଟି ଟଙ୍କା ଖରଚ କରନ୍ତି ।

ଏ ଦେଶରେ ଭଗବତ୍ ପ୍ରେମ କମିଛି ଓ ନାରୀପ୍ରେମ ବଢ଼ିଛି, କିନ୍ତୁ ଅଦମ୍ୟ ବାଧ୍ୟତା ଯୋଗୁଁ ଇଂରାଜଜାତି ପୃଥିବୀର ଏକଚତୁର୍ଥାଂଶରେ ବିଜୟ ପତାକା ଉଡ଼ାଉଛନ୍ତି ।



## ଆଫ୍ରିକାର ବିଚିତ୍ର ସମ୍ବାଦ

ଅଫ୍ରିକାର ପରିମାଣ ଫଳ ୧ କୋଟି ୧୫ ଲକ୍ଷ ବର୍ଗମାଇଲ ! ସେ ଦେଶ ଉତ୍ତର ଦକ୍ଷିଣରେ ୫ ହଜାର ବର୍ଗମାଇଲ ଏବଂ ପୂର୍ବ ପଶ୍ଚିମରେ ୪୭୨୩ ମାଇଲ ବିସ୍ତୃତ । ସମଗ୍ର ଆଫ୍ରିକା-ମହାଦେଶଟି ଗୋଟିଏ ପ୍ରକାଣ୍ଡ ମାଳଭୂମି । ଉକ୍ତ ମହାଦେଶରେ ୨୭ କୋଟିରୁ ଅଧିକ ଲୋକ ବାସ କରନ୍ତି ।

ନେଟାଲର ବାୟୁ ଏତେ ପରିଷ୍କାର ଯେ ସମୟ ସମୟରେ ୨୫ । ୩୦ ମାଇଲ ଦୂରବର୍ତ୍ତୀ ବସ୍ତୁ ସ୍ପଷ୍ଟରୂପେ ଦେଖା ଯାଇ-ଥାଏ ।

ଦକ୍ଷିଣ ଅଫ୍ରିକାରେ ଏକ ଜାତୀୟ ପୁଷ୍ପ ଅଛି ଯେ ତାହା ବୃନ୍ତଚ୍ୟୁତ ହେଲେ ମଧ୍ୟ ଦୁଇ ତିନିମାସ ପର୍ଯ୍ୟନ୍ତ ସତେଜ ଅବସ୍ଥାରେ ରହିଥାଏ ।

ଆଫ୍ରିକାରେ ଗୋଟିଏ ହେଲେ ସଜୀବ ଆଗ୍ନେୟଗିରି ଦୃଷ୍ଟ ହୁଏ ନାହିଁ ।

ଆମେରିକାର ସୁପିରିୟର ହ୍ରଦ ବ୍ୟତୀତ ଅଫ୍ରିକାର "ଭିକ୍ଟୋରିଆ ନାଏନ୍‌ଜା" ପରି ସ୍ୱାଦୁଜଳ ବିଶିଷ୍ଟ ବୃହତ୍ ହ୍ରଦ ପୃଥିବୀରେ ଆଉ ଦ୍ୱିତୀୟ ନାହିଁ ।

ଦକ୍ଷିଣ ଅଫ୍ରିକାର ଅନ୍ତର୍ଗତ କମ୍ବାର୍ଲି ନାମକ ସ୍ଥାନରେ ଏତେ ଅଧିକ ଗନ୍ଧକ ଅଛି ଯେ, ସେହି କାରଣରୁ ସେଠାରେ ପିପୀଲିକା ପ୍ରଭୃତି ବାସ କରିପାରନ୍ତି ନାହିଁ ।

'ସାହାରା' ନାମକ ମରୁଭୂମିରେ 'ପାନ୍ଥପାଦପ' ନାମକ ଏକ ପ୍ରକାର ବୃକ୍ଷ ଅଛି । ସେଥିରେ ଅସ୍ତ୍ରାଘାତ କଲେ ଅତିବ ନିର୍ମଳ ଜଳ ନିଃସୃତ ହୁଏ । ତୃଷାତୁର ପଥିକମାନେ ସେହି ଜଳ ପାନକରି ତୃଷା ନିବାରଣ କରନ୍ତି ।

ପଶ୍ଚିମ ଆଫ୍ରିକାରେ ବାନରରୁଟିମ ବୃକ୍ଷ, ତୈଳବୃକ୍ଷ, ବାର ବୃକ୍ଷ ପ୍ରଭୃତି ଯେଉଁ ସବୁ ଅଦ୍ଭୁତ ବୃକ୍ଷ ଦୃଷ୍ଟ ହୁଏ ପୃଥିବୀର ଅନ୍ୟ କୌଣସି ଠାରେ ସେପରି ବୃକ୍ଷ ଦେଖାଯାଏ ନାହିଁ ।

ଅଫ୍ରିକା ଖଣ୍ଡରେ 'ସେବ' ନାମକ ଏକ ପ୍ରକାର ବୃକ୍ଷ ଉତ୍ପନ୍ନ ହୁଏ । ତାହାର ଫଳରୁ ଅତ୍ୟୁତ୍ତମ ନବନୀତ ପ୍ରସ୍ତୁତ ହୋଇଥାଏ । ତଦ୍ଦ୍ୱାରା ଭକ୍ଷ୍ୟଦ୍ରବ୍ୟ ପାକ କଲେ ଅତିଶୟ ସୁସ୍ୱାଦୁ ହୁଏ ।

ଦକ୍ଷିଣ ଅଫ୍ରିକାର 'ଅଙ୍ଗୋରା' ନାମକ ଏକ ଜାତୀୟ ଛାଗଳର ଲୋମରେ ଉତ୍କୃଷ୍ଟ ପଶମ ଜାତହୁଏ । କେପକଲୋନୀ ନାମକ ବନ୍ଦରରୁ ପ୍ରତିବର୍ଷ ପ୍ରାୟ ୨ କୋଟି ୫୦ ଲକ୍ଷ ଟଙ୍କାର ଛାଗଲୋମ ବିଦେଶକୁ ରପ୍ତାନି ହୁଏ ।

ଅଫ୍ରିକାରେ ଯେପରି ଭୟଙ୍କର ମରୁଭୂମି ଅଛି, ସେପରି ପୃଥିବୀରେ ଅନ୍ୟ କୌଣସି ଦେଶରେ ନାହିଁ । ଉକ୍ତ ମରୁଭୂମି ପୃଥିବୀରେ ଉଷ୍ଣତମ ପ୍ରଦେଶ । ତାହା ପୂର୍ବ ପଶ୍ଚିମରେ ୩୫୦୦

ସୁତ ଚନ୍ଦ୍ର ବାଣ ଦାସ ।

ଏବଂ ଉତ୍ତର ଦକ୍ଷିଣରେ ୯୦୦ ମାଇଲ ବିସ୍ତୃତ । ଅଧିକ ଗ୍ରୀଷ୍ମ ସମୟରେ ୧୫୦ ଡଗ୍ରୀ ଉତ୍ତାପ ହୁଏ । ମାତ୍ର ସାଧାରଣତଃ ୯୦ ଡଗ୍ରୀ ଉତ୍ତାପ ଅନୁଭୂତ ହୁଏ । ତହିଁରେ ପ୍ରାୟ ୨୦।୨୫ ବର୍ଷ ଅନ୍ତରରେ ବୃଷ୍ଟିପାତ ହୋଇଥାଏ । ଉକ୍ତ ମରୁଭୂମିରେ ସୂର୍ଯ୍ୟ ସର୍ବଦା ଉଦିତ ଥାନ୍ତି ।

ଆଫ୍ରିକାର ଖାର୍ଟୁମ ପ୍ରଦେଶର ସହସ୍ର ମାଇଲ ଦକ୍ଷିଣରେ (ଜିଂ) ଜାତୀୟ ପ୍ରାୟ ୮ ହଜାର ଲୋକ ବାସ କରିଥାନ୍ତି । ସେମାନଙ୍କ ଅପେକ୍ଷା ଦୀର୍ଘାକୃତନ ନରନାରୀ ଅନ୍ୟତ୍ର ଦେଖାଯାନ୍ତି ନାହିଁ । ସେମାନଙ୍କର ବ୍ୟବହାର ଅତ୍ୟନ୍ତ ପ୍ରଶଂସନୀୟ । ସ୍ତ୍ରୀଲୋକ ଓ ବାଳକ ବାଳିକାମାନଙ୍କ ଉପରେ ସେମାନେ କୌଣସି ନିଷ୍ଠୁର ବ୍ୟବହାର କରନ୍ତି ନାହିଁ । ସେମାନେ ବିଶ୍ରାମ କରିବା ବେଳେ ଏକପାଦରେ ଦଣ୍ଡାୟମାନ ହୋଇଥାନ୍ତି ।

ଦକ୍ଷିଣ ଆଫ୍ରିକାର କମ୍ବାର୍ଲିର ହୀରକ ଖଣି ପରି ସମୃଦ୍ଧ ଖଣି ପୃଥିବୀରେ ଅନ୍ୟତ୍ର ନାହିଁ । ଉକ୍ତ ଖଣିରୁ ପ୍ରତିବର୍ଷ ଅନ୍ୟୂନ ୧୪ କୋଟି ଟଙ୍କାର ହୀରକ ଉଠୁଅଛି । ଟ୍ରାନ୍ସଭାଲ ଗଭର୍ଣ୍ଣମେଣ୍ଟ ସ୍ୱର୍ଗୀୟ ଇଂଲଣ୍ଡେଶ୍ୱର ସପ୍ତମ ଏଡ଼ୱାର୍ଡ ମହୋଦୟଙ୍କୁ ଯେଉଁ ହୀରକଖଣ୍ଡ ଉପହାର ଦେଇ ଅଛନ୍ତି, ତଦ୍ରୂପ ଉତ୍କୃଷ୍ଟ ବୃହତ ହୀରକଖଣ୍ଡ ଅଧୁନା ପୃଥିବୀର କୌଣସି ରାଜ୍ୟରେ ଦୃଷ୍ଟ ହୁଏ ନାହିଁ । କମ୍ବାର୍ଲି ହୀରକ ଖଣି ନିମନ୍ତେ ଜଗତରେ ସୁପ୍ରସିଦ୍ଧ ।

ଗିନି ଉପକୂଳରେ କୋମାନ୍ସ ବର୍ଗ ନିକଟସ୍ଥ ଭ୍ୟାଣ୍ଡ ପର୍ବତରେ ଓ ସେଣ୍ଟଜର୍ଜ ଅଟରେ ସୁନା ମିଳେ । ଏହି ଉପକୂଳର ନାମାନୁସାରେ ଗିନିସୁନା ନାମକରଣ ହୋଇ ଅଛି ।

ଆଫ୍ରିକାର ଅନ୍ତର୍ଗତ ମିଶର ଦେଶରେ 'ପିରାମିଡ୍' ନାମକ ଗୋଟିଏ ବୃହତ୍ ପ୍ରସ୍ତରମୟ ମଠ ଅଛି । ତାହା ଖ୍ରୀଷ୍ଟାବ୍ଦ ପ୍ରଚଳର ୯୦୦ ବର୍ଷ ପୂର୍ବେ ଚିଓପ୍ସ ନାମକ ଜଣେ ମିଶରୀୟ ନରପତି କର୍ତ୍ତୃକ ନିର୍ମିତ ହୋଇଥିଲା ।

ଏଠାରୁ ହସ୍ତି ଦାନ୍ତ ଓ ଓଟପକ୍ଷୀର ପର ଅଧିକ ପରିମାଣରେ ଇଉରୋପକୁ ରପ୍ତାନି ହୁଏ ।

## ଆଫ୍ରିକାରେ ଭାରତବାସୀ—୨୩୨୨୦୦ଜଣ

| | |
|---|---|
| ନେଟାଲରେ | ୧୪୦୦୦୦ |
| କେପକଲନିରେ | ୮୦୦୦୦ |
| ଟ୍ରାନ୍ସଭାଲରେ | ୧୨୦୦୦ |
| ଅରେଞ୍ଜ ଫ୍ରି ଷ୍ଟେଟରେ ··· | ୨୦୦ |
| | ୨୩୨୨୦୦ |



## ଅସ୍ତ୍ର ସଜ୍ଜା

| (ଶକ୍ତିର ନାମ) | (ବର୍ତ୍ତମାନ ବ୍ୟୟ ଭାର) | (୧୯୧୪ ତୁଳନାରେ ବୃଦ୍ଧି) | (୧୯୧୪ ତୁଳନାରେ କ୍ଷୟ) | |
|---|---|---|---|---|
| ଜର୍ମାନୀ | ୪ କୋଟି ୯୦ ଲକ୍ଷ ପାଉଣ୍ଡ | ........ | ୬୩ ଭାଗ | ........ |
| ଗ୍ରେଟ୍ ବ୍ରିଟେନ୍ | ୧୫ କୋଟି ୩୦ ଲକ୍ଷ ,, | ୪୨ ଭାଗ | ........ | |
| ଫ୍ରାନ୍ସ | ୧୩ କୋଟି ,, | ୩୦ ଭାଗ | ........ | ........ |
| ଇଟାଲୀ | ୭ କୋଟି ୪୦ ଲକ୍ଷ ,, | ୪୪ ଭାଗ | | ........ |
| ଜାପାନ | ୬ କୋଟି ୯୦ ଲକ୍ଷ ,, | ୧୪୨ ଭାଗ | ........ | ........ |
| ରୁଷିଆ | ୧୭ କୋଟି ୭୦ ଲକ୍ଷ ,, | ୧୩୦ ଭାଗ | ........ | ........ |
| ଇଉନାଇଟେଡ୍ ଷ୍ଟେଟ୍ ୨୦ ହଜାର ୮ ଶତ କୋଟି ଏକ ଶତ ୯୭ | ,, | ୧୯୭ ଭାଗ | ........ | ........ |

ଏ ସବୁ ବଙ୍କୁଲ ପ୍ରକାଶ ।

# ଚକ୍ରବର୍ତ୍ତୀଙ୍କ କ୍ଷମତା

ଭାରତର ସମ୍ରାଟ, ଇଂଲଣ୍ଡର ରାଜା ଅଟନ୍ତି । ତାଙ୍କର କେତେକ କ୍ଷମତାର ବିଷୟ ନିମ୍ନରେ ପ୍ରକାଶ କରାଗଲା ।—

ଯଦି କୌଣସି ବ୍ୟକ୍ତି ରାଜଦ୍ରୋହ ଅପରାଧରେ ପ୍ରାଣଦଣ୍ଡରେ ଦଣ୍ଡିତ ହୁଏ ରାଜା ଇଚ୍ଛା କଲେ ତାକୁ କ୍ଷମା କରିପାରନ୍ତି । ତାହାର ଯଦି ସମ୍ପତ୍ତି ଯାଏ ତାହା ମଧ୍ୟ ପ୍ରତ୍ୟର୍ପଣ କରି ପାରନ୍ତି; କିନ୍ତୁ ପୈତୃକ ସମ୍ପତ୍ତି ଅଧିକାର କରିବା କ୍ଷମତା ରାଜା ପ୍ରଦାନ କରି ପାରିବେ ନାହିଁ ।

ଜଣେ ଅଭିଜାତ ଯଦି ଅଭିଜାତରୁ ବହିଷ୍କୃତ ହୁଅନ୍ତି, ରାଜା ତାହାଙ୍କୁ ଅଭିଜାତ୍ୟ ପ୍ରଦାନ କରି ପାରନ୍ତି କିନ୍ତୁ ସେ ତାଙ୍କୁ ତାଙ୍କର ପୂର୍ବ ପଦରେ ପ୍ରତିଷ୍ଠିତ କରି ପାରନ୍ତି ନାହିଁ । ନୂତନ ଅଭିଜାତ ପଦପ୍ରଦ କରି ପାରିବେ ।

ରାଜା କୌଣସି ପ୍ରକାର ଟାକସ୍ ଦିଅନ୍ତି ନାହିଁ; କିନ୍ତୁ ରାଜପରିବାରର ଅପର ସମସ୍ତଙ୍କୁ ଟାକସ୍ ଦେବାକୁ ପଡ଼େ ।

ରାଜା ତାଙ୍କର ନିଜ ଋଣ ପରିଶୋଧ କରନ୍ତି, ଏପରି କି ସେ ତାଙ୍କର ସ୍ପେସଲ ଟ୍ରେନର ଭଡ଼ା ଓ ଥିଏଟରର ଟିକଟ ମୂଲ୍ୟ ନିଜ ହସ୍ତରୁ ଦେଇଥାନ୍ତି ।

ରାଜା ତାଙ୍କର ବ୍ୟକ୍ତିଗତ ବନ୍ଧୁ ଓ ଆତ୍ମୀୟ ବ୍ୟତୀତ ଆଉ କାହା ନିକଟକୁ ଚିଠି ଲେଖନ୍ତି ନାହିଁ । ଅନ୍ୟାନ୍ୟ ଚିଠି ସବୁ ପ୍ରାଇଭେଟ ସେକ୍ରେଟେରୀ ଲେଖନ୍ତି ।

ରାଜା, ନିକଟ ସମ୍ପର୍କୀୟ ଆତ୍ମୀୟ ସ୍ୱଜନ ବ୍ୟତୀତ ଆଉ କାହା ନିକଟରୁ ଉପହାର ଗ୍ରହଣ କରି ପାରିବେ ନାହିଁ । ତେବେ ଗ୍ରନ୍ଥକାରମାନେ ସେମାନଙ୍କ ଗ୍ରନ୍ଥସବୁ ବିଶେଷ ଭାବରେ ବନ୍ଧାଇ ରାଜାଙ୍କୁ ପ୍ରଦାନ କରିଥାନ୍ତି ।

ରାଜଦରବାରରେ କୌଣସି ରମଣୀର ବିବାହ କରିବାର ପ୍ରସ୍ତାବ କେହି ଉତ୍ଥାପନ କରିପାରିବେ ନାହିଁ, ରାଜାଙ୍କ ମତ ବ୍ୟତୀତ ରାଜପରିବାରରେ କାହାର ବିବାହ ହୋଇ ନ ପାରେ ।

ରାଜାଙ୍କ ମଟରଗାଡ଼ିରେ ନମ୍ବର ନ ଥାଏ ଏବଂ ତାଙ୍କର ଗାଡ଼ି ନିର୍ଦ୍ଧାରିତ ବେଗରେ ଗତି କରିବା ମଧ୍ୟ ନିଷିଦ୍ଧ ନୁହେଁ ।



# ସମ୍ମାନସୂଚକ ତୋପ

ସମ୍ରାଟଙ୍କର ଜନ୍ମଦିନ ଉପଲକ୍ଷେ ଓ ତାହାଙ୍କର ଭାରତ ସମ୍ରାଟ୍ ଉପାଧିଗ୍ରହଣ ସମ୍ପୃତରେ ଏବଂ ରାଜ୍ୟାଭିଷେକ ଦିନ ସେ ୧୦୧ ଟି ତୋପରେ ସମ୍ମାନିତ ହୋଇଥାଆନ୍ତି । ରାଜପୁତ୍ର-ଙ୍କର ଜନ୍ମଦିନ, କୌଣସି ଯୁଦ୍ଧରେ ଜୟ ହେଲେ ଏବଂ କୌଣସି ଘୋଷଣାପତ୍ର ପାଠକାଳେ ୧୦୧ ଟି ତୋପ । ଗଭର୍ଣ୍ଣର ଜେନେରେଲ ବାହାଦୁର—୩୧ । ରାଜଦୂତଗଣ—୧୯ । ପ୍ରଦେଶୀୟ ଶାସନକର୍ତ୍ତାଗଣ—୧୭ । ପ୍ରଧାନ ମନ୍ତ୍ରିସଭାର ସଭାପତି—୧୭ । ଭାରତବର୍ଷରେ ପର୍ତ୍ତୁଗୀଜମାନଙ୍କର ଅଧିକୃତ ସ୍ଥାନ ସମୂହର ଗଭର୍ଣ୍ଣର ଜେନାରାଲ—୧୭ । ପ୍ରଦେଶୀୟ ଲେଫଟେନାଣ୍ଟ, ସ୍ଥଳ ଓ ଜଳଯୁଦ୍ଧର ପ୍ରଧାନ ସେନାପତି ଓ ଉପନିବେଶର ଲେଫଟେନାଣ୍ଟ—୧୫ । ବଡ଼ଲାଟଙ୍କର ଏଜେଣ୍ଟଗଣ—୧୩ । ରେସିଡେଣ୍ଟ ଓ ପ୍ରଧାନ କମିଶନରଗଣ—୧୩ । ପଲିଟିକେଲ ଏଜେଣ୍ଟଗଣ—୧୧ ।



# ବିଭିନ୍ନ ଦେଶର ସୌନ୍ଦର୍ଯ୍ୟ

## ବିଲାତୀ ଓ ଫରାସି ରୂପ

କନ୍ୟାମାନଙ୍କ ସମ୍ମୁଖରେ ଇଂରେଜ ଓ ଆମେରିକାବାସୀ କଥାବାର୍ତ୍ତାରେ ବଡ଼ ସାବଧାନ, ଯା ତା କହନ୍ତି ନାହିଁ, ମଳମୂତ୍ରର ନାମ ପର୍ଯ୍ୟନ୍ତ ଉଚ୍ଚାରଣ କରନ୍ତି ନାହିଁ । ଫରାସୀମାନେ ଆମ୍ଭମାନଙ୍କ ପରି ମୁହଁ ଖୋଲା ।

ପ୍ରେମ ପ୍ରଣୟର କଥା ଅବାଧରେ ମା ପୁଅ ମଧ୍ୟରେ ଭାଇ ଭଉଣୀ ମଧ୍ୟରେ ଚଳେ । ଦୁହିତାର ପ୍ରଣୟୀର କଥା ପିତା ନାନାପ୍ରକାରରେ ଥଟ୍ଟା କରି କନ୍ୟାଙ୍କୁ ପଚାରନ୍ତି । ଫରାସୀ କନ୍ୟା ଅବନତମୁଖୀ, ଇଂରାଜକନ୍ୟା କ୍ରୀଡ଼ାଶୀଳା, ମାର୍କିନ କନ୍ୟା ଚଟ୍‌ପଟ୍ ଜବାବ ଦିଅନ୍ତି । ଚୁମ୍ବନ ଆଲିଙ୍ଗନ ପର୍ଯ୍ୟନ୍ତ ଦୋଷାବହ ନୁହେ, ଅଶ୍ଳୀଳ ନୁହେ ; ଆମେରିକା ପରିବାରରେ ପୁରୁଷବନ୍ଧୁ ଓ ଆତ୍ମୀୟତା ହେଲେ ଘରର ଯୁବତୀକନ୍ୟା ସେକ-

ଏହାଙ୍କ ସ୍ନେହରେ ବନ୍ଦୀ ହୋଇ ।

ହ୍ୟାଣ୍ଡ ସ୍ଥଳେ ଚୁମ୍ବନ କରନ୍ତି । ଆମ ଦେଶରେ ପ୍ରେମ ପ୍ରଣୟୀର ନାମଗନ୍ଧ ପର୍ଯ୍ୟନ୍ତ ଗୁରୁଜନଙ୍କ ଆଗରେ ହେବାର ଯୁ ନାହିଁ ।

ଏମାନଙ୍କ ଫେସନ ନ୍ୟାଗରେ । ଥଣ୍ଡା ଦେଶ ଯୋଗୁଁ ସର୍ବଦା ସର୍ବାଙ୍ଗ ନ ଢାଙ୍କି କାହାର ଆଗକୁ ବାହାରିବାର ଯୁ ନାହିଁ । ବିଲାତରେ ଠିକ୍ ଠିକ୍ ପୋଷାକ ନ ପିନ୍ଧି ବାହାରିବା ଅଭଦ୍ରଜନୋଚିତ । ପାଶ୍ଚାତ୍ୟ ଦେଶର କନ୍ୟାମାନଙ୍କର ଗୋଡ଼ ଦେଖାଇବା ବଡ଼ ଲଜ୍ଜାର କଥା, କିନ୍ତୁ ଗଳା ଓ ଛାତିର କେତେକାଂଶ ଦେଖାଯାଇପାରେ । ଇଂରାଜମାନେ ରମଣୀ ସୌନ୍ଦର୍ଯ୍ୟର ଆଦର କରନ୍ତି । କରତଳରେ ନାରୀଚରଣ ଧାରଣ କରି ଯାନରୁ ଅବତରଣ କରନ୍ତି । ସେମାନଙ୍କ ନିକଟରେ ନାରୀଜାତିର ମାନ୍ୟ ମାନ । ନାରୀ ମୁଖରା, କଳହପ୍ରିୟା ସ୍ବେଚ୍ଛାଗ୍ରହଣୀ ହେଲେ ମଧ୍ୟ ହାତ ଯୋଡ଼ି ସ୍ୱାମୀଙ୍କୁ ତାଙ୍କର ପଦାନତ ଅନୁଗତ ହୋଇ ରହିବାକୁ ହୁଏ । ଏ ବ୍ୟବହାରଟା ସେମାନଙ୍କ ପକ୍ଷରେ ଉତ୍ତମ ।

ଇଂରାଜୀ ଫରାସୀ ନୃତ୍ୟ ସଭାରେ ଯେଉଁମାନେ ନୃତ୍ୟ କରନ୍ତି ଲଜ୍ଜା ସେମାନଙ୍କ ନିକଟରେ ମୁହଁ ଦେଖାଇବାକୁ ଲଜ୍ଜା ବୋଧ କରେ । ସ୍ତ୍ରୀ ପୁରୁଷ ଏକାଠି କୋଳାକୋଳି ହୋଇ ନାଚନ୍ତି, ଏହା ନୃତ୍ୟର ରୀତି । ତାହା ପରେ ସ୍ତ୍ରୀ ପୁରୁଷ ଉଭୟଙ୍କୁ ସାମାଜିକ ଲଜ୍ଜା ପରିବର୍ଜିତ ଦେଖିବାକୁ ମିଳେ । ଲଜ୍ଜା ପରିହାର କରି ଅପ୍ରତିଭ ହୁଅନ୍ତି ନାହିଁ । ବିଲକ୍ଷଣ ସପ୍ରତିଭ--ବିଲକ୍ଷଣ ପ୍ରମୋଦିତ ଦ୍ରାକ୍ଷାରସ--ରକ୍ତ ବଦନରେ ଅଛି ଅଛି ହାସ୍ୟ । ନର୍ତ୍ତକୀ ବିବିମାନଙ୍କୁ ସେମାନେ ଉଲଙ୍ଗିନୀ ସଜାଇ ସମାଜକୁ ବାହାର କରନ୍ତି । ତେତେବେଳେ ସେମାନେ ଯେଉଁ ବଲ ଡ୍ରେସ ପରିଧାନ କରିଥାନ୍ତି ତାହା ନାଚ ସମୟରେ ଦେହରେ ଥାଏ କି ନାହିଁ ଦର୍ଶକ ଅତି ସୂକ୍ଷ୍ମ ଦୃଷ୍ଟିରେ ଦର୍ଶନ କରି ମଧ୍ୟ ନିରୂପଣ କରି ପାରନ୍ତି ନାହିଁ ।



## ଭାରତ ଲଲନାଙ୍କ ସୌନ୍ଦର୍ଯ୍ୟ

ମଥୁରା କାମିନୀଙ୍କର ବଚନରେ ସୌନ୍ଦର୍ଯ୍ୟ, ମୈଥିଳୀ-କାମିନୀଗଣଙ୍କର କଟାକ୍ଷରେ ସୌନ୍ଦର୍ଯ୍ୟ, ଗୌଡ଼ ମହିଳାବର୍ଗଙ୍କର ଦନ୍ତରେ ସୌନ୍ଦର୍ଯ୍ୟ, ନିଜଳ ନାରୀଗଣଙ୍କର ଜଘନରେ ସୌନ୍ଦର୍ଯ୍ୟ, ତୈଲଙ୍ଗୀଗଣଙ୍କର ନିତମ୍ବରେ ସୌନ୍ଦର୍ଯ୍ୟ, ବଙ୍ଗ ଓ କେରଳ ମହିଳାଗଣଙ୍କର ମେଘକୃଷ୍ଣ କୁନ୍ତଳରେ ସୌନ୍ଦର୍ଯ୍ୟ, କର୍ଣ୍ଣାଟ ନାରୀଗଣଙ୍କର କଟି ଦେଶରେ ସୌନ୍ଦର୍ଯ୍ୟ, ଗୁର୍ଜ୍ଜରୀଗଣଙ୍କର ସ୍ତନରେ ସୌନ୍ଦର୍ଯ୍ୟ ଅଦ୍ୱିତୀୟ ବୋଲି ପ୍ରବାଦ ଅଛି ।

ଭାରତ ରମଣୀମାନେ ସାଧ୍ୱୀ, ପତିବ୍ରତା, ବିନୀତା, ଲଜ୍ଜାଶୀଳା, ସନ୍ତାନବତ୍ସଳା ଓ ଦେବ ଦ୍ୱିଜରେ ଭକ୍ତିମତୀ, ସେମାନଙ୍କର ଅନ୍ନ ବିସର୍ଜନ ଘଟଣରେ ଅତୁଳନୀୟ ।



## ଚୀନ ସୌନ୍ଦର୍ଯ୍ୟ

ଯେଉଁ ସ୍ତ୍ରୀର ପାଦ ଯେତେ ଛୋଟ ସେ ସେତେ ସୁନ୍ଦରୀ ବୋଲି ଚୀନ ଦେଶରେ ବିଖ୍ୟାତ । ବିବାହ ପୂର୍ବରୁ କନ୍ୟାର ରଙ୍ଗ, ଗଠନ ପ୍ରଭୃତି କିଛି ବିଚାର ନ କରି କେବଳ ପାଦ କେତେ ବଡ଼ ବୋଲି ପଚାରନ୍ତି । ଯେଉଁ ରମଣୀର ପାଦ ତିନି ଇଞ୍ଚ ସେ ସର୍ବାପେକ୍ଷା ସୁନ୍ଦରୀ । ଏଣୁ ପିଲା ଦିନରୁ ପାଦକୁ ମୋଡ଼ି ଛୋଟ ଜୋତା ଭିତରେ ପୂରାଇ ଦିଅନ୍ତି । ସେତେବେଳେ ପିଲା ଯନ୍ତ୍ରଣାରେ ବହୁତ କାନ୍ଦେ ଏବଂ ସମୟ ସମୟରେ ଅଙ୍ଗୁଳିମାନ ପଚି ଖସି ପଡ଼େ । ପାଦ ଏତେ ଛୋଟ କରନ୍ତି ବୋଲି ଚୀନ ସ୍ତ୍ରୀ ଲୋକମାନେ ଭଲ ଚାଲି ପାରନ୍ତି ନାହିଁ ।

ଚୀନ ସ୍ତ୍ରୀମାନେ ବିନୟନମ୍ରା, ଲଜ୍ଜାଶୀଳା, ସରଳା । ସେମାନଙ୍କର ହୃଦୟ ଦୟାରେ ପୂର୍ଣ୍ଣ । ସନ୍ତାନମାନଙ୍କୁ ସେମାନେ ବଡ଼ ଭଲ ପାଆନ୍ତି । ପ୍ରତ୍ୟହ ଦୁଗ୍ଧକୁ ଗରମ କରି ପିଇନ୍ତି । ସେମାନେ ବେଶି କଥା କହନ୍ତି ନାହିଁ, ତାଙ୍କ ମୁହଁରେ ହସ ଦେଖାଯାଏ ନାହିଁ । ଯେଉଁମାନେ ଦରିଦ୍ର ସେମାନେ ଶିଶୁକନ୍ୟାକୁ ସମ୍ଭ୍ରମ ରକ୍ଷା ପାଇଁ ଡୁବାଇ ମାରନ୍ତି । କେହି କେହି ବଜାରରେ ଶିଶୁକନ୍ୟାକୁ ବିକ୍ରୟ କରି ଦିଅନ୍ତି ।

ଯେଉଁ ସ୍ତ୍ରୀ ପୁତ୍ର ପ୍ରସବ ନ କରେ ତାର ଆଦର ନ ଥାଏ ଏବଂ ସ୍ୱାମୀ ତାକୁ ନିଜ ଇଚ୍ଛାନୁସାରେ ଯେକୌଣସି ସମୟରେ ତ୍ୟାଗ କରିପାରେ । ଚୀନ ଦେଶରେ ବହୁ ବିବାହ ନାହିଁ ।

ଶାଶୁର ଅତ୍ୟାଚାର ହେତୁ ସ୍ତ୍ରୀମାନେ ଆତ୍ମହତ୍ୟା କରନ୍ତି । ବିଧବାମାନଙ୍କର ଦ୍ୱିତୀୟବାର ବିବାହ ହେବାର ନିୟମ ନାହିଁ, ମାତ୍ର ଉପପତ୍ନୀଭାବେ ଅନ୍ୟ ସଙ୍ଗରେ ରହିବାର ନିୟମ ଅଛି । ଏ ଦେଶରେ ବେକରେ ଦୌଡ଼ି ଦେଇ ସହମରଣ ପ୍ରଥା ମଧ୍ୟ ପ୍ରଚଳିତ ।

ପ୍ରାୟ ସକଳ ନୌକା ସ୍ତ୍ରୀଲୋକଙ୍କ ଦ୍ୱାରା ପରିଚାଳିତ । ନୀଳ ପୋଷାକରେ ସେମାନଙ୍କର ବଡ଼ ଆଦର । ଏ ଦେଶରେ ଅବରୋଧ ପ୍ରଥା ନାହିଁ । ଏମାନେ ବଡ଼ ସଙ୍ଗୀତପ୍ରିୟ । ସ୍ତ୍ରୀଲୋକଙ୍କର ମର୍ଯ୍ୟାଦା ଏଠାରେ ଢେର ବେଶୀ ।

ଆଜି କାଲି କୁପ୍ରଥା ପ୍ରତି ସବୁର ଦୃଷ୍ଟି ପଡ଼ିଛି ।



## ବହ୍ମଦେଶର ସୌନ୍ଦର୍ଯ୍ୟ

ଏ ଦେଶର ସ୍ତ୍ରୀଲୋକମାନଙ୍କର ପ୍ରଭୁତ୍ୱ ଅତ୍ୟଧିକ । ସାମାନ୍ୟ କାରଣରୁ ସେମାନେ ବିବାହ ବିଚ୍ଛେଦ କରିପାରନ୍ତି । ଏମାନଙ୍କର ଗୋଲଗାଲ ସୁଗଠିତ ଦେହ, ପୁରୁଷ ଅପେକ୍ଷା ଅନେକ ବଳିଷ୍ଠ । ବିବାହ ପରେ ଜାମାତାକୁ ଅନ୍ତତଃ କିଛିଦିନ ପାଇଁ ଶ୍ୱଶୁର ଘରେ ରହି କାର୍ଯ୍ୟ କରିବାକୁ ହୁଏ । ଏତେ ସ୍ୱାଧୀନତା ଥିବା ସ୍ଥଳେ ବର୍ମାରେ ବହୁବିବାହ ପ୍ରଚଳିତ । ସ୍ତ୍ରୀମାନେ କାମ କରନ୍ତି, ଦୋକାନରେ ବସି ବିକା କିଣା କରନ୍ତି । ଏମାନେ ଲାଲ ରେସମର ଲୁଙ୍ଗି ପିନ୍ଧି ମୁହଁରେ ଚନ୍ଦନ କାଷ୍ଠର ଗୁଣ୍ଡି ଲଗାଇ ପୁଷ୍ଟ ଶରୀରରେ ଆନନ୍ଦ ମନରେ ବିକା କିଣା କରନ୍ତି ।

ଏମାନେ କାନରେ, ହାତରେ ଓ ମୁଣ୍ଡରେ ଗହଣା ପିନ୍ଧନ୍ତି । ଦେହ ଖାଲି ଥାଏ । ଅଧିକାଂଶ ସ୍ତ୍ରୀ ଗୋଡ଼ରେ ଚଟି ଜୋତା ପିନ୍ଧନ୍ତି, ଲୁଗାପଟାରେ ସେମାନଙ୍କର ସଜ୍ଜାର ସମଧିକ ଦୃଷ୍ଟି । ସ୍ତନ ଉପର ଆଣ୍ଠି ଲୁଙ୍ଗି ପିନ୍ଧନ୍ତି ବୋଲି ସ୍ୱାଧୀନ ଭାବରେ ବୁଲିବୁଲିରେ ବ୍ୟାଘାତ ହୁଏ ।



## କୋରିଆ ରମଣୀ

ଏ ଦେଶରେ ସ୍ୱାମୀ ଅପେକ୍ଷା ସ୍ତ୍ରୀ ବୟସରେ ବଡ଼ ହୋଇଥାଏ । ବିବାହର ପ୍ରଥା ମଧ୍ୟ ଅତି ଚମତ୍କାର ।



## ପିନାଂ ରମଣୀ

ଏଠାରେ ଅବରୋଧ ପ୍ରଥା ନାହିଁ, ମୁଣ୍ଡରେ ଲୁଗା ପର୍ଯ୍ୟନ୍ତ ଦିଅନ୍ତି ନାହିଁ । ସ୍ତ୍ରୀମାନେ କେଶପାଇଁ ବ୍ୟସ୍ତ, ସେମାନେ ପରିପାଟୀ କରି ଖୋସା ବାନ୍ଧନ୍ତି ଏବଂ ସେହି ଖୋସା ଖୋଲି ରଖନ୍ତି କିନ୍ତୁ ମରାଳଗ୍ରୀବାକୁ ସମସ୍ତଙ୍କୁ ଦେଖାଇବାକୁ ଭଲ ପାଆନ୍ତି ।



## ପୂର୍ବଦ୍ୱୀପ ରମଣୀ

ଇଉରୋପୀୟ ଓ ଚୀନ ମିଶ୍ରିତ କେତେକ ଜାତି ପୂର୍ବ ଦ୍ୱୀପରେ ବାସ କରନ୍ତି । ଏମାନଙ୍କର ନାସିକା ଉନ୍ନତ ଓ ଗାଲର ହାଡ଼ ଉଚ୍ଚ । ଏମାନେ ପଶମର ଲୁଙ୍ଗୀ ପିନ୍ଧନ୍ତି ଓ ଦେହରେ ଯଥେଷ୍ଟ ଗହଣା ଦେଇନ୍ତି । ଏମାନେ ପାନ, ଗୁଆ ଓ ଚୁରୁଟ ଖାଆନ୍ତି ଏବଂ ମଦ୍ୟ ପାନ କରନ୍ତି ।



## ଜାପାନ ସୁନ୍ଦରୀ

ଏ ଦେଶରେ ଯେଉଁ ସ୍ତ୍ରୀର ଚକ୍ଷୁ ଅର୍ଦ୍ଧନିମୀଳିତ ଓ ନାସିକା ଅତ୍ୟନ୍ତ ଚେପ୍ଟା ସେ ସୁନ୍ଦରୀ ବୋଲି ଗଣ୍ୟ । ଏମାନେ ବୀରଜନନୀ, ଧୈର୍ଯ୍ୟଶୀଳା, ଶ୍ରମଶୀଳା, କଠୋର-କର୍ତ୍ତବ୍ୟ ପରାୟଣା, ସର୍ବଦା ହୃଷ୍ଟମନା ଓ ହାସ୍ୟମୟୀ କିନ୍ତୁ ଲଜ୍ଜାଶୀଳା, ମଧୁରଭାଷିଣୀ ଓ ଜ୍ଞାନସଞ୍ଚୟତତ୍ପର । ସ୍ୱାମୀଙ୍କୁ ଅପର ରମଣୀ ସହିତ ଆସକ୍ତ ଦେଖିଲେ, ସେମାନେ ସେହି ରୂପସୀ ଯୁବତୀଙ୍କୁ ଘରକୁ ଆଣି ସ୍ୱାମିଙ୍କର ମନୋରଞ୍ଜନ କରନ୍ତି । ପ୍ରଫୁଲ୍ଲ ମୁଖରେ ସ୍ୱାମିଙ୍କର ଏବଂ ତାଙ୍କ ଉପ ପତ୍ନୀଙ୍କର ସେବା କରନ୍ତି । ସ୍ତ୍ରୀର ସମ୍ମୁଖରେ ସ୍ୱାମୀ ଅକୁତୋଭୟରେ ଜାପାନୀ ବାର ବିଳାସିନୀ ପ୍ରଭୃତିଙ୍କୁ ନେଇ ଆମୋଦ ପ୍ରମୋଦ କରନ୍ତି । ସ୍ତ୍ରୀ ସେଥିରେ ବିମର୍ଷ ହୁଏ ନାହିଁ କିମ୍ବା ବାଧା ଦିଏ ନାହିଁ । ଜାପାନ ରମଣୀଙ୍କର କ୍ଷମା ଗୁଣ ଜଗତରେ ଅନୁକରଣୀୟ ।

ପ୍ରଚଣ୍ଡ ଶୀତରେ ଜାପାନ ରମଣୀ ଖୁବ୍ ଭୋରରୁ ଉଠି ଘର କାମ ସାରି ସାମାନ୍ୟ କିଛି ଖାଇ ଶିଶୁ ସନ୍ତାନକୁ ପିଠିରେ ବାନ୍ଧି ଫାକ୍ଟରିରେ କାର୍ଯ୍ୟ କରିବାକୁ ଯାଏ । ସେଠାରେ ଶ୍ରମେ ଓ ସାଧ୍ୟେ, କୌଶଳେ ଓ ନୈପୁଣ୍ୟେ ପୁରୁଷ ଶ୍ରମଜୀବୀଙ୍କୁ ପରାସ୍ତ କରି ସମସ୍ତ ଦିନ ପରିଶ୍ରମ କରେ । ଦିନାବସାନରେ ସ୍ମିତ ମୁଖରେ ଗୃହକୁ ଫେରି ସ୍ୱାମୀସେବାରେ ଆତ୍ମନିୟୋଗ କରେ । ପ୍ରଚଣ୍ଡ ଗ୍ରୀଷ୍ମ ଦିନରେ ସାରା ରାତି ଜାଗି ସ୍ୱାମୀଙ୍କର କ୍ଳିଷ୍ଟ ମସ୍ତକକୁ ବ୍ୟଜନ କରେ । ଜାପାନର ପୁରୁଷ ଓ ରମଣୀର ପରିଚ୍ଛଦ ପ୍ରାୟ ଏକପ୍ରକାର । ଜାପାନୀ ରମଣୀ ବଡ଼ ପୁଷ୍ପପ୍ରିୟା ।

ମୃତ୍ୟୁରେ ଜାପାନ ରମଣୀ କାତର ହୁଅନ୍ତି ନାହିଁ । ଶିଶୁ ସନ୍ତାନ ମୃତ୍ୟୁରେ ଜନନୀ ଅଧୀର ହୁଅନ୍ତି ନାହିଁ । ଅକସ୍ମାତ୍ ବିପଦ୍ ପାତରେ ସେମାନେ ଅବିଚଳିତ । ସେବା ଧର୍ମରେ ଜାପାନ ରମଣୀ ଅଦ୍ୱିତୀୟା । ଜାପାନର ହାସପାତାଳରେ ଧନବତୀ ଯୁବତୀଗଣ ନିଜ ଇଚ୍ଛାରେ ରୋଗୀ ସେବାରେ ଆତ୍ମନିୟୋଗ କରନ୍ତି ।

ମିତବ୍ୟୟିତାରେ ଓ ଗୃହକାର୍ଯ୍ୟନୈପୁଣ୍ୟରେ ଜାପାନ ରମଣୀର ତୁଳନା ନାହିଁ । ଗୃହକୁ ପରିଷ୍କାର ପରିଚ୍ଛନ୍ନ କରି ସଜାଇ ରଖନ୍ତି । ପୁଣି ଗୃହର ପ୍ରତ୍ୟେକ ଆବର୍ଜନା ଏପରିକି ଛିନ୍ନକେଶ ପର୍ଯ୍ୟନ୍ତ ଅତି ଯତ୍ନରେ ରଖି ସଦ୍‌ବ୍ୟବହାର କରନ୍ତି । ଏମାନଙ୍କ ଯତ୍ନ ହେତୁ ସ୍ୱାମୀ ଅର୍ଥ କଷ୍ଟ ବୁଝି ପାରନ୍ତି ନାହିଁ । ଗୃହରେ ଚିର ଶାନ୍ତି ଓ ହାସ୍ୟ ତରଙ୍ଗର ପରିମଳ ପ୍ରବାହ ସର୍ବଦା ବହୁଥାଏ । ଏ ଦେଶର ବିବାହ ପଦ୍ଧତି ଆମ ପରି ଚିରସ୍ଥାୟୀ ବନ୍ଦୋବସ୍ତ ନୁହେ । ଜାପାନ ରମଣୀଙ୍କର ପରିଷ୍କାର ପରିଚ୍ଛନ୍ନତାର ରୁଚି ସମଧିକ ପ୍ରଶଂସନୀୟ କିନ୍ତୁ ସେଥିରେ ବିଳାସ ଲାଳସା ନାହିଁ ।

ଦୋଷ ମଧ୍ୟରେ ଏମାନେ ପୁରୁଷଙ୍କ ସହିତ ଏକ ସ୍ନାନାଗାରରେ ଏବଂ ସ୍ଥାନ ବିଶେଷରେ ଏକ ଟବ୍‌ରେ ବିବସ୍ତ୍ରାବସ୍ଥାରେ ସ୍ନାନ କରନ୍ତି । ଏମାନେ ତୈଳ ଭୂଷଣ ଓ ମର୍ଦ୍ଦନକୁ ଅତ୍ୟନ୍ତ ଘୃଣିତ ମନେ କରନ୍ତି କିନ୍ତୁ କେଶର ସୌନ୍ଦର୍ଯ୍ୟ ବର୍ଦ୍ଧନ ପାଇଁ ସୁଗନ୍ଧ ତୈଳ ଏପରି କି କଞ୍ଚା ଡିମ୍ବ ପର୍ଯ୍ୟନ୍ତ ବ୍ୟବହାରରେ ମଧ୍ୟ ଘୃଣାବୋଧ କରନ୍ତି ନାହିଁ ।



# ଜାପାନ ତଥ୍ୟ

ଜାପାନର କଳକାରଖାନାସମୂହରେ ୫ ଭାଗରୁ ୪ ଭାଗ କାର୍ଯ୍ୟ ସ୍ତ୍ରୀଲୋକମାନେ କରନ୍ତି ।

ଜାପାନର ପରିବାରିକ ବନ୍ଧନ ଏପରି ସୁଦୃଢ଼ ଓ ସନ୍ନିବଦ୍ଧ ଯେ, ବ୍ୟକ୍ତିତ୍ୱର କୌଣସି ଛିଦ୍ରଅଳ ଗ୍ରାହ୍ୟ ହୁଏ ନାହିଁ ।

ଜାପାନୀ ପୁରୁଷମାନେ ରାଜସରକାରଙ୍କ ଆଦେଶ ବ୍ୟତୀତ କୌଣସି ପ୍ରକାର ପାଶ୍ଚାତ୍ୟ ଅନୁକରଣପ୍ରିୟତା ଅବଲମ୍ବନ କରି ପାରନ୍ତି ନାହିଁ ।

ଜାପାନର ବାଳକ ବାଳିକାମାନଙ୍କ ଗାତ୍ରରେ ସେମାନଙ୍କ ଗୃହର ଠିକଣା ଲେଖାଥାଏ । ସେମାନେ ପଥଭ୍ରଷ୍ଟ ହେଲେ ଯେ କୌଣସି ବ୍ୟକ୍ତି ସେମାନଙ୍କୁ ଗୃହରେ ପହଞ୍ଚାଇ ଦେଇପାରେ ।

ପ୍ରାୟ ୪୦ ବର୍ଷ ପୂର୍ବେ ଜାପାନରେ ଖଣ୍ଡିଏ ମାତ୍ର ସମ୍ବାଦ ପତ୍ର ଥିଲା । ବର୍ତ୍ତମାନ ତାହାର ସଂଖ୍ୟା ଦୁଇ ସହସ୍ରରୁ ଅଧିକ । ତଦ୍‌ଭିନ୍ନ କୌଣସି କୌଣସି ପେସେଞ୍ଜର ଟ୍ରେନରେ ସମ୍ବାଦ-ପାଠ ନିମନ୍ତେ ପୃଥକ୍ ଗାଡ଼ି ସଂଯୋଜିତ ଥାଏ ।

ଜାପାନୀମାନଙ୍କ ପରି ଅଳ୍ପରେ ସନ୍ତୁଷ୍ଟ ଅଥଚ ପରିଚ୍ଛନ୍ନ ଜାତି ଜଗତରେ ଅତି ଅଳ୍ପ ପରିଦୃଷ୍ଟ ହୁଅନ୍ତି । ଆନନ୍ଦ, ହାସ୍ୟ ଏବଂ ଆଶା ଜାପାନୀ ଆବାଳବୃଦ୍ଧବନିତାଙ୍କର ଚିର-ସହଚର ।

ଜାପାନରେ ପ୍ରାୟ ଦୁଇଶତ ଦିଆସିଲି କାରଖାନା ଅଛି ଏବଂ ସେଥିରେ ପ୍ରାୟ ୭୦ ହଜାରରୁ ଅଧିକ ଲୋକ ଜୀବିକା ଅର୍ଜ୍ଜନ କରନ୍ତି । ସେଠାରେ ଯେତେ ଦିଆସିଲି ପ୍ରସ୍ତୁତ ହୁଏ, ତାହାର ତିନିଭାଗରୁ ଦୁଇଭାଗ ବିଦେଶକୁ ପ୍ରେରିତ ହୋଇ ଥାଏ ।



# ପୃଥିବୀରେ ଲାଇଫ୍ ଇନ୍‌ସିଓରାନ୍ସ

କେତେକ ପ୍ରଧାନ ପ୍ରଧାନ ଦେଶର ଲୋକେ କେତେ ଟଙ୍କାର ଲାଇଫ୍ ଇନ୍‌ସିଓରାନ୍ସ କରିଅଛନ୍ତି ତାହାର ହିସାବ :—

| | |
|---|---|
| ଆମେରିକା— | ଟ ୬୪୦୦୦ ( କୋଟି |
| କାନାଡ଼ା | ଟ ୧୩୦୦୦ ( କୋଟି |
| ଇଂଲଣ୍ଡ | ଟ ୭୦୦୦ ( କୋଟି |

ଜାପାନ ୫୨୦୦ କୋଟି
ଭାରତବର୍ଷ ୫୬୬ କୋଟି ପ୍ରାୟ
( ଜଣପିଛା ୫ ୨ ହିସାବରେ )

ଇନ୍‌ସିଓରନ୍ସ ଫଣ୍ଡରେ

| | |
|---|---|
| ଆମେରିକାରେ | ୪୫୦୦ କୋଟି ଟଙ୍କା |
| କାନଡ଼ାରେ | ୩୦୦୦ କୋଟି ଟଙ୍କା |
| ଇଂଲଣ୍ଡରେ | ୧୬୦୦ କୋଟି ଟଙ୍କା |
| ଜାପାନରେ | ୬୦୦ କୋଟି ଟଙ୍କା |
| ଭାରତବର୍ଷରେ | ୧୬ କୋଟି ଟଙ୍କା |

ଗଚ୍ଛିତ ଅଛି ।

ଭାରତବର୍ଷରେ ୬୧ ଟି ଦେଶୀ ଇନ୍‌ସିଓରନ୍ସ କମ୍ପାନୀ ଓ ୨୦ଟି ବିଦେଶୀ ବୀମା କମ୍ପାନୀ ଅଛି ।

## ପୃଥିବୀର ଶ୍ରେଷ୍ଠ ଧନକୁବେର

| ନାମ | ସମ୍ପତ୍ତିର ମୂଲ୍ୟ |
|---|---|
| ( ୧ ) ହେନ୍‌ରି ଫୋର୍ଡ | ୧୧୦,୦୦୦,୦୦୦ |
| ( ୨ ) ଜନ ଡି ରକ୍ ଫେଲର | ୧୦୦,୦୦୦,୦୦୦ |
| ( ୩ ) ଡିଉକ୍ ଅଵ୍ ଓଏଷ୍ଟମିନଷ୍ଟାର | ୩୦,୦୦୦,୦୦୦ |
| ( ୪ ) ମି: ଏଣ୍ଡ୍ରୁ ମେଲନ | ୩୦,୦୦୦,୦୦୦ |
| ( ୫ ) ସ୍ୟାର ବେସିଲ ଜେଟୋରଫ୍ | ୨୦,୦୦୦,୦୦୦ |
| ( ୬ ) ହୁଗୋ ଷ୍ଟିନେସ୍ | ୨୦,୦୦୦,୦୦୦ |
| ( ୭ ) ପାର୍ଶୀ ରକେଫେଲର | ୨୦,୦୦୦,୦୦୦ |
| ( ୮ ) ବ୍ୟାରନ୍ ଏଇଚ ଥିସେନ୍‌ଗୁଇ | ୨୦,୦୦୦,୦୦୦ |
| ( ୯ ) ,, ଇଫ୍ରୋସି | ୨୦,୦୦୦,୦୦୦ |
| (୧୦) ବରୋଦାର ଗାଇକୋୱାର | ୨୦,୦୦୦,୦୦୦ |

ପୃଥିବୀରେ କେହି ସବୁଦିନେ ଧନୀ ହୋଇ ରହି ପାରିବ ନାହିଁ । ଯେଉଁମାନେ କିଛିଦିନ ପୂର୍ବେ ଧନୀ ଥିଲେ ସେମାନଙ୍କ ସ୍ଥାନ ବର୍ତ୍ତମାନ ଅନ୍ୟ ଲୋକ ଅଧିକାର କଲେଣି, ବର୍ତ୍ତମାନ-ଯୁଗର ଶ୍ରେଷ୍ଠ ଧନୀଙ୍କ ମଧ୍ୟରୁ ପ୍ରଥମ ୧୬ ଜଣଙ୍କ ନାମ ଦିଆଗଲା ।

| | | |
|---|---|---|
| ୧ । | ଏଡସେଲ୍ ଫୋର୍ଡ | ଆମେରିକା |
| ୨ । | ହେନେରି ଫୋର୍ଡ | ,, |
| ୩ । | ଲିଥ୍ ଗୁଇବଡ | ଫ୍ରାନ୍ସ |
| ୪ । | ଡିଉକ୍ ଅଫ୍ ଓଏଷ୍ଟମିନଷ୍ଟର | ଇଂଲଣ୍ଡ |
| ୫ । | ଜର୍ମାନୀର କାଇଜର | ଜର୍ମାନୀ |
| ୬ । | ବରୋଦାର ଗାଇକ୍‌ବାଡ଼ | ଭାରତ |
| ୭ । | ସର୍ ବାସିଲ୍ ଜାହାରଫ୍ | ଗ୍ରୀସ |
| ୮ । | ସାଇମନ୍ ପଟନ୍ | ବଲଭିଆ |
| ୯ । | ଲର୍ଡ ଇଭେ | ଇଂଲଣ୍ଡ |
| ୧୦ । | ଆଗାଖାଁ । | ଭାରତ |
| ୧୧ । | ହାଇଦ୍ରାବାଦର ନିଜାମ | ,, |
| ୧୨ । | ଜ୍: ଭର୍ଣ୍ଣେଲ୍ | ଫ୍ରାନ୍ସ |
| ୧୩ । | ରକ୍‌ଫେଲ୍‌ର | ଆମେରିକା |
| ୧୪ । | ଡ୍ରେଫସ୍ | ଫ୍ରାନ୍ସ |
| ୧୫ । | ମେଲନ୍ | ଆମେରିକା |
| ୧୬ । | ଥାଇସେନ | ଜର୍ମାନୀ |

## ଇଉରୋପର ଧନକୁବେର

ଜର୍ମାନରେ ସେମାନଙ୍କର ନିର୍ବାସିତ ଭୂତପୂର୍ବ ରାଜା ଉଇଲ୍‌ହେମଙ୍କ ପରି ଧନୀ ଅନ୍ୟ କେହି ନାହାନ୍ତି । ବର୍ତ୍ତମାନ ତାଙ୍କ ନିକଟରେ ଗଚ୍ଛିତ ଧନରାଶିର ପରିମାଣ ୭୫୦୦୦୦୦ ପାଉଣ୍ଡ ଠାରୁ ୧୨୫୦୦୦୦୦ ପାଉଣ୍ଡ ପର୍ଯ୍ୟନ୍ତ ଅର୍ଥାତ୍ ପ୍ରାୟ ୧୫କୋଟି ଟଙ୍କା ହେବ । ସେ ଦେଶରେ ଆଉ ଦୁଇଜଣ ଲୌହ ବ୍ୟବସାୟୀ ଫ୍ଲିକ୍ ଓ ଥାଇସେନ୍ ମଧ୍ୟ ସାମାନ୍ୟ ବିଭବଶାଳୀ ନୁହନ୍ତି ।

ଫରାସୀ ଦେଶର ସର୍ବ ପ୍ରଧାନ ଧନୀଙ୍କର ନାମ ଏମ୍, ଫ୍ରାଙ୍କୋଇଜ୍ କୋଟି । ସୁଗନ୍ଧଦ୍ରବ୍ୟ ଓ ପାଉଡ଼ର ବ୍ୟବସାୟ କରି ସେ ପ୍ରଭୂତ ଧନ ଅର୍ଜନ କରିଅଛନ୍ତି । ଏହାଙ୍କ ଛଡ଼ା ମଟର ବ୍ୟବସାୟୀ ଦୁଇଜଣ ସିଟ୍ରୋଏନ୍ ଓ ରେନୋ ମଧ୍ୟ ଧନୀ ।

ଯୁଗୋସ୍ଲେଭିଆର ଆର୍ଥର ଡାଟଙ୍କର ଗଚ୍ଛିତ ଧନର ପରିମାଣ ୨୦,୦୦୦୦୦୦ପାଉଣ୍ଡ । ତାଙ୍କର ବ୍ୟବସାୟ କରତ କଳ ଓ କାଠ । ଜର୍ଜ ଉଏଫ୍ରେଲ୍‌ଙ୍କର ଗଚ୍ଛିତ ଧନର ପରିମାଣ ୧୬୦୦୦୦୦୦ ପାଉଣ୍ଡ । ଲୁହା, ତମ୍ବା ପ୍ରଭୃତ ଖନିଜଦ୍ରବ୍ୟରେ ସେ ବ୍ୟବସାୟ କରନ୍ତି । ଅଣ୍ଡ୍ରେଜ୍ ସାରବୋନ୍‌ଙ୍କର ଗଚ୍ଛିତ

ଏହାଙ୍କ ସଙ୍ଗେ ଲଢ଼ି ଏହି ।

ଧନର ପରିମାଣ ୩୨୦୦୦୦୦ ପାଉଣ୍ଡ । ଇନ୍ଦ୍ରଜ୍ୟୁରର ପୁସ୍ତକ ପ୍ରକାଶ କରି ଓ ବ୍ୟାଙ୍କମାନ ବସାଇ ସେ ଏ ବିପୁଳ ସମ୍ପଦ ଲାଭ କରି ଅଛନ୍ତି ।

ବୁଲଗେରିଆର ସର୍ବାପେକ୍ଷା ଅଧିକ ଧନଶାଳୀଙ୍କର ସଞ୍ଚିତ ଧନର ପରିମାଣ ପ୍ରାୟ ୭୦୦୦୦ ପାଉଣ୍ଡରୁ ବେଶୀ ନୁହେଁ ।

ପ୍ରିନ୍ସପଲ ଇଷ୍ଟେରହେଜି ହଙ୍ଗେରିର ସର୍ବପ୍ରଧାନ ଧନୀ । ତାଙ୍କ ଭୂସମ୍ପତ୍ତିର ପରିମାଣ ୩୦୦୦୦୦ ହଜାର ଏକର ଅର୍ଥାତ୍ ହଙ୍ଗେରିର ଗୃହ ଜମିର ଷାଠିଏ ଭାଗରୁ ଭାଗେ ।

ପୋଲାଣ୍ଡର ସର୍ବପ୍ରଧାନ ଧନୀ କାଉଣ୍ଟ ଆଲଫ୍ରେଡ୍ ପୋଟୋକି ବିଶାଳ ଭୂସମ୍ପତ୍ତିର ଅଧିକାରୀ । ତାଙ୍କ ସଞ୍ଚିତ ଧନର ପରିମାଣ ସହଜରେ ଧାରଣା କରି ହେବ ନାହିଁ । ଅଫ୍ରିକାର ଗୋଟିଏ ପଶୁ ଶିକାରରେ ସେ ୫୦୦୦୦୦ ପାଉଣ୍ଡ ଅର୍ଥାତ୍ ୭ଲକ୍ଷ ଟଙ୍କା ବ୍ୟୟ କରିଥିଲେ ।

ଉର୍ଟ୍ଟେମ୍ବର୍ଗ ଟିଲି ମାନାସ ନାମକ ଏକ ଜର୍ମାନ ନୁଏନ୍ସଆର ସର୍ବପ୍ରଧାନ ଧନଶାଳୀ । ସ୍ଟ୍ରୁ ପିରିଖକଣ୍ଠା ବ୍ୟବସାୟ କରି ସେ ପ୍ରଭୂତ ଅର୍ଥ ଉପାର୍ଜନ କରି ଅଛନ୍ତି ।

ଭନ୍ ମିହେଲ ରୁମାନିଆର ସର୍ବ ପ୍ରଧାନ ଧନଶାଳୀ ବ୍ୟକ୍ତି । ତାଙ୍କର ସଞ୍ଚିତ ଧନର ପରିମାଣ ଏତେ ଯେ, ସେ ସମସ୍ତ ସେ ସୁବର୍ଣ୍ଣ ଇଷ୍ଟକ ନିର୍ମିତ ବେଷ୍ଟନୀରେ ସଞ୍ଚିତ କରି ରଖିଅଛନ୍ତି । ତାଙ୍କର କେହି ନାହାନ୍ତି । ସେ ଏପରି ଧନୀ ହୋଇ ସୁଦ୍ଧା ସାଧାରଣ ଲୋକ ପରି ଚଳନ୍ତି ।



## ପୃଥିବୀର ପ୍ରାଚୀନ ସପ୍ତ ଆଶ୍ଚର୍ଯ୍ୟ

୧ । ଇଜିପ୍ଟର ପିରାମିଡ଼ ।
୨ । ବାବିଲନର ପ୍ରାଚୀର ଓ ଝୁଲୁଥିବା ବଗିଚା ।
୩ । ମୋସଲର ଟୁମ୍ ।
୪ । ଏଫିସସ୍‌ର ଡାଏନା ମନ୍ଦିର ।
୫ । ରୋଡ଼ସ୍‌ର କୋଲୋସସ୍ ।
୬ । ଜୁପିଟରର ଓ ଲିମ୍ପସଙ୍କ ହାତୀଦାନ୍ତ ଓ ସୁନାମୂର୍ତ୍ତି ।
୭ । ଅଲେକଜାଣ୍ଡ୍ରିଆର ଫାରୋସ (Watch tower) ।

## ପୃଥିବୀର ଦୀର୍ଘତମ ରେଲୱେ ପ୍ଲାଟଫର୍ମ

| | |
|---|---|
| ସୋନପୁର (ବି.ଏନ,ଡବଲଇଉ, ଆର-ଭାରତ) | ୨୪୧୫ ଫୁଟ |
| ଖଡ଼ଗପୁର (ବି. ଏନ, ଆର-ଭାରତ) | ୨୩୫୦ ,, |
| ନଉ ଲକ୍ଷ୍ନୌ ଷ୍ଟେସନ (ଇ, ଆଇ, ଆର-ଭାରତ) | ୨୨୫୦ ,, |
| ମାଞ୍ଚେଷ୍ଟର ଭିକ୍ଟୋରିଆ ଏକ୍ସଚେଞ୍ଜ (ଏଲ. ଏମ. ଏସ୍, ଇଂଲଣ୍ଡ) | ୨୧୯୪ ଫୁଟ |
| ବେଜବାଡ଼ା (ଏମ୍, ଏସ୍, ଏମ ଆର-ଭାରତ) | ୨୧୦୦ ,, |
| ଝରିଆ (ଇ, ଆଇ, ପି. ଆର-ଭାରତ) | ୨୦୨୫ ,, |
| କୋଟ୍ରି (ଏନ୍ ଡ଼ବଲଇଉ, ଆର-ଭାରତ) | ୧୮୯୬ ,, |
| ମାଣ୍ଡାଲେ (ବର୍ମା ରେଲୱେ) | ୧୭୮୮ ,, |
| ବୋର୍ଣ୍ଣମାଉଥ (ଇଂଲଣ୍ଡ-ଏସ,ଆର) | ୧୭୪୮ ,, |

## ଦୀର୍ଘତମ ରେଲପୋଲ

| | |
|---|---|
| ସେଣ୍ଟଲୁଇସ ମିଉନସ୍‌ପାଲ (ଯୁକ୍ତରାଜ୍ୟ ଆମେରିକା) | ୧୭୧୨୨ ଫୁଟ |
| ହେଲଗେଟ (ନିଉୟର୍କ ଆମେରିକା) | ୧୭୮୬୮ ,, |
| ଟେ (ସ୍କଟଲାଣ୍ଡ) | ୧୦୭୧୧ ,, |
| ସୋନ ବ୍ରିଜ (ଭାରତ) | ୧୦୦୫୨ ,, |
| ଡେଲାବାର ରିଭର (ଯୁକ୍ତରାଜ୍ୟ ଆମେରିକା) | ୯୫୭୦ ,, |
| ଭିକ୍ଟୋରିଆ (କାନଡ଼ା) | ୮୪୦୦ ,, |
| ହାର୍ଡିଞ୍ଜ ବ୍ରିଜ (ଭାରତ) | ୫୮୦ ,, |

## ପୃଥିବୀର ରେଲ ଲାଇନ୍

ଏ ପର୍ଯ୍ୟନ୍ତ ସାରା ପୃଥିବୀରେ ଯେ ସମସ୍ତ ରେଲ ଲାଇନ୍ ନିର୍ମିତ ହୋଇଅଛି, ସେ ସମସ୍ତ ପାଇ ୧୨୫୦୦୦୦,୦୦୦ ପାଉଣ୍ଡ ଅର୍ଥାତ୍ ୧୨୩୩୩୩୩୩୩୩୩୩ ରୁ ଅଧିକ ଅର୍ଥ ବ୍ୟୟିତ ହୋଇଅଛି । କେବଳ ଇଉରୋପ ମହାଦେଶର ରେଲ ଲାଇନ ଗୁଡ଼ିକରେ ଏହି ମୂଳଧନର ପ୍ରାୟ ଅର୍ଦ୍ଧେକ ବ୍ୟୟିତ ହୋଇଅଛି । ଆମେରିକାର ଯୁକ୍ତରାଜ୍ୟର ଏ ବାଟରେ ୧୩୦୦୦୦୦୦୦୦୦ ବା ୧୭୩୩୩୩୩୩୩୩୩ ଖର୍ଚ୍ଚ କରି ସାରି ଅଛି । ଇଉରୋପର ରେଲ ଲାଇନ୍ ଗୁଡ଼ିକରେ ଯେତେ ଅର୍ଥ

ବ୍ୟୟିତ ହୋଇଅଛି, ତାହାର ହିସାବ କଲେ ପ୍ରତି ମାଇଲରେ ୨୭୧୫୦ ପାଉଣ୍ଡ ବା ଟ ୩୮୭୦୦୦ ଖର୍ଚ୍ଚ ହୋଇ ଥିବାର ଜଣାଯାଏ। କିନ୍ତୁ ପୃଥିବୀର ଅନ୍ୟାନ୍ୟ ଦେଶରେ ଯେ ସକଳ ରେଲ ଲାଇନ୍ ଅଛି ସେ ଗୁଡ଼ିକର ମାଇଲ ପ୍ରତି ଖର୍ଚ୍ଚର ହିସାବ କଲେ ଜଣାଯାଏ ଯେ, ସେ ସବୁଥିରେ ମାଇଲ ପ୍ରତି ହାରାହାରି ୧୧୪୦୨ ପାଉଣ୍ଡ ବା ଟ ୧୫୨୦୨୭ ଖର୍ଚ୍ଚ ହୋଇଅଛି। ଗ୍ରେଟ୍‌ବ୍ରିଟେନର ରେଲ ରାସ୍ତା ଗୁଡ଼ିକରେ ପୃଥିବୀର ଅନ୍ୟାନ୍ୟ ଦେଶ ତୁଳନାରେ ସର୍ବାପେକ୍ଷା ଅଧିକ ଅର୍ଥ ବ୍ୟୟିତ ହୋଇଅଛି ଅର୍ଥାତ୍ ଗ୍ରେଟ୍‌ବ୍ରିଟେନର ରେଲ ରାସ୍ତା ଗୁଡ଼ିକରେ ସର୍ବମୋଟ ଖର୍ଚ୍ଚ ୫୧୩୬୮ ପାଉଣ୍ଡ ବା ୬୮୪୯୦୭ ଅଟେ। ବେଲ୍‌ଜିୟମ ଏ ବିଷୟରେ ପୃଥିବୀର ଦ୍ୱିତୀୟ ଏବଂ ତାହାର ସର୍ବମୋଟ ଖର୍ଚ୍ଚର ପରିମାଣ ୩୦୦୪୮ ପାଉଣ୍ଡ ବା ଟ ୪୦୦୬୪୦୮ ଅଟେ। ପୃଥିବୀରେ ଏ ପର୍ଯ୍ୟନ୍ତ ଯେତେ ରେଲରାସ୍ତା ପ୍ରସ୍ତୁତ ହୋଇଅଛି ସେ ସମସ୍ତ ସର୍ବମୋଟ ଦୈର୍ଘ୍ୟ ହେଉଛି ପ୍ରାୟ ୬୭୫୦୦୦ ମାଇଲ। ନିମ୍ନରେ ପ୍ରଧାନ୨ କେତେକ ଦେଶର ରେଲ ଲାଇନ୍ ମାନଙ୍କର ସର୍ବମୋଟ ଦୈର୍ଘ୍ୟ ପ୍ରଦତ୍ତ ହେଲା।



# ପୃଥିବୀର ବଡ଼ ବଡ଼ ଜିନିଷ

ଗଛ—ଆମେରିକାର କାଲିଫର୍ଣ୍ଣିଆରେ ଏକ ଗଛ ଅଛି। ତାହାର ଉଚ୍ଚତା ୨୭୬ ଫୁଟ ଓ ମୋଟ ଫୁ ୧୦୮ ଟ। ସେ ଗଛ ପୁରୀ ଜଗନ୍ନାଥଙ୍କ ଦେଉଳର ପ୍ରାୟ ଦେଢ଼ଗୁଣ।

ଘଣ୍ଟା—ରୁଷିଆର ମସ୍କୋ ନଗରରେ ଯେଉଁ ଘଣ୍ଟା ଅଛି ତାହାର ପରିଧି ଫୁ ୮୭ ଟ ଓ ଉଚ୍ଚତା ଫୁ ୨୧ ଟ। ଓଜନ ବାଲେଶ୍ୱରୀ ୫୪୨୧ ମହଣ

ମନ୍ଦିର—ଆଫ୍ରିକା ମହାଦେଶର ମିଶର ଦେଶରେ ପିରାମିଡ୍ ନାମକ ଯେଉଁ ସମାଧି ମନ୍ଦିର ମାନ ଅଛି, ସେମାନଙ୍କ ମଧ୍ୟରେ ସବୁଠାରୁ ବଡ଼ ମନ୍ଦିରର ଉଚ୍ଚତା ଫୁ ୪୫୦ ଟ। ତାହା ପ୍ରାୟ ପୁରୀ ଜଗନ୍ନାଥଙ୍କ ମନ୍ଦିରର ୩ଗୁଣ।

ପ୍ରଶାନ୍ତ ମହାସାଗର ଜଳଭାଗମାନଙ୍କ ମଧ୍ୟରେ ସର୍ବାପେକ୍ଷା ବୃହତ୍ତମ ଓ ଆଟଲାଣ୍ଟିକ ମହାସାଗର ସର୍ବାପେକ୍ଷା ଗଭୀରତମ। ପ୍ରଶାନ୍ତ ମହାସାଗରର କ୍ଷେତ୍ରଫଳ ୬୩ ଲକ୍ଷ ୧୮ ହଜାର ୬ ଶହ ବର୍ଗମାଇଲ ଅଟେ।

ଜଳପ୍ରପାତ ମାନଙ୍କ ମଧ୍ୟରେ ଆମେରିକାର ନାଏଗ୍ରା ଜଳପ୍ରପାତ ବୃହତ୍ତମ ଏହି ପ୍ରପାତରେ ପ୍ରତିଘଣ୍ଟାରେ ୧୦କୋଟି ଘନଫୁଟ ଜଳ ପ୍ରବାହିତ ହୁଏ।

ଗଭୀରତମ ପ୍ରପାତମାନଙ୍କ ମଧ୍ୟରେ ବ୍ରିଟିଶ ଗାଏନାର କାଇଏଟିଉର୍ ସର୍ବଶ୍ରେଷ୍ଠ ଓ ତାହାର ଗଭୀରତା ୭୪୧ ଫୁଟ।

କେନାଲମାନଙ୍କମଧ୍ୟରେ ସୁଏଜ କେନାଲ ଦୀର୍ଘତମ। ଏହାର ଦୈର୍ଘ୍ୟ ୧୦୦ ମାଇଲ ଅଟେ।

ଦକ୍ଷିଣ ଆମେରିକାର ଆମେଜନ ନଦୀ ଅବବାହିକାରେ ଯେଉଁ ଅରଣ୍ୟ ଅଛି, ତାହା ସମସ୍ତଙ୍କ ଅପେକ୍ଷା ନିବିଡ଼ତମ।

ନିଉଜିଲାଣ୍ଡର ସଦରଲଣ୍ଡ ପ୍ରପାତ ସର୍ବାପେକ୍ଷା ଉଚ୍ଚତମ ଏହାର ଉଚ୍ଚତା ୧୯୦୪ ଫୁଟ। କାଲିଫର୍ଣ୍ଣିଆର ରିବନ୍ ପ୍ରପାତ ୧୬୧୨ ଫୁଟ ଓ ବ୍ରିଟିଶ ଗାଏନାର ରୋରାଇମ ପ୍ରପାତର ଉଚ୍ଚତା ୧୫୦୦ ଫୁଟ।

ମରୁଭୂମିମାନଙ୍କ ମଧ୍ୟରେ ଆଫ୍ରିକା ମହାଦେଶର ସାହାରା ମରୁଭୂମି ସର୍ବାପେକ୍ଷା ବୃହତ୍ତମ। ସମଗ୍ର ଇଉରୋପ ମହାଦେଶର କ୍ଷେତ୍ରଫଳ ସହିତ ଏହାର କ୍ଷେତ୍ରଫଳ ପ୍ରାୟ ସମାନ।

ପାର୍କ (ବିହାରୋଦ୍ୟାନ) ମାନଙ୍କ ମଧ୍ୟରେ ଆମେରିକା ଯୁକ୍ତରାଜ୍ୟର ୟେଲୋ ଷ୍ଟୋନ୍ ନେସନାଲ୍ ପାର୍କ ସର୍ବାପେକ୍ଷା ବୃହତ୍ତମ। ଏହାର କ୍ଷେତ୍ରଫଳ ୩୩୫୦ ବର୍ଗମାଇଲ ଅଟେ।

ସ୍କଟଲାଣ୍ଡର 'ଟେ' ନଦୀ ଉପରେ ଯେଉଁ ପୋଲ ଅଛି ତାହା ସର୍ବାପେକ୍ଷା ଦୀର୍ଘତମ ଓ ତାହାର ଦୈର୍ଘ୍ୟ ୨ମାଇଲ ଅଟେ

ନଗରମାନଙ୍କ ମଧ୍ୟରେ ଲଣ୍ଡନ ନଗର ସର୍ବାପେକ୍ଷା ବୃହତ୍ତମ। ଏହାର ଲୋକସଂଖ୍ୟା ୮୭ଲକ୍ଷ ୪୭ହଜାର ୧ଶହ୪୩।

ଅଟ୍ଟାଳିକା ମାନଙ୍କ ମଧ୍ୟରେ ନିଉୟର୍କର ଏମ୍ପାୟାର ଷ୍ଟେଟ୍ ବିଲଡ଼ିଂ (The Empire State Building) ସର୍ବାପେକ୍ଷା ଉଚ୍ଚତମ। ଏହାର ଉଚ୍ଚତା ୧୨୪୮ ଫୁଟ ଓ ତାହା ୧୦୫ ତଳ ବିଶିଷ୍ଟ ଅଟେ।

ନିଉୟର୍କର କ୍ରାଇସ୍‌ଲେର ଟାଉଆର ଦ୍ୱିତୀୟ ଅଟ୍ଟାଳିକା ଓ ତାହାର ଉଚ୍ଚତା ୧୦୩୦ ଫୁଟ।

ପାରିସ୍‌ର ଏଫିଏଲ ଟାଉଆର ତୃତୀୟ ଅଟ୍ଟାଳିକା ଓ ତାହାର ଉଚ୍ଚତା ୯୮୪ ଫୁଟ।

ପର୍ବତ ମାନଙ୍କ ମଧ୍ୟରେ ମାଉଣ୍ଟ ଏଭରେଷ୍ଟ ସର୍ବାପେକ୍ଷା ବୃହତ୍ତମ ଓ ତାହାର ଉଚ୍ଚତା ୨୯୧୪୧ ଫୁଟ

ଗଡୱିନ ଅଷ୍ଟିନର ଉଚ୍ଚତା ୨୮୨୭୮ ଫୁଟ

ମାଉଣ୍ଟ କାମେଟ୍‌ର ଉଚ୍ଚତା ୨୫୪୪୭ ଫୁଟ

ଉଚ୍ଚତମ ନଗରମାନଙ୍କ ମଧ୍ୟରେ ଆଣ୍ଡିଜ୍ ପର୍ବତ ଉପରେ କେରୋ ଡ ପାସ୍କୋ ( Corro de Pasco ) ସର୍ବ ପ୍ରଥମ । ତାହାର ଉଚ୍ଚତା ୧୪ ହଜାର ୨ ଶହ ୮୦ ଫୁଟ ଅଟେ ।

ପକ୍ଷୀମାନଙ୍କ ମଧ୍ୟରେ ଉଷ୍ଟ୍ରପକ୍ଷୀ ବୃହତ୍ତମ । ଏମାନଙ୍କର ଉଚ୍ଚତା ୮ ଫୁଟ ପର୍ଯ୍ୟନ୍ତ ହୁଏ ।

ସ୍ତନ୍ୟପାୟୀ ପଶୁମାନଙ୍କ ମଧ୍ୟରେ ଗଧର ପରମାୟୁ ସର୍ବାପେକ୍ଷା ଅଧିକ ।

ଧାତବ ପଦାର୍ଥମାନଙ୍କ ମଧ୍ୟରେ ପ୍ଲାଟିନମ୍ ଗୁରୁତ୍ୱରେ ସର୍ବାପେକ୍ଷା ଅଧିକ । ଏକ ଘନଫୁଟ ପ୍ଲାଟିନମ୍‌ର ଓଜନ ୧୧୫୦ ପାଉଣ୍ଡ । ୧ ପାଉଣ୍ଡ ବାଟଲେଣ୍ଡ୍ସ ଅଧସେର ।

ବ୍ୟୋମଯାନମାନଙ୍କ ମଧ୍ୟରେ 'ଆର୍ ୧୦୦' ନାମକ ବ୍ରିଟିଶ ବ୍ୟୋମଯାନ ସର୍ବାପେକ୍ଷା ବୃହତ୍ତମ । ଏଥିରେ ୧୦ ଲକ୍ଷ ପାଉଣ୍ଡ ଖର୍ଚ୍ଚ ହୋଇଥିଲା । ଏହାର ଦୈର୍ଘ୍ୟ ୬୩୨ ଫୁଟ, ଉଚ୍ଚତା ୧୪୦ ଫୁଟ, ବ୍ୟାସ ୧୩୨ ଫୁଟ ।

ଜଳଯାନମାନଙ୍କ ମଧ୍ୟରେ ଟିଟାନିକା ସର୍ବାପେକ୍ଷା ବୃହତ୍ତମ ।



## ଉଚ୍ଚକୋଠା

| | | |
|---|---|---|
| ଏମ୍ପାୟାର ଷ୍ଟେଟ୍ ବିଲ୍ଡିଂ Empire state building | ( U.S A. ) | ୧୧୦୦ ଫୁଟ |
| କ୍ରାଇସଲର ବିଲ୍ଡିଂ Chrysler building | ( Do ) | ୧୦୪୮ ଫୁଟ |
| ଆଇଫେଲ ଟାୱାର Eiffel tower | ( France ) | ୯୮୪ ଫୁଟ |
| ଉଲ୍‌ମ୍ କେଥେଡ୍ରାଲ Ulm cathedral | ( Germany ) | ୫୧୨ ଫୁଟ |
| ପିରାମିଡ୍ ଅଫ୍ ଚିଓପ୍‌ସ୍ Pyramid of cheops | ( Egypt ) | ୪୮୧ ଫୁଟ |



# ଅଷ୍ଟ୍ରେଲିଆ କଥା

ବହୁଦିନ ପର୍ଯ୍ୟନ୍ତ ଅଷ୍ଟ୍ରେଲିଆ ବିଷୟ କାହାରିକୁ ଜଣା ନ ଥିଲା । ଚୀନଦେଶୀୟ ନାବିକମାନେ ଏହାକୁ ପ୍ରଥମେ ଦେଖିଲେ । ତତ୍ପରେ ଅକବରଙ୍କ ରାଜତ୍ୱକାଳରେ ଜଣେ ପର୍ତ୍ତୁଗୀଜ ପୋତାଧ୍ୟକ୍ଷ ଏହାକୁ ଦେଖିଲେ । ତଦନନ୍ତର ଓଲନ୍ଦାଜମାନେ ଏହାର ଉତ୍ତର ଓ ପୂର୍ବ ଉପକୂଳ ଅଧିକାର କଲେ । ଇଂରେଜ ଜଳଦସ୍ୟୁ ଏହାର ଉପକୂଳରେ ଭ୍ରମଣ କଲେ । ଶେଷରେ ପ୍ରାୟ ୧୦୦ ବର୍ଷ ପରେ କାପ୍ତାନ୍ କୁକ୍ ବଟାନି ଉପସାଗର କୂଳରେ ବ୍ରିଟିଶ ପତାକା ପୋତିଲେ ଓ କାପ୍ତାନ୍ ଫିଲିପ୍ ୧୭୮୮ ଖ୍ରୀଷ୍ଟାବ୍ଦରେ ଜାନୁୟାରୀ ମାସ ତା ୨୬ ରିଖରେ ବ୍ରିଟିଶ ପତାକା ଉଡ଼ାଇଲେ । ଏଠାକାର ଲୋକସଂଖ୍ୟା ୪୦ ଲକ୍ଷ ।

ଏଠାରେ ଅନେକ ବୃକ୍ଷ ସବୁ ଅତ୍ୟନ୍ତ ସ୍ଥୂଳ ଓ କେତେକର ପତ୍ର ସ୍ୱାଭାବରେ ତଳକୁ ଝୁଲି ପଡ଼ିଥାଏ । ଅଧିକାଂଶ ବୃକ୍ଷ ତୈଳାକ୍ତ ରସରେ ପୂର୍ଣ୍ଣ । ଅତଏବ ସୂର୍ଯ୍ୟୋତ୍ତାପରେ ଏମାନେ ଶୁଷ୍କ ହୁଅନ୍ତି ନାହିଁ ।

କାର, ଜସ ଗଛର କାଠକୁ ଘୁଣ କାଟନ୍ତି ନାହିଁ, କାରଣ ସେମାନେ ତାର୍ପିନ ତେଲ ଗନ୍ଧ ତୈଳରେ ପୂର୍ଣ୍ଣ ।

ଇଉକାଲିପଟ୍ ଗଛ ୩୦୦ ଫୁଟ ଉଚ୍ଚ ହୁଏ ଏବଂ ଏହାର ତେଲରୁ ଏକପ୍ରକାର ଔଷଧ ପ୍ରସ୍ତୁତ ହୁଏ ।

ଗମ୍ ବା ଅଠା ଗଛ ଓ ଟ୍ରିଫେନ୍ସି ନାମକ କଣ୍ଟାଗଛ ଏଠା ଅରଣ୍ୟମାନଙ୍କରେ ଦେଖା ଯାଏ ।

ଏଠାରେ ସୁନା, ରୁପା, ତମ୍ବା, କୋଇଲା ଓ ଟିଣ ମିଳେ କଙ୍ଗାରୁ ନାମକ ଅତି ଆଶ୍ଚର୍ଯ୍ୟଜନକ ପଶୁ ଏଠାରେ ଦେଖାଯାନ୍ତି । ଏମାନଙ୍କର ଆଗ ଦୁଇଗୋଡ଼ ଛୋଟ ଓ ପଛଦୁଇଗୋଡ଼ ବଡ଼ । ଏମାନେ ପଛ ଦୁଇଗୋଡ଼ ଓ ଲାଞ୍ଜ ସାହାଯ୍ୟରେ କୁଦାମାରି ଚାଲନ୍ତି । ଓ୍ୟାଲବିକ୍ ଅକୃତିରେ କ୍ଷୁଦ୍ର ମାତ୍ର କଙ୍ଗାରୁ ସଦୃଶ । ପ୍ଲାଟିପସ୍‌ର ଅର୍ଦ୍ଧାଂଶ ପଶୁପରି ଓ ଅର୍ଦ୍ଧାଂଶ ପକ୍ଷୀ ପରି । ପାଦ ହଂସ ପାଦ ପରି ଗୋଟିଏ ଥଣ୍ଟ ଅଛି । ଦେହ ଘନ ଲୋମରେ ଆବୃତ । ସେ ଡିମ୍ବ ପାରେ ଏବଂ ନଦୀକୂଳରେ ଗର୍ତ୍ତକରି ବାସ କରେ । ପକ୍ଷୀମାନଙ୍କ ମଧ୍ୟରେ ଏମୁ ବଡ଼ । ଏହାର ଉଚ୍ଚତା ୬ କମ୍ବା ୭ ଫୁଟ । ଦେଖିବାକୁ ଓଟ ପକ୍ଷୀ ପରି

ଓ ଘୋଡ଼ାଠାରୁ ଅତି ବେଗରେ ଦୌଡ଼ିପାରେ । କକୁଷ୍ଠପକ୍ଷୀ ସୁନ୍ଦର ବସା ତିଆର କରିପାରେ । ବାସୋଅସ୍ମ ପକ୍ଷୀ ଏମାନଙ୍କର ପକ୍ଷଘାନ । ବୈକୁଣ୍ଠ ପକ୍ଷୀ (Brids of Paradiec) ମୟୂରପର ଦେଖିବାକୁ ସୁନ୍ଦର । କୃଷ୍ଣ ରାଜହଂସ ହ୍ରଦମାନଙ୍କରେ ଦେଖାଯାନ୍ତି । ନିଉସାଉଥ ଓ୍ୱେଲ୍ସରେ ଓ୍ୱେଲ୍ସର ନାମକ ଘୋଡ଼ା ପାଳିତ ହୁଅନ୍ତି ।

ଅଷ୍ଟ୍ରେଲିଆର ଆଦିମ ଅଧିବାସୀମାନେ ଅତ୍ୟନ୍ତ ଅନୁନ୍ନତ ଏମାନେ ଶିକାର ବ୍ୟତୀତ ଅନ୍ୟ ଜୀବିକା କରନ୍ତି ନାହିଁ । ଏମାନଙ୍କର ଏକପ୍ରକାର ଅସ୍ତ୍ରର ନାମ ବୁମରାଙ୍ଗ (Boom rang) ଲକ୍ଷ୍ୟ ସ୍ଥାନରେ ନ ବାଜିଲେ ଏହା ପ୍ରେରକ ନିକଟକୁ ଫେରି ଆସେ । ଶାମୁକା ଏମାନଙ୍କର ପାନୀୟ ପାତ୍ର । ସ୍ତ୍ରୀଲୋକମାନେ କାଠି ସାହାଯ୍ୟରେ ଭୂମି ଖୋଳି କନ୍ଦା, ଜଅ ଓ ଚେରମୂଳ ସଂଗ୍ରହ କରନ୍ତି, ଏମାନେ ଲୁଗା ପିନ୍ଧନ୍ତି ନାହିଁ ଓ ଦେହକୁ ଚିତ୍ର କରନ୍ତି ।

ଦ୍ରାକ୍ଷାରୁ ମଦ୍ୟ ପ୍ରସ୍ତୁତ ହୋଇ ଏଠାରୁ ବିଦେଶକୁ ରପ୍ତାନି ହୁଏ ।

ଏଠାରେ ସାଧାରଣ ତନ୍ତ୍ର ଶାସନ ପ୍ରଚଳିତ । କାଲଗୁର୍ଲି, କୁଲଗାର୍ଡି ବାଲ୍ଲାରାଟ, ବେଣ୍ଡିଗୋ, ଓ ମାର୍ଚ୍ଚିସନ୍ ସୁନାଖଣି ନିମନ୍ତେ ପ୍ରସିଦ୍ଧ । ଫ୍ରିମାଣ୍ଟଲ ବନ୍ଦରରେ ଜାହାଜ ତିଆର ହୁଏ । ଟାସମାନିଆରୁ ସେଓ ଭାରତକୁ ଆସେ । କ୍ୱିନ୍ସଲାଣ୍ଡର ଟଙ୍କର ଆଠାରୁ ବାର୍ଣ୍ଣିସ ପ୍ରସ୍ତୁତ ହୁଏ ।

ନିଉଜିଲଣ୍ଡ ଗୋଟିଏ କୃଷିପ୍ରଧାନ ଦେଶ । ଏଠାରେ ସମୟ ସମୟରେ ଭୂମିକମ୍ପ ହୁଏ ବୋଲି ଅଧିକାଂଶ ଗୃହ କାଷ୍ଠ ନିର୍ମିତ ।



## ଦକ୍ଷିଣ ଅମେରିକା

ଦକ୍ଷିଣ ଅମେରିକାର ଆକାର ତ୍ରିଭୁଜପରି । ଉତ୍ତର ଅଂଶ ପ୍ରଶସ୍ତ ଓ ଦକ୍ଷିଣକୁ କ୍ରମଶଃ ସଙ୍କୀର୍ଣ୍ଣ । ଏହାର କ୍ଷେତ୍ରଫଳ ୭୦ ଲକ୍ଷ ବର୍ଗମାଇଲ ଏବଂ ଅଷ୍ଟ୍ରେଲିଆ ଭାରତବର୍ଷର ପ୍ରାୟ ଦୁଇଗୁଣ ।

ଆଣ୍ଡିଜ ପର୍ବତ, ବ୍ରାଜିଲ ଓ ଭେନେଜୁଏଲାରେ ସୁନା, ବଲିଭିଆ, ଚିଲି ଓ ପେରୁ ପ୍ରଦେଶରେ ରୂପା, ଚିଲିରେ ତମ୍ବା ଏବଂ ବଲିଭିଆରେ ଟିଣ ମିଳେ ।

ଆମେରିକାରୁ ଧୂଆଁପତ୍ର, ଗୋଲ ଆଳୁ, ମକା ଓ ସିନକୋନା ପ୍ରଥମେ ଭାରତକୁ ଆନୀତ ହୋଇଥିଲା । ଶିମ୍ପାଞ୍ଜି ଓ ଓରାଂ ଓଟାଂ ପ୍ରଭୃତି ମର୍କଟମାନେ ବୃକ୍ଷ ଉପରେ ଶ୍ଲଥ ଓ ଟିଙ୍କ ଅରଣ୍ୟରେ ବାସ କରନ୍ତି । ଡଲଫିନ ଓ ସମୁଦ୍ରଗାଈ ନଦୀ ମଧ୍ୟରେ ସ୍ଥାନେ ସ୍ଥାନେ ଜଳ ଉପରେ କୃଷ୍ଣବର୍ଣ୍ଣ ପୃଷ୍ଠ ଦେଖାଇ ଭାସୁଥାନ୍ତି ।

ଏଠା ଆଦିମ ଜନ୍ତୁ ମଧ୍ୟରେ ଲାମା, ଆଲପକା ଓ ଭିକୁନା ଦେଖିବାକୁ ଅଧେ ଓଟପରି ଓ ଅଧେ ଛେଳିପରି । କାପିବାର ଏଠାକାର ବାଘ । ସେ ବୃକ୍ଷରେ ଚଢ଼ିପାରେ ଓ ପାଣିରେ ପହଁରି ପାରେ । ଟାପିର ଦେଖିବାକୁ ଶୂକର ପରି । ସେ ସନ୍ତରଣ ପ୍ରିୟ । ମନୁଷ୍ୟମାନେ ତାର ମାଂସ ଖାଆନ୍ତି । ଆର୍ମାଡିଲ ଦେହର ଉପର ଭାଗ ଅସ୍ଥିମୟ କଠିନ ଚର୍ମରେ ଆଚ୍ଛାଦିତ । ସେ ତାହାକୁ ଇଚ୍ଛାନୁସାରେ ସଙ୍କୋଚିତ କରିପାରେ । ପିପିଲିକା ଖାଦକ ଦୈର୍ଘ୍ୟରେ ପ୍ରାୟ ୪ ଫୁଟ । ତାହାର ଲାଞ୍ଜ ପ୍ରାୟ ତେତିକି ଲମ୍ବ । ଦାନ୍ତ ନାହିଁ, ମୁହଁ ନଳୀପରି, ଜିହ୍ୱା ଲମ୍ବ, ଦେହ ଲୋମରେ ଆବୃତ । ସେ କେବଳ ପିମ୍ପୁଡ଼ି ଖାଏ । ଏଠାରେ ପୁମାନାମକ ସିଂହ ବାସକରେ । ହ୍ୟୁଏ ଓଟ ପକ୍ଷୀପରି ବଡ଼ ନ ହେଲେହେଁ ଘୋଡ଼ାଠାରୁ ଅଧିକ ଚଞ୍ଚଳ ଦୌଡ଼ିପାରେ । କଣ୍ଡର ନାମକ ଏକପ୍ରକାର ବୃହତ୍ ପକ୍ଷୀ ଏଠାରେ ଦେଖାଯାଏ ।

ଗାଏନା ବ୍ୟତୀତ ଏ ମହାଦେଶରେ ୧୦ ଟି ସାଧାରଣ ତନ୍ତ୍ର ସ୍ଥାପିତ ପ୍ରତ୍ୟେକ ପ୍ରଦେଶ ଜଣେ ସଭାପତି ଓ ଦୁଇଟି ସଭାଦ୍ୱାରା ପରିଚାଳିତ ହୁଏ ।

କୁଇଟୋ ଆଣ୍ଡିଜ ପର୍ବତ ଉପରେ ୧୦୦୦୦ ଫୁଟ ଉଚ୍ଚରେ ଅବସ୍ଥିତ । ଏହା ପୃଥିବୀ ମଧ୍ୟରେ ଉଚ୍ଚତମ ନଗର । ଇକ୍ୱେଡ଼ରରେ ଭୂମିକମ୍ପ ହେଉଥିବାରୁ ଗୃହ ଗୁଡ଼ିକ ବାଉଁଶରେ ନିର୍ମିତ । ବଗୋଟାର ଗୃହ ଗୁଡ଼ିକ ସେହି କାରଣରୁ ଏକ-ତାଲା ଉଚ୍ଚ । ଲାମାରେ ରେଳପଥ ଏତେ ଉଚ୍ଚକୁ ଉଠିଅଛି ଯେ ଆରୋହୀମାନେ ନିମ୍ନରେ ମେଘମାଳା ଦେଖି ପାରନ୍ତି ।

ଦଣ୍ଡିବା ଶକ୍ତି ସ୍ୱାର ଥାଉ ।

ପେରୁରେ ସମସ୍ତ ସମୟରେ କ୍ରମାନ୍ୱୟରେ ୨୦ ବର୍ଷ ପର୍ଯ୍ୟନ୍ତ ବୃଷ୍ଟି ହୁଏ ନାହିଁ । କୁହୁଡରେ ଭୂମି ଜଳସିକ୍ତ ହେବାରୁ ଘାସ ଉତ୍ପନ୍ନ ହୁଏ । ପର୍ବତ ଉପରେ ପଡ଼ିଥିବା ବରଫ ତରଳ ଗଲେ ଶୁଷ ଭୂମି ଜଳ ପାଏ । ଏଠାରେ ତମ୍ବା ଓ ରୂପାର ବଡ଼ ଖଣି ଏବଂ ପେଟ୍ରୋଲ ଅମର କୂପ ଅଛି । ଲପାଜ ୧୨୦୦୦ ଫୁଟ ଉଚ୍ଚରେ ଅବସ୍ଥିତ ଏଠାରେ ତମ୍ବା ଓ ସୁନାର ଖଣି ଅଛି । ଏଠାରୁ କୁଇନାଇନ ଓ ଆଳୁ ପ୍ରଚୁର ପରିମାଣରେ ରପ୍ତାନି ହୁଏ । ଚିଲିରେ ଯବକ୍ଷାର ଅଧିକ ପରିମାଣରେ ମିଳେ । ଆର୍ଜେଣ୍ଟାଇନ ପୃଥିବୀ ମଧ୍ୟରେ ଗୋଟିଏ ବୃହତ୍ ଶସ୍ୟ ଭଣ୍ଡାର । ପୃଥିବୀରେ ଉତ୍ପନ୍ନ ହେଉଥିବା କଫିର ⅔ ଅଂଶ ବ୍ରାଜିଲରେ ଚାଷ କରାଯାଏ ।

ଦକ୍ଷିଣ ଆମେରିକାର ପଶ୍ଚିମ ଉପକୂଳରେ ଶୀତଳସ୍ରୋତ ଓ ପୂର୍ବ ଉପକୂଳରେ ଉଷ୍ଣ ସ୍ରୋତ ପ୍ରବାହିତ ହୁଏ ।

ପୃଥିବୀର ଅନ୍ୟାନ୍ୟ ନଦୀମାନଙ୍କ ଅପେକ୍ଷା ଆମେଜନ ଦ୍ୱାରା ଅଧିକ ଜଳ ସମୁଦ୍ରକୁ ଯାଏ ।



## ପୃଥିବୀର ପ୍ରଧାନ ପ୍ରଧାନ ପର୍ବତର ଉଚ୍ଚତା

| (ପର୍ବତ) | (ଶୃଙ୍ଗ) | (ଫୁଟରେ ଉଚ୍ଚତା) |
|---|---|---|
| ହିମାଳୟ | ଏଭେରେଷ୍ଟ | ୨୯,୦୦୦ |
| ,, | ମାଉଣ୍ଟ ଗଡ୍‌ଉଇନ୍ | ୨୮,୨୫୦ |
| ,, | କାଞ୍ଚନ ଜଙ୍ଘା | ୨୭,୮୧୫ |
| ,, | ଧବଳ ଗିରି | ୨୬,୮୦୦ |
| ,, | ନାଙ୍ଗା ପର୍ବତ | ୨୬,୬୦୦ |
| ,, | ନନ୍ଦା ଦେବୀ | ୨୫,୬୦୦ |
| ଆଣ୍ଡିଜ (ବୋଲିଭିଆ) | ସୋରାଟା | ୨୧,୫୨୦ |
| ( ଚିଲି ) | ଆକାଙ୍କାଗୁଆ | ୨୩,୦୮୦ |
| | ଚିମ୍ବୋରାଜୋ | ୨୦,୮୦୦ |
| **ଅବସିନିଆ ପର୍ବତ** | ମାଉଣ୍ଟ କେନିଆ | ୧୭,୦୦୦ |
| ଆଲପ୍ସ | ବ୍ଲାଙ୍କ | ୧୫,୭୦୦ |
| ରକି ପର୍ବତ | ମାଉଣ୍ଟ ପପୋକାଟାପେଟଲ | ୧୭,୮୯୦ |
| ,, | ମାଉଣ୍ଟ ଏଲିଅସ | ୧୮,୦୦୦ |
| ,, | ମାଉଣ୍ଟ ଲୋଗେନ | ୧୯,୫୪୦ |



## ଦିନ ରାତିର ପରିମାଣ ।

ସବୁ ଦେଶର ଦିନ ରାତିର ପରିମାଣ ସମାନ ନୁହେଁ । ନିମ୍ନରେ ଯେଉଁ ଦେଶରେ ସବୁଠାରୁ ଦିନ ବଡ଼ ଓ ରାତି ବଡ଼ ତାହା ଲେଖାଗଲା :—

ଇଂଲଣ୍ଡ—ଲଣ୍ଡନ ଓ ଅନ୍ୟାନ୍ୟ ସହରରେ ବଡ଼ ଦିନର ପରିମାଣ ୧୬½ ଘଣ୍ଟା ।

ଅମେରିକା—ଏଠା ନିଉୟର୍କ ସହରରେ ବଡ଼ ଦିନର ପରିମାଣ ୧୫ ଘଣ୍ଟା । କାନାଡ଼ା ଓ ମଣ୍ଟ୍ରିଆଲରେ ବଡ଼ ଦିନର ପରିମାଣ ୧୬ ଘଣ୍ଟା ।

ଜର୍ମାନୀ—ବ୍ରେମେନ୍‌ରେ ବଡ଼ ଦିନର ପରିମାଣ ୧୬½ ଘଣ୍ଟା
ହାମ୍‌ବାର୍ଗ ,, ,, ୧୭ ଘଣ୍ଟା
ପ୍ରସିୟା ଡେଣ୍ଟିଜର ସହରରେ ,, ୧୭ ଘଣ୍ଟା

ରୁଷିଆ—ପେଟ୍ରୋଗାର୍ଡ ଓ ସାଇବେରିଆର ଟୋବଲସ୍କ ସହରରେ ସବୁଠାରୁ ବଡ଼ଦିନର ପରିମାଣ ୧୯ଘଣ୍ଟା ଓ ସବୁଠାରୁ ଛୋଟଦିନର ପରିମାଣ ୫ ଘଣ୍ଟା ।

ସୁଇଡେନ୍—ଷ୍ଟକ୍‌ହଲମ୍ ସହରରେ ସବୁଠାରୁ ବଡ଼ଦିନ ୧୮½ ସ୍ଥାୟୀ ହୁଏ ଓ ସେହି ଦିନର ରାତି କେବଳ ୫½ ଘଣ୍ଟାରେ ଶେଷ ହୁଏ ।

ନରଓ୍ୱେ—ୱାର୍ଡବର ସହରରେ ମେ ମାସ ୨୧ ତାରିଖ ଠାରୁ ଜୁଲାଇ ୨୨ ତାରିଖ ପର୍ଯ୍ୟନ୍ତ କ୍ରମାନ୍ୱୟରେ ୬୩ ଦିନ ସ୍ଥାୟୀ ହୁଏ । ସ୍ପିଟବର୍ଗ ସହରରେ ୬୫ଦିନ ବର୍ଷକ ଭିତରେ ବଡ଼ଦିନ ସମାନ ଭାବରେ ସ୍ଥାୟୀ ହୁଏ । ଏହାପରେ ରାତିରେ ଅନ୍ଧକାର ଛଅଦିନ ପାଇଁ ରହେ ।

ଫିନ୍‌ଲ୍ୟାଣ୍ଡ—ଟର୍ଣ୍ଣିୟୋ ସହରରେ ଜୁନମାସର ୨୧ ତାରିଖ ଦିନର ପରିମାଣ ୨୨ଘଣ୍ଟା, ଏହା ସେ ସ୍ଥାନର ବଡ଼-

ହେବ । ଖ୍ରୀଷ୍ଟମସ୍ ସମୟରେ ରାତର ପରିମାଣ ବଢ଼ି ୨୧ଘଣ୍ଟା ହୁଏ ଓ ଦିନର ପରିମାଣ କମି ୩ଘଣ୍ଟାରେ ଶେଷ ହୁଏ ।



# ସୂର୍ଯ୍ୟାଲୋକ

ଉତ୍ତର ମହାସାଗରରେ ସ୍ପିଟ୍‌ସ୍‌ବାର୍ଜ ନାମକ ଦ୍ୱୀପଟିଏ ଅଛି । ସେଠି ବର୍ଷକରେ କମ ୪ ମାସ ସୂର୍ଯ୍ୟଙ୍କର ଆଲୁଅ ପଡ଼େ ।

---

# ପୃଥିବୀର ପ୍ରଧାନ୨ ନଦୀର ପରିମାଣ

| ( ନଦୀ ) | ( ଦୈର୍ଘ୍ୟ ) | |
|---|---|---|
| ୧—ମସୋରି ମିସିସିପି | ୪୩୮୨ | ମାଇଲ |
| ୨—ଆମାଜନ | ୪୦୦୦ | ,, |
| ୩—ନୀଲ | ୪୦୦୦ | ,, |
| ୪—କଙ୍ଗୋ | ୨୮୦୦ | ,, |
| ୫—ଆମୁର | ୨୯୦୦ | ,, |
| ୬—ନାଇଜର | ୨୬୦୦ | ,, |
| ୭—ଲେନା | ୨୭୦୦ | ,, |
| ୮—ମ୍ୟାକେଞ୍ଜି | ୨୫୦୦ | ,, |
| ୯—ଭଲ୍‌ଗା | ୨୩୦୦ | ,, |
| ୧୦—ମାଡ଼ିଓପ୍ଲାଟା | ୨୫୦୦ | ,, |
| ୧୧—ସେଣ୍ଟ ଲରେନ୍ସ | ୨୧୮୦ | ,, |
| ୧୨—ଜାମ୍ବେଜୀ | ୨୦୦୦ | ,, |
| ୧୩—କାଲରେଡ଼ୋ | ୨୦୦୦ | ,, |
| ୧୪—ୟୁକନ | ୨୦୦୦ | ,, |
| ୧୫—ସିନ୍ଧୁ | ୧୮୦୦ | ,, |
| ୧୬—ବ୍ରହ୍ମପୁତ୍ର | ୧୫୦୦ | ,, |
| ୧୭—ଡାନିଉବ୍ | ୧୭୨୫ | ,, |
| ୧୮—ଗଙ୍ଗା | ୧୫୭୦ | ,, |
| ୧୯—କଲମ୍ବିଆ | ୧୪୦୦ | ,, |
| ୨୦—ଇରାବତୀ | ୧୨୫୦ | ,, |
| ୨୧—ଅରେଞ୍ଜ | ୧୦୦୦ | ,, |
| ୨୨—ଇୟାଂସିକିୟାଂ | ୩୭୦୦ | ,, |
| ୨୩—ଇନିସେଇ | ୩୧୦୦ | ,, |
| ୨୪—ହୋୟାଂ ହୋ | ୨୮୦୦ | ,, |
| ୨୫—ଭଲ୍‌ଗା | ୨୧୦୦ | ,, |



# ପୃଥିବୀର ପ୍ରଧାନ୨ କେନାଲ

ଇଂଲଣ୍ଡରେ ଉଅସିଲ ଓ ସେଣ୍ଟହେଲେନା ମଧ୍ୟରେ ଯେଉଁ ନାଳ ଅଛି, ତାହା ପୃଥିବୀରେ ପ୍ରଧାନ । ଏହାର ଲମ୍ବ ୧୭ ମାଇଲ ଓ ପ୍ରଥମରୁ ଶେଷଯାଏଁ ନିମ୍ନଗାମୀ । ସେଥିରେ ବୋଟମାନ ଚାଲେ । ତା' ଉପରେ ଛପର ହୋଇଅଛି । ନାବିକମାନେ ବୋଟ ଉପରେ ଶୋଇ ଛପରରେ ଗୋଡ଼ ଦେଇ ବୋଟ ଚଳାନ୍ତି । ଏହା କୋଇଲା ଖଣି ଖୋଳି ଖୋଳି ନିର୍ମାଣ କରାଯାଇଛି ।



# ସୁଏଜ କେନାଲ

ଫ୍ରାନ୍ସର ଫର୍ଡିନାଣ୍ଡ ଲେସପସ୍ ନାମକ ଜଣେ ପ୍ରଧାନ ଲୋକଙ୍କ ଦ୍ୱାରା ସୁଏଜ କେନାଲ ଖୋଳା ହୋଇଥିଲା । ୧୮୫୯ ଖ୍ରୀଷ୍ଟାବ୍ଦରୁ ଖନନ ଆରମ୍ଭ ହୋଇ ୧୮୬୯ ରେ ଶେଷ ହେଲା ଏବଂ ଖୋଳିବାରେ ୨୦୦୦୦୦୦୦ ପାଉଣ୍ଡ ବା ତିନି-କୋଟି ଟଙ୍କା ଖର୍ଚ୍ଚ ପଡ଼ିଥିଲା । ଏହାର ଦୈର୍ଘ୍ୟ ୯୯ ମାଇଲ ପ୍ରସ୍ଥ ୩୦୧ ଫୁଟ ଓ ଗଭୀରତା ୩୦୦ ଫୁଟ । ଏହାର ସ୍ରୋତ ଧୀର । ଭାରତରୁ ଇଂଲଣ୍ଡକୁ ଗଲାବେଳେ ଜାହାଜ ଗୁଡ଼ିକ ଏହି କେନାଲ ମଧ୍ୟ ଦେଇଯାଏ ।



# ପୃଥିବୀରେ ବଡ଼ ପୋଲ

ଚୀନ ଦେଶରେ ପୀତ ସାଗର ଉପରେ ଲ୍ୟାଙ୍ଗନ୍ସ୍ ବ୍ରିଜ୍ ନାମରେ ଯେଉଁ ପୋଲ୍ ଅଛି ତାହା ସବୁଠାରୁ ବଡ଼ । ସେଥିରେ

୧୦୦ଟା ପଥରର ଖିଲାଣ ଅଛି ଏବଂ ତାହା ପାଣିଠାରୁ ୭୦ଫୁଟ ଉଚ୍ଚରେ ଅବସ୍ଥିତ । ସେହି ପୋଲ ଉପରେ ଗୋଟିଏ ମାରବଲ ପଥରର ସିଂହ ଅଛି । ତାହାର ଲମ୍ବା ୨୧ ଫୁଟ ।

## ପୃଥିବୀର ବୃହତ୍ତମ ଟେନିସ ପଡିଆ

ପୃଥିବୀରେ ସବୁଠାରୁ ବଡ଼ ଟେନିସ ଖେଳ ପଡିଆ ଜର୍ମାନୀର ବର୍ଲିନ ସହରରେ ଅଛି । ସେହି ଟେନିସ ପଡ଼ିଆରେ ଖେଳ ହେଲାବେଳେ ତାହା ଦେଖିବା ପାଇଁ ଦୁଇହଜାର ଲୋକ ବସିବା ଲାଗି ଗୃହଯାଟଣ ବନ୍ଦୋବସ୍ତ ହୋଇଛି ।

## ପୃଥିବୀର ବୃହତ୍ତମ କୃଷିଶାଳା

ରୁଷିଆରେ 'ଦୈତ୍ୟ' ନାମକ ଏକ କୃଷିଶାଳା ପ୍ରତିଷ୍ଠିତ ହୋଇଅଛି । ସେ କୃଷିଶାଳାର ଜମି ପରିମାଣ ଦୁଇଲକ୍ଷ ଅଢ଼ାଇ ହେକ୍ଟର ତାହା ସହିତ ପୁଣି ଏକ ଲକ୍ଷ ତେରହଜାର ହେକ୍ଟର ଜମି ଉଠିଆ କରା ଯାଇଛି । ଏହାର ପରିଚାଳକ ଉଡ଼ା ଜାହାଜରେ ଏହାର ଏକ ପ୍ରାନ୍ତରୁ ଅନ୍ୟ ପ୍ରାନ୍ତ ପର୍ଯ୍ୟନ୍ତ ଗମନାଗମନ କରନ୍ତି । ଏଥିରେ ଦୈନିକ ୫୦୫୧ ମଜୁରିଦାର କାମ କରନ୍ତି । ଲଙ୍ଗଳ ସଂଖ୍ୟା ୨୨୦, ବୀଜବପନ ଯନ୍ତ୍ର ୪୫୯ ଓ ଅନ୍ୟାନ୍ୟ କୃଷିଯନ୍ତ୍ର ସଂଖ୍ୟା ୨୩୦ । ଏଠାରେ ୬୦ ହଜାର ଲୋକ ବାସ କରନ୍ତି । ଆମେରିକାର ସର୍ବାପେକ୍ଷା ବୃହତ୍ ଜଗତ୍ ବିଖ୍ୟାତ କୃଷିଶାଳା ଏହା ଅପେକ୍ଷା ସାତ ଗୁଣ ଛୋଟ । ଏହାର କୃଷି, ବୀଜବପନ ଓ ଫସଲକଟା ପ୍ରଭୃତି ସମ୍ପ୍ରଦାୟ କାର୍ଯ୍ୟ ଯନ୍ତ୍ର ଦ୍ୱାରା ସମ୍ପନ୍ନ ହୁଏ ।

## ପୃଥିବୀର ବୃହତ୍ତମ ଚିଡିଆଖାନା

ଇଂଲଣ୍ଡର ଡାନଷ୍ଟେବଲେ ନିକଟରେ ଯେଉଁ ନୂତନ ଚିଡ଼ିଆଖାନା ପ୍ରତିଷ୍ଠିତ ହୋଇଅଛି, ତାହା ପୃଥିବୀର ସବୁ ଚିଡ଼ିଆଖାନା ଠାରୁ ବଡ଼ । ଏହା ସମୁଦ୍ରଠାରୁ ୬୦୦ ଫୁଟ ଉଚ୍ଚ ପର୍ବତ ଉପରେ ଅଛି । ଏହାର ବିସ୍ତୃତ ପ୍ରାୟ ୫୦୦ ଏକର ଏବଂ ପ୍ରାକୃତିକ ଦୃଶ୍ୟ ବଡ଼ ମନୋହର ।

## ପୃଥିବୀର ବୃହତ୍ତମ ହସ୍ତିଦନ୍ତ

ସାଇବେରିଆରୁ ୧୪ ଫୁଟ ଦୈର୍ଘ୍ୟ ବିଶିଷ୍ଟ ଗୋଟିଏ ହାତୀ ଦାନ୍ତ ମିଳିଥିଲା । ତାହା ଦକ୍ଷିଣ କେନ୍‌ସିଂଟନସ୍ଥ ପ୍ରତ୍ନତତ୍ତ୍ୱ-ଶାଳାରେ ରକ୍ଷିତ ହୋଇଅଛି । ଏହା ପୃଥିବୀର ସର୍ବଶ୍ରେଷ୍ଠ ହସ୍ତିଦନ୍ତ ।



## କେତେକ ଦେଶରେ ସ୍ତ୍ରୀ ସଂଖ୍ୟା

| ଦେଶର ନାମ ଓ ଜନଗଣନାର ସାଲ | | ପ୍ରତି ହଜାର ପୁରୁଷରେ ସ୍ତ୍ରୀଙ୍କ ସଂଖ୍ୟା |
|---|---|---|
| ପର୍ତ୍ତୁଗାଲ | ୧୯୨୦ | ୧୧୧୨ |
| ଅଷ୍ଟ୍ରିୟା | ୧୯୨୦ | ୧୦୮୧ |
| ଇଂଲଣ୍ଡ-ଓଏଲ୍ସ | ୧୯୩୧ | ୧୦୮୭ |
| ସ୍କଟଲାଣ୍ଡ | ୧୯୨୧ | ୧୦୮୦ |
| ସୁଇଜରଲାଣ୍ଡ | ୧୯୨୦ | ୧୦୬୪ |
| ଜର୍ମାନୀ | ୧୯୨୫ | ୧୦୬୬ |
| ସ୍ପେନ୍ | ୧୯୨୦ | ୧୦୬୨ |
| ଡେନମାର୍କ | ୧୯୨୧ | ୧୦୫୩ |
| ବେଲଜିଅମ | ୧୯୨୦ | ୧୦୩୩ |
| ଇଟାଲୀ | ୧୯୨୧ | ୧୦୨୮ |
| ଜାପାନ | ୧୯୩୦ | ୯୯୦ |
| ଯୁକ୍ତରାଜ୍ୟ ଅମେରିକା | ୧୯୩୦ | ୯୭୬ |
| ଅଷ୍ଟ୍ରେଲିୟା | ୧୯୩୧ | ୯୬୨ |
| ଦକ୍ଷିଣ ଅଫ୍ରିକା | ୧୯୨୧ | ୯୫୯ |
| କାନାଡ଼ା | ୧୯୨୧ | ୯୪୦ |
| ଭାରତବର୍ଷ | ୧୯୩୧ | ୯୪୦ |

ସମଗ୍ର ଭାରତରେ ସ୍ତ୍ରୀ ସଂଖ୍ୟା ପୁରୁଷ ସଂଖ୍ୟା ତୁଳନାରେ ଅତ୍ୟନ୍ତ ଅଳ୍ପ ।

## ନାରୀର ଉତ୍କର୍ଷ

(ପୃଥିବୀରେ ପ୍ରଥମ ବ୍ୟୋମବିହାରିଣୀ ନାରୀ)

କୁମାରୀ ଏମୀ ଜନ୍‌ସନ୍ ୧୬ ଦିନ ମଧ୍ୟରେ ୧୨ଶହ ମାଇଲ ବାଟ ଉଡ଼ ନାରୀମୁଖ ଉଜ୍ଜ୍ୱଳ କରିଅଛନ୍ତି ।

(ପ୍ରଥମ ନାରୀ ମନ୍ତ୍ରୀ)

ଇଂଲଣ୍ଡର କୁମାରୀ ବଣ୍ଡଫିଲଡ୍ ନାରୀ ମନ୍ତ୍ରୀ ହୋଇ ଶକ୍ତି ଓ ସ୍ୱାତନ୍ତ୍ର୍ୟର ପ୍ରମାଣ ଦେଇଥିଲେ ।



ଉତ୍ତର ଅଫ୍ରିକାରେ ପ୍ରାୟ ସବୁଠି ଟୁଇରେଗ ଜାତିର ନିବାସ । ବର୍ତ୍ତମାନ ସେମାନେ ଏକ ସ୍ୱାଧୀନ ଜାତି, କାହାର ଦାସତ୍ୱ କରନ୍ତି ନାହିଁ । ସେମାନେ ଭ୍ରମଣକାରୀ ଜାତି ଏବଂ ଦସ୍ୟୁ ସେମାନଙ୍କର ଜୀବିକା ନିର୍ବାହର ପ୍ରଧାନ ଅବଲମ୍ବନ । ଟୁଇରେଗ ରମଣୀ ଇଂରାଜ ରମଣୀ ଅପେକ୍ଷା ଅଧିକ ମାତ୍ରାରେ ନ ହେଲେ ମଧ୍ୟ ସ୍ୱାଧୀନା ଏବଂ ସେମାନେ ଅବଗୁଣ୍ଠନହୀନା ହୋଇ ପଥରେ ଯାତାୟାତ କରନ୍ତି । ଏ ଜାତିର ପୁରୁଷମାନେ ସର୍ବଦା ଅବଗୁଣ୍ଠିତ । ଏ ଜାତିର ନାରୀ ସ୍ୱାମୀ ପତି ମନୋନୟନର ପୂର୍ଣ୍ଣ ଅଧିକାର ସମ୍ଭୋଗ କରନ୍ତି । ବିଦ୍ୟାଚର୍ଚ୍ଚା ଓ କାବ୍ୟ ରଚନାର ଶକ୍ତି ମଧ୍ୟ ଏମାନଙ୍କର ଅଛି । ସମାଜ ଓ ଦେଶରେ ନାରୀର ପ୍ରଭାବ ଅତ୍ୟନ୍ତ ପ୍ରବଳ ଏବଂ ସନ୍ତାନ ମାତୃବଂଶଦ୍ୱାରା ସମାଜରେ ପରିଚିତ ।



## ପାଶ୍ଚାତ୍ୟ କବିଗଣ

(୧)—ହୋମର (Homer) ଇଉରୋପର ପ୍ରଧାନ ଓ ପ୍ରାଚୀନ କବି । ସେ ଇଲିୟାଡ୍ ଓ ଅଡ଼େସି (Iliad and odysey) ଲେଖି ଖ୍ୟାତି ଅର୍ଜନ କରିଥିଲେ । ପ୍ରାୟ ଖ୍ରୀଷ୍ଟପୂର୍ବ ୧୧ଶ ଶତାବ୍ଦୀରେ ଏ ମହାଶୟ ଗ୍ରୀସଦେଶରେ ଜନ୍ମ ଗ୍ରହଣ କରିଥିଲେ ।

(୨)—ଦାନ୍ତେ (Dante) ତ୍ରୟୋଦଶ ଶତାବ୍ଦୀରେ ଇଟାଲୀୟ କବି । ଏହାଙ୍କର ଜନ୍ମ ଫ୍ଲୋରେନ୍ସରେ । ଧର୍ମବିଷୟକ କବିତା ଲେଖି ଖ୍ୟାତି ଲାଭ କରିଥିଲେ ।

(୩)—ସେକ୍ସପିଅର (Shakespeare) ଅଦ୍ୱିତୀୟ ଇଂରାଜ କବି । ୧୫୬୪ ଖ୍ରୀଷ୍ଟାବ୍ଦ ଅପ୍ରେଲ ୨୩ ତାରିଖରେ ଏ ମହାଶୟ (Start ford-on-avon) ରେ ଜାତ ହୋଇଥିଲେ । ଏହାଙ୍କର ନାଟକାବଳୀ ସୁପ୍ରସିଦ୍ଧ ।

(୪)—ଆରିଷ୍ଟୋଫେନସ (Aristophanes) ଗ୍ରୀସଦେଶୀୟ ସୁରସିକ କବି । ପ୍ରାୟ ଖ୍ରୀଷ୍ଟପୂର୍ବ ୪୮୫ରୁ ୩୮୫ ମଧ୍ୟରେ ସେ ଏଥେନ୍ସରେ (Athens) ଜନ୍ମଗ୍ରହଣ କରିଥିଲେ ।

(୫)—ଭର୍ଜିଲ (Virgil) ରୋମୀୟ ବିଖ୍ୟାତ କବି । ଏ ମହାଶୟ ଖ୍ରୀଷ୍ଟପୂର୍ବ ୭୦-୧୯ ରେ ଜୀବିତ ଥିଲେ । ଜର୍ଜିକା (Georgica) ପ୍ରଭୃତି ଲେଖି ପ୍ରସିଦ୍ଧି ଲାଭ କରିଥିଲେ ।

(୬)—ପିଣ୍ଡାର (Pindar) ଗ୍ରୀସଦେଶୀୟ ପୌରାଣିକ ଓ ଜାତୀୟ କବି । ଏ ମହାଶୟ ଖ୍ରୀଷ୍ଟପୂର୍ବ ୫୨୨ ରୁ ୪୪୩ ମଧ୍ୟରେ ଜୀବିତ ଥିଲେ ।

(୭)—ସାର ଓ୍ୱାଲଟାର ସ୍କଟ (Sir walter scott) ଉନବିଂଶ ଶତାବ୍ଦୀର ଇଂରାଜ ଔପନ୍ୟାସିକ । ଏ ମହାଶୟ (Edin burgh) ଏଡିନ ବର୍ଗରେ ଜନ୍ମଗ୍ରହଣ କରିଥିଲେ ଓ ୧୭୭୧ ରୁ ୧୮୩୨ ପର୍ଯ୍ୟନ୍ତ ଜୀବିତ ଥିଲେ । (The Fair maid of perlti and anne of geierstein ପ୍ରଭୃତି ଲେଖି ସୁଯଶ ଲାଭ କରିଥିଲେ ।

(୮)—ଗେଟେ (Gaithe) ଜର୍ମାନ କବି ଓ ଦାର୍ଶନିକ । ଉଇଲେମ ମିନିଷ୍ଟାର ନାଟକ ଏହାଙ୍କର ପ୍ରଧାନ ପୁସ୍ତକ । ଏ ମହାଶୟ ୧୭୪୯ ରୁ ୧୮୩୨ ମଧ୍ୟରେ ଜୀବିତ ଥିଲେ ।

(୯)—ମିଲଟନ୍ (Milton) ୧୬୦୮ ରୁ ୧୬୭୪ ଅନ୍ଧକବି, ପ୍ୟାରାଡାଇସ ଲଷ୍ଟ ଏହାଙ୍କର ବିଖ୍ୟାତ ଗ୍ରନ୍ଥ । ଏହାଙ୍କରି ଜନ୍ମ ଇଂଲଣ୍ଡରେ ।

(୧୦)—ଟେନିସନ୍ (Alfred tennyson) ୧୮୦୯ ରୁ ୯୨ ଇଂଲଣ୍ଡର ରାଜକବି । The princess (ପ୍ରିନ୍‌ସେସ) ଲେଖି ଖ୍ୟାତି ଅର୍ଜନ କରିଥିଲେ ।

ବିଶ୍ୱାସ ଛାଡ଼ନା ସେ ନର ।

(୧୧)—ଲୁକ୍ରିଟସ୍ସ ( Lucretius ) ରୋମକ ଲାଟିନ କବି । ଏ ମହାଶୟ ଖ୍ରୀଷ୍ଟପୂର୍ବ ୯୯ ରୁ ୫୫ ମଧ୍ୟରେ ଜୀବିତ ଥିଲେ ।

(୧୨)—ମିନାଣ୍ଡାର ( Menander ) ଖ୍ରୀଷ୍ଟପୂର୍ବ ୩୪୨ । ଏଥେନ୍ସରେ ଜାତ । ଏ ମହାଶୟ ଗ୍ରୀସଦେଶୀୟ କୌତୁକ କବି ।

(୧୩)—ସାର୍ ଭେଣ୍ଟସ୍—'ଡନ୍ କୁଇକ୍‌ସୋଟ' ଏହାଙ୍କର ଲେଖା ।

(୧୪)—ମଲ୍ୟୁର—ଫରାସି ନାଟ୍ୟକାର ।

(୧୫)—ରବେଲ୍ୟାଇସ ( Rabelais francois ) ପ୍ରାୟ ୧୪୮୩ରୁ ୧୫୫୩ ଜନ୍ମ Chinon in Touraine ଫରାସୀ ବ୍ୟଙ୍ଗକାବ୍ୟ ଲେଖକ ।

(୧୬)—ଇସ୍‌କାଲସ୍—ନାଟକ ସୃଷ୍ଟିକର୍ତ୍ତା ।

(୧୭)—ଇଉର ପାଇଡ୍‌ସ—ଦାର୍ଶନିକ ନାଟକ ଲେଖକ ।



## ପାଶ୍ଚାତ୍ୟ ପ୍ରସିଦ୍ଧବ୍ୟକ୍ତିଗଣ

ରାଜନୈତିକ—ଡବ୍ଲୁ ଇ ଗ୍ଲାଡ଼ଷ୍ଟୋନ ।
ସମର ନୀପୁଣ—ଜେନାରେଲ କାଉଣ୍ଟ ଭନ୍‌ମଲ୍‌ଟକୀ ।
ଔପନ୍ୟାସିକ—ଆର, ଏଲ, ଷ୍ଟିଭେନ୍‌ସନ୍ ।
ଚିତ୍ରକର—ମିସ୍ ନାୟାର ।
ଅଭିନେତା—ମିଃ ଆଭିଂ ।
ଗାୟିକା—ଶ୍ରୀମତୀ ଏଡ଼େଲିନା ପାର୍ଟି ।
ଅଭିନଜ୍ଞ—ସାର୍ ଗ୍ରୁଲର୍ସ ରସେଲ ।
ଐତିହାସିକ—ଇ, ଏଫ୍ରିମ୍ୟାନ ।
ବୈଜ୍ଞାନିକ—ପ୍ରଫେସାର ଟିଣ୍ଡାଲ ।
ରାସାୟନିକ—ଡାକ୍ତର ପାସଟାର ।
ରାଜନୈତିକ, ଇଂରାଜବକ୍ତା—ଲର୍ଡ ରନଡଲଫ ଚର୍ଚ୍ଚିଲ ।
ସ୍ଵତ୍ତ୍ଵଜ୍ଞ ପଣ୍ଡିତ—ମ୍ୟାକ୍ସମୁଲର ।
ଅଭିନେତ୍ରୀ—ମିସ୍ ଏଲ୍‌ନ ଟେରି ।
ବିଲାତର ପାର୍ଲିଆମେଣ୍ଟର ମେମ୍ବର—ଏ ଜେ ବାଲଫୋର ।
ରାଜନୈତିକ—ପ୍ରିନ୍ସ ବିସମାର୍କ ଭୂତପୂର୍ବ ଜର୍ମାନ ମନ୍ତ୍ରୀ ।
ଇଂଲଣ୍ଡର ସେନାପତି—ଲର୍ଡ ରବାର୍ଟ ।
ଫରାସୀ ବୀର—ଜର୍ଜ ଅର୍ଣଷ୍ଟ ବୁଲେଞ୍ଜାର ।
ପାର୍ଲିଆମେଣ୍ଟର ସଭ୍ୟ—ଯୋସେଫ ଚେମ୍ବରଲେନ ଓ ଲର୍ଡ ରାନଡଲ୍‌ଫ ଚର୍ଚ୍ଚିଲ ।



## ଅବିଷ୍କାରକଗଣ

୧ । ସାମୁଏଲ ଏଫ, ବି. ମର୍ସ—ଟେଲିଗ୍ରାଫର ଅବିଷ୍କାରକ
୨ । ଜର୍ଜ ଷ୍ଟିଫେନସନ୍—ବାଷ୍ପିୟ ଶକଟର ଇଞ୍ଜିନ ପ୍ରସ୍ତୁତ କାରୀ
୩ । ଫ୍ରେଞ୍ଚ ଡ଼ାକ୍ତର ଡେନସ୍ ପପନ୍—ଷ୍ଟିମ୍ ଇଞ୍ଜିନ ପ୍ରସ୍ତୁତ କାରୀ
୪ । ହାନେମାନ୍—ହୋମିଓପ୍ୟାଥିକ ଚିକିତ୍ସାର ଉଦ୍ଭାବକ
୫ । ଏମ ଟମାସ ( ଫ୍ରେଞ୍ଚ ଇଞ୍ଜିନିୟର )—ଅକ୍ଷର ମୁଦ୍ରିତ ପୁସ୍ତକ ପାଠପାଇଁ ଯନ୍ତ୍ର
୬ । ଅର୍କ ରାଇଟ—ତୂଳାର କଳ ଅବିଷ୍କାରକ
୭ । କଲମ୍ବସ—ଅମେରିକା ଅବିଷ୍କାରକ
୮ । ଗଟେନବର୍ଗ—ଅକ୍ଷର ଓ ମୁଦ୍ରାଯନ୍ତ୍ର ଅବିଷ୍କାରକ
୯ । ଜେମସ୍ ଓ୍ୟାଟ—ଷ୍ଟିମଇଞ୍ଜିନ ଅବିଷ୍କାରକ
୧୦ । ଟମାସ ଅଲବା ଏଡ଼ିସନ—ଫନୋଗ୍ରାଫ, ମେଗ୍ରୋଫୋନ, ଫନୋମିଟର ପ୍ରଭୃତି ବହୁବିଧ ଯନ୍ତ୍ର ନିର୍ମାଣ ଓ ଅବିଷ୍କାରକ ଅମେରିକାସ୍ଥ ଓହିଓ ନଗରରେ ଏହାଙ୍କର ଜନ୍ମ ।
୧୧ । ଇଟାଲିୟାନ ମି ମାର୍କୋନି—ତାର ବିହୀନ ଟେଲିଗ୍ରାଫ
୧୨ । ଅଲେକଜାଣ୍ଡର ଗ୍ରହାମ୍‌ବେଲ୍—ଟେଲିଫୋନ ଅବିଷ୍କାରକ
୧୩ । ସିବାଷ୍ଟିୟାନ୍ କ୍ୟାବଟ ( Sebastian Carcut )—ନିଉଫାଉଣ୍ଡଲ୍ୟାଣ୍ଡ ଅବିଷ୍କାରକ
୧୪ । ଟାସମାନ୍ ( Tasman )—ଟାସମାନିଆ ଅବିଷ୍କାରକ
୧୫ । କପ୍ତାନ କୁକ୍ ( Captain Cook ) ନିଉଜିଲ୍ୟାଣ୍ଡ ଅବିଷ୍କାରକ
୧୬ । ଷ୍ଟାନ୍‌ଲି ( Stanley )—ଭିକ୍ଟୋରିୟା ନାଏଞ୍ଜା ପ୍ରଭୃତି ଅବିଷ୍କାରକ



## ଅଦ୍ଭୁତ ରେଳଗାଡ଼ି

### ରୁଷିଆର ଶୂନ୍ୟ ରେଳଗାଡ଼ି

ରୁଷିଆରେ ମାଟି ଉପରେ ଲୁହାଲାଇନ୍ ପକାଇବାର ସୁବିଧା ନାହିଁ ମାତ୍ର ଗାଡ଼ି ଚାଲିବାର କଥା । ସେଥିପାଇଁ ବଡ଼ ବଡ଼ ଲୁହାଖମ୍ବ ଉପରେ ରେଲଲାଇନ୍ ଖଞ୍ଜା ହୋଇ କେତେକ ପରିମାଣରେ ଦୋଳାପରି ଗାଡ଼ି ଚାଲେ । ଗାଡ଼ି ତଳେ, ତା ଉପରେ ଚକ । ମାଟିଠାରୁ ୩୦ ଫୁଟ ଉଚ୍ଚରେ ଲାଇନ୍ ଖଞ୍ଜା ଯାଇଛି । ଗାଡ଼ି ଚକସାହାଯ୍ୟରେ ତଳେ ଝୁଲା ହୋଇ ଚାଲୁଛି ।

### ଷ୍ଟେଟ୍ସର ସାଗରବକ୍ଷସ୍ଥ ପୋଲ

ଉକ୍ତ ରେଲଗାଡ଼ିଠାରୁ ପାଣି ଉପରେ ବନା ପୋଲରେ ରେଲଗାଡ଼ି ଚାଲିବା କଥା ଆହୁରି ଅଦ୍ଭୁତ । ଆମେରିକାର ୧୫୦ ମାଇଲ ଦୂରରେ ସମୁଦ୍ର ମଝିରେ କଉବା ଦ୍ୱୀପ । ଏତେଦୂର ପୋଲ କରିବା ଏକପ୍ରକାର ଅସମ୍ଭବ କଥା । ସେଥିଲାଗି ଇସ୍ପାତର ଖୁବ୍ ଶକ୍ତ ମୋଟା ତାର ଉପରେ ସମୁଦ୍ର ଉପରେ ୧୧୮ମାଇଲ ବ୍ୟାପୀ ଏହି ଲାଇନ ଟଣା ହେଲା । ତାରକୁ ଠିକ ରଖିବା ପାଇଁ ମଝିରେ ମଝିରେ ଅବଶ୍ୟ ବିରାଟକାୟ ବମ୍ବା ( Buoy ) ମାନ ଭସାଇବାକୁ ପଡ଼ିଥିବ । ସେହି ଆଶ୍ଚର୍ଯ୍ୟଜନକ ଲାଇନ୍ ଉପରେ ମଧ୍ୟ ସେହିପରି ଅଦ୍ଭୁତ ଗାଡ଼ି ତିଆରି ହେଲା । ଘଣ୍ଟାରେ ୧୦୦ ମାଇଲ ବେଗରେ ଏ ଗାଡ଼ି ତାର ଉପର ଦେଇ ସମୁଦ୍ର ପାର ହୋଇ ଗୋଟିଏ ଜାହାଜରେ ଯାଇ ପଡ଼େ । କାରଣ କୂଳରୁ ଜାହାଜର ସୁବିଧା ନାହିଁ । ତା' ପରେ ଜାହାଜକୁ ବାନ୍ଧି କଉବା ଦ୍ୱୀପରେ ପହଞ୍ଚେ ।



## ଶ୍ରେଷ୍ଠ ବ୍ୟକ୍ତିଙ୍କ ସ୍ମୃତିରକ୍ଷା ନିମିତ୍ତ ଆଗ୍ରହ

### କେଶର ମୂଲ୍ୟ

ଇଉରୋପର ଅନ୍ୟତମ ଶ୍ରେଷ୍ଠକବି ମିଲ୍‌ଟନଙ୍କ କେଶ ଟ ୪୬୮, ମିଷ୍ଟର ସୁଇଫ୍‌ଟଙ୍କ କେଶ ଟ ୬୬୮, ଏବଂ ଜନ୍‌ସନଙ୍କ କେଶ ଟ ୬୮ ମୂଲ୍ୟରେ ବିକ୍ରୀ ହୋଇ ଯାଇଅଛି ।



## ଭୀମକାୟ ଇଞ୍ଜିନ

ଆମେରିକାର ଭର୍ଜିନିଆ ରେଲପଥ ପାଇଁ ଏକ ଭୀମକାୟ ଇଞ୍ଜିନ ପ୍ରସ୍ତୁତ ହୋଇଅଛି । ତାହା ପୃଥିବୀରେ ସୁବୃହତ୍ ଓ ଶକ୍ତିସମ୍ପନ୍ନ । ୧୪ ଶହ ମହଣ ବୋଝାଇ କରାଯାଇ ପାରେ ଏପରି ୧୫୦ ଖଣ୍ଡ ମାଲଗାଡ଼ି ଆକର୍ଷଣ କରି ତାହା ଘଣ୍ଟାରେ ୧୦ ମାଇଲ ହିସାବରେ ଚଳେ । ସେ ଇଞ୍ଜିନର ଓଜନ ୯ ହଜାର ମହଣ ।



## ଗଭୀରଖଣି

ବେଲଜିଅମ୍ ଅନ୍ତର୍ଗତ ଲେମ୍ବାର୍ଟରେ ୩୫ ଶହ ଫୁଟ ଗଭୀର କୋଇଲାର ଖଣି ଅଛି । ପୃଥିବୀରେ ତାହାହିଁ ସର୍ବାପେକ୍ଷା ଗଭୀର ଖଣି ।



## ପ୍ରତ୍ୟାଖ୍ୟାନରେ ମୃତ୍ୟୁ

ପ୍ରଶାନ୍ତ ମହା ସାଗରରେ ଫିଜି, ମିଲେନେସିଆ ନିଉକାଲିଡୋନିୟା ଏବଂ ଅଷ୍ଟ୍ରେଲିଆ ମଧ୍ୟରେ ମିକାନିଜ ଦ୍ୱୀପପୁଞ୍ଜ ଅଛି । ଉକ୍ତ ସ୍ଥାନରେ ବିଖ୍ୟାତ ଶିକାରୀ ଏବଂ ମନୁଷ୍ୟଖାଦକ ମନୁଷ୍ୟ ବହୁ ପରିମାଣରେ ଦୃଷ୍ଟ ହୁଅନ୍ତି । ସେହି ସବୁ ଜାତିର ଅଧିକାଂଶର ରୀତି ନୀତି ଭୀଷଣ ଓ ଅଦ୍ଭୁତ । ଟିକୋପିଆ ଦ୍ୱୀପରେ ବିବାହ ପ୍ରସ୍ତାବ ପୁରୁଷମାନେ ନ କରି ସ୍ତ୍ରୀମାନେ କରିଥାନ୍ତି । ସେଠାକାର ରାଜକୀୟ ବିଧାନ ଏହି ଯେ, ଯେବେ କୌଣସି ପୁରୁଷ କୌଣସି ଯୁବତୀର ବିବାହ ପ୍ରସ୍ତାବ ଅଗ୍ରାହ୍ୟ କରେ, ତାହାହେଲେ ଯୁବତୀକୁ ଆତ୍ମହତ୍ୟା କରିବାକୁ ହେବ । ସେଥିଲାଗି ଯେବେ ଯୁବତୀ ଭାବ ଭଙ୍ଗୀ ଆଦିରୁ ବୁଝି ପାରିବ ଯେ, ତାହାର ପ୍ରସ୍ତାବ ଅଗ୍ରାହ୍ୟ ହେବ ନାହିଁ, ତେବେ ସେ ଉକ୍ତ ପୁରୁଷ ନିକଟକୁ ଯାଇ ବିବାହ ପ୍ରସ୍ତାବ କରେ । ପ୍ରସ୍ତାବ ଗୃହୀତ ନ ହେଲେ ଯେବେ ଯୁବତୀ ନିଜ ଇଚ୍ଛାରେ ଆତ୍ମହତ୍ୟା ନ କରେ, ତେବେ ତାହାକୁ ଜାତିର ସର୍ଦ୍ଦାରମାନେ ବଳପୂର୍ବକ ହତ୍ୟା କରନ୍ତି ।



## ପ୍ରକାଣ୍ଡ କକ୍ଷ

ସମସ୍ତ ଜଗତ ମଧ୍ୟରେ ପ୍ରକାଣ୍ଡତମ କକ୍ଷ ସେଣ୍ଟପିଟର୍ସବର୍ଗ ନଗରରେ ବିଦ୍ୟମାନ ଅଛି । ତାହା ଗୋଟିଏ ଗୃହ । ତାହା ଦୀର୍ଘରେ ୭୬୦ ଫୁଟ ଏବଂ ପ୍ରସ୍ଥରେ ୨୦୦ ଫୁଟ । ଗୃହଟି ଅସଂଖ୍ୟ ସ୍ତମ୍ଭ ଉପରେ ସ୍ଥାପିତ ଏବଂ ତାହାର ଗୋଟାଏ ମାତ୍ର ଲୁହାର ଖିଲାଣ । ସର୍ବକାଳରେ ଏହି କକ୍ଷ ଆଲୋକିତ କରିବା ନିମନ୍ତେ ୨୦ ହଜାର ମହମବତୀ ଆବଶ୍ୟକ ହୋଇଥାଏ ।



## ପକ୍ଷୀ ଶିକ୍ଷାଗାର

ପାରିସର ମଣ୍ଟ୍ରେଗ ନଗରରେ ଶୁକପକ୍ଷୀମାନଙ୍କୁ ଶିକ୍ଷା ଦେବା ନିମନ୍ତେ ଗୋଟିଏ ବିଦ୍ୟାଳୟ ଅଛି । ସେମାନଙ୍କୁ ବିଜ୍ଞାପନ ଆବୃତ୍ତି କରିବା ଏବଂ କ୍ରେତାମାନଙ୍କୁ ଆହ୍ୱାନ କରିବା ପ୍ରଭୃତି ବିଷୟରେ ଫନୋଗ୍ରାଫ ସାହାଯ୍ୟରେ ଶିକ୍ଷା ଦିଆଯାଇଥାଏ ।



## ପକ୍ଷହୀନ ଉଡ୍ଡୀୟମାନ ନୌକା

ଆମେରିକାର ନିଉୟର୍କ ସହରରେ ଏବେ ବିଳାସ ପାଇଁ ଏକପ୍ରକାର କ୍ଷୁଦ୍ର ନୌକା ଆବିଷ୍କୃତ ହୋଇଅଛି । ଏହାର ସମ୍ମୁଖ ଭାଗରେ କୌଣସି ପ୍ରକାର ଯନ୍ତ୍ର ବା ବ୍ୟୋମଯାନ ଭଳି ନାହିଁ । କେବଳ ପଶ୍ଚାଦ୍ ଭାଗରେ ଇଞ୍ଜିନଟି ଖଞ୍ଜା ହୋଇ ତହିଁରେ ଗୋଟିଏ ଚକ ଲାଗିଛି । ଏହି ଚକଟିର ସହାୟତାରେ ଆରୋହୀ ମନଇଚ୍ଛା ଯେ କୌଣସି ଦିଗରେ ନୌକାଟିକୁ ପରିଚାଳନ କରିପାରେ ଏବଂ ଇଚ୍ଛାନୁସାରେ ଉପରକୁ ମଧ୍ୟ ଉଠାଇ ଉଡ଼ାଇ ପାରେ । ଏହି ନୌକାର ଉପରି ଭାଗରେ ଆରୋହୀଙ୍କୁ ଶୀତାତପରୁ ରକ୍ଷା କରିବା ନିମିତ୍ତ ଯେଉଁ ଛଳ ବା ଛାତ ଅଛି, ତାହା ନାନାବର୍ଣ୍ଣରେ ରଞ୍ଜିତ ହୋଇ ଦର୍ଶକର ଚକ୍ଷୁରେ ବିଚିତ୍ରତାର ଅଞ୍ଜନ ବୋଳି ଦିଏ । ପାଣି ଭିତରେ ଗତି କରୁଥିଲା ବେଳେ ତାହା ପଞ୍ଚବର୍ଣ୍ଣା ପକ୍ଷିଦଳର ଶୋଭା ଧାରଣ କରେ ଏବଂ ଦୂରରୁ ଦର୍ଶକର ମନରେ ଭ୍ରାନ୍ତି ଆନୟନ କରେ ।



## ଅଦ୍ଭୁତ ଦେଶାଚାର

ଲ୍ୟାପଲ୍ୟାଣ୍ଡବାସୀମାନେ କାହାର ମୃତ୍ୟୁ ହେଲେ, ସେମାନଙ୍କର କବର ମଧ୍ୟରେ ଖଣ୍ଡେ କୁରାଢ଼ି, ବୋତଲେ ମଦ କିଛି ମାଂସ ଏବଂ ଚକମକିର ବାକ୍ସ ଦିଅନ୍ତି । କୁରାଢ଼ି ଦେବାର କାରଣ ଏହି ଯେ, ମୃତବ୍ୟକ୍ତି ପରଲୋକକୁ ଯାଉଁ ୨ ବାଟରେ ଯଦି କୌଣସି ଜଙ୍ଗଲ ପଡ଼େ ତେବେ ସେ କୁରାଢ଼ି ଦ୍ୱାରା ପରିଷ୍କାର କରି ଯିବ ଏବଂ ଅନ୍ଧକାର ମଧ୍ୟରେ ପଡ଼ିଲେ ଚକମକି ଦ୍ୱାରା ଆଲୁଅ ଜାଳିବ, ମାଂସ ଓ ମଦ୍ୟରେ କ୍ଷୁଧା ନିବାରଣ କରିବ । ଆହୁରି ସେମାନଙ୍କର ପାଦ୍ରି ସାହେବ ଯେହି ବ୍ୟକ୍ତି-ପାଇଁ ସ୍ୱର୍ଗଦୂତମାନଙ୍କ ନାମରେ ସ୍ୱର୍ଗର ଦ୍ୱାର ଛାଡ଼ିଦେବା ପାଇଁ ସଚ୍ଚରିତ୍ର ଓ ଧାର୍ମିକ ବୋଲି କବର ମଧ୍ୟରେ ଏକ ପତ୍ର ଦିଅନ୍ତି ।



## ଶିଳ୍ପ ଅନୁଷ୍ଠାନ

୧୯୩୦ ସାଲ ସୁଦ୍ଧା ଭାରତରେ ସର୍ବମୋଟ ୮ ହଜାର ୧ ଶହ ୪୮ ଟି ଶିଳ୍ପ ଅନୁଷ୍ଠାନ ଥିଲା । ସେହି ସବୁ ଶିଳ୍ପକମ୍ପାନୀମାନଙ୍କର ମୋଟ ମୂଳଧନ ପ୍ରାୟ ୭ ଶହ କୋଟି ଟଙ୍କା । ଭାରତର ଶିଳ୍ପ ଅନୁଷ୍ଠାନ ଭିତରେ ଭାରତ ଲୋକଙ୍କ ଅଂଶ ମୋଟେ ୩ ଶହ କୋଟି ଟଙ୍କା ଏବଂ ବିଦେଶୀ ଲୋକଙ୍କର ୪ ଶହ କୋଟି ଟଙ୍କା ଅଂଶ ଅଛି ।

ଭାରତର ଲୋକସଂଖ୍ୟା ଯେତେ ଇଂଲଣ୍ଡରେ ତାର ଶହେ ଭାଗରୁ ତେର ଭାଗ । କିନ୍ତୁ ଇଂଲଣ୍ଡରେ ୧୯୨୮ ସାଲରେ ଶିଳ୍ପ କାରଖାନାର ସଂଖ୍ୟା ୧ ଲକ୍ଷ ୫ ଶହ ୭୫ ଏବଂ ସେଥିରେ ମୂଳ-

ଧନ ୬ ହଜାର ୬୨ କୋଟି ଟଙ୍କା ଅର୍ଥାତ୍ ଭାରତରେ ଭାରତ ଲୋକଙ୍କର ଯେତେ ମୂଳଧନ ସେଠା ଲୋକେ ତାର ୨୩ ଗୁଣ ମୂଳଧନ ଖଟାଇଛନ୍ତି ।

ଆମେରିକାର ଲୋକସଂଖ୍ୟା ଭାରତ ଲୋକସଂଖ୍ୟାର ଶହେ ଭାଗରୁ ୩୫ ଭାଗ । ୧୯୨୯ ସାଲରେ ସେଠାରେ ୨ ଲକ୍ଷ ୧୦ ହଜାର ୯ ଶହ ୫୧ଟା ଶିଳ୍ପ କାରଖାନା ଥିଲା । ଏବେ ପୁଣି ବଢ଼ିଲାଣି । ସେଥିରେ ୨୩ ହଜାର କୋଟି ଟଙ୍କା ମୂଳଧନରୂପେ ଖଟା ଯାଇଅଛି । ଭାରତ ତୁଳନାରେ ସେଠା ଲୋକେ ତାଙ୍କ ରାଜ୍ୟରେ ତାର ୬୫ ଗୁଣ ଅଧିକ ଖଟାଇଛନ୍ତି ।

୧୯୩୦ ସାଲର ହିସାବ ଅନୁସାରେ ଭାରତର ଶିଳ୍ପ କାରଖାନା ପ୍ରଭୃତିରେ ୧୫ ଲକ୍ଷ ଲୋକ କାମ କରୁଥିଲେ ଅର୍ଥାତ୍ ଏ ଦେଶରେ ଶ୍ରମିକ ଲୋକ ଯେତେ ଅଛନ୍ତି ସେଥିର ଶହେ ଭାଗରୁ ଭାଗେ ଲୋକ ଏଥିରେ କାମ ପାଇଛନ୍ତି । ଭାରତରେ ଯେତେ ଯେତେ ପ୍ରକାର ଶିଳ୍ପ ବ୍ୟବସାୟ ଅଛି ସେ ସବୁରେ ଶତକରା ୧୦ ଲୋକ ଅନୁପାତରେ ଲୋକ କାମ କରନ୍ତି । କିନ୍ତୁ ଇଂଲଣ୍ଡରେ ଶତକରା ୪୫ ଜଣ । ଆମେରିକାରେ ୨୯ ଜଣ, କେନେଡ଼ାରେ ୨୬, ଜର୍ମାନୀରେ ୩୮ ଏବଂ ଫ୍ରାନ୍ସରେ ୩୧ ଜଣ ଶିଳ୍ପ ବ୍ୟବସାୟରେ ନିଯୁକ୍ତ ଅଛନ୍ତି ।

ଗୃହକାମରେ ଭାରତରେ ଶତକରା ୬୨ରୁ କିଛି ଅଧିକ, ଇଂଲଣ୍ଡରେ ୧୪, ଆମେରିକାରେ ୨୭, କାନେଡ଼ାରେ ୩୫, ଜର୍ମାନୀରେ ୩୫ ଓ ଫ୍ରାନ୍ସରେ ୩୮ ରୁ ସାମାନ୍ୟ ବେଶୀ ।

## ଜଣପିଚ୍ଛା ହାରାହାରି ଆୟ

| ( ଦେଶର ନାମ ) | ( ୧.ଲ୍ଲ ) | ( ଲୁଷ୍ଠ ) |
|---|---|---|
| ଆମେରିକା | ୯୬୩ | ୧୬୫ |
| କେନେଡ଼ା | ୫୪୫ | ୩୪୪ |
| ଇଂଲଣ୍ଡ | ୪୭୫ | ୬୨ |
| ସୁଇଡ଼େନ | ୩୮୪ | ୧୨୯ |
| ଜାପାନ | ୧୮୫ | ୮୫ |
| ଭାରତ | ୧୨ | ୪୮ |



# ଆମେରିକାର ଅନ୍ଧ ଓ ବଧିର

ଆମେରିକା ସ୍ୱାଧୀନ ଦେଶ ଓ ସେଠାକାର ଅଧିବାସୀ ସପ୍ରତି ସୁସଭ୍ୟ । ଏଣୁ ସେଠା ସରକାର ଦେଶବାସୀଙ୍କଠାରେ ସମ୍ପୂର୍ଣ୍ଣ ଦାୟୀ । ସେ ଦେଶର ଶିକ୍ଷା, ସ୍ୱାସ୍ଥ୍ୟ ଓ ସଭ୍ୟତାର କ୍ରମୋନ୍ନତି ନିମନ୍ତେ ସରକାର ସର୍ବଦା ଯତ୍ନପର । ସେଠା ଅନ୍ଧ ବଧିରମାନଙ୍କ ଶିକ୍ଷା ଓ ଆତ୍ମନିର୍ଭରଶୀଳତା ପାଇଁ ସରକାର କିପରି ବ୍ୟବସ୍ଥା କରି ଅଛନ୍ତି, ନିମ୍ନପ୍ରଦତ୍ତ ବିବରଣରୁ ତାହା ଜଣାଯିବ ।

ସେ ଦେଶରେ ଅନ୍ଧ ଛାତ୍ରମାନଙ୍କୁ ବାଧ୍ୟତାମୂଳକ ଶିକ୍ଷା ଦିଆଯାଏ ଏବଂ ସେମାନଙ୍କ ପାଇଁ ୬୧ଟି ବିଦ୍ୟାଳୟ ଅଛି । ସରକାର ପ୍ରାୟ ସବୁ ଛାତ୍ରଙ୍କର ଖିଆପିଆ ଓ ପଢ଼ାପଢ଼ି ଖର୍ଚ୍ଚ ବହନ କରନ୍ତି ଏବଂ ଛୁଟିରେ ନିଜ ନିଜ ଗାଁକୁ ଯିବା ଆସିବାର ଖର୍ଚ୍ଚ ମଧ୍ୟ ଦିଅନ୍ତି । ଅନ୍ଧ ସ୍କୁଲମାନଙ୍କ ପାଇଁ ସେଠା ସରକାର ବାର୍ଷିକ ୧୨ ଲକ୍ଷ ଟଙ୍କା ବ୍ୟୟ କରନ୍ତି ।

ଛାତ୍ରମାନେ ଛଅବର୍ଷ ବୟସରୁ ବିଦ୍ୟାଳୟରେ ନାମ ଲେଖାନ୍ତି । ସେମାନଙ୍କୁ ଲିଖନ, ପଠନ, ଗଣିତ, ଭୂଗୋଳ, ଇତିହାସ, ଲାଟିନ୍, ଗ୍ରୀକ୍, ଜର୍ମାନ୍ ଓ ଫରାସୀ ଭାଷା ବ୍ରେଇଲ୍ ପ୍ରଥା ଅନୁସାରେ ଶିକ୍ଷା ଦିଆଯାଏ ।

ସାଧାରଣ ସ୍କୁଲ ଶିକ୍ଷା ପରେ ଲୁଗାବୁଣା, ସିଲେଇ କାମ, ବଢ଼େଇ କାମ, ଟୋକେଇ ବୁଣା, ବହିବନ୍ଧା, ଟାଇପ୍‌କାମ, ପିଆନାବାଜା ପ୍ରଭୃତି କାର୍ଯ୍ୟ ଶିକ୍ଷା ଦିଆଯାଏ । ଏଥିରେ ସେମାନେ ସେମାନଙ୍କର ଭବିଷ୍ୟତ୍ ଜୀବନ ସ୍ୱାଧୀନଭାବରେ କଟାଇ ପାରନ୍ତି ।

ଏତଦ୍‌ବ୍ୟତୀତ ସଙ୍ଗୀତ ଓ ବ୍ୟାୟାମ ଶିକ୍ଷା ପ୍ରଦତ୍ତ ହୁଏ ।

ସରକାର ବିନା ଖର୍ଚ୍ଚରେ ଘରେ ଥିବା ଅନ୍ଧ ଛାତ୍ରମାନଙ୍କ ପାଇଁ କେତେକ ପୁସ୍ତକ ଓ ମାସିକ ପତ୍ର ପ୍ରକାଶ କରି ବିତରଣ କରନ୍ତି ଏବଂ ଅଧ୍ୟୟନ ପରେ ସେମାନେ ଯେପରି ଚାକିରି ପାଇବେ ତାହାର ବନ୍ଦୋବସ୍ତ କରନ୍ତି । ଏଣୁ ଆଜିକାଲି ୫୦ ହଜାର ଛାତ୍ର ବିଭିନ୍ନ କାର୍ଯ୍ୟରେ ନିଯୁକ୍ତ ଅଛନ୍ତି ।

ଦୁର୍ଜ୍ଜନ ଦୁର୍ବଚନ ବାଣ ।

ବଧିର ଛାତ୍ରଙ୍କ ପାଇଁ ସେଠାରେ ୧୦ ଟି ସ୍କୁଲ ଅଛି ଓ ସରକାରଙ୍କ ଖର୍ଚ୍ଚରେ ୧୦ ହଜାର ଛାତ୍ର ପଢ଼ାପଢ଼ି କରନ୍ତି । ସେମାନେ ଅନ୍ୟର କଥା ସହଜରେ ବୁଝି ପାରନ୍ତି ନାହିଁ ସତ, ମାତ୍ର ବେଶ୍ କହି ପାରନ୍ତି । ହାତ ଅଙ୍ଗୁଳିର ସାଙ୍କେତିକ ଚିହ୍ନ ଦ୍ୱାରା ଅକ୍ଷର ଶିକ୍ଷା କରି ପ୍ରଥମବର୍ଷ ସେମାନେ ୪୦୦।୫୦୦ ପଦ ଶିକ୍ଷା କରନ୍ତି । ୨ୟ ଓ ୩ୟ ବର୍ଷରେ ସେମାନଙ୍କୁ ଦୈନିକ ସାପ୍ତାହିକ ଓ ମାସିକପତ୍ରମାନ ପଢ଼ିବାକୁ ଦିଆଯାଏ ଏବଂ ଏଥି ସଙ୍ଗେ ସଙ୍ଗେ ସେମାନଙ୍କ ଭବିଷ୍ୟତ୍ ଜୀବନ କର୍ମମୟ କରିବା ପାଇଁ ନାନାପ୍ରକାର ଶିଳ୍ପ ଶିକ୍ଷା ମଧ୍ୟ ପ୍ରଦତ୍ତ ହୁଏ । ବର୍ତ୍ତମାନ ଆମେରିକାର ବିଭିନ୍ନ ଦେଶରେ ବଧିର ଛାତ୍ରମାନେ ସୁଖ୍ୟାତି ସହିତ କାର୍ଯ୍ୟ କରୁଅଛନ୍ତି ।



## ଆଧୁନିକ ପାଠାଗାର

ରୁଷିଆର ଇମ୍ପିରିୟାଲ ଲାଇବ୍ରେରୀରେ ୧ ଲକ୍ଷ ୮୦ ହଜାର ପୁସ୍ତକ ଓ ୨୧ ହଜାର ପାଣ୍ଡୁଲିପି ଅଛି ।

ଅଷ୍ଟ୍ରିଆର ରାଜଧାନୀ ଭିଏନାର ପୁସ୍ତକାଗାରରେ ୫ ଲକ୍ଷ ପୁସ୍ତକ ଓ ୬୦ ହଜାର ପାଣ୍ଡୁଲିପି ଅଛି ।

ଡେନ୍‌ମାର୍କର ରାଜଧାନୀ କୋପେନହେଗେନର ପୁସ୍ତକାଗାରରେ ୫ ଲକ୍ଷ ପୁସ୍ତକ ଓ ୧୫ ହଜାର ପାଣ୍ଡୁଲିପି ଅଛି ।

ଜର୍ମାନୀର ବାଭେରିଆ ନଗରସ୍ଥ ପାଠାଗାରରେ ୨ ଲକ୍ଷ ପୁସ୍ତକ ୧୦ ହଜାର ପାଣ୍ଡୁଲିପି ଓ ୨୫ ଖଣ୍ଡ ହସ୍ତାଙ୍କିତ ଛବି ଅଛି ।

ଫ୍ରାନ୍ସଦେଶସ୍ଥ ପାଠାଗାରରେ ୨ ଲକ୍ଷ ପୁସ୍ତକ, ୫ ଲକ୍ଷ କ୍ଷୁଦ୍ର ପୁସ୍ତକ ଓ ୧୫ ହଜାର ପାଣ୍ଡୁଲିପି ଅଛି ।

ଇଂଲଣ୍ଡର ବ୍ରିଟିଶ ମିଉଜିୟମ ଲାଇବ୍ରେରୀ ନାମକ ପାଠାଗାରରେ ବହି ରଖିବା ପାଇଁ ଯେଉଁ ଆଲମାରୀ ଗୁଡ଼ିକ ଅଛି, ତାହା ଏକତ୍ରିତ କଲେ ତାହାର ଦୈର୍ଘ୍ୟ ୩୨ ମାଇଲ ହେବ । ସେଠାରେ ୧୨ ଲକ୍ଷ ୫୦ ହଜାର ପୁସ୍ତକ, ୮୧ ହଜାର ପାଣ୍ଡୁଲିପି ଅଛି । ସେହି ଲାଇବ୍ରେରୀର କର୍ତ୍ତୃପକ୍ଷଗଣ ପ୍ରତିବର୍ଷ ୪୦ ହଜାର ପୁସ୍ତକ ସଂଗ୍ରହ କରନ୍ତି ।

ସମ୍ରାଟ ଚତୁର୍ଦ୍ଦଶ ଲୁଇଙ୍କର ପାଦପରେ ତିନି ଅଧିକ ନେଶନେଲ ପ୍ରେସରେ ୧୪ ଲକ୍ଷ ପୁସ୍ତକ, ୫୦ ଲକ୍ଷ କ୍ଷୁଦ୍ର ପୁସ୍ତକ ଓ ୧ ଲକ୍ଷ ୨୫ ହଜାର ପାଣ୍ଡୁଲିପି ଅଛି । ମାନଚିତ୍ରର ସଂଖ୍ୟା ୧ ଲକ୍ଷ ୫୦ ହଜାର, ଅଙ୍କିତ ଚିତ୍ର ପୁସ୍ତକର ସଂଖ୍ୟା ୧୦ ହଜାର ଓ ନାନାବିଧ ଚିତ୍ର ୧ ଲକ୍ଷ ଅଟେ ।

ରୋମର ଭେଟିକାନ ପ୍ରାସାଦରେ ପୋପମାନଙ୍କର ଯେଉଁ ପାଠାଗାର ଅଛି, ସେଥିରେ ୨ ଲକ୍ଷ ପୁସ୍ତକ ଓ ୪୦ ହଜାର ପାଣ୍ଡୁଲିପି ଅଛି ।



## ଧାତୁନିର୍ମିତ ମନୁଷ୍ୟର ବାକ୍‌ଶକ୍ତି

ଆମେରିକାର ଗୋଟିଏ ବିଦ୍ୟୁତ୍ ସରବରାହ କୋମ୍ପାନୀ ଲୁହାରେ ଏକପ୍ରକାର ମନୁଷ୍ୟ ତିଆରି କରିଅଛନ୍ତି । ମୂର୍ତ୍ତିଟାର ଦେହରେ କଥା କହିବାର ଗୋଟାଏ ଯନ୍ତ୍ର ରହିଛି । ତା' ଛଡ଼ା ସେଥିରେ ବହୁତ କଳ କବ୍ଜାମାନ ଲାଗିଛି । ସେହି ବିଦ୍ୟୁତ୍ ଶକ୍ତିଦ୍ୱାରା ଏହି ଲୌହନିର୍ମିତ ମନୁଷ୍ୟ ବସିବ, ଉଠିବ, ହସିବ, ଗୀତ ଗାଇବ ଏବଂ କୌଣସି ଜିନିଷ ଦେବା'ନେବାକୁ କହିଲେ ମଧ୍ୟ ସେପରି କରି ପାରିବ । ମନୁଷ୍ୟର କଣ୍ଠସ୍ୱର ଶୁଣିଲାମାତ୍ରେ ଏହି ଧାତୁନିର୍ମିତ ମଣିଷର କହିବା ଯନ୍ତ୍ରରେ ସ୍ପନ୍ଦନ ଲାଗେ; ସେଥିରେ ଉକ୍ତ ମଣିଷ ସମସ୍ତ କାର୍ଯ୍ୟକରେ ।



## ଟେଲିଭିଜନ୍ ଯନ୍ତ୍ର

ଏଥିରେ ଦୂରଦେଶର ବନ୍ଧୁବାନ୍ଧବମାନଙ୍କ ଚନ୍ଦ୍ରମୁଖ ଦେଖି ହେବ ଓ ସେମାନଙ୍କ ସଙ୍ଗେ କଥାବାର୍ତ୍ତା କରିହେବ । ଘରେ ବସି ବସି ଥିଏଟର ବାଇସ୍କୋପର ବାସ୍ତବିକ ଅଭିନୟ ମଧ୍ୟ ଦେଖିହେବ ।



ମର୍ମ ବଦାରେ ଉତ୍କ୍ଷଣ ॥

## ମିଲିଫୋନ

ହଙ୍ଗାରୀରେ ଜଣେ ଇଞ୍ଜିନିୟର ଏକପ୍ରକାର କ୍ଷୁଦ୍ର ଗ୍ରାମୋଫୋନ ଆବିଷ୍କାର କରିଅଛନ୍ତି । ତାହାର ଆକାର ଗୋଟିଏ ପକେଟ ଘଡ଼ିର ସମାନ ହେବ । ତାହାର ନାମ 'ମିଲିଫୋନ' । ତହିଁ ମଧ୍ୟରେ ୧୦ ଖଣ୍ଡି ରେକର୍ଡ଼ ରହି ପାରିବ ଏବଂ ତହିଁରେ ସୃଦ୍ଧ ଦେଇ ଗୋଟିଏ ଛୋଟ ଗିଲାସ ଉପରେ ରଖିଦେଲେ ଗୋଟିଏ ହଲ ମଧ୍ୟରେ ଗୀତଗୁଡିକ ସ୍ପଷ୍ଟରୂପେ ଶୁଣାଯିବ ।

---

## ସତ୍ୟ ପ୍ରୀତି

ବୋର୍ଣ୍ଣିଓ ଦ୍ୱୀପର ସମୁଦ୍ର ତୀରବର୍ତ୍ତୀ ଧୀବରମାନେ ପ୍ରାଣହାନିର ଆଶଙ୍କା ଉପସ୍ଥିତ ହେଲେ ସୁଦ୍ଧା ମିଥ୍ୟାକଥା କହି ଅପରଙ୍କୁ ପ୍ରତାରିତ କରନ୍ତି ନାହିଁ । ସେମାନେ ମିଥ୍ୟାକଥା କହିବାକୁ ନରହତ୍ୟା ଅପେକ୍ଷା ଅଧିକ ଗୁରୁତର ପାପ ବୋଲି ମନେ କରନ୍ତି । ଆଜକାଲି ଏପରି ପ୍ରଗାଢ଼ ଶ୍ରଦ୍ଧା ଅତି ଅଳ୍ପ ଦେଖାଯାଏ ।

---

## ସୁଇଜର୍ଲଣ୍ଡରେ ବିବାହ

ଟିଷ୍ଟ ପ୍ରଦେଶରେ ୨୫ ବର୍ଷ ବୟସର କନ୍ୟା ଏବଂ ୩୦ ବର୍ଷ ବୟସ୍କ ବର ସୁସ୍ଥକାୟ ବୋଲି ପରୀକ୍ଷିତ ହେଲେ ଏକପ୍ରକାର ସାମାଜିକ ନିୟମରେ ଗୁଳି ଖେଳାଦ୍ୱାରା ସେମାନଙ୍କର ପରିଣୟ-କ୍ରିୟା ସମ୍ପନ୍ନ ହୋଇଥାଏ । ଯେଉଁ ବରର ନାମ ସହିତ ଯେଉଁ କନ୍ୟାର ନାମ ଉଠିବ, ତାହାକୁ କନ୍ୟା ବରଣ କରିବାକୁ ବାଧ୍ୟ ।

---

## ଅଦ୍ୱିତୀୟ କଲେଜ

ଆମେରିକା ରାଜଧାନୀ ଓ୍ୱାସିଂଟନରେ ବଧିରମାନଙ୍କ ପାଇଁ ଯେଉଁ 'Gallaudep ବଧିର କଲେଜ' ଅଛି ତାହା ପୃଥିବୀରେ ଅଦ୍ୱିତୀୟ ।



## ନାରୀଜାତିର କୃତିତ୍ୱ

ଗତ ମହାସମରରେ ୧୦ ଲକ୍ଷ ୭୧ ହଜାର ଯୁବତୀ ଓ ପ୍ରୌଢ଼ା ବିଲାତର ନାନା ବିଭାଗରେ କାର୍ଯ୍ୟ କରିଥିଲେ । ଯଥା :— ଶ୍ରମଶିଳ୍ପର କାରଖାନା ଏବଂ ଗୋଳା ଗୁଳି କାର୍ଯ୍ୟରେ ୩ ଲକ୍ଷ ୭୭ ହଜାର, ବ୍ୟବସାୟ ବାଣିଜ୍ୟରେ ୧ ଲକ୍ଷ ୭୮ ହଜାର, ସରକାରୀ ଅଫିସ ବିଭାଗରେ ୧ ଲକ୍ଷ ୩୧ ହଜାର, ସିଭିଲ୍-ସର୍ଭିସରେ ୭୬ ହଜାର, ଟ୍ରାନ୍ସପୋର୍ଟରେ ୫୧ ହଜାର, ବ୍ୟାଙ୍କ ଓ ହିସାବ କାର୍ଯ୍ୟରେ ୪୬ ହଜାର, ପ୍ରାଦେଶିକ ଗଭର୍ଣ୍ଣମେଣ୍ଟଙ୍କ ଦପ୍ତରରେ ୪୦ ହଜାର । ସେମାନେ ପ୍ରକୃତ ସହଧର୍ମିଣୀ ।



## ଭାସମାନ ଗୃହ

ଶ୍ୟାମ ଦେଶର ରାଜଧାନୀ ବ୍ୟାଙ୍କକ ସହରରେ ୭୧ ହଜାର ଗୃହ ଭାସମାନ ଭେଳା ଉପରେ ନିର୍ମିତ ।



## ଯନ୍ତ୍ର ସଂବାଦ ।

ଖ୍ରୀଷ୍ଟୀୟ ଦଶମ ଶତାବ୍ଦୀରେ ଚୀନଦେଶର ରାଜମନ୍ତ୍ରୀ "ଫୁଟେଓ" ମୁଦ୍ରାଯନ୍ତ୍ର ବା ଛାପାକଳ ପ୍ରଥମେ ଆବିଷ୍କାର କରନ୍ତି । ସେ ସମୟରେ କାଷ୍ଠ ଫଳକରେ ଅକ୍ଷର ଖୋଦିତ କରି ହାତରେ ଛାପା କରା ଯାଉଥିଲା ।

ଇଂଲଣ୍ଡବାସୀ ଜର୍ଜ ଷ୍ଟିଫେନ୍‌ସନ ୧୮୩୧ ଖ୍ରୀଷ୍ଟାବ୍ଦରେ ଗତିକାରକ ବାଷ୍ପୀୟ ଯନ୍ତ୍ରର ସୃଷ୍ଟି କଲେ ।

ଆମେରିକାବାସୀ ରବର୍ଟ ଫୁଲ୍‌ଟନ୍ କଳଜାହାଜର ଉଦ୍ଭାବନ କର୍ତ୍ତା ।

୧୭୮୨ ଖ୍ରୀଷ୍ଟାବ୍ଦରେ ଫରାସୀ ଦେଶୀୟ ଜୋସେଫ ମୋଗଲଫିୟ ଏବଂ ଷ୍ଟୀଭନ ମୋଗଲଫିୟ ନାମକ ଦୁଇଭାଇ ପ୍ରଥମରେ ବେଲୁନ୍ ଉଡ଼ାଇବାର ଶିକ୍ଷା କଲେ ।

୧୬୦୦ ଖ୍ରୀଷ୍ଟାବ୍ଦର ଶେଷଭାଗରେ ଇଂଲଣ୍ଡ ଓ ହଲାଣ୍ଡରେ ଦୂରବୀକ୍ଷଣ ଯନ୍ତ୍ରର ବ୍ୟବହାର ଆରମ୍ଭ ହୋଇଥିଲା ।

୧୬୦୯ ଖ୍ରୀଷ୍ଟାବ୍ଦରେ ଗ୍ୟାଲିଲି ଓ ଏହି ଯନ୍ତ୍ରର ବିଶେଷ ଉନ୍ନତି ସାଧନ କଲେ ।

ଗ୍ୟାଲିଲିଓ ଓ ଜନସନଙ୍କ ଦ୍ୱାରା ୧୬୦୦ ଖ୍ରୀଷ୍ଟାବ୍ଦର ପ୍ରଥମ ଭାଗରେ ଅଣୁବୀକ୍ଷଣ ଯନ୍ତ୍ରର ବ୍ୟବହାର ଆରମ୍ଭ ହେଲା ।

୧୬୪୩ ଖ୍ରୀଷ୍ଟାବ୍ଦରେ ଟେରିସେଲି ନାମକ ପଣ୍ଡିତ ବାୟୁମାନ ଯନ୍ତ୍ର ଆବିଷ୍କାର କରିଥିଲେ ।

୧୮୩୭ ଖ୍ରୀଷ୍ଟାବ୍ଦରେ କୁକ୍ ଓ ହୋୟେଟ୍‌ଷ୍ଟୋନ ନାମକ ଦୁଇଜଣ ସାହେବ ଟେଲିଗ୍ରାଫ୍ ଯନ୍ତ୍ର ଆବିଷ୍କାର କରିଥିଲେ ।

୧୮୩୯ ଖ୍ରୀଷ୍ଟାବ୍ଦରେ ଫ୍ରାନ୍ସଦେଶୀୟ ଡ୍ୟାଗିଭର ନାମକ ଏକ ବ୍ୟକ୍ତି ପ୍ରଥମରେ ଫଟୋଗ୍ରାଫ ଯନ୍ତ୍ର ଆବିଷ୍କାର କରିଥିଲେ ।

ଆମେରିକାର ବିଖ୍ୟାତ ବିଜ୍ଞାନବିଦ୍ ଏଡିସନ ସାହେବ ଫନୋଗ୍ରାଫ୍ ଯନ୍ତ୍ର ଆବିଷ୍କାର କରିଥିଲେ ।



## ରାଜାମାନଙ୍କର ବୃତ୍ତି ।

ପୃଥିବୀର ବିଭିନ୍ନ ଦେଶର ରାଜାମାନେ ପ୍ରଜାପୁଞ୍ଜଙ୍କ ନିକଟରୁ ଯେଉଁ ବୃତ୍ତି ପ୍ରାପ୍ତ ହୁଅନ୍ତି ସେଥିରେ ସେମାନେ ନିଜ ନିଜର ଭୃତ୍ୟ, ଗାଡିଘୋଡ଼ା ରଖିବା ବ୍ୟୟ, ନିଜର ଏବଂ ଗୃହର ଯାବତୀୟ ଖର୍ଚ୍ଚ ଆଦି ସମସ୍ତ ବ୍ୟୟ ନିର୍ବାହ କରିଥାନ୍ତି । ପ୍ରଜାଙ୍କ ବିନାନୁମତିରେ ନିର୍ଦ୍ଦିଷ୍ଟ ବୃତ୍ତି ବ୍ୟତୀତ ଆଉ ଏକ ପଇସା ସୁଦ୍ଧା ନେଇ ବ୍ୟୟ କରିବାର ଅଧିକାର କୌଣସି ରାଜାଙ୍କର ନାହିଁ ।

ଇଂଲଣ୍ଡେଶ୍ୱର ମହାମାନ୍ୟ ପଞ୍ଚମଜର୍ଜ୍ଜ ବାର୍ଷିକ ୭୭ ଲକ୍ଷ ୫୦ ହଜାର ଟଙ୍କା ବୃତ୍ତି ପାଆନ୍ତି । ଏହା ଛଡ଼ା ତାଙ୍କ ନିଜ ଜମିଦାରୀର ବାର୍ଷିକ ଆୟ ୯ ଲକ୍ଷ ୪୫ ହଜାର ଟଙ୍କା । ପ୍ରାସାଦାଦି ମରାମତି ନିମନ୍ତେ ତାହାଙ୍କୁ ରାଜକୋଷରୁ ବାର୍ଷିକ ୩୦ ଲକ୍ଷ ଟଙ୍କା ଦିଆଯାଏ ।

ରୁଷସମ୍ରାଟ୍ ୨ୟ ନିକୋଲସ ବାର୍ଷିକ ୨ କୋଟି ୨ ଲକ୍ଷ ଟଙ୍କା ବୃତ୍ତି ପାଉଥିଲେ । ଏହାଛଡ଼ା ତାଙ୍କର ନିଜର କ୍ରୀଡ଼ାକ୍ଷେତ୍ର, ଅରଣ୍ୟ ଏବଂ ଆକର ଥିଲା । ସେହି ସମସ୍ତ ସମ୍ପତ୍ତିର ଉପସ୍ୱତ୍ୱ ଏବଂ ବୃତ୍ତି ଉଭୟ ମିଳିତ ହୋଇ ସମ୍ରାଟଙ୍କ ବାର୍ଷିକ ଆୟ ୧୨୦ କୋଟି ଟଙ୍କା ଥିଲା । ବର୍ତ୍ତମାନ ରାଜବଂଶ ଲୁପ୍ତ ।

ଜର୍ମାନ ସମ୍ରାଟ୍ ୨ୟ ଉଇଲିୟମ୍ ଜର୍ମାନ୍ ସମ୍ରାଟ୍ ରୂପେ ବାର୍ଷିକ ୧୯ ଲକ୍ଷ ୫୦ ହଜାର ଟଙ୍କା ଏବଂ ପ୍ରୁସିଆର ରାଜାରୂପେ ୧ କୋଟି ୧୫ ଲକ୍ଷ ୫୮ ହଜାର ୩୧୦ ଟଙ୍କା ବୃତ୍ତି ପ୍ରାପ୍ତ ହେଉଥିଲେ ।

ସ୍ପେନ୍‌ରାଜା ଆଲ୍‌ଫାଣ୍ସୋ ବାର୍ଷିକ ୩୫ ଲକ୍ଷ ୩୨ ହଜାର ୫ ଶତ ଟଙ୍କା ବୃତ୍ତିପ୍ରାପ୍ତ ହୁଅନ୍ତି ।

ଇଟାଲିର ରାଜା ଭିକ୍‌ଟର୍ ଇମାନୁୟେଲ୍ ପ୍ରତିବର୍ଷ ରାଜକୋଷରୁ ୯୮ ଲକ୍ଷ ୧୦ ହଜାର ଟଙ୍କା ବୃତ୍ତି ପ୍ରାପ୍ତ ହୁଅନ୍ତି ।



## ନୂତନ ମାନଚିତ୍ର

ଆକାଶରେ ବସି ଉଡ଼ା-ଜାହାଜରୁ ତଳ ଜମିର ଯେଉଁ 'ଫଟୋ' ନିଆଯାଏ, ସେଥିରୁ ଅତି ପରିଷ୍କାର ଓ ନିର୍ଭୁଲ ମାନଚିତ୍ର ତିଆର ହେଉଅଛି । ଯୁଦ୍ଧ ସମୟରେ ଏହି ଉପାୟରେ ତିଆର ମାନଚିତ୍ରମାନ ସବୁଠାରୁ ଅଧିକ କାର୍ଯ୍ୟରେ ଲାଗିଥିଲା । ୧୦ ହଜାର ଫୁଟ ଉଚ୍ଚରୁ "କ୍ୟାମେରା"ର ମୁହଁରେ ପ୍ରତିଥର ଖଣ୍ଡେ ଛବି ଦୁଇ ବର୍ଗମାଇଲ ପରିମିତ ସ୍ଥାନର ଚିତ୍ର ଉଠେ । ଯେଉଁ ଦେଶର ଯେଉଁ ଅଂଶର ଖଣ୍ଡେ ନିର୍ଭୁଲ ମାନଚିତ୍ର ଦରକାର ହୁଏ, ଉଡ଼ା-ଜାହାଜର 'କ୍ୟାମେରା' ସେହି ଦେଶ ଉପର ଦେଇ ଉଡ଼ି ଉଡ଼ି କ୍ରମାଗତ ତାର 'ଫଟୋ' ଉଠାଇ ନିଏ—କ୍ରମେ ସମସ୍ତ ଜାଗାର ଛବି ନେବା ଶେଷ ହେଲେ ଓହ୍ଲାଇ ଆସେ । ତେତେବେଳେ

ଜଣ କେଉଁ ଲୋକ ନିଜ ସେହି ଛବିମାନ ଆଉ ଥରେ ବଡ଼ ବାକ୍ସର ଉପର ଠିକ ପଟ-ପଟ ସାଜ ଆଣିଦିଅନ୍ତି, ତା'ପରେ ଜଣେ ମୁଦ୍ରଣ ନକ୍ସାକାର ସେହିଗୁଡ଼ିକରୁ ଖଣ୍ଡେ ଚମତ୍କାର ନମୁନାଲିପି ମାନ ଛବି ଛାପି କରିଦିଏ ।



## ଉଲ୍କାପିଣ୍ଡ

ଉଲ୍କାପିଣ୍ଡ-ଲୌହ ଓ ପ୍ରସ୍ତର ମିଶ୍ରିତ ଏକ ପ୍ରକାର ଧାତବ ପଦାର୍ଥବତ୍ ବସ୍ତୁ । ଏହି ଧାତୁପିଣ୍ଡ ଗ୍ରହାନ୍ତରୁ ପୃଥିବୀର ଆକାଶ ମଣ୍ଡଳରେ ସଞ୍ଚାରିତ ହୋଇ ବାୟୁର ସଂଘର୍ଷରେ ଭୀଷଣ ଉତ୍ତପ୍ତ ହୋଇ ଉଠେ, ଏବଂ ଅଗ୍ନିମୟ ଦୀପ୍ତି ବିକୀର୍ଣ୍ଣ କରୁଥାଏ । ତାହା ଭୀଷଣ ବେଗରେ ପୃଥିବୀ ଉପରେ ଆସି ପଡ଼େ ବୋଲି ଚୂର୍ଣ୍ଣବିଚୂର୍ଣ୍ଣ ହୋଇଯାଏ । ପତନ କାଳରେ ଏହାର ଚତୁଃପାର୍ଶ୍ୱସ୍ଥ ବାୟୁମଣ୍ଡଳ ସହସା ଉତ୍ତପ୍ତ ହୋଇ ଉଠେ ବୋଲି ବଜ୍ରାଘାତ ପରି ଉଲ୍କାପାତରେ ମଧ୍ୟ ଭୀଷଣ ଶବ୍ଦ ଉତ୍ପନ୍ନ ହୁଏ ।

ୟୁରୋପର ଅନେକ ବଡ଼ ବଡ଼ ସହରର ଯାଦୁଘରରେ ଶୀତଳ ଉଲ୍କାପିଣ୍ଡମାନ ସଂଗ୍ରହ କରାଯାଇ ସଯତ୍ନରେ ରକ୍ଷିତ ହୋଇଅଛି । ତନ୍ମଧ୍ୟରେ ଆମେରିକାର ନିଉୟର୍କ ସହରର ଯାଦୁଘରରେ ସଂରକ୍ଷିତ ଉଲ୍କାପିଣ୍ଡଟି ପୃଥିବୀ ମଧ୍ୟରେ ସର୍ବାପେକ୍ଷା ବୃହତ୍ତମ । ତାହା ଓଜନରେ ପ୍ରାୟ ୩୬ ଟନ (୧୦୨୨ ମହଣ) । ଆକାରରେ ପ୍ରାୟ ୧୧ ଫିଟ ଲମ୍ବା, ୭ ଫିଟ ଚଉଡ଼ା ଓ ୬ ଫିଟ ୧ ଇଞ୍ଚ ଉଚ୍ଚ । ଅଭିଜ୍ଞ ଧାତୁବିଦ୍‌ମାନେ କହନ୍ତି, ଏହି ପ୍ରକାଣ୍ଡ ଉଲ୍କାପିଣ୍ଡ ଯେତେବେଳେ ପ୍ରଥମ ଏହି ପୃଥିବୀରେ ଆସି ପଡ଼ିଥିଲା, ସେତେବେଳେ ଏହା ଓଜନରେ ଓ ଆକାରରେ ଅଧିକ ବୃହତ୍ତର ଥିଲା, କାରଣ, ଗ୍ରୀନ୍‌ଲ୍ୟାଣ୍ଡର ଆଦିମ ଅଧିବାସୀମାନେ ସହସ୍ରେ ଅଗଣିତ ଶତାବ୍ଦୀକାଳ ଛୁରୀଫଳକ ନିର୍ମାଣାର୍ଥ ଏଥିରୁ ଅଂଶ ଭାଙ୍ଗି ଭାଙ୍ଗି ନେଇ ଅଛନ୍ତି ।



## ଆବର୍ତ୍ତନୀୟ କକ୍ଷ

ସ୍ଥାନାଭାବ କଷ୍ଟ ଓ ଅସୁବିଧା ଦୂର କରିବା ପାଇଁ ଜଣେ ଆମେରିକାବାସୀ ଏକ ନୂତନ ଉପାୟରେ ଏକ ପ୍ରକାର ଆବର୍ତ୍ତନୀୟ କକ୍ଷ ଆବିଷ୍କାର କରି ଅଛନ୍ତି । ତାହା ଗୃହସ୍ଥର ଇଚ୍ଛା ଓ ଆବଶ୍ୟକ ଅନୁସାରେ ପରିବର୍ତ୍ତିତ କରି ବସିବାର, ଶୋଇବାର, ଖାଇବାର, ରାନ୍ଧିବାର, ପଢ଼ିବାର ବା ସ୍ନାନ-କରିବାର ଘରରେ ରୂପାନ୍ତରିତ କରି ନିଆ ଯାଇପାରେ । ସେହି ଆବର୍ତ୍ତନୀୟ କକ୍ଷଟି ୪।୫ଟି ପ୍ରକୋଷ୍ଠରେ ବିଭକ୍ତ । ଗୋଟିକରେ ଖଣ୍ଡେ ମୋଡ଼ା ଖଟ ଅଛି । ତାହାକୁ ଇଚ୍ଛାନୁସାରେ ଟାଣି ପକାଯାଏ, ପୁଣି ମୋଡ଼ି ରଖାଯାଏ । ଗୋଟିକରେ ଦର୍ପଣ ଓ ଦେରାଜବାଲା ଏକ ଅଲମାରି ଅଛି । ଗୋଟିକରେ ରାନ୍ଧିବାର ଓ ଖାଇବାର ସରଞ୍ଜାମ ସମସ୍ତ ବନ୍ଦୋବସ୍ତ କରିବା, ଗୋଟିକରେ ଲେଖିବାର ଟେବୁଲ 'ବୁକ୍ କେସ୍' ଇତ୍ୟାଦି ସଜା ହୋଇଅଛି । ଘରର ଏକକୋଣରେ କାଠର ମଝିରେ, ସେହି ଆବର୍ତ୍ତନୀୟ କକ୍ଷର ମାପରେ ଗୋଲ କରି କାଟି ପକାଇଲେ, ସେଠାରେ ଏହି ନୂତନ ଆସବାବ୍‌ଟି ନିମିତ୍ତ ଏକ ଫ୍ରେମ ବସାଇବାକୁ ହୁଏ । ସେହି ଫ୍ରେମରେ ଅଣ୍ଡା ପେଷ ଉପରେ ଏହି ଆବର୍ତ୍ତନୀୟ କକ୍ଷଟି ସଙ୍କଳିତ ଥାଏ । ସାମନାରେ ଗୋଟିଏ କାଠର 'ପାର୍ଟିସନ' । ପାର୍ଟିସନର ଗୋଟିଏ ପାଖ ଏହି ଆବର୍ତ୍ତନୀୟ କକ୍ଷର ଅଭ୍ୟନ୍ତରସ୍ଥ କ୍ଷୁଦ୍ର ପ୍ରକୋଷ୍ଠର ମାପରେ କଟା ଯାଇଛି । ଅନ୍ୟ ପାଖରେ ସ୍ନାନଘରର ବନ୍ଦୋବସ୍ତ । ପାର୍ଟିସନର ଯେଉଁ ଅଂଶଟି ଖୋଲାଥାଏ, ସେଠାରେ ଆବର୍ତ୍ତନୀୟ କକ୍ଷର ଯେତେବେଳେ ଯେଉଁ ପ୍ରକୋଷ୍ଠଟି ଘୂରାଇ ରଖାଯାଏ, ସେତେବେଳେ ସମସ୍ତ ଘର ଖଣ୍ଡି ସେହି ପ୍ରୟୋଜନରେ ବ୍ୟବହୃତ ହୋଇପାରେ ।



## ଭାସମାନ ସେତୁ

ଜର୍ମାନୀର 'ହନ୍‌ଞ୍ଜେନ' ପ୍ରଦେଶ ନିକଟରେ ରାଇନ୍ ନଦୀର ବିଶାଳତା ପ୍ରାୟ ୧୪୪୦ ଫିଟ । ଏଠାରେ ସ୍ରୋତର ଗତି ଘଣ୍ଟାରେ ୪ ମାଇଲ କରି ଏବଂ ନଦୀର ଗଭୀରତା ପ୍ରାୟ ୨୫ ଫିଟରୁ ବେଶୀ । ନଦୀର ତଳଦେଶ ପଙ୍କସଙ୍କୁଳ ବୋଲି

ଜରଚେ ଲେଢେ ଲେଗ ମନେ ।

ଏହା ଉପରେ ସେତୁ ବନ୍ଧନ କରିବା ଅତି ଦୁରୂହ କାର୍ଯ୍ୟ । ଆମେରିକାର ସାମରିକ ଇଞ୍ଜିନିୟରଗଣ ଜର୍ମାନୀ ନିକଟରୁ ମାଲ ମସଲା ସଂଗ୍ରହ କରି ଏହା ଉପରେ ୫୮ ମିନିଟ ମଧ୍ୟରେ ଏକ ଭାସମାନ ସେତୁ ନିର୍ମାଣ କରି ଦେଇଥିଲେ । ଏହି ସେତୁଟି ମୂଳରୁ ଶେଷ ପର୍ଯ୍ୟନ୍ତ ପାଖକୁ ପାଖ ପଲ୍ଟୁନ ଉପରେ ତିଆରି ହୋଇଅଛି । ପଲ୍ଟୁନର ପ୍ରତ୍ୟେକ ବୋଟ ଖଣ୍ଡରେ ଦେଢ଼ ମହଣ ଓଜନର ଏକ ଏକ ନଙ୍ଗର ବନ୍ଧା ଅଛି ଏବଂ ଆହୁରି ଅଧିକ ନିରାପଦ ହେବାପାଇଁ ସେତୁର ମଧ୍ୟଭାଗରେ ୭୨ ମହଣ ଓଜନର ଅତିରିକ୍ତ ୨ଟି ନଙ୍ଗର ଦିଆ ହୋଇଅଛି । ନଙ୍ଗରମାନ ସେତୁଠାରୁ ପ୍ରାୟ ୧୫୦ ଫିଟ ଦୂରତାରେ ବନ୍ଧା ହୋଇଅଛି । ସେଥିରୁ ଗୋଟିଏ ନଙ୍ଗର ଭାସି ଯାଇଛି ।



## ନକଲି କାଠ

ଆମେରିକାର ଯୁକ୍ତରାଜ୍ୟସ୍ଥିତ ଇଓଆ ( Iowa ) ଷ୍ଟେଟ୍ କଲେଜରେ କେତେକ ଶସ୍ୟର ନଡ଼ାରୁ ଉପକରଣ ପ୍ରସ୍ତୁତ କରି ଏକ ପ୍ରକାର କାଠ ପ୍ରସ୍ତୁତ କରା ଯାଉଛି । ତାହା ଶାଗୁଆନ କାଠ ଠାରୁ ଟାଣ ଓ ଇସ୍ପାତ ପରି ଶକ୍ତ ହେବାର ଜଣାଯାଇଛି । ସେହି ନକଲି କାଠରେ ସୁନ୍ଦର ଉପକରଣ ପ୍ରସ୍ତୁତ ଉତ୍କୃଷ୍ଟ ବୋଲି ପ୍ରମାଣିତ ।



## ମୃତ ସଞ୍ଜୀବନୀ ଯନ୍ତ୍ର

ଜର୍ମାନୀର ସୁବିଖ୍ୟାତ ବୈଜ୍ଞାନିକ ଡାକ୍ତର ଆଲବର୍ଟ ଏଚ୍, ହାଇମେନ୍ ଏକ ପ୍ରକାର ଯନ୍ତ୍ର ପ୍ରସ୍ତୁତ କରିଅଛନ୍ତି । ସେଥିରେ ମୃତବ୍ୟକ୍ତି ପୁନର୍ଜୀବିତ ହୁଏ । ସେ ଯନ୍ତ୍ରରେ ଏକ ପ୍ରକାର ଛୁଞ୍ଚି ଲାଗିଛି । ସେହି ଛୁଞ୍ଚିଦ୍ୱାରା ହୃଦୟରେ ଇଞ୍ଜେକ୍ସନ୍ ଲଗାଇ କୃତ୍ରିମ ବିଦ୍ୟୁତରେ ତାହାକୁ ପୂର୍ଣ୍ଣ କରି ଦିଆଯାଏ । ଏଥିରେ ହୃଦୟର ବନ୍ଦ ହୋଇଥିବା ଗତି ପୁନର୍ବାର ଆରମ୍ଭ ହୁଏ ଓ ମୃତ ମନୁଷ୍ୟ ଜୀବିତ ହୋଇ ଉଠେ । ନିୟମ ଏତିକି ଯେ ମରିଯିବାର ଦଶ ପନ୍ଦର ମିନିଟ ମଧ୍ୟରେ ମୃତବ୍ୟକ୍ତି ଠାରେ ଏହି ଯନ୍ତ୍ର ପ୍ରୟୋଗ କରିବାକୁ ହୁଏ ।



## ପାକିସ୍ତାନ ଭୂମଧ୍ୟସ୍ଥ ମନୁଷ୍ୟ ନିର୍ମିତ ବାସଭବନ

କେତେ ହଜାର ବର୍ଷ ଚାଲିଗଲାଣି, କିନ୍ତୁ ଅଦ୍ୟାପି ଏହା ସ୍ୱାଭାବିକ ଅବସ୍ଥାରେ ରହିଅଛି । ତୁର୍କ ରାଜଧାନୀ କନଷ୍ଟାଣ୍ଟିନୋପ୍‌ଲରେ ଏହି ଭବନ ଏକ ହ୍ରଦ ମଧ୍ୟରେ ନିର୍ମିତ ଓ ବଡ଼ ବଡ଼ ସ୍ତମ୍ଭଦ୍ୱାରା ରକ୍ଷିତ ଏବଂ ମାର୍ବେଲ ପ୍ରସ୍ତର ନିର୍ମିତ କାରୁକାର୍ଯ୍ୟମୟ ସ୍ତମ୍ଭ-ଦ୍ୱାରା ପରିଶୋଭିତ । ଏହାର ପ୍ରବେଶ ଦ୍ୱାର ଆଜପର୍ଯ୍ୟନ୍ତ ଆବିଷ୍କୃତ ହୋଇନାହିଁ । କୌଣସି ସମୟରେ ନଗରର କିୟଦଂଶ ଧ୍ୱଂସ ହେବାରୁ ଲୋକେ ଏ ଗୁପ୍ତଭବନର ସନ୍ଧାନ ପାଇଲେ । ଜଣେ ଇଂରାଜ ନୌକାରୋହଣରେ ଥରେ ଭିତରକୁ ଯାଇ କିଛି ତତ୍ତ୍ୱ ପାଇଲେ ନାହିଁ ଏବଂ ହ୍ରଦରୁ ମଧ୍ୟ ଆଉ ଉଠି ପାରିଲେ ନାହିଁ । ଆଉ ଜଣେ ସେହିପରି ନୌଯାନରେ କିଛିଦୂର ଯାଇ ଗାଢ଼ ଅନ୍ଧକାର ହେତୁ ପ୍ରତ୍ୟାଗମନ କଲେ । ଏହାଠାରୁ ଦେଢ଼କ୍ରୋଶ ଅନ୍ତରରେ ସୁଲତାନ ସୁହର ନିକଟ ସେହି ହ୍ରଦସ୍ଥ ଅଟ୍ଟାଳିକା ପରିଦୃଷ୍ଟ ହୁଏ । ଏଥିରୁ ଅନୁଭୂତ ହୁଏ ଯେ, ଏହି ଗୁପ୍ତ ଭବନ ଅତି ବୃହତ୍ ।



## ସମ୍ବାଦପତ୍ର ପ୍ରୀତି—

ପୃଥିବୀର ସବୁ ଜାତିଠାରୁ ଜର୍ମାନଜାତି ବଡ଼ ସମ୍ବାଦପତ୍ର-ପ୍ରିୟ ବୋଲି ଜଣାଯାଇଅଛି । କେବଳ ବର୍ଲିନ ସହରରୁ ଦୈନିକ କାଗଜ ୮୦ ଗୋଟି ପ୍ରକାଶ ପାଉଅଛି । ଏହାର ଲୋକ କାମକୁ ଯାଉଁ ଓ ବାଟରେ କାମରୁ ଫେରିବାବେଳେ, ବରଂ ଦୋକାନ ଘରେ ଏବଂ ରାତିରେ ଶୋଇବାବେଳେ, ସବୁ-ବେଳେ ସମ୍ବାଦପତ୍ର ପଢ଼ୁଅଛନ୍ତି ।

ଏହି ଦୈନିକ ୮୦ ଗୋଟି ମଧ୍ୟରୁ ଦିନକେ ଦୁଇଥର ୧୧ ଗୋଟି ଏବଂ ୩ ଥର ପ୍ରାୟ ୫୦ ଟି ସମ୍ବାଦପତ୍ର ପ୍ରକାଶ ପାଉଅଛି । ବର୍ଲିନ ସହରରେ ବହୁତଲୋକ ଏହି ୫୦ ଟି ସମ୍ବାଦ ପତ୍ରର ଗ୍ରାହକ ହୋଇଅଛନ୍ତି । ସକାଳ ସଂସ୍କରଣ ସକାଳ ୫।୬ ଘଣ୍ଟା ମଧ୍ୟରେ ବାହାରି ପଡ଼େ । ମଧ୍ୟାହ୍ନ ସଂସ୍କରଣ ୧୨ଟା ଘୋଟାକ ମଧ୍ୟରେ ବାହାରି ପଡ଼େ ଏବଂ ସନ୍ଧ୍ୟା ସଂସ୍କରଣ ୬ଘଣ୍ଟାରୁ

ବାହାର ୮ ଘଣ୍ଟା ପର୍ଯ୍ୟନ୍ତ ବଜାରରେ ବିକି ହୁଏ । ଏହା-ଛଡ଼ା ଏହି ସହରରେ ସାପ୍ତାହିକ ଓ ଅର୍ଦ୍ଧ ସାପ୍ତାହିକ ପ୍ରାୟ ୬୮ ଟି ବାହାରୁଅଛି । ଜର୍ମାନୀ କପରି ସମ୍ବାଦ-ପତ୍ର ପ୍ରିୟଜାତି ଏଥିରୁ ସହଜରେ ଅନୁମେୟ ।



## ନୂତନ ମନୁଷ୍ୟ ଆବିଷ୍କାର

ଅଷ୍ଟ୍ରେଲିଆର ନିବିଡ଼ ଅରଣ୍ୟମଧ୍ୟରେ ଏବେ ଏକ ପ୍ରକାର ଅଭିନବ ବାମନ ଜାତୀୟ ମନୁଷ୍ୟ ଆବିଷ୍କୃତ ହୋଇଅଛନ୍ତି । ଏମାନେ ସମସ୍ତେ ୪ ଫୁଟ ୧ ଇଞ୍ଚ ବା ୩ ହାତ ଉଚ୍ଚ । କୌଣସି ସଭ୍ୟ କିମ୍ବା ଅସଭ୍ୟ ଜାତି ସହିତ ଏମାନେ ସମ୍ପୂର୍ଣ୍ଣ ସମ୍ପର୍କ-ଶୂନ୍ୟ ହୋଇ କେଉଁ ଅନାଦି କାଳରୁ ଏହି ନିବିଡ଼ ଅରଣ୍ୟ-ମଧ୍ୟରେ ବାସ କରି ଆସି ଅଛନ୍ତି । ଏମାନଙ୍କର ସଂଖ୍ୟା ୧୦ ହଜାରରୁ ବେଶି ନୁହେ । ଏମାନେ ଛୋଟ ଛୋଟ କୁଟୀରରେ ରହନ୍ତି । ସ୍ତ୍ରୀଲୋକମାନେ ଏ ସବୁ କୁଟୀର ତିଆର କରିଥାନ୍ତି । ଏମାନଙ୍କ ମଧ୍ୟରେ ବହୁ ବିବାହ ପ୍ରଥା ନାହିଁ । ଏମାନେ ଗଛର ପତ୍ର, ଶାକ ସବଜୀ ଏବଂ ଭାଇପୋକ ଖାଇ ବଞ୍ଚନ୍ତି, ଧନୁଶର ଦ୍ୱାରା କ୍ଷୁଦ୍ର କ୍ଷୁଦ୍ର ଜନ୍ତୁ ମାରି ଭକ୍ଷଣ କରନ୍ତି । ଏମାନେ ନିଆଁ ଜାଳି ଜାଣନ୍ତି ନାହିଁ । କେଉଁ ଯୁଗଯୁଗାନ୍ତରୁ ନିଆଁ କୁ ଜିଆଇ ରଖି ଅଛନ୍ତି । ଏମାନେ ଗଛ ପତ୍ରଙ୍କୁ ଦେବତା ଜ୍ଞାନକରି ପୂଜା କରୁଅଛନ୍ତି । ପୃଥିବୀରେ କେତେ ପ୍ରକାର ପ୍ରାଣୀ ଯେ ଅଛନ୍ତି, ଠିକ କରିବା ମନୁଷ୍ୟର ସାଧ୍ୟାତୀତ ?



## ନୂତନ କାମେରା

କାଲିଫର୍ଣ୍ଣିଆର ଇଲେକ୍ଟ୍ରିକ୍ ଇଞ୍ଜିନିଅର ଏଡ଼ୱାର୍ଡ଼ ଏଲିର୍ ହାନ୍‌ସେନ ଏକପ୍ରକାର ଚଳଚିତ୍ର କାମେରା ଆବିଷ୍କାର କରିଅଛନ୍ତି । ସେଥିରେ ଜୀବନ୍ତ ମନୁଷ୍ୟ ଭିତରେ ଧୁକ୍ ଧୁକ୍ ହେଉଥିବା ହୃତ୍‌ପିଣ୍ଡର ଛବି ଫଟୋ ନିଆଯାଇ ପାରିବ । ସେ ଏହି ଯନ୍ତ୍ରର ଓସିଓଗ୍ରାଫୋସ୍କୋପ ନାମକରଣ କରିଅଛନ୍ତି । ଏଥିରେ ହୃଦ୍‌ବେଗ ଶୁଦ୍ଧକରି ପରୀକ୍ଷା ସୁଗମରୂପେ ହେଉଅଛି ।



## ନିଆଁ ଗିଳା ଘର

ଜର୍ମାନୀ ରାଜଧାନୀ ବର୍ଲିନରେ ଏକପ୍ରକାର କାଗଜ ଭଳି ଜିନିଷ ଆବିଷ୍କୃତ ହୋଇଅଛି । ଭାଗ୍ୟବଶାଳୀ ଲୋକେ ଏହି କାଗଜରେ ଘରର ଛାତ ତିଆରି କରୁଅଛନ୍ତି । କାନ୍ଥ ଦେହରେ ମଧ୍ୟ ଏହାକୁ ଆବୃତ କରି ଯାଇପାରେ । ଏଥିରେ ନିଆଁ ଲାଗେ ନାହିଁ । ଦୈବାତ୍ ନିଆଁ ଧରିଲେ ନ ଜଳି ଏପରି ଧୂଆଁ ବାହାରେ ଯେ ତହିଁରେ ନିଆଁ ଲିଭିଯାଏ ।



## ରେଡ଼ିଅମ୍ ବା ଜ୍ୱଳନ୍ତ ଧାତୁ

ରେଡ଼ିଅମ୍ ଦେଖିବାକୁ ଅନେକାଂଶରେ ପଙ୍ଗା ଲୁଣ ପରି । ୧ ଭରି ଓଜନ ରେଡ଼ିଅମର ଦାମ୍ ପ୍ରାୟ ହଜାର ଭରି ସୁନାର ଦାମ୍ ସଙ୍ଗେ ସମାନ । ଏହା ଏଡ଼େ ଶକ୍ତିମାନ୍ ଯେ ଅତ୍ୟଳ୍ପ ପରିମାଣରେ ମଧ୍ୟ ବିପଜ୍ଜନକ । ଅଧସେର ଓଜନର ରେଡ଼ିଅମ ନିକଟରେ ଥିବା ପ୍ରାଣୀ ନିଶ୍ଚୟ ମରିଯିବ । ଅନ୍ଧ-କାରରେ ରେଡ଼ିଅମ ଜ୍ୱଳନ୍ତ ଅଙ୍ଗାରଖଣ୍ଡ ପରି ଜକ୍ ଜକ୍ କରେ. କିନ୍ତୁ ଆଶ୍ଚର୍ଯ୍ୟର ବିଷୟ ଏହି ଯେ, ଯଦିବା ଏହା ସର୍ବଦା ଆଲୋକ ଓ ଉତ୍ତାପ ପ୍ରଦାନ କରେ, ତାର ଓଜନ କଦାପି ହ୍ରାସ ହୁଏ ନାହିଁ, କିମ୍ବା ପାଉଁଶ ହୁଏ ନାହିଁ । ଅଧସେର ଓଜନର ରେଡ଼ିଅମ୍ ଅନନ୍ତ କାଳ ପର୍ଯ୍ୟନ୍ତ ଅଧସେର ଓଜନର ବରଫକୁ ପ୍ରତିଘଣ୍ଟାରେ ତରଳାଇ ଦେଇ ପାରେ । ପ୍ରଚୁର ପରିମାଣରେ ରେଡ଼ିଅମ୍ ଚୁଲିରେ ରଖିଲେ ରୋଷେଇ କରିବା ପାଇଁ କୌଣସି ପ୍ରକାର ଜାଳନୀ କାଠ ବା ଢିଅସଲ କଦାପି ଦରକାର ହେବ ନାହିଁ । ପ୍ରାୟ ସମସ୍ତ ପଦାର୍ଥ ଏହାର ନିକଟ-ବର୍ତ୍ତୀ ହେଲେ ନୂତନ ଶକ୍ତି ପାଆନ୍ତି—ବିଶେଷତଃ ଆଲୋକ ବିକୀରଣ କରିବା ଶକ୍ତି । ଏହା ଘଣ୍ଟାର ଅକ୍ଷରରେ, ବିଷାକ୍ତ ଔଷଧ ବୋତଲର ଟିକଟରେ, ଓ ବହୁ ବହୁ କୁଣ୍ଢାଇ ଅଖିରେ ବ୍ୟବହୃତ ହୋଇଥାଏ ।

ରେଡ଼ିଅମ୍ ଧାତୁକୁ ଅନ୍ୟାନ୍ୟ ମିଶ୍ରଧାତୁମାନଙ୍କଠାରୁ ପୃଥକ୍ କରିବା ଅତି କଠିନ ଓ ବ୍ୟୟସାଧ । ପ୍ରଥମତଃ ଯେଉଁ

ମିଶିଥାନ୍ତି ପିଚବ୍ଲେଣ୍ଡରୁ ମିଳେ, ତାର ପରିମାଣ ବହୁତ କମ୍ । ପିଚବ୍ଲେଣ୍ଡ ନରଓ୍ଵେ, ଇଜିପ୍ଟ, ଉତ୍ତର କାରୋଲିନା ଓ କୋଲୋରାଡ଼ୋରେ ମିଳେ । ପିଚବ୍ଲେଣ୍ଡର ଇଉରାନିୟମ୍ ବାହାର କରିବା ସେତେ କଠିନ ନୁହେ । ୫ ହଜାର ପିଚବ୍ଲେଣ୍ଡରୁ ୧ ସେର ରେଡ଼ିୟମ୍ ବାହାରିପାରେ । ରେଡ଼ିଅମ ୨୦ ହଜାର ବର୍ଷ ପର୍ଯ୍ୟନ୍ତ ଆଲୋକ ଓ ଉତ୍ତାପ ଦାନ କଲା ପରେ ସାଧାରଣ ସୀସା ( Lead ) ରେ ପରିଣତ ହୁଏ । ଜୋକୋସ୍ଲୋଭାକିଆର ଗୋଟିଏ ବୃହତ୍ କାରଖାନାରେ ରେଡ଼ିଅମ୍ ବାହାର କରି ହୁଏ । ବର୍ଷରେ କେବଳ $\frac{1}{୩}$ ଆଉନ୍ସ ଅର୍ଥାତ୍ $\frac{1}{୧୨}$ ଛଟାଙ୍କି ଓଜନର ପ୍ରସ୍ତୁତ ହୁଏ । ତାହାର ଦାମ୍ ପ୍ରାୟ ଟ ୭୫୦୦,୦୦୦ ଙ୍କା ।



## ରାକ୍ଷସୀ ଜାହାଜ

ଆମେରିକାରେ ବର୍ତ୍ତମାନ ଏକପ୍ରକାର ନୂତନ ଜାହାଜ ନିର୍ମିତ ହୋଇଅଛି । ସାଧାରଣ ସମୟରେ ଦେଶରେ ଶାନ୍ତି ପ୍ରତିଷ୍ଠିତ ଥିବାବେଳେ ତହିଁରେ ଯାତ୍ରୀ ଓ ବାଣିଜ୍ୟ ସାମଗ୍ରୀର କାରବାର ହେବ ଏବଂ ଯୁଦ୍ଧ ସମୟରେ ତାହା ରଣତରୀ ରୂପେ ବ୍ୟବହୃତ ହେବ । ଏହା ଏପରି ସୁଦୃଢ଼ ଭାବରେ ନିର୍ମିତ ହୋଇଅଛି ଯେ, ସମୁଦ୍ରରେ ତୁଷାର ପର୍ବତ କିମ୍ବା ସେହିପରି ଅନ୍ୟ କୌଣସି ଜିନିଷରେ ଧକ୍କା ଲାଗି ଭିତରେ ପାଣି ପଶିଗଲେ ସୁଦ୍ଧା ବୁଡ଼ିଯିବ ନାହିଁ । ଏଥିରେ ଦୁଇଲକ୍ଷ ହର୍ଷ ପାୱାର ଇଞ୍ଜିନ୍ ଲଗା ଯାଇଅଛି ଏବଂ ଏହାର ଗତି ଏତେ କ୍ଷିପ୍ର ଯେ ଆମେରିକାରୁ ଇଉରୋପ ପର୍ଯ୍ୟନ୍ତ ଯାତ୍ରା ସାଢ଼େ ଚାରିଦିନରେ ସମ୍ଭବପର ହେବ । ଏହି ଜାହାଜର ଲମ୍ବା ୧୨୭ ଫୁଟ ଏବଂ ଗଭୀରତା ୧୦୮ ଫୁଟ । ଏହାର ଓଜନ ୫୬୦୦୦ ଟନ ଏବଂ ତାହା ଉପରେ ଏକ ସମୟରେ ୨୭୩୯ ଯାତ୍ରୀ ଓ ୧୧୮୧ ଖଲାସୀ ଯାଇ ପାରିବେ । ଏପରି ଗୋଟିଏ ଜାହାଜ ପାଇଁ ନଅ ଦଶ କୋଟି ଟଙ୍କା ଖର୍ଚ୍ଚହେବ ।



## ଅଦ୍ଭୁତ ଜଳକଳସୀ

ଯେଉଁ ଜଳ କଳସୀ ଅଗ୍ନି-ନିର୍ବାପିତ କରେ, ସେ ପୁଣି ଅଗ୍ନି ଉଦ୍ଦୀପନ କରେ । ପାଠକମାନେ ପୁଣି ବିସ୍ମିତ ହେବେ, ଆମେରିକାର କାଲିଫର୍ଣ୍ଣିଆ ଦେଶରେ ଗ୍ଲାସ ନିର୍ମିତ ଏକ ଜଳ କଳସୀ ଦୁଇଘଣ୍ଟା ବାହାରେ ଥୁଆ ହୋଇଥିଲା । ଗ୍ଲାସ ମଧ୍ୟ ଦେଇ ଯେଉଁ କେନ୍ଦ୍ରୀଭୂତ ସୂର୍ଯ୍ୟକିରଣ ଘରର ଛାତ ଉପରେ ପଡ଼ୁଥିଲା, ତାହାର ତେଜରେ ୨ ଘଣ୍ଟା ପରେ ଘରଟି ଜଳି ଉଠିଲା ଏବଂ ଅଳ୍ପସମୟ ମଧ୍ୟରେ ଘରଟିକୁ ଭସ୍ମୀଭୂତ କରିଦେଲା ।



## ରାସ୍ତା ନିର୍ମାଣପାଇଁ ଯନ୍ତ୍ର

ଆମେରିକାରେ ରାସ୍ତା ନିର୍ମାଣ ପାଇଁ ବର୍ତ୍ତମାନ ଏକ-ପ୍ରକାର ନୂତନ ଯନ୍ତ୍ର ପ୍ରସ୍ତୁତ ହୋଇଅଛି । ସେହି ଯନ୍ତ୍ରର ସହାୟତାରେ ଦିନକରେ ଏକମାଇଲ ରାସ୍ତା ତିଆରି କରାଯାଇ ପାରିବ । ଏହି ଯନ୍ତ୍ରର ସମ୍ମୁଖ ଭାଗରେ ପଥର ଓ ଚୋଙ୍ଗୁଟି ଏବଂ ସିମେଣ୍ଟ ଏକାଠି ମିଶ୍ରିତ ହୋଇ ରାସ୍ତା ଉପରେ ପଡ଼ିବାର ବ୍ୟବସ୍ଥା କରି ଯାଇଅଛି ଏବଂ ପଶ୍ଚାଦ୍‌ଭାଗରେ ତାହାକୁ ଦବାଇ ସମାନ କରି ଦେବାର ସୁବିଧା ମଧ୍ଯ କରାଯାଇ ଅଛି ।



## ଆମେରିକାର ଜାତୀୟ ସମ୍ପତ୍ତି

ଆମେରିକାର ଏକ ସମ୍ବାଦ ପତ୍ରରେ ସେ ଦେଶର ଜାତୀୟ ସମ୍ପତ୍ତି ବିଷୟରେ କେତେକ କଥା ପ୍ରକାଶିତ ହୋଇ-ଥିଲା । ତହିଁରୁ ଜଣାଯାଏ ଯେ, ଆମେରିକାର ଜାତୀୟ ଧନ ୪୦୦୦୦୦୦୦୦୦୦୦୦ ଡୋଲାର ଏବଂ ଜାତୀୟ ଋଣ ୧୮୦୦୦୦୦୦୦୦୦ ଡୋଲାର । ଜାତୀୟ ସମ୍ପତ୍ତି ସଙ୍ଗେ ଏହି ଜାତୀୟ ଋଣର ତୁଳନା କଲେ ଋଣ କେବଳ ଶତକରା ୪ ହେବ ।

କୌଣସି ବ୍ୟବସାୟୀର ୨୨୫୦୦ ଡୋଲାରର କାରବାର ଥିଲେ ତାହା ପଛରେ ୧୦୦୦ ଡୋଲାର ଋଣ ଯେପରି, ଜାତୀୟ ଧନ ତୁଳନାରେ ଆମେରିକାର ଜାତୀୟ ଋଣ ସେହିପରି ହୋଇପାରେ । ଏଥିଲାଗି ଜଗତରେ ଆମେରିକାର ଧନ ସମ୍ବନ୍ଧୀୟ ଖ୍ୟାତି ହ୍ରାସ ଲଭିଅଛି ବୋଲି ମନେ କରିବା ହାସ୍ୟାସ୍ପଦ ବିଷୟ ଅଟେ । ଇଂଲଣ୍ଡର ଜାତୀୟ ଧନର ପରିମାଣ ଯାହା, ଜାତୀୟ ଋଣର ପରିମାଣ ତାର ଶତକଡ଼ା ୪୦ ଭାଗ ଅଟେ ଏବଂ ଫ୍ରାନ୍ସର ଜାତୀୟ ଧନ ତୁଳନାରେ ଜାତୀୟ ଋଣ ଶତକଡ଼ା ୨୦ ଅଟେ ।



## ଚଳନ୍ତି ଦୋକାନଘର

ଜର୍ମାନୀର ସହରେ ସହରେ ଗ୍ରାମେ ଗ୍ରାମେ ଏହି ଚଳନ୍ତି ଦୋକାନ ଗାଡ଼ିଟି ଭ୍ରମଣ କରେ । ଏଥିରେ ଗୃହସ୍ଥର ଦରକାରୀ ସମସ୍ତ ପ୍ରକାର ଦ୍ରବ୍ୟାଦି ମହଜୁତ ଥାଏ । ଲୋକେ ନିଜଘରେ ଥାଇ ଜିନିଷପତ୍ର କ୍ରୟ କରନ୍ତି । ଗାଡ଼ିରେ ଦୋକାନୀର ଶୟନ, ରନ୍ଧନ ଓ ବସିବାର ସ୍ଥାନ ଅଛି । ଦୋକାନୀ ତାର ପରିବାର ସହ ଏହି ଗାଡ଼ିରେ ବାରମାସ ରହେ । ପୁଣି ଲୋକଙ୍କୁ ଆନନ୍ଦ ଦେବା ନିମିତ୍ତ ଗାଡ଼ିରୁ ସମୟ ସମୟ ବେତାରର ନାନାପ୍ରକାର ସଙ୍ଗୀତାଦି ଶ୍ରବଣ କରା ହୋଇଥାଏ । ବିନା ଖର୍ଚ୍ଚରେ ଲୋକେ ଜିନିଷ ପତ୍ର ଖରିଦ କରୁଁ ୨ ସଙ୍ଗୀତ ଶ୍ରବଣ କରନ୍ତି । ଗ୍ରାମବାସୀଙ୍କ ନିକଟରେ ଏହା ବଡ଼ ଆଦରର ଜିନିଷ ।



## କାଗଜର ବର୍ଷାତି

ଜାହାଜ ଏବଂ ଅନ୍ୟାନ୍ୟ ସ୍ଥଳରେ ଯେଉଁଠାରେ ବେଶୀ ଭିଡ଼ ଠେଲାଠେଲି କରିବାକୁ ହୁଏ ନାହିଁ ସେହି ସମସ୍ତ ସ୍ଥଳରେ କାଗଜର ଓ୍ୱାଟର ପ୍ରୁଫର ବ୍ୟବହାର ଆରମ୍ଭ ହୋଇଅଛି । କାଗଜର ବର୍ଷାତି ହାଲୁକା—ରବରର ବର୍ଷାତି ଅପେକ୍ଷା ଥଣ୍ଡା ଏବଂ ଦାମ୍ କମ୍ । କାଗଜକୁ ବିଶେଷ ପଦ୍ଧତିରେ ଓ୍ୱାଟର ପ୍ରୁଫ କରିନେଇ ବର୍ଷାତି କରାହୁଏ । ଅନେକେ ଏହି ପ୍ରକାର କାଗଜରେ ସନ୍ତରଣ—ପୋଷାକ ପ୍ରସ୍ତୁତ କରୁଅଛନ୍ତି ।



## ଗତିର ବେଗ

| | | | |
|---|---|---|---|
| ମନୁଷ୍ୟ | ୧ ଘଣ୍ଟାରେ | ୨ ମାଇଲ ଠାରୁ ୫ ମାଇଲ | ଯାଇପାରେ |
| ଘୁଅର ଗଡ଼ି | ,, | ୪ ମାଇଲ | ,, |
| ଜାହାଜ | ,, | ୧୯ ମାଇଲ | ,, |
| ଘୋଡ଼ା | ,, | ୨୭ରୁ ଅଧିକ | ,, |
| | | (ପ୍ରତି ସେକେଣ୍ଡରେ ୩୯ ଫୁଟ) | ,, |
| ଶବ୍ଦ | ,, | ୭୪୩ ମାଇଲ | ,, |
| ତୋପଗୁଳା | ୧ ସେକେଣ୍ଡରେ | ୨୦୭୩ ଫୁଟ | ,, |
| ତଡ଼ିତ୍ | ,, | ୨ ଲକ୍ଷ ୮୮ ହଜାର ମାଇଲ | ,, |
| ଆଲୋକ | ,, | ୧ ଲକ୍ଷ ୯୨ ହଜାର ମାଇଲ | ,, |
| ସୂର୍ଯ୍ୟାଲୋକ | | ଆମ୍ଭମାନଙ୍କ ନିକଟରେ ୭ ମିନିଟ୍ ୫୨ ସେକେଣ୍ଡରେ ପହଞ୍ଚେ । | |



## ଯାତ୍ରୀବାହୀ ଜଳଯାନ

“ବ୍ରିଟାନିକ” ଇଂଲଣ୍ଡର ଏକ ନବନିର୍ମିତ ଯାତ୍ରୀବାହୀ ଜଳଯାନ । ଏହାର ନିର୍ମାଣ ଏପରି ସୁକୌଶଳରେ ସମ୍ପନ୍ନ ହୋଇଅଛି ଯେ ଝଡ଼ ପବନ ବା ତରଙ୍ଗ ସହଜରେ ତାର କୌଣସି କ୍ଷତି କରି ପାରିବ ନାହିଁ । ଏହାର ଦୈର୍ଘ୍ୟ ୬୮୦ ଫୁଟ । ଏହାର କ୍ୟାବିନ ଗୁଡ଼ିକ ରାଜପ୍ରାସାଦର ସୁସଜ୍ଜିତ କକ୍ଷ ଠାରୁ ସୁନ୍ଦର । ଏହାର ଯାତ୍ରୀମାନେ ସ୍ଥଳର ଅଭାବ ଅନୁଭବ କରିବେ ନାହିଁ ବୋଲି ଏହାର ଭିତରେ ସନ୍ତରଣ ଉପଯୋଗୀ ଗୋଟିଏ କୃତ୍ରିମ ପୁଷ୍କରିଣୀ ଏବଂ ଟେନିସକୋର୍ଟ, ପିଲାମାନଙ୍କ ଖେଳିବାର ଧୂଳିଆ ଜାଗା ପ୍ରସ୍ତୁତ କରାଯାଇଛି ।



## ଅପରାଧୀ ନିର୍ଣ୍ଣୟର ନୂତନତମ ଉପାୟ

ନ୍ୟୁୟର୍କ ସହରର ଏକ ଚତୁର ଗୋଇନ୍ଦା ଅପରାଧୀ ନିର୍ଣ୍ଣୟ ପାଇଁ ଏକ ନୂତନ ଯନ୍ତ୍ର ପ୍ରସ୍ତୁତ କରିଅଛନ୍ତି । ଏହି ଯନ୍ତ୍ର ପ୍ରୟୋଗ ଫଳରେ ଯେଉଁ ବିଭିନ୍ନ ଲୋକଙ୍କ ଉପରେ ସନ୍ଦେହ ଜାତ ହୋଇଅଛି ସେମାନଙ୍କ ପରୀକ୍ଷା କଲେ ଦେଖାଯିବ ଯେ, ପ୍ରକୃତ ଅପରାଧୀର ହୃଦ୍‌ଯନ୍ତ୍ରର କ୍ରିୟା ଏପରି ଅସ୍ୱାଭାବିକ ଦ୍ରୁତ ହୋଇ ଉଠିବ ଯେ, ତାର ଅପରାଧର ପ୍ରମାଣ ସଂଗ୍ରହ ପାଇଁ ଆଉ ଅଧିକ ବିଳମ୍ବ ହେବ ନାହିଁ ।



## କୃତ୍ରିମ ମନୁଷ୍ୟ

କାପ୍ତାନ ଏ, ଜି, ରିଚାର୍ଡ୍‌ସ୍ ନାମକ ଜଣେ ଇଂରାଜ ବୈଜ୍ଞାନିକ କଳରେ ଏକ କୃତ୍ରିମ ମନୁଷ୍ୟ ତିଆରି କରି ଅଛନ୍ତି । ସେ ଗୁଲପାରେ ଏବଂ ଲୋକର ନିର୍ଦ୍ଦେଶ ଅନୁସାରେ ଅନେକ ସମୟରେ କାର୍ଯ୍ୟ କରିପାରେ । କିନ୍ତୁ ତାହାର ମନନ ଶକ୍ତି ଓ ଅସ୍ମା ନାହିଁ । ପୁଲିଶ ବିଭାଗରେ ଏହି କୃତ୍ରିମ ମନୁଷ୍ୟ ଏକ ସ୍ଥାନରେ ଠିଆହୋଇ ଗାଡ଼ି ଘୋଡ଼ା ନିୟନ୍ତ୍ରିତ କରେ । ଗାଡି ଆଡ଼କୁ ମୁହଁ ଫେରାଇ ଛିଡ଼ା ହେଲେ ଗାଡି ରଖିବାର ହୁକୁମ ଗାଡିବାଲା ପାଏ । ଗାଡ଼ିଗୁଡ଼ିକ ତାକୁ ଦେଖି ନ ପାରିବ ବୋଲି ସେ ଘଣ୍ଟା ବଜାଏ । ଆହୁରି ଯନ୍ତ୍ରଗୁଡ଼ିକ ନାପିତ କ୍ଷୌରକର୍ମ କରେ । ଏହି ସମସ୍ତ ଆଶ୍ଚର୍ଯ୍ୟ ସୃଷ୍ଟି କେବଳ ମାତ୍ର ବେତାର ଯନ୍ତ୍ର, କଥା କହିବାର ଯନ୍ତ୍ର, ପ୍ରଭୃତି ସାହାଯ୍ୟରେ ସମ୍ଭବ ହୋଇଅଛି ।



## ଶୂନ୍ୟରେ ରେଲପଥ ଓ ଜାଗ୍‌ସ ପାଇଟ ହୋଟେଲ

ଜର୍ମାନୀର ସର୍ବୋଚ୍ଚ ପର୍ବତଚୂଡ଼ାରେ ଜାଗ୍‌ସ-ପାଇଟ ସହରରେ ସମୁଦ୍ରକୂଳଠାରୁ ତିନିମାଇଲ ଊର୍ଦ୍ଧ୍ୱରେ ଗୋଟିଏ ହୋଟେଲ ଅବସ୍ଥିତ । ସେଠାକୁ ଗୃହଯିବା ପାଇଁ ବାଟ ନାହିଁ । ଏଣୁ ଶୂନ୍ୟରେ ଏକ ତାର ଲାଇନ ସ୍ଥାପନ କରାଯାଇ ଅଛି । ଏହି ଶୂନ୍ୟ ପଥରେ ବୈଦ୍ୟୁତିକ କ୍ରିୟାରେ ଖଣ୍ଡେ ଗାଡ଼ି ଯାତ୍ରୀମାନଙ୍କୁ ନେବା ଆଣିବା କରେ । ଏହି ଅଦ୍ଭୁତ ହୋଟେଲ ଓ ଅଦ୍ଭୁତ ରେଲ-ପଥ ନିର୍ମାଣର ଖରଚ ୧୦ ଲକ୍ଷ ପାଉଣ୍ଡ ।



## ଗୀର୍ଜାର ଅପୂର୍ବ ତୋରଣ ଦ୍ୱାର

ମେକ୍‌ସିକୋର କୋଷ୍ଟଲାନ୍ ନାମକ ଗୀର୍ଜାର ତୋରଣ ଦ୍ୱାର ତାହାର କାରୁକାର୍ଯ୍ୟ ନିମନ୍ତେ ଜଗଦ୍‌ବିଖ୍ୟାତ । ଏହା ପ୍ରାଚୀନ ସ୍ପେନର ମୁରମାନଙ୍କ ତିଆରି ରାଜପ୍ରାସାଦର ତୋରଣ ଦ୍ୱାରର ପଦ୍ଧତିରେ ନିର୍ମିତ ଏବଂ ବିବିଧ ଅଭିନବ ଚିତ୍ର ଖଚିତ । ପୃଥିବୀରେ ଅନ୍ୟ କୌଣସି ଗୀର୍ଜାର ଏପରି ସୁନ୍ଦର ତୋରଣଦ୍ୱାର ନାହିଁ କହିଲେ ଅତ୍ୟୁକ୍ତି ହେବ ନାହିଁ ।



## କାଠର ବିଜ୍ଞାପନ

ଯୁକ୍ତରାଷ୍ଟ୍ରର ଏକ କାଠ କୋମ୍ପାନୀ ସେମାନଙ୍କ ବ୍ୟବସାୟ ବିଜ୍ଞାପନ ପ୍ରଚାର କରିବା ପାଇଁ କାଠର କାଗଜ ବ୍ୟବହାର କରିଅଛନ୍ତି । କାଠକୁ ଚିରି ଚିରି ଏହି କାଗଜ ପ୍ରସ୍ତୁତ ହୋଇଅଛି । କାଗଜଗୁଡ଼ିକ ଏତେ ପତଳା ଯେ ୮୦ ଖଣ୍ଡ କାଗଜ ପରେ ପରେ ରଖିଲେ ଏକ ଇଞ୍ଚ ମୋଟା ହୁଏ । ଏହାର ଫଳରେ ବ୍ୟବସାୟର ବହୁ ଉନ୍ନତି ହୋଇ ଅଛି ।



## ରାସାୟନିକମାନଙ୍କର କୀର୍ତ୍ତି

ରସାୟନିକ ଓୟାରେନ୍ ଏମଲି—ଏ ମହାଶୟ କଦଳୀର ସାରରୁ ଲେମନେଡ୍ ତିଆରି କରିଅଛନ୍ତି ।

ଡ଼ାକ୍ତର ଫ୍ରେଡ଼ରିକ ବାକ୍ଷିୟସ୍—ଏ ମହାଶୟ ଗଛ ଲତା ପତ୍ରର ସାରରୁ କୋଇଲା ପ୍ରସ୍ତୁତ କରିଅଛନ୍ତି ।

ଫରାସୀ ରେଲ ଯନ୍ତ୍ରକ ବ୍ୟାସେଟ୍—ଏ ମହାଶୟ କୋଇଲାରୁ ଘିଅ ପ୍ରସ୍ତୁତ କରିଅଛନ୍ତି ।

ଏତଦ୍ବ୍ୟତୀତ ପ୍ରତିଭାଶାଳୀ ରସାୟନିକମାନଙ୍କ ମଧ୍ୟରୁ କେହି ଚୋବ ଫେଣୁ କୋଇଲା ପ୍ରସ୍ତୁତ, କେହି କୋଇଲାରୁ ତେଲ ଅଳଙ୍କାର, କେହି କାଠଗୁଣ୍ଡାରୁ ଖାଦ୍ୟଦ୍ରବ୍ୟ ଉତ୍ପାଦନ ଓ କେହି କୋଇଲାରୁ ସାବୁନ ପ୍ରସ୍ତୁତ କରିବାରୁ ଲୁଛି, ମୂଲ୍ୟହୀନ ପଦାର୍ଥମାନ ପ୍ରୟୋଜନୀୟ ହୋଇ ଉଠିଛି ।



## ସର୍ବାପେକ୍ଷା ଲମ୍ବା ସୁଡଙ୍ଗ

ଯୁକ୍ତରାଜ୍ୟର ସାନ୍‌ଫ୍ରାନ୍‌ସିସ୍‌କୋ ସହରର ୧୦୦ ମାଇଲ ଦକ୍ଷିଣ ପୂର୍ବଦିଗରେ ଦୁଇଟି ବୃହତ୍ ହ୍ରଦର ଜଳ ଯୋଗ କରିବାପାଇଁ ୧୩ ମାଇଲ ଲମ୍ବା ଓ ୧୫ ଫୁଟ ପ୍ରସ୍ଥ ଏକ ସୁଡ଼ଙ୍ଗ ଖୋଳା ହୋଇଅଛି । ଯେଉଁ ମାଟି ଖୋଳା ହୋଇଥିଲା ତାହା ଲୌହ ଅପେକ୍ଷା କେତେ ଗୁଣ କଠିନ ପଥର ଜାତି ତୁଲ୍ୟ ହୋଇଥିଲା ବୋଲି ଏଥିରେ ଦିବାରାତ୍ର କ୍ରମାଗତ ଖୋଳାଯାଇ ୫ ବର୍ଷ ଲାଗିଥିଲା । ଏଥିରେ ୫ କୋଟି ୧୦ ଲକ୍ଷ ଟଙ୍କା ଖର୍ଚ୍ଚ ପଡ଼ିଥିଲା । ଏହି ସୁଡ଼ଙ୍ଗର ନାମ 'ଫ୍ଲୋରେନ୍ସ ଲେକ ଟାନେଲ୍' । ଏହାଯୋଗୁଁ ଦୁଇଟି ବୃହତ୍ ହ୍ରଦ ମିଳିତ ହେଲା ଏବଂ ଫଳରେ ପାର୍ଶ୍ୱବର୍ତ୍ତୀ ପ୍ରଦେଶରେ ତଡ଼ିତ୍ ଶକ୍ତିର ପରିମାଣ ବହୁସହସ୍ରଗୁଣ ଅଧିକ ହେବ ।



## ବିଦ୍ୟୁତ୍ ସାହାଯ୍ୟରେ କୃଷି

ଆମେରିକାର ବିଖ୍ୟାତ ଉଦ୍ଭିଦ୍‌ତତ୍ତ୍ୱବିଦ୍ ବୈଜ୍ଞାନିକ ଲୁଥର୍ ବର୍ବ୍ୟାଙ୍କ ଓ ଫରାସୀଦେଶର ଜଣେ ବିଖ୍ୟାତ ବୈଜ୍ଞାନିକ ଉଦ୍ଭିଦ୍ ଜଗତରେ ନାନାପ୍ରକାର ଆଶ୍ଚର୍ଯ୍ୟକାଣ୍ଡ ସଂଘଟନ କରି ଅଛନ୍ତି ।

ସେ ମାଟି, ଆକାଶ ଏବଂ ସୂର୍ଯ୍ୟରୁ ତାଙ୍କର ନବନିର୍ମିତ ଏକ ବିଶେଷ ଯନ୍ତ୍ର ସାହାଯ୍ୟରେ ତଡ଼ିତ୍ ଶକ୍ତି ସଂଗ୍ରହ କରି ତାହାକୁ ବୃକ୍ଷ ଲତାଦି ମଧ୍ୟରେ ପରିଚାଳନା କଲେ । ଫଳରେ ନାନାବିଧ ଫଳମୂଳର ଅନେକପ୍ରକାର ପରିବର୍ତ୍ତନ ଘଟାଇଲେ । ଗୋଟିଏ ଅପେଲ ବୃକ୍ଷରେ ଅନେକ ଧରଣର ଫଳ ଫଳିଥିଲା । ଫରାସୀ ବୈଜ୍ଞାନିକ (Justin Christoflorean) ତାହାକୁ ତଡ଼ିତ୍ ଚିକିତ୍ସା କରି ଏତେ ଫଳ ଫଳାଇଲେ ଯେ, ଗଛଟି ଫଳ ଭାରରେ ଅବନତ ହୋଇ ପଡ଼ିଲା । ଅଧିକନ୍ତୁ ସେ ଅନ୍ୟାନ୍ୟ ନାନାପ୍ରକାର ଫଳର ଆକାର ପୂର୍ବ ଆକାରଠାରୁ ଦୁଇଗୁଣ କରିଅଛନ୍ତି । ତାଙ୍କ ମତରେ, ତଡ଼ିତ୍ ଶକ୍ତିର ଏପରି ଏକ ଗୁଣ ଅଛି, ବୃକ୍ଷର ଅନିଷ୍ଟକାରୀ ସମସ୍ତ ପ୍ରକାର ପୋକ ପ୍ରଭୃତିଙ୍କୁ ହତ୍ୟା କରି ବୃକ୍ଷକୁ ନାନାଭାବରେ ନବଶକ୍ତି ଦିଏ ଓ ତାହାର ସ୍ୱାସ୍ଥ୍ୟ ଶତଗୁଣ ବଢ଼ାଏ ।



## ବିଦ୍ୟୁତଦ୍ୱାରା ଗୃହକର୍ମ

ଗ୍ଲାସଗୋ ସହରରେ ଗୋଟିଏ ନୂଆଘରେ ବିଦ୍ୟୁତ୍ ଶକ୍ତି ଯୋଗେ ଘରକୁ ଗରମ ରଖିବା, ରାନ୍ଧିବା, ପାଣି ଗରମ କରିବା ଲୁଗା ଓ ବାସନ ଧୋଇବା ପ୍ରଭୃତି କାର୍ଯ୍ୟମାନ ହୁଏ ।



## ପ୍ରକୃତିରେ ବିଚିତ୍ରତା

### ଅଦ୍ଭୁତ ପରିବର୍ତ୍ତନ

ଡୁବ୍‌କୋଭନର ଜଣେ ୨୦ ବର୍ଷ ବୟସ୍କା ଯୁବତୀ ହଠାତ୍ ପୁରୁଷ ହୋଇ ଯାଇଛି । ତାହାର ବିବାହ ହୋଇ ଯାଇଥିଲା । ବିବାହର ୧୦ ମାସ ମଧ୍ୟରେ ସେ ଶୂଳବେଗରେ ଆକ୍ରାନ୍ତ ହେଲା । କେତେଦିନ ପରେ ଡାକ୍ତର ପରୀକ୍ଷା କରିଯାଇ ଦେଖାଗଲା ଯେ ବାଳିକାର ସ୍ତ୍ରୀଲିଙ୍ଗ ପରିବର୍ତ୍ତେ ପୁରୁଷ ଲିଙ୍ଗର ଉତ୍ପତ୍ତି ହେଉଛି । ସାମାନ୍ୟ ଅସ୍ତ୍ରଚିକିତ୍ସା ପରେ ଯୁବତୀ ବର୍ତ୍ତମାନ ଜଣେ ସୁନ୍ଦର ପୁରୁଷ ହୋଇ ପାରିଛି ।



ମାଟିକାକର ଏ ସ୍ୱଭାବ ।

## ଭୀଷଣ ଜଳଜୀବ

ଦକ୍ଷିଣ ମେରୁର ସମୀପବର୍ତ୍ତୀ ତୁଷାର ସାଗରରୁ ଏହି ବର୍ଷ ଏକପ୍ରକାର ନୂତନ ଜଳ ଜନ୍ତୁ ଆବିଷ୍କୃତ ହୋଇଅଛି । ଏହାର ଶରୀର ଦୈର୍ଘ୍ୟ ଅନ୍ୟୂନ ୪୦ ଫୁଟ ହେବ । ମୁଖ ଗହ୍ୱର ସୁଦୀର୍ଘ ଓ ବିସ୍ତୃତ, ଦାନ୍ତଗୁଡ଼କ ବଡ଼ ବଡ଼ ଓ ଘନ ସନ୍ନିବିଷ୍ଟ ଏବଂ କ୍ଷୁରଧାର ପରି ତୀକ୍ଷ୍ଣ । ଏହାର ନାମ ଗ୍ରାମ୍ପାସ୍ । ଏପରି ରକ୍ତପିପାସୁ ବୃହଦାକାର ଏବଂ ଭୀତିଉତ୍ପାଦକ ଜଳଜୀବ ଏ ପର୍ଯ୍ୟନ୍ତ ଅନ୍ୟତ୍ର ଆବିଷ୍କୃତ ହୋଇ ନ ଥିଲା ବୋଲି କହିଲେ ଚଳେ ।



## ତୁଷାର ପଲ୍ଲୀ

ଗ୍ରୀନ୍‌ଲାଣ୍ଡ ନାମକ ହିମପ୍ରଧାନ ଦେଶରେ ଯେତେବେଳେ ବରଫ ପଡ଼େ, ତେତେବେଳେ ଗ୍ରୀନଲାଣ୍ଡବାସୀଗଣ ବରଫର ଗୃହ ନିର୍ମାଣ କରି ସ୍ତ୍ରୀ ପୁତ୍ରଙ୍କୁ ନେଇ ତାହା ମଧ୍ୟରେ ବାସ କରନ୍ତି । ସହସ୍ର ସହସ୍ର ବ୍ୟକ୍ତି ଏହିପରି ତୁଷାରଗୃହ ନିର୍ମାଣପୂର୍ବକ ତୁଷାର ଗ୍ରାମ କରନ୍ତି, ଏହା ଦେଖିବାକୁ ଅତି ସୁନ୍ଦର ।



## ଗୁପ୍ତ ହ୍ରଦ ଓ ଅନ୍ଧମତ୍ସ୍ୟ

ଏକ ବୃହତ୍ ସରୋବର ପରି ହ୍ରଦ, ଅଫ୍ରିକାଖଣ୍ଡର ଅନ୍ତର୍ଗତ ଆଲଜୀରିଆ ଦେଶର ବିରାଟ ଜଳପ୍ରପାତର ସନ୍ନିକଟରେ ପ୍ରକାଶିତ ହୋଇଅଛି । ଜନୈକ ଆବିଷ୍କାରକ କର୍ମାଣଦ୍ୱାରା ଏକ ବୃହତ୍ ପର୍ବତର କିୟଦଂଶ ଭାଙ୍ଗି ଦେଖିଥିଲେ ଯେ, ନିମ୍ନ ଦେଶସ୍ଥ ଏହି ବିସ୍ତୃତ ଜଳପଥ ଏକ ଜଳପୂର୍ଣ୍ଣ ଗହ୍ୱରରେ ଯାଇ ମିଳିତ ହୋଇଅଛି । ଏହି ହ୍ରଦର ଉପରେ ଆଚ୍ଛାଦନ ଅଛି, ସ୍ଥାନେ ସ୍ଥାନେ ଛାଦ ରକ୍ଷାର୍ଥେ ବୃହତ୍ ବୃହତ୍ ସ୍ତମ୍ଭ ଅଛି । ସେମାନେ ଏହି ଅନ୍ଧକାର ହ୍ରଦରୁ କେତେଗୁଡ଼ିଏ ମତ୍ସ୍ୟ ଧରି ଆଣିଥିଲେ, କିନ୍ତୁ ସେ ମତ୍ସ୍ୟଗୁଡ଼ିକ ଅନ୍ଧ ।



## ସ୍ଥୂଳକାୟ ମାନବ

ଇଟାଲିର ମଦ୍ରଜକ ସହରରେ ଜଣେ ଲୋକଙ୍କ ଓଜନ ପ୍ରାୟ ୭ ମହଣ ଥିଲା । ପୃଥିବୀରେ ତାହା ଅପେକ୍ଷା ସ୍ଥୂଳକାୟ ଆଉ କେହି ନ ଥିଲେ । ସେ ୩୮ ବର୍ଷ ବୟସରେ ପ୍ରାଣତ୍ୟାଗ କରିଥିଲେ ।



## ସ୍ଥୂଳତମ ମାନବ

ଦାନିଏଲ ଲମ୍ବର୍ଟ ସର୍ବାପେକ୍ଷା ସ୍ଥୂଳତମ । ତାଙ୍କର ଓଜନ ୫୨ ଷ୍ଟୋନ୍ ୧୧ ପାଉଣ୍ଡ । ଦେହର ଗୋଲେଇ ୯ଫୁଟ ୨ଇଞ୍ଚ ଏବଂ ଗୋଡ଼ର ଗୋଲେଇ ୩୭ ଇଞ୍ଚ । ଦେହର ପୋଷାକ ପ୍ରସ୍ତୁତ କରିବାରେ ଟ ୨୨୦ ରୁ ଟ ୩୦୦ ଖର୍ଚ୍ଚ ହୋଇଥାଏ । ସେ ୫୬୦ ପାଉଣ୍ଡ ଓଜନର ଭାରି ଜିନିଷ ସହଜରେ ନେଇ ପାରୁଥିଲେ । ସନ୍ତରଣ କଲାବେଳେ ସେ ଗୋଟିଏ ପ୍ରକାଣ୍ଡ ହସ୍ତୀ ପରି ଦେଖାଯାନ୍ତି ଓ ସାଧାରଣତଃ ଆକାର ବିଶିଷ୍ଟ ଦୁଇଟି ଲୋକ ଭେଳା ପରି ତାଙ୍କ ପିଠିରେ ଅନାୟାସରେ ଆଶ୍ରୟ ଗ୍ରହଣ କରି ପାରନ୍ତି । ସେ ଲିସେଷ୍ଟର ନଗରରେ ଜନ୍ମଗ୍ରହଣ କରିଥିଲେ ଓ ୪୦ ବର୍ଷ ବୟସରେ ମଲେ ।



## ଉଭୟଚର ମତ୍ସ୍ୟ

ମାଛମାନେ ଜଳଚର ପ୍ରାଣୀ । କିନ୍ତୁ ଲୋହିତ ସାଗରରେ ଏକଜାତୀୟ ମାଛ ଅଛନ୍ତି ସେମାନେ ୩ଶତ ଗଜ ପର୍ଯ୍ୟନ୍ତ ଉଡ଼ିପାରନ୍ତି ।



## ଉଷ୍ଣ ପ୍ରସ୍ରବଣ

ଉଷ୍ଣପ୍ରସ୍ରବଣ ପୃଥିବୀର ଅତ୍ୟାଶ୍ଚର୍ଯ୍ୟ ବ୍ୟାପାର । ମୁଙ୍ଗେରରେ 'ସୀତାକୁଣ୍ଡ' ନାମକ ଉଷ୍ଣପ୍ରସ୍ରବଣ ଅଛି । ଉଷ୍ଣପ୍ରସ୍ରବଣ ପୃଥିବୀ

ମଧ୍ୟରେ ଭାରତବର୍ଷରେ ଓ ଆଇସ୍‌ଲେଣ୍ଡରେ ଅଧିକ ଦୃଷ୍ଟହୁଏ । ଆଇସଲେଣ୍ଡର ଗେଇସେର, ମହାଗେଇସେର ଓ ନବ ଗେଇସେର ପ୍ରଭୃତି ଉଷ୍ଣପ୍ରସ୍ରବଣ ପ୍ରସିଦ୍ଧ ।

## ବର୍ଷଣ ବୃକ୍ଷ

ଦକ୍ଷିଣ ଆମେରିକାସ୍ଥ ପେରୁଦେଶରେ ମଏବାମ୍ବା ନଗର ନିକଟରେ ଏକପ୍ରକାର ବୃକ୍ଷ ଜାତ ହୁଏ । ସେହି ବୃକ୍ଷ ସମୟ ସମୟରେ ବିଶେଷତଃ ଗ୍ରୀଷ୍ମକାଳରେ ନଦୀର ଜଳ କମି ଗଲେ, ବାରି ବର୍ଷଣ କରି ଭଗବାନଙ୍କର ଅପାର ମହିମାର ପରିଚୟ ଦିଏ । ଏହି ବୃକ୍ଷମାନଙ୍କର ଉଚ୍ଚତା ୬୦ ଫୁଟ ଏବଂ କାଣ୍ଡର ବ୍ୟାସ ୩ ଫୁଟ ହୋଇଥାଏ ।

## ନିର୍ଝର ବୃକ୍ଷ

ଆଫ୍ରିକାର ପଶ୍ଚିମରେ ଆଟଲାଣ୍ଟିକ ମହାସାଗରରେ ଯେ ସକଳ ଦ୍ୱୀପ ଅଛି, ତନ୍ମଧ୍ୟରେ ଫେରୋ ଦ୍ୱୀପରେ ୩୦।୩୪ ହାତ ଉଚ୍ଚ, ଶାଖା ପ୍ରଶାଖା ଓ ପତ୍ରସକଳ ବିଶିଷ୍ଟ ଯେଉଁ ସବୁ ନିର୍ଝର ବୃକ୍ଷ ଉତ୍ପନ୍ନ ହୋଇଥିଲା, ସେହି ବୃକ୍ଷମାନଙ୍କରୁ ସର୍ବକାଳରେ ବିନ୍ଦୁ ୨ ବାରି ବିଗଳିତ ହେଉଥିଲା । ଆଶ୍ଚର୍ଯ୍ୟର ବିଷୟ ଯେ, ତାହା ଉପରେ ପ୍ରତିଦିନ ଖଣ୍ଡେ ମେଘ ଅବସ୍ଥିତ କରିଥାଏ । ବିନ୍ଦୁ ବିନ୍ଦୁକରି ସମସ୍ତ ରାତିରେ ପ୍ରତିବୃକ୍ଷରୁ ପ୍ରାୟ ୨୦ ହଜାର ଟନ ସୁସ୍ୱାଦୁ ବାରି ନିଃସୃତ ହୋଇଥିଲା, ଏହାଦ୍ୱାରା ସେଠାକାର ପ୍ରାଣିମାନଙ୍କର ଜଳାଭାବ ଥିଲା ନାହିଁ । ଅଧିକ ଆଶ୍ଚର୍ଯ୍ୟର ବିଷୟ ଏହି ଯେ, ସେଠା ଅଧିବାସୀମାନେ ଯେତେବେଳେ କୂପଖନନ, ବୃଷ୍ଟିଜଳ ସଞ୍ଚୟ ଓ ଲବଣାକ୍ତ ସମୁଦ୍ର ଜଳ ବିଶୁଦ୍ଧ କରି ପାନ କରିବାକୁ ଶିକ୍ଷା କଲେ, ସେହି ସମୟରୁ ନିର୍ଝର ବୃକ୍ଷର ବର୍ଷଣ ରହିତ ହେଲା । ବର୍ତ୍ତମାନ ମଧ୍ୟ ବୃକ୍ଷ ଅଛି କିନ୍ତୁ ବାରି ବର୍ଷଣ ହେଉନାହିଁ ।

## ପ୍ରବାଳ ଦ୍ୱୀପ

ମାଲଡେନ ନାମକ ପ୍ରବାଳ ଦ୍ୱୀପ ସମୁଦ୍ର ଗର୍ଭରୁ ୬୩ ହାତ ଉଚ୍ଚ ଏବଂ ପ୍ରାୟ ୧୩ କୋଶ ପ୍ରଶସ୍ତ ।

## କମ୍ପାସ ବୃକ୍ଷ

ଉତ୍ତର ଆମେରିକାରେ ଏହି ବୃକ୍ଷ ଜନ୍ମେ । ଏହି ପତ୍ରର ଏକ ପ୍ରାନ୍ତ ଦକ୍ଷିଣାଭିମୁଖରେ ଏବଂ ଅପର ପ୍ରାନ୍ତ ଉତ୍ତରାଭିମୁଖରେ ଏବଂ ତାହାର ଏକ ପୃଷ୍ଠ ପୂର୍ବ ଓ ଅପର ପୃଷ୍ଠ ପଶ୍ଚିମ ଦିଗକୁ ଥାଏ । ଘୋର ଅନ୍ଧକାରରେ ମଧ୍ୟ ଏହା ପଥିକର ଦିକ୍ ଦର୍ଶନର କାର୍ଯ୍ୟ କରେ ।

## ଭାସମାନ ଦ୍ୱୀପ

ବହୁତ ହ୍ରଦ ଓ ସାଗରରେ ଏହି ଦ୍ୱୀପ ଦୃଷ୍ଟ ହୁଏ । ଏହା ବିସ୍ତୃତ ଓ ବନ୍ୟଜନାକୀର୍ଣ୍ଣ ବୃକ୍ଷସମେତ ଜାହାଜ ପରି ଭାସି ବାୟୁ ସଂଯୋଗରେ ଏ ଦେଶ ସେ ଦେଶ ଭ୍ରମଣ କରେ । ଏହା ଅତିଶୟ ଆଶ୍ଚର୍ଯ୍ୟ ଜନକ । କାଶ୍ମୀରବାସୀମାନେ ଗୋଟିଏ କୃତ୍ରିମ ପ୍ଳବମାନ ଦ୍ୱୀପ ପ୍ରସ୍ତୁତ କରି ତାହା ଉପରେ କୃଷି କରୁଛନ୍ତି । ଗଙ୍ଗାସାଗର ସଙ୍ଗମରେ ମଧ୍ୟେ ମଧ୍ୟେ ଏପରି ଦ୍ୱୀପ ଦୃଷ୍ଟହୁଏ ।

## ମତ୍ସ୍ୟ ପ୍ରଦୀପ

ପ୍ରଶାନ୍ତ ମହାସାଗରର ଉତ୍ତରାଂଶରେ ଏକପ୍ରକାର ମାଛ ମିଳନ୍ତି । ସେ ସ୍ଥାନର ଲୋକେ ସେ ମାଛକୁ 'ଉଲ୍‌କନ୍' ବୋଲି କହିଥାନ୍ତି । ସେମାନଙ୍କଠାରୁ ବହୁ ପରିମାଣରେ ଚର୍ବି ମିଳେ । ସେମାନଙ୍କ ଲାଞ୍ଜରେ ଦିଆସିଲି ସଳିତା ଲଗାଇଦେଲେ ମହମବତୀ ଜଳିଲା ପରି ତାହା ଜଳି ଉଠେ । ସେହି ମାଛମାନଙ୍କ ଦେହରୁ ତେଲ ବାହାରେ, ତାହା ଶିଳ୍ପଜାତ ବାଣିଜ୍ୟ ଦ୍ରବ୍ୟମାନଙ୍କ ନିର୍ମାଣ କାର୍ଯ୍ୟରେ ମାନବର ଯଥେଷ୍ଟ ସହାୟତା କରେ । ତେଣୁ ସେ ସ୍ଥାନର ଲୋକେ ଧନରତ୍ନ ଗଣନା ନ କରି ସେହି ମାଛ ଶିକାରରେ ଲାଗିଥାନ୍ତି ।



## ଗର୍ତ୍ତବାସୀ ମାନବ

ଉତ୍ତର ଆଫ୍ରିକାରେ ଏକପ୍ରକାର ଲୋକ ବାସ କରନ୍ତି । ସେମାନଙ୍କୁ 'ଟ୍ରେଗଲୋଡାଇଟ୍' ବୋଲି କହନ୍ତି । ସେମାନେ

ଶୃଗାଳ ଓ ସପ ପରି ଗର୍ତ୍ତ ମଧ୍ୟରେ ବାସ କରିବାରେ ଏକାନ୍ତ ଅଭ୍ୟସ୍ତ । ମରୁଭୂମି ସେମାନଙ୍କର ସାଧାରଣ ବାସସ୍ଥଳୀ । ସାଧାରଣତଃ ମରୁଭୂମିର ବାଲୁକାସ୍ତୂପ ମଧ୍ୟରେ ସେମାନେ କୂଅ ପରି ବଡ଼ ବଡ଼ ଗର୍ତ୍ତକରି ତା ଭିତରେ ଦୀର୍ଘ ସୁଡ଼ଙ୍ଗ ନିର୍ମାଣ ପୂର୍ବକ ବାସ କରନ୍ତି ।



## ଅଦ୍ଭୁତ ମାକଡ଼ସା

ଦକ୍ଷିଣ ଆମେରିକାରେ ଏକପ୍ରକାର ମାକଡ଼ସା ବା ବୁଢ଼ିଆଣୀ ଅଛନ୍ତି । ସେମାନେ ପକ୍ଷୀ ଧରି ଭକ୍ଷଣ କରିଥାନ୍ତି । ସେମାନେ ଆକାରରେ ଗୋଟିଏ ଗୋଟିଏ ବୃହତ୍ ମୂଷିକ ପରି । ସେମାନଙ୍କର ପଦଗୁଡ଼ିକର ଲୋମ ଏତେ ଘନସନ୍ନିବିଷ୍ଟ ଯେ, ଅତି ମସୃଣ କାଚ ଉପରେ ଅଧଃ ଊର୍ଦ୍ଧ୍ୱଗତିରେ ଅନାୟାସରେ ଗମନାଗମନ କରିପାରନ୍ତି ।



## ବ୍ୟାଧିହୀନ ଦେଶ

ବାୟୁମଣ୍ଡଳ ଅତି ଶୀତଳ ଓ ଅଦ୍ରିତାଶୂନ୍ୟ ହେତୁ ଗ୍ରୀନଲ୍ୟାଣ୍ଡ ଦେଶରେ କୌଣସି ପ୍ରକାର ସଂକ୍ରାମକ ବ୍ୟାଧି ଜନ୍ମ ହୋଇ ପାରେନାହିଁ ।



## ମନୁଷ୍ୟଭୋଗୀ ମତ୍ସ୍ୟ

ଆମେରିକା ଅନ୍ତର୍ଗତ ଯୁକ୍ତରାଜ୍ୟରେ ଏକ ଜାତୀୟ ମତ୍ସ୍ୟ ଅଛନ୍ତି । ସେମାନେ ମନୁଷ୍ୟ ବା କୌଣସି ଜନ୍ତୁ ପାଇଲେ ଏକାବେଳକେ ଗିଳି ପକାନ୍ତି ।



## ପ୍ରମାଣର ଅଭାବ ।

ମନୁଷ୍ୟର ମସ୍ତିଷ୍କରେ ୩୦ ଟି ସ୍ନାୟୁକେନ୍ଦ୍ର ଅଛି । ପ୍ରତ୍ୟେକ କେନ୍ଦ୍ର ଗୋଟିଏ ସ୍ୱତନ୍ତ୍ର କାର୍ଯ୍ୟ କରେ । ପ୍ରତ୍ୟେକ କେନ୍ଦ୍ର ୭୦ ଦିନ ମାତ୍ର ଜୀବିତ ଥାଏ । ପ୍ରତ୍ୟେକ ୫୦ ଲକ୍ଷ ବା ପ୍ରତିମିନିଟରେ ୩ ହଜାର ୫ ଶହ ଗୋଟି କେନ୍ଦ୍ର ମୃତ୍ୟୁମୁଖରେ ପତିତ ହେଉଅଛି । ପୁଣି ସେହି ସମସ୍ତ ମଧ୍ୟରେ ସେତିକି ଗୁଡ଼ିଏ ନୂତନ କେନ୍ଦ୍ର ଉତ୍ପନ୍ନ ହେଉଅଛି । ସୁତରାଂ ୭୦ ଦିନରେ ଏକଜଣ ମନୁଷ୍ୟର ସମସ୍ତ ମସ୍ତିଷ୍କ ପରିବର୍ତ୍ତିତ ହେଉଅଛି, କିନ୍ତୁ ବାହାରେ ଆମ୍ଭେମାନେ ତାହାର କୌଣସି ପ୍ରମାଣ ପାଉ ନାହୁଁ ।



## ପୋକର ଅସ୍ପୃଶ୍ୟ କାଠ ।

ଦକ୍ଷିଣ ଆଫ୍ରିକାର ଜଙ୍ଗଲରେ ଏକପ୍ରକାର ଗଛ ଅଛି, ତାହାକୁ କାଟିବା ସମୟରେ ଛିଙ୍କ ଆସେ । ଉକ୍ତ କାଠକୁ ପୋକମାନେ ସ୍ପର୍ଶ କରନ୍ତି ନାହିଁ । ଉକ୍ତ କାଷ୍ଠ ଅତି ଶକ୍ତ, ଜଳ ଅପେକ୍ଷା ଭାରି ଏବଂ ଜଳ ସଂସ୍ପର୍ଶରେ ପଚେ ନାହିଁ ।



## ଅଦ୍ଭୁତ ମାକଡ଼ସା ଜାଲ

"ନିଉଗିନି" ଓ ତାର ଉତ୍ତର-ଦିଗରେ 'କାରୋଲାଇନ' ଦ୍ୱୀପ ପୁଞ୍ଜର ଜଙ୍ଗଲରେ ଏକ ଜାତୀୟ ବଡ଼ ବଡ଼ ମାକଡ଼ସା ଗଛ ଡାଳରେ ବୃହତ୍ ଆକାରରେ ଜାଲ ବୁଣି ବସିଥାନ୍ତି । ଏକ ଏକ ଜାଲର ବ୍ୟାସ ମାପରେ ପ୍ରାୟ ୭ ଫିଟ । ନିଉଗିନୀର ଆଦିମ ଅଧିବାସୀମାନେ ଏହି ମାକଡ଼ସା ଜାଲର ପରିଚୟ ପାଇ ସେ ସବୁକୁ ମାଛ ଧରା କାର୍ଯ୍ୟରେ ଲଗାଇ ଅଛନ୍ତି । ଏହି ଅଦ୍ଭୁତ ମାକଡ଼ସା ଜାଲ ଗୁଡ଼ିକ ବେଶ ମଜବୁତ, ଏଥିରେ ଅଧସେର ପର୍ଯ୍ୟନ୍ତ ଓଜନର ମାଛ ଧରାଯାଏ । ପାଣିତୋଡ଼ରେ ମଧ୍ୟ ସେ ଜାଲ ସହଜରେ ଛିଡ଼େ ନାହିଁ ।

ଜଙ୍ଗଲର ଯେଉଁ ଅଂଶରେ ମାକଡ଼ସାର ପ୍ରାଦୁର୍ଭାବ ଖୁବ୍ ବେଶୀ, ସେଠାରେ ସେମାନେ କେତେକ ଲମ୍ବ ବେତକୁ ନୁଆଁଇ ଗୋଲ କରି ବାନ୍ଧି ନିଆଁକରି ରଖି ଆସନ୍ତି । ତା' ପରେ ଏକସପ୍ତାହ ମଧ୍ୟ ନ ହେଉଣୁ ମାକଡ଼ସାର ଅନୁଗ୍ରହରେ ସେଥିରେ ଚମତ୍କାର ଜାଲ ତିଆରି ହୋଇଯାଏ । ତେତେବେଳେ ସେମାନେ ସେ ସବୁକୁ ଜଙ୍ଗଲରୁ ବାହାର କରି ଆଣି ମାଛଧରା ଆରମ୍ଭ କରନ୍ତି ।



## ବାଲଶା କାଠ

ପୃଥିବୀରେ ଯେତେ ରକମ କାଠ ଅଛି ବାଲ୍‌ଶା କାଠ ସବୁଠାରୁ ହାଲୁକା । ଏତେ ହାଲୁକା ଯେ ଏକ ୮୯ ବର୍ଷର ଛୋଟପିଲା ଯେହି କାଠର ଖଣ୍ଡେ ପ୍ରକାଣ୍ଡ କଡ଼କାଠ ସ୍ୱଚ୍ଛନ୍ଦରେ କାନ୍ଧରେ ଉଠାଇ ନେଇ ଯାଇ ପାରେ । "ଏରୋପ୍ଲେନ୍" ବା ଉଡ଼ା ଜାହାଜ ତିଆରି କରିବା ନିମିତ୍ତ ଏହି କାଠର ଚଳନ ଖୁବ୍ ବେଶୀ;—ତା ଛଡ଼ା, ଏହା ଅନ୍ୟ ଅନେକ ପ୍ରୟୋଜନୀୟ କାର୍ଯ୍ୟରେ ଲାଗେ । ସମ୍ପ୍ରତି ସନ୍ତରଣ ଖେଳାଳିମାନଙ୍କ ପାଇଁ ଏହି କାଠର ଏକ ରକମ "ଭସାଚେୟାର" ତିଆରି ହୋଇଅଛି । ଏହି ଚେୟାରରେ ବସି ବେଶ ଆରାମରେ ଢେଉ ମୁହଁରେ ଭାସି ବୁଲିଯାଏ । ଘୋଡ଼ା ଖୁରା ପରି କଣ୍ଠା ଖଣ୍ଡେ ତକ୍ତା, ତାର ତଳରେ, ବସିବା ପାଇଁ ଚମଡ଼ା ଦେଇ ଏକ ଦୋଳା ପରି କରାଯାଇଛି, ଆଉ କିଛି ନୁହେଁ । ପିଲାମାନଙ୍କର ସମୁଦ୍ରରେ ଖେଳିବା ପାଇଁ ବଡ଼ ବଡ଼ ମାଛ ପରି ଦେଖିବାକୁ ଏକ ରକମ "ବୋଟ" ତିଆରି ହୋଇଅଛି । ଖୁବ୍ ହାଲୁକା ବୋଲି ପିଲାମାନେ ବେଶ୍ ଅନାୟାସରେ ସେଥିକୁ ଧରି ଓଲଟ ପାଲଟ କରି ପାରନ୍ତି ।



## ଆଶ୍ଚର୍ଯ୍ୟ ଗୋଲାପ

ପୁଷ୍ପୋତ୍ପାଦନରେ ଚୀନ, ଜାପାନ ଏବଂ ଶ୍ୟାମବାସୀମାନେ ଅତ୍ୟନ୍ତ ନିପୁଣତା ପ୍ରଦର୍ଶନ କରିଥାନ୍ତି । ପୁଷ୍ପର ଆଶ୍ଚର୍ଯ୍ୟ ଆଶ୍ଚର୍ଯ୍ୟ କାର୍ଯ୍ୟ ସେମାନଙ୍କ ଦ୍ୱାରା ସମ୍ପାଦିତ ହୋଇଥାଏ । ପୁଷ୍ପ ମଧ୍ୟରେ ବିଖ୍ୟାତ "ପରିବର୍ତ୍ତନଶୀଳ ଗୋଲାପ" ସର୍ବାପେକ୍ଷା ଉଲ୍ଲେଖ ଯୋଗ୍ୟ । ଉକ୍ତ ପୁଷ୍ପକୁ ଛାୟାରେ ରଖିଲେ ତାହାର ବର୍ଣ୍ଣ ଶୁଭ୍ର ଏବଂ ସୂର୍ଯ୍ୟ କିରଣରେ ରଖିଲେ ମଧ୍ୟମ ପରି ଶ୍ୱେତବର୍ଣ୍ଣ ଧାରଣ କରେ । ସୂର୍ଯ୍ୟାଲୋକକୁ ଆଣିଲେ ପ୍ରଥମତଃ ଫୁଲର ଦଳଗୁଡ଼ିକ ଈଷତ୍ ନୀଳବର୍ଣ୍ଣ ହୁଏ । ତତ୍ପରେ ଉକ୍ତ ବର୍ଣ୍ଣ ଶୀଘ୍ର ପରିବର୍ତ୍ତିତ ହୋଇ ଈଷତ୍ ଲୋହିତ ବର୍ଣ୍ଣରେ ପରିଣତ ହୋଇଥାଏ ଏବଂ କ୍ରମେ କ୍ରମେ ଏହି ଈଷତ୍ ଲୋହିତ ବର୍ଣ୍ଣ ଗାଢ଼ ହୁଏ ।



## ଜଳଦୈତ୍ୟ

ଏକ ଜାତୀୟ ମାଛ ଅଛନ୍ତି, ସେମାନଙ୍କୁ ଅଷ୍ଟପଦୀ ଜଳଦୈତ୍ୟ କହନ୍ତି । ଏମାନଙ୍କ ଦୈର୍ଘ୍ୟ ଦଂଶତି ହସ୍ତ ପର୍ଯ୍ୟନ୍ତ ହୁଏ । ଏମାନେ ନୌକାରୁ ମନୁଷ୍ୟ ନେଇଯାନ୍ତି । ଅଷ୍ଟପଦୀ ଦ୍ୱାରା ଧୃତ ହେଲେ ମାନବ ଅଗ୍ନି ଦଗ୍ଧ ତୁଲ୍ୟ ଯନ୍ତ୍ରଣା ଅନୁଭବ କରେ ।



## ଜ୍ୱଳନ୍ତ ତାରକା

ଡୋରାଡ଼ସ ନାମକ ତାରା ଏପରି ଉତ୍ତପ୍ତ ଯେ, ତାକୁ ଯେବେ ସୂର୍ଯ୍ୟ ଯେଉଁସ୍ଥାନରେ ଅଛନ୍ତି, ସେଠାରେ ରଖାଯାଏ, ତେବେ ମୁହୂର୍ତ୍ତେ ମୁହୂର୍ତ୍ତେ ଜଳ, ସ୍ଥଳ, ଗିରି, ବନ ସହିତ ସମଗ୍ର ପୃଥିବୀ ବାଷ୍ପରେ ପରିଣତ ହୋଇ ଉଡ଼ିଯିବ ।



## ଘଣ୍ଟାପକ୍ଷୀ

ଘଣ୍ଟାପକ୍ଷୀର ଆକୃତି କାକ ପରି, ଆକୃତି ଏକ ଫୁଟରୁ ଅଧିକ ନୁହେଁ । ଏହାର ସ୍ୱର ଅତ୍ୟନ୍ତ ଗମ୍ଭୀର, ଦୂରରୁ ଘଣ୍ଟା ଶବ୍ଦ ତୁଲ୍ୟ ବୋଧ ହୁଏ । ଦୁଇକୋଶ ଦୂରରୁ ଏହାର ଶବ୍ଦ ଶୁଣାଯାଏ । ଏ ଜାତୀୟ ପକ୍ଷୀ ଦକ୍ଷିଣ ଆମେରିକାରେ ଅଛନ୍ତି ।



## ଜିହ୍ୱାହୀନ ପକ୍ଷୀ

ଅଷ୍ଟ୍ରେଲିଆରେ ଏମିଉନାମକ ବୃହଦାକୃତ ପକ୍ଷୀର ଜିହ୍ୱା ନାହିଁ । ଏଣୁ ସେମାନେ ଶବ୍ଦ କରିପାରନ୍ତି ନାହିଁ ।

## ଗଣ୍ଡାର ପକ୍ଷୀ

ଦକ୍ଷିଣ ଅଫ୍ରିକାରେ ଏକପ୍ରକାର କ୍ଷୁଦ୍ରପକ୍ଷୀ ଅଛନ୍ତି ସେମାନଙ୍କୁ ଗଣ୍ଡାର ପକ୍ଷୀ କହନ୍ତି । ଏମାନେ ସବୁବେଳେ ଗଣ୍ଡାର ସଙ୍ଗେ ରହନ୍ତି । ଏଠାକାର କୃଷ୍ଣଗଣ୍ଡାର ଅତ୍ୟନ୍ତ ନିଦ୍ରାଳୁଦଣ୍ଡ । ନିଦ୍ରାବସ୍ଥାରେ କୌଣସି ଶତ୍ରୁ ଉପସ୍ଥିତ ହେଲେ ଉକ୍ତ ପକ୍ଷୀ ଚିତ୍କାର କରି ଗଣ୍ଡାରକୁ ଜାଗରିତ କରେ । ସେହିପରି ମହିଷ ପକ୍ଷୀ ମଧ୍ୟ ମହିଷମାନଙ୍କ ଉପକାର କରେ ।

## ଦସ୍ୟୁ ପକ୍ଷୀ

ଗ୍ରୀଷ୍ମମଣ୍ଡଳରେ ଏକଜାତୀୟ ପକ୍ଷୀ ଅଛନ୍ତି ତାକୁ ଦସ୍ୟୁପକ୍ଷୀ କହନ୍ତି । ଏହାର ଦେହ ଭାର ଗୃହପେଚରୁ ଅଧିକ ନୁହେଁ । ମାତ୍ର ଉଭୟ ପକ୍ଷର ବିସ୍ତାର ୭ଫୁଟରୁ ଅଧିକ ଅଟେ । ଏମାନେ ସୁଦୂର ଆକାଶ ପ୍ରଦେଶରେ ଇତଃସ୍ତତଃ ଭ୍ରମଣ କରୁଁ କରୁଁ ଆପଣାଠାରୁ ଅପେକ୍ଷାକୃତ ଦୁର୍ବଳ କୌଣସି ପକ୍ଷୀକୁ ମତ୍ସ୍ୟ ନେଇ ଯାଉଥିବାର ଦେଖିଲେ ବିଦ୍ୟୁତ୍‌ବେଗରେ ଅଧଃପତିତ ହୋଇ ତାହାକୁ ଆକ୍ରମଣ କରନ୍ତି । ଭୟରେ ଉକ୍ତପକ୍ଷୀ ମତ୍ସ୍ୟ ତ୍ୟାଗକରି ପଳାୟନ କଲେ ମତ୍ସ୍ୟ ଜଳରେ ପତିତ ନ ହେଉଣୁ ଦସ୍ୟୁପକ୍ଷୀ ଅତ୍ୟନ୍ତ ବେଗରେ ଆସି ଶୂନ୍ୟରୁ ତାହା ନେଇଯାଏ । ଏମାନେ କୂଳ ତ୍ୟାଗକରି ସହସ୍ର ସହସ୍ର ମାଇଲ ଦୂରକୁ ଗମନ କରନ୍ତି । ସମୁଦ୍ରରେ ପ୍ରବଳ ଝଟିକା ଉପସ୍ଥିତ ହେଲେ ଦସ୍ୟୁପକ୍ଷୀମାନେ ଶୂନ୍ୟମାର୍ଗରେ ଊର୍ଦ୍ଧ୍ୱଗମନ କରି ଝଟିକା ପ୍ରଦେଶର ସୀମା ଅତିକ୍ରମ କରନ୍ତି । ଏମାନଙ୍କର ଦୃଷ୍ଟିଶକ୍ତି ଅତ୍ୟନ୍ତ ପ୍ରଖର । କୌଣସି ମତ୍ସ୍ୟକୁ ସମୁଦ୍ରରେ ଭାସୁଥିବାର ଦେଖିଲେ ଏମାନେ ଅଦୃଶ୍ୟ ଆକାଶ ପ୍ରଦେଶରୁ ଏପରି ବେଗରେ ଅବତରଣ କରି ମତ୍ସ୍ୟଉପରେ ପତିତ ହୁଅନ୍ତି ଯେ ମତ୍ସ୍ୟ ପଳାୟନ କରିବାର ଅବସର ସୁଦ୍ଧା ପାଏନାହିଁ । ଅନ୍ୟ ପକ୍ଷୀମାନଙ୍କରୁ ଶାବକ ହରଣ କରି ଭକ୍ଷଣ କରିବାକୁ ଏମାନେ ଅତ୍ୟନ୍ତ ପୁଖ ମଣନ୍ତି ।

## ଆରଟେଲ୍ ଛାଗ

କାମସ୍କଟକା ଉପଦ୍ୱୀପରେ ଆରଟେଲ୍ ନାମ ବନ୍ୟଛାଗ ପର୍ବତର ଏକଶୃଙ୍ଗରୁ ଅନ୍ୟଶୃଙ୍ଗକୁ ଏବଂ ଊର୍ଦ୍ଧ୍ୱରୁ ନିମ୍ନକୁ ଲମ୍ଫ ପ୍ରଦାନ କରି ପାରେ । ଏମାନେ ଶିକାରୀମାନଙ୍କୁ ଦେଖିଲାକ୍ଷଣି ନିମିଷମଧ୍ୟରେ ଅଦୃଶ୍ୟ ହୋଇଯାନ୍ତି ।

## ସ୍ଥଳଚର କର୍କଟ

ଫିଜି ଦ୍ୱୀପରେ ବୃହଦାକୃତର ଯେଉଁ ସ୍ଥଳଚରେ କର୍କଟ ଅଛନ୍ତି, ସେମାନେ ନାରିକେଳ ବୃକ୍ଷରେ ଆରୋହଣ କରି ନାରିକେଳ ଭକ୍ଷଣ କରନ୍ତି । ମନୁଷ୍ୟମାନେ ଏମାନଙ୍କୁ ସହଜରେ ଧରି ପାରନ୍ତି ନାହିଁ । କେହି ଏମାନଙ୍କ ପଶ୍ଚାଦ୍ଧାବନ କଲେ, ଏମାନେ ପଦଦ୍ୱାରା ମୃତ୍ତିକା ଓ ଲୋଷ୍ଟ୍ର ନିକ୍ଷେପ କରି ତାହାର ଗତି ରୋଧ କରନ୍ତି ।

## ବହୁରୂପୀ

ଏହା କୀଟଭୁକ୍ ଜୀବ, ନିଜ ଇଚ୍ଛାନୁସାରେ ଦେହର ବର୍ଣ୍ଣ ପରିବର୍ତ୍ତନ କରିପାରନ୍ତି । ଏମାନେ କୌଣସି ସ୍ଥାନରେ ବହୁକ୍ଷଣ ନିଷ୍ପନ୍ଦଭାବରେ ରହିପାରନ୍ତି । ଏମାନଙ୍କର ଉଭୟ ଚକ୍ଷୁର ଦୃଷ୍ଟି ଶକ୍ତି ଏକଦିଗକୁ ସଞ୍ଚାଳିତ ହୁଏ ନାହିଁ, ଇଚ୍ଛାନୁରୂପ ଉଭୟ ଚକ୍ଷୁ ଭିନ୍ନ ଭିନ୍ନ ଦିଗକୁ ଦୃଷ୍ଟି କରୁଥାଏ । ଏହାର ପ୍ରତ୍ୟେକ ପାଦର ପାଞ୍ଚଅଙ୍ଗୁଳ ସ୍ୱତନ୍ତ୍ର ଭାବରେ ନ ରହି ଚର୍ମାବୃତ ହୋଇଥାଏ । ଏମାନେ ଲାଙ୍ଗୁଳଦ୍ୱାରା ବୃକ୍ଷଶାଖା ଦୃଢ଼ରୂପେ ଧାରଣ କରିପାରନ୍ତି । ଏମାନଙ୍କର ସୁଦୀର୍ଘଜିହ୍ୱା ମୁଖ ମଧ୍ୟରେ ଆକୁଞ୍ଚିତ ହୋଇ ରହିଥାଏ । ଏମାନେ ଦଶ ଅଙ୍ଗୁଳ ଦୂରରୁ ଜିହ୍ୱାଦ୍ୱାରା କୀଟ ଧାରଣ କରି ପାରନ୍ତି । କୀଟ ଦେଖିଲାକ୍ଷଣି ଏପରି ବେଗରେ ଜିହ୍ୱାଦ୍ୱାରା ଜଡ଼ିତ କରି ମୁଖମଧ୍ୟକୁ ନେଇ ଆସନ୍ତି ଯେ ଜିହ୍ୱାର ଗତି ଲକ୍ଷିତ ହୁଏ ନାହିଁ ।

## ପତଙ୍ଗଭୁକ୍ ବୃକ୍ଷ

ଅମେରିକାସ୍ଥ ବ୍ରିଟିଶ ଦ୍ୱୀପରେ ଇଉଣ୍ଡି ଫେଲଲେଉସ୍ଥା ବ୍ରେଜିଲ ପ୍ରଭୃତି ନାନାସ୍ଥାନରେ ପତଙ୍ଗଭୁକ୍ ବୃକ୍ଷଅଛି । ଏମାନେ କୀଟ ପତଙ୍ଗ ଆହାର କରି ବଞ୍ଚନ୍ତି । କୌଣସି ପତଙ୍ଗ ପତ୍ରରେ ବସିଲେ ପତ୍ରଟି ମୁଦ ହୋଇଯାଏ । ଯେ ପର୍ଯ୍ୟନ୍ତ ପତଙ୍ଗଟି ଜୀର୍ଣ୍ଣ ହୋଇ ନ ଥାଏ ସେ ପର୍ଯ୍ୟନ୍ତ ପ୍ରସାରିତ ହୁଏ ନାହିଁ ।



## ଉଲ୍କା କଣ ?

ପୃଥିବୀରେ କୋଇଲା ଯେପରି କାଳକ୍ରମେ ରସାୟନିକ ପରି[illegible] ଅଧୀନ ହୋଇ ସ୍ୱଭାବରେ ପରିଣତ ହୁଏ, ଗ୍ରହ ନକ୍ଷତ୍ର[illegible] ସେହିପରି କୋଇଲା ଭଳି ପଦାର୍ଥ ସ୍ୱଭାବରେ ପରିଣତ ହୋଇଥାଏ । ଉଲ୍କାପାତ ହେଲେ ପୂର୍ବେ ତାହାକୁ ଲୋକେ ଦେବତା ବୋଲି ପୂଜା କରୁଥିଲେ, କିନ୍ତୁ ଅଳ୍ପ କାଳ ବୈଜ୍ଞାନିକ ସାହାଯ୍ୟରେ ଉଲ୍କାପାତର ସ୍ଥାନ ନିର୍ଦ୍ଦେଶ କରିବାର ଅନୁସନ୍ଧାନ । ଉଲ୍କା ଦୁଇଭାଗରେ ବିଭକ୍ତ ( ୧ ) ଯେଉଁଗୁଡ଼ିକ ପଡ଼ୁ ପଡ଼ୁ ବାଟରେ ଚୂନା ହୋଇଯାଏ ( ୨ ) ଯାହା ପୃଥ୍ୱୀପୃଷ୍ଠରେ ତଳେ ପଡ଼େ, ଅଧିକାଂଶ ଉଲ୍କା ବାଟରେ ଚୂର୍ଣ୍ଣ ହୋଇଯାଏ । ଏହି ଚୂର୍ଣ୍ଣ ସ୍ତରକରେଣୁ ସମୁଦ୍ର ବାଲିରେ, ପର୍ବତ ଉପରେ, ମରୁଭୂମି ମଧ୍ୟରେ ଅନେକ ପରିମାଣରେ ଦେଖା ଯାଇଥାଏ । ସବୁଠାରୁ ବଡ଼ ଉଲ୍କା ମେକ୍ସିକୋ ଦେଶରେ ପଡ଼ିଥିଲା, ତାହାର ଓଜନ ୫୦ ଟନ୍ ।



## କ୍ଷୁଦ୍ରତମ ପକ୍ଷୀ

କିଉବାର ଜଙ୍ଗଲରେ ଏକପ୍ରକାର ପକ୍ଷୀ ଅଛି । ତାର ଓଜନ ଦୋଅଣିରୁ କମ୍ । ପୃଥିବୀରେ ସବୁ ପକ୍ଷୀଠାରୁ ଏହା ଛୋଟ ।



## ପୃଥିବୀର ବୃହତ୍ତମ ଭେକ

ଦକ୍ଷିଣ କେନସିଂଟନରେ ଯେଉଁ ଯାଦୁଘର ଅଛି ସେଥିରେ 'ରାଣୀ ଗୋଲିୟାଥ୍' ନାମରେ ଏକ ବିରାଟ ଭେକ ରଖାଯାଇଛି । ଏ ପ୍ରକାର ଭେକ କେବଳ କ୍ୟାମେରୁନ୍‌ରେ ମିଳେ । ଏହା ଏକ ବଡ଼ ମୂଷିକ ତୁଳନାରେ ଢେର ବଡ଼ ।



## ଅତିକାୟ ଶୂକର

ଅଫ୍ରିକାରେ ଏମାନଙ୍କର ବାସଭୂମି । ଏମାନଙ୍କର ସାମନାର ଦାନ୍ତମାନ ଏତେ ଦୀର୍ଘ ଯେ ଦେଖିଲେ ଭୟ ହୁଏ । ଦେହରେ ଛୁଦକଟା ଦାଗ ଅଛି । ଏମାନେ ପୃଥିବୀରେ ସବୁଠାରୁ କଦର୍ଯ୍ୟ ଜାନୁଆର ବୋଲି ଲୋକେ କହନ୍ତି ।



## ଅତିକାୟ ପକ୍ଷୀ

ଦକ୍ଷିଣ ଅଫ୍ରିକାର ଗଭୀର ଅରଣ୍ୟ ମଧ୍ୟରେ ଏମାନଙ୍କର ବାସ । ଏମାନଙ୍କପରି ଭୟାନକ ପକ୍ଷୀ ଆଉ ନାହିଁ କହିଲେ ଅତ୍ୟୁକ୍ତି ହେବ ନାହିଁ । ଏମାନଙ୍କ ଭୟରେ ବିଷଧର ସାପ ଗୁଡ଼ାକ ଧାବମାନ ଅସ୍ଥିର ହୋଇ ଥାଆନ୍ତି । ସାପ ଏମାନଙ୍କର ଖାଦ୍ୟ । ସାପଯୁଦ୍ଧ ବେଳେ ଏମାନଙ୍କର କିଛି ମାତ୍ର କ୍ଷତ ବା ଭୟ ନାହିଁ । କ୍ଷୁଧାର ଉଦ୍ରେକ ହେଲେ ଏମାନେ ଛୋଟ ବଡ଼ ବିଚାର ନ କରି ମୁହଁରେ ପୂରାଇ ଦିଅନ୍ତି ।



## ବୃକ୍ଷବାସୀ ମତ୍ସ୍ୟ

ଭାରତ ମହାସମୁଦ୍ରର କେତେକ ସ୍ଥାନରେ ଏକପ୍ରକାର ମାଛ ଦେଖାଯାନ୍ତି । ଏମାନେ ପକ୍ଷୀପରି ବୃକ୍ଷରେ ବସା ବାନ୍ଧନ୍ତି । ଅବଶ୍ୟ ଜଳମଧ୍ୟରେ ସାମୁଦ୍ରିକ ଗଛ ଡାଳରେ ଏମାନେ ବସା ବାନ୍ଧନ୍ତି । ଏପ୍ରକାର ଅଦ୍ଭୁତ ମତ୍ସ୍ୟ ଅନ୍ୟତ୍ର ଦେଖାଯାନ୍ତି ନାହିଁ । ଶତ୍ରୁ ନିକଟବର୍ତ୍ତୀ ହେଲେ ଏମାନେ ଦେହର ରଙ୍ଗ ବଦଳାଇ ଗଛର ରଙ୍ଗ ସହିତ ମିଶିଯାଆନ୍ତି । ଏମାନେ ଅତି ଭୀରୁପ୍ରକୃତିର ।



ତାହାର ଧନ ଦୂରେ ଅଛେ ।

## ଅତିକାୟ ସାମୁଦ୍ରିକ କଚ୍ଛପ

ଇଂଲଣ୍ଡର ପୂର୍ବ ଉପକୂଳରେ ଏକ କଚ୍ଛପ ମିଳଛି, ତାହାର ଓଜନ ଦେଢ଼ ଟନ । ତାହାକୁ ନୌକାକୁ ଉଠାଇବା ପାଇଁ ଜାଲିଆମାନଙ୍କୁ ଯଥେଷ୍ଟ ଯୁଦ୍ଧ କରିବାକୁ ହୋଇଥିଲା । ସାଧାରଣତଃ, ଏହି ଜାତୀୟ କଚ୍ଛପ ଅଷ୍ଟ୍ରେଲିୟାର ଉପକୂଳର ଆଖପାଖରେ ଦେଖାଯାଆନ୍ତି ।



## ସିନ୍ଧୁସିଂହର ବାସଭୂମି

କାଲିଫୋର୍ଣ୍ଣିଆ ଉପକୂଳରେ ପ୍ରଶାନ୍ତ ମହାସାଗର ମଧ୍ୟରୁ ଗୋଟିଏ ପ୍ରସ୍ତରମୟ ଚୂଡ଼ା ବାହାରି ଅଛି । ତାହାର ନାମ କୋରୋନାଡ୍ରୋ ଦ୍ୱୀପ । ବସନ୍ତ ପବନ ପ୍ରବାହିତ ହେବାମାତ୍ରକେ ବଡ଼ ବଡ଼ ସିଂହ ସେହି ପଥର ଉପରକୁ ଆସି ସୂର୍ଯ୍ୟକିରଣ ଉପଭୋଗ କରନ୍ତି । ଯେଉଁ ସିଂହ ଯେତେ ବେଶି ସିଂହୀର ଅନୁରାଗ ଆକର୍ଷଣ କରିପାରେ ତାର ଖାତିର ତେତେ ବେଶି । ସିନ୍ଧୁ ଶାବକମାନେ ମନୁଷ୍ୟ ଦେଖିଲେ ଡ଼ରନ୍ତି ନାହିଁ କିନ୍ତୁ ସିନ୍ଧୁ ସିଂହୀ ଏ ବିଷୟରେ ବିଶେଷ ସତର୍କ ।



## ଚିନ୍ତନୀୟ ।

୧—୧୬୪୭ ଖ୍ରୀଷ୍ଟାବ୍ଦରେ ସର୍ବପ୍ରଥମେ ଘଣ୍ଟିକା ଯନ୍ତ୍ର ପ୍ରସ୍ତୁତ ହେଲା ।

୨—ଖ୍ରୀଷ୍ଟ ଜନ୍ମର ୧୬୦ ବର୍ଷ ପୂର୍ବେ ଚୀନଦେଶରେ କାଗଜର ଉଦ୍ଭାବନ ଘଟିଥିଲା ।

୩—ମନୁଷ୍ୟ ଶରୀରରେ ପ୍ରାୟ ଏକକୋଟି ସ୍ନାୟୁତନ୍ତୁ ଅଛି ।

୪—ପ୍ରତିଘଣ୍ଟାରେ ପ୍ରାୟ ୩ ୭୩୦ ସେର ରକ୍ତ ମନୁଷ୍ୟ ଶରୀରରେ ପ୍ରବାହିତ ହୁଏ ।

୫—୧୨୪୦ ଖ୍ରୀ :ରେ ମୁରମାନେ ଇଉରୋପରେ ଭୂଗୋଳ ବିଦ୍ୟା ପ୍ରବର୍ତ୍ତନ କରିଥିଲେ ।

୬—ଲବଣୀ ବାହାର କରିଯାଇଥିବା ଘନଦୁଗ୍ଧ ଦ୍ୱାରା କୃତ୍ରିମ ଦନ୍ତାଦି ପ୍ରସ୍ତୁତ ହୋଇଥାଏ ।

୭—ଗୋଟିଏ ତିମି ମାଛର ଜିହ୍ୱାରୁ ୮ ମହଣ ତୈଳ ବାହାରି ଥାଏ ।

୮—ତୁରସ୍କର ରମଣୀମାନେ ଚର୍ମର କୋମଳତା ଓ ସୌନ୍ଦର୍ଯ୍ୟ ବୃଦ୍ଧି ନିମନ୍ତେ ନବନୀତ ସହିତ ଗୋଲାପ ଫୁଲର ପାଖୁଡ଼ା ଭକ୍ଷଣ କରିଥାନ୍ତି ।

୯—ପୃଥିବୀର ସମଗ୍ର ତୂଳାର ଏକ ତୃତୀୟାଂଶ ଆମେରିକାର ଯୁକ୍ତପ୍ରଦେଶ କ୍ରୟ କରିଥାଏ ।

୧୦—ଭାରତରେ ପ୍ରତି ସପ୍ତାହରେ ୩୨ ଲକ୍ଷ ୫୦ ହଜାର ଟଙ୍କା ମୂଲ୍ୟର ଦ୍ରବ୍ୟ ବନ୍ଧା ଦିଆଯାଏ ।

୧୧—ଚୀନଦେଶରେ କନ୍ୟା ଜାତ ହେଲେ ଅନାଦୃତା ହୁଅନ୍ତି ।

୧୨—ବୁଲଗେରିଆ ଦେଶରେ ନବ ବିବାହିତା ସ୍ତ୍ରୀ ଏକମାସ କାଳ ମୌନାବଲମ୍ବନ କରିବାକୁ ବାଧ୍ୟ ହୁଅନ୍ତି । ତେବେ ବିଶେଷ କାରଣ ଥିଲେ ପତି ସହିତ କଥା କହି ପାରନ୍ତି । ମାସକ ପରେ ସ୍ୱାମୀଠାରୁ ଯୌତୁକ ପାଆନ୍ତି ଏବଂ ନିଜ ଇଚ୍ଛା ଅନୁସାରେ କଥା କହନ୍ତି ।

୧୩—ଚୀନାମାନେ ୨୧୮ ଖ୍ରୀ: ପୂର୍ବେ ଭିଜିଟିଂ କାର୍ଡ଼ ବ୍ୟବହାର କରୁଥିଲେ । ସମଗ୍ର ଜଗତ ଏଥିପାଇଁ ଚୀନ ନିକଟରେ କୃତଜ୍ଞ ।

୧୪—ବ୍ୟୋମବିହାରୀମାନେ କହନ୍ତି ଯେ ପୃଥିବୀଠାରୁ ୧୩୧୫ ଫିଟ ଉପରେ କୌଣସି ପ୍ରକାର ପକ୍ଷୀ ଦେଖା ଯାଆନ୍ତି ନାହିଁ ।

୧୫—ଇଂଲଣ୍ଡର ପାର୍ଲିଆମେଣ୍ଟରେ ଦିନରାତି ସକଳ ସମୟରେ ମଦ୍ୟ ବିକ୍ରୟ ହୁଏ । କୌଣସି ଶୁଣ୍ଡି ଦୋକାନରେ ଏପରି ସୁବିଧା ନାହିଁ ।

୧୬—କଲିକତାରେ ପ୍ରତିଦିନ ୧୨ ଶହ ମହଣ ଘିଅ ଖରଚ ହୁଏ ।

୧୭—ସମଗ୍ର ଜଗତରେ ପ୍ରତିବର୍ଷ ହାରାହାରି ୩୮ କୋଟି ମହଣ ଚିନି ବ୍ୟବହୃତ ହୋଇଥାଏ ।

୧୮—ସୂର୍ଯ୍ୟମୁଖୀ ଓ ତୁଳସୀ ଗଛର ମ୍ୟାଲେରିଆ ନଷ୍ଟ କରିବାର କ୍ଷମତା ଅଛି ।

୧୧—ଲଙ୍କାମରିଚ ତୀକ୍ଷ୍ଣ ଓ ଉଗ୍ରସ୍ୱଭାବ ହେତୁ ତାହା ଖାଦ୍ୟରୂପେ ଗ୍ରହଣ ନ କରିବା ଉଚିତ ଏବଂ ତାହା ଙ୍କଣ୍ଟୁଆ ବିଷ ଅପେକ୍ଷା ଅଧିକ ମାରାତ୍ମକ ?

୨୦—ଶୀତ ପ୍ରଧାନ ଦେଶ ଅପେକ୍ଷା ଗ୍ରୀଷ୍ମ ପ୍ରଧାନ ଦେଶରେ ସର୍ଦ୍ଦିର ଆକ୍ରମଣ ଅଧିକ ।

୨୧—୨୨୦୦ ବର୍ଷ ପୂର୍ବେ ବନ୍ୟ ଘୋଡାଜାତକୁ ଆଦିମ ମନୁଷ୍ୟଜାତି ପାଳିତାବସ୍ଥାକୁ ଆଣି କାର୍ଯ୍ୟରେ ନିଯୁକ୍ତ କରିବା ଆରମ୍ଭ କଲେ (ମହାତ୍ମା ଡାରଉଇନଙ୍କ ମତ) ।

୨୨—ଟେଲିଗ୍ରାଫର ସମ୍ବାଦ ୩ ସେକେଣ୍ଡରେ ଆଟଲାଣ୍ଟିକ ମହାସାଗର ପାର ହୋଇଯାଏ ।

୨୩—ଅଷ୍ଟ୍ରିଚ ପକ୍ଷୀ ଧାବିତ ହେଲେ ୧ ମିନିଟରେ ୧ ମାଇଲ ଚାଲି କରିପାରେ ।

୨୪—ଚନ୍ଦ୍ରଲୋକ ସ୍ଥିତ ପର୍ବତର ଉଚ୍ଚତା ୩୦ ହଜାର ଫିଟ ।

୨୫—ସୂକ୍ଷ୍ମ ଗଣନା ଦ୍ୱାରା ସ୍ଥିର ହୋଇଅଛି ଯେ ଜଗତର ପ୍ରତ୍ୟେକ ଏକ ଲକ୍ଷ ଲୋକ ମଧ୍ୟରେ ୬୪ ଜଣ ଅନ୍ଧ ।

୨୬—ସ୍ତ୍ରୀମାନଙ୍କ ମସ୍ତିଷ୍କର ଶକ୍ତି ପ୍ରାୟ ୩୦ ବର୍ଷ ଉତ୍ତାରୁ କ୍ଷୀଣ ହେବାକୁ ଆରମ୍ଭ କରେ ଏବଂ ପୁରୁଷର ମସ୍ତିଷ୍କ ୫୦ ବର୍ଷ ପରେ ଦୁର୍ବଳ ହୋଇଯାଏ ।

୨୭—ପ୍ରସିଦ୍ଧ ଡାକ୍ତରମାନଙ୍କ ମତରେ ଅତଶଯ୍ୟ ସୌରଭମୟ ସାବୁନ ବ୍ୟବହାର ଦ୍ୱାରା ଚର୍ମର ନାନାପ୍ରକାର ଅନିଷ୍ଟ ହୋଇଥାଏ ।

୨୮—ଏକସେର କିରାସିନି ତେଲରେ ଅଧ ଛଟାଙ୍କି ଲୁଣ ମିଶାଇ ଜାଳିଲେ ତାହାର ଆଲୋକ ଅତି ଉଜ୍ଜ୍ୱଳ ହୁଏ ଏବଂ ତହିଁରୁ ଧୂଆଁ ବାହାରେ ନାହିଁ ।

୨୯—ଲୁଗାରେ ଲେଭେଣ୍ଡର ସେଚନ କରି କାଗଜର ଥଳିଆ ମଧ୍ୟରେ ବନ୍ଦ କରି ରଖିଲେ ପୋକ ଲାଗିବ ନାହିଁ ।

୩୦—ଯେଉଁମାନଙ୍କର ଦନ୍ତ ଘନସନ୍ନିବିଷ୍ଟ, ସେମାନଙ୍କର ମସ୍ତିଷ୍କ ଅସମ୍ପୂର୍ଣ୍ଣ ରହିଯାଏ ସୁତରାଂ ସେମାନେ ନରହତ୍ୟାଦି ଅପରାଧ କରି ପାରନ୍ତି ।

୩୧—ପରୀକ୍ଷା ଦ୍ୱାରା ଜଣା ଯାଇଅଛି ଏକଟନ ପରିମିତ ସାଗର ଜଳରେ ଏକଗ୍ରେନ୍ ପରିମିତ ସୁବର୍ଣ୍ଣ ଅଛି ।

୩୨—ଇଂଲଣ୍ଡର ଧନୀଲୋକମାନେ ଇଂଲଣ୍ଡର ରାଜା ଏବଂ ଅନ୍ୟାନ୍ୟ ରାଜାମାନଙ୍କ ଅଭ୍ୟର୍ଥନା ଅଭିନନ୍ଦନ ଉପଲକ୍ଷେ ବାର୍ଷିକ ୩ କୋଟି ଟଙ୍କା ବ୍ୟୟ କରନ୍ତି ।

୩୩—ଭାରତରେ ଏକ ତୃତୀୟାଂଶ ଓ ଜାପାନର ଏକଷଷ୍ଠାଂଶ ଭୂମି କର୍ଷଣ ଯୋଗ୍ୟ ।

୩୪—କାକ ପ୍ରସବ କଲେ ୧ଦିନ ପର୍ଯ୍ୟନ୍ତ ଶିଶୁକୁ ଆହାର ଦିଏ ନାହିଁ ।

୩୫—୧୪ବର୍ଷ ବୟସରେ ବାଳକର ଏବଂ ୧୬ବର୍ଷ ବୟସରେ ବାଳିକାର କଣ୍ଠସ୍ୱର ପରିବର୍ତ୍ତିତ ହୁଏ ।

୩୬—ଗ୍ରୀଷ୍ମକାଳ ଅପେକ୍ଷା ଶୀତକାଳର ବାୟୁ ଘନ, ଏଣୁ ଶୀତକାଳରେ ପୁଷ୍ପର ବାସ ଦୂରରୁ ମିଳେ ନାହିଁ ।

୩୭—ସର୍ପର ଦେହରେ ରକ୍ତର ଅଳ୍ପତା ଯୋଗୁ ତାକୁ ବେଶୀ ଶୀତ ହୁଏ । ଏଣୁ ସର୍ପ ଦେହରେ ଜଳ ପଡ଼ିବା ମାତ୍ରକେ ସେ ପଳାଇ ଯାଏ ଏବଂ ଶୀତକାଳରେ ସର୍ପ ପ୍ରାୟ ଦେଖାଯାଆନ୍ତି ନାହିଁ ।

୩୮—ଏକଗ୍ଲାସ ଗରମ ଦୁଗ୍ଧ ଅପେକ୍ଷା ଅଧିକ ଉତ୍ତେଜକ ଓ ବଳକାରକ ପଦାର୍ଥ ଆଉ ନାହିଁ ।

୩୯—ବୃହତ୍ ପକ୍ଷୀମାନଙ୍କ ଅପେକ୍ଷା କ୍ଷୁଦ୍ରପକ୍ଷୀମାନଙ୍କ କଣ୍ଠସ୍ୱର ଅଧିକ ଦୂରରୁ ଶୁଣାଯାଏ ।

୪୦—'ଡ଼ଲଫିନ' ନାମକ ମତ୍ସ୍ୟ ଉତ୍ତାପ ସହି ନ ପାରି ଜଳ ଉପରେ ବିଚରଣ କରେ । କାରଣ ତୋଫାନ ହେବା ପୂର୍ବେ ସମୁଦ୍ର ଗର୍ଭରୁ ଉତ୍ତାପ ବାହାରେ । ଏହା ତୋଫାନର ପୂର୍ବ ଲକ୍ଷଣ ।

୪୧—ଯାହାର ହୃତ୍‌ପିଣ୍ଡ ବଡ଼ ସେ ପଶୁ ବଡ଼ ଭୀରୁ । ଶଶକର ହୃତ୍‌ପିଣ୍ଡ ବଡ଼ ଥିବାରୁ ଶୟନ କାଳରେ ସେ ଚକ୍ଷୁ ମୁଦ୍ରିତ କରେ ନାହିଁ । ଯେଉଁ ପଶୁର ହୃତ୍‌ପିଣ୍ଡ ସାନ ସେ ସାହସୀ ।

୪୨—ଶିଶୁ ମାତୃଗର୍ଭରେ ଥିବା ବେଳେ ମୁଖଦ୍ୱାରା ଆହାର ଗ୍ରହଣ ନ କରି ନାଭିଦ୍ୱାରା କରିଥାଏ ।

୪୩—ଯେଉଁମାନଙ୍କୁ ସହଜରେ ସର୍ଦ୍ଦି ଧରେ ବା ଥଣ୍ଡା ଲାଗେ, ସେମାନଙ୍କର ଅଧିକ ଲବଣ ଖାଇବା ଉଚିତ ନୁହେଁ ।

୪୪—ପୁଷ୍ପର ସୌରଭରେ ବାୟୁ ପରିଷ୍କୃତ ହୋଇଥାଏ, କିନ୍ତୁ ତାହା ଶୟନାଗାରରେ ରଖିବା ସ୍ୱାସ୍ଥ୍ୟପକ୍ଷରେ ହାନିକର

ଦୁର୍ଲ୍ଲଭ ମାନବ ଶରୀର ।

୪୫—ସ୍ୱର୍ଣ୍ଣ ଏବଂ ପ୍ଲାଟିନମ୍ ବ୍ୟତୀତ ଅନ୍ୟ ସମସ୍ତ ଧାତୁ ନାଇଟ୍ରିକ୍ ଏସିଡ ଦ୍ୱାରା ତରଳିତ ହୁଏ ।

୪୬—ମାର୍ବଲ ପଥର ଏସିଡ୍ ଲାଗିଲେ କ୍ଷୟପ୍ରାପ୍ତ ହୁଏ ।

୪୭—ଶବ୍ଦ ପ୍ରତି ସେକେଣ୍ଡରେ ୧୧୪୨ ଫୁଟ ବା ୭୬୧ ହାତ ଯାଏ ।

୪୮—ଅଙ୍ଗୁରକୁ ସିଝାଇ ସେହି ପାଣିରେ ଦେହ ଧୋଇଦେଲେ ପଶୁ ପକ୍ଷୀଙ୍କର ଗାତ୍ରକୀଟ ନଷ୍ଟ ହୁଏ ।

୪୯—୧୮୫୧ ଖ୍ରୀଷ୍ଟରେ ଗ୍ଲାସଗୋ ସହରରେ ପ୍ରଥମେ ବସନ୍ତ ଟିକା ରୋଗର ପ୍ରାଦୁର୍ଭାବ ହୋଇଥିଲା ।

୫୦—୧୯୧୩ ଖ୍ରୀ: ରେ ଆମେରିକାର ଧନପତିମାନେ ଧର୍ମ ଓ ବିଜ୍ଞାନ ପ୍ରଚାରର ସାହାଯ୍ୟ ପାଇଁ ୯୮ କୋଟି ୮୦ ଲକ୍ଷ ଟଙ୍କା ଦାନ କରି ଅଛନ୍ତି ।

୫୧—ସମଗ୍ର ପୃଥିବୀରେ ତରବାରି ଓ ବନ୍ଧୁକ ପ୍ରସ୍ତୁତ କରିବା ନିମନ୍ତେ ଯେତେ ଇସ୍ପାତ ଆବଶ୍ୟକ ହୁଏ ନିବ୍ ବା ପେନ୍ ପ୍ରସ୍ତୁତ କରିବାରେ ତାହାଠାରୁ ଅନେକ ଅଧିକ ପରିମାଣରେ ଲୋଡ଼ା ହୁଏ ।

୫୨—ସମଗ୍ର ପୃଥିବୀକୁ ବେଷ୍ଟନ କରିବା ନିମନ୍ତେ ଯେତେ ତାର ଆବଶ୍ୟକ ସେହି ତାରକୁ ଗିଲ୍ଟି କରିବା ନିମନ୍ତେ ୨ ଅଉନ୍ସ ବା ୩ ଛଟାଙ୍କି ସୁବର୍ଣ୍ଣ ଯଥେଷ୍ଟ ।

୫୩—ଫୁଟନ୍ତା ଜଳ ସଙ୍ଗରେ ଅଳ୍ପଟିକିଏ ସୁରା ସାର ମିଶ୍ରିତ କରି ତା ଭିତରେ ଫୁଲର ଗୁଚ୍ଛ ପକାଇ ରଖିଲେ ଅଧଘଣ୍ଟାରେ ଶୁଷ୍କଫୁଲ ପୁଣି ମୁଞ୍ଜରିତ ହୋଇ ଉଠେ ।

୫୪—ଇଂଲଣ୍ଡରେ ପୁରୁଷର ପରମାୟୁ ହାରାହାରି ୪୦ ବର୍ଷର ଏବଂ ସ୍ତ୍ରୀଲୋକର ୪୩ ବର୍ଷର । ଆମେରିକା ବାସୀମାନଙ୍କର ଆୟୁଃ ଇଂରାଜମାନଙ୍କର ଅପେକ୍ଷା ମୋଟରେ ଅନ୍ତତଃ ୪ ବର୍ଷର କମ । ଭାରତର ଲୋକ ସ୍ଥୂଳତଃ ୩୦ ଅଥବା ୩୨ ବର୍ଷରୁ ଅଧିକ ବଞ୍ଚନ୍ତି ନାହିଁ ।

୫୫—ପ୍ରାୟ ଦେଖାଯାଏ ପଦ ଓ ବୃତ୍ତି ଅନୁସାରେ ଜୀବନକାଳର ହ୍ରାସବୃଦ୍ଧି ହୋଇଥାଏ । ପୃଥିବୀରେ ସମସ୍ତ ଦେଶରେ ରାଜା ମହାରାଜାମାନଙ୍କର ଆୟୁଃ ଅଳ୍ପ । ୮ଜଣ ଜର୍ମାନ୍ ସମ୍ରାଟ୍ ୧୯ ବର୍ଷର, ୪୧ ଜଣ ସୁଇଡେନପତି ୧୮ ବର୍ଷର, ୫୦ ଜଣ ରୁଷିଆରଜାର ୧୫ ବର୍ଷର ଓ ୩୫ ଜଣ ଇଂରାଜ ଭୂପତି ୨୧ ବର୍ଷର ହାରାହାରି ରାଜତ୍ୱ କରିଥିଲେ । ସେମାନଙ୍କର ସିଂହାସନ ପ୍ରାପ୍ତିର ବୟସ ହାରାହାରି ୪୦ ବର୍ଷ ।

୫୬। ବିଲାତି ଗୋଜାତି ସଦନ୍ତ ବାଛୁରୀ ପ୍ରସବ କରନ୍ତି । ଏ ଦେଶରେ ଗୋଜାତିର ଅଣ୍ଡିରା ହାଡ଼ ୧୩ ଖଣ୍ଡ ମାତ୍ର ବିଲାତୀ ଗୋରୁମାନଙ୍କର ୧୪ ଖଣ୍ଡ ।

୫୭—ଯେଉଁ ପଶୁମାନଙ୍କର ନିଶ୍ୱାସ ମାରିବା ଯନ୍ତ୍ର ବା ଫୁସ୍‌ଫୁସ୍ ନାହିଁ ସେମାନଙ୍କର ମୂତ୍ରନଳୀ ମଧ୍ୟ ନାହିଁ ।

୫୮—ପୁରୁଷମାନଙ୍କ ଅପେକ୍ଷା ସ୍ତ୍ରୀମାନଙ୍କର ରକ୍ତ ଏବଂ ଉତ୍ତାପ ଊଣା । ଏଣୁ ସ୍ତ୍ରୀମାନଙ୍କର କଣ୍ଠସ୍ଥିତ ସ୍ୱରଯନ୍ତ୍ର କ୍ଷୀଣ, ସୁତରାଂ ସେମାନଙ୍କର ସ୍ୱର ମଧ୍ୟ କ୍ଷୀଣ ।

୫୯—ଦୁଧରେ ତୁଲ୍ୟାଂଶ ଜଳ ମିଶାଇଲେ ଜମାଟ ବା ସ୍ତୂପ କଠିନ ନ ହୋଇ ସହଜରେ ପରିପାକ ହୁଏ ।

୬୦—ଧାନ, ଗହମ ଅଥବା ଅନ୍ୟବିଧ ଶସ୍ୟର ଭଣ୍ଡାରରେ ଶସ୍ୟର ଏକପାଖରେ ଗୋଟାଏ ବୋତଲରେ "କାର୍ବନ୍ ବାଇସଲ୍‌ଫାଇଡ୍" ରଖିଦେଲେ ସେହି ଶସ୍ୟାରେ କୀଟ ପ୍ରବେଶ କରି ପାରନ୍ତି ନାହିଁ ।

୬୧—ସୋଡ଼ାମିଶ୍ରିତ ଜଳରେ ଧୌତ କଲେ ବ୍ୟବହୃତ ପାନିଆ ନିର୍ମଳ ହୋଇଯାଏ ।

୬୨—ଛେନା ଅନ୍ୟାନ୍ୟ ଖାଦ୍ୟକୁ ହଜମ କରେ, କିନ୍ତୁ ନିଜେ ହଜମ ହୁଏ ନାହିଁ ।

୬୩—ସାମାନ୍ୟ ସୂର୍ଯ୍ୟୋତ୍ତାପ ସ୍ୱାସ୍ଥ୍ୟକର ସତ୍ୟ, କିନ୍ତୁ ପ୍ରଖର ସୂର୍ଯ୍ୟୋତ୍ତାପ ମନୁଷ୍ୟକୁ ଦୁର୍ବଳ କରିପକାଏ ଏବଂ ମାନବ ସହଜରେ କ୍ଳାନ୍ତ ହୋଇପଡ଼େ ।

୬୪—କାର୍ପାସ ବୀଜରେ ମାଂସର ଦୁଇଗୁଣ ପରିମାଣରେ ପ୍ରୋଟିନ ଓ ମାଂସ ଉତ୍ପାଦକ ପଦାର୍ଥ ଅଛି । ଗହମ ମଇଦା ଅପେକ୍ଷା କାର୍ପାସ ବୀଜର ମଇଦା ଅଧିକ ପରିମାଣରେ ପୁଷ୍ଟିକର ଏବଂ ସହଜରେ ଜୀର୍ଣ୍ଣ ହୁଏ ।

୬୫—ନଭେମ୍ବର ଠାରୁ ମାର୍ଚ୍ଚ ପର୍ଯ୍ୟନ୍ତ ବା ବର୍ଷାକାଳ ବ୍ୟତୀତ ଅନ୍ୟ ଯେ କୌଣସି ସମୟରେ ଗୋଲାପଗଛ ରୋପଣ କରାଯାଇ ପାରେ ।

୬୬—ଦାର୍ଜିଲିଂର ସର୍ବୋଚ୍ଚ ସ୍ଥାନର ଉଚ୍ଚତା ୭ହଜାର ୮ଶହ ଫୁଟ ଏବଂ ସିମଲାର ଉଚ୍ଚତା ୭ ହଜାର ୮୪ ଫୁଟ । ଶୀତକାଳରେ ଦାର୍ଜିଲିଂର ଉତ୍ତାପ ୩୫ ଡିଗ୍ରୀ ଏବଂ ଗ୍ରୀଷ୍ମକାଳରେ ୭୭ ଡିଗ୍ରୀ ।

୬୭—କାଚଜାରରେ କଞ୍ଚା ମାଛ ବୁଡ଼ାଇ ରଖିଲେ ତାହା ଶୀଘ୍ର ପଚେ ନାହିଁ ।

୬୮—ପୃଥିବୀରେ ୨° ଲକ୍ଷ ବଯ୍ସ୍କାଉଟ୍ ଅଛନ୍ତି ।

୬୯—୧୮୭୯ ସାଲରେ ପ୍ରଥମେ ଗିନି ମୁଦ୍ରାର ପ୍ରଚଳନ ହୋଇଥିଲା ।

୭°—ପାର୍ଲିଆମେଣ୍ଟ ପ୍ରାସାଦରେ ଏକ ହଜାର ଏକଶହ କୋଠରୀ ଅଛି ।

୭୧—ମାକଡ଼ସା ଖାଦ୍ୟବିନା ଏକବର୍ଷ କାଳ ବଞ୍ଚେ ।

୭୨—ରେଡିଅମ୍ ସୁବର୍ଣ୍ଣ ଅପେକ୍ଷା ୧ ଲକ୍ଷ ୭° ହଜାର ଗୁଣ ମୂଲ୍ୟବାନ୍ ।

୭୩—ସୁସ୍ଥ ଓଟ ଦଶଦିନ ଯାଏ ପ୍ରତ୍ୟହ ଏକଶହ ମାଇଲ ଚାଲିପାରେ ।

୭୪—ଏକ୍ସପ୍ରେସ୍ ଟ୍ରେନ୍ ଚନ୍ଦ୍ରଲୋକକୁ ଯିବାପାଇଁ ଛଅ ମାସ ଲାଗିପାରେ ।

୭୫—ଚାରି ଘଣ୍ଟାର ମାନସିକ ଚିନ୍ତା ଦଶଘଣ୍ଟା ଶାରୀରିକ ପରିଶ୍ରମ ସଙ୍ଗେ ସମାନ ।

୭୬—ବ୍ୟାଡ୍ମିଣ୍ଟନ ଖେଳ ପ୍ରଥମେ ଚୀନବାସୀଙ୍କ ଦ୍ୱାରା ଉଦ୍ଭାବିତ ହୋଇଥିଲା । ଏହା ଅତି ପ୍ରାଚୀନ ଖେଳ ।

୭୭—ଛୁରୀ ପ୍ରଭୃତିକୁ ପାଲିସ କରିବା ନିମନ୍ତେ କାଠର ସୂକ୍ଷ୍ମ କୋଇଲା ଗୁଣ୍ଡ ଉତ୍କୃଷ୍ଟ ଜିନିଷ ।

୭୮—କାଚ-ପାତ୍ରମାନ କାଠ କୋଇଲାର ଚୂର୍ଣ୍ଣରେ ମାଜି ରଖିଲେ ତାହାର ସମସ୍ତ ଦୋଷ ନଷ୍ଟ ହୁଏ ।

୭୯—କାଠର ଜିନିଷକୁ ପୋଛି ରଖିଲେ ଏବଂ ଟିଣର ଜିନିଷକୁ ଶୁଷ୍କ କରି ରଖିଲେ ଭଲ ରହେ ।

୮°—ପିତ୍ତଳର ଜିନିଷ ନ ମାଜି ବ୍ୟବହାର କରିବ ନାହିଁ ଏବଂ ତାମ୍ର ପାତ୍ରରେ ରନ୍ଧନ କରିବ ନାହିଁ । ନୋହିଲେ ବିଷାକ୍ତ ହେତୁ ଜୀବନ ସଂଶୟ ହୋଇଥାଏ ।

୮୧—ଚା ବା କାଫି ପ୍ରସ୍ତୁତ କରି ଅଧିକକ୍ଷଣ ଟିଣର ପାତ୍ରରେ ରଖିଲେ ତାହା ବିଷାକ୍ତ ହୋଇଯାଏ ।

୮୨—ସବୁଜ ରଙ୍ଗର ଚା ଶୀତଳ କରି ରଖିଲେ ତାହା ବିଶେଷ କଡ଼ା ହୁଏ । ଥାଳରେ ଢ଼ାଳି ରଖିଲେ ମାଛିମାନେ ତାହା ଖାଇ ମରିଯାନ୍ତି ।

୮୩—ଜଲରେ ପ୍ରସ୍ତୁତ ପରିଚ୍ଛଦାଦି ବିଶେଷ ଗରମ ଥିବା ଜଳରେ ବୁଡ଼ାଇ ପରିଷ୍କାର କରିବା ଉଚିତ । ଅଳ୍ପ ଗରମ ଥିବା ଜଳରେ କାଚିଲେ ତାହାର ଓସାର ଊଣା ହୋଇଯାଏ ।

୮୪—କାର୍ପେଟକୁ ଯେତେ ଝାଡ଼ି ରଖିବ ତେତେ ଦୀର୍ଘକାଳ ସ୍ଥାୟୀ ହେବ ।

୮୫—ଘୋଡ଼ା ଗୋଡ଼କୁ କଣା ବା ଘାଆ ହେଲେ ତାହାକୁ ଅଗ୍ନି ଉତ୍ତାପରେ ସେକ ବ୍ୟବହାର କରିବ ।

୮୬—କାଚର ଗିଲାସ ପ୍ରଭୃତି ବିବର୍ଣ୍ଣ ହେଲେ ଲବଣ ମିଶ୍ରିତ ଭିନେଗାର ଦ୍ୱାରା ମାଜି ଥଣ୍ଡା ଜଳରେ ଧୋଇବ ।

୮୭—ଲୁଗାରୁ ଆଲକାତରାର ଦାଗ ଉଠାଇବାକୁ ହେଲେ ଦାଗ ଉପରେ କଞ୍ଚାଲେମ୍ବୁ ଘଷିବ । ଲହୁଣୀ ଲଗାଇ ଘଷିଲେ ମଧ ଦାଗ ଉଠିଯାଏ ।

୮୮—ଗୁବାକାଠି ବା କଡ଼ିକୁ ମଧ୍ୟେ ମଧ୍ୟେ ତେଲରେ ବୁଡ଼ାଇଲେ ତାହା ଭଲ ଥାଏ । କବ୍ଜା ଭିତରେ ମଧ୍ୟେ ମଧ୍ୟେ ତେଲ ଦେଲେ ତାହା ଶୀଘ୍ର ଦଗ୍ଧ ହୁଏ ନାହିଁ ।

୮୯—ଦୁଧ ସିଝାଇବା ପୂର୍ବରୁ କରେଇରେ କିଛି ଜଳ ଫୁଟାଇ ତାହାକୁ ଫିଙ୍ଗିଦେବ । ସେହି ପାତ୍ରରେ ଦୁଗ୍ଧ ସିଦ୍ଧ କଲେ ପୋଡ଼ି ଯିବାର ଆଶଙ୍କା ରହିବ ନାହିଁ ।

୯°—ବିଶୁଦ୍ଧ ଜଳରେ ଲୌହ ରଖିଲେ ତହିଁରେ ମରିଚା ଧରେ ନାହିଁ । ଅପରିଷ୍କୃତ ଜଳରେ କାର୍ବଲିକ୍ ଏସିଡ୍ ଏବଂ ଅନ୍ୟାନ୍ୟ ଦ୍ରବ୍ୟ ବିଦ୍ୟମାନ ଥିବା ହେତୁ ଲୌହ କଳଙ୍କିତ ହୋଇଯାଏ ।

୯୧—ଦୁର୍ଗନ୍ଧମୟ ସ୍ଥାନରେ ପୋଡ଼ା ଚୂନର ଗୁଣ୍ଡା ବା ସାବୁନିଆ କିମ୍ବା "ଜିଙ୍କକ୍ଲୋରାଇଡ୍" ନିକ୍ଷେପ କଲେ ଦୁର୍ଗନ୍ଧ ଦୂର ହୁଏ ।

୯୨—ମେଜେଣ୍ଟା ରଙ୍ଗରେ ଶଙ୍ଖୁଆ ବିଷ ମିଶି ଥାଏ । ସୁତରାଂ ବ୍ୟବହାର କାଳରେ ସାବଧାନତା ଆବଶ୍ୟକ ।

୯୩—ପଶମ ବା ରେସମର ମୋଜା ବ୍ୟବହାର କରିବା ପୂର୍ବେ ଧୌତ କଲେ ତାହା ଦୀର୍ଘକାଳ ସ୍ଥାୟୀ ହୋଇଥାଏ ।

୯୪—ଗୋଲ ଆଳୁକୁ କିଛି ସମୟ ଗରମ ଜଳରେ ବୁଡ଼ାଇ ରଖି ପରେ ଉତ୍ତମ ରୂପେ ପୋଛି କୌଣସି ଶୀତଳ ଘରର ଭିଡ଼ ଉପରେ ସଜାଇ ରଖିଲେ ଆଳୁ ନ ପଚି ଏକବର୍ଷକାଳ ରହିପାରେ ।

୯୫—ଲୁଗାରେ ଲୁହାର ଦାଗ ଲାଗିଲେ ଦାଗ ଲାଗିଥିବା ସ୍ଥାନରେ ଲବଣ ମିଶ୍ରିତ ଲେମ୍ବୁରସ ଲଗାଇ ପ୍ରଥମେ

**ଅନେକ ପ୍ରକାରେ ଉପକାର ।**

ଖରାରେ ଶୁଖାଇବ—ପରେ ଜଳରେ ଧୌତ କଲେ ଦାଗ ଉଠିଯିବ ।

୯୬—ଏମୋନିୟା ଢାଳିଲେ ଅଗ୍ନି ନିର୍ବାପିତ ହୁଏ । ଫିଟ୍‌କିରି ବା ନଉଶାଦଳରେ ଅଗ୍ନି ନିର୍ବାଣ ଶକ୍ତି ମଧ୍ୟ ଅସାଧାରଣ ।

୯୭—ପାଏ ସାବୁନରେ ତୋଳାଏ ଅନ୍ଦାଜ ଟାଙ୍ଗଣା ମିଶାଇ ଲୁଗା କାଚିଲେ ଅତି ସହଜରେ ଶୀଘ୍ର ପରିଷ୍କୃତ ହୁଏ ଓ ସାବୁନ ମଧ୍ୟ ଅଳ୍ପ ଖରଚ ହୁଏ ।

୯୮—ଖେଳିବା ତାସ ଉପରେ ଲହୁଣୀ ମିଶ୍ରିତ ଫ୍ଳାନେଲର କନା ଘଷିଲେ ପରିଷ୍କାର ଏବଂ ପାଲିସ ହୁଏ ।

୯୯—ପ୍ଲାଟିନମ୍ ଧାତୁ ସୁବର୍ଣ୍ଣ ଅପେକ୍ଷା ପ୍ରାୟ ୧୦ ଗୁଣ ମୂଲ୍ୟବାନ୍ ।

୧୦୦—ପୃଥିବୀର ଖରସ୍ରୋତା ନଦୀ ମଧ୍ୟରେ ସଟ୍‌ଲେଜ୍ ପ୍ରଧାନ ଅଟେ ।

୧୦୧—ଜାପାନୀ ପିଲାମାନେ ଦୁଇହାତରେ ଲେଖି ଶିଖନ୍ତି ।

୧୦୨—ପୃଥିବୀର ସମ୍ବାଦ ପତ୍ର ମଧ୍ୟରୁ ପ୍ରାୟ ଅର୍ଦ୍ଧେ ଇଂରାଜୀ ଭାଷାରେ ଛପାହୁଏ । ଶତକଡ଼ା ୭୫ ଭାଗ ଚିଠି ଉପରେ ଇଂରାଜୀ ଭାଷାର ଠିକଣା ଲେଖାଥାଏ ।

୧୦୩—୧୩୪୦ ସାଲରେ ଟମାସ୍ ବ୍ଲାଙ୍କେଟଙ୍କ ଦ୍ୱାରା କମ୍ବଳ ପ୍ରଥମେ ପ୍ରସ୍ତୁତ ଓ ବ୍ୟବହୃତ ହୋଇଥିଲା ।

୧୦୪—ପୃଥିବୀର ପ୍ରାୟ ୧୭ କୋଟି ୫୦ ଲକ୍ଷ ବ୍ୟକ୍ତି ଇଂରାଜୀ ଭାଷା କହିପାରନ୍ତି । ଏହା ପ୍ରାୟ ସମଗ୍ର ମାନବ ଜାତିର ଶତକଡ଼ା ଦଶଭାଗ ଅଟେ ।

୧୦୫—ତିମିମାଛ ୫୦୦ ବର୍ଷ ବଞ୍ଚନ୍ତି । ଏମାନଙ୍କର ଚମଡ଼ା ସ୍ଥାନ ବିଶେଷରେ ଦୁଇଫୁଟ ମୋଟ ହୁଏ ।

୧୦୬—ଜଣେ ଭାରତବାସୀ ଗୋଟିଏ ଚାଉଳ ଉପରେ ୩୦ଟି ଶବ୍ଦ ଲେଖି ଅଛନ୍ତି ।

୧୦୭—ଅଫ୍ରିକାରେ ଏକ ଜାତି ବାନର ଅଛନ୍ତି ସେମାନେ ବୃକ୍ଷପତ୍ର ଏବଂ ଶାଖାରେ ସୁନ୍ଦର ବାସଗୃହ ନିର୍ମାଣ କରନ୍ତି ।

୧୦୮—ଅଷ୍ଟ୍ରେଲିଆରେ ୮୦ ଜାତିର ବିଷଧର ସର୍ପ ଅଛନ୍ତି ।

୧୦୯—ଅଫ୍ରିକାର ସ୍ପ୍ରିଙ୍ଗବକ୍ ହରିଣ ୯ ହସ୍ତ ପ୍ରାଚୀର ଉଲ୍ଲଙ୍ଘନ କରିପାରେ ।

୧୧୦—ଜବଦ୍ୱୀପରେ ଯେଉଁ ବୃହଦାକୃତିର ବାଦୁଡ଼ି ଅଛନ୍ତି ସେମାନଙ୍କ ପକ୍ଷ ବିସ୍ତୃତି ୪ହାତରୁ ଅଧିକ ଅଟେ ।

୧୧୧—ଦକ୍ଷିଣ ଆମେରିକାରେ ଏକଜାତୀୟ ପକ୍ଷୀକୁ ଛତ୍ରପକ୍ଷୀ କହନ୍ତି । ମସ୍ତକ ଉପରେ କେତେକ ପକ୍ଷ ଛତ୍ର ଆକୃତିରେ ଥାଏ । ଏମାନେ ତାକୁ ଇଚ୍ଛାନୁସାରେ ମୁଦ୍ରିତ ବା ବିସ୍ତାରିତ କରନ୍ତି ।

୧୧୨—ଅଷ୍ଟ୍ରେଲିଆରେ ଏକଜାତୀୟ ବୃହତ୍ ପକ୍ଷୀ ବଲ୍ମୀକ ତୁଲ୍ୟ ମୃତ୍ତିକାରେ ବାସଗୃହ ନିର୍ମାଣ କରନ୍ତି ।

୧୧୩—ଉତ୍ତର ଆମେରିକାରେ ଉଲକନ୍ ନାମକ ମତ୍ସ୍ୟ ଦେହରୁ ମନୋରମବାସିକ ତୈଳ ପ୍ରସ୍ତୁତ ହୁଏ । ଏହାର ଦୈର୍ଘ୍ୟ ଏକ ହସ୍ତରୁ ଅଧିକ ନୁହେଁ ।

୧୧୪—ଗର୍ନାର୍ଡ ନାମକ ମତ୍ସ୍ୟ ଜଳ ଓ ସ୍ଥଳରେ ସମବେଗରେ ବିଚରଣ କରି ପାରନ୍ତି । ଏମାନେ ଶୁଷ୍କ ଭୂମି ଉପରେ ଦ୍ରୁତଗତିରେ ଗମନ କରନ୍ତି ।

୧୧୫—ନେପଚ୍ୟୁନ ସୂର୍ଯ୍ୟଠାରୁ ୧ ବୃନ୍ଦ ୩୭କୋଟି ୫୦ ଲକ୍ଷ କ୍ରୋଶ ଦୂରରେ ଅବସ୍ଥିତ । ଏହାର ବର୍ଷକ ଆମ୍ଭମାନଙ୍କ ୧୬୫ ବର୍ଷ ସଙ୍ଗେ ସମାନ । ସେ ସ୍ୱୀୟ କକ୍ଷରେ ପ୍ରତି ଘଣ୍ଟାରେ ୭ ହଜାର କ୍ରୋଶ ଭ୍ରମଣ କରେ । ଏ ଗ୍ରହର ବ୍ୟାସ ୧୮ ହଜାର ୨୫ ଶହ କ୍ରୋଶ । ପୃଥିବୀଠାରୁ ଏହା ପ୍ରାୟ ୧୦୮ ଗୁଣ ବୃହତ୍ତର ଅଟେ ପୃଥିବୀରେ ପତିତ ସୂର୍ଯ୍ୟାଲୋକର ସହସ୍ରାଂଶର ଏକାଂଶ ନେପଚ୍ୟୁନରେ ପତିତ ହୁଏ । ଏହାର ଚନ୍ଦ୍ର ୬ ଦିନରେ ଏହାକୁ ପ୍ରଦକ୍ଷିଣ କରେ ।

୧୧୬—ସୂର୍ଯ୍ୟମଣ୍ଡଳରୁ ଏକପ୍ରକାର ଅତ୍ୟୁଜ୍ଜ୍ୱଳ ଶ୍ୱେତାଲୋକ ନିଃସୃତ ହେବାର ଦେଖାଯାଏ । ପୃଥିବୀର ଉତ୍ତର ମେରୁମଣ୍ଡଳରେ ସେହିପରି ଆଲୋକ ଦୃଷ୍ଟିଗୋଚର ହୁଏ, ତାହାକୁ ଅରୋରବରିଆଲିସ୍ ବା ମେରୁଜ୍ୟୋତି କହନ୍ତି ।

୧୧୭—ସୂର୍ଯ୍ୟ ପ୍ରତ୍ୟହ ୪ ଲକ୍ଷ ୧୦ ହଜାର ମାଇଲ ଅଗ୍ରସର ହେଉଅଛି ।

୧୧୮—ମୌନବ୍ରତ ଯୋଗସାଧନର ପ୍ରଧାନ ଅଙ୍ଗ । ଏଥିରେ ବାଗ୍‌ର ଶକ୍ତି ବୃଦ୍ଧିପାଏ ଓ ନୀଚ ସଂସର୍ଗରୁ ପରିତ୍ରାଣ ମିଳେ ।

୧୧୯—ବୀଜଗଣିତ ବିଷୟରେ ଭାରତ ଆରବର ଶିକ୍ଷାଗୁରୁ । ୯୦୦ ଖ୍ରୀଷ୍ଟାବ୍ଦରେ ବେନମୁଷା ଆରବୀୟଙ୍କ ମଧ୍ୟରେ ପ୍ରଥମ ବୀଜଗଣିତ ରଚନା କରିଥିଲେ ।

କେ ଜାଣେ ସୋଦରର ଗତି ॥

୧୨୦—ସମ୍ରାଟ୍ ଅକବରଙ୍କ କୋଷାଗାରରେ ୨୪ ହଜାର ହସ୍ତଲିଖିତ ପୋଥି ସଞ୍ଚିତ ଥିଲା । ଖଣ୍ଡେ ଖଣ୍ଡେ ପୋଥିରେ ତାଙ୍କର ଟ ୨୫୦୧ ରୁ ଅଧିକ ବ୍ୟୟ ହୋଇଥିଲା ।

୧୨୧—୧୭୦୯ ଖ୍ରୀଷ୍ଟାବ୍ଦରେ ଫୋଲରେନ୍ସରେ ଖ୍ରୀଷ୍ଟଫୋର (Christofori) ନାମକ ଜଣେ ଇଟାଲି ବାସୀ ପ୍ରଥମେ ପିଆନୋ ପ୍ରସ୍ତୁତ କରିଥିଲେ । ତାଙ୍କର ଅନେକ ପିଆନୋ ମଧ୍ୟରୁ ପ୍ରସ୍ତୁତ ଦୁଇଟି ମେଟ୍ରୋପଲିଟନ ମିଉଜିୟମରେ ସଂରକ୍ଷିତ ।

୧୨୨—କରରେ ରେଖାମାନ ଅଛି ବୋଲି ଆମ୍ଭେମାନେ ଯେ କୌଣସି ଦ୍ରବ୍ୟକୁ ସ୍ପର୍ଶ କରି ଅନୁଭବ କରିପାରୁଁ ।

୧୨୩—ବୃକ୍ଷମାନେ ରାତିରେ ବଢ଼ନ୍ତି ଏବଂ କିଛି ନ ଖାଇ ଜୀବିତ ହୁଅନ୍ତି ଓ ଅକ୍ସିଜେନ ପରିତ୍ୟାଗ କରନ୍ତି ।

୧୨୪—ତୋତା ପକ୍ଷୀର ଶ୍ରବଣେନ୍ଦ୍ରିୟ ଉତ୍ତମ ବୋଲି ସେ କଥା କହିପାରେ । ଦେହର ଅନ୍ୟାନ୍ୟ ଅଂଶ ଅପେକ୍ଷା ମସ୍ତିଷ୍କର ଅଧିକ ଖାଦ୍ୟ ପ୍ରୟୋଜନ ।

୧୨୫—୧୩ ଶ ଖ୍ରୀଷ୍ଟାବ୍ଦରେ ବାରୁଦ ପାଶ୍ଚାତ୍ୟ ଦେଶରେ ପ୍ରସ୍ତୁତ ହୋଇଥିଲା ।

୧୨୬—ଶରତ କାଳରେ ବୃକ୍ଷମାନେ ଆଗାମୀ ଶୀତ ପାଇଁ ବିଶ୍ରାମ ନିଅନ୍ତି । କାରଣ ସେ ସମୟରେ ପବନ ଶୀତଳ ଓ ଘନ ରହିଥାଏ । ଏଣୁ ପତ୍ରର ବୃଦ୍ଧି ପରିବର୍ଜିତ ହୁଏ ।

୧୨୭—କାର୍ଯ୍ୟ କରିବା ସମୟରେ ଆମ୍ଭେମାନେ ଯେଉଁ ଖାଦ୍ୟ ଗ୍ରହଣ କରିଥାଉଁ ତାହା ପରିବର୍ତ୍ତିତ ହୋଇ ମସ୍ତିଷ୍କକୁ ଉତ୍ତେଜିତ କରିଦିଏ । ସେଥିପାଇଁ ଆମ୍ଭେମାନେ କ୍ଲାନ୍ତି ବୋଧ କରୁଁ । ଦେହର ହୃଦୟ ବ୍ୟତୀତ ସମୁଦାୟ ଅଂଶ କ୍ଲାନ୍ତ ହୁଏ । ଏଣୁ ସେ ପ୍ରତି ଦୁଇ ମିନିଟରେ ବିଶ୍ରାମ ନିଏ । ଆମ୍ଭେମାନେ ସୁସ୍ଥ ଥିବା ପର୍ଯ୍ୟନ୍ତ ତେତିକ ବିଶ୍ରାମ ତାହା ପକ୍ଷରେ ଯଥେଷ୍ଟ ।

୧୨୮—କୌଣସି କାରଣରୁ ଅନ୍ତଃକରଣ ଯେବେ ମସ୍ତିଷ୍କକୁ ଯଥେଷ୍ଟ ରକ୍ତ ନ ପଠାଏ; ତେବେ ମସ୍ତିଷ୍କ କିଛି କାର୍ଯ୍ୟ କରେ ନାହିଁ, ତେଣୁ ମନୁଷ୍ୟ ମୂର୍ଚ୍ଛିତ ହୁଏ ।

୧୨୯—ଦଉଡ଼ିବା ସମୟରେ ଲୋକେ ପ୍ରଚୁର ବାୟୁ ଗ୍ରହଣ କରନ୍ତି, ତେଣୁ ରକ୍ତ ଫୁସ ଫୁସ ମଧ୍ୟରେ ପ୍ରବଳ ବେଗରେ ପ୍ରବାହିତ ହୁଏ ଓ ସେମାନେ ଯେଉଁ ଅକ୍ସିଜେନ୍ ବାୟୁ ଗ୍ରହଣ କରନ୍ତି ତାହାକୁ ସାହାଯ୍ୟ କରେ, ସୁତରାଂ ଅନ୍ତଃକରଣ ଖୁବ୍ ଚଞ୍ଚଳ ଆଘାତ କରେ ଏବଂ ଅବଶେଷରେ ଏହା ମସ୍ତିଷ୍କକୁ ଖବର ପଠାଏ ଓ ସେମାନଙ୍କୁ ସତର୍କ କରିଦେବା ପାଇଁ ସତର୍କ କରିଦିଏ । ଯଦି ସେମାନେ ତାହା ବୁଝି ନ ପାରି ଦଉଡ଼ନ୍ତି ତେବେ ମୂର୍ଚ୍ଛାପନ୍ନ ହୁଅନ୍ତି ।

୧୩୦—ପୃଥିବୀର ଯେତେ ସ୍ମୃତିସ୍ତମ୍ଭ ଅଛି ମହମୁଦଙ୍କ ସମାଧି ମନ୍ଦିର ସବୁଠାରୁ ମୂଲ୍ୟବାନ । ଏଥିରେ ୫୦ କୋଟି ଟଙ୍କାର ହୀରା ନୀଳା ଲାଗିଛି ।

୧୩୧—ବଙ୍ଗୋପସାଗରରେ ଯେଉଁ ମର୍ମର ପର୍ବତ ଅଛି ତାହାର ଉଚ୍ଚତା ଏକହଜାର ଫିଟ୍ ଏବଂ ତାହା ବହୁଦୂର ବିସ୍ତୃତ ଓ୍ୱାସିଂଟନ ସହରର ବିଖ୍ୟାତ ଭୂତତ୍ତ୍ୱବିଦ୍ ଡା: ଏ, ଭି, କିଡର ନିଉ ମେକ୍ସିକୋର ଏକ ସ୍ଥାନରେ ଗୋଟିଏ କବରରୁ ଗୋଟିଏ ୪୮ ଫୁଟ ଲମ୍ବା ପୁଁତିର ମାଳା ଆବିଷ୍କାର କରିଅଛନ୍ତି । ଏହି ମାଳାରେ ୫୨୦୦ ପୁଁତି ଅଛି । ଏହା ଏକହଜାର ବର୍ଷର ପୂର୍ବରେ ଜଣେ ଓଝାର ସମ୍ପତ୍ତି ।

୧୩୨—ମିସେସ କ୍ଲେଟିମ୍ବର ସ୍ୱୋୟେମେଲ ପୃଥିବୀରେ ସର୍ବାପେକ୍ଷା ଦୀର୍ଘକାଳ ସନ୍ତରଣ (ନିଉଆର୍କ ଆମେରିକା) କରିଥିଲେ । ସନ୍ତରଣ କାଳ ଘ ୨୨।୨୪° ସେକେଣ୍ଡ ଶ୍ରୀଯୁକ୍ତ ପ୍ରଫୁଲ୍ଲ କୁମାର ଘୋଷ ଘ ୭୨।୧° ମିନିଟ୍ ସନ୍ତରଣ କରିଥିଲେ ।

୧୩୩—ଆବିସିନିଆର ନୂତନ ରାଜା ତାଙ୍କର ଅଭିଷେକ କାଳରେ ଯେଉଁ ଉଷ୍ଣୀଷ ବ୍ୟବହାର କରିଥିଲେ ତାହାର ଦାମ ଏକଲକ୍ଷ ପାଉଣ୍ଡ । ଏହି ଉଷ୍ଣୀଷ ଆବିସିନିଆର ବହୁକାଳର ଗର୍ବର ଜିନିଷ । ମଝିରେ ଏହା ତାହାଙ୍କ ହସ୍ତଚ୍ୟୁତ ହୋଇ ବ୍ରିଟିଶ ନିକଟକୁ ଆସିଥିଲା । ଗତ ୧୯୨୪ ଖ୍ରୀଷ୍ଟାବ୍ଦରେ ଆବିସିନିଆର ବର୍ତ୍ତମାନ ଅଧିପତି ବ୍ରିଟେନର ଆତିଥ୍ୟ ସ୍ୱୀକାର କରିଥିଲେ । ସେହି ସମୟ ସମ୍ରାଟ୍ ଏହି ମହାମୂଲ୍ୟ ମୁକୁଟ ତାଙ୍କୁ ପ୍ରତ୍ୟର୍ପଣ କଲେ ।

୧୩୪—ମି: ହାରମାନ୍ ନାମକ ଏକ ଜର୍ମାନ କର୍ମକାର ଏକ ଅଦ୍ଭୁତ ଶବ୍ଦହୀନ ରାଇଫେଲ ନିର୍ମାଣ କରିଅଛନ୍ତି ।

ଏଥିରେ ୨୦ ଟି କାର୍ତ୍ତୁଜ ଭର୍ତ୍ତିକରି ରଖାଯାଏ ଏବଂ ଦରକାର ସମୟରେ ପରେ ପରେ ଗୁଳି ମରାଯାଏ । ବରୁଦ ସାହାରେ ହାଉସ୍ଥ ଜୋରରେ କାର୍ତ୍ତୁଜମାନ ବାହାର ହୋଇଥାଏ । ପୁଣି ଏତେ ଜୋରରେ ଯାଏ ଯେ, ଏକମାଇଲ ଦୂରସ୍ଥିତ ୮ ଇଞ୍ଚ ମୋଟା ଇସ୍ପାତର ଗାତ ଫୁଟାଇ ପାରେ ।

୧୩୪—ବ୍ରିଟିଶ କଲମ୍ବିୟାର 'ଲୁଟେନେ' ନାମକ ସ୍ଥାନରେ ( Silver king )ନାମକ ଏକ ରୌପ୍ୟଖଣି ଅଛି । ଏହା ଜଗତ୍ର ବିଖ୍ୟାତ । ସେଠାରେ 'ବ୍ରିଟେନିୟା' ନାମକ ଏକ ତାମ୍ରଖଣି ଅଛି । ତାହା ପୃଥିବୀ ମଧ୍ୟରେ ସର୍ବଶ୍ରେଷ୍ଠ । ଓଣ୍ଟାରିଓର ମଧ୍ୟରେ କ୍ରେଟନ୍ ନାମକ ଏକ ନିକେଲ ଖଣି ପୃଥିବୀ ପ୍ରସିଦ୍ଧ ।

୧୩୫—ଉଜ୍ଜୟିନୀର ମୁଦ୍ରାଗୁଡ଼ିକ ସାଧାରଣତଃ ଏକ ବିଶେଷ ଚିହ୍ନଦ୍ୱାରା ପରିଚିହ୍ନିତ । କିନ୍ତୁ କେତେକ ଦୁଷ୍ପ୍ରାପ୍ୟ ମୁଦ୍ରାରେ ଖ୍ରୀ: ପୂ: ୨ୟ ଶତକର ବ୍ରାହ୍ମୀଅକ୍ଷରରେ 'ଉଜେନୀୟ' ଏହି ଶବ୍ଦଟି ମଧ୍ୟ ଉତ୍କୀର୍ଣ୍ଣ ଦେଖାଯାଏ । ମୁଦ୍ରାଗୁଡ଼ିକ ସାଧାରଣତଃ ଏକପୃଷ୍ଠରେ ସୂର୍ଯ୍ୟଚିହ୍ନ-ଯୁକ୍ତ ଜଣେ ମନୁଷ୍ୟଦ୍ୱାରା ଏବଂ ଅନ୍ୟ ପୃଷ୍ଠରେ 'ଉଜ୍ଜୈନ' ଚିହ୍ନରେ ପରିଶୋଭିତ । କେତେଗୁଡ଼ିଏ ମୁଦ୍ରାର ଏକ ପୃଷ୍ଠରେ ପୁଣି ବନ୍ଧନୀ ପରିବେଷ୍ଟିତ ବୃଷ-ମୂର୍ତ୍ତି, ଅଥବା ବୋଧିବୃକ୍ଷ, ଅଥବା ସୁମେରୁ ପାହାଡ଼ ଅଥବା ଲକ୍ଷ୍ମୀ ମୂର୍ତ୍ତି ମିଳିଛି । ଏଠାକାର କେତେକ ମୁଦ୍ରା ଚତୁଷ୍କୋଣ ଓ ଅନ୍ୟାନ୍ୟ ଗୋଲାକୃତି ।

୧୩୬—କୋଲାର ଗୋଲ୍ଡଫିଲ୍ଡ୍‌ସର୍ ସ୍ୱର୍ଣ୍ଣଖଣିମାନ ପୃଥିବୀ ମଧ୍ୟରେ ପ୍ରାୟ ଗଭୀରତମ ଖଣି ।

୧୩୭—ପାରିସ୍‌ର ଲୁଭରର ଚିତ୍ରଶାଳା ପୃଥିବୀମଧ୍ୟରେ ଏକ ଶ୍ରେଷ୍ଠ ଚିତ୍ରଶାଳା । ମାଦ୍ରିଦର ଚିତ୍ରଶାଳା ଓ ଫ୍ଲୋରେ-ନ୍ସର ଚିତ୍ରଶାଳା ସଙ୍ଗରେ ତାହାର ସମାନ ସ୍ଥାନ ।

୧୩୮—ଭାରତ ମହାସାଗର ଦ୍ୱୀପରେ ଏକଜାତୀୟ ମନୁଷ୍ୟ ବାସ କରନ୍ତି । ସେମାନଙ୍କର ଅସ୍ତ୍ର ଚକ୍ର । ସେମାନେ ସେହି ଚକ୍ରକୁ ଏପରି କୌଶଳରେ ନିକ୍ଷେପ କରନ୍ତି ଯେ ତାହା ତାଙ୍କର ଅଭୀଷ୍ଟ ସାଧନ କରି ପୁଣି ତାଙ୍କ ହାତକୁ ଫେରିଆସେ । ଦ୍ୱାପର ଯୁଗରେ ଭଗବାନ୍ ଶ୍ରୀକୃଷ୍ଣଙ୍କ ଚକ୍ରର ଗଠନ ଓ ନିକ୍ଷେପର କୌଶଳ ଏହିପରି ଥିଲା ବୋଲି ଅନେକଙ୍କର ବିଶ୍ୱାସ ।

୧୩୯—ସୂର୍ଯ୍ୟ ପୃଥିବୀର ସକଳ ଶକ୍ତିର ମୂଳାଧାର ।

୧୪୦—୧୯୨୧ରୁ ୧୯୨୩ ଖ୍ରୀ: ରେ ଡ଼ା: କ୍ୟାଥାରିନ୍, ଏଚ, କାର୍ଓସ୍ୱାର୍ଡ ସବୁଜ ପତ୍ରପରିବା ଲତା ପତ୍ର ମଧ୍ୟରେ ସୂର୍ଯ୍ୟ ଆଲୋକ ସାହାଯ୍ୟରେ ଖାଦ୍ୟପ୍ରାଣ ସାମଗ୍ରୀ ପ୍ରଚୁର ପରିମାଣରେ ଜାତ ହୁଏ ବୋଲି ସର୍ବ ପ୍ରଥମେ ଆବିଷ୍କାର କରିଥିଲେ ।

୧୪୧—ବୌଦ୍ଧ ଯୁଗରେ ପ୍ରସ୍ତର ତରଣୀ ପ୍ରଚଳିତ ଥିଲା । ସେଥିରୁ ଭିକ୍ଷାର୍ଥୀମାନଙ୍କୁ ଅନ୍ନଦାନର ବ୍ୟବସ୍ଥା ଥିଲା । ଫତେପୁର ସିକ୍ରିରେ ଏହି ଶ୍ରେଣୀର ନୌକା ମିଳିଛି । ଏହି ନୌକାମାନଙ୍କ ମଧ୍ୟରୁ କାହାର କାହାର ଦୈର୍ଘ୍ୟ ୪୪ ଫିଟ୍ ପର୍ଯ୍ୟନ୍ତ ଦେଖା ଯାଇଅଛି ।

୧୪୨—କାଲିଫର୍ଣ୍ଣିଆର ଅନ୍ତଃପାତୀ ଶାନ୍ତା--କ୍ଲ୍ୟାର ଉପତ୍ୟ-କାରେ ଏପରି ଏକ ବିଚିତ୍ର ଅଟ୍ଟାଳିକା ଅଛି, ଯାର ତୁଳନା ପୃଥିବୀରେ ବିରଳ, ୪୦ ବର୍ଷରେ ଏହାର ନିର୍ମାଣ କାର୍ଯ୍ୟ ଶେଷ ହୋଇଥିଲା । ଏହି ଅଟ୍ଟାଳିକାଟି କେବଳ ମହାର୍ଘ ନୁହେଁ, ଗୋଲକ ଧନ୍ଦା ପରି ଜଟିଳ । ଲେଡି ଉଇଞ୍ଚେଷ୍ଟାର ନାମ୍ନୀ ଏକ ଧନବତୀ ମହିଳାଙ୍କ ଦ୍ୱାରା ଏହା ନିର୍ମିତ ହୋଇଥିଲା । ଏହା ମଧ୍ୟରେ ପ୍ରବେଶ କଲେ ନିଷ୍କ୍ରମଣର ପଥ ମିଳେ ନାହିଁ । ଏଥିରେ ୧୬୦ ଟି ଘର, ଦ୍ୱାର ସଂଖ୍ୟା ୨୦୦୦, ସ୍ନାନଘର ୨୫ ଏବଂ ଝରକାର ସୀମାନାହିଁ । ଯେଉଁ ଦେଶରେ ଯେଉଁ ଶ୍ରେଷ୍ଠ କାରିଗର ଥିଲେ, ସେମାନେ ଏଥିରେ କାର୍ଯ୍ୟ କରିଅଛନ୍ତି ।

୧୪୩—ବରଫ ବ୍ୟବହାର ପ୍ରଚଳିତ ହେବା ପୂର୍ବରୁ ଏ ଦେଶରେ ଗ୍ରୀଷ୍ମକାଳରେ ସୋରାସ୍ତୂପ ମଧ୍ୟରେ ଜଳ-ପାତ୍ର ରଖି ଜଳକୁ ଥଣ୍ଡା କରିନେଉଥିଲେ । ଅବ୍‌ଦାର୍-ମାନେ ଏହି କାର୍ଯ୍ୟ କରୁଥିଲେ । ଅବସ୍ଥାପନ୍ନ ସାହେବ ମାନେ ଘରକୁ ଥଣ୍ଡା କରିବା ପାଇଁ ଖସଖସ ବ୍ୟବହାର କରୁଥିଲେ ।

୧୪୪—ଦୁବେ ଏକଟଙ୍କାରେ ୩୨ ହଜାର ଅକ୍ଷର ଲେଖା ଯାଉଥିଲା । ହାତଲେଖା ମହାଭାରତ ଟ ୨୦୧, ରାମାୟଣ ଟ ୨୪ ୧ ଓ ଶ୍ରୀମଦ୍ଭାଗବତ ଟ ୧୮ ୧ ରେ ମିଳୁଥିଲା ।

ଧର୍ମ ନ ଧନେ ବଦ୍ଧାପଦେ ।

୧୪୫—ଲର୍ଡ ଡାଲହାଉସିଙ୍କ ସମୟରେ ପ୍ରଥମେ ରବିବାର ଛୁଟିର ଦିନ ବୋଲି ଧାର୍ଯ୍ୟ ହେଲା ।

୧୪୬—୧୮୦୪ ଖ୍ରୀଷ୍ଟାବ୍ଦ ୧୯ ତାରିଖ ଜାନୁୟାରୀରେ ଏ ଦେଶରେ କ୍ରିକେଟ୍ ଖେଳାର ପ୍ରଥମ ପ୍ରଚଳନ ହେଲା । ଇଟୋନିୟାନ ସିଭିଲ-ସାର୍ଭେଣ୍ଟ ଓ ଅନ୍ୟାନ୍ୟ ଇଂରାଜଙ୍କ ମଧ୍ୟରେ ପ୍ରଥମ କ୍ରିକେଟ୍ ମ୍ୟାଚ ହୁଏ ।

୧୪୭—୧୭୯୪ ଖ୍ରୀଷ୍ଟାବ୍ଦରେ ପ୍ରଥମ କଲିକତାରେ ବନ୍ଧାକୋବିର ଚାଷ ଆରମ୍ଭ ହୁଏ । ସେତେବେଳେ ୧୦୦ ଗଛର ମୂଲ୍ୟ ୫୮୯ ଙ୍କା ଥିଲା ।

୧୪୮—୧୮୩୩ ଖ୍ରୀଷ୍ଟାବ୍ଦରେ ଆମେରିକାର ବୋଷ୍ଟନରୁ ପ୍ରଥମ ବରଫ ଆମଦାନୀ ହୁଏ । ପ୍ରଥମ ଥର ୪୦ ଟନ ବରଫ ଆସିଥିଲା Tuscany ନାମକ ଜାହାଜରେ ବରଫ ଆସିଥିଲା । ସେତେବେଳେ ବରଫ ସେରକର ଦାମ ୫ ୦ । କ୍ଲାର୍କ ସାହେବ ଆଇସ—ହାଉସ ପ୍ରଥମ ପ୍ରତିଷ୍ଠା କରନ୍ତି ।

୧୪୯—୧୭୮୯ ଖ୍ରୀଷ୍ଟାବ୍ଦରେ ଗୋୟାଣ୍ଟିମାଲାରୁ ପ୍ରଥମ ନୀଳର ନମୁନା ଅଣାଇ ବିତରଣ କରି ତାହାର ଚାଷ ଆରମ୍ଭ କରା ହେଲା ।

୧୫୦—ଲର୍ଡ ଆମହାର୍ଷ୍ଟ ପ୍ରଥମ ଏ ଦେଶର ଲୋକମାନଙ୍କୁ ଉପାଧି ଦାନ କରିବାକୁ ଆରମ୍ଭ କରିଥିଲେ । ଏହା ପୂର୍ବରୁ ଦିଲ୍ଲୀସମ୍ରାଟଙ୍କର ସେ କ୍ଷମତା ଥିଲା । ସିରାଜଦ୍ଦୌଲାଙ୍କ ସମୟରେ 'ବାବୁ' ବୋଲି ଉପାଧି ଥିଲା ।

୧୫୧—ପୂର୍ବେ ଅଦାଲତରେ ଯେଉଁମାନେ ମାମଲା କରୁଥିଲେ ସେମାନେ ହାକିମଙ୍କୁ ନିଜେ ନିଜେ ଯାହା କହି କହୁଥିଲେ । ୧୭୯୩ ଠାରୁ ଓକାଲତି ପ୍ରଥମେ ଆରମ୍ଭ ହେଲା । ପ୍ରଥମେ ୧୪ ଜଣ ଏଟର୍ଣ୍ଣି ଓ ୭ ଜଣ ବାରିଷ୍ଟର ଥିଲେ । ସେମାନେ ପ୍ରାୟ ସମସ୍ତେ ଇଂରାଜ ବା ଫିରିଙ୍ଗୀ ।

୧୫୨—ଇଷ୍ଟ ଇଣ୍ଡିଆ କୋମ୍ପାନୀର ସର୍ବପ୍ରଥମ ଯେଉଁ ଚାରିଖଣ୍ଡ ଜାହାଜ ଭାରତ ସମୁଦ୍ର ଉପକୂଳରେ ଉପସ୍ଥିତ ହୋଇ ଥିଲା, ସେମାନଙ୍କର ନାମ Scourge, Susan, Hector ଏବଂ Ascension ।

୧୫୩—୧୭୪୨ ଖ୍ରୀଷ୍ଟାବ୍ଦରେ ଚୀନାବଜାରରେ ଆରମେନିୟାମ୍ ଗୀର୍ଜ୍ଜାଟି ପ୍ରଥମ ଖ୍ରୀଷ୍ଟୀୟାନ ଉପାସନା ମନ୍ଦିର ପ୍ରତିଷ୍ଠିତ ହୋଇଥିଲା । ତାହାର ଉପରର ଘଡ଼ି ମଧ୍ୟ କଲିକତାର ସର୍ବାପେକ୍ଷା ପୁରାତନ ଘଡ଼ି ।

୧୫୪—୧୮୨୩ ଖ୍ରୀଷ୍ଟାବ୍ଦରେ ପ୍ରଥମ ପାବ୍ଲିକ୍ ଇନଷ୍ଟ୍ରାକ୍‌ଶନ୍ କମିଟି ସ୍ଥାପିତ ହେଲା ।

୧୫୫—୧୮୪୨ ଖ୍ରୀଷ୍ଟାବ୍ଦରେ କଲିକତାରେ ଉନ୍ନତ ପ୍ରଣାଳୀରେ ସାହେବମାନଙ୍କ ଦ୍ୱାରା ସାମୁଦ୍ରିକ ଲବଣ ପ୍ରସ୍ତୁତର ବ୍ୟବସ୍ଥା ହେଲା ।

୧୫୬—୧୭୮୧ ଖ୍ରୀଷ୍ଟାବ୍ଦ ତା ୩ ରିଖ ଜୁନ୍ ମାସରେ ଏ ଦେଶର ଜନସାଧାରଣଙ୍କର ଲବଣ ପ୍ରସ୍ତୁତ କରିବା ଆଇନ ଦ୍ୱାରା ନିଷିଦ୍ଧ ହେଲା । ସେ ବର୍ଷ ସରକାରଙ୍କର ଆୟ ୭୦ ଲକ୍ଷ ଟଙ୍କା ଧରାଯାଇଥିଲା । କିନ୍ତୁ ବିଲାତି ଲବଣର ମୋଟ ଆୟ ୨୦୭,୦୦୦ ପାଉଣ୍ଡ ହୋଇଥିଲା ।

୧୫୭—ଲର୍ଡ ଡେଲହାଉସଙ୍କ ଚେଷ୍ଟାରେ ପ୍ରଥମ ଲେଫ୍‌ଟେନାଣ୍ଟ ଗଭର୍ଣ୍ଣରପଦ ସୃଷ୍ଟି ହେଲା । ସ୍ୟାର ଫ୍ରେଡରିକ୍ ଜେମ୍‌ସ ହ୍ୟାଲିଡେ ବଙ୍ଗର ପ୍ରଥମ ଲେଫଟେନାଣ୍ଟ ଗଭର୍ଣ୍ଣର ହେଲେ । ଏହାଙ୍କର ନିଯୁକ୍ତି ସମୟ ୧୮୫୪ ବା ୫୭ ଖ୍ରୀଷ୍ଟାବ୍ଦ ୧ ତାରିଖ ମେ ।

୧୫୮—ବରେଣ୍ୟକବି କାଳିଦାସଙ୍କ ଋତୁସଂହାର ଏ ଦେଶରେ ପ୍ରଥମ ମୁଦ୍ରିତ ସଂସ୍କୃତ ପୁସ୍ତକ । ୧୭୯୨ ଖ୍ରୀଷ୍ଟାବ୍ଦରେ ଏହା ପ୍ରକାଶିତ ହୋଇଥିଲା । ସେତେବେଳେ ତାହାର ଦାମ ଥିଲା ୧୬ ସିକ୍କା ଟଙ୍କା ।

୧୫୯—୧୮୨୭ ଖ୍ରୀଷ୍ଟାବ୍ଦରେ Henry Louis Virian Derozio ହିନ୍ଦୁ କଲେଜର ଛାତ୍ରମାନଙ୍କୁ ନେଇ ଏକାଡେମିକ୍ ଏସୋସିଏସନ୍ ନାମ ଦେଇ ଗୋଟିଏ ତର୍କସଭା ସ୍ଥାପିତ କରିଥିଲେ । ଏହା ପ୍ରଥମ ଡିବେଟିଂ କ୍ଲବ ।

୧୬୦—ହାବଡ଼ାର ବର୍ତ୍ତମାନ ସେତୁଟି ୧୮୭୩।୭୪ ଖ୍ରୀଷ୍ଟାବ୍ଦରେ ୧୮ ଲକ୍ଷ ଟଙ୍କା ବ୍ୟୟରେ ପୋର୍ଟକମିଶନରଙ୍କ ଦ୍ୱାରା ନିର୍ମିତ ହୋଇଥିଲା ।

**ବିଷୟ ଯାହାର ଲେଟର ।**

୧୬୧—୧୭୫୫ ଖ୍ରୀଷ୍ଟାବ୍ଦରେ କଲିକତା ଲାଲଦୀଘିରେ ସ୍ନାନ କରିବା ଓ ଅଶ୍ୱ ପ୍ରଭୃତିର ଗାତ୍ର ଧୌତ କରିବା ବନ୍ଦ କରିବା ପାଇଁ ଆଦେଶ ପ୍ରଦାନ କରାଗଲା ।

୧୬୨—କଲିକତାରେ ବେଙ୍ଗଲ ଜକି କ୍ଳବଦ୍ୱାରା ୧୮୦୮ ଖ୍ରୀଷ୍ଟାବ୍ଦରେ ପ୍ରଥମ ଘୋଡ଼ଦୌଡ଼ ଖେଳା ଆରମ୍ଭ ହେଲା । ବର୍ତ୍ତମାନ ରେସ୍‌କୋସ ୧୮୧୯ ଖ୍ରୀଷ୍ଟାବ୍ଦରେ ପ୍ରସ୍ତୁତ ହୁଏ । ୧୬୮୦ ଖ୍ରୀଷ୍ଟାବ୍ଦରେ ହିକି ଗେଜେଟରେ ଘୋଡ଼ଦୌଡ଼ ଏବଂ ରେସବଲ୍ ଖେଳାର ଉଲ୍ଲେଖ ଦେଖାଯାଏ ।

୧୬୩—କଳତନ୍ତ୍ର ଆବିଷ୍କାରର ଏକ ବର୍ଷର ପୂର୍ବରେ ୧୬୮୩ ଖ୍ରୀଷ୍ଟାବ୍ଦରେ ପ୍ରଥମ ବିଲାତି ମସଲିନର ନମୁନା ଆସିଥିଲା ।

୧୬୪—୧୭୫୭ ଖ୍ରୀଷ୍ଟାବ୍ଦରେ କଲିକତାରେ ଚୌରଙ୍ଗୀ ଜଙ୍ଗଲ ପରିଷ୍କାର କରି ପ୍ରଥମ ଗଡ଼ମାଠର ପତ୍ତନ ହେଲା ।

୧୬୫—ମଧୁଚକ୍ରରୁ ସଦ୍ୟସ୍ରାତ ମଧୁକୁ ଅଗ୍ନିର ଉତ୍ତାପରେ ଫୁଟାଇ ଶିଶିରେ ଠିପି ଦେଇ ରଖିଦେଲେ ଖରାପ ହୁଏ ନାହିଁ ।

୧୬୬—୬୭୭ ଖ୍ରୀଷ୍ଟାବ୍ଦରେ ସୁରା ଆବିଷ୍କୃତ ହୋଇଥିଲା ।

୧୬୭—୬୯ ଖ୍ରୀଷ୍ଟାବ୍ଦରେ ଯୀଶୁଖ୍ରୀଷ୍ଟ କ୍ରୁଶରେ ଆବଦ୍ଧ ହୋଇଥିଲେ ।

୧୬୮—୧୪୬୨ ଖ୍ରୀଷ୍ଟାବ୍ଦରେ ପ୍ରଥମ ବାଇବେଲ ପୁସ୍ତକ ମୁଦ୍ରାଙ୍କିତ ହୋଇଥିଲା ।

୧୬୯—୧୭୬୨ ଖ୍ରୀଷ୍ଟାବ୍ଦରେ ପ୍ରଥମ ମୁଦ୍ରା ପ୍ରସ୍ତୁତ ହେଲା ।

୧୭୦—ନାକରେ ସୋରିଷ ତେଲ ଦେଲେ ସୁନିଦ୍ରା ହୁଏ । ପୁଣି "ପିନାସ" ରୋଗ ଓ ନାକରୁ ରକ୍ତ ପଡ଼ିବା ପ୍ରଭୃତି ନାସିକା କ୍ଷତ ହୁଏ ନାହିଁ । ଏବଂ ଘ୍ରାଣଶକ୍ତି ପ୍ରବଳ ହୁଏ ।

୧୭୧—ଦେହରେ ପାଉଡ଼ର ଲଗାଇଲେ ଘର୍ମ ନିବାରଣ ହୁଏ ।

୧୭୨—ପୌଷ ଓ ଚୈତ୍ର ମାସରେ କାହାକୁ ଘରୁ ତଡ଼ି ନ ଦେବାର କାରଣ ପୌଷ ଓ ଚୈତ୍ର ଏହି ଦୁଇମାସକୁ ଲକ୍ଷ୍ମୀ ମାସ କହନ୍ତି ।

୧୭୩—ଗୃହର ଛାତ ଘରର ଚୁଳରେ ଶକୁନି ବସିଲେ ସେ ଗୃହାଦି ନଷ୍ଟ ହୁଏ ଏହା କେବଳ ପ୍ରବାଦ ନୁହେଁ ଶାସ୍ତ୍ରରେ ଏହାର ପ୍ରମାଣ ଅଛି । ନାନାବିଧ ବିଷାକ୍ତ ପଚା ମାଂସାଦି ଆହାର ପାଇଁ ଶକୁନିର ପବନ ବା ସଂସର୍ଗ ଅତ୍ୟନ୍ତ ଦୂଷିତ । ଏଣୁ ଘରେ ଶକୁନି ବସିଲେ ନାନାରୂପ ବିଷ ସଂକ୍ରାନ୍ତ ହୁଏ ଏବଂ ତାହାହିଁ ଗୃହସ୍ଥର ହାନିର କାରଣ ବୋଲି ମନେ ହୁଏ ।

୧୭୪—ଫ୍ରାନ୍‌ସର ରାଜା ଷଷ୍ଠ ଚାର୍ଲସଙ୍କ ପ୍ରକୃତି ସାତିଶୟ ବିମର୍ଷ ଥିଲା । ତେଣୁ ତାହାର ମନକୁ ସର୍ବଦା ପ୍ରଫୁଲ୍ଲ ରଖିବା ପାଇଁ ସର୍ବ ପ୍ରଥମେ ଖେଳା ତାସର ସୃଷ୍ଟି ହୁଏ । ଏହା ୧୩୯୦ ଖ୍ରୀଷ୍ଟାବ୍ଦର କଥା ।

୧୭୫—ଡାଆଣୀ ଆଲୁଅ ଏକପ୍ରକାର ବାଷ୍ପ । ପବନ ସଙ୍ଗରେ ଉଦ୍ଭିଜ୍ଜ ଜାନ୍ତବ ପଦାର୍ଥରେ ପରିଣତ ହୁଏ ଏବଂ ସମୟ ସମୟରେ ଜ୍ୱଳି ଉଠେ । ଏହାର ବୈଜ୍ଞାନିକ ନାମ "ମିଥେନ୍" ବା "ମାର୍ଶଗ୍ୟାସ" ଜଳା ଭୂମିରେ ଅନେକ ସମୟରେ ଦେଖାଯାଏ ବୋଲି ଶେଷୋକ୍ତ ନାମ । ଆମେରିକା ଓ ରୁଷିଆର କୌଣସି୨ ତେଲ ଖଣିରେ ଏବଂ ପୁରୁଣା ପୋଖରୀ, ଅପରିଷ୍କାର ଡୋବା ପ୍ରଭୃତି ଜଳା ସ୍ଥାନରେ ଏ ବାଷ୍ପ ମିଳେ ।

୧୭୬—୧୪୭୭ ଅବ୍ଦରେ ନରେମ୍ବର୍ଗ ପ୍ରଦେଶରେ ପକେଟ୍ ଘଡ଼ିର ( pocket watch ) ସୃଷ୍ଟି ହେଲା ।

୧୭୭—୧୮୪୦ ରେ ଅଧ୍ୟାପକ ହ୍ୱିଟଷ୍ଟୋନ ତାଡ଼ିତ୍ ଘର୍ମ ପ୍ରସ୍ତୁତ କରିଥିଲେ ।

୧୭୮—ପ୍ରାଚୀନ ଭାରତୀୟ ଆର୍ଯ୍ୟମାନେ କାଳ ନିର୍ଣ୍ଣୟ ନିମିତ୍ତ (୧) ଛାୟା ଯନ୍ତ୍ର (୨) କପାଳ ଯନ୍ତ୍ର (୩) ବାଲୁକାଯନ୍ତ୍ର (୪) ମୟୂର ଯନ୍ତ୍ର ଓ (୫) ଜଳ ଯନ୍ତ୍ର ସୃଷ୍ଟି କରିଥିଲେ

୧୭୯—ପଥର କୋଇଲାରେ ତାପ ଦେଲେ ଯେଉଁଥିରୁ ଯେଉଁ ବାଷ୍ପ ବାହାରେ ସେଥିରୁ ( coaltar ) ବା ଅଲ୍‌କାତରା ପ୍ରସ୍ତୁତ ହୁଏ ।

୧୮୦—ତିବ୍ବତର ଲୋକମାନେ ୟାକ ଛାଗଳ ଓ ମେଷମାନଙ୍କର ମଳ ଶୁଷ୍କ କରି କାଷ୍ଠ ପରିବର୍ତ୍ତେ ଇନ୍ଧନ ସ୍ୱରୂପ ବ୍ୟବହାର କରନ୍ତି । କାରଣ ଏ ଦେଶରେ ଗଛ ନାହିଁ କହିଲେ ଚଳେ ।

୧୮୧—ପୂର୍ବ ତୁର୍କିସ୍ଥାନର ( Chinese Turkestan ) ଯେଡ଼ ( Jade ) ନାମକ ଏକ ହରିଦ୍ରାର ପ୍ରସ୍ତର ଖଣି ଅଛି ।

୧୮୨—ପାରସ୍ୟ ଦେଶର ମାଟି ଲୁନ ମିଶ୍ରିତ, ତେଣୁ ବର୍ଷାପାଣି ଉପରେ ନ ରହି ତଳକୁ ଗୁଳିଯାଏ ।
୧୮୩—ଭର୍କୋୟାନସ୍କ ( Verkhoyansk ) ପୃଥିବୀରେ ଶୀତଳତମ ସ୍ଥାନ ଅଟେ ।
୧୮୪—ଲୁନ୍ଦ୍ରା ଭୂଭାଗ ବର୍ଷକେ ୯ ମାସ ବରଫାବୃତ ହୋଇ ରହେ ।
୧୮୫—ବାକୁ ( Baku ) ନଗରର କେରୋସିନ୍ ଖଣି ପୃଥିବୀ ପ୍ରସିଦ୍ଧ ।
୧୮୬—ଡେନମାର୍କର ଲବଣୀ ପୃଥିବୀରେ ଉତ୍କୃଷ୍ଟତମ ଅଟେ ।
୧୮୭—ରିଓଟିଣ୍ଟୋ ( Rio Tinto ) ନଦୀରେ ଗୋଟିଏ ମାତ୍ର ମାଛ ଦେଖାଯାଏ ନାହିଁ ।
୧୮୮—ଇଟାଲିର କାରାର ( Carrara ) ନିକଟରେ ଅତି ପ୍ରାଚୀନ କାଳରୁ ପୃଥିବୀର ସର୍ବୋତ୍କୃଷ୍ଟ ମାର୍ବଲ-ପଥର ଖୋଦିତ ହେଉଅଛି ।
୧୮୯—ଲଣ୍ଡନରେ ଜୁନ ମାସରେ ଦିନ ପ୍ରାୟ ସ ୧୬ ଘଣ୍ଟା ଓ ଡିସେମ୍ବର ମାସରେ ସେତିକ ପ୍ରାୟ ସେତିକ ହୋଇଯାଏ ।
୧୯୦—ହପ୍ ( Hop ) ନାମକ ଏକ ପ୍ରକାର ଜଙ୍ଗଲି ଲତାରୁ ବିୟର ନାମକ ଏକ ପ୍ରକାର ପାନୀୟ ପ୍ରସ୍ତୁତ କରାଯାଏ ।
୧୯୧—କାର୍ଡିଫ୍ ( Cardiff ) ପୃଥିବୀର ବୃହତ୍ତମ କୋଇଲା ବନ୍ଦର ଏବଂ ଓୟେଲ୍ସର ଧୂମହୀନ କୋଇଲା ପୃଥିବୀରେ ସର୍ବୋତ୍କୃଷ୍ଟ ଅଟେ ।
୧୯୨—ନିଉ ଅର୍ଲିନ୍ସ ( New Orleans ) ମେକ୍ସିକୋ ଉପସାଗରର ଶୀର୍ଷ ଦେଶରେ ଅବସ୍ଥିତ ଏବଂ ଏହା ପୃଥିବୀର ସୁବୃହତ୍ କାର୍ପାସ—ବନ୍ଦର ଅଟେ ।
୧୯୩—ସିକାଗୋ (Chicago) ପୃଥିବୀ ମଧ୍ୟରେ । ( ୧ ) ବୃହତ୍ତମ ରେଲକେନ୍ଦ୍ର ( ୨ ) ବୃହତ୍ତମ ରେଲ-ବଜାର ( Grain market) ( ୩ ) ବୃହତ୍ତମ ପଶୁ-ବଜାର ( Live Stock market ) ( ୪ ) ବୃହତ୍ତମ ମାଂସ ପଠାଇବା ବଜାର ଏବଂ ବୃହତ୍ତମ କାଠ-ବଜାର ଅଟେ । ୧୮୩୦ ରେ ଏଠାରେ ପ୍ରାୟ ୧୦୦ ଲୋକ ବାସ କରୁଥିଲେ । ବର୍ତ୍ତମାନ ଏହାର ଲୋକ ସଂଖ୍ୟା ପ୍ରାୟ ୨୭ ଲକ୍ଷ ଅଟେ ।
୧୯୪—ବୋଷ୍ଟନର ଲୋକମାନେ ତାଙ୍କର ବିଶ୍ୱବିଦ୍ୟାଳୟ ନିମିତ୍ତ ଗର୍ବ ଅନୁଭବ କରିଥାନ୍ତି ।
୧୯୫—ଓଲନ୍ଦାଜ ( the Dutch ) ମାନେ ହଡ଼ସନ୍ ନଦୀ ମୁହାଣସ୍ଥ ମାନହାଟାନ୍ ଦ୍ୱୀପ ( Manhathan Island ) ଉପରେ ନିଉୟର୍କ ( New York ) ନଗର ସ୍ଥାପନ କରିଥିଲେ ।
୧୯୬—ଇଉନାଇଟେଡ୍ ଷ୍ଟେଟ୍ସରେ କଲେଜ ଓ ଇଉନିଭର୍-ସିଟିର ସଂଖ୍ୟା ପ୍ରାୟ ୭୦୦ ରୁ ଅଧିକ ହେବ । ୪୮ଟି ପ୍ରଦେଶ ଯୁକ୍ତ ହୋଇ ଏହି ଦେଶ ଗଠିତ ।
୧୯୭—କୌଣସି ଦ୍ରବ୍ୟରେ ପିମ୍ପୁଡ଼ି ହେଲେ ବା ହେବାର ସମ୍ଭାବନା ଥିଲେ ଟିକିଏ କର୍ପୂର କାଗଜରେ ଗୁଡ଼ାଇ ସେହି ସ୍ଥାନରେ ରଖି ଦେଲେ ପିମ୍ପୁଡ଼ିର ଉତ୍ପାତ ଆଉ ସହ୍ୟ କରିବାକୁ ହେବ ନାହିଁ ।
୧୯୮—ହେଙ୍ଗୁ କମ୍ପା କର୍ପୂର ବଟଣାରେ ରଖିଲେ ଘୁଣ-ପୋକର ଉପଦ୍ରବ ଦୂର ହୁଏ ।
୧୯୯—ହେଙ୍ଗୁ, ଦୁଧ ଓ ପାର୍ଜିଣ ମିଶ୍ରିତ କରି ବୃକ୍ଷର ମୂଳରେ ଦେଲେ ସମୂଳେ କୀଟ ଧ୍ୱଂସ ହେବ ।
୨୦୦—ଶିମୂଳ ଫୁଲ କଷା ଦୁଧ ସହିତ ବାଟି ପ୍ରଲେପ ଦେଲେ ତିନି ଦିନରେ ପଦ୍ମ ପରି ମୁଖ କାନ୍ତି ହୁଏ ।



ସମୟରକ୍ଷୀ ଶ୍ରେଷ୍ଠ ନର ।

# ଭାରତବର୍ଷ

## ପ୍ରାଚୀନ ରାଜ୍ୟବିଭାଗ

ବ୍ରହ୍ମାବର୍ତ୍ତ—ଦିଲ୍ଲୀର ଉତ୍ତର-ପଶ୍ଚିମ ସରସ୍ୱତୀ ଓ ଦୃଷଦ୍ୱତୀ ( ଗାଗର ) ନଦୀ ଦ୍ୱୟର ମଧ୍ୟବର୍ତ୍ତୀ ପଞ୍ଚାଶ କୋଶ ବିସ୍ତୃତ ଭୂଭାଗର ନାମ ବ୍ରହ୍ମାବର୍ତ୍ତ ଥିଲା । ଏହା ହିନ୍ଦୁମାନଙ୍କ ଆଦିମ ବାସସ୍ଥାନ ବୋଲି ମନୁସଂହିତାରେ ବର୍ଣ୍ଣିତ ଅଛି ।

ବ୍ରହ୍ମର୍ଷି ପ୍ରଦେଶ—ଏହା ବ୍ରହ୍ମାବର୍ତ୍ତର ଦକ୍ଷିଣରେ ଯମୁନା ନଦୀ ପର୍ଯ୍ୟନ୍ତ ବିସ୍ତୃତ ଥିଲା । କୁରୁକ୍ଷେତ୍ର (ଥାନେଶ୍ୱର), ମତ୍ସ୍ୟଦେଶ ( ଜୟପୁର), ପଞ୍ଚାଳଦେଶ ( କୁରୁକ୍ଷେତ୍ରର ପୂର୍ବାଂଶ), ଶୂରସେନ ଦେଶ (ମଥୁରା), ଏହି ରାଜ୍ୟମାନ ବ୍ରହ୍ମର୍ଷିଦେଶର ଅନ୍ତର୍ଗତ ଥିଲା ।

କୋଶଳ ବା ଅଯୋଧ୍ୟା ଦେଶ } ଖ୍ରୀଷ୍ଟ ପ୍ରତିଲୋମ ୩୫୦୦ ଅବ୍ଦ ପୂର୍ବରୁ ଏହି ରାଜ୍ୟ ସରଯୂ ତୀରରେ ସ୍ଥାପିତ ହୋଇଥିଲା । ସୂର୍ଯ୍ୟବଂଶୀୟ ରାଜାମାନେ ଏହିଠାରେ ରାଜତ୍ୱ କରୁଥିଲେ ।

ଇନ୍ଦ୍ରପ୍ରସ୍ଥ ବା ଦିଲ୍ଲୀ—ଏହି ନଗର ରାଜା ଯୁଧିଷ୍ଠିରଙ୍କ ରାଜଧାନୀ ଥିଲା, ବର୍ତ୍ତମାନ ଦିଲ୍ଲୀର ଅଳ୍ପଦୂରରେ ଇନ୍ଦ୍ରପ୍ରସ୍ଥର ଭଗ୍ନାବଶେଷ ଦୃଷ୍ଟି ଗୋଚର ହୁଏ ।

ପଞ୍ଜାବ—ବିତସ୍ତା, ଇରାବତୀ, ଚନ୍ଦ୍ରଭାଗା, ବିପାଶା ଓ ଶତଦ୍ରୁ ଏହି ପଞ୍ଚନଦୀ ମଧ୍ୟରେ ଅବସ୍ଥିତ ଥିଲା ବୋଲି ରାଜ୍ୟର ନାମ ପଞ୍ଚାପ ଅବା ପଞ୍ଜାବ ହୋଇଅଛି । କେକୟ, ସୌବୀର, ଶିବ ପ୍ରଭୃତି ରାଜ୍ୟ ଶତଦ୍ରୁ ଓ ସିନ୍ଧୁନଦର ମଧ୍ୟବର୍ତ୍ତୀ ଥିଲା । ସିନ୍ଧୁନଦର ପଶ୍ଚିମରେ ଗାନ୍ଧାର ( କାନ୍ଦାହାର ) ରାଜ୍ୟ ଥିଲା ।

ମିଥିଳା—( ତିର୍ହୁତ ) ଜନକ ରାଜାଙ୍କ ରାଜଧାନୀ ଥିଲା ।

କାନ୍ୟକୁବ୍ଜ—( କନୋଜ ) ନେପାଳଠାରୁ ଚର୍ମଣ୍ୱତୀ ନଦୀ ପର୍ଯ୍ୟନ୍ତ ବିସ୍ତୃତ ଥିଲା । କାନ୍ୟକୁବ୍ଜ ରାଜାମାନେ ଏକ ସମୟରେ ବଙ୍ଗ ଓ ଓଡ଼ିଶାରେ ସ୍ୱୀୟ ଆଧିପତ୍ୟ ବିସ୍ତାର କରିଥିଲେ । ଚନ୍ଦ୍ରବଂଶୀୟ କୁଶନାଭଙ୍କ ଦ୍ୱାରା ଏହି ରାଜ୍ୟ ସ୍ଥାପିତ ହୋଇଥିଲା ।

ବାରାଣସୀ—( କାଶୀ ) ବରୁଣା ଓ ଅସୀ ନଦୀଦ୍ୱୟର ମଧ୍ୟସ୍ଥ ବୋଲି ସ୍ଥାନର ନାମ ବାରାଣସୀ ହୋଇଅଛି । ଖ୍ରୀଷ୍ଟ ପ୍ରତିଲୋମ ୧୫ ଶତାବ୍ଦୀ ପୂର୍ବେ ସୂର୍ଯ୍ୟବଂଶୀୟ କାଶୀରାଜାଙ୍କ ଦ୍ୱାରା ସ୍ଥାପିତ ହୋଇଥିଲା ।

ମଗଧ ରାଜ୍ୟ—( ବିହାର ) ଏହି ରାଜ୍ୟ ଅତି ପ୍ରାଚୀନ କାଳରୁ ପ୍ରସିଦ୍ଧ । ଜରାସନ୍ଧ ପ୍ରଭୃତି ପ୍ରବଳ ପରାକ୍ରାନ୍ତ ରାଜାମାନେ ଏଠାରେ ରାଜତ୍ୱ କରିଥିଲେ । ଗୟା ସନ୍ନିକଟ ରାଜଗିର ପାହାଡ଼ଠାରେ ଜରାସନ୍ଧଙ୍କ ରାଜଭବନର ଭଗ୍ନାବଶେଷ ବିଦ୍ୟମାନ ରହିଅଛି । ମଗଧର ପାଟଳୀ ପୁତ୍ର ( ପାଟନା ) ନଗର ମହାରାଜ ଅଶୋକଙ୍କ ରାଜଧାନୀ ଥିଲା ।

ଅଙ୍ଗ ଦେଶ—ଭାଗଲପୁର ଜିଲ୍ଲା ଓ ତାହାର ନିକଟସ୍ଥ କେତେକ ସ୍ଥାନର ନାମ ଅଙ୍ଗ ଦେଶ ଥିଲା ! କର୍ଣ୍ଣ ଅଙ୍ଗ ଦେଶର ରାଜା ଥିଲେ ।

ବଙ୍ଗ ଦେଶ—ବର୍ତ୍ତମାନ ବଙ୍ଗ ଦେଶର ଦକ୍ଷିଣାଂଶର ନାମ ବଙ୍ଗ ଦେଶ ଥିଲା । ଯଯାତିଙ୍କ ପୁତ୍ର ଅନୁଙ୍କ ବଂଶୀୟ ବଙ୍ଗ ନାମକ ରାଜା ଏହି ରାଜ୍ୟ ସ୍ଥାପନ କରିଥିଲେ ।

ସୁହ୍ମଦେଶ—ତ୍ରିପୁରା ଓ ଆରାକାନର ପ୍ରାଚୀନ ନାମ ସୁହ୍ମ ଦେଶ ଥିଲା ।

ପୁଣ୍ଡ୍ର ଦେଶ—ବର୍ତ୍ତମାନ କାଳର ରଙ୍ଗପୁର, ଦିନାଜପୁର, ରାଜସାହି, ବୀରଭୂମ, ମୁର୍ଶିଦାବାଦ, ନବଦ୍ୱୀପ, ବର୍ଦ୍ଧମାନ ପ୍ରଭୃତି ପ୍ରାଚୀନ ପୁଣ୍ଡ୍ର ଦେଶର ଅନ୍ତର୍ଗତ ଥିଲା ।

ପ୍ରାଗ୍‌ଜ୍ୟୋତିଷ ପୁର—କାମରୂପ ଓ ଆସାମର କେତେକାଂଶର ପ୍ରାଚୀନ ନାମ ପ୍ରାଗ୍‌ଜ୍ୟୋତିଷ ପୁର ଥିଲା ।

ସିନ୍ଧୁ ରାଜ୍ୟ—ବର୍ତ୍ତମାନ କାଳର ସିନ୍ଧୁପ୍ରଦେଶର ନାମ ପ୍ରାଚୀନ ସିନ୍ଧୁରାଜ୍ୟ ଥିଲା । ଜୟଦ୍ରଥ ସିନ୍ଧୁର ଅଧିପତି ଥିଲେ ।

କୁଶସ୍ଥଳୀ—( ଦ୍ୱାରକା ) ଯଦୁବଂଶୀୟମାନେ ଏଠାରେ ରାଜତ୍ୱ କରୁଥିଲେ ।

ଗୁର୍ଜ୍ଜର ରାଜ୍ୟ—ଏହା କୃଷ୍ଣଙ୍କ ଦ୍ୱାରା ସ୍ଥାପିତ ହୋଇଥିଲା । କନକସେନ ପ୍ରଭୃତି ନରପତିମାନେ ଏଠାରେ ରାଜତ୍ୱ କରୁଥିଲେ ।

ଉତ୍କଳଦେଶ—( ଓଡ଼ିଶା ) ଚନ୍ଦ୍ରବଂଶୀୟ ଉତ୍କଳ ନାମକ ରାଜାଙ୍କ ଦ୍ୱାରା ସ୍ଥାପିତ ହୋଇଥିଲା । ଏହାର ଆଉ ଗୋଟିଏ ପ୍ରାଚୀନ ନାମ ଓଡ୍ର ଦେଶ । ଓଡ୍ର ନାମରୁ ଓଡ଼ିଶା ହୋଇଅଛି ।

କଳିଙ୍ଗଦେଶ—ଏହି ରାଜ୍ୟ ଓଡ଼ିଶା ଓ ଦ୍ରାବିଡ଼ର ମଧ୍ୟବର୍ତ୍ତୀ ଥିଲା । ପରବର୍ତ୍ତୀ କାଳରେ ବଡ଼ଗଙ୍ଗ ଏହାର ରାଜଧାନୀ ହୋଇଥିଲା ।

ଅନ୍ଧ୍ର ଦେଶ— ବର୍ତ୍ତମାନ ହାଇଦ୍ରାବାଦର ଅଳ୍ପଦୂରରେ ଅବସ୍ଥିତ ଥିଲା । ଖ୍ରୀଷ୍ଟ ପ୍ରଚଳେମ ୨୦ ଅବ୍ଦରେ ଆନ୍ଧ୍ରରାଜାମାନଙ୍କ ଦ୍ୱାରା ରାଜତ୍ୱ ଆରମ୍ଭ ହୋଇ ୪୩୭ ଖ୍ରୀଷ୍ଟାବ୍ଦରେ ବିଲୋପ ହୋଇଥିଲା ।

ମାଳବ ଦେଶ—ଉଜ୍ଜୟିନୀ ଏହାର ରାଜଧାନୀ ଥିଲା । ଏଥିର ଅପର ନାମ ଅବନ୍ତୀ ନଗର । ଏହା ବିକ୍ରମାଦିତ୍ୟଙ୍କ ରାଜଧାନୀ ଥିଲା । ଭିଲସା ନଗରର ପ୍ରାଚୀନ ନାମ ବିଦିଶା ଥିଲା ।

ବିଦର୍ଭ—ବେରାରର କେତେକାଂଶର ନାମ ପ୍ରାଚୀନ ବିଦର୍ଭ ଥିଲା । ମହାରାଜା ନଳ ଏଠାରେ ରାଜତ୍ୱ କରୁଥିଲେ ।

ପାଣ୍ଡ୍ୟ ଓ ଚୋଳ ରାଜ୍ୟ—ଏହି ଉଭୟ ରାଜ୍ୟ ଦ୍ରାବିଡ଼ର ଅନ୍ତର୍ଗତ ଥିଲା । ପାଣ୍ଡ୍ୟ ରାଜ୍ୟର ରାଜଧାନୀ ମଦୁରା ନଗର ବର୍ତ୍ତମାନ ବିଦ୍ୟମାନ ରହିଅଛି । ଚୋଳ ରାଜ୍ୟର ରାଜଧାନୀ କାଞ୍ଚିବରମ୍ । ୧୬୮୭ ଖ୍ରୀଷ୍ଟାବ୍ଦରେ ମହାରାଷ୍ଟ୍ରୀୟମାନେ ଚୋଳ ରାଜ୍ୟ ଅଧିକାର କରି ଏହାର ନାମ ତାଞ୍ଜୋର ପ୍ରଦାନ କରିଥିଲେ ।

ଚେର ରାଜ୍ୟ—ଆରବ ସାଗରର ଉପକୂଳରେ, ପାଣ୍ଡ୍ୟରାଜ୍ୟର ପଶ୍ଚିମରେ ଚେର ରାଜ୍ୟ ଅବସ୍ଥିତ ଥିଲା ।

ମଦ୍ର ଦେଶ—(ମାନ୍ଦ୍ରାଜ) ମଦ୍ର ରାଜ୍ୟରୁ ମାନ୍ଦ୍ରାଜ୍ ହୋଇଅଛି ।

କେରଳ—କାନାଡ଼ା ଓ ମାଲବାରକୁ କେରଳ ରାଜ୍ୟ କହୁଥିଲେ ।

ଚେଦି—ଆଧୁନିକ ବୁନ୍ଦେଲଖଣ୍ଡର ଅଂଶ । ଶିଶୁପାଳ ଏଠାରେ ରାଜତ୍ୱ କରୁଥିଲେ ।



## ଭାରତବର୍ଷର ଐତିହାସିକ ଘଟଣା

| | |
|---|---|
| ଖ୍ରୀ: ପୂର୍ବ ୬୦୦୦—୪୦୦୦ | ବୈଦିକ ଯୁଗ, ଆଦିମ ଆର୍ଯ୍ୟମାନଙ୍କର ଭାରତ ଆଗମନ ଏବଂ ପଞ୍ଜାବରେ ବସତି ବିସ୍ତାର । |
| ଖ୍ରୀ: ପୂର୍ବ ୪୦୦୦—୧୦୦୦ | ପୌରାଣିକ ଯୁଗ, ହିନ୍ଦୁମାନଙ୍କର ଗାଙ୍ଗେୟ ପ୍ରଦେଶରେ ପ୍ରାଧାନ୍ୟ ସ୍ଥାପନ । |
| ଖ୍ରୀ: ପୂର୍ବ ୧୦୦୦—୩୨୦ | ହିନ୍ଦୁମାନଙ୍କର ଭାରତବ୍ୟାପୀ ଆଧିପତ୍ୟ ବିସ୍ତାର । |
| ଖ୍ରୀ: ପୂର୍ବ ୬୦୦ | ମଗଧରେ ଶିଶୁନାଗ ବଂଶ ସ୍ଥାପନ । |
| ଖ୍ରୀ: ପୂର୍ବ ୫୫୭ | ବୁଦ୍ଧଦେବଙ୍କ ଜନ୍ମ । |
| ଖ୍ରୀ: ପୂର୍ବ ୫୩୬—୪୮୫ | ବିମ୍ବିସାରଙ୍କ ରାଜତ୍ୱ, ଗୌତମ ବୁଦ୍ଧଙ୍କର ବୌଦ୍ଧଧର୍ମ ପ୍ରଚାର । |
| ଖ୍ରୀ: ପୂର୍ବ ୫୫୪—୫୨୭ | ଅଜାତଶତ୍ରୁଙ୍କର ରାଜତ୍ୱ । |
| ଖ୍ରୀ: ପୂର୍ବ ୪୭୭ | ବୁଦ୍ଧଦେବଙ୍କ ମୃତ୍ୟୁ । |
| ଖ୍ରୀ: ପୂର୍ବ ୩୬୦ | ଶିଶୁନାଗ ବଂଶ ଲୋପ । |
| ଖ୍ରୀ: ପୂର୍ବ ୩୬୦—୩୨୨ | ( ନନ୍ଦ ରାଜତ୍ୱ ।) |
| ଖ୍ରୀ: ପୂର୍ବ ୩୨୭ | ଆଲେକ୍‌ଜାଣ୍ଡରଙ୍କ ଭାରତ ଆକ୍ରମଣ |
| ଖ୍ରୀ: ପୂର୍ବ ୩୨୨—୨୨୦ | ଜୈନ ଓ ମୌର୍ଯ୍ୟ ରାଜତ୍ୱ । |
| ଖ୍ରୀ: ପୂର୍ବ ୨୬୯ | ଅଶୋକଙ୍କ ରାଜତ୍ୱ ଆରମ୍ଭ । |
| ଖ୍ରୀ: ପୂର୍ବ ୨୩୭ | ଅଶୋକଙ୍କ ମୃତ୍ୟୁ । |
| ଖ୍ରୀ: ପୂର୍ବ ୨୨୦—୧୮୦ | ( ଚୈଦବଂଶ ) |

ଖ୍ରୀ: ପୂର୍ବ ୧୮୪ ଶୁଙ୍ଗବଂଶ ସ୍ଥାପନ ( ସେନାପତି ପୁଷ୍ୟମିତ୍ର ଦ୍ୱାରା ) ।
ଖ୍ରୀ: ପୂର୍ବ ୧୭୪ ଖାରବେଳଙ୍କ ଅଭିଷେକ ।
ଖ୍ରୀ: ପୂର୍ବ ୭୨ କଣ୍ୱବଂଶ ସ୍ଥାପନ ( ଶୁଙ୍ଗବଂଶର ଶେଷରାଜାଙ୍କ ମନ୍ତ୍ରୀ ବାସୁଦେବଙ୍କ ଦ୍ୱାରା )
ଖ୍ରୀ: ପୂର୍ବ ୨୭ ଅନ୍ଧ୍ରମାନଙ୍କର ଭାରତରେ ରାଜତ୍ୱ ।



# ଭାରତବର୍ଷ ଓ ଅନ୍ୟାନ୍ୟ ଦେଶର ଐତିହାସିକ ଘଟଣା

ଖ୍ରୀ: ୩୧୬ ରୁ ୩୧୨ ଗ୍ରୀକ୍‌ଦୂତ ମେଗାସ୍ଥିନିସଙ୍କର ପାଟଳିପୁତ୍ରରେ ଅବସ୍ଥାନ ।
ଖ୍ରୀ: ୩୨୦ ଚୀନ ପରିବ୍ରାଜକ ଫାହିଅନଙ୍କର ଭାରତ ପରିଦର୍ଶନ ।
ଖ୍ରୀ: ୩୩୦ ସମୁଦ୍ରଗୁପ୍ତଙ୍କ ରାଜତ୍ୱ ଆରମ୍ଭ ।
ଖ୍ରୀ: ୪୦୦ ଚନ୍ଦ୍ରଗୁପ୍ତଙ୍କର 'ଗୁପ୍ତ' ଅବ୍ଦ ଆରମ୍ଭ ।
ଖ୍ରୀ: ୫୨୦ ଚୀନ ପରିବ୍ରାଜକ ସଙ୍ଗୟୁନ୍ ସନ୍ଧୁ ନଦୀ ପର୍ଯ୍ୟନ୍ତ ଆସିଥିଲେ ।
ଖ୍ରୀ: ୬୩୦ ରୁ ୬୪୫ ଚୀନ ପରିବ୍ରାଜକ ହୋଏନ୍‌ସାଙ୍ଗ୍ ଭାରତ ଭ୍ରମଣ ।
ଖ୍ରୀ: ୬୦୬ ରୁ ୬୪୭ ହର୍ଷବର୍ଦ୍ଧନଙ୍କ ରାଜତ୍ୱ ।
ଖ୍ରୀ: ୧୦୦୧ ରୁ ୧୦୨୪ ମାହାମୁଦ ଭାରତବର୍ଷକୁ ୧୨ ଥର ଆକ୍ରମଣ କରିଥିଲେ ।
ଖ୍ରୀ: ୧୦୬୨ ଭୋଜ ରାଜାଙ୍କ ମୃତ୍ୟୁ ।
ଖ୍ରୀ: ୧୦୮୧ ଚୋଳ ରାଜାଙ୍କ ଓଡ଼ିଶା ଆଗମନ ।
ଖ୍ରୀ: ୧୨୧୫ ମ୍ୟାଗନାକାର୍ଟା ମଞ୍ଜୁର ।
ଖ୍ରୀ: ୧୪୩୬ ମୁଦ୍ରାଯନ୍ତ୍ର ଆବିଷ୍କାର ।
ଖ୍ରୀ: ୧୪୯୨ କଲମ୍ବସ ଆମେରିକା ଆବିଷ୍କାର କଲେ ।
ଖ୍ରୀ: ୧୪୯୭ ଉତ୍ତମାଶା ଅନ୍ତରୀପ ଆବିଷ୍କାର ।
ଖ୍ରୀ: ୧୪୯୮ ଭାସ୍କୋ-ଡ-ଗାମାଙ୍କ କାଲିକଟ ଆଗମନ ।

ଖ୍ରୀ: ୧୫୨୬ ପ୍ରଥମ ପାନିପଥ ଯୁଦ୍ଧ ।
ଖ୍ରୀ: ୧୫୩୫ ପ୍ରଥମେ ବାଇବେଲ ଇଂରାଜୀରେ ଛପା ହେଲା ।
ଖ୍ରୀ: ୧୫୫୬ ଦ୍ୱିତୀୟ ପାନିପଥ ଯୁଦ୍ଧ ।
ଖ୍ରୀ: ୧୫୬୦ ଆକବରଙ୍କ ରାଜତ୍ୱ ଆରମ୍ଭ ।
ଖ୍ରୀ: ୧୫୬୧ ତୃତୀୟ ପାନିପଥ ଯୁଦ୍ଧ ।
ଖ୍ରୀ: ୧୫୬୪ ସେକ୍ସପିଅରଙ୍କ ଜନ୍ମ ।
ଖ୍ରୀ: ୧୫୯୯ ଇଷ୍ଟଇଣ୍ଡିଆ କୋମ୍ପାନୀ ସ୍ଥାପନ ।
୧୬୦୨ ଅବୁଲ ଫଜଲଙ୍କ ହତ୍ୟା ।
୧୬୧୬ ସେକସପିଅରଙ୍କର ମୃତ୍ୟୁ ।
ଖ୍ରୀ: ୧୬୨୭ ଶିବାଜୀଙ୍କ ଜନ୍ମ ।
୧୬୩୯ ମାନ୍ଦ୍ରାଜର ମୂଳ ପତ୍ତନ ।
୧୬୪୨ ନିଉଟନଙ୍କ ଜନ୍ମ ।
୧୬୪୮ ଅଲିଭର କ୍ରମୱେଲ ମୃତ ।
୧୬୬୪ ଶିବାଜି ସୁରଟ ଲୁଣ୍ଠନ କଲେ ।
୧୬୬୫ ପ୍ରଥମେ ସମ୍ବାଦପତ୍ର ପ୍ରକାଶିତ ହେଲା
୧୬୭୪ ଶିବାଜି ମହାରାଜା ଉପାଧି ଧାରଣ କଲେ ।
୧୬୯୮ ଫୋର୍ଟ ଉଇଲିୟମ ଦୁର୍ଗ ନିର୍ମାଣ ।
୧୭୦୭ ଔରଙ୍ଗଜେବଙ୍କ ମୃତ୍ୟୁ ( ଅଷାଢ଼ ବୁଧବାର )
୧୭୪୬ ଫରାସୀମାନଙ୍କର ପଣ୍ଡିଚେରୀ ଅଧିକାର ।
୧୭୫୬ ଅନ୍ଧକୂପ ହତ୍ୟା ।
୧୭୫୭ ପଲାଶି ଯୁଦ୍ଧ । କ୍ଲାଇବଙ୍କର କଲିକତା ଅଧିକାର । ଇଷ୍ଟଇଣ୍ଡିଆ କୋମ୍ପାନୀ ପ୍ରଥମ ମୁଦ୍ରା ପ୍ରସ୍ତୁତ କଲେ ।
୧୭୫୮ ମରହଟ୍ଟାଙ୍କର ଲାହୋର ଜୟ ।
୧୭୫୯ ବ୍ରିଟିଶ ଯାଦୁକୋଠି ଖୋଲାଗଲା ।
୧୭୬୨ ଶିଖମାନଙ୍କର ପଞ୍ଜାବ ଜୟ ।
୧୭୬୪ ବଙ୍ଗର ଶେଷ ନବାବ ମୀର୍ କାସେମ ପରାସ୍ତ, ବଙ୍ଗ ଇଂରେଜଙ୍କର ହସ୍ତଗତ ।

| | |
|---|---|
| ୧୭୬୫ | କ୍ଳାଇବ ବଙ୍ଗ ବହାର ଓ ଓଡ଼ିଶାର ଦେବାନି ପାଇଲେ । |
| ୧୭୬୯ | ନେପୋଲିଅନଙ୍କ ଜନ୍ମ । |
| ୧୭୬୯—୭୦ | ବଙ୍ଗ ଦୁର୍ଭିକ୍ଷ ବା ଛଅସ୍ତର ମନ୍ୱନ୍ତର । |
| ୧୭୭୩ | ବଙ୍ଗ ପ୍ରଧାନ ପ୍ରେସିଡେନ୍‌ସି ହେଲା । |
| ୧୭୭୪ | ଲର୍ଡ କ୍ଳାଇବଙ୍କ ମୃତ୍ୟୁ । ଆସାମ ଭାରତ ସହିତ ଯୋଗ କରାଗଲା । |
| ୧୭୭୫, ୧୭୭୯, ୧୮୦୩, ୧୮୧୮ | ମରହଟ୍ଟାଯୁଦ୍ଧ । |
| ୧୭୭୫ | ନନ୍ଦକୁମାରଙ୍କର ଫାଶି । |
| ୧୭୭୬ | ଆମେରିକାର ସ୍ୱାଧୀନତା ଘୋଷଣା । |
| ୧୭୮୦ | କଲିକତାରେ ପ୍ରଥମେ ସମ୍ବାଦପତ୍ର ପ୍ରକାଶିତ ହେଲା । |
| ୧୭୮୮ | ଓ୍ୱାରେନ ହେଷ୍ଟିଂସଙ୍କ ବିଚାର ଆରମ୍ଭ । ଲର୍ଡ ବାଇରନ୍‌ଙ୍କ ଜନ୍ମ । |
| ୧୭୮୯ | ଜର୍ଜ ଓ୍ୱାସିଂଟନ ଆମେରିକାରେ ପ୍ରଥମ ପ୍ରେସିଡେଣ୍ଟ ହେଲେ । |
| ୧୭୯୦ | ଜୁରୀଙ୍କ ଦ୍ୱାରା ବିଚାର ପ୍ରଥା ଆରମ୍ଭ । |
| ୧୭୯୧ | ବାଷ୍ପୀୟ ଜାହାଜ ତିଆରି ହେଲା । |
| ୧୭୯୫ | ରାଣୀ ଅହଲ୍ୟାବାଈଙ୍କ ମୃତ୍ୟୁ । |
| ୧୭୯୬ | ବସନ୍ତ ଟୀକାର ଆବିଷ୍କାର । |
| ୧୮୦୦ | କଲିକତାରେ ଫୋର୍ଟ ଉଇଲିୟମ କଲେଜ ସ୍ଥାପନ । |
| ୧୮୦୩ | ଇଂରେଜମାନଙ୍କର ଓଡ଼ିଶା ଅଧିକାର |
| ୧୮୦୬ | ଦାସତ୍ୱ ବ୍ୟବସାୟ ରହିତ କରାଗଲା । |
| ୧୮୦୭ | ଲଣ୍ଡନ ସହରରେ ପ୍ରଥମେ ଗ୍ୟାସ ଆଲୋକ ଦିଆଗଲା । |
| ୧୮୦୯ | ଟେନିସନ୍ ଜନ୍ମଗ୍ରହଣ କଲେ । |
| ୧୮୧୩ | ମରହଟ୍ଟା ଯୁଦ୍ଧ ଆରମ୍ଭ । |
| ୧୮୧୪-୧୮୧୬ | ନେପାଳ ଯୁଦ୍ଧ । |
| ୧୮୧୫ | ଓ୍ୱାଟରଲୁ ଯୁଦ୍ଧ—ବିସମାର୍କ ଜନ୍ମ । ଲଙ୍କା ନିଆଗଲା । |
| ୧୮୧୭ | ପିଣ୍ଡାରିଯୁଦ୍ଧ । |
| ୧୮୧୯ | ମହାରାଣୀ ଭିକ୍‌ଟୋରିଆଙ୍କ ଜନ୍ମ । |
| ୧୮୨୦ | ଈଶ୍ୱରଚନ୍ଦ୍ର ବିଦ୍ୟାସାଗରଙ୍କ ଜନ୍ମ । |
| ୧୮୨୧ | ନେପୋଲିଅନଙ୍କ ମୃତ୍ୟୁ । |
| ୧୮୨୪-୧୮୨୬ | ପ୍ରଥମ ବ୍ରହ୍ମସମର । ଭାରତୀୟମାନେ ପ୍ରଥମେ ଜୁରୀରେ ବସିଲେ । ରାଜେନ୍ଦ୍ରଲାଲ ମିତ୍ରଙ୍କ ଜନ୍ମ । |
| ୧୮୨୪ | ମାଇକେଲ ମଧୁସୂଦନଙ୍କ ଜନ୍ମ । |
| ୧୮୨୬ | ଲଣ୍ଡନ ବିଶ୍ୱବିଦ୍ୟାଳୟ ସ୍ଥାପିତହେଲା |
| ୧୮୨୯ | ଦେଶୀୟ ଲୋକଙ୍କୁ ପ୍ରଥମେ ଡେପୁଟି କଲେକ୍ଟରୀ ଓ ସଦର ଅମିନ କାର୍ଯ୍ୟ ଦିଆଗଲା । |
| ୧୮୩୦ | ସତୀଦାହ ନିବାରଣ ଓ ଫରାସି ରାଷ୍ଟ୍ର ବିପ୍ଳବ । |
| ୧୮୩୩ | ଦାସତ୍ୱ ପ୍ରଥା ରହିତ ହେଲା । |
| ୧୮୩୫ | କଲିକତାରେ ପ୍ରଥମେ ମେଡ଼ିକାଲ କଲେଜ ସ୍ଥାପନ । ଛାପାଖାନା ସ୍ୱାଧୀନତା । ରାଜା ରାମମୋହନ ରାୟଙ୍କ ମୃତ୍ୟୁ । |
| ୧୮୩୭ | ମହାରାଣୀ ଭିକ୍‌ଟୋରିଆଙ୍କ ସିଂହାସନାରୋହଣ । |
| ୧୮୪୨ | ସିନ୍ଧୁ ସମର । ଚୀନ ସହିତ ସନ୍ଧି । |
| ୧୮୪୬ | ପ୍ରଥମ ଶିଖ ସମର । |
| ୧୮୫୨ | ଦ୍ୱିତୀୟ ବ୍ରହ୍ମ ସମର । |
| ୧୮୫୩ | G.I.P. ରେଲ ଲାଇନ ଖୋଲାଗଲା |
| ୧୮୫୪ | ଭାରତରେ ବୈଦ୍ୟୁତିକ ତାରସ୍ଥାପନ-ପ୍ରଥମେ ଲେଫ୍‌ଟେଲାଣ୍ଟ ନିଯୁକ୍ତି । କଲିକତା, ମାନ୍ଦ୍ରାଜ ଓ ବମ୍ବେଇ ପ୍ରେସିଡେନ୍ସିରେ ବିଶ୍ୱ-ବିଦ୍ୟାଳୟ ସ୍ଥାପନ । E.I.R. ରେଲ ଲାଇନ ଖୋଲାଗଲା । ବମ୍ବେଇ ଓ କଲିକତାରେ ଟେଲିଗ୍ରାଫ ଖୋଲାହେଲା । |
| ୧୮୫୬ | ବାଳଗଙ୍ଗାଧର ତିଳକଙ୍କର ଜନ୍ମ |
| ୧୮୫୭ | ସିପାହୀ ବିଦ୍ରୋହ । ନାନା ସାହେବ ପରାସ୍ତ । ପାରସ୍ୟ ସହିତ ସନ୍ଧି । |
| ୧୮୫୮ | ମହାରାଣୀଙ୍କର ଘୋଷଣାପତ୍ର ପ୍ରଚାର ଓ ଇଷ୍ଟଇଣ୍ଡିଆ କୋମ୍ପାନୀଠାରୁ ଭାରତ ଶାସନ ଗ୍ରହଣ । |

ଏ ମନ ସ୍ୱପ୍ନେ ଚଞ୍ଚଳ ।

୧୮୬୦ ବଣିଘରଠାରେ ବାଣିଜ୍ୟ ଆରମ୍ଭ ।
ମେକଲେଙ୍କ ଫଳକୃତ ଭାରତୀୟ
ଦଣ୍ଡବିଧି ଆଇନ ପ୍ରଚଳନ ।

୧୮୬୧ ଦେବାନି ଓ ଫୌଜଦାରି କାର୍ଯ୍ୟବିଧି
ଆଇନ ପ୍ରଚଳନ ଭାରତୀୟ କାଉନ୍-
ସିଲ ବିଧିର ପ୍ରଚଳନ ।

୧୮୬୨ ଦିଲ୍ଲୀର ଶେଷ ସମ୍ରାଟ୍ ବାହାଦୁର-
ସାଙ୍କର ରେଙ୍ଗୁନରେ ମୃତ୍ୟୁ ।
ପ୍ରତ୍ୟେକ ପ୍ରେସିଡେନ୍ସିରେ ସଦର
ଅଦାଲତ ପରିବର୍ତ୍ତେ ହାଇକୋର୍ଟ
ସ୍ଥାପନ । ଇ, ବି, ରେଲରାସ୍ତା
ଖୋଲା ହେଲା ।

୧୮୬୫ ପଞ୍ଚମ ଜର୍ଜଙ୍କ ଜନ୍ମ ଓ ଲର୍ଡ କେନିଂ
ମୃତ ଓ ବୋମ୍ବାଇରେ ଗ୍ୟାସବତି ।

୧୮୬୬ ଓଡ଼ିଶାରେ ନଅଙ୍କ ଦୁର୍ଭିକ୍ଷ ।
ଗୋପାଳ କୃଷ୍ଣ ଗୋଖେଲଙ୍କ ଜନ୍ମ ।

୧୮୬୯ ସୁଏଜ କେନାଲ ଖୋଲା ହେଲା ।

୧୮୭୦ ବୋମ୍ବାଇ ଓ କଲିକତା ମଧ୍ୟରେ
ରେଲ ରାସ୍ତା ଖୋଲାଗଲା ଓ ଫରାସୀ
ସ୍ୱାଧୀନତା ।

୧୮୭୧ ବଙ୍ଗଦେଶରେ ଭୂମିକମ୍ପ। ଭାରତରେ
ସିଭିଲ ଇଞ୍ଜିନିଅରିଂ କଲେଜ
ସ୍ଥାପନ ।

୧୮୭୨ ଜାପାନରେ ରେଲଲାଇନ ଆରମ୍ଭ ।
ମାନ୍ଦ୍ରାଜରେ ତୋଫାନ ।

୧୮୭୪ ବଙ୍କିମଚନ୍ଦ୍ର ଚଟ୍ଟୋପାଧ୍ୟାୟ ମୃତ ।

୧୮୭୫ ମହାରାଣୀଙ୍କ ଜ୍ୟେଷ୍ଠପୁତ୍ରଙ୍କର ଭାରତ
ଆଗମନ ।

୧୮୭୭ ମହାରାଣୀଙ୍କର ଭାରତେଶ୍ୱରୀ ପଦ
ଗ୍ରହଣ । ଦାକ୍ଷିଣାତ୍ୟ ଦୁର୍ଭିକ୍ଷରେ ୫୦
ଲକ୍ଷ ଲୋକ ନଷ୍ଟ ।

୧୮୭୮ ସାଧାରଣ ବ୍ରହ୍ମସମାଜ ପ୍ରତିଷ୍ଠିତ ଓ
ଲଣ୍ଡନ ବିଶ୍ୱବିଦ୍ୟାଳୟ ସ୍ଥାପିତ ।

୧୮୮୧ ମହୀଶୂର ରାଜ୍ୟରେ ରେଲ ଲାଇନ
ସ୍ଥାପନ ।

୧୮୮୨ ଭାରତରେ ସେଭିଂସ ବ୍ୟାଙ୍କ ଖୋଲା
ହେଲା । ଗ୍ୟାରିବଲଡ଼ି ମୃତ ।
ହେଭଡ଼ ହେସ୍ପାର ମୃତ ।

୧୮୮୪ କେଶବ ଚନ୍ଦ୍ର ସେନଙ୍କ ମୃତ୍ୟୁ ।

୧୮୮୫ ଭାରତୀୟ ଜାତୀୟ ମହାସଭାର ପ୍ରଥମ
ଅଧିବେଶନ । ଫର୍ଗୁସନ କଲେଜ
ସ୍ଥାପିତ ।

୧୮୮୬ ବ୍ରହ୍ମଦେଶ ଭାରତ ସାମ୍ରାଜ୍ୟଭୁକ୍ତ ।

୧୮୮୭ ମହାରାଣୀଙ୍କ ପ୍ରଥମ ଜୁବିଲି ।

୧୮୯୧ ମଣିପୁର ଯୁଦ୍ଧ ଓ ଈଶ୍ୱର ଚନ୍ଦ୍ର
ବିଦ୍ୟାସାଗର ଏବଂ ରାଜେନ୍ଦ୍ରଲାଲ
ମିତ୍ରଙ୍କର ମୃତ୍ୟୁ ।

୧୮୯୩ ରାଜା ଜର୍ଜ ବିବାହ କରିଥିଲେ ।

୧୮୯୪ ଚୀନ ଜାପାନ ଯୁଦ୍ଧ ।

୧୮୯୬ ବୋମ୍ବାଇରେ ପ୍ଲେଗ ଆରମ୍ଭ ।

୧୮୯୭ ଭାରତବର୍ଷରେ ଦୁର୍ଭିକ୍ଷ ଓ ଭୂମି-
କମ୍ପ ଏବଂ ଗଞ୍ଜାମରେ ତୋଫାନ,
ମହାରାଣୀଙ୍କର ହୀରକ ଜୁବିଲି ।

୧୮୯୮ କଲିକତାରେ ପ୍ଲେଗ ଆରମ୍ଭ ।

୧୯୦୦ ଭାରତବର୍ଷରେ ବିଶେଷ ନଦୀ ବୃଦ୍ଧି
ପ୍ଲେଗ ଓ ଦୁର୍ଭିକ୍ଷରେ ଅନେକ କ୍ଷତି
ଏବଂ ପୃଥିବୀର ସମସ୍ତ ରାଜାଙ୍କର
ଉକ୍ତ ଦୁର୍ଭିକ୍ଷ ଲାଗି ସାହାଯ୍ୟ ଦାନ ।

୧୯୦୧ ମହାରାଣୀଙ୍କ ମୃତ୍ୟୁ ଓ ତାଙ୍କ ପୁତ୍ର
ସପ୍ତମ ଏଡ଼ୱାର୍ଡଙ୍କର ଭାରତ-
ସମ୍ରାଟ୍ ହେବା ।

୧୯୦୫ ସମ୍ରାଟ୍‌ଙ୍କ ପୁତ୍ର ପ୍ରିନ୍ସ ଅବ୍ ୱେଲସଙ୍କ
ଭାରତ ଆଗମନ, ବଙ୍ଗ ବିଭାଗ,
ସମ୍ବଲପୁର ମଧ୍ୟ ପ୍ରଦେଶରୁ ଆସି
ଓଡ଼ିଶା ସଙ୍ଗେ ମିଶ୍ରଣ, ବିଶ୍ୱ
ବିଦ୍ୟାଳୟର ଆଇନ ସଂସ୍କାର,
ଦେବେନ୍ଦ୍ର ନାଥଙ୍କ ମୃତ୍ୟୁ ।

କେତେକେହେଁ ନ ରହେ ଜଣୁଣ ॥

୧୯୧୦ ପଞ୍ଚମଜର୍ଜଙ୍କ ସିଂହାସନାରୋହଣ ।

୧୯୧୧ ଦିଲ୍ଲୀ ଦରବାର ଓ ଭାରତ ସମ୍ରାଟ୍ ୫ମ ଜର୍ଜଙ୍କର ଭାରତ ଆଗମନ ଏବଂ ଦିଲ୍ଲୀରେ ନୂତନ ରାଜଧାନୀର ଭିତ୍ତି ସ୍ଥାପନ ।

୧୯୧୨ ବଙ୍ଗ ମିଳନ, ଓଡ଼ିଶା ବିହାର ଓ ଛୋଟ ନାଗପୁର ମିଶି ନୂତନ ପ୍ରଦେଶ ଗଠନ ।

୧୯୧୩ ପାନାମା କେନାଲ କାର୍ଯ୍ୟ ଶେଷ ହେଲା ।

୧୯୧୪ ଇଉରୋପରେ ମହାଯୁଦ୍ଧ ଆରମ୍ଭ । ଜର୍ମାନ ବ୍ରିଟିଶପୂର୍ବ ଆଫ୍ରିକା ଆକ୍ରମଣ କଲା ।

୧୯୧୬ ଭାରତ ସଚିବ ଶ୍ରୀଯୁକ୍ତ ମଣ୍ଟେଗୁ ସାହେବଙ୍କର ଭାରତ ଆଗମନ ।

୧୯୧୮ ରାଓଲେଟ୍ ଆକ୍ଟ ପାଶ୍ ହେଲା ।

୧୯୧୯ ଇଉରୋପ ମହାଯୁଦ୍ଧର ସନ୍ଧି ସଭା ଆରମ୍ଭ ଏବଂ ସତ୍ୟାଗ୍ରହ ଓ ଦିଲ୍ଲୀ ବିଦ୍ରୋହ ଏବଂ ମହାତ୍ମା ଗାନ୍ଧିଙ୍କ ଗିରଫଦାର, ପଞ୍ଜାବରେ ଡାୟାର ସାହେବଙ୍କ ଗୁଳି ବର୍ଷଣ ଏବଂ ସେଠାରେ ମାର୍ଶାଲ ଲ ଜାରି ।

୧୯୨୦ ମହାତ୍ମା ଗାନ୍ଧି ଖିଲାଫତ ପ୍ରତିକାର ଉଦ୍ଦେଶ୍ୟରେ ଅସହଯୋଗ ଆନ୍ଦୋଳନ ଆରମ୍ଭ କଲେ । ଗ୍ରେଟ୍ ବ୍ରିଟେନ ଓ ଭାରତ ମଧ୍ୟରେ ପାର୍ଶେଲ (ଭି: ପି:) ଆଦାନ ପ୍ରଦାନର ସୃଷ୍ଟି ଏବଂ ତିଳକ ମହାରାଜଙ୍କର ମୃତ୍ୟୁ । ଶାସନ ସଂସ୍କାର ବିଧିରେ ନୂତନ କାଉନ୍ସିଲକୁ ସଭ୍ୟ ନିର୍ବାଚନ ଏବଂ ଲର୍ଡ ସିଂହଙ୍କର ବିହାର ଓ ଓଡ଼ିଶା ପ୍ରଦେଶର ଗଭର୍ଣ୍ଣର ପଦ ଗ୍ରହଣ ।

୧୯୨୧-୨୨— ମହାତ୍ମା ଗାନ୍ଧିଙ୍କର କାରାବାସ— ଲବଣ କର ବୃଦ୍ଧି ରାଓଲେଟ୍ ଏକ୍ଟ ଓ ତୁଳାକର ରହିତ ରାସବିହାରୀ ଘୋଷଙ୍କ ମୃତ୍ୟୁ ।

୧୯୨୨ ଛାପାଖାନା ଆଇନର ପ୍ରତ୍ୟାହାର ଓ ବମ୍ବାଇରେ ଭୟାନକ ତୋଫାନ ।

୧୯୨୩ ମିସର ଦେଶର ସ୍ୱାଧୀନତା ଲାଭ । ବ୍ରହ୍ମଦେଶ ଗୋଟିଏ ପୃଥକ୍ ପ୍ରଦେଶ ହୋଇ ନୂତନ ସଂସ୍କାରର ଅଧୀନ ହେଲା ।

ଶ୍ରୀଯୁକ୍ତ ସି, ଆର୍, ଦାସଙ୍କ ନେତୃତ୍ୱରେ ସ୍ୱରାଜ୍ୟ ଦଳ କାଉନ୍ସିଲରେ ପ୍ରବେଶ କଲେ ଓ ୧୯୨୪ ମସିହା ବଜେଟରେ ରକ୍ଷିତ ବିଭାଗର ସମସ୍ତ ଓ ହସ୍ତାନ୍ତରିତ ବିଭାଗର କେତେକ ତଥା ମିନିଷ୍ଟରଙ୍କ ଦରମା ନାମଞ୍ଜୁର କରିଥିଲେ ।

୧୯୨୪ ଗ୍ରୀସ୍‌ରେ ସାଧାରଣ ତନ୍ତ୍ର ପ୍ରଚାର ।

୧୯୨୫ ଚିତ୍ତରଞ୍ଜନ ଦାସ ଓ ସୁରେନ୍ଦ୍ର ନାଥ ବାନର୍ଜିଙ୍କର ମୃତ୍ୟୁ ।

ମେଜର ଜେନେରେଲ ସ୍କିନ୍‌ଙ୍କ ସଭାପତିତ୍ୱରେ ଭାରତ ସେଣ୍ଡହର୍ଷ୍ଟ କମିଟି ଗଠିତ ହେଲା ।

୧୯୨୭-୩୦— ବ୍ୟୋମଯାନ ଡାକର ପ୍ରଚଳନ— ଅମୀର ଅମାନୁଲ୍ଲାଙ୍କ ସିଂହାସନ ଚ୍ୟୁତି—ସାରଦା ଆଇନ ପାଶ— ଲବଣ ଆଇନ ଅମାନ୍ୟ (୧୯୩୦) ନଜରବନ୍ଦରେ ମହାତ୍ମାଙ୍କୁ ରଖାଯିବା—ଗୋଲଟେବୁଲ ସଭା; ଗାନ୍ଧି ଇରୱଇନ୍ ପାକ୍ଟ—ସାଇମନ କମିଶନ ଆଗମନ—ଗୋପବନ୍ଧୁ ଦାସଙ୍କ ମୃତ୍ୟୁ ( ଓଡ଼ିଶା )। ( ସାମ୍ପ୍ରଦାୟିକ ବିବାଦ )

ଧନ କାର୍ପଣ୍ୟ ସେବା ଫଳେ ।

ମହାତ୍ମା ଗାନ୍ଧି ।



ଅରୁଣୋଦୟ ପ୍ରେସ, କଟକ ।

୧୯୧୬ — ନିଖିଳ ଭାରତ ସ୍ତ୍ରୀ ଶିକ୍ଷା ସମିତି ସ୍ଥାପିତ ହେଲା । ଅମୀର ଅମାନୁଲ୍ଲାଙ୍କ ଭାରତ ଆଗମନ । ସାଇମନ କମିସନଙ୍କ ଆଗମନ ।

୧୯୩୧—୨ୟ ଓ ୩ୟ ଗୋଲଟେବୁଲ ସଭା ଅର୍ଡିନାନ୍ସ ଜାରି; ବହୁ ବନ୍ଦୀ

୧୯୩୪—ବିହାର ଭୂମିକମ୍ପ, ମଧୁସୂଦନ ଦାସଙ୍କ ମୃତ୍ୟୁ, ମହାତ୍ମା ଗାନ୍ଧିଙ୍କର ଭାରତ ଭ୍ରମଣ, କଂଗ୍ରେସ ବ୍ୟବସ୍ଥାପକ ବୋର୍ଡ଼ ଗଠନ ।



## ହିନ୍ଦୁଯୁଗର ପ୍ରଧାନ ପ୍ରଧାନ ରାଜା ଓ ସେମାନଙ୍କର ସିଂହାସନାରୋହଣ କାଳ

ଖ୍ରୀ: ପୂ: ୫୮୨ { ବିମ୍ବିସାର / ପ୍ରସେନଜିତ୍
ଖ୍ରୀ: ପୂ: ୫୫୪ ଅଜାତଶତ୍ରୁ
ଖ୍ରୀ: ପୂ: ୩୫୦ ମହାପଦ୍ମନନ୍ଦ
ଖ୍ରୀ: ପୂ: ୩୨୧ ଚନ୍ଦ୍ରଗୁପ୍ତ ମୌର୍ଯ୍ୟ
ଖ୍ରୀ: ପୂ: ୨୯୮ ବିନ୍ଦୁସାର
ଖ୍ରୀ: ପୂ: ୨୭୩ ଅଶୋକ
ଖ୍ରୀ: ପୂ: ୧୮୪ ପୁଷ୍ପମିତ୍ର ( ଶୁଙ୍ଗ )
ଖ୍ରୀ: ପୂ: ୧୭୪ ଖାରବେଳ
ଖ୍ରୀ: ପୂ: ୭୨ ବାସୁଦେବ ( କାଣ୍ୱ )
ଖ୍ରୀ: ୭୮ କନିଷ୍କ ( କୁଶାଣ )
ଖ୍ରୀ: ୧୦୬ ଗୌତମୀପୁତ୍ର ସାତକର୍ଣ୍ଣୀ
ଖ୍ରୀ: ୩୨୦ ଚନ୍ଦ୍ରଗୁପ୍ତ ( ଗୁପ୍ତବଂଶର )
ଖ୍ରୀ: ୩୪୦ ସମୁଦ୍ରଗୁପ୍ତ
ଖ୍ରୀ: ୩୭୫ ଚନ୍ଦ୍ରଗୁପ୍ତ ଦ୍ୱିତୀୟ
ଖ୍ରୀ: ୪୧୩ କୁମାରଗୁପ୍ତ
ଖ୍ରୀ: ୪୫୩ ସ୍କନ୍ଦଗୁପ୍ତ
ଖ୍ରୀ: ୫୦୦ ତୋରମନ
ଖ୍ରୀ: ୫୨୦ ଯଶୋଧର୍ମନ
ଖ୍ରୀ: ୬୦୦ ଶଶାଙ୍କ
ଖ୍ରୀ: ୬୦୬ ହର୍ଷବର୍ଦ୍ଧନ
ଖ୍ରୀ: ୬୦୮ ପୁଲକେଶୀ ଦ୍ୱିତୀୟ
ଖ୍ରୀ: ୬୭୦ ଆଦିତ୍ୟସେନ ଏବଂ ମଗଧର ଗୁପ୍ତମାନେ
ଖ୍ରୀ: ୭୦୦ ଯଶୋବର୍ମନ
ଖ୍ରୀ: ୭୨୪ ଲଳିତାଦିତ୍ୟ ମୁକ୍ତାପୀଡ଼
ଖ୍ରୀ: ୭୭୫ ଧ୍ରୁବ ( ରାଷ୍ଟ୍ରକୂଟ ରାଜା )
ଖ୍ରୀ: ୭୯୩ ଗୋବିନ୍ଦ ତୃତୀୟ
ଖ୍ରୀ: ୭୮୫ ଧର୍ମପାଳ
ଖ୍ରୀ: ୮୩୦ ଦେବପାଳ
ଖ୍ରୀ: ୮୩୬ ଭୋଜ ( ଗୁର୍ଜର ପ୍ରତିହାର ବଂଶର ରାଜା )
ଖ୍ରୀ: ୮୯୦ ମହେନ୍ଦ୍ର ଗୁପ୍ତ ( ଏକନ )
ଖ୍ରୀ: ୯୫୦ ଧାଙ୍ଗ ( ଚନ୍ଦେଲ୍ଲ )
ଖ୍ରୀ: ୯୮୫ ରାଜାରାଜା
ଖ୍ରୀ: ୯୯୭ ସୁଲତାନ୍ ମାହମୁଦ
ଖ୍ରୀ: ୧୦୧୨ ରାଜେନ୍ଦ୍ରଚୋଳ
ଖ୍ରୀ: ୧୦୧୮ ଭୋଜ ( ପାରମାର ବଂଶର )
ଖ୍ରୀ: ୧୦୪୧ କର୍ଣ୍ଣ ( କାଳଚୁରି ବଂଶର )
ଖ୍ରୀ: ୧୦୭୬ ଅନନ୍ତବର୍ମଣ ଚୋଡ଼ଗଙ୍ଗ
ଖ୍ରୀ: ୧୦୭୬ ଦ୍ୱିତୀୟ ବିକ୍ରମାଦିତ୍ୟ ( ଚାଲୁକ୍ୟବଂଶର )
ଖ୍ରୀ: ୧୧୦୦ ବିଜୟସେନ୍
ଖ୍ରୀ: ୧୧୫୯ ବଲ୍ଲାଲସେନ୍
ଖ୍ରୀ: ୧୧୭୦ ଜୟଚନ୍ଦ୍ର
ଖ୍ରୀ: ୧୧୭୫ ଲକ୍ଷ୍ମଣସେନ
ଖ୍ରୀ: ୧୧୭୫ ପୃଥ୍ୱୀରାଜ
ଖ୍ରୀ: ୧୨୧୦ ଇଲ୍ତୁତମିଶ



## ବୈଦେଶିକ ଆକ୍ରମଣକାରୀଗଣ

୧—ପାରସ୍ୟର ଡାରିଅସଙ୍କ ସେନାପତି ( Scylax )
( ଖ୍ରୀ: ପୂ: ୫୩୦ )
୨—ଅଲେକ୍‌ଜାଣ୍ଡାର ( ଖ୍ରୀ: ପୂ: ୩୨୭ )
୩—ମିନାଣ୍ଡାର ( ଖ୍ରୀ: ପୂ: ୧୮୩ )
୪—ଶକ ଲୁଣ୍ଠନକାରୀଗଣ (ଖ୍ରୀ: ପୂ: ୨ୟ ଓ ୧ମ ଶତାବ୍ଦୀ)
୫—କୁଶାନଗଣ ( Under Kadphisas )
( ଖ୍ରୀ: ପୂ: ୧ମ ଶତାବ୍ଦୀ )
୬—ତୋରମାଣ ଓ ମିହିରକୁଳ ଅଧୀନରେ ହୂନ ଆକ୍ରମଣ
ମାନ ( ୫ମ ଓ ୬ଷ୍ଠ ଶତାବ୍ଦୀ )
୭—ମହମ୍ମଦ୍‌ବିନ୍ କାସିମଙ୍କର ସିନ୍ଧୁ ଲୁଣ୍ଠନ ( ୭୧୨ )
୮—ମାହାମୁଦ ଗଜନିଙ୍କ ଆକ୍ରମଣମାନ (୯୯୯ ରୁ ୧୦୨୫)
୯—ମହମ୍ମଦ ଘୋରିଙ୍କ ଅଧୀନରେ ଆକ୍ରମଣ (୧୧୯୩-୯୪)
୧୦—ଚେଙ୍ଗିଜ୍ ଖାଁ ଓ ଅନ୍ୟାନ୍ୟ ମଙ୍ଗୋଲ ନେତାଙ୍କର
ଭାରତ ଆକ୍ରମଣ ( ୧୩ଶ ଓ ୧୪ଶ ଶତାବ୍ଦୀ )
୧୧—ତୈମୁର ଆକ୍ରମଣ ( ୧୩୯୮ )
୧୨—ବାବରଙ୍କର ଆକ୍ରମଣ ଏବଂ ମୋଗଲଙ୍କର ଜୟ
( ୧୫୨୬ )
୧୩—ନାଦିର ସାହ ଆକ୍ରମଣ ( ୧୭୩୯ )
୧୪—ଅହମ୍ମଦ ସାହ ଅବଦାଲି ଆକ୍ରମଣ ( ୧୭୪୮-୬୫ )



## ଭାରତ ଇତିହାସରେ ଚୂଡ଼ାନ୍ତ ସମର

୧—କୁରୁକ୍ଷେତ୍ର ଯୁଦ୍ଧ ( ଖ୍ରୀ: ପୂ: ୯୫୦ )
୨—ହାଇଡାସ୍‌ପିସ୍ ଯୁଦ୍ଧ ( ,, ,, ୩୨୬ )
୩—କାରୁର ଯୁଦ୍ଧ ( ୫୩୦ ଖ୍ରୀଷ୍ଟାବ୍ଦ )
୪—ପେଶାବାର ନିକଟ ଯୁଦ୍ଧ ଓ
ଜୟପାଳଙ୍କ ପରାଜୟ ( ୧୦୦୧ )
୫—ପେଶାବାର ନିକଟ ଯୁଦ୍ଧ ଓ
ଅନନ୍ଦପାଳଙ୍କ ପରାଜୟ ( ୧୦୦୫ )
୬—ତରେନ ପ୍ରଥମ ଯୁଦ୍ଧ ( ୧୧୯୧ )
୭—ତରେନ୍ ଦ୍ୱିତୀୟ ଯୁଦ୍ଧ ( ୧୧୯୨ )
୮—ପ୍ରଥମ ପାନିପଥ ଯୁଦ୍ଧ ( ୧୫୨୬ )
୯—ଫତେପୁର ସିକ୍ରି ଯୁଦ୍ଧ ( ୧୫୨୭ )
୧୦—୨ୟ ପାନିପଥ ଯୁଦ୍ଧ ( ୧୫୫୬ )
୧୧—ତାଲିକୋଟ ଯୁଦ୍ଧ ( ୧୫୬୫ )
୧୨—ପଲାଶୀ ଯୁଦ୍ଧ ( ୧୭୫୭ )
୧୩—ୱାଣ୍ଡିୱାସ୍ ଯୁଦ୍ଧ ( ୧୭୬୦ )
୧୪—୩ୟ ପାନିପଥ ଯୁଦ୍ଧ ( ୧୭୬୧ )



## ଆର୍ଯ୍ୟାବର୍ତ୍ତ ଦେଶୀୟ ରାଜବଂଶାବଳୀ

( ରାଜପୁତାନା ଦେଶ ଉଦୟପୁର ରାଜ୍ୟର ପ୍ରଧାନ ନଗର ଚିତୋର ଠାରେ ଶ୍ରୀନାଥ ଦ୍ୱାରରୁ ବିଦ୍ୟାର୍ଥୀ ସମ୍ମିଳିତ "ହରିଶ୍ଚନ୍ଦ୍ର ଚନ୍ଦ୍ରିକା" ଓ "ମୋହନ ଚନ୍ଦ୍ରିକା" ନାମକ ପାକ୍ଷିକ ପତ୍ରିକାରୁ ଅନୁବାଦିତ )

ଶ୍ରୀମାନ୍ ମହାରାଜାଙ୍କ ସ୍ୱାୟମ୍ଭୁବ ମନୁ ଠାରୁ ମହାରାଜ ଯୁଧିଷ୍ଠିରଙ୍କ ପର୍ଯ୍ୟନ୍ତ ଇତିହାସ ମହାଭାରତାଦି ଗ୍ରନ୍ଥରେ ଲେଖା ଅଛି । ଶ୍ରୀମାନ୍ ମହାରାଜ ଯୁଧିଷ୍ଠିରଙ୍କ ଠାରୁ ମହାରାଜ ଯଶପାଳ ପର୍ଯ୍ୟନ୍ତ ଆର୍ଯ୍ୟ ରାଜାମାନଙ୍କ ନାମ ଓ ରାଜତ୍ୱକାଳ ତଳେ ଦିଆଗଲା । ସେମାନେ ଇନ୍ଦ୍ରପ୍ରସ୍ଥ ( ଦିଲ୍ଲୀ ) ରେ ରାଜତ୍ୱ କରୁଥିଲେ । ମୋଟରେ ୧୨୪ ଜଣ ରାଜା ୪୧୫୭ ବର୍ଷ ୯ ମାସ ୧୪ ଦିନ ରାଜଗାଦିରେ ବସିଥିଲେ ।

| | ବର୍ଷ | ମାସ | ଦିନ |
|---|---|---|---|
| ୧ । ଯୁଧିଷ୍ଠିର | ୩୬ | ୮ | ୨୫ |
| ୨ । ପରୀକ୍ଷିତ | ୬୦ | | |
| ୩ । ଜନ୍ମେଜୟ | ୮୪ | ୭ | ୨୩ |
| ୪ । ଅଶ୍ୱମେଧ | ୮୨ | ୮ | ୨୨ |
| ୫ । ଦ୍ୱିତୀୟ ରାମ | ୮୮ | ୨ | ୮ |
| ୬ । ଛତ୍ରମଲ | ୮୧ | ୧୧ | ୨୭ |
| ୭ । ଚିତ୍ରରଥ | ୭୫ | ୩ | ୧୮ |
| ୮ । ଦୁଷ୍ଟଶୈଲ୍ୟ | ୭୫ | ୧୦ | ୨୫ |
| ୯ । ଉଗ୍ରସେନ | ୭୮ | ୭ | ୨୧ |

ଉତ୍ତମ ସଙ୍ଗେ ସଙ୍ଗ ଯାଉ ।

| | ବର୍ଷ | ମାସ | ଦିନ |
|---|---|---|---|
| ୧୦ । ଶୂରସେନ | ୭୮ | ୭ | ୨୧ |
| ୧୧ । ଭୁବନପତି | ୬୯ | ୫ | ୫ |
| ୧୨ । ରଣଜିତ୍ | ୬୫ | ୧୦ | ୪ |
| ୧୩ । ରିକ୍ଷକ | ୬୪ | ୭ | ୪ |
| ୧୪ । ସୁଖଦେବ | ୬୨ | ୦ | ୨୪ |
| ୧୫ । ନରହରି ଦେବ | ୫୧ | ୧୦ | ୨ |
| ୧୬ । ସୁଚିରଥ | ୪୨ | ୧୧ | ୨ |
| ୧୭ । ଶୂରସେନ ୨ୟ | ୫୮ | ୧୦ | ୮ |
| ୧୮ । ପର୍ବତସେନ | ୫୫ | ୮ | ୧୦ |
| ୧୯ । ମେଧାବୀ | ୨୨ | ୧୦ | ୧୦ |
| ୨୦ । ସୋନଚୀର | ୫୦ | ୮ | ୨୧ |
| ୨୧ । ଭୀମ ଦେବ | ୪୭ | ୯ | ୨୦ |
| ୨୨ । ନୃହରି ଦେବ | ୪୫ | ୧୧ | ୨୩ |
| ୨୩ । ପୂର୍ଣ୍ଣମଲ୍ଲ | ୪୪ | ୮ | ୭ |
| ୨୪ । କରଦବୀ | ୪୪ | ୧୦ | ୮ |
| ୨୫ । ଅଲଂମିକ | ୫୦ | ୧୧ | ୮ |
| ୨୬ । ଉଦୟପାଳ | ୩୮ | ୯ | ୦ |
| ୨୭ । ଦୁବନ ମଲ୍ଲ | ୪୦ | ୧୦ | ୨୯ |
| ୨୮ । ଜମାତ | ୩୨ | ୦ | ୦ |
| ୨୯ । ଭୀମ ପାଳ | ୫୮ | ୫ | ୮ |
| ୩୦ । କ୍ଷେମକ | ୪୮ | ୧୧ | ୨୧ |
| ମୋଟ | ୧୭୭୦ | ୧୧ | ୧୦ |

( ରାଜା କ୍ଷେମକଙ୍କ ମନ୍ତ୍ରୀ ବିଶ୍ରବା ରାଜାଙ୍କୁ ମାରି ତାହାଙ୍କ ସ୍ଥାନରେ ୧୪ ପୁରୁଷ ପର୍ଯ୍ୟନ୍ତ ୫୦୦ ବର୍ଷ ୩ ମାସ ୧୬ ଦିନ ରାଜତ୍ୱ କଲେ । )

| | ବର୍ଷ | ମାସ | ଦିନ |
|---|---|---|---|
| ୧ । ବିଶ୍ରବା | ୧୭ | ୩ | ୨୯ |
| ୨ । ପୁରସେନୀ | ୪୨ | ୮ | ୨୧ |
| ୩ । ବୀରସେନୀ | ୫୨ | ୧୦ | ୭ |
| ୪ । ଅନଙ୍ଗଶାୟୀ | ୪୭ | ୮ | ୨୩ |
| ୫ । ହରିଜିତ୍ | ୩୫ | ୯ | ୧୭ |
| ୬ । ପରମ ସେନୀ | ୪୪ | ୨ | ୨୩ |
| ୭ । ସୁଖ ପାତାଳ | ୩୦ | ୨ | ୨୧ |

| | ବର୍ଷ | ମାସ | ଦିନ |
|---|---|---|---|
| ୮ । କଦ୍ରୁତ | ୪୨ | ୯ | ୨୪ |
| ୯ । ସଙ୍କ | ୩୨ | ୨ | ୧୪ |
| ୧୦ । ଅମରଚୂଡ଼ | ୨୭ | ୩ | ୧୬ |
| ୧୧ । ଅମୀପାଳ | ୨୨ | ୧୧ | ୨୫ |
| ୧୨ । ଦଶରଥ | ୨୫ | ୪ | ୧୨ |
| ୧୨ । ବୀରସାଳ | ୩୧ | ୮ | ୧୪ |
| ୧୪ । ବୀରସାଳ ସେନ | ୪୭ | ୦ | ୧୪ |

( ରାଜା ବୀରସାଳ ସେନଙ୍କୁ ପ୍ରଧାନମନ୍ତ୍ରୀ ବୀର ମହାମାରୁ ୧୬ ପୁରୁଷ ପର୍ଯ୍ୟନ୍ତ ୪୪୫ ବର୍ଷ ୫ ମାସ ୩ ଦିନ ରାଜତ୍ୱ କରିଥିଲେ )

| | ବର୍ଷ | ମାସ | ଦିନ |
|---|---|---|---|
| ୧ । ବୀରମହା | ୩୫ | ୧୦ | ୮ |
| ୨ । ଅଜିତ ସିଂହ | ୨୭ | ୭ | ୧୯ |
| ୩ । ସର୍ବଦତ୍ତ | ୨୮ | ୩ | ୧୦ |
| ୪ । ଭୁବନ ପତି | ୧୫ | ୪ | ୧୦ |
| ୫ । ବୀରସେନ | ୨୧ | ୨ | ୧୩ |
| ୬ । ମହୀପାଳ | ୪୦ | ୮ | ୬ |
| ୭ । ଶବ୍ଦପାଳ | ୨୬ | ୪ | ୩ |
| ୮ । ସଂଗରାଜ | ୧୭ | ୨ | ୧୦ |
| ୯ । ତେଜପାଳ | ୨୮ | ୧୧ | ୧୦ |
| ୧୦ । ମାଣିକଚନ୍ଦ | ୩୭ | ୭ | ୨୧ |
| ୧୧ । କାମ ସେନୀ | ୪୨ | ୫ | ୧୦ |
| ୧୨ । ଶତ୍ରୁ ମର୍ଦ୍ଦନ | ୮ | ୧୧ | ୧୩ |
| ୧୩ । ଜୀବନ ଲୋକ | ୨୮ | ୯ | ୧୭ |
| ୧୪ । ହରିରାବ | ୨୬ | ୧୦ | ୨୯ |
| ୧୫ । ବୀରସେନ ୨ୟ | ୩୫ | ୨ | ୨୦ |
| ୧୬ । ଆଦିତ୍ୟକେତୁ | ୨୩ | ୧୧ | ୧୩ |

( ମଗଧ ଦେଶ ରାଜା ଆଦିତ୍ୟ କେତୁଙ୍କୁ ପ୍ରୟାଗରାଜା ଧନ୍ଧୁର ନାଶ କରି ତାହାଙ୍କ ସ୍ଥାନରେ ୯ ପୁରୁଷ ପର୍ଯ୍ୟନ୍ତ ୩୭୪ ବର୍ଷ ୧୧ ମାସ ୨୬ ଦିନ ରାଜତ୍ୱ କଲେ । )

| | ବର୍ଷ | ମାସ | ଦିନ |
|---|---|---|---|
| ୧ । ଧନ୍ଧୁର | ୪୨ | ୭ | ୨୪ |
| ୨ । ମହର୍ଷି | ୪୧ | ୨ | ୨୯ |
| ୩ । ସନରଞ୍ଜୀ | ୫୦ | ୧୦ | ୧୯ |

| | ବର୍ଷ | ମାସ | ଦିନ |
|---|---|---|---|
| ୪ । ମହାଯୁଦ୍ଧ | ୩୦ | ୩ | ୮ |
| ୫ । ଦୁର୍ ନାଥ | ୨୮ | ୫ | ୨୫ |
| ୬ । ଜୀବନ ରାଜ | ୪୫ | ୨ | ୫ |
| ୭ । ରୁଦ୍ରସେନ | ୪୭ | ୪ | ୨୯ |
| ୮ । ଆସ୍ରଳକ | ୫୨ | ୧୦ | ୮ |
| ୯ । ରାଜପାଳ | ୩୬ | ୦ | ୦ |

( ରାଜା ରାଜପାଳଙ୍କୁ ସାମନ୍ତ ରାଜ ମହାପାଳ ମାରିଦେଇ ନିଜେ ୧୪ ବର୍ଷ ରାଜତ୍ୱ କଲେ । ଅବନ୍ତିକା ( ଉଜ୍ଜୟିନୀ ) ରାଜା ବିକ୍ରମାଦିତ୍ୟ ଯୁଦ୍ଧକରି ମହାପାଳ ରାଜାଙ୍କୁ ମାରି ତାଙ୍କ ରାଜ୍ୟରେ ୯୩ ବର୍ଷ ରାଜତ୍ୱ କଲେ । ଶାଳବାହନ ରାଜାର ମନ୍ତ୍ରୀ ପୈଠଣର ସମୁଦ୍ରପାଳ ଯୋଗୀ ନାମକ ବ୍ୟକ୍ତି ଦ୍ୱାରା ବିକ୍ରମାଦିତ୍ୟ ହତ ହେଲେ । ସମୁଦ୍ରପାଳ ବଂଶ ୧୬ ପୁରୁଷ ପର୍ଯ୍ୟନ୍ତ ୩୭୨ ବର୍ଷ ୪ ମାସ ୨୭ ଦିନ ରାଜତ୍ୱ କଲେ । )

| | ବର୍ଷ | ମାସ | ଦିନ |
|---|---|---|---|
| ୧ । ସମୁଦ୍ରପାଳ | ୫୪ | ୨ | ୨୦ |
| ୨ । ଚନ୍ଦ୍ରପାଳ | ୩୬ | ୫ | ୪ |
| ୩ । ସହାୟ ପାଳ | ୧୧ | ୪ | ୧୧ |
| ୪ । ଦେବପାଳ | ୨୭ | ୭ | ୨୮ |
| ୫ । ନରସିଂହ ପାଳ | ୧୮ | ୦ | ୨୦ |
| ୬ । ସାମପାଳ | ୨୭ | ୧ | ୧୭ |
| ୭ । ରଘୁପାଳ | ୨୨ | ୩ | ୨୫ |
| ୮ । ଗୋବିନ୍ଦପାଳ | ୨୭ | ୧ | ୧୭ |
| ୯ । ଅମୃତପାଳ | ୩୬ | ୧୦ | ୧୩ |
| ୧୦ । ବଳୀପାଳ | ୧୨ | ୫ | ୨୭ |
| ୧୧ । ମହୀପାଳ | ୧୩ | ୮ | ୪ |
| ୧୨ । ହରିପାଳ | ୧୪ | ୮ | ୪ |
| ୧୩ । ସୀସପାଳ (ବା) ଭୀମପାଳ | ୧୧ | ୧୦ | ୩୧ |
| ୧୪ । ମଦନପାଳ | ୧୭ | ୧୦ | ୧୯ |
| ୧୫ । କର୍ମପାଳ | ୧୬ | ୨ | ୨ |
| ୧୬ । ବିକ୍ରମପାଳ | ୨୪ | ୧୧ | ୧୩ |

( ରାଜା ବିକ୍ରମପାଳ ପଶ୍ଚିମଦେଶ ରାଜା ମଲୁଖ ଚନ୍ଦ୍ର ବେହେରାଙ୍କ ବିରୋଧରେ ଯୁଦ୍ଧଯାତ୍ରା କରି ଯୁଦ୍ଧରେ ନିହତ ହେଲେ । ମଲୁଖଚନ୍ଦ୍ର ବଂଶ ୧୦ ପୁରୁଷ ପର୍ଯ୍ୟନ୍ତ ୧୯୧ ବର୍ଷ ୧ ମାସ ୧୬ ଦିନ ଇନ୍ଦ୍ରପ୍ରସ୍ଥରେ ରାଜତ୍ୱ କଲେ )

| | ବର୍ଷ | ମାସ | ଦିନ |
|---|---|---|---|
| ୧ । ମଲୁଖଚନ୍ଦ୍ର | ୫୪ | ୨ | ୧୦ |
| ୨ । ବିକ୍ରମଚନ୍ଦ୍ର | ୧୨ | ୭ | ୧୨ |
| ୩ । ଅମୀନଚନ୍ଦ୍ର (ବା) ମାନକଚନ୍ଦ୍ର ପଦ | ୧୦ | ୦ | ୫ |
| ୪ । ରାମଚନ୍ଦ୍ର | ୧୩ | ୧୧ | ୮ |
| ୫ । ହରିଚନ୍ଦ୍ର | ୧୪ | ୯ | ୨୪ |
| ୬ । କଲ୍ୟାଣ ଚନ୍ଦ୍ର | ୧୦ | ୫ | ୪ |
| ୭ । ଭୀମଚନ୍ଦ୍ର | ୧୬ | ୨ | ୯ |
| ୮ । ଲୋଭିଚନ୍ଦ୍ର | ୨୬ | ୩ | ୨୨ |
| ୯ । ଗୋବିନ୍ଦ ଚନ୍ଦ୍ର | ୩୧ | ୭ | ୧୨ |
| ୧୦ । ରାଣୀ ପଦ୍ମାବତୀ | ୧ | ୦ | ୦ |

( ଗୋବିନ୍ଦଚନ୍ଦ୍ରଙ୍କ ପତ୍ନୀ ରାଣୀ ପଦ୍ମାବତୀ ସନ୍ତାନ ବିହୀନ ହୋଇ ମରିଯିବାରୁ ମନ୍ତ୍ରୀମାନେ ଏକମତ ହୋଇ ହରିପ୍ରେମ ନାମକ ଏକ ବୈରାଗୀକ ରାଜା କଲେ । ତାଙ୍କ ବଂଶ ୪ ପୁରୁଷ ପର୍ଯ୍ୟନ୍ତ ୫୦ ବର୍ଷ ୨୧ ଦିନ ରାଜତ୍ୱ କଲେ )

| | ବର୍ଷ | ମାସ | ଦିନ |
|---|---|---|---|
| ୧ । ହରିପ୍ରେମ | ୭ | ୫ | ୧୬ |
| ୨ । ଗୋବିନ୍ଦ ପ୍ରେମ | ୨୦ | ୧ | ୮ |
| ୩ । ଗୋପାଳ ପ୍ରେମ | ୧୯ | ୭ | ୨୮ |
| ୪ । ମହାବାହୁ | ୬ | ୮ | ୨୯ |

( ରାଜା ମହାବାହୁ ରାଜ୍ୟ ତ୍ୟାଗକରି ତପସ୍ୟା କରିବା ପାଇଁ ବନକୁ ବାହାରି ଗଲେ । ବଙ୍ଗଳା ଦେଶ ରାଜା ଆଧି ସେନ ଆସି ଇନ୍ଦ୍ରପ୍ରସ୍ଥରେ ରାଜତ୍ୱ କଲେ । ଆଧି ସେନ ବଂଶ ୧୨ପୁରୁଷ ପର୍ଯ୍ୟନ୍ତ ୧୫୧ ବର୍ଷ ୧୧ ମାସ ୨ ଦିନ ରାଜତ୍ୱ କଲେ )

| | ବର୍ଷ | ମାସ | ଦିନ |
|---|---|---|---|
| ୧ । ଆଧି ସେନ | ୧୮ | ୫ | ୨୧ |
| ୨ । କାଲବଲ ସେନ | ୧୨ | ୪ | ୨ |
| ୩ । କେଶବ ସେନ | ୫୧ | ୭ | ୧୨ |
| ୪ । ମାଧ ସେନ | ୧୨ | ୪ | ୨ |
| ୫ । ମୟୁର ସେନ | ୨୦ | ୧୧ | ୨୭ |

ସ୍ଥାନ ସଙ୍କେତେ ସ୍ଥାନଗତ ।

| | ବର୍ଷ | ମାସ | ଦିନ |
|---|---|---|---|
| ୬ । ଶ୍ରୀମ ସେନ | ୫ | ୧୦ | ୯ |
| ୭ । କଲ୍ୟାଣ ସେନ | ୪ | ୮ | ୨୧ |
| ୮ । ହରି ସେନ | ୧୨ | ୦ | ୨୫ |
| ୯ । କ୍ଷେମ ସେନ | ୮ | ୧୧ | ୧୫ |
| ୧୦ । ନାରାୟଣ ସେନ | ୨ | ୨ | ୨୯ |
| ୧୧ । ଲକ୍ଷ୍ମୀ ସେନ | ୨୬ | ୧୦ | ୦ |
| ୧୨ । ଦାମୋଦର ସେନ | ୧୧ | ୫ | ୧୯ |

( ରାଜା ଦାମୋଦର ସେନ ରାଜପୁରୁଷମାନଙ୍କୁ ବହୁତ ପୀଡ଼ା ଦେଲେ । ସାପ ସିଂହ ନାମକ ରାଜପୁରୁଷ ସୈନ୍ୟ ସଂଗ୍ରହ କରି ଯୁଦ୍ଧରେ ରାଜାଙ୍କୁ ମାରି ନିଜେ ରାଜ୍ୟ ପାଳନ କଲେ । ତାହାଙ୍କ ବଂଶ ୬ ପୁରୁଷ ପର୍ଯ୍ୟନ୍ତ ୧୦୭ ବର୍ଷ ୬ ମାସ ୨୨ ଦିନ ରାଜତ୍ୱ କଲେ )

| | ବର୍ଷ | ମାସ | ଦିନ |
|---|---|---|---|
| ୧ । ସାପ ସିଂହ | ୧୭ | ୧ | ୨୬ |
| ୨ । ରାଜା ସିଂହ | ୧୪ | ୫ | ୦ |
| ୩ । ରଣ ସିଂହ | ୯ | ୧ | ୧୧ |
| ୪ । ନର ସିଂହ | ୪୫ | ୦ | ୧୫ |
| ୫ । ହରି ସିଂହ | ୧୩ | ୨ | ୨୯ |
| ୬ । ଜୀବନ ସିଂହ | ୮ | ୦ | ୧ |

ରାଜା ଜୀବନସିଂହ କେ ଜାଣି କୌଣସି କାରଣରୁ ଅପଣାର ସବୁ ସେନା ଉତ୍ତର ଦେଶକୁ ପଠାଇ ଦେଇଥିଲେ । ବୈରାଟ ରାଜା ପୃଥ୍ୱୀରାଜ ଚୌହାନ ଏହା ଶୁଣିପାରି ଜୀବନ ସିଂହ ରାଜଧାନୀ ଆକ୍ରମଣ କଲେ ଏବଂ ଯୁଦ୍ଧରେ ରାଜାଙ୍କୁ ବଧ କରି ଇନ୍ଦ୍ରପ୍ରସ୍ଥରେ ରାଜା ହେଲେ । ସେହି ଚୌହାନ ବଂଶ ୫ ପୁରୁଷ ପର୍ଯ୍ୟନ୍ତ ୮୬ ବର୍ଷ ଓ ୨୦ ଦିନ ରାଜତ୍ୱ କଲେ ।

| | ବର୍ଷ | ମାସ | ଦିନ |
|---|---|---|---|
| ୧ । ପୃଥ୍ୱୀରାଜ | ୧୨ | ୨ | ୧୯ |
| ୨ । ଅଭୟ ପାଳ | ୧୪ | ୫ | ୧୭ |
| ୩ । ଦୁର୍ଜନ ପାଳ | ୧୦ | ୪ | ୧୪ |
| ୪ । ଉଦୟ ପାଳ | ୧୧ | ୭ | ୩ |
| ୫ । ଯଶ ପାଳ | ୩୭ | ୪ | ୨୭ |

ଗଜନି ସୁଲତାନ ସାହାବୁଦ୍ଦିନ ଘୋରି (ମହମ୍ମଦ ଘୋରି) ରାଜା ଯଶପାଳ ବିରୋଧରେ ଯୁଦ୍ଧଯାତ୍ରା କରି ଯୁଦ୍ଧରେ ରାଜାଙ୍କୁ ପରାଜିତ କଲେ ଏବଂ ପ୍ରୟାଗ କେଲ୍ଲାରେ ବନ୍ଦୀ ରଖିଲେ । ପୁଣି ବିକ୍ରମ ୧୨୪୯ ସାଲରେ ନିଜେ ଇନ୍ଦ୍ରପ୍ରସ୍ଥରେ ରାଜା ହେଲେ । ମୁସଲମାନ ବଂଶରୁ ୫୩ ଜଣ ୭୫୪ ବର୍ଷ ୧ ମାସ ଓ ୧୭ ଦିନ କ୍ରମାଗତ ରାଜତ୍ୱ କଲେ । ଅନ୍ୟାନ୍ୟ ଇତିହାସରେ ଲେଖାଅଛି ମହାରାଜ ପୃଥ୍ୱୀରାଜ ବିରୋଧରେ ସୁଲତାନ ସାହାବୁଦ୍ଦିନ୍ ଘୋରି ଅନେକ କାଳ ପରାଜିତ ହୋଇ ଫେରି ଯାଇଥିଲେ । ୧୨୪୯ ବିକ୍ରମାବ୍ଦରେ ପୃଥ୍ୱୀରାଜ ଲୋକମାନଙ୍କ ମଧ୍ୟରେ ପରସ୍ପର ଦ୍ୱନ୍ଦ୍ୱ କଳହ ହେବା କାରଣରୁ ସେ ପୁନଶ୍ଚ ଆସି ରାଜାଙ୍କୁ ଯୁଦ୍ଧରେ ଅନ୍ଧ କରିଦେଇ ନିଜେ ଇନ୍ଦ୍ରପ୍ରସ୍ଥରେ ରାଜା-ହେଲେ । ୪୫ ଜଣ ମୁସଲମାନ ରାଜା ୬୩୧୩ ବର୍ଷ ରାଜତ୍ୱ କଲେ ।

---

## ବ୍ରିଟିଶ୍ ନିକଟରେ ଭାରତୀୟ ଶକ୍ତିପୁଞ୍ଜର ବଶବର୍ତ୍ତିତା ।

### ୧୭୪୮—୧୮୫୭

| | |
|---|---|
| ବଙ୍ଗର ନବାବ ... ... | ( ୧୭୫୭-୭୨ ) |
| ଅଯୋଧ୍ୟାର ଉଜୀର | ୧୭୬୫ |
| „ „ ଶକ୍ତିଲୋପ ... | ୧୮୫୬ |
| ଟିପୁ ଅଧୀନରେ ମହୀଶୂର ... | ୧୭୯୯ |
| ନିଜାମଙ୍କର ବଶ୍ୟତା ଓ କର୍ଣ୍ଣାଟର ସଂଯୋଗ | ୧୮୦୧ |
| ଗାଇକୁଆରଙ୍କ ବଶ୍ୟତା ... | ୧୮୦୧ |
| „ ଶକ୍ତିଲୋପ | ୧୮୧୮ |
| ହୋଲକାରଙ୍କ ବଶ୍ୟତା | ୧୮୧୮ |
| ସିନ୍ଧିଆଙ୍କ ବଶ୍ୟତା ... | ୧୮୪୨ |
| ଭରତପୁରର ଜାଠମାନଙ୍କର ବଶ୍ୟତା | ୧୮୨୪ |
| ସିନ୍ଧୁ ଅମୀରଙ୍କ ବଶ୍ୟତା ... | ୧୮୩୯ |
| ସିନ୍ଧୁ ସଂଯୋଗ ... | ୧୮୪୨ |
| ଶିଖମାନଙ୍କର ପତନ | ୧୮୪୮ |



ଇତି କଳିଯୁଗ ଯଦୁବଂଶ ॥

# ମୁସଲମାନ ରାଜତ୍ୱ

## (୧) ଦାସ ବଂଶ—

(୧୨୦୬—୧୨୯୦)

୧—କୁତବୁଦ୍ଦିନ (୧୨୦୬)




## (୨) ଖିଲିଜ ବଂଶ—

(୧୨୯୦—୧୩୨୦)

୧—ଜଲାଲୁଦ୍ଦିନ ଖିଲଜ (୧୨୯୦)
୨—ଅଲାଉଦ୍ଦିନ ଖିଲଜ (ପୂର୍ବର ନ ୧ ମ୍ବର) (୧୨୯୬)
୩—ନ ୨ ମ୍ବର ଗୋଟିଏ ଶିଶୁପୁତ୍ର (ଢ ୩୫ ନ)
୪—କୁତବୁଦ୍ଦିନ କମ୍ବା ମୋବାରଖ୍‌ଖାଁ ନ ୨ମ୍ବର ପୁତ୍ର (୧୩୧୬)
୫—ଖୁସ୍ରୁ (୧୩୨୦)

## (୩) ଟୋଗଲକ ବଂଶ—

(୧୩୨୧—୧୪୧୪)

୧—ଗିଅସୁଦ୍ଦିନ ଟୋଗଲକ (୧୩୨୦)
୨—ମହମ୍ମଦ ଟୋଗଲକ୍ (୧୩୨୫)
୩—ଫିରୋଜ ଟୋଗଲକ୍ ନ୨ମ୍ବର (Cousin) (୧୩୫୧)

(ପିତୁଳା ପର କେତେଗୁଡ଼ିଏ ରାଜା ସିଂହାସନ ଅବେହଣ କରିଥିଲେ)

[illegible]

# ମୁସଲମାନ ରାଜାଙ୍କର ବଂଶାବଳୀ

## ୪—ସୟଦ ବଂଶ

( ୧୪୧୪—୧୪୫୦ )

ଖିଜର ଖାଁ ଏବଂ ତାଙ୍କର ୪ ଜଣ ଉତ୍ତରାଧିକାରୀ ।

## ୫—ଲୋଦିବଂଶ ।

( ୧୪୫୦—୧୫୨୬ )

୧—ବହ୍ଲୋଲ ଲୋଦ୍ଧ ( ୧୪୫୦ )

୨—ସିକନ୍ଦର ଲୋଦ୍ଧ—୧ ନମ୍ବରର ପୁତ୍ର ( ୧୪୮୯ )

୩—ଇବ୍ରାହିମ ଲୋଦ୍ଧ—୨ ନମ୍ବର ପୁତ୍ର ( ୧୫୧୭ )

## ୬—ମୋଗଲ୍ ବଂଶ

( ୧୫୨୬—୧୭୦୪ )




ଜନ୍ମତ ଖେଳ ନ କରିବ ॥




*—ଏମାନେ ନାମ ମାତ୍ର ରାଜା ଥିଲେ ।

# ମରହଟ୍ଟା ବଂଶାବଳୀ




# ପେଶବା ବଂଶାବଳୀ

୧—ବାଲାଜୀ ବିଶ୍ୱନାଥ (୧୭୧୪)

- ବାଜୀରାଓ (୧୭୨୦)
  - ୩ ବାଲାଜୀ ରାଓ (୧୭୪୦)
    - ବିଶ୍ୱାସ ରାଓ
    - ୪ ମାଧବ ରାଓ (୧୭୬୧
    - ୫ ନାରାୟଣରାଓ (୧୭୭୨)
      - ୭ ମାଧବରାଓ ନାରାୟଣ (୧୭୭୪)
  - ୬ ରଘୁନାଥ ରାଓ (ରାଘବ) (୧୭୭୩)
    - ଅମୃତ ରାଓ
    - ୮ ବାଜୀରାଓ ୨ୟ (୧୭୯୬)
      - ନାନାସାହେବ
    - ଚିମନାଜୀ ଅପ୍ପା
- ଚିମନାଜୀ ଅପ୍ପା
  - ସଦାଶିବରାଓ ଭାଉ

ହର ଆଣ୍ଡସ୍କ କର ଚଲେ ।

# ଶିଖ

| ଶିଖ ଗୁରୁ | ଗୁରୁଙ୍କ ପରେ ଶିଖ ନେତା | ଲାହୋରର ଶିଖ ଶାସକ ବଂଶ |
|---|---|---|
| ୧—ବାବା ନାନକ | ବୈରାଗୀ ବନ୍ଦା | ରେଞ୍ଜୁ ସିଂହ |
| ୨—ଅଙ୍ଗଦ | ଯଶ ସିଂ | ମହା ସିଂହ |
| ୩—ଅମର ଦାସ | Leaders of Misls | ରଣଜିତ୍ ସିଂହ |
| ୪—ରାମଦାସ | ସୁକର ଚକିଆ | ଖରକ ସିଂହ |
| ୫—ଅର୍ଜୁନ | ଭଙ୍ଗି | ନୌ ନେହାଲ ସିଂହ |
| ୬—ହରି ଗୋବିନ୍ଦ | କହ୍ନିଆ | ଶେର୍ ସିଂହ |
| ୭—ହର ରାୟ | ଫୁଲକିଆ | ଦୁଲିପ ସିଂହ |
| ୮—ହର୍କିଷନ | ଅହ୍ଲୁଓ୍ୱାଲିଆ | |
| ୯—ତେଜ୍ ବାହାଦୁର | | |
| ୧୦—ଗୁରୁ ଗୋବିନ୍ଦ | | |

# ବ୍ରିଟିଶ ଯୁଗ

## (୧) ବଙ୍ଗର ଗଭର୍ଣ୍ଣର ଜେନେରେଲ ( ରେଗୁଲେଟିଂ ଏକ୍ଟ ଖ୍ରୀ ୧୭୭୩ )

| | | |
|---|---|---|
| ଖ୍ରୀ : ୧୭୭୪— | ଓ୍ୱାରେନ ହେଷ୍ଟିଙ୍ଗସ୍ | ( ୨୦।୧୦।୧୭୭୪ ରୁ ୧।୨।୧୭୮୫ ) |
| ଖ୍ରୀ : ୧୭୮୫ | ସର୍ଜନ୍ ମେକଫରସନ୍ | ( ୧।୨।୧୭୮୫ ରୁ ୧୨।୯।୧୭୮୬ ) |
| ଖ୍ରୀ : ୧୭୮୬ | ଅର୍ଲ ( ମାର୍କୁଇସ ) କର୍ଣ୍ଣଓ୍ୱାଲିସ | ( ୧୨।୯।୧୭୮୬ ରୁ ୧୦।୧୦।୧୭୯୩ ) |
| ଖ୍ରୀ : ୧୭୯୩ | ସର୍ ଜନ୍ ସୋର | ( ୨୮।୧୦।୧୭୯୩ ରୁ ୧୨।୩।୧୭୯୮ ) |
| ଖ୍ରୀ : ୧୭୯୮ | ସର୍ ଏଲ୍ୟୋରଡ଼ କ୍ଲାର୍କ (ଅସ୍ଥାୟୀ) | ( ୧୭।୩।୧୭୯୮ ରୁ ୧୭।୫।୧୭୯୮ ) |
| | ଅର୍ଲ ଅବ୍ ମର୍ଣ୍ଣିଙ୍ଗଟନ | ( ୧୮।୫।୧୭୯୮ ରୁ ୩୦।୨।୧୮୦୫ ) |
| ଖ୍ରୀ : ୧୭୯୮ | ମାରକୁଇସ୍ ଅବ୍ ଓ୍ୱେଲେସଲି | |
| ଖ୍ରୀ : ୧୮୦୫ | ମାର୍କୁଇସ୍ ଅବ୍ କର୍ଣ୍ଣଓ୍ୱାଲିସ ( ଦ୍ୱିତୀୟଥର ) | ୩୦-୭-୧୮୦୫ |
| ଖ୍ରୀ : ୧୮୦୫ | ସର୍ ଜର୍ଜ ବାର୍ଲୋ ( ଅସ୍ଥାୟୀ ) | ( ୧୦।୧୦।୧୮୦୫ ରୁ ୩୧।୭।୧୮୦୭ |
| ଖ୍ରୀ : ୧୮୦୭ | ଅର୍ଲ ଅବ୍ ମିଣ୍ଟୋ ( ପ୍ରଥମ ) | ( ୩୧।୭।୧୮୦୭ ରୁ ୪।୧୦।୧୮୧୩ |
| ଖ୍ରୀ : ୧୮୧୩ | ମାରକୁଇସ୍ ଅଫ ହେଷ୍ଟିଙ୍ଗ୍ସ୍ | ( ୪।୧୦।୧୮୧୩ ରୁ ୯।୧।୧୮୨୩ ) |

ବୃକ୍ଷର ତଳେ ଯେତେ ଅଛି ।

| | | |
|---|---|---|
| ଖ୍ରୀ : ୧୮୨୩ | ଜନ୍ ଆଡ଼ାମ | ( ୯।୧।୧୮୨୩ ରୁ ୧।୮।୧୮୨୩ ) |
| ଖ୍ରୀ : ୧୮୨୩ | ବେରନ ( ଆର୍ଲ ) ଆମହର୍ଷ୍ଟ | ( ୧।୮।୧୮୨୩ ରୁ ୧୦।୩।୧୮୨୮ ) |
| ଖ୍ରୀ : ୧୮୨୮ | ଉଇଲ୍ୟମ୍ ବଟରୱର୍ଥ ବେଲ (ଅସ୍ଥାୟୀ) | ( ୧୩।୩।୧୮୨୮ ରୁ ୪।୭।୧୮୨୮ ) |
| ଖ୍ରୀ : ୧୮୨୮ | ଲର୍ଡ ଉଇଲ୍ୟମ୍ କେଭେଣ୍ଡିଶ୍ ବେଣ୍ଟିକ୍ | |

## (୨) ଭାରତର ଗଭର୍ଣ୍ଣର ଜେନେରେଲ

( ସନ ୧୮୩୩ ମସିହାର ଚାର୍ଟର ଏକ୍ଟ ଅନୁଯାୟୀ କାର୍ଯ୍ୟ କାଳ )

| | | | |
|---|---|---|---|
| | ଖ୍ରୀ : ୧୮୩୩ | ଲର୍ଡ ଉଇଲ୍ୟମ୍ କେଭେଣ୍ଡିଶ୍ ବେଣ୍ଟିକ | ୨୦।୩।୧୮୩୫ |
| ମାର୍ଚ୍ଚ, ୨୦ | ଖ୍ରୀ : ୧୮୩୫ | ସର୍ ଚାର୍ଲ୍ସ ( ଲର୍ଡ ) ମେଟ୍‌କାଫ୍ | ୪।୩।୧୮୩୬ |
| ମାର୍ଚ୍ଚ, ୪ | ଖ୍ରୀ : ୧୮୩୬ | ବେରନ୍ ( ଆର୍ଲ ଅବ୍ ) ଅକ୍‌ଲାଣ୍ଡ | ୨୮।୨।୧୮୪୨ |
| ଫେବୃୟାରୀ ୨୮ | ଖ୍ରୀ : ୧୮୪୨ | ବେରନ୍ ( ଆର୍ଲ ଅଫ୍ ) ଏଲେନ୍‌ବରୋ | ୨୩।୬।୧୮୪୪ |
| ଜୁଲାଇ, ୨୩ | ଖ୍ରୀ : ୧୮୪୪ | ସର୍ ହେନେରୀ ( ଭାଇକାଉଣ୍ଟ ) ହାର୍ଡିଞ୍ଜ | ୧୨।୧।୧୮୪୮ |
| ଜାନୁଆରୀ, ୧୨ | ଖ୍ରୀ : ୧୮୪୮ | ଆର୍ଲ ( ମାରକୁଇସ୍ ) ଅଫ୍ ଡେଲହାଉସି | ୨୯।୨।୧୮୫୬ |
| ଫେବୃୟାରୀ, ୨୯ | ଖ୍ରୀ : ୧୮୫୬ | ଭାଇକାଉଣ୍ଟ ( ଆର୍ଲ ) କେନିଙ୍ଗ | — |

## ମହାରାଣୀ ଭିକ୍‌ଟୋରିଆଙ୍କ ଘୋଷଣାପତ୍ର

( ସନ ୧୮୫୮ ମସିହା ନଭେମ୍ବର ୧ ତାରିଖ )

"ମହାରାଣୀ ଭିକ୍ଟୋରିଆ ଆଜଠାରୁ ଭାରତର ଶାସନ ଭାର ନିଜହାତରେ ଗ୍ରହଣ କଲେ । ଆଜଠାରୁ ଭାରତର ଲୋକେ ଗୁଣବାନ୍ ହେଲେ, ଜାତି, ଧର୍ମ ଓ ବର୍ଣ୍ଣ ନିର୍ବିଶେଷରେ ସରକାରୀ କାର୍ଯ୍ୟରେ ନିଯୁକ୍ତ ହୋଇପାରିବେ । କମ୍ପାନୀଙ୍କ ଶାସନ କାଳରେ ଯାହାଙ୍କ ସଙ୍ଗରେ ଯେପରି ସନ୍ଧି କିମ୍ବା ବନ୍ଦୋବସ୍ତ ହୋଇଅଛି ତାହା ସେହିପରି ରହିବ । ସରକାର ବାହାଦୁର ପ୍ରଜାଙ୍କ ଧର୍ମରେ ହସ୍ତକ୍ଷେପ କରିବେ ନାହିଁ । ଭାରତର ପୁରାତନ ରୀତି, ନୀତି, ଆଚାର, ବ୍ୟବହାର ପ୍ରତି ସମ୍ମାନ ପ୍ରଦର୍ଶନ କରାଯିବ । ନ୍ୟାୟ ବ୍ରିଟିଶ ଶାସନର ମୂଳମନ୍ତ୍ର ହେବ । ଦେଶୀୟ ରାଜାମାନେ ଅପତ୍ୟହୀନ ହେଲେ ପୋଷ୍ୟପୁତ୍ର ଗ୍ରହଣ କରି ପାରିବେ ।"



## ଭାରତ ସମ୍ରାଟଙ୍କ ବଂଶାବଳି

ମହାରାଣୀ ଭିକ୍ଟୋରିଆ ୧୮୧୭ ମସିହା ମଇମାସ ୨୪ ତାରିଖରେ ଜାତ ହୋଇଥିଲେ ଏବଂ ୧୮୩୭ ମସିହା ଜୁନମାସ ୨୦ ରିଖରେ ସିଂହାସନାରୋହଣ କଲେ । ୧୮୪୦ ମସିହା ଫେବୃୟାରୀ ମାସ ୧୦ ରିଖରେ ପ୍ରିନ୍ସ ଆଲବର୍ଟ ଅଫ୍ ସେକ୍-ସୋବର୍ଗ ଗୋଥାଙ୍କ ସହିତ ତାଙ୍କର ଶୁଭପରିଣୟ ହୋଇଥିଲା । ପ୍ରିନ୍ସ ଆଲବାର୍ଟ ୧୮୬୧ ମସିହା ଡିସେମ୍ବର ୧୪ ତାରିଖରେ ମୃତ ହେଲେ ଏବଂ ମହାରାଣୀ ଭିକ୍ଟୋରିଆ ୧୮୭୭ ମସିହା ଜାନୁୟାରୀ ୧୨ ତାରିଖରେ ଭାରତେଶ୍ୱରୀ ହେଲେ । ତାଙ୍କର ୭ ପୁତ୍ର ଓ ୮ କନ୍ୟା ଜାତ ହୋଇଥିଲେ । ଜ୍ୟେଷ୍ଠାକନ୍ୟା ଜର୍ମାନି ସମ୍ରାଟଙ୍କୁ ବିବାହ କରିଥିଲେ । ତାଙ୍କର ଜ୍ୟେଷ୍ଠପୁତ୍ର ଜର୍ମାନିର ବର୍ତ୍ତମାନ ସମ୍ରାଟ୍ । ମହାରାଣୀଙ୍କର ବଡ଼ପୁଅ ଆଲବର୍ଟ ଏଡ୍-ଉଆର୍ଡ ୧୮୪୧ ମସିହା ନଭେମ୍ବର ୯ ତାରିଖରେ ଜାତ ହୋଇଥିଲେ ଏବଂ ୧୮୬୩ ମସିହା ମାର୍ଚ୍ଚ ୧୦ ତାରିଖରେ

ବିବାହ କରିଥିଲେ । ଏହାଙ୍କର ପୁତ୍ରକନ୍ୟା ପାଞ୍ଚଗୋଟି । ମହାରାଣୀଙ୍କର ପ୍ରଥମ ଯୁବିଲି ଉତ୍ସବ ତା ୨୧।୬।୧୮୮୭ ରେ ହୋଇଥିଲା ଏବଂ ସେ ତା ୨୨।୧।୧୯୦୧ ମସିହାରେ ଇହଧାମ ତ୍ୟାଗ କଲେ । ତତ୍ପରେ ସପ୍ତମ ଏଡ଼୍‌ୱାର୍ଡ ୧୯୧୦ ମସିହାରେ ମାନବଲୀଳା ସମ୍ବରଣ କଲେ ଏଡ୍‌ୱାର୍ଡଙ୍କ ୨ୟ ପୁତ୍ର ଜର୍ଜ-ପଞ୍ଚମ ବର୍ତ୍ତମାନ ଆମ୍ଭମାନଙ୍କର ସମ୍ରାଟ୍ ହୋଇ ଅଛନ୍ତି । ସେ ତାଙ୍କର ଜନ୍ମ ତା ୩।୬।୧୮୬୫ ଓ ବିବାହ ତା ୬।୭।୧୮୯୩ ରେ ହୋଇଥିଲା ଏବଂ ସେ ତା ୬।୫।୧୯୧୦ ରେ ସମ୍ରାଟ ହେଲେ ।



# ଭାରତର ଗଭର୍ଣ୍ଣର ଜେନେରେଲ ଓ ଭାଇସ୍‌ରୟ୍

## ( ମହାରାଣୀଙ୍କ ଘୋଷଣା ଅନୁସାରେ )

| | | |
|---|---|---|
| ଖ୍ରୀ: ୧୮୫୮— | ଅର୍ଲ୍ କେନଙ୍ଗ ( କାର୍ଯ୍ୟ ଛାଡ଼ିବା ସମୟ ) | ୨୧।୩।୧୮୬୨ |
| ଖ୍ରୀ: ୧୮୬୨—ମାର୍ଚ୍ଚ ୧୨ | ଅର୍ଲ୍ ଅବ୍ ଏଲଗିନ୍ ( ପ୍ରଥମ ) | |
| ଖ୍ରୀ: ୧୮୬୩—ନଭେମ୍ବର ୨୧ | ସର୍ ରବର୍ଟ ନେପିଅର ( ଅସ୍ଥାୟୀ ) | ୨।୧୨।୧୮୬୩ |
| ଖ୍ରୀ: ୧୮୬୩—ଡିସେମ୍ବର ୨ | ସର୍ ଉଇଲ୍‌ୟମ୍ ଡେନସନ୍ ( ଅସ୍ଥାୟୀ ) | ୧୨।୧।୧୮୬୪ |
| ଖ୍ରୀ: ୧୮୬୪—ଜାନୁୟାରି ୧୨ | ସରଜନ୍ ( ଲର୍ଡ଼ ) ଲରେନ୍ସ | ୧୨।୧।୧୮୬୯ |
| ଖ୍ରୀ: ୧୮୬୯—ଜାନୁୟାରି ୧୨ | ଅର୍ଲ୍ ଅବ୍ ମେୟୋ | |
| ଖ୍ରୀ: ୧୮୭୨—ଫେବୃୟାରି ୯ | ସର୍‌ଜନ ଷ୍ଟ୍ରେଚେ ( ଅସ୍ଥାୟୀ ) | ୨୩।୨।୧୮୭୨ |
| ଖ୍ରୀ: ୧୮୭୨—ଫେବୃୟାରି ୨୩ | ଲର୍ଡ଼ ନେପିୟର ଅବ୍ ମରଚିଷ୍ଟନ୍ | ୩।୫।୧୮୭୨ |
| ଖ୍ରୀ: ୧୮୭୨—ମେ ୩ | ବେରନ୍ ( ଅର୍ଲ ଅବ୍ ) ନର୍ଥବ୍ରୁକ୍ | ୧୨।୪।୧୮୭୬ |
| ଖ୍ରୀ: ୧୮୭୬—ଅପ୍ରେଲ ୧୨ | ବେରନ୍ ( ଅର୍ଲ୍ ଅବ୍ ) ଲିଟନ୍ | ୮।୬।୧୮୮୦ |
| ଖ୍ରୀ: ୧୮୮୦—ଜୁନ୍ ୮ | ମାର୍‌କୁଇସ ଅବ୍ ରିପନ୍ | ୧୩।୧୨।୧୮୮୪ |
| ଖ୍ରୀ: ୧୮୮୪—ଡିସେମ୍ବର ୧୩ | ଅର୍ଲ୍ ଅବ୍ ଡ଼ଫେରିନ୍ ( ମାର୍‌କୁଇସ୍ ଅବ୍ ଡ଼ଫେରିନ୍ ଏଣ୍ଡ ଆଭା ) | ୧୦।୧୨।୧୮୮୮ |
| ଖ୍ରୀ: ୧୮୮୮—ଡିସେମ୍ବର ୧୦ | ମାର୍‌କୁଇସ୍ ଅବ୍ ଲାନ୍ସଡାଉନ୍ | ୨୭।୧।୧୮୯୪ |
| ଖ୍ରୀ: ୧୮୯୪—ଜାନୁୟାରି ୨୭ | ଅର୍ଲ୍ ଅବ୍ ଏଲ୍‌ଗିନ୍ ( ଦ୍ୱିତୀୟ ) | ୬।୧।୧୮୯୯ |
| ଖ୍ରୀ: ୧୮୯୯—ଜାନୁୟାରି ୬ | ବେରନ୍ ( ଅର୍ଲ ) କର୍ଜ୍ଜନ୍ ଅବ୍ କେଡଲଷ୍ଟନ୍ | ୧୮।୧୦।୧୯୦୫ |
| ଖ୍ରୀ: ୧୯୦୪— | ଲର୍ଡ ଏମ୍‌ଥିଲ୍ ( ଅସ୍ଥାୟୀ ) | |
| ଖ୍ରୀ: ୧୯୦୪— | ବେରନ୍ ( ଅର୍ଲ ) କର୍ଜ୍ଜନ ଅବ୍ କେଡଲଷ୍ଟନ ( ପୁନର୍ନିଯୁକ୍ତ ) | |
| ଖ୍ରୀ: ୧୯୦୫—ନଭେମ୍ବର ୧୮ | ଅର୍ଲ୍ ଅବ୍ ମିଣ୍ଟୋ | |
| ଖ୍ରୀ: ୧୯୧୦—ନଭେମ୍ବର ୨୩ | ବେରନ୍ ହାର୍ଡ଼ିଞ୍ଜ ଅବ୍ ପେନସରଷ୍ଟ | |
| ଖ୍ରୀ: ୧୯୧୬—ଅପ୍ରେଲ ୫ | ବେରନ ଚେମ୍‌ସଫୋର୍ଡ଼ | |
| ଖ୍ରୀ: ୧୯୨୧—ଅପ୍ରେଲ୍ ୩ | ଲର୍ଡ଼ ରିଡ଼ିଙ୍ଗ୍ | |

**ପୁଣି ଚଳଇ ଭ୍ରମ ସାର ।**

| ( ଖବର କାଗଜ ) | ( ଭାଷା ) | ସ୍ଥାନ |
|---|---|---|
| ଚନ୍ଦ୍ରିକା ପ୍ରକାଶ | ବଙ୍ଗଳା—,, | କଲିକତା |
| ହୋମିଓପ୍ୟାଥିକ ଦର୍ପଣ ,, | ,, | ,, |
| ଟେଲିଗ୍ରାଫ୍ ରଭିଉ | ଇଂରାଜୀ-ମାସିକ | ,, |



## ୧୯୩୧ ସାଲର ଗଣନା

| | |
|---|---|
| ଭାରତରେ ପୁରୁଷ ମୂର୍ଖଙ୍କ ସଂଖ୍ୟା | ୧୫୬୨୪୩୩୦୫ |
| ସ୍ତ୍ରୀ ,, ,, | ୧୬୫୦୮୪୬୯୮ |
| ମୋଟ | ୩୨୧୩୨୮୦୦୩ |

| | | |
|---|---|---|
| ପ୍ରତି ଏକହଜାରରେ ଶିକ୍ଷିତ ପୁରୁଷଙ୍କ ସଂଖ୍ୟା | | ୧୫୬ |
| ,, ସ୍ତ୍ରୀଙ୍କ | ,, | ୨୯ |
| ,, ଇଂରେଜୀ ଜାଣୁଥିବା ପୁରୁଷଙ୍କ | ,, | ୨୫ |
| ,, ,, ସ୍ତ୍ରୀଙ୍କ | ,, | ୩ |
| ପାଗଳଙ୍କ | ,, | ୧୨୦୩୦୪ |
| ଅନ୍ଧଙ୍କ | ,, | ୬୦୧୩୬୦ |
| କୁଷ୍ଠରୋଗୀଙ୍କ | ,, | ୧୪୭୯୧୧ |

ପ୍ରତି ଏକହଜାରରେ ହିନ୍ଦୁ ୬୮୨

୧୯୨୧ ଠାରୁ ୧୦.୪ ଜଣ ଅଧିକ

| | | | |
|---|---|---|---|
| ମୁସଲମାନ ୨୨୨ | ୧୩.୦ | ,, | ,, |
| ବୌଦ୍ଧ ୩୬ | ୧୦.୫ | ,, | ,, |
| ଅନ୍ୟାନ୍ୟ ଆଦିମ ଧର୍ମ ୨୪ | ୧୫.୩ | ,, | ,, |
| ଖ୍ରୀଷ୍ଟିଆନ ୧୩ | ୩୨.୫ | ,, | ,, |
| ଅନ୍ୟାନ୍ୟ ଧର୍ମ ୧୩ | ୩୮.୦ | ,, | ,, |
| କୃଷିଜୀବୀ ଲୋକଙ୍କ ସଂଖ୍ୟା ଶତକଡ଼ା | ୬୭.୪ | ଭାଗ | |
| ବାଣିଜ୍ୟ ବ୍ୟବସାୟରେ ଲିପ୍ତ | ୫.୧୩ | ,, | |
| ଶିଳ୍ପଜୀବୀ | ୯.୧୫ | ,, | |

ଭାରତରେ ସର୍ବମୋଟ ୨୨୫ ଗୋଟି ବିଭିନ୍ନ ଭାଷା ଓ ୨୦ଟି ବିଭିନ୍ନ ପ୍ରକାରର ଅକ୍ଷର ଅଛି ।



## ଭାରତର ରେଳ ଲାଇନ୍

ମୋଟ ରେଲଲାଇନ ୪୧ ହଜାର ମାଇଲ, ବାସ୍ତବିକ ହାରାହାରି ଯାକି ୭୨ କୋଟି ମୂଳଧନ ପ୍ରାୟ ୭୫୦ କୋଟି ଟଙ୍କା । ଭାରତରେ ୩ ଶ୍ରେଣୀର ରେଲ ଅଛି ।

( ୧ମ ଶ୍ରେଣୀ )

ଯେଉଁ ଭାରତୀୟ ରେଲର ଆୟ ବାର୍ଷିକ ୫୦ ଲକ୍ଷ ଟଙ୍କାରୁ ଅଧିକ ତାହା ୧ମ ଶ୍ରେଣୀ ଭୁକ୍ତ ।

ଯଥା:—(୧) ଅସାମ ବେଙ୍ଗଲ ରେଲଓଏ, ପ୍ରଧାନ ଅଫିସ—ଚଟ୍ଟଗ୍ରାମ । (A. B. R.)

(୨) ବେଙ୍ଗଲ ନାଗପୁର ରେଲଓଏ, ପ୍ରଧାନ ଅଫିସ—ଖେଦିରପୁର, କଲିକତା । ( B. N. R.)

(୩) ବେଙ୍ଗଲ ଏବଂ ନର୍ଥ ଓ୍ୱେଷ୍ଟର୍ଣ୍ଣ ରେଲଓଏ, ପ୍ରଧାନ ଅଫିସ—ଗୋରଖପୁର । (B. N. W. R. )

(୪) ବୋମ୍ବାଇ ବରୋଦା ଏବଂ ସେଣ୍ଟ୍ରାଲ ରେଲଓଏ; ପ୍ରଧାନ ଅଫିସ—ଚର୍ଚ୍ଚଗେଟ; ବୋମ୍ବାଇ ।(B. B. C. R.)

(୫) ଇଷ୍ଟ ଇଣ୍ଡିଆନ ରେଲଓଏ, ପ୍ରଧାନ ଅଫିସ—ଫେଆରଲି ପ୍ଲେସ, କଲିକତା । (E. I. R.)

(୬) ବର୍ମା ରେଲଓଏ, ପ୍ରଧାନ ଅଫିସ—ରେଙ୍ଗୁନ୍(B. Ry)

(୭) ଇଷ୍ଟର୍ଣ୍ଣ ବେଙ୍ଗଲ ରେଲଓଏ, ପ୍ରଧାନ ଅଫିସ—୩ କୋଇଲାଘାଟ ଷ୍ଟ୍ରୀଟ୍, କଲିକତା । (E. B. R.)

(୮) ଗ୍ରେଟ୍ ଇଣ୍ଡିଅନ ପେନିନ୍‌ସୁଲାର ରେଲଓଏ, ପ୍ରଧାନ ଅଫିସ—ବୋମ୍ବେ । (G. I. P. R.)

(୯) ଯୋଧପୁର ରେଲଓଏ, ପ୍ରଧାନ ଅଫିସ--ଯୋଧପୁର । ( J. Ry )

(୧୦) ମାନ୍ଦ୍ରାଜ ଏବଂ ସଦର୍ଣ୍ଣ ମରହଟ୍ଟା ରେଲଓଏ ପ୍ରଧାନ-ଅଫିସ—ପାର୍କ ଟାଉନ, ମାନ୍ଦ୍ରାଜ । (M. S. M. R.)

(୧୧) ନିଜାମ୍ସ ଗେରେଣ୍ଟିଡ଼ ଷ୍ଟେଟ୍ ରେଲଓଏ, ପ୍ରଧାନ ଅଫିସ—ସିକନ୍ଦରାବାଦ, ଡେକାନ । (N. G. S. R.)

(୧୨) ନର୍ଥ ଓ୍ୱେଷ୍ଟର୍ଣ୍ଣ ରେଲଓଏ, ଏହା ୬୫୦୦ ମାଇଲ ଅଧିକ ଲମ୍ବା ଓ ସବୁଠାରୁ ବଡ଼ । (N. W. R.)

(୧୩) ରୋହିଲଖଣ୍ଡ ଏବଂ କୁମାୟୁନ ରେଲଓଏ କୋ: ଲି: ପ୍ରଧାନ ଅଫିସ—ଇଜାଟ ନଗର, ବାରେଲୀ । ( R. & K. R. )

ଅଶ୍ୱିନୀ ସେବା ଲୁଣ୍ଡେଡ଼ ସୂଚକ ।

(୧୪) ସାଉଥ ଇଣ୍ଡିଆ ରେଲଓ୍ୱେ, ପ୍ରଧାନ ଅଫିସ— ତ୍ରିଚିନୋପଲି । ( S.I.R. )

( ୨ୟ ଶ୍ରେଣୀ )

ଯାହାର ବାର୍ଷିକ ଆୟ ୪୦ ଲକ୍ଷରୁ ଊଣା ଓ ୧୦ ଲକ୍ଷରୁ ଅଧିକ ଯେ ସବୁ ୨ୟ ଶ୍ରେଣୀ ଅନ୍ତର୍ଗତ ଯଥା:—

(୧) ବାର୍ସିଲାଇଟ ରେଲଓ୍ୱେ । (୨) ବେଙ୍ଗଲ ଡୁଆର୍ସ ରେଲ୍ଓ୍ୱେ । (୩) ଭାବନଗର ଷ୍ଟେଟ୍ ରେଲଓ୍ୱେ (୪) ହାଇଦ୍ରାବାଦ ଷ୍ଟେଟ୍ ରେଲଓ୍ୱେ । (୫) ଦାର୍ଜିଲିଂ ହିମାଳୟାନ ରେଲଓ୍ୱେ । (୬) ହଡ୍ରାବାଦ ଅ ରେଲଓ୍ୱେ । (୭) ଗାଇକୁଆର୍ସ ବରୋଦା ଷ୍ଟେଟ୍ ରେଲଓ୍ୱେ । (୮) ଗାଣ୍ଡାଲ ରେଲଓ୍ୱେ । (୯) ହାଓଡ଼ା ଆମତା ଲାଇଟ ରେଲଓ୍ୱେ । (୧୦) ଯାମନଗର ଏବଂ ଦ୍ୱାରକା ରେଲଓ୍ୱେ (୧୧) ଜୁନାଗଡ଼ ଷ୍ଟେଟ୍ ରେଲଓ୍ୱେ । (୧୨) ମୋର୍ଭି ରେଲଓ୍ୱେ । (୧୩) ମୟୂରଭଞ୍ଜ ରେଲଓ୍ୱେ ଏବଂ (୧୪) ସାହଦରା ସାହାରନପୁର ଲାଇଟ ରେଲଓ୍ୱେ ।

( ୩ୟ ଶ୍ରେଣୀ )

ଏ ଶ୍ରେଣୀର ବାର୍ଷିକ ଆୟ ୧୦ଲକ୍ଷ ଟଙ୍କାରୁ ଊଣା ।

(୧) ଏଡ୍ରେନ ରେଲଓ୍ୱେ । (୨) ଅହାମଦପୁର କାଟଓ୍ୱା ରେଲଓ୍ୱେ । (୩) ଆରଶାରାମ ରେଲଓ୍ୱେ । (୪) ବାଙ୍କୁଡ଼ା ଦାମୋଦର ରିଭର୍ ରେଲଓ୍ୱେ । (୫) ବାରାସେତ୍ ବସିରହାଟ ଲାଇଟ୍ ରେଲଓ୍ୱେ । (୬) ବେଙ୍ଗଲ ପ୍ରଭିନ୍ସିଆଲ ରେଲଓ୍ୱେ । (୭) ବଖତିଆରପୁର ବିହାର ଲାଇଟ ରେଲଓ୍ୱେ । (୮) ବର୍ଦ୍ଧମାନ କାଟଓ୍ୱା ରେଲଓ୍ୱେ । (୯) କଚ ଷ୍ଟେଟ୍ ରେଲଓ୍ୱେ । (୧୦) ଡେହେର ରୋହଟାସ ଲାଇଟ୍ ରେଲଓ୍ୱେ । (୧୧) ଢୋଲପୁର ବାର ରେଲଓ୍ୱେ । (୧୨) ଫତୁଆ ଇସଲାମପୁର ରେଲଓ୍ୱେ । (୧୩) ଗ୍ୱାଲିଅର ଲାଇଟ୍ ରେଲଓ୍ୱେ । (୧୪) ହାଓଡ଼ା ଶିଆଖାଲା ଲାଇଟ୍ ରେଲଓ୍ୱେ । (୧୫) ଜଗାଧ୍ରୀ ଲାଇଟ୍ ରେଲଓ୍ୱେ । (୧୬) ଯଶୋର ଝିନା ରେଲଓ୍ୱେ । (୧୭) ଯୋରହାଟ ପ୍ରଭିନସିଅଲ ରେଲଓ୍ୱେ । (୧୮) କାଳଘାଟ ଲଫଟା ରେଲଓ୍ୱେ । (୧୯) କୋଲାର ଡିଷ୍ଟ୍ରିକ୍ଟ ରେଲଓ୍ୱେ । (୨୦) କୁଲଶେଖର ପଟ୍ଟନାମ୍ ଲାଇଟ୍ ରେଲଓ୍ୱେ । (୨୧) ମାଦ୍ରାସ୍ ଲାଇଟ୍ ରେଲଓ୍ୱେ । (୨୨) ପୋରବନ୍ଦର ଷ୍ଟେଟ ରେଲଓ୍ୱେ । (୨୩) ତାରକେଶ୍ୱର ମଗରାଦ୍ୱି ଗଜପୁରୀ ଲାଇଟ୍ ରେଲଓ୍ୱେ । (୨୪ ତେଜପୁର ବାଲିଆପରା ଲାଇଟ୍ ରେଲଓ୍ୱେ । (୨୫) ତିରୁଭେଲୋର ଲାଇଟ ରେଲଓ୍ୱେ । (୨୬) ଉଦୟପୁର ଚିତୋରଗଡ଼ ରେଲଓ୍ୱେ ।



# ରେଲରାସ୍ତା

(୧) ଆସାମ ବେଙ୍ଗଲ ରେଲରାସ୍ତା :—ଏହା ଆସାମ ଓ ପୂର୍ବ ବଙ୍ଗରେ ବିସ୍ତୃତ । ତିନସୁକିଆରୁ ବାହାରି ଚଟ୍ଟଗାଙ୍ଗ ପର୍ଯ୍ୟନ୍ତ ଯାଇଅଛି ।

(୨) ବେଙ୍ଗଲ ନାଗପୁର ରେଲରାସ୍ତା :—ଏହି ରାସ୍ତାର ଦୈର୍ଘ୍ୟ ୩୫୦୦ ମାଇଲ । ବଙ୍ଗ, ବିହାର, ଓଡିଶା, ମାନ୍ଦ୍ରାଜ ଓ ମଧ୍ୟପ୍ରଦେଶରେ ବିସ୍ତୃତ । ଏହା କଲିକତା ଠାରୁ ବାହାରି ଖଡ଼ଗପୁର ଆସିଛି । ସେଠାରୁ ଗୋଟିଏ ଶାଖା ନାଗପୁରକୁ, ଗୋଟିଏ ଶାଖା ଝରିଆ ଓ ରାଣୀଗଞ୍ଜର କୋଇଲା ଖଣି ଓ ଗୋଟିଏ ଶାଖା ଓଆଲଟିଅରକୁ ଯାଇଅଛି ।

(୩) ବେଙ୍ଗଲ ଏଣ୍ଡ ନର୍ଥ ଓ୍ୱେଷ୍ଟର୍ଣ୍ଣ ରେଲରାସ୍ତା :—ଏହା କାଟିହାର ଠାରୁ କାନପୁର ପର୍ଯ୍ୟନ୍ତେ ଯାଇଅଛି ।

(୪) ବମ୍ବେ ବରୋଦା ରେଲରାସ୍ତା :—ଏହାର ଦୈର୍ଘ୍ୟ ୪୦୦୦ ମାଇଲ, ଏହା ବମ୍ବେଇ, ମଧ୍ୟଭାରତ ଓ ରାଜପୁତନାର ଦକ୍ଷିଣ ଭାଗରେ ବିସ୍ତୃତ । ଏହି ରାସ୍ତାରେ ୮୯ ଲକ୍ଷ ଯାତ୍ରୀ ଓ ୬୧୪୨୬୬୩ ଟନ୍ ମାଲ୍ ବାର୍ଷିକ ଯାତାୟାତ କରେ ବମ୍ବେଠାରୁ ଗୋଟିଏ ଶାଖା ସୁରଟ ଓ ବରୋଦା ଦେଇ ଦିଲ୍ଲୀ ଯାଇଛି ।

(୫) ଇଷ୍ଟଇଣ୍ଡିୟାନରେଲ ରାସ୍ତା :—ଏହା ପ୍ରାୟ ୪୨୦୧ ମାଇଲ କଲିକତାଠାରୁ ବାହାରି ଗଙ୍ଗାନଦୀର ଦକ୍ଷିଣ କୂଳ ବାଟେ ଦିଲ୍ଲୀ ଯାଇଛି ।

(୬) ବର୍ମା ରେଲରାସ୍ତା :—ଏହାର ଦୈର୍ଘ୍ୟ ପ୍ରାୟ ୬୦୦ ମାଇଲ ଏହା ରେଙ୍ଗୁନଠାରୁ ବାହାର ମାଣ୍ଡେଲ ଦେଇ ମିଟକିନା ପର୍ଯ୍ୟନ୍ତ ଯାଇଛି ।

(୭) ଇଷ୍ଟର୍ଣ୍ଣ ବେଙ୍ଗଲ ରେଲରାସ୍ତା :—କଲିକତାରୁ ଦାର୍ଜିଲିଂ ଯାଇଛି ।

(୮) ଗ୍ରେଟ ଇଣ୍ଡିଆନ ପେନିନସୁଲର ରେଲ ରାସ୍ତା—ଏହା ପ୍ରାୟ ୪୦୦୦ ମାଇଲ ଦୈର୍ଘ୍ୟ । ବମ୍ବେ ବନ୍ଦରଠାରୁ ଗୋଟିଏ ଶାଖା ପଶ୍ଚିମ ଘାଟ ପର୍ବତର ଥଲଘାଟ ପାରହୋଇ ଭୁଆଇଲବାଟେ ନାଗପୁର ଯାଇଅଛି । ଅଉ ଏକ ଶାଖା ଭୋର ଘାଟବାଟେ ପୁନାଦେଇ ରାଇପୁର ଯାଇଅଛି ।

(୯) ଯେ.ଧପୁର ରେଲରାସ୍ତା-ପ୍ରଥମ ଶ୍ରେଣୀ ମଧ୍ୟରେ ଏହା ଖୁବ ଶ୍ରେଷ୍ଠ ରାସ୍ତା । ଏହା ହାଇଦ୍ରାବାଦ ଠାରୁ ବଡ଼ମ୍ୟାନ୍ ରୋଡ଼ ପର୍ଯ୍ୟନ୍ତ ଯାଇଅଛି । ଏହାର ବାର୍ଷିକ ଆୟ ପ୍ରାୟ ୧୧୬୮୭୬୧୦ ଟଙ୍କା ।

(୧୦) ମାନ୍ଦ୍ରାଜ ଆଣ୍ଡ ସଦର୍ଣ୍ଣ ମରହଟ୍ଟା ରେଲରାସ୍ତା :— ମାନ୍ଦ୍ରାଜରୁ ଗୋଟିଏ ଶାଖା ଉଅଲଟିଅର ଯାଇ ବେଙ୍ଗଲ ନାଗପୁର ରେଲ ସହିତ ମିଶିଛି । ଅଉ ଗୋଟିଏ ଶାଖା ରାଇଚୁରଠାରେ ଗ୍ରେଟଇଣ୍ଡିଆନ ପେନିନସୁଲର ରାସ୍ତା ସହିତ ମିଶିଅଛି ।

(୧୧) ନିଯାମ ଗ୍ୟାରେନ୍‌ଟେଡ଼ ଷ୍ଟେଟ ରେଲରାସ୍ତା :— ଏହା ହାଇଦ୍ରାବାଦ ମଧ୍ୟରେ ବିସ୍ତୃତ । ବର୍ଷରେ ୧୧୧୭୬୦୦୦ ଯାତ୍ରି ଓ ୬୭୧୭୦୦୦ ଟନ ପଦାର୍ଥ ବହନ କରେ ।

(୧୨) ନର୍ଥ ଉଏଷ୍ଟର୍ଣ୍ଣ ରେଲରାସ୍ତା :—ଏହା ୬୫୦୦ ମାଇଲ ବଡ଼ରାସ୍ତା କରାଚ ବନ୍ଦରରୁ ବାହାର ସିନ୍ଧୁ ବେଲୁଚସ୍ଥାନ ପଞ୍ଜାବ, ଉତ୍ତର ସୀମାନ୍ତପ୍ରଦେଶ ଓ କାଶ୍ମୀରର ପ୍ରଧାନ ସହରମାନଙ୍କୁ ଯୋଗ କରୁଛି ।

(୧୩) ରୋହିଲଖଣ୍ଡ ଏବଂ କୁମନ ରେଲରାସ୍ତା :—ଏହା ୫୬୧ ମାଇଲ ଦୈର୍ଘ୍ୟ । ଏହା ଲକ୍ଷ୍ନୌଠାରୁ କାସଗଞ୍ଜ ଯାଇଅଛି ।

(୧୪) ସାଉଥ ଇଣ୍ଡିଆ ରେଲରାସ୍ତା :—ଏହା ମାନ୍ଦ୍ରାଜଠାରୁ ରାମେଶ୍ୱର ପର୍ଯ୍ୟନ୍ତ ଯାଇଅଛି । ଏହି ରାସ୍ତାଗୁଡିକ ପ୍ରଧାନ, ଏଥିରୁ କେତେକ ଶାଖା ରେଲ ପଥ ବାହାର ପରସ୍ପର ସହିତ ମିଶିଛନ୍ତି ।

କଲକତା-ମାନ୍ଦ୍ରାଜ :—ବେଙ୍ଗଲ ନାଗପୁର ରେଲରାସ୍ତା-କଲକତାର ହାବଡ଼ାଠାରୁ ବାହାର ଖଡ଼ଗପୁର ଦେଇ ଉଅଲଟିଅର ଯାଇଛି । ସେଠାରେ ମାନ୍ଦ୍ରାଜରୁ ଆସୁଥିବା ମାନ୍ଦ୍ରାଜ ଓ ସଦର୍ଣ୍ଣ ମରହଟ୍ଟା ରେଲ ସହିତ ମିଶିଛି । ଏହି ବାଟେ କଲକତା-ମାନ୍ଦ୍ରାଜ ଡାକ ଯାଏ ।

ପ୍ରଧାନ ଷ୍ଟେସନମାନ :—ହାବଡ଼ା, ଖଡ଼ଗପୁର, ବାଲେଶ୍ୱର କଟକ, ଖୋର୍ଦ୍ଧାରୋଡ଼, ଉଅଲଟିଅର, କୋକନଡ଼ା, ଏଲୋର, ମାନ୍ଦ୍ରାଜ ।

ମାନ୍ଦ୍ରାଜ-ବମ୍ବେ :—ମାନ୍ଦ୍ରାଜଠାରୁ ଓ ସଦର୍ଣ୍ଣ ମରହଟ୍ଟା ରେଲଓ୍ୱେ ରାଇଚୁରଠାରେ ବମ୍ବେରୁ ଆସୁଥିବା ଗ୍ରେଟ ଇଣ୍ଡିଅନ ପେନିନସୁଲର ରେଲରାସ୍ତା ସହିତ ମିଶିଛି ।

ପ୍ରଧାନ ଷ୍ଟେସନ ମାନ୍ଦ୍ରାଜ, ରାଇଚୁର, ପୁନା, ବମ୍ବେ ।

ବମ୍ବେ-କଲକତା :—ବମ୍ବେଠାରୁ ଗ୍ରେଟଇଣ୍ଡିଅନ ପେନିନ-ସୁଲର ଓ କଲକତାଠାରୁ ବେଙ୍ଗଲ ନାଗପୁରରେଲରାସ୍ତା ଆସି ନାଗପୁରଠାରେ ମିଳିଛନ୍ତି । ଏ ବାଟେ କଲକତା ବମ୍ବେ ଡାକ ଯାଏ ।

ବମ୍ବେ-ଦିଲ୍ଲୀ :—ବମ୍ବେ ବରୋଦା ଓ ସେଣ୍ଟ୍ରାଲ ଇଣ୍ଡିଅନ ରେଲରାସ୍ତା ବମ୍ବେଠାରୁ ବହାର ସୁରଟ, ବରୋଦା, ଆଜମୀର ଜୟପୁର ଦେଇ ଦିଲ୍ଲୀ ଯାଇଛି ।

କଲକତା-ଦିଲ୍ଲୀ-ସିମଲା :—ଇଷ୍ଟଇଣ୍ଡିଅନ ରେଲରାସ୍ତା କଲକତାରୁ ବାହାର ଗଙ୍ଗାନଦୀର ଦକ୍ଷିଣକୂଳବାଟେ ପାଟନା, ବନାରସ, ଏଲାହାବାଦ, କାନପୁର ଆଗ୍ରାଦେଇ ଦିଲ୍ଲୀ ଯାଇଛି । ସେଠାରୁ ଅମ୍ବଲା କାଲକା ରେଲରାସ୍ତା ସିମଲା ଯାଇଛି ।



## ଭାରତରେ ଶୈଳନିବାସ

କେତେକ ପର୍ବତ ଉପରେ ରହିବାପାଇଁ କୋଠା ତିଆର ହୋଇଅଛି ତାହାକୁ ଶୈଳନିବାସ କହନ୍ତି । ସେଠାରେ ଗ୍ରୀଷ୍ମକାଳରେ ଗରମ ହୁଏ ନାହିଁ ।

(୧) ସିମଲା :—ଏହା ଭାରତର ହିମାଳୟ ପାଦଦେଶରେ । ଏ ସବୁ ଶୈଳନିବାସଠାରୁ ଭଲ । ଏଠାରେ ଗ୍ରୀଷ୍ମକାଳରେ ବଡ଼ଲାଟ ରହନ୍ତି ।

(୨) ନୈନିତାଲ୍ :—ଯୁକ୍ତ ପ୍ରଦେଶର ହିମାଳୟର ପାଦଦେଶରେ, ଏହି ସହର ଗୋଟିଏ ହ୍ରଦର କୂଳବଡ଼ରେ ଅଛି । ଏଠାରେ ଯୁକ୍ତ ପ୍ରଦେଶର ଲାଟ ଗ୍ରୀଷ୍ମ ସମୟରେ ରହନ୍ତି ।

(୩) ମହାବାଲେଶ୍ୱର :—ପଶ୍ଚିମଘାଟ ପର୍ବତରେ ଗୋଟିଏ ଶାଖା ପର୍ବତ ଉପରେ ଥିବାର । ଏଠାରେ ବମ୍ବେ ପ୍ରଦେଶର ଲାଟ ଗ୍ରୀଷ୍ମ ସମୟରେ ରହନ୍ତି ।

(୪) ଉଟକାମଣ୍ଡ :—ନୀଳଗିରି ପର୍ବତଉପରେ ଅବସ୍ଥିତ. ଏଠାରେ ମାନ୍ଦ୍ରାଜ ଲାଟ ଗ୍ରୀଷ୍ମସମୟରେ ରହନ୍ତି ।

(୫) ପାଚମାଢ଼ି :—ସାତପୁରା ପର୍ବତଉପରେ ୪୪୫୪ ଫୁଟ ଉଚ୍ଚରେ ଅବସ୍ଥିତ ।

(୬) କାଣ୍ଡି :—ଲଙ୍କାରେ । ଏଠାରେ ଗୋଟିଏ ଶୈଳନିବାସ ଓ ସୁନ୍ଦର ବଗିଚା ଅଛି ।



## ସେନା ନିବାସ

### ଏଥିରେ ସୈନ୍ୟମାନେ ରହନ୍ତି

ମୀରଟ, ଯୁକ୍ତପ୍ରଦେଶରେ, ସିକନ୍ଦରାବାଦ—ହାଇଦ୍ରାବାଦରେ, ପୁନା-ବମ୍ବେରେ ଓ ପେଶୱାର, ଡ଼େରାଇସମାଇଲଖାଁ ଉତ୍ତର ସୀମାନ୍ତ ପ୍ରଦେଶର ରାଓଲପିଣ୍ଡି, ଆଟକ୍ ସିଆଲକୋଟ, ଲୁଧିଆନା ଓ ଆମ୍ବାଲା ପଞ୍ଜାବରେ, ଏହାଛଡ଼ା ଆଉ କେତେକ ସ୍ଥାନ ଅଛି ।

## ଭାରତବର୍ଷୀୟ ରେଲଓୱେ ସମୂହର ଜ୍ଞାତବ୍ୟ ନିୟମାବଳୀ

### ରେଲଓୱେର ସମୟ

ସମସ୍ତ କାର୍ଯ୍ୟରେ ସବୁ ଷ୍ଟେସନରେ ଷ୍ଟାଣ୍ଡାର୍ଡ ସମୟ ପ୍ରଚଳିତ । ତାହା କଲିକତା ସମୟର ୨୪ ମିନିଟ୍ ଓ ଚଟ୍ଟଗ୍ରାମ ୩୬ ମିନିଟ୍ ପଶ୍ଚାଦ୍‌ବର୍ତ୍ତୀ ଏବଂ ଏଲାହାବାଦର ୨ ମିନିଟ, ମାନ୍ଦ୍ରାଜର ୬ ମିନିଟ, ବୋମ୍ବାଇ ୩୦ ମିନିଟ ଅଗ୍ରବର୍ତ୍ତୀ ।

## ଟିକିଟ୍ କିଣିବା ମାଲ ପଠାଇବାର ସ୍ଥାନ

ସାଧାରଣଙ୍କ ସୁବିଧା ପାଇଁ କଲିକତାରେ ନିମ୍ନଲିଖିତ ଠିକଣାରେ ରେଲୱେ ବୁକିଂ ଅଫିସ ଅଛି । ଏଠାରେ ଦିନ ୯ ଟା ଠାରୁ ୭ ଟା ପର୍ଯ୍ୟନ୍ତ ଟିକଟ ମିଳେ ଓ ପାର୍ଶଲ ପଠାଯାଏ ।

ଇ, ଆଇ, ରେଲର (୧) ହାଉସନ ରୋଡ଼ (୨) ଫେୟାର୍‌ଲିପ୍ଲେସ (୩) କର୍ପୋରେଶନ ଷ୍ଟ୍ରୀଟ (୪) ଚୌରଙ୍ଗୀ, ଜାମୈଲିନ ଷ୍ଟୋରସ (୫) ୧୨୯।୪ ବ କର୍ଣ୍ଣଓ୍ୱାଲିଶ ଷ୍ଟ୍ରୀଟ, ଶ୍ୟାମବାଜାର (୬) ୧୦୪।୧ ବଡ଼ନଷ୍ଟ୍ରୀଟ (୮) କରଡ଼ ଷ୍ଟ୍ରୀଟ ।

ଇ, ବି, ରେଲର (୧) ବଡ଼ବଜାର ଚିତ୍ତରଞ୍ଜନ ଏଭିନିଉ (୨) ଓଲ୍ଡକୋଟ ହାଉସ ଷ୍ଟ୍ରୀଟ (୩) ଏସପ୍ଲାନେଡ (୪) ୧୨୬। ବଲିଗୁଡ଼ସ ଷ୍ଟ୍ରୀଟ

ବି, ଏନ୍, ରେଲର (୧) ବଡ଼ବଜାର ଚିତ୍ତରଞ୍ଜନ ଏଭିନିଉ (୨) ଓଲ୍ଡକୋଟହାଉସ ଷ୍ଟ୍ରୀଟ; ଟମାସ କୁକର ବୁକିଂ ଅଫିସ [ ଏଠାରେ ପାର୍ଶଲ କସି ହୁଏ ନାହିଁ ] (୩) ୨, ଏସ୍ପ୍ଲାନେଡ଼ ଓୟେଷ୍ଟ (୪) ଚଉରଙ୍ଗିରୋଡ଼ (୫) ଗାର୍ଡନରିଚ

ବ୍ରେକଜର୍ଣ୍ଣି—ସିଙ୍ଗଲ ଜର୍ଣ୍ଣିର ଯାତ୍ରୀଗଣ, ମଧ୍ୟରେ ଯାତ୍ରାଭଙ୍ଗ କରି ପ୍ରତି ୧୦୦ ମାଇଲରେ ୧ ଦିନ ବିଶ୍ରାମ କରି ପାରନ୍ତି ଏବଂ ୧୦୦ ମାଇଲ କମରେ ଯାତ୍ରାଭଙ୍ଗ ନିଷେଧ, ଯାତ୍ରାଭଙ୍ଗ କରିବାକୁ ହେଲେ ଷ୍ଟେସନ ମାଷ୍ଟରର ନାମ ସହି ଆବଶ୍ୟକ ହୁଏ ।

ଫ୍ରିଲଗେଜ୍—୧ମ ଶ୍ରେଣୀ ଆରୋହୀ ଦେଢ଼ମହଣ, ୨ୟ ଶ୍ରେଣୀ ଆରୋହୀ ଏକମହଣ, ମଧ୍ୟମଶ୍ରେଣୀ ଆରୋହୀ ୩୦ ସେର ଓ ୩ୟ ଶ୍ରେଣୀ ଆରୋହୀ ୨୫ ସେର ମାଲ ବିନା ମାସୁଲରେ ସଙ୍ଗରେ ନେଇ ପାରନ୍ତି । ବିଛଣା, ବାକ୍ସ, ଛତା, ଜଳଖିଆ ସରଞ୍ଜାମର ଟିକଟ ନାହିଁ ।

ଗଚ୍ଛିତ ଲଗେଜ—ଯାତ୍ରୀଗଣ ସୁବିଧା ପାଇଁ ଷ୍ଟେସନମାଷ୍ଟରଙ୍କ ଜିମାରେ ଅଳ୍ପକାଳ ପାଇଁ ଲଗେଜ ଗଚ୍ଛିତ ରଖି ପାରନ୍ତି । ପ୍ରଥମ ୨୪ ଘଣ୍ଟା ପାଇଁ ୧ ମହଣ ବା ତାହାର ଅଂଶିକ ଓଜନ ପାଇଁ ଚାର୍ଜ ୦ ୵

ପରବର୍ତ୍ତୀ ପ୍ରତ୍ୟେକ ୨୪ଘଣ୍ଟା ବା ଅଂଶିକ ସମୟ ପାଇଁ ୫୦ /

ଟିକଟ—୩ ବର୍ଷ ପିଲା ପାଇଁ ମାସୁଲ ଲାଗେ ନାହିଁ, ୧୨ବର୍ଷ ପିଲା ପର୍ଯ୍ୟନ୍ତ ଅଧା ଟିକଟ ଓ ତଦୂର୍ଦ୍ଧ ପୂରା ଟିକଟ ଲାଗେ ।



## ରିଜର୍ଭ କରିବାର ନିୟମ

ଗୋଟିଏ କାମରା ବା ଗୋଟିଏ କ୍ୟାରେଜ ରିଜର୍ଭ କରା-ଯାଇପାରେ । ଯେଉଁ ଦିନ ଗାଡ଼ି ଅବଶ୍ୟକ ତାହାର ୧ସପ୍ତାହ ପୂର୍ବରୁ ଦରଖାସ୍ତ ଦେବାକୁ ହୁଏ । ହାଓଡ଼ା, ଅଶାନସୋଲ ପ୍ରଭୃତି ବଡ଼ ବଡ଼ ଷ୍ଟେସନରେ ୨୪ ଘଣ୍ଟା ପୂର୍ବରୁ ସମ୍ବାଦ ଦେଲେ ହୁଏ । ୧ମ ଓ ୨ୟ ଶ୍ରେଣୀର ଯାତ୍ରୀଗଣ ଓହ୍ଲାଇବା ପୂର୍ବରୁ ରିଜର୍ଭ କରିବାକୁ କହି ପାରନ୍ତି । ସେଥିପାଇଁ ଅତିରିକ୍ତ ୫୦ । ଖର୍ଚ୍ଚ ଦେବାକୁ ହୁଏ । ଗାଡ଼ି ରିଜର୍ଭ କରି ସାରିଲା ପରେ ବ୍ୟବହାର ନ କଲେ ଲୋକସାନ ଖରଚ ଦେବାକୁ ହୁଏ । ୧ମ ୨ୟ ଶ୍ରେଣୀର ଯାତ୍ରୀଗଣ ଗାଡ଼ିରୁ ଯେଉଁଠାରେ ଓହ୍ଲାଇବେ କହି ନିଶ୍ଚିନ୍ତ ହୋଇ ଶୋଇ ପାରନ୍ତି ।



## ରିଟର୍ଣ୍ଣ ଟିକିଟ

ପ୍ରଥମ, ଦ୍ୱିତୀୟ ଓ ଇଣ୍ଟର ଶ୍ରେଣୀର ରିଟର୍ଣ୍ଣ ମିଳିବାର ବ୍ୟବସ୍ଥା ଅଛି । ଥରେ ଯିବାକୁ ଯେତେ ଭଡ଼ା ଲାଗେ ତାହାର ଦେଢ଼ଗୁଣ ଦେଲେ ଯିବାର ଓ ଆସିବାର ଅର୍ଥାତ୍ ରିଟର୍ଣ୍ଣ ଟିକଟ୍ ମିଳେ । ସେ ଟିକଟରେ ୨୫ ମାଇଲ ପର୍ଯ୍ୟନ୍ତ ଦୁଇଦିନ ୨୬ ଠାରୁ ୧୦୦ ମାଇଲ ପର୍ଯ୍ୟନ୍ତ ୪ ଦିନ, ୧୦୧ ଠାରୁ ୧୫୦ ମାଇଲ ପର୍ଯ୍ୟନ୍ତ ୬ ଦିନ, ୧୫୧ ଠାରୁ ୩୦୦ ମାଇଲ ପର୍ଯ୍ୟନ୍ତ ୧୨ ଦିନ, ୩୦୧ ଠାରୁ ୫୦୦ ମାଇଲ ପର୍ଯ୍ୟନ୍ତ ୧୮ ଦିନ, ତଦୂର୍ଦ୍ଧେ ୩୦ ଦିନ ଭିତରେ ଫେରି ଆସି ପାରିବା ଉଚିତ । ଇ, ଆଇ, ଆର୍, ଭିନ୍ନ ଉକ୍ତ ରିଟର୍ଣ୍ଣ ଟିକଟ୍ ୧୦୧ ଠାରୁ ୩୦୦ ମାଇଲ ପର୍ଯ୍ୟନ୍ତ ୬ ଦିନ, ୩୦୧ରୁ ୩୫୦ ମାଇଲ ପର୍ଯ୍ୟନ୍ତ ୯ ଦିନ, ୩୫୧ ରୁ ୬୦୦ ମାଇଲ ପର୍ଯ୍ୟନ୍ତ ୧୨ ଦିନ ୬୦୧ ରୁ ୬୫୦ ମାଇଲ ପର୍ଯ୍ୟନ୍ତ ୧୫ ଦିନ, ତଦୂର୍ଦ୍ଧେ ୧୮ ଦିନ ପର୍ଯ୍ୟନ୍ତ ଫେରି ଆସିବାର କଥା ।

ରିଟର୍ଣ୍ଣ ଟିକଟର ଶେଷାଂଶ କିମ୍ବା କୌଣସି ଟିକଟ କିଣି ବ୍ୟବହାର ନ କଲେ ବିଶେଷ କାରଣ ଦେଖାଇ ଦରଖାସ୍ତ କଲେ ମୂଲ୍ୟ ଶତକଡ଼ା ୫୧୦ ଙ୍କା ହିସାବରେ ବାଦ ଦିଆ-ଯାଇ ଫେରାଇ ଦିଆଯାଏ ।

୩ ବର୍ଷ ବୟସର ଶିଶୁ ପାଇଁ ଭଡ଼ା ନିଆଯାଏ ନାହିଁ ।

୧୨ ବର୍ଷ ପର୍ଯ୍ୟନ୍ତ ଭଡ଼ା ଅର୍ଦ୍ଧେକ ।

ଯେ ଶ୍ରେଣୀର ଟିକଟ ତାହାଠାରୁ ଉଚ୍ଚତର ଶ୍ରେଣୀରେ ଗଲେ ଅଧିକ ଭଡ଼ା ଦେବାକୁ ହୁଏ ।

ସଂକ୍ରାମକ ରୋଗ ନେଇ କେହି ରେଲୱେ ଗାଡ଼ିରେ ଯିବେ ନାହିଁ, ଗଲେ ଯେଉଁଠାରେ ଧରା ପଡ଼ିବେ ସେହିଠାରେ ଓହ୍ଲାଇ ଦିଆଯିବ । ଅନ୍ୟ ରୋଗ ଥିଲେ ଷ୍ଟେସନମାଷ୍ଟରଙ୍କ ଅନୁମତି ନେଇ ଯିବେ ।

ଚଳନ୍ତା ଗାଡ଼ିରୁ ଓହ୍ଲାଇଲେ ବା ଚଢ଼ିଲେ କିମ୍ବା ଚଳନ୍ତା ଗାଡ଼ିର ଦ୍ୱାର ଖୋଲିଲେ ୫୨୦ ଙ୍କା ପର୍ଯ୍ୟନ୍ତ ଜୋରିମାନା ହୋଇପାରେ ।

କଲିକତା ବୁକିଂ ଅଫିସରୁ ଟିକଟ କିଣିଲେ ଏକଦିନ ସମୟ ମିଳେ ।

ରେଲୱେ କ୍ଷମତାପନ୍ନ କର୍ମଚାରୀ ଟିକଟ ଦେଖିବାକୁ ମାଗିଲେ ଦେଖାଇବେ, ନ ଦେଖାଇଲେ ଜୋରିମାନା ହୋଇପାରେ ।

ନିମ୍ନଲିଖିତ ଷ୍ଟେସନମାନଙ୍କରେ ସର୍ବଦା ଟିକଟ ମିଳେ, ଆଗ୍ରାସହର, ଅଲିଗଡ଼, ଏଲାହାବାଦ, ଆରା, ଅସାନ୍‌ସୋଲ, ବାଲି, ବ୍ୟାଣ୍ଡେଲ, ବନ୍ଧ୍ୟାଚଳ, ବର୍ଦ୍ଧମାନ, ବକ୍ସାର, କଲି-କତା, କାନପୁର, ଚନ୍ଦନ ନଗର, ଦିଲ୍ଲୀ, ଦାନାପୁର, ଏଟୋୟା ଗୟା, ହରିଣାଘାଟ, ହାବଡ଼ା, ଜସିଡ଼ି, ଜବଲପୁର, ମେମାରୀ, ମିର୍ଜାପୁର, ମୋଗଲ ସରାଇ, ମୋକାମା, ପାଟନା ସହର, ପାଟନା ଜଂସନ, ଶ୍ରୀରାମପୁର, ହୁଗ୍ଲି ।



## ଉଇକ୍ ଏଣ୍ଡ ରିଟର୍ଣ୍ଣ ଟିକଟ ।

ମଧ୍ୟମ ଶ୍ରେଣୀ ଏବଂ ତୃତୀୟ ଶ୍ରେଣୀ ଟିକଟ୍ ନିମ୍ନଲିଖିତ ନିୟମରେ ଦିଆଯାଏ । ଏହି ଟିକଟ୍ ୫୦ ମାଇଲ ବା ତଦୂର୍ଦ୍ଧ୍ୱ ରାସ୍ତା ପାଇଁ ଦିଆହୁଏ । ପ୍ରତି ସପ୍ତାହରେ ଗୁରୁବାର ରାତି ୧୨ଟାଠାରୁ ଶନିବାର ରାତି ବାରଟା ପର୍ଯ୍ୟନ୍ତ ରିଟର୍ଣ୍ଣ ଟିକଟ୍ ଦିଆଯାଏ । କିନ୍ତୁ ମଙ୍ଗଳବାର ରାତି ବାରଟା ମଧ୍ୟରେ ଫେରି ଆସିବାକୁ ହୁଏ । ଯଦି ମଙ୍ଗଳବାର ସର୍କାରୀ ଛୁଟି ଥାଏ ତେବେ ବୁଧବାର ରାତି ୧୨ଟାରେ ଫେରିବାକୁ ହୁଏ ।

ରିଟର୍ଣ୍ଣ ଟିକଟ୍ ଯାହି ଯାତ୍ରୀମାନେ ବାଟରେ ମଧ୍ୟ ଷ୍ଟେସନରେ ଓହ୍ଲାଇ ପାରିବେ ନାହିଁ ।



ଘୋଡ଼ା—୧ମ ଗୋଟାକୁ ମାଇଲକ ପାଇଁ ଟ ୦ ୷ ଓ ଗୋଟାକୁ ଟ ୦ / ହିସାବ ଆଉ ଯେତେ ଅଧିକ ଥିବ ତଦନୁସାରେ ଗୋଟିଏ ଗାଡ଼ିର ଭଡ଼ା ଟ ୫୯ ହିସାବରେ ଜଣେ ସେହି ଜଣକ ନାମରେ ପଠାଇ ପାରେ ପ୍ରତ୍ୟେକ ପ୍ରାଣୀ ପାଇଁ ଜଣେ ସହିସ ବିନା ଭଡ଼ାରେ ଯିବ ।

କୁକୁର—ଗୋଟାକୁ ପ୍ରତି ମା ୫୦ ଇଲ ବା ତହିଁରୁ କମ ରାସ୍ତାପାଇଁ ଟ ୦ । ମନୁଷ୍ୟ ଥିବା ଗାଡ଼ିରେ କୁକୁରକୁ ନିଆଯାଇ ନ ପାରେ ।

ବାଇ ସାଇକଲ୍ ଓ ଟ୍ରାଇ ସାଇକଲ୍—ମାଲ ସ୍ୱରୂପ ମାଲିକ ସହିତ ଯାଇପାରେ । ବାଇସାଇକଲକୁ ଏକମହଣ ଓ ଟ୍ରାଇସାଇକଲକୁ ଦୁଇମହଣ ମାଲ ହିସାବରେ ଭଡ଼ା ଦେବାକୁ ହୁଏ । ଯେଉଁ ବାଇସାଇକେଲ ପ୍ରସ୍ତୁତ ପ୍ୟାକେଟ୍ ହୋଇଥିବ ତାର ଭଡ଼ା ଓଜନ ଅନୁସାରେ ଧରାଯିବ ।



## ପୋଷ୍ଟାଫିସ ସମ୍ବନ୍ଧରେ ଜ୍ଞାତବ୍ୟ ବିଷୟ

ଟେଲିଗ୍ରାଫ—( ୧ ) ଏକ୍ସପ୍ରେସ ( Express ) ଅର୍ଥାତ୍ ଜରୁରୀ ପ୍ରତି ୧୨ କଥାରେ ଟ ୧୳, ଅତିରିକ୍ତ ପ୍ରତି କଥାରେ ଟ ୦ ୷ ଠିକଣାରେ ଖରଚ ଦେବାକୁ ହୁଏ । ( ୨ ) ଅର୍ଡିନାରୀ ( Ordinary ) ଅର୍ଥାତ୍ ସାଧାରଣ ପ୍ରତି କଥାରେ ଟ ୦ ୳, ଅତିରିକ୍ତ ପ୍ରତ୍ୟେକ କଥାରେ ଟ ୦ / । ଠିକଣାର ମଧ୍ୟ ଏହି ନିୟମ । ( ୩ ) ସମ୍ବାଦ ପତ୍ରପାଇଁ ସମାଚାର ପଠାଇଲେ ଏକ୍ସପ୍ରେସରେ ୪୮ ଅକ୍ଷରରେ ଟ ୧୳, ଅତିରିକ୍ତ ପ୍ରତି ଛଅ କଥାରେ ଟ ୦ ୷, ଠିକଣାର ଖରଚ ନାହିଁ । ଅର୍ଡିନାରୀରେ ୪୮ ଅକ୍ଷରରେ ଟ ୦ ୳, ଅତିରିକ୍ତ ପ୍ରତ୍ୟେକ ଛଅ କଥାରେ ଟ ୦ / ଠିକଣାର ଖରଚ ନାହିଁ । ( ୪ ) ଟେଲିଗ୍ରାମର ଉତ୍ତର ଜାଣିବାକୁ ହେଲେ ଅଗ୍ରିମ ଉକ୍ତ ହାରରେ ଜମା ଦେବାକୁ ହୁଏ ।

ସରକାରୀ ଡାକ—ଡାକଘରରେ ରବିବାର, ବଡ଼ଦିନ, ନିଉଇୟର୍ସଡେ, ଗୁଡ୍‌ଫ୍ରାଇଡେ, କିଂସ୍‌ବାର୍ଥ ଡେ, ଶ୍ରୀ ପଞ୍ଚମୀ, ଜନ୍ମାଷ୍ଟମୀ, ଇଦଲଫିତର, ମହାଳୟା, ଦୁର୍ଗାପୂଜା, ମହରମ, ଫତେଦୋୟାଦମ୍, ଶିବରାତ୍ରି, ଦୋଳଯାତ୍ରା, ବକରିଦ୍ ବ୍ୟତୀତ ୮ଟା ଠାରୁ ୫ଟା ପର୍ଯ୍ୟନ୍ତ ନାନାବିଧ କାର୍ଯ୍ୟ ହୁଏ । ମଣିଅର୍ଡର ଟଙ୍କା ଦେବା ନେବା ଓ ସେଭିଂବ୍ୟାଙ୍କର କାର୍ଯ୍ୟ ୧୦ ଟା ପରଠାରୁ ୩ଟା ପର୍ଯ୍ୟନ୍ତ । ରେଜେଷ୍ଟାରୀ ବା ବୀମା କରିବା ଭ୍ୟାଲୁପେଏବଲ ଓ ଅନ୍ୟାନ୍ୟ ପାର୍ସେଲ ଦେବା ଏବଂ ରସିଦ ପାଇବାର ସମୟ—ସକାଳ ୧୦ ଟା ଠାରୁ ୫ଟା । ପତ୍ର ସକଳ ଦିନ ତମାମ ନେବା ଦେବା ହୁଏ । କଲିକତାରେ ସକାଳ ୭ ଟା ଠାରୁ ରାତି ୧୦ ଟା ପର୍ଯ୍ୟନ୍ତ ପ୍ରତି ଦୁଇ ଘଣ୍ଟାରେ ଡାକ ଦିଆଯାଏ । ଅନେକ ପ୍ରଧାନ ନଗରରେ ପ୍ରାତଃକାଳଠାରୁ ସୂର୍ଯ୍ୟାସ୍ତ ପର୍ଯ୍ୟନ୍ତ କାର୍ଯ୍ୟ ହୁଏ ।

ପତ୍ର ଡାକରେ—ଲଫାଫାରେ ପତ୍ର, ପୋଷ୍ଟକାର୍ଡ, ସମ୍ବାଦ ପତ୍ର ( ଖଣ୍ଡିଏମାତ୍ର ), ୪୦ ତୋଳାର ନ୍ୟୂନ ଓଜନର ଅନ୍ୟାନ୍ୟ ପୁଳିନ୍ଦା ପ୍ରେରିତ ହୁଏ । ଏ ସବୁ ସର୍ବାପେକ୍ଷା ଶୀଘ୍ର ପହୁଞ୍ଚେ ।

ବେୟାରିଂ ଏବଂ ଇନ୍‌ସଫିସିଏଣ୍ଟ—ପତ୍ରରେ ଓ ବୁକ୍ ପ୍ୟାକେଟରେ ଅଗ୍ରେ ମାସୁଲ ନ ଦେଲେ ବା ଅଳ୍ପ

ଶିବଦ୍ରବ୍ୟ ଦ୍ୱିଜଦ୍ରବ୍ୟ ଆଦରେ ।

ମାସୁଲ ଦେଲେ ଯାହା ବାକୀ ଦେୟ ତାହାର ଦୁଇଗୁଣ ଗ୍ରହୀତା ନିକଟରୁ ଅଦାୟ କରାହୁଏ । ବେୟାରିଂ ପତ୍ର ଉକ୍ତମତରୂପେ ଅଣ୍ଟି ନ ପଠାଇଲେ ଡେଡଲେଟର ଅଫିସକୁ ଯାଏ ଏବଂ ସେଠାରେ ପ୍ରେରକର ସନ୍ଧାନ ନ ପାଇଲେ ନଷ୍ଟ କରାହୁଏ ।

ବେୟାରିଂ ପତ୍ରର ମାସୁଲ ଫେରତ—ମନ୍ଦ ଅଭିପ୍ରାୟରେ କେହି ପତ୍ର ବେୟାରିଂ ପଠାଇଲେ, ମାସୁଲ ଦେଇ ଗ୍ରହଣ କରି, ପରେ ଆବେଦନ କଲେ ମାସୁଲ ଫେରତ ଦିଆଯାଇ ପାରେ ।

ନାଲିଶ—ପୋଷ୍ଟଅଫିସ ନାମରେ ନାଲିଶରେ ପତ୍ରକୁ ଯଥା-ଖାତ ମାସୁଲ ଦେବାକୁ ହୁଏ ଏବଂ କୌଣସି ଏକ ବିଷୟ ଅନୁସନ୍ଧାନ କରିବାକୁ ହେଲେ ୦ ॥ ହିସାବରେ ଫିସ୍ ଦେବାକୁ ହୁଏ ।

ରେଜେଷ୍ଟାରୀ—ପତ୍ର, ପୋଷ୍ଟକାର୍ଡ, ବୁକ୍ ଓ ପ୍ୟାକେଟ୍ ପ୍ୟାକେଟ ରେଜେଷ୍ଟାରୀ କଲେ ୦ ॥ ଦେବାକୁ ହୁଏ । ପତ୍ରାଦି ରେଜେଷ୍ଟାରୀ ହେଲେ ନିରାପଦରେ ଯାଏ ।

ବୁକ୍‌ପୋଷ୍ଟ—ପ୍ରତି ୫ ବା ଅଂଶିକ ତୋଳାରେ ଡାକ ମାସୁଲ ୦ ୬, ପୁସ୍ତକର ବେୟାରିଂ ମାସୁଲ ଓ ରେଜେଷ୍ଟାରୀର ନିୟମାଦି ଠିକ୍ ପତ୍ରପରି ଖବରକାଗଜ (Registered news papers) ୮ ତୋଳାରୁ ବେଶି ଓଜନ ନ ହେଲେ ୦ ୯, ୮ଠାରୁ ୨୦ ତୋଳା ମଧ୍ୟରେ ଓଜନ ହେଲେ ୦ ୬ ଓ ତହିଁରୁ ଅଧିକ ପ୍ରତି ୨୦ ତୋଳା ବା ତାହାର ଅଂଶ ନିମନ୍ତେ ୦ ୬ ମାସୁଲ ଲାଗେ ।
ପୋଷ୍ଟକାର୍ଡ ୦ ୯, ରିପ୍ଲାଇକାର୍ଡ ୦ ୬ । ଲଫାଫା ଅଢ଼େଇ ଓଜନ ୦ ୨ରୁ ଅଧିକ ନ ହେଲେ ମାସୁଲ ୦ ୩ ଓଜନ ୦ ୨ରୁ ଅଧିକ ହେଲେ ପ୍ରତି ୨ ତୋଳା କିମ୍ବା ତହିଁର ଅଂଶ ନିମିତ୍ତ ୦ ୩ ମାସୁଲ ଲାଗେ ।

## ବୁକ୍ ପୋଷ୍ଟରେ ନିମ୍ନଲିଖିତ ଜିନିସମାନ ପଠାଯାଏ

(୧) ସମ୍ବାଦପତ୍ର ବା ଯେ କୌଣସି ପ୍ରକାରର ଛାପା (୨) ପୁସ୍ତକ (ସାଦା ବା ଛାପା) ଏନଗ୍ରେଭିଂ ଫଟୋ-ଗ୍ରାଫ, ଡ୍ରଇଂ, ମ୍ୟାପ, ପ୍ଲାନ, ପ୍ରୁଫସିଟ୍ ଅଥବା ମ୍ୟାନୁଷ୍କ୍ରିପ୍ଟ (୩) ସାଦା କାଗଜ ପାର୍ଚମେଣ୍ଟ ଅଥବା ପୋଷ୍ଟକାର୍ଡ (୪) ଯେ କୌଣସି ପ୍ରକାର ଛାପା ଏନ୍‌ଗ୍ରେଭିଂ ବା ଲିଥୋଗ୍ରାଫ କାଗଜ, ତାହାର ପ୍ରୟୋଜନୀୟ ପୁସ୍ତକ ଓ ପକେଟ୍‌ବୁକ୍ ଓ ପେନ୍‌ସିଲ ପ୍ରଭୃତି । କିନ୍ତୁ କୌଣସି ସମ୍ବାଦ ଲେଖା ଥିବ ନାହିଁ (ବିଲ-ଅଫ ଲେଡିଂ, ଦଲିଲ, ହିସାବର ଫର୍ଦ୍ଦ, ଇନ୍‌ଭୟେସ ପ୍ରଭୃତି କେତେକ ହସ୍ତଲିଖିତ ଥିଲେ ମଧ୍ୟ (ପତ୍ର ନ ହେଲେ) ପଠାଯାଏ । "ପୋଷ୍ଟକାର୍ଡ" ବୋଲି କଥା ଥିଲେ ସେପରି କାର୍ଡ, ପତ୍ର ଓ "ପେପାରମନି" ଅର୍ଥାତ୍ ଷ୍ଟାମ୍ପ, କରେନ୍‌ସି ନୋଟ, ହୁଣ୍ଡି, ଚେକ, ବ୍ୟାଙ୍କ ନୋଟ, ବ୍ୟାଙ୍କ ପୋଷ୍ଟ, ବିଲ, ବିଲ ଅଫ ଏକ୍‌ସଚେଞ୍ଜ ପ୍ରଭୃତି ବୁକ୍ ପୋଷ୍ଟରେ ପଠାଯାଏ । କେବଳ ମାତ୍ର ଶିରୋନାମା ଲେଖା (Addressed Envelopes and Post Cards) ପୋଷ୍ଟକାର୍ଡ ଓ ଲଫାଫା ବୁକ୍ ପୋଷ୍ଟରେ ପଠାଯାଏ । ବୁକ୍ ପୋଷ୍ଟର ଉପରର କଭର ଦୁଇ ପାଖ ଖୋଲା ଥିଲେ କିମ୍ବା ଖୋଲା ଲଫାଫାର ମୁଣ୍ଡ ମଧ୍ୟରେ ମୋଡ଼ ଦିଆଯାଇ ପାରେ ଅଥବା ସରୁ ଦଉଡ଼ି ବା ସୂତା ବାନ୍ଧି ଦେଲେ ଚଳେ । ଅଥବା ପ୍ରୟୋଜନ ହେଲେ ପୋଷ୍ଟାଫିସର କର୍ତ୍ତୃପକ୍ଷ ଯହିଁରେ ଭିତରର ଜିନିଷ ପରୀକ୍ଷା କରି ପାରିବେ ଏପରି ସୁବିଧା କରିଦେବା ଆବଶ୍ୟକ (କ) ବୁକ୍‌ପୋଷ୍ଟର ସାଇଜ ୨ଫୁଟ ଲମ୍ବା ୧ଫୁଟ ପର୍ଯ୍ୟନ୍ତ ଚୌଡ଼ା ହୋଇ ପାରେ । ଯେବେ ରୁଲପରି ହୁଏ ତେବେ ୩୦ଇଞ୍ଚ ପର୍ଯ୍ୟନ୍ତ ଅଥବା ଦୁଇଫୁଟ ହେଲେ ୪ଇଞ୍ଚ ମୋଟାରୁ ବେଶୀ ନେବାର ନିୟମ ନୁହେ । ଏହାର ଓଜନରେ କୌଣସିପ୍ରକାର ନିୟମ ନାହିଁ । (ଖ) ଉପରଲିଖିତ

ଜନ୍ମନର ବ୍ୟକ୍ତମ ହେଲେ ପତ୍ର ହିସାବରେ ପାର୍ଶଲର ମାସୁଲ ଆଦାୟ କରାହୁଏ ।

ମଣିଅର୍ଡର—ଲକ୍ଷା ବୋର୍ଡ୍, ଲୋକେଲ ବୋର୍ଡ, ମ୍ୟୁନସିପାଲଟି ଓ ସରକାରୀ ମଣିଅର୍ଡର ଛଡା ଟ ୬୦୦୲ରୁ ଅଧିକ କିମ୍ବା ଅଣାର ଭଗ୍ନାଂଶ (ଅର୍ଥାତ୍ ଟ୧୨୲୵ ସ୍ଥଳରେ ଟ ୦ ୵ ବା ଟ ୦ ୱ୵ କରାଯିବ) ହେବ ନାହିଁ । ଟ ୧୦୲ (ପର୍ଯ୍ୟନ୍ତ ଟ ୦ ୵; ତଦୂର୍ଦ୍ଧ୍ୱ ଟ ୧୫୲ ପର୍ଯ୍ୟନ୍ତ ଟ ୦ । ତଦୂର୍ଦ୍ଧ୍ୱରେ ପ୍ରତି ଟ ୨୫ ରେ ଟ ୦ । ଏବଂ ଟ ୧୦୲ ହେଲେ ଟ ୦ ୱ୵ ଅତିରିକ୍ତ ଏହିପରି ହିସାବରେ ଟ ୬୦୦୲ ପର୍ଯ୍ୟନ୍ତ ମଣିଅର୍ଡର କରା ଯାଇପାରେ ।

ଟେଲିଗ୍ରାଫିକ ମଣିଅର୍ଡର—ଟେଲିଗ୍ରାଫିକ ମଣିଅର୍ଡର ଟ ୬୦୦୲ର ଅଧିକ ଏବଂ ଟ ୧୲ରୁ କମ୍ ହୁଏନାହିଁ । ଜରୁରି ବା ସାଧାରଣ ଟେଲିଗ୍ରାଫର ହାରର ଉପର ମଣିଅର୍ଡର କମିସନ ଯୋଗ କରି ଯାହା ହୁଏ, ଟେଲିଗ୍ରାଫିକ ମଣିଅର୍ଡାରର ମାସୁଲ ସ୍ୱରୂପ ତାହା ଦେବାକୁ ହୁଏ ।

ଇନ୍ସିଓରେନ୍ସ—୧୦୦ ଅନଧିକ ଟ ୦ ୵ ଅତିରିକ୍ତ ପ୍ରତି ଟ ୧୦୦୲ ବା ଆଂଶିକ ଟଙ୍କାରେ ଟ ୦ ୵ । ରେଜିଷ୍ଟାର୍ଡ ପାର୍ଶଲ ଟ ୬୦୦୲ ପର୍ଯ୍ୟନ୍ତ ବ୍ରାଞ୍ଚ ପୋଷ୍ଟାଫିସରେ ଓ ଟ ୨୦୦୦୲ ପର୍ଯ୍ୟନ୍ତ ହେଡ ଅଫିସରେ ଇନ୍‌ସିଓରେନ୍ସ କରାଯାଇ ପାରେ ।

ଭେଲ୍ୟୁପେୟେବଲ୍ ଡାକ—ରେଜିଷ୍ଟାର୍ଡ ପାର୍ଶଲ ସାମୟିକ ପତ୍ର ପୁସ୍ତକର ପୁଲିନ୍ଦା ଏବଂ ରେଲଓ୍ୱେ ରସିଦ ଭେଲ୍ୟୁପେୟେବଲ କରା ଯାଇପାରେ ଅର୍ଥାତ୍ ବିଲର ସମସ୍ତ ପୋଷ୍ଟାଫିସ ଦ୍ୱାରା ଗ୍ରହୀତା ନିକଟରୁ ତାହାର ଦାମ ଆଦାୟ କରା ଯାଇପାରେ । ରେଲ ରସିଦ ଭି: ପି କରିବାକୁ ହେଲେ ମାସୁଲ ଅଗ୍ରିମ ଦେବାକୁ ହୁଏ ଏରୂପ ପଠାଇବା କେବଳ ଯେଉଁଠାରେ ମଣିଅଡାରର ଟଙ୍କା ମିଳେ ସେହି ସ୍ଥାନକୁ ଯାଇ ପାରେ । ଏପରି ଭାବରେ ପଠାଇବାକୁ ହେଲେ ପଠାଇବା ସମୟରେ କେତେ ଆଦାୟ କରିବାକୁ ହେବ ତାହା ପୋଷ୍ଟାଫିସ ଫରମରେ ସ୍ପଷ୍ଟ କରି ଲେଖି ଦେବାକୁ ହୁଏ । ଏହାପାଇଁ ଖଣ୍ଡେ ରସିଦ ମିଳେ । ଭି: ପି ଡାକରେ ମାସୁଲ ପଠାଇବାକୁ ହେଲେ ରେଜେଷ୍ଟାରୀ କରିବାକୁ ହୁଏ ରେଜେଷ୍ଟାରୀ ଖରଚ୍ଚ ଟ ୦ ୷ ।

## ପାର୍ଶେଲ

| | | | | |
|---|---|---|---|---|
| ୨୦ | ତୋଳାରୁ | ଅଧିକ ଓଜନ ନ | ହେଲେ ମାସୁଲ | ଟ ୦ ୵ |
| ୪୦ | ,, | ,, | ,, | ଟ ୦ । |
| ୮୦ | ,, | ,, | ,, | ଟ ୦ ୱ |
| ୧୨୦ | ,, | ,, | ,, | ଟ ୦ ୱ |
| ୧୬୦ | ,, | ,, | ,, | ଟ ୧୲ |
| ୨୦୦ | ,, | ,, | ,, | ଟ ୧ । |
| ୨୪୦ | ,, | ,, | ,, | ଟ ୧ ୱ |
| ୨୮୦ | ,, | ,, | ,, | ଟ ୧ ୱ |
| ୩୨୦ | ,, | ,, | ,, | ଟ ୨୲ |
| ୩୬୦ | ,, | ,, | ,, | ଟ ୨ । |
| ୪୦୦ | ,, | ,, | ,, | ଟ ୨ ୱ |
| ୪୪୦ | ,, | ,, | ,, | ଟ ୨ ୱ |
| ୪୮୦ | ,, | ,, | ,, | ଟ ୩୲ |
| ୫୨୦ | ,, | ,, | ,, | ଟ ୩ । |
| ୫୬୦ | ,, | ,, | ,, | ଟ ୩ ୱ |
| ୬୦୦ | ,, | ,, | ,, | ଟ ୩ ୱ |
| ୬୪୦ | ,, | ,, | ,, | ଟ ୪୲ |
| ୬୮୦ | ,, | ,, | ,, | ଟ ୪ । |
| ୭୨୦ | ,, | ,, | ,, | ଟ ୪ ୱ |
| ୭୬୦ | ,, | ,, | ,, | ଟ ୪ ୱ |
| ୮୦୦ | ,, | ,, | ,, | ଟ ୫୲ |

୮୦୦ ତୋଳାରୁ ଅଧିକ ଓଜନର ପାର୍ଶେଲ ଡାକଘରେ ନିଆଯିବ ନାହିଁ ।

ପାର୍ଶେଲ ଓ ଖବରକାଗଜର ଷ୍ଟାମ୍ପ ଅଗ୍ରିମ ଦେଲେ, ଏଥିରେ ବେରିଙ୍ଗ ଚଳେ ନାହିଁ ।

ପାର୍ଶେଲ ରେଜେଷ୍ଟରୀ କରି ପଠାଇଲେ ଉଲ୍ଲିଖିତ ମାସୁଲ ଉପରେ ରେଜେଷ୍ଟାରୀ ଖର୍ଚ୍ଚା ଅଧିକ ଟ ୦ ୷ ପଡ଼ିବ ।

କମିଶନର ହାର—ମଣିଅର୍ଡ଼ାର ପରି କମିଶନର ଭି: ପି:
କମିଶନ-ପାର୍ଶଲ ଗ୍ରହଣକାରୀ ଠାରୁ ଆଦାୟ କରି ନିଆ ହୁଏ । ଭି: ପି: ପ୍ୟାକେଟର ମାସୁଲର ଖରଚ ପାର୍ଶେଲ ଉପରେ ଷ୍ଟାମ୍ପ କିଣି ଆଗେ ବସାଇ ଦେବାକୁ ହୁଏ । ଟ ୧୦୦୦୲ ଅଧିକ ମୂଲ୍ୟର ଦ୍ରବ୍ୟ ପଠାଇବା ଏକଅଣାର କମ ( ଅର୍ଥାତ୍ ପଇସାର ଗୁର୍ଜ ଧରା ହୁଏନାହିଁ ।

ପ୍ୟାକେଟ ବିଲ୍ ହୋଇଲେ ଟଙ୍କା ଆଦାୟ କରି ମଣିଅର୍ଡ଼ାର ଦ୍ୱାରା ପ୍ରେରକ ନିକଟକୁ ଟଙ୍କା ପଠା ହୁଏ । ଯଦି ଗ୍ରହୀତା ନ ନିଏ, କି ଅନ୍ୟ କାରଣରୁ ଫେରତ ହୁଏ ତେବେ ପ୍ରେରକକୁ କମିଶନ ବା ମାସୁଲ ଫେରି ଦେବାକୁ ହୁଏନାହିଁ । ଦ୍ରବ୍ୟାଦି ନଷ୍ଟ ହେଲେ ପୋଷ୍ଟାଫିସ ଦାୟୀ ହୁଏନାହିଁ ।

ଭି: ପି: ଯେଉଁ ଠିକଣାରେ ପ୍ରେରିତ ହୁଏ ସେଠାରେ ପ୍ୟାକେଟ ପହଞ୍ଚିଲେ ଶିରୋନାମାରେ ଲେଖିତ ବ୍ୟକ୍ତିକୁ ଏକ ନୋଟିସ ପଠାଯାଏ, ସେ ତଦନୁସାରେ ପୋଷ୍ଟଅଫିସକୁ ଆସି ଗ୍ରହଣ କରେ । ପ୍ୟାକେଟର ମୂଲ୍ୟ ଟ ୨୫୲ ଙ୍କାରୁ କମ ହେଲେ ପୋଷ୍ଟପିଅନ ଦ୍ୱାରା ପ୍ରେରିତ ହୁଏ ।

## ପୋଷ୍ଟଅଫିସ ସେଭିଙ୍ଗ୍‌ସ ବ୍ୟାଙ୍କ

ଟଙ୍କା ଜମାଇବା ଅଭିପ୍ରାୟରେ ପୋଷ୍ଟଅଫିସରେ ଟଙ୍କା ଗଚ୍ଛିତ କରାଯାଏ । ଇଚ୍ଛାମତ ପୁଣି ସେହି ଟଙ୍କା ଉଠାଇ ନିଆ ଯାଇପାରେ । ଟ ୦।ରୁ କମ ଓ ଏକବର୍ଷରେ ଟ ୨୫୦୲ରୁ ଅଧିକ ଜମା ରଖାଯାଏ ନାହିଁ । ସାବାଳକ ପକ୍ଷରେ ଉର୍ଦ୍ଧ୍ୱ ସଂଖ୍ୟା ୫୦୦୦ ଏବଂ ନାବାଳକ ପକ୍ଷରେ ୧୦୦୦୦ ପର୍ଯ୍ୟନ୍ତ ଜମା ରଖା ଯାଇପାରେ । ସପ୍ତାହରେ ଅର୍ଥାତ୍ ସୋମବାର ଠାରୁ ଶନିବାର ମଧ୍ୟରେ ଟଙ୍କା ଉଠାଇ ନିଆ ଯାଇପାରେ । ଶନିବାରରେ ଟଙ୍କା ନେଇ ପୁଣି ପର ସୋମବାରରେ ନିଆ ଯାଇପାରେ । ସୁଧ ଶତକରା ବାର୍ଷିକ ଟ ୩୲ ।



## କଲିକତାର ବିଦେଶୀ ମେଲରେ ଚିଠି ଯିବାର ସମୟ

| ବିଦେଶୀ ମେଲ କେଉଁ ଦେଶକୁ ଯିବ ତାର ନାମ । | ମେଲ ଯିବାର ଶେଷ ଦିନ | ଜେନେରେଲ ପୋଷ୍ଟଅଫିସର ଦେବାର ଶେଷ ସମୟ | |
|---|---|---|---|
| | | ଯେ ସକଳ ପତ୍ର ବା ପ୍ୟାକେଟ ରେଜେଷ୍ଟରୀ କରା ନୁହେଁ । | ରେଜେଷ୍ଟରୀ କରା ପତ୍ର ଓ ପ୍ୟାକେଟ । |
| ଇଉନାଇଟେଡ୍ କିଂଡମ, ଇଉରୋପ, ଏଡେନ, ଇଜିପ୍ଟ, ଇଷ୍ଟଅଫ୍ରିକା, ଅମେରିକା ( ଉତ୍ତର ଓ ଦକ୍ଷିଣ ) ଫିଜିଲ । | ବୃହସ୍ପତି ବାର ପ୍ରତ୍ୟହ । | ଅପରାହ୍ଣ { ୫—୪୫ ୬—୪୫ } { ୩—୦ ୩—୩୦ } | { ୪—୪୫ ୫—୧୫ } { ୧—୩୦ ୨—୧୦ } |

ଖାଇଲେ ବଂଶ ନୁହଇ ଉଦୟ ॥

# ଇନ୍‌ଲେଣ୍ଡ ( ଭାରତବର୍ଷୀୟ ) ପୋଷ୍ଟର ମାସୁଲ

| ୧ ପୋଷ୍ଟକାର୍ଡ଼ | | ପତ୍ର | | ବୁକ୍‌ପୋଷ୍ଟ | ପାର୍ଶଲ ( ମାସୁଲ ଅଗ୍ରିମ ଦେବାକୁ ହେବ ) | | | | ପ୍ରତି ୪୦ ତୋଲା କିମ୍ବା ଅଂଶିକ ଓଜନ ପାଇଁ ୮୦୦ ତୋଲା ପର୍ଯ୍ୟନ୍ତ । |
|---|---|---|---|---|---|---|---|---|---|
| | | | | | ୪୦ ତୋଲାରୁ ଅତିରିକ୍ତ ନୁହେଁ । | | ୪୪୦ ତୋଲାର ଉପର ହେଲେ ରେଜେଷ୍ଟରୀ କରିବାକୁ ହୁଏ । | | |
| ଏକଖଣ୍ଡ ମାତ୍ର | ଜବାବି ( ଯୋଡ଼ା ) | ୨୫ ତୋଲାରୁ ଅନଧିକ | ଅତିରିକ୍ତ ୨୫ ତୋଲା ବା ଅଂଶିକ | ପ୍ରତି ପାଞ୍ଚତୋଲା ବା ଅଂଶିକ | ୨୦ ତୋଲା ବା ଅଂଶିକ | ୨୦ ତୋଲାରୁ ଅତିରିକ୍ତ ୪୦ ତୋଲାର ଅନତିରିକ୍ତ | ଅତିରିକ୍ତ ପ୍ରତି ୪୦ ତୋଲା ବା ଅଂଶିକ ଓଜନରେ | ୪୪୦ ତୋଲାର ଅତିରିକ୍ତ କିନ୍ତୁ ୪୮୦ ତୋଲାର ଅତିରିକ୍ତ | |
| ଟ ୦ ୯ | ଟ ୦ /୬ | ଟ ୦ /୩ | ଟ ୦ /୩ | ଟ ୦ ୯ | ୵ | ୷ | । | ୷ | । |

ବିଲାତ ଯାତ୍ରୀ ଇଂଲଣ୍ଡ ମେଲରେ ମଣିଅର୍ଡ଼ର କରି ଟଙ୍କା ପଠାଇବାକୁ ହେଲେ ବୁଧବାର ଅପରାହ୍ନ ୩ ଘଣ୍ଟା ମଧ୍ୟରେ ଟଙ୍କା ଜମା ଦେବାକୁ ହେବ, ଏବଂ ପାର୍ଶଲ ପଠାଇବାକୁ ହେଲେ ବୃହସ୍ପତି ବାର ଦୁଇପ୍ରହର ମଧ୍ୟରେ କାର୍ଯ୍ୟ ସାରିବାକୁ ହେବ ।

## ଏୟାର ମେଲ ଫି
## ( AIR MAIL FEE )

ଭାରତ ମଧ୍ୟରେ ୧ ତୋଲା କିମ୍ବା ତହିଁରୁ ନିମ୍ନ ଓଜନ ଦ୍ରବ୍ୟ ପ୍ରତି ଭାରତୀୟ ପୋଷ୍ଟାଫିସ ଖରଚ ବ୍ୟତୀତ ଟ ୦ ୵

ରେଜେଷ୍ଟରୀ ହେଲେ ଭାରତୀୟ ରେଜେଷ୍ଟରୀ ଖର୍ଚ୍ଚ ବ୍ୟତୀତ ତୋଲା ପ୍ରତି } ଟ ୦ ୵

ବିଦେଶକୁ ପଠାଗଲେ ଇଣ୍ଡିଏନ ଷ୍ଟେଟ୍ସ ଏୟାରସର୍ଭିସ ଓ କରାଚୀ ଈଯୁରେ ଏୟାର ସର୍ଭିସ ଉପରେ ପ୍ରତି କିମ୍ବା ତନ୍ନିମ୍ନ ଅର୍ଦ୍ଧ ତୋଲା ପ୍ରତି

ଇଣ୍ଡିଆନ-ଇରାକ ( Indian—Iraq ) ଟ ୦ ।/

" ପେଲେଷ୍ଟାଇନ୍ ( "—Palesteine ) ଟ ୦ ।୵

" ଇଜିପ୍ଟ ( "—Egypt ) ଟ ୦ ।୵

ଭାରତରୁ ଇଉରୋପର ଯେ କୌଣସି ନିର୍ଦ୍ଦିଷ୍ଟ ସ୍ଥାନପାଇଁ ଟ ୦ ୫

ସେଥିରେ ସାଧାରଣ ଫରେନ୍ ପୋଷ୍ଟେଜ ଖର୍ଚ୍ଚ ମଧ୍ୟ ଦିଆଯିବ ।

ଭୋଜନ ଦେଲେ ବିପ୍ରମାନେ ସନ୍ତୋଷ ।

## ଇନ୍‌ସିଓରେନ୍ସ ଫି
( INSURANCE FEE )

ପୋଷ୍ଟ ଚାର୍ଜ ଓ ରେଜେଷ୍ଟ୍ରାରି ଫିସ୍ ବ୍ୟତୀତ ଇନ୍‌ସିଓରେନ୍ସ ପାଇଁ ନିମ୍ନଲିଖିତ ହିସାବ ଅନୁସାରେ ଖର୍ଚ୍ଚ ଲାଗେ ।

| | ଟଙ୍କା ଅଣା ପାହି |
|---|---|
| ଟ ୧୦୦୲ ରୁ ଅନଧିକ ମୂଲ୍ୟ ହେଲେ | ଟ ୦ ୷ ୦ |
| ଟ ୧୦୦୲ ରୁ ଊର୍ଦ୍ଧ୍ୱ ଓ ଟ ୧୫୦୲ ରୁ କମ ହେଲେ | ଟ ୦ । ୦ |
| ଟ ୧୫୦୲ ରୁ ଊର୍ଦ୍ଧ୍ୱ ଓ ଟ ୨୦୦୲ ରୁ କମ ହେଲେ | ଟ ୦ ।/ ୦ |
| ପ୍ରତି ଟ ୧୦୦୲ କିମ୍ବା ତାହାର ଅଂଶ ବିଶେଷ ଅଧିକ ହେଲେ ଟ ୨୦୦୲ ଠାରୁ ଟ ୧୦୦୦୲ ପର୍ଯ୍ୟନ୍ତ | ଟ ୦ √ ୦ |
| ଟ ୧୦୦୦୲ ରୁ ଅଧିକ | ଟ ୦ / ୦ |



( FOREIGN )

## ଫରେନ୍ ବା ବିଦେଶୀ ପୋଷ୍ଟ ମାସୁଲ

( ସିଲୋନ ବା ଲଙ୍କା ଓ ପର୍ତ୍ତୁଗିଜ୍ ଇଣ୍ଡିଆ ( ଭାରତ ) ଭାରତୀୟ ଡାକ ମାସୁଲ )

ଇଣ୍ଟର୍ ନେଶନାଲ (International) ପୋଷ୍ଟକାର୍ଡ ଟ ୦ √
ରିପ୍ଲାଇ　　,,　　ଟ ୦ ।

## ଚିଠି

| | |
|---|---|
| ଇଉନାଇଟେଡ୍ କିଂଡ଼ମ ଓ ସମଗ୍ର ବ୍ରିଟିଶ୍ ଅଧିକୃତ ରାଜ୍ୟ ଏବଂ ସୁଇଡ଼େନ ସହିତ ଚିଜପତ୍ର, ୧ ଅଉନ୍ସ ପାଇଁ | ଟ ୦ √ |
| ଅଧିକ ପ୍ରତି ଅଉନ୍ସ କିମ୍ବା ତାର ଅଂଶ ପାଇଁ | ଟ ୦ √ |
| ପୃଥିବୀର ଅନ୍ୟାନ୍ୟ ଅଂଶ ପାଇଁ ୧ ଅଉନ୍ସରୁ ଅନଧିକ | ଟ ୦ ୷୨ |
| ଅଧିକ ପ୍ରତି ଅଉନ୍ସ କିମ୍ବା ତାର ଅଂଶ ପାଇଁ | ଟ ୦ √ |
| ୨ ଅଉନ୍ସ ବା ତାର ଅଂଶ ପାଇଁ କାରବାରି କାଗଜ | ଟ ୦ ୲୯ |

## ମୁଦ୍ରିତ କାଗଜ

| | |
|---|---|
| ୮ ଅଉନ୍ସରୁ ଅନଧିକ | ଟ ୦ ୷ |
| ପ୍ରତି ୨ ଅଉନ୍ସ ଅଧିକ ପାଇଁ | ଟ ୦ ୲୯ |

## ସେମ୍ପଲ୍ ( ନମୁନା )

| | |
|---|---|
| ୪ ଅଉନ୍ସରୁ ଅନଧିକ | ଟ ୦ / |
| ପ୍ରତି ୨ ଅଉନ୍ସ ଅଧିକ | ଟ ୦ ୲୯ |

## ରେଜେଷ୍ଟ୍ରୀ ଫି

| | |
|---|---|
| ପ୍ରତ୍ୟେକ ଚିଠି, ପୋଷ୍ଟକାର୍ଡ କିମ୍ବା ପ୍ୟାକେଟ ପାଇଁ ରେଜିଷ୍ଟ୍ରାରି ଖର୍ଚ୍ଚ ( ଷ୍ଟାମ୍ପରେ ) | ଟ ୦ ୷ |
| ,,　　,, ଫେରନ୍ତପାଇଁ | ଟ ୦ ୷ |

## ପାର୍ଶଲ

| | |
|---|---|
| ଜିବ୍ରାଲଟର ଦେଇ ଇଉନାଇଟେଡ୍ କିଂଡ଼ମ ପାଇଁ ୩ ପାଉଣ୍ଡରୁ ଅନଧିକ | ଟ ୧ ୴ |
| ୩ ପାଉଣ୍ଡରୁ ଅଧିକ ୭ ପାଉଣ୍ଡରୁ ଅନଧିକ | ଟ ୨ ୳ |
| ୭　,,　୧୧　,, | ଟ ୩ ୳୷ |
| ୧୧　,,　୨୦　,, | ଟ ୭ ।√ |

୧୧ ପାଉଣ୍ଡରୁ ଅଧିକ ଓ ୫୦ ପାଉଣ୍ଡରୁ ଅନଧିକ ପାର୍ଶଲମାନ P. & O. S. N. Co ଙ୍କ ଜରିଆରେ ପାଉଣ୍ଡ ପ୍ରତି ଟ ୦ ୴ ଦେଇ ପଠାଯାଏ ।

## ମନିଅର୍ଡର

| | |
|---|---|
| ଷ୍ଟର୍ଲିଂ ମନିଅର୍ଡର ପାଇଁ ୧ ଶିଲିଂ ରୁ ଅନଧିକ | ଟ ୦ ୷ |
| ୧ ଶିଂ ରୁ ଅଧିକ ଓ ୨ ଶିଂ ରୁ ଅନଧିକ | ଟ ୦ ।/ |
| ୨ ଶିଂ　,,　୩ ଶିଂ　,, | ଟ ୦ ୴ |
| ୩ ଶିଂ　,,　୪ ଶିଂ　,, | ଟ ୦ ୴√ |
| ୪ ଶିଂ　,,　୫ ଶିଂ　,, | ଟ ୦ ୳ |
| ୫ ଶିଂ ରୁ ଅଧିକ | ଟ ୦ ୳ |

ପ୍ରତ୍ୟେକ ବୈଦେଶିକ ଷ୍ଟାର୍ଲିଂ ବା ଟଙ୍କା ମନିଅର୍ଡର ପାଇଁ ଟ ୦ √ ଅଧିକ ଚାର୍ଜ ପଡ଼େ ।

ମେଘ ଗର୍ଜନେ ଶିଖୀ ହୁଏ ହରଷ ॥

## ଟେଲିଗ୍ରାଫ ( Foreign )

ଭାରତ ବା ବର୍ମାର କୌଣସି ଅଫିସରୁ ତୁର୍କି ଓ ଟର୍କି ଛଡ଼ା ଇଉରୋପର ଅନ୍ୟଦେଶମାନଙ୍କ ଭିଇଅ ଇଣ୍ଡୋ ବା ଇଷ୍ଟର୍ଣ୍ଣ ( Via Indo or Eastern ) ଠିକଣା ସହିତ ପ୍ରତି ଶବ୍ଦକୁ ଟ ୧ ।

ସରଳ ଭାଷାରେ ବିଦେଶୀ ପ୍ରାଇଭେଟ ଟେଲିଗ୍ରାମ ପାଇଁ ଅଧିକ ମାଶୁ ।

## ( Foreign ) ପ୍ରେସ ଟେଲିଗ୍ରାଫ

ଭାରତ ବା ବର୍ମାର କୌଣସି ଅଫିସରୁ ଭିଇଅ ଇଣ୍ଡୋ ବା ଇଷ୍ଟାର୍ଣ୍ଣ; ଇଉନାଇଟେଡ଼ କିଂଡମକୁ ଶବ୍ଦ ପ୍ରତି ଟ ° ।

## ସାଂକେତିକ ଟେଲିଗ୍ରାମ୍

ଭାରତ ବା ବର୍ମାରୁ ମାନ୍ଦ୍ରାଜ ଦେଇ ଠିକଣା ସହିତ ପ୍ରତି ଶବ୍ଦକୁ

| | |
|---|---|
| ଏକ୍ସପ୍ରେସ—ପ୍ରଥମ ୧୨ଟି ଶବ୍ଦ ( ଠିକଣା ସହ ) | ଟ ୨୧ |
| ପ୍ରତି ଅତିରିକ୍ତ ଶବ୍ଦ | ଟ ° ୶ |
| ସାଧାରଣ—ପ୍ରଥମ ୧୨ଟି ଶବ୍ଦ ( ଠିକଣା ସହ ) | ଟ ୧୧ |
| ପ୍ରତି ଅତିରିକ୍ତ ଶବ୍ଦ | ଟ ° ୶ |

## ସାଂକେତିକ ପ୍ରେସ ଟେଲିଗ୍ରାମ

| | |
|---|---|
| ଷ୍ଟେସନରୁ ଭାରତ ବା ବର୍ମା ପ୍ରଥମ ୩୨ଟି ଶବ୍ଦ | ଟ ୧୶ |
| ପ୍ରତି ଅତିରିକ୍ତ ୪ଟି ଶବ୍ଦକୁ | ଟ ° ୲ |

## ରେଡ଼ିଓ ଟେଲିଗ୍ରାମ

( ୧ ) ବ୍ରିଟିଶ ଭାରତ କିମ୍ବା ଔପନିବେଶିକ ( Colonial ) ଗଭର୍ଣ୍ଣମେଣ୍ଟ ଟେଲିଗ୍ରାମ ସରକାର ବାହାଦୁରଙ୍କ ( His Britanic Majestey's Ships ) କିମ୍ବା ଯୁଦ୍ଧ ଓ ଭାରତୀୟ ଦ୍ୱୀପାନ୍ତରିତ ବ୍ୟକ୍ତିଙ୍କ ଠାକୁ ବା ଠାରୁ ଶବ୍ଦ ପ୍ରତି ଟ ° ।୶

( ୨ ) ବେସରକାରୀ ଟେଲିଗ୍ରାମ (His Majestey's Ships) କିମ୍ବା ଯୁଦ୍ଧଠାରୁ କିମ୍ବା ଠାକୁ ଶବ୍ଦ ପ୍ରତି ଟ ° ।୶

( ୩ ) ଅନ୍ୟାନ୍ୟ ସମସ୍ତ ସରକାରୀ କିମ୍ବା ବେସରକାରୀ ଟେଲିଗ୍ରାମ ଶବ୍ଦ ପ୍ରତି ଟ ° ୲୶

( ୪ ) ଆର୍ଜେଣ୍ଟାଇନ୍, ବେଲଜିଏମ, ଡେନ୍ମାର୍କ, ଡଚ୍, ଜର୍ମାନ, ଗ୍ରୀକ୍, ନରୱେ ସ୍ୱିଡେନ, ପର୍ତ୍ତୁଗୀଜ, ସ୍ପେନୀୟ କିମ୍ବା ସ୍ୱଦେଶୀ ଜାହାଜମାନଙ୍କୁ

(କ) ପ୍ରତି ୧୦ ଶବ୍ଦ କିମ୍ବା ତହିଁରୁ ନ୍ୟୁନ ଶବ୍ଦ ପ୍ରତି ଟ ° ।୶
ସେଥି ସହିତ ଅଧିକ ନିର୍ଦ୍ଦିଷ୍ଟ ଖରଚ (charge) ଟ ୨୲

(ଖ) ୧୦ ଟି ଶବ୍ଦରୁ ଅଧିକ ହେଲେ ଶବ୍ଦ ପ୍ରତି ଟ ° ୲୶



# ପ୍ରସିଦ୍ଧସ୍ଥାନ ଓ ତୀର୍ଥ

**କାନ୍ୟକୁବ୍ଜ**—"କନୋଜ" ଏହାର ପ୍ରଚଳିତ ନାମ । ଏଠାରେ ବାୟୁ କୁଶନାଭଙ୍କର କନ୍ୟାମାନଙ୍କୁ କୁବ୍ଜା କରିଥିଲେ । ସେହିଦିନରୁ ଏ ସ୍ଥାନ କାନ୍ୟକୁବ୍ଜ ନାମରେ ବିଖ୍ୟାତ । ୧୧୯୩ ଖ୍ରୀଷ୍ଟାବ୍ଦ ପର୍ଯ୍ୟନ୍ତ ଏହା ହିନ୍ଦୁମାନଙ୍କ ହାତରେ ଥିଲା । ତଦନନ୍ତର ମହମ୍ମଦଘୋରୀ ଏହାକୁ ଜୟ କରିଥିଲେ । ଏହା ଦିଲ୍ଲୀରୁ ୨୧୪, କଲିକତାରୁ ୭୧୯ ଏବଂ ଲକ୍ଷ୍ନୌରୁ ୭୫ କ୍ରୋଶ ଅନ୍ତର । ଯଯାତିକେଶରୀ ଏଠାରୁ ଦଶସହସ୍ର ଶାସ୍ତ୍ରଜ୍ଞ ବ୍ରାହ୍ମଣ ଅଣାଇ ଯାଜପୁରଠାରେ ଦଶାଶ୍ୱମେଧଯଜ୍ଞ କରିଥିଲେ । ବଙ୍ଗଦେଶକୁ ଏହିଠାରୁ ମଧ୍ୟ ବ୍ରାହ୍ମଣ ଅଣା ଯାଇଥିଲେ । କାନପୁରଠାରୁ ଆର୍, ଏମ୍, ଏସ ରେଲରେ ଉତ୍ତର ପଶ୍ଚିମକୁ ପ୍ରାୟ ୨୫କ୍ରୋଶ ଗଲେ ଏଠାରେ ଉପସ୍ଥିତ ହୋଇପାରିବ ।

**କାଶ୍ମୀର**—ଏହା ଗୋଟିଏ ରମଣୀୟ ପ୍ରଦେଶ, ହିନ୍ଦୁସ୍ଥାନର ଉତ୍ତର ପଶ୍ଚିମରେ ଅବସ୍ଥିତ । ପୂର୍ବେ ଏହା ପଞ୍ଜାବ ରାଜାଙ୍କର ଅଧିକୃତ ଥିଲା । ଏହାର ଚତୁର୍ଦ୍ଦିଗରେ ଉଚ୍ଚ ପର୍ବତମାଳା ପରିଶୋଭିତ । ଏଠାରେ ଛଅ ବସନ୍ତ ବିରାଜମାନ । ଏଣୁ ଏହାକୁ 'ମର୍ତ୍ତ୍ୟ-ଅମରାବତୀ' ବୋଲି କହନ୍ତି । ଉତ୍କୃଷ୍ଟ ଶାଲ ନିମିତ୍ତ ଏ ସ୍ଥାନ

ପର ମଙ୍ଗଳେ ସାଧୁ ହୁଅନ୍ତି ତୋଷ ।

ପ୍ରସିଦ୍ଧ । ଏହାର ରାଜଧାନୀ ଶ୍ରୀନଗର, ଏହା ବିତସ୍ତା ନଦୀର ଉତ୍ତର କୂଳରେ ଅବସ୍ଥିତ । ସହର ପାର୍ଶ୍ୱରେ ଉଲ୍ଲେ ନାମକ ହ୍ରଦ ଉପରେ ଭାସମାନ ଶସ୍ୟକ୍ଷେତ୍ର ଅଛି । ଗ୍ରୀଷ୍ମକାଳରେ ପଦ୍ମମାନ ପ୍ରସ୍ଫୁଟିତ ହେଲେ ଏହି ହ୍ରଦ ଅନୁପମ ଶୋଭା ଧାରଣ କରେ । ଏ ପ୍ରଦେଶର ଜଳବାୟୁ ଉତ୍ତମ । ଏଠାକାର ଅଧିବାସୀ ବଳବାନ୍ ଓ ସୁଶ୍ରୀ । ମହର୍ଷି କଶ୍ୟପ ଏହି ପ୍ରଦେଶ ସଂସ୍ଥାପନ କରିଥିଲେ । ଓ୍ୟୁଲର ହ୍ରଦ; ବେରିନାଗ ଓ ଅଚ୍ଛାବଲେ ପ୍ରସ୍ରବଣ, ମର୍ତ୍ତନର କୁଣ୍ଡ, ଅମରନାଥ ପ୍ରଭୃତି ଏଠାକାର ଦର୍ଶନୀୟ ବସ୍ତୁ ।

**ପୁରୀ ଜଗନ୍ନାଥ କ୍ଷେତ୍ର**—ଓଡ଼ିଶା ଦକ୍ଷିଣର ସମୁଦ୍ର-ତଟରେ ନୀଳଗିରି ଉପରେ ଅବସ୍ଥିତ । ଏଠାରେ ଜଗନ୍ନାଥଙ୍କ ମନ୍ଦିର ଅଛି । ଏହି ମନ୍ଦିର ମଧ୍ୟରେ ବିମଳାଦେବୀଙ୍କ ମନ୍ଦିର । ଏଠାରେ ଲକ୍ଷ୍ମୀ ସ୍ୱୟଂ ପାକ କରନ୍ତି ବୋଲି ଭୋଜନରେ ମୁକ୍ତିଲାଭ ହୁଏ । ଏଠାରେ ମାନବଙ୍କର କର୍ମ ସକଳ ଅକ୍ଷୟ ହୁଏ । ଏଠାରେ ସକଳ ଯାତ୍ରା ମଧ୍ୟରେ ରଥଯାତ୍ରା ସର୍ବପ୍ରଧାନ । ସମସ୍ତ ତୀର୍ଥସ୍ଥାନ ମଧ୍ୟରେ ଏହି ପୁରୁଷୋତ୍ତମ ତୀର୍ଥ ସର୍ବଶ୍ରେଷ୍ଠ ।

**ବୈଦ୍ୟନାଥ**—ରାବଣ ମହାଦେବଙ୍କୁ ତୁଷ୍ଟକରି ତାହାଙ୍କର ଲିଙ୍ଗମୂର୍ତ୍ତି ନେଇ ଲଙ୍କାକୁ ଯାଉଥିଲା । ସେହି ସମୟରେ ଦେବତାଙ୍କ କୌଶଳରେ ରାବଣ ପ୍ରସ୍ରାବ ପୀଡ଼ାରେ ପୀଡ଼ିତ ହେଲା । ଏହି ସମୟରେ ନାରାୟଣ ବ୍ରାହ୍ମଣ ବେଶରେ ତାହାର ସମ୍ମୁଖରେ ଉପନୀତ ହେଲେ, ତାହାଙ୍କ ହସ୍ତରେ ସେହି ଲିଙ୍ଗମୂର୍ତ୍ତି ଅର୍ପଣ କରି ଦୁଇଦଣ୍ଡ ଅପେକ୍ଷା କରିବାକୁ କହି, ରାବଣ ଦୂରେ ପ୍ରସ୍ରାବାର୍ଥ ଗମନ କଲା । ଏଣେ ଦୁଇଦଣ୍ଡ ଅତୀତ ହେବାରୁ ଛଦ୍ମବେଶୀ ଦ୍ୱିଜ ସେହିଠାରେ ଲିଙ୍ଗମୂର୍ତ୍ତି ରକ୍ଷାକରି ପ୍ରସ୍ଥାନ କଲେ । ରାବଣ ଆସି ସେ ଲିଙ୍ଗମୂର୍ତ୍ତିକୁ ଉଠାଇ ପାରିଲା ନାହିଁ । ସେହି ମୂର୍ତ୍ତି ଅଦ୍ୟାପି ସେହିଠାରେ ଅଛି । ଏହା ବିଖ୍ୟାତ ତୀର୍ଥ । ବୈଦ୍ୟନାଥଙ୍କ ପୂଜା କଲେ ସକଳ ପାପ ବିମୋଚିତ ହୁଏ । ଦେବୀ ଅନ୍ନପୂର୍ଣ୍ଣା ଭୈରବ ବୈଦ୍ୟନାଥ । ଏହା ହାବଡ଼ାଠାରୁ ୨୦୫ ମାଇଲ ।

**ଅମରନାଥ**—ଏହା ହିନ୍ଦୁମାନଙ୍କର ଗୋଟିଏ ପ୍ରଧାନ ତୀର୍ଥ କାଶ୍ମୀର ଦେଶର ପୂର୍ବ ପ୍ରାନ୍ତରେ ତୁଷାର ମଣ୍ଡଳସ୍ଥ ନିର୍ଜନ ପ୍ରଦେଶର ଗୁହାଭ୍ୟନ୍ତରରେ ମହାଦେବଙ୍କର ସ୍ୱୟମ୍ଭୂ ସ୍ଫଟିକ ସଦୃଶ ଶ୍ୱେତବର୍ଣ୍ଣ ଓ ଉଜ୍ଜ୍ୱଳ ତୁଷାରଲିଙ୍ଗ ଅଛି । ଏହା କାହାରି ସ୍ଥାପିତ ନୁହେଁ, ସେଥିପାଇଁ ଏହାର ନାମ ସ୍ୱୟମ୍ଭୂ ଲିଙ୍ଗ । ପୌର୍ଣ୍ଣ-ମାସୀରେ ଏହିଲିଙ୍ଗ ପୂର୍ଣ୍ଣାବୟବ ବିଶିଷ୍ଟ ହୁଅନ୍ତି । କୃଷ୍ଣପକ୍ଷର ପ୍ରତିପଦଠାରୁ ଏହା ଏକ ୨ କଳା କ୍ରମେ ହ୍ରାସ ହୋଇ, ଅମାବାସ୍ୟା ଦିନ ସମ୍ପୂର୍ଣ୍ଣରୂପେ ଅଦୃଶ୍ୟ ହୁଅନ୍ତି । ପୁଣି ଶୁକ୍ଳପକ୍ଷର ପ୍ରତିପଦଠାରୁ ଏକ ୨ କଳା କ୍ରମେ ବୃଦ୍ଧି ପାଇ ପୂର୍ଣ୍ଣିମା ଦିନ ପୂର୍ଣ୍ଣ ହୋଇ ଥାଆନ୍ତି । ଚନ୍ଦ୍ରଙ୍କର ହ୍ରାସ ବୃଦ୍ଧି ସହିତ ଏହିପ୍ରକାର ଏହାଙ୍କର ହ୍ରାସବୃଦ୍ଧି ହୋଇଥାଏ । ଏହାଙ୍କ ସନ୍ନିକଟରେ ଏକ ପାଷାଣବୃଷ ଓ ଅନେକ ଦେବଦେବୀଙ୍କର ଭଗ୍ନମୂର୍ତ୍ତି ଅଛି । ପ୍ରତିବର୍ଷ ରାଖି ପୂର୍ଣ୍ଣିମା ସମୟରେ ଏଠାକୁ ଯାତ୍ରିଗଣ ଆଗମନ କରନ୍ତି । ଏହାର ଏକକୋଶ ଦୂରରେ ପଞ୍ଚତରଣୀ ନାମରେ ଗୋଟିଏ କ୍ଷୁଦ୍ର ନିର୍ଝରିଣୀ ଅଛି । ଏହି ସ୍ଥାନରେ ସ୍ନାନ କରି, ଭୂର୍ଜପତ୍ରର କୌପୀନ ଧାରଣ ପୂର୍ବକ ସମସ୍ୱରରେ ଜୟଧ୍ୱନି କରି ୨ ଯାତ୍ରିଗଣ ତାହାଙ୍କର ନିକଟବର୍ତ୍ତୀ ହୁଅନ୍ତି । କାଶ୍ମୀର ଶ୍ରୀନଗର ଦେଇ ଚଣ୍ଡାର ଗାଁ ବାଟେ ୫ଦିନର ବାଟ ।

**ଉଜ୍ଜୟିନୀ**—ସପ୍ତମୋକ୍ଷଦାୟିକା ପୁରୀ ମଧ୍ୟରେ ଏହା ଗୋଟିଏ ମାଳବ ଦେଶରେ ଏହା ଅବସ୍ଥିତ । ମହାରାଜ ବିକ୍ରମାଦିତ୍ୟ ଏଠାରେ ରାଜତ୍ୱ କରୁଥିଲେ । ଏହାର ଅପର ନାମ ଅବନ୍ତୀ । ବର୍ତ୍ତମାନ ନଗରୀର ଅର୍ଦ୍ଧ-କୋଶ ଦୂରରେ ପ୍ରାଚୀନ ନଗରୀ ଥିଲା । ସୁନ୍ଦର ସେନଙ୍କ ରାଜତ୍ୱ କାଳରେ ଗନ୍ଧର୍ବସେନ ନାମା ଜଣେ ଗନ୍ଧର୍ବ ଏହିଠାରେ ଇନ୍ଦ୍ରଶାପରେ ଗର୍ଦ୍ଦଭ ରୂପରେ ବାସ କରୁଥିଲେ । ସୁନ୍ଦରସେନଙ୍କ କନ୍ୟାଙ୍କ ସହିତ ତାଙ୍କର ବିବାହ ହେଲା । ଦିନେ ଶ୍ୱଶୁର

ନିଜ ଜାମାତାଙ୍କୁ ଶର୍ଦ୍ଧଭ ପରିଚ୍ଛଦ ପରିତ୍ୟାଗ କରିବାର ଦେଖି ତାଙ୍କର ଗନ୍ଧ ଭବେଶ ପୋଡ଼ିଦେଲେ । ସେ ସପରିବାରେ ଏବଂ ରାଜପୁର ବାସୀଙ୍କ ସହିତ ଅର୍ଦ୍ଧକୋଶ ଦୂରରେ ଆଧୁନିକ ନଗରୀ ସ୍ଥାପନ କଲେ । ଏହା ଶିପ୍ରା ଓ ତାମ୍ରପର୍ଣ୍ଣୀ ନଦୀ ତୀରରେ ଅବସ୍ଥିତ । ଆଧୁନିକ ଉଜ୍ଜୟିନୀ ଚତୁଷ୍କୋଣ । ଛଅକୋଶ ପରିମାଣ ପ୍ରସ୍ତର-ପ୍ରାଚୀରରେ ପରିବେଷ୍ଟିତ । ଶିପ୍ରାନଦୀ ତୀରରେ ଏକ ଶଲ ମଧ୍ୟରେ ଭର୍ତ୍ତୃହରିଙ୍କର ପୁରୀ ଅଛି । କଥିତ ଅଛି ଯେ, ଏହି ବିଲଠାରୁ କାଶୀ ଓ ହରିଦ୍ୱାର ପର୍ଯ୍ୟନ୍ତ ସୁଡ଼ଙ୍ଗ ଥିଲା । ଏହି ନଗରରେ ୧୦୦୮ ଖ୍ରୀ: ରୁ ୧୬୩୦ ଖ୍ରୀ: ପର୍ଯ୍ୟନ୍ତ ହିନ୍ଦୁରାଜାଗଣ ସ୍ୱାଧୀନ ଭାବରେ ରାଜତ୍ୱ କରିଥିଲେ ।

**ଗୁଜରାଟ**—ଭାରତବର୍ଷର ମଧ୍ୟସ୍ଥିତ ଗୋଟିଏ ଦେଶ । ଏହା ଭାରତର ପଶ୍ଚିମ ଉପକୂଳରେ ଅବସ୍ଥିତ । ଏହା ଦୀର୍ଘରେ ୩୬୦ କୋଶ ଓ ପ୍ରସ୍ଥରେ ୧୮୦ କୋଶ ହେବ । ଏହାର ଉତ୍ତର ସୀମା ଆଜମୀର ରାଜ୍ୟ, ପଶ୍ଚିମ ସୀମା ଆରବସାଗର ଓ କଚ୍ଛଦେଶୀୟ ମରୁଭୂମି, ଦକ୍ଷିଣ ସୀମା ଆରବ ସାଗର ଓ ଔରଙ୍ଗାବାଦ ପ୍ରଦେଶ ଏବଂ ପୂର୍ବ ସୀମା ମାଳବ ଓ ଖାନ୍ଦେଶ । ଏହି ଦେଶର ଅଧିକାଂଶ ଅରଣ୍ୟପୂର୍ଣ୍ଣ । ଏହାର ପାର୍ଶ୍ୱରେ ମରୁଭୂମି । ଏ ଦେଶରେ ଅନେକ ପୁଷ୍କରିଣୀ ଓ ଉତ୍ତମ କୂପ ଅଛି ।

**ଅମୃତସର**—ପଞ୍ଜାବର ମଧ୍ୟସ୍ଥଳରେ ଶିଖମାନଙ୍କର ପ୍ରଧାନ ତୀର୍ଥ, ଏଠାରେ ଏକ ପ୍ରକାଣ୍ଡ ସରୋବର ମଧ୍ୟସ୍ଥଳରେ ମର୍ମ୍ମର ପ୍ରସ୍ତରରେ ସ୍ୱର୍ଣ୍ଣାଚ୍ଛାଦିତ ମନ୍ଦିର ଅଛି । ଏହାର ଚତୁଃପାର୍ଶ୍ୱସ୍ଥ ସୋପାନାବଳୀ ମଧ୍ୟ ସୁଦୃଶ୍ୟ ମର୍ମ୍ମର ପ୍ରସ୍ତରର । ଦୀପାବଳୀ ଅମାବାସ୍ୟା ସମୟରେ ଏଠାରେ ବୃହତ୍ ମେଳା ହୁଏ ।

**ଅଯୋଧ୍ୟା**—ଏହା ସରଯୂତୀରରେ ଅବସ୍ଥିତ ଏବଂ ବୈବସ୍ୱତ ମନୁଙ୍କ ଆଦେଶରେ ବିଶ୍ୱକର୍ମା କର୍ତ୍ତୃକ ନିର୍ମିତ । ପ୍ରାଚୀନ ଅଯୋଧ୍ୟା ଦୀର୍ଘରେ ୪୮ କୋଶ ଥିଲା । ବଶିଷ୍ଠାଶ୍ରମ, ଦଶରଥ ଭବନ, ହନୁମାନ ଗଡ଼ ଦର୍ଶନୀୟ । ରାମଚନ୍ଦ୍ରାଦି ସୂର୍ଯ୍ୟବଂଶୀୟ ନରପତିଗଣ ଏଠାରେ ରାଜତ୍ୱ କରିଥିଲେ । ବାରାଣସୀଠାରୁ ରେଲ ପଥରେ ଯିବାକୁ ହୁଏ ।

**ଇଲୋରା**—ନାଗପୁର ଠାରୁ ନନ୍ଦଗାଁ । ଏଠାରୁ ୪୪ ମାଇଲ ଘୋଡ଼ାରେ ଯିବାକୁ ହୁଏ । ଏଠାରେ ଗୁହା ମନ୍ଦିର ପର୍ବତ ଖୋଦିତ ଇନ୍ଦ୍ରସଭା, ଦେବମନ୍ଦିର, ଦଶାବତାର ଏବଂ ଜୈନମାନଙ୍କର ଅନେକ ମନ୍ଦିର ଅଛି । ଇଲଚ୍ପୁରର ରାଜା ଇଲ୍‌କର୍ତ୍ତୃକ ପ୍ରାୟ ୨୧୪୮ ବର୍ଷ ପୂର୍ବରେ ଏହି ସମସ୍ତ ନିର୍ମିତ ହୋଇଥିଲା ।

**କଟକ**—ଓଡ଼ିଶାର ରାଜଧାନୀ । ଏହାର ଦୁଇ ପାଖରେ ମହାନଦୀ ଓ କାଠଯୋଡ଼ି ପ୍ରବାହିତ । ନୃପକେଶରୀ ଏ ନଗରୀ ବସାଇଥିଲେ । ମର୍କତକେଶରୀ ଏ ନଗରକୁ ବନ୍ୟାରୁ ରକ୍ଷା କରିବା ପାଇଁ ପଥର ବନ୍ଧ ବନ୍ଧାଇ ଥିଲେ । ଏହା ଗଜପତି ରାଜାମାନଙ୍କର ରାଜଧାନୀ ଥିଲା । ସୁନା ରୁପାର ତାରକସି କାମପାଇଁ ଏ ନଗର ପ୍ରସିଦ୍ଧ ।

**ଦାର୍ଜିଲିଂ**—ହିମାଳୟର ଶାଖା ପର୍ବତ ଉପରେ ସଂସ୍ଥାପିତ । ଏଠାରେ ବଙ୍ଗର ଛୋଟ ଲାଟଙ୍କର ଗ୍ରୀଷ୍ମାବାସ ଅଛି । ସ୍ୱାସ୍ଥ୍ୟକର ସ୍ଥାନ ବୋଲି ଅନେକେ ଏଠାକୁ ବାୟୁ ପରିବର୍ତ୍ତନ ପାଇଁ ଆସନ୍ତି । ଏହାର ଦୃଶ୍ୟ ଅତି ସୁନ୍ଦର ।

**ସିମଲା**—ଏହା ହିମାଳୟର ଏକ ଶାଖା ଶୃଙ୍ଗରେ ଅବସ୍ଥିତ । ରାଜ ପ୍ରତିନିଧିଙ୍କର ଗ୍ରୀଷ୍ମାବାସ ଏଠାରେ ବିଦ୍ୟମାନ । ଉଚ୍ଚତା ସମୁଦ୍ର ଜଳଠାରୁ ୭ ହଜାର ଫୁଟ । ଏଠାକାର ସ୍ୱାଭାବିକ ଦୃଶ୍ୟ ଅତି ମନୋହର ଓ ସ୍ଥାନ ସ୍ୱାସ୍ଥ୍ୟକର ।

**କୁରୁକ୍ଷେତ୍ର**—ମହାରାଜ କୁରୁ ଏହି ସ୍ଥାନ କର୍ଷଣ କରିଥିଲେ ବୋଲି ଏହାର ନାମ ଏପରି ହୋଇଅଛି । ଏହି ସ୍ଥାନ ଅତି ପୁଣ୍ୟଭୂମି । ତ୍ରିଲୋକ ମଧ୍ୟରେ କୁରୁକ୍ଷେତ୍ର ପ୍ରଧାନ ତୀର୍ଥ । ଏଠାକାର ଧୂଳି ମଧ୍ୟ ପାପୀମାନଙ୍କୁ ଉତ୍ତମ ଗତି ପ୍ରଦାନ କରେ । ଏଠାରେ ବିଖ୍ୟାତ ଭାରତଯୁଦ୍ଧ ହୋଇଥିଲା ।

ଅକୁଳୀନ ବଂଶେ ଜାତ ଯେଉଁ ଜନ ଗୁଣରେ ହେଲେ ମଣ୍ଡନ ।

**କାଶୀ**—ଏହା ଆର୍ଯ୍ୟମାନଙ୍କର ଗୋଟିଏ ପ୍ରସିଦ୍ଧ ତୀର୍ଥ । ମହାଦେବ ଏହି ପୁରୀ ନିର୍ମାଣ କରି ଏଠାରେ ଅନ୍ନପୂର୍ଣ୍ଣା ମୂର୍ତ୍ତି ସ୍ଥାପନ କରିଥିଲେ । ଏହା ପୃଥିବୀ ପରି ଧ୍ୱଂସ ହୋଇନାହିଁ ବୋଲି ପୁରାଣରେ ଲେଖାଅଛି । ଏଠାରେ ଅନ୍ନପୂର୍ଣ୍ଣା ବିଶ୍ୱେଶ୍ୱର କାଳଭୈରବ ବିଶାଳାକ୍ଷୀ ଦେବୀ ପ୍ରଭୃତି ଅସଂଖ୍ୟ ଦେବ ଦେବୀ ବିରାଜିତ । ମଣିକର୍ଣ୍ଣିକା ଘାଟରେ ସ୍ନାନ ଓ ବିଶ୍ୱେଶ୍ୱର ଦର୍ଶନ ପ୍ରଭୃତି ପୁଣ୍ୟ କାର୍ଯ୍ୟ । ଏହାର ଅପର ନାମ ବାରାଣସୀ, ଅବିମୁକ୍ତ କ୍ଷେତ୍ର, ଆନନ୍ଦ କାନନ, ରୁଦ୍ରାବାସ, ଶିବପୁରୀ ଇତ୍ୟାଦି ।

**କାମାଖ୍ୟା**—ଏହା ଗୋଟିଏ ପୀଠ ସ୍ଥାନ, ଏଠାରେ ଦେବୀ କାମାଖ୍ୟା ଓ ଉମାନନ୍ଦ ଘର ବର୍ତ୍ତମାନ ।

**ଗଙ୍ଗାସାଗର**—ଏହି ସ୍ଥାନରେ କପିଳମୁନିଙ୍କର ପ୍ରତିମୂର୍ତ୍ତି ଅଛି ଏବଂ ପୌଷ ସଂକ୍ରାନ୍ତିରେ ମହାମେଳା ହୋଇଥାଏ । କଲିକତାରୁ ଷ୍ଟିମାରରେ ଯାତାୟାତ ହୁଏ ।

**ଗଙ୍ଗୋତ୍ରୀତୀର୍ଥ**—ଗୋମୁଖୀ ପର୍ବତ ଭେଦକରି ଗଙ୍ଗା ଯେଉଁଠାରେ ପ୍ରଥମ ପତିତ ହୋଇଅଛନ୍ତି ସେ ସ୍ଥାନ ଅଗମ୍ୟ ତାହାର ୧୭ ମାଇଲ ନିମ୍ନରେ ଗଙ୍ଗୋତ୍ରୀତୀର୍ଥ

**ଗୟା**—ଏହି ନଗରୀ ଫଲ୍‌ଗୁନଦୀ ଉପରେ ଶୈଳଶିଖରେ ଅବସ୍ଥିତ । ଗୟରାଜର୍ଷି ଏହି ପୁରୀ ସ୍ଥାପନ କରିଥିଲେ । ସିଙ୍କୁ ବର୍ତ୍ତମାନରେ ଏଠାକୁ ଯିବା ନାହିଁ । ଏଠାରେ ବ୍ରହ୍ମଯୋନି, ରାମଶାଳା ପ୍ରଭୃତି ଅନେକ ପାହାଡ଼ ଅଛି । ଫଲ୍‌ଗୁ ଉପରେ ବିଷ୍ଣୁପଦ । ଆର୍ଯ୍ୟସନ୍ତାନମାନେ ପିତୃଲୋକଙ୍କ ମୁକ୍ତି ଉଦ୍ଦେଶ୍ୟରେ ଏହିଠାରେ ପିଣ୍ଡଦାନ ଦିଅନ୍ତି । ଗଦାଧରଙ୍କ ପାଦପଦ୍ମ ଦର୍ଶନ, ଫଲ୍‌ଗୁସ୍ନାନ, ଅକ୍ଷୟ ବଟରେ ପିଣ୍ଡଦାନ ପ୍ରଧାନ କାର୍ଯ୍ୟ, ଏହାର ତିନିକୋଶ ଦକ୍ଷିଣରେ ବୁଦ୍ଧ ଗୟା ।

**ପଞ୍ଚବଟୀବନ**—ଏହା ବୋମ୍ବାଇ ପ୍ରଦେଶ ଅନ୍ତର୍ଗତ ଗୋଦାବରୀ ନଦୀକୂଳରେ ଅବସ୍ଥିତ । ୧୨ ବର୍ଷ ଅନ୍ତରରେ ଏଠାରେ କୁମ୍ଭ ମେଳା ହୁଏ । ଏଠାରେ ଲକ୍ଷ୍ମଣ ସୂର୍ପଣଖାର ନାକ କାନ କାଟି ଥିଲେ । ଏଠାକାର ପ୍ରାକୃତିକ ଦୃଶ୍ୟ ଅତି ଚମତ୍କାର ।

**ଦ୍ୱାରକାପୁରୀ**—ଏହା ବୋମ୍ବାଇ ପ୍ରେସିଡେନ୍ସିର ଅନ୍ତର୍ଗତ ଗୁଜୁରାଟ ପ୍ରଦେଶସ୍ଥ କଚ୍ଛଉପସାଗର ଉପରେ ଅବସ୍ଥିତ ।

**ଦିଲ୍ଲୀ**—ଏହା ଭାରତୀୟ ସମ୍ରାଟମାନଙ୍କର ପ୍ରାଚୀନ ରାଜଧାନୀ କୁତୁବମିନାର, କିଲ୍ଲା, ଜୁମାମସ୍‌ଜିଦ୍, ମୋଗଲବାଦ୍ ଦୁର୍ଗ, ମିଉଟିନିଷ୍ଟାମ୍ପୁର୍, ସମ୍ରାଟମାନଙ୍କ କବର, ଫେରୋଜସାହ ଦୁର୍ଗ ପ୍ରଭୃତି ଦର୍ଶନୀୟ ସ୍ଥାନ ।

**ତ୍ରିବେଣୀ**—ଏଠାରେ ଗଙ୍ଗା, ଯମୁନା ଓ ସରସ୍ୱତୀ ବିଯୁକ୍ତା ହୋଇଅଛନ୍ତି, ଏହାର ନାମ ମୁକ୍ତବେଣୀ ଓ ଦକ୍ଷିଣ ପ୍ରୟାଗ ।

**ତାରକେଶ୍ୱର**—ଏଠାରେ ତାରକନାଥ ମହାଦେବ ବିରାଜିତ, ଶିବରାତ୍ରି ଓ ମହାବିଷୁବ ସଂକ୍ରାନ୍ତିରେ ବହୁ ଜନତା ହୁଏ । ଏହା କଲିକତାଠାରୁ ୩୭ ମାଇଲ ।

**ଚିତ୍ରକୂଟ**—ପୟସ୍ୱିନୀ ନଦୀଉପରେ ଏହି ପର୍ବତ ଅବସ୍ଥିତ । ଏହି ସ୍ଥାନଟି ଅତି ପବିତ୍ର, ଏଠାରେ ରାମ ଲକ୍ଷ୍ମଣଙ୍କ ମନ୍ଦିର ଓ ବାଲ୍ମୀକିଙ୍କର ବାସସ୍ଥାନ ଅଛି । ଏଠାରେ ସୀତା ଫଳ ନାମକ ଏକପ୍ରକାର ଫଳ ମିଳେ । ଏଲାହାବାଦରୁ ମାଣିକପୁରରୁ ଜଙ୍କସନ୍ ହୋଇ ଚିତ୍ରକୋଟ ଷ୍ଟେସନରେ ପହଞ୍ଚିବାକୁ ହୁଏ ।

**ପୁଷ୍କର**—ଏଠାରେ ପ୍ରତି ଦ୍ୱାଦଶବର୍ଷ ଅନ୍ତରରେ କୁମ୍ଭମେଳା ହୁଏ । କଲିକତାରୁ ଜୟପୁର ହୋଇ ଦକ୍ଷିଣତ ୬୭ ମାଇଲ ଆଜମିର । ସେଠାରୁ ଟାଙ୍ଗାରେ ଯିବାକୁ ହୁଏ ।

**ବଦରିକାଶ୍ରମ**—ହରିଦ୍ୱାରରୁ ପନ୍ଦର ଦିନରେ ହିମାଳୟ ଲଙ୍ଘନ କରି ଏଠାକୁ ଯିବାକୁ ହୁଏ । ଏହା ପାଣ୍ଡୁକେଶ୍ୱର ଠାରୁ ୧୦ ମାଇଲ ଉତ୍ତରରେ ପର୍ବତ ଉପରେ ଅବସ୍ଥିତ । ପାହାଡ଼ ମଧ୍ୟରେ ପଞ୍ଚବଦରୀ ଅଛି । ଏଠାରେ ଚତୁର୍ଭୁଜ ବିଷ୍ଣୁମୂର୍ତ୍ତି ହୋଇ ବିରାଜମାନ କରଅଛନ୍ତି । କାର୍ତ୍ତିକଠାରୁ ଚୈତ୍ର ପର୍ଯ୍ୟନ୍ତ

ପର ମର୍ମକୁ ଯେ ଭେଦ କରଇ ଏ ଶରତୁଲ୍ୟ ସେହି ଜାଣ ॥

ଦୁଃସହ ଶୀତ ଓ ତୁଷାରବୃଷ୍ଟି ପ୍ରଭାବରେ ଏଠାକୁ ଯାଇ ହୁଏ ନାହିଁ ବାଟରେ ଲଛମନ ଝୁଲା ନାମକ ଲୌହସେତୁ ପାରହୋଇ ଯିବାକୁ ହୁଏ ।

**ପାଣ୍ଡୁକେଶ୍ୱର**—ବଦ୍ରୀ ନାଥଙ୍କଠାରୁ ପ୍ରାୟ ୮ ମାଇଲ ଦୂରରେ ଅବସ୍ଥିତ । ଏଠାରେ ପାଣ୍ଡବମାନଙ୍କର ସ୍ଥାପିତ ବଦ୍ରୀମୂର୍ତ୍ତି ଅଛି । ଏଠାରୁ ପୂର୍ବଦିଗରେ ୧୫ ମାଇଲ ଗଲେ ଲୋକପାଳ ନାମକ ସ୍ଥାନରେ କାକଭୁଶୁଣ୍ଡିଙ୍କର ଦର୍ଶନ ହୁଏ ।

**ବୃନ୍ଦାବନଧାମ**—ଏହା ମଥୁରାରୁ ୭ ମାଇଲ, ବୃନ୍ଦାବନଠାରୁ ୫, ୬ କୋଶ ବ୍ୟବଧାନରେ ରାଧାକୁଣ୍ଡ, ଶ୍ୟାମ କୁଣ୍ଡ, ଗିରିଗୋବର୍ଦ୍ଧନ ଓ ତିନିମାଇଲ ବ୍ୟବଧାନରେ ମାନସରୋବର, ଗୋ ଶକଟ ବା ଏକ୍କାରେ ଯିବାକୁ ହୁଏ । ପରିଭ୍ରମଣ କରିବାକୁ ପ୍ରାୟ ତିନିଦିନ ଲାଗେ ଦୋଳଯାତ୍ରା ଉପଲକ୍ଷରେ କୋଡ଼ିଏ ଦିନ ବ୍ୟାପି ବୃହତ୍ ମେଳା ହୁଏ ।

**ହରିଦ୍ୱାର**—ମୋଗଲ ସରାଇ ଜଙ୍କସନ୍‌ରୁ ଲକ୍‌ସାର୍ ଜଙ୍କସନ୍ ହୋଇ ୧୬୨ ମାଇଲ ବ୍ରହ୍ମକୁଣ୍ଡରେ ସ୍ନାନକରି ତାହାର ଦକ୍ଷିଣରେ କୁଶାବର୍ତ୍ତଘାଟରେ ପିତୃଲୋକଙ୍କର ପିଣ୍ଡଦାନ କରିବାକୁ ହୁଏ । ଏଠାରେ ସର୍ବନାଥ ଶିବ ଲିଙ୍ଗ ବିରାଜମାନ ଅଛନ୍ତି । ବାରବର୍ଷ ଅନ୍ତରେ ଏଠାରେ କୁମ୍ଭମେଳା ହୁଏ । ହରିଦ୍ୱାରର ପୂର୍ବ ଦକ୍ଷିଣ କୋଣରେ ସୂର୍ଯ୍ୟକୁଣ୍ଡ ଦୁଇକୋଶ ଉତ୍ତରରେ ସପ୍ତସ୍ରୋତ ବା ସପ୍ତଧାରା, ୯ କୋଶ ଉତ୍ତରରେ ଲକ୍ଷ୍ମଣଝୁଲା, ୧୪ ମାଇଲ ଉତ୍ତରରେ ହୃଷୀକେଶ ପର୍ବତ । ହରିଦ୍ୱାର ପୂର୍ବରେ ନୀଳକେଶ୍ୱର, ପଶ୍ଚିମ ଦକ୍ଷିଣରେ ବିଲ୍ୱକେଶ୍ୱର, ଗୌରୀକୁଣ୍ଡ, ଦକ୍ଷିଣରେ ବିଶ୍ୱେଶ୍ୱରନାଥ ଶିବ ଏବଂ ଉତ୍ତରରେ ଲକ୍ଷ୍ମଣଝୁଲା ।

**କପିଳାସ**—ଢେଙ୍କାନାଳ ଗଡ଼ଜାତରେ, ଏହି ପର୍ବତ ଉପରେ ମହାଦେବଙ୍କ ମନ୍ଦିର ଅଛି । ଏ ସ୍ଥାନର ଦୃଶ୍ୟ ରମଣୀୟ ଓ ଜଳବାୟୁ ସ୍ୱାସ୍ଥ୍ୟକର କପିଳାସ ରୋଡ୍ ଷ୍ଟେସନଠାରୁ ପ୍ରାୟ ୭ କୋଶ ଓ ଜେନାପୁର ଷ୍ଟେସନ ଠାରୁ ୧୪ କୋଶ ଚାଲିବାକୁ ହୁଏ ।

**ହରିହରଛତ୍ର**—ପାଟନାସ୍ଥ ହାଜିପୁରର ନିକଟ, ବାଙ୍କିପୁରରୁ ପାଟନା ଓ ସେଠାରୁ ଗଙ୍ଗା ପାରହେବାକୁ ହୁଏ । ଏଠାରେ ହରିହର ଦେବଙ୍କ ମୂର୍ତ୍ତି ଅଛି ଓ ପ୍ରତି ବର୍ଷର ବୃହତ୍ ମେଳା ହୁଏ ।

**ବିନ୍ଧ୍ୟବାସିନୀ ଅଷ୍ଟଭୁଜା ଦେବୀ**—ମୋଗଲ ସରାଇ ହୋଇ ବିନ୍ଧ୍ୟାଚଳ ଷ୍ଟେସନ ନିକଟ । ସେହି ପର୍ବତ ଉପରେ ଶୁମ୍ଭ ନିଶୁମ୍ଭ ସହିତ ଘୋର ଯୁଦ୍ଧ ହୁଏ । ସିଦ୍ଧ ପୀଠ ।

**ହରିନାଥ**—ସମ୍ବଲପୁର ଜିଲ୍ଲାର ଅନ୍ତର୍ଗତ ବୁର୍ଲାସମ୍ବର ଓ ଫୁଲଝର ଇଲାକାର ଅନ୍ତର୍ଗତ । ମନ୍ଦିରଟି ପାହାଡ଼ କାଟି ହୋଇ ହୋଇଅଛି, ଉଭୟ ପାର୍ଶ୍ୱରେ ଝରଣାର ଜଳ ଅନବରତ ବହୁଅଛି । ସମ୍ବଲପୁର ଷ୍ଟେସନରୁ ଗୋଶକଟରେ ଯିବାକୁ ହୁଏ ।

**କର୍ଣ୍ଣଗଡ଼**—ମହାରାଜା ଦାତାକର୍ଣ୍ଣଙ୍କ ବାସସ୍ଥାନ । ମେଦିନୀପୁର ଜିଲ୍ଲାର ଶାଲବନୀ ଥାନାର ଅଧୀନ କର୍ଣ୍ଣଗଡ଼ ଗ୍ରାମରେ ପୁରାତନ ପ୍ରସ୍ତରରେ ବୃହତ୍ ମନ୍ଦିର ପ୍ରାଚୀର ଜଙ୍ଗଲ ମଧ୍ୟରେ ଦୃଷ୍ଟ ହୁଏ । ମେଦିନୀପୁରଠାରୁ ୧୦ ମାଇଲ ଗୋ ଶକଟରେ ଯିବାକୁ ହୁଏ ।

**କୁମାରୀକନ୍ୟା**—ଦକ୍ଷିଣ ସମୁଦ୍ର ଉପରେ କୁମାରିକା ଅନ୍ତରୀପରେ ଏହି ତୀର୍ଥ । ଏଠାରେ ଗୌରୀଙ୍କର କୁମାରୀ ଅବସ୍ଥାର ମୂର୍ତ୍ତି । ତିବାଙ୍କୁଡ଼ ରାଜାଙ୍କର ଅଧିକାର ମଧ୍ୟରେ ଅତ୍ୟ ତାନ୍ତ୍ରିକ ମତରେ ଯେତେ ପ୍ରକାର ବଳି ଅଛି ସେଥିରେ ୧୦୮ ବଳି ହୁଏ । ମା'ଙ୍କର ମୂର୍ତ୍ତି ଦେଖିଲେ ଉଠିବାକୁ ଇଚ୍ଛା ହୁଏ ନାହିଁ ।



ସେହିପରି ଦେଶ ଉତ୍ତମ ବର୍ଣ୍ଣରେ ଜାତ ହୋଇଥାଏ ଯେହି ।

## ଲକ୍ଷ୍ନୌ

ଏହା ଅଯୋଧ୍ୟା ପ୍ରଦେଶର ରାଜଧାନୀ । ରାମଚନ୍ଦ୍ର ଲକ୍ଷ୍ମଣଙ୍କ ନାମରେ ଏହି ନଗରୀର ପ୍ରତିଷ୍ଠା କରି ଏହି ଲକ୍ଷ୍ନୌ ବା ଲକ୍ଷ୍ମଣପୁରର ଶାସନ ଭାର ଅର୍ପଣ କରିଥିଲେ ବୋଲି ପ୍ରବାଦ ଅଛି । ଏଠାକାର ଅଧିକାଂଶ ଅଧିବାସୀ ହିନ୍ଦୁ । ମୁସଲମାନ ରାଜତ୍ୱରେ ଏହାର ଖ୍ୟାତି ଓ ପ୍ରତିଷ୍ଠା ବଢ଼ିଥିଲା ଏବଂ ଅଦ୍ୟାପି ମୁସଲମାନ ସମ୍ପ୍ରଦାୟ ଏଠାରେ ପ୍ରଭାବଶାଳୀ ଓ ସମ୍ଭ୍ରାନ୍ତ । ଏହାର ଲୋକ ସଂଖ୍ୟା ୯ଲକ୍ଷ ।

ଏହି ନଗରୀ ଗୋମତୀ ନଦୀର ଉଭୟ ତୀରରେ ଅବସ୍ଥିତ । ପୁଣି ୨୭ ଗୋଟି ଗ୍ରାମ ମିଳନରେ ଏହାର ଉତ୍ପତ୍ତି । ନଦୀ ପାର ପାଇଁ ସହରର ମଧ୍ୟରେ ୫ଗୋଟି ବଡ଼ ବଡ଼ ପୋଲ ଅଛି । ଏହାର ପ୍ରାକୃତିକ ସୌନ୍ଦର୍ଯ୍ୟ ଦେଖିଲେ ବିସ୍ମିତ ଓ ଅଭିଭୂତ ହେବାକୁ ହୁଏ । ଇଉରୋପୀୟ ଦର୍ଶକମାନେ ଏହାକୁ ଭାରତର ଉପବନ ଆଖ୍ୟା ପ୍ରଦାନ କରି ଅଛନ୍ତି ।

ଛତ୍ରଅଖାନା, ରେସିଡେନ୍ସି, ଇମାମବରା, ମିଉଜିଅମ୍, କ୍ଲାକଟାଓ୍ୱାର ପ୍ରଭୃତି ଦର୍ଶନୀୟ ସ୍ଥାନ ।

ଏଠାକାର ରାଜପଥମାନ ପ୍ରଶସ୍ତ ଓ ତାହାର ଉଭୟ-ପାର୍ଶ୍ୱରେ ଶ୍ରେଣୀବଦ୍ଧ ମନୋହର ପ୍ରାସାଦରାଜି, ବିବିଧ ପୁଷ୍ପ-ବାଟିକା ବେଷ୍ଟିତ କୁଞ୍ଜ ଗୃହାବଳୀ । ମହାର୍ଘ ଦ୍ରବ୍ୟ ସମ୍ଭାର ପୂର୍ଣ୍ଣ ବିପଣୀ ଶ୍ରେଣୀ ଦର୍ଶନ କଲେ ମନ କଳ୍ପନାରାଜ୍ୟରେ ଭ୍ରମଣ କରେ । ଏହା ଯାବତୀୟ ବିଳାସର ଲୀଳା ଭୂମି ।

ଏଠାରେ ଅନେକ ବିଳାସ ଓ ସୌଖୀନ ବସ୍ତୁ ନିର୍ମାଣ-କାରୀ ଅଛନ୍ତି ।

ସୁନାରୂପାର ଜରି ଓ ବିବିଧ ରତ୍ନଖଚିତ ଅଳଙ୍କାର ପାଇଁ ଏ ନଗରୀ ଶ୍ରେଷ୍ଠସ୍ଥାନ ଅଧିକାର କରିଥିଲା । ଏଠାକାର ସୂଚି-କର୍ମ ଅତୁଳନୀୟ । ଏଠା କୁମ୍ଭାରମାନେ କାଦୁଅରେ ପ୍ରାକୃତିକ ଫଳ, ଖେଳନା, ମାଟିପାତ୍ର ପ୍ରଭୃତି ତିଆରି କରନ୍ତି ଏବଂ ସେମାନେ ଭାରତ ପ୍ରସିଦ୍ଧ । ଅଧିକ ବସ୍ତଶିଳ୍ପ ଅନୁପମ ହାଉଦା ଜିନ, ରାଜଛତ୍ର, ଚନ୍ଦ୍ରାତପାଦି ଏଠାରୁ ଭାରତର ଚତୁର୍ଦ୍ଦିଗକୁ ଆମଦାନି ହୁଏ । ଏଠା ସୁନା ରୁପାର ତାରକସି କାମ ଦେଖିଲେ ଆଶ୍ଚର୍ଯ୍ୟାନ୍ୱିତ ହେବାକୁ ହୁଏ । ସୁନା ରୁପାର ଜରିଲଗା ଟୋପି ଓ ଚଟି ଜୋତା ପୂର୍ବ ପ୍ରସିଦ୍ଧି ଅକ୍ଷୁଣ୍ଣ ରଖିଅଛି ।



## କଲିକତା

ଏହା ଭାରତବର୍ଷର ରାଜଧାନୀ ଥିଲା । ବର୍ତ୍ତମାନ ବଙ୍ଗ ଭାରତର ରାଜଧାନୀ । କଲିକତା, ସୁତାନଟୀ, ଗୋବିନ୍ଦପୁର ପୂର୍ବେ ତିନୋଟି ଗ୍ରାମ ଥିଲା । ସେଥିରୁ କଲିକତାର ଉତ୍ପତ୍ତି ଏହା ଗଙ୍ଗା ନଦୀର ପୂର୍ବତୀରରେ ଅବସ୍ଥିତ । ଏହାର ଦୈର୍ଘ୍ୟ ୫ ମାଇଲ ଓ ପ୍ରସ୍ଥ ଦେଢ଼ମାଇଲ । ଅଧିକ ଏହାକୁ ପ୍ରାସାଦପୂର୍ଣ୍ଣ ନଗର କହନ୍ତି । ଲାଟଭବନ, ଫୋର୍ଟଉଇଲିୟମ୍, ଗଡ଼ର ଦୋଲ, ଇଡେନ ଭବନ, ବିଶ୍ୱବିଦ୍ୟାଳୟ, ମେଡିକେଲ କଲେଜ, ମନୁମେଣ୍ଟ, ପରେଶନାଥଙ୍କ ମନ୍ଦିର, ଏସିଯାଟିକ ମିଉଜିୟମ୍, ଜୁଅଲଜିକାଲଗାର୍ଡେନ, ହାସପାତାଳ ଓ ବଡ଼ ବଡ଼ ଅଫିସ, ଏବଂ ସହରର ରାଜପଥାଦି ଏଠାକାର ଦର୍ଶନୀୟ ସ୍ଥାନ । ଏଠାରେ ପ୍ରାୟ ସକଳ ଜାତିର ଲୋକ ସ୍ୱଳ୍ପ ଓ ବହୁସଂଖ୍ୟକ ଲୋକ ବାସ କରନ୍ତି । ବାଣିଜ୍ୟାଦି ସମ୍ବନ୍ଧ ବିଷୟରେ ଏହା ଭାରତ ମଧ୍ୟରେ ପ୍ରଧାନ । ଏଠାକାର ଜଳ-ବାୟୁ ମନ୍ଦ ନୁହେ । ଏପରି ଉତ୍କୃଷ୍ଟ ସହର ଆଉ ନାହିଁ । ରାତିରେ ଏହା ତଡ଼ିତ୍‌ଆଲୋକରେ ଆଲୋକିତ ହୁଏ । ଏଠାକାର ବଜାର ଓ ହାଟ ସୁନ୍ଦରରୂପେ ସଜ୍ଜିତ । ସହରର ଚତୁର୍ଦ୍ଦିଗକୁ ସର୍ବଦା ଗମନାଗମନର ସୁବିଧା ପାଇଁ ଏଠାରେ ଇଲେକ୍‌ଟ୍ରିକ ଟ୍ରାମ ଗାଡ଼ି ଅଛି । ଏଠାରେ ସର୍ବଦା ସମସ୍ତେ ବ୍ୟସ୍ତ । କଥାରେ କହନ୍ତି କଲିକତାରେ ରାତି ନାହିଁ, ପୁରୀରେ ଜାତି ନାହିଁ ।

ଉତ୍ତରରେ ବାଗ୍‌ବଜାରର ନାଳ

ପୂର୍ବରେ ସର୍କ୍ୟୁଲାର ରୋଡ଼ ଓ ଅଲିପୁର ରୋଡ଼ ଏବଂ

ପଶ୍ଚିମରେ ହୁଗ୍ଲୀ ନଦୀ ।

ଏଠାକାର ଲୋକସଂଖ୍ୟା ବାରଲକ୍ଷ । ଭାରତରେ ପ୍ରାୟ ସର୍ବାଂଶ ସହିତ ଏହା ରେଲପଥ ଦ୍ୱାରା ସଂଯୁକ୍ତ ।



## ଲଙ୍କା ବା ସିଂହଳ

ସିଂହଳ ଚତୁର୍ଦ୍ଦିଗ୍ ସମୁଦ୍ର ପରିବେଷ୍ଟିତ । ଏହାର ଦୈର୍ଘ୍ୟ ଉତ୍ତର ଦକ୍ଷିଣରେ ୨୬୬ ମାଇଲ, ପ୍ରଶସ୍ତତା ପୂର୍ବପଶ୍ଚିମରେ ୧୪୪ ମାଇଲ । ପରିଧି ପ୍ରାୟ ୨୫ ହଜାର ବର୍ଗମାଇଲ ।

ପର ମର୍ମକୁ ସେ ଭେଦ ନ କରଇ ଧନପ୍ରାପ୍ତ ନମ୍ର ହୋଇ ।

ଏହାର ସମୁଦ୍ର ସନ୍ନିହିତ ଭୂଭାଗ, ବହୁଦୂର ପର୍ଯ୍ୟନ୍ତ ସମତଳ କ୍ଷେତ୍ର । ଭୂମି ଉର୍ବରା, ସମସ୍ତ ଋତୁରେ ନାନା ପ୍ରକାର ଶସ୍ୟ ଓ ବୃକ୍ଷ ଲତାରେ ସମାଲଙ୍କୃତ, ମଧ୍ୟଭାଗରେ କଳନାଦିନୀ ତରଙ୍ଗିଣୀ ଓ ମନୋହର ପର୍ବତମାଳାରେ ପରିଶୋଭିତ । ଏହା ବିବିଧ ମହାମୂଲ୍ୟ ମଣିରତ୍ନର ଆକର । ଏହାର ପ୍ରାକୃତିକ ଅଟ୍ଟାଳିକା ଓ କୀର୍ତ୍ତିସ୍ତମ୍ଭର ଧ୍ୱଂସାବଶେଷ ଏ ପର୍ଯ୍ୟନ୍ତ ଦେଖା ଯାଉଛି । ସିଂହଳରେ ଚିର ବସନ୍ତ ବିରାଜମାନ, ଏହାର ମୁକ୍ତା ଓ ପଦ୍ମରାଗମଣି ଜଗତ ମଧ୍ୟରେ ସର୍ବ ଶ୍ରେଷ୍ଠ । ଏଠାରେ ମରକତମଣି ମଧ୍ୟ ପର୍ଯ୍ୟାପ୍ତ ପରିମାଣରେ ମିଳେ । ରତ୍ନବାଣୀ ଓ ରତ୍ନପୁରୀ ପ୍ରଦେଶରେ ନୀଳକାନ୍ତମଣି ଓ ବିଡ଼ାଳାକ୍ଷମଣି ବହୁଳ ପରିମାଣରେ ସମୁତ୍ପନ୍ନ ହୁଏ । ସିଂହଳର ଉତ୍ତର ପଶ୍ଚିମ ଆରିପୋ ଜନପଦ ନିକଟ ସମୁଦ୍ରରୁ ମୁକ୍ତାଫଳଦ କମ୍ବୁରି ପ୍ରଭୃତି ଗୁରୁ-ହାତର ଅନ୍ତରେ ଅନ୍ୱେଷଣ କରାହୁଏ । ସାର ଏଡ଼ୱାର୍ଡ ରିସୀ ଲେଖି ଅଛନ୍ତି "ଲଣ୍ଡନ ନଗରରେ ଶୀତ ଋତୁରେ ମୁଁ ଦିନେ ଯେତେ ମାନବର ଦୁଃଖ ଦେଖିଅଛି, ସିଂହଳରେ ୯ ବର୍ଷରେ ସେପରି ଦେଖିନାହିଁ" । ଏଠାରେ ଦୁର୍ଭିକ୍ଷ ନାହିଁ ।

ସିଂହଳ ଯେ ରାବଣରାଜାର ଦେଶ ଥିଲା । ସେଥିର ବିସ୍ତର ପ୍ରମାଣ ମିଳେ । ଏଠାରେ "ରାବଣ କୋଟ" ନାମକ ଏକ ସ୍ଥାନ ଥିଲା ଏବଂ ତାହା ବର୍ତ୍ତମାନ ସମୁଦ୍ର ଗର୍ଭରେ ନିହିତ ହୋଇ-ଅଛି । ସେଠାରେ କିମ୍ବଦନ୍ତୀ ଅଛି ଯେ, ରାବଣ କୋଟରେ ରାବଣ ପୁରୀ ଥିଲା । ସମୁଦ୍ର ମଧ୍ୟରେ ରାବଣ କୋଟର ଜଳ ଏ ପର୍ଯ୍ୟନ୍ତ ନୀଳବର୍ଣ୍ଣ ଦେଖାଯାଏ ଏବଂ ସେ ସ୍ଥାନର ଜଳ ସର୍ବଦା ଘୂର୍ଣ୍ଣାୟମାନ ହେଉଅଛି । ଜଳଜାତ ମୀନ ଯେବେ ଦୈବାତ୍ ଏହାର ନିକଟବର୍ତ୍ତୀ ହୁଏ, ତେବେ ତତ୍‌କ୍ଷଣାତ୍ ଜଳମଗ୍ନ ହୁଏ । ରାବଣ କୋଟର ପ୍ରଧାନ ଦୁଇଟି ଶିଳାଖଣ୍ଡରେ ଦୁଇଟି ନାବିକ-ସହାୟ ଦ୍ୱୀପ-ସ୍ତମ୍ଭ ନିର୍ମିତ ହୋଇଅଛି । ସିଂହଳର 'ଅଶୋକ-ବନ' ସିଂହଳମାନଙ୍କର ଏକ ପ୍ରଧାନ ତୀର୍ଥ ସ୍ଥାନ । "କଳିଯୁଗ ପ୍ରାରମ୍ଭରେ ବିଭୀଷଣ ସ୍ୱର୍ଗାରୋହଣ କରିଥିଲେ" ଏବଂ ସେହି ସମୟରେ ରାକ୍ଷସଗଣ ଲଙ୍କାପୁରୀ ତ୍ୟାଗ କରି ସ୍ଥାନାନ୍ତରରେ ଯାଇ-ଥିଲେ ବୋଲି ଉତ୍ତର ସିଂହଳ ଇତିହାସରେ ଲିଖିତ ଅଛି ।

ମଗଧର ରାଜକୁମାର ବିଜୟବାହୁ ଲଙ୍କା ରାଜ୍ୟ ଜୟ କରି ସେଠାରେ ସ୍ୱରାଜତ୍ୱ ବିସ୍ତାର କରିଥିଲେ । ସେ ଲଙ୍କାର ରାଜଧାନୀ ଲଙ୍କାପୁରୀରେ ନିଜ ରାଜଧାନୀ ନ କରି ଯେଉଁଠାରେ ତରଣୀରୁ ଅବତୀର୍ଣ୍ଣ ହୋଇଥିଲେ, ସେଠାରେ ତାମ୍ରପର୍ଣ୍ଣୀ ନାମକ ନୂତନ ରାଜଧାନୀ ସ୍ଥାପନ କରିଥିଲେ । ତଦନୁସାରେ ସମସ୍ତ ଲଙ୍କାର ନାମ ତାମ୍ରପର୍ଣ୍ଣୀ ହୋଇଥିଲା । ବିଜୟବାହୁଙ୍କ ପିତା ସିଂହଳବାହୁ ସ୍ୱହସ୍ତରେ ସିଂହ ବଧ କରିଥିଲେ ବୋଲି ତାଙ୍କ ବଂଶର ଉପାଧି ସିଂହଳ ଓ ବିଜୟବାହୁ ବିଜିତ ରାଜ୍ୟ ସିଂହଳ ନାମରେ ଅଭିହିତ ହୁଏ ।

ସିଂହଳବାସିମାନେ କର୍ମନିପୁଣ ଓ କର୍ମଠ, ମଧୁରଭାଷୀ ଏବଂ ବ୍ୟବହାରରେ ଭଦ୍ର । ମିଥ୍ୟାକଥା କହିବା ଦୋଷଜନକ ବୋଲି ସେମାନେ ମନେ କରନ୍ତି ନାହିଁ । ମିଥ୍ୟା କହି ଧରା ପଡ଼ିଲେ ସୁଦ୍ଧା କେହି ତାହା ଅପମାନର ବିଷୟ ବୋଲି ମନେ କରନ୍ତି ନାହିଁ । ସେମାନେ କଷ୍ଟସହିଷ୍ଣୁ ମାତ୍ର କ୍ଷଣକୋପୀ । କ୍ରୋଧୀ ହେଲେ ମଧ୍ୟ କାହାର ଦେହରେ କେବେ ହେଲେ ହାତ ଲଗାନ୍ତି ନାହିଁ । ମିତବ୍ୟୟୀ ମାତ୍ର ଲୋଭୀ ହେତୁ ପୂର୍ଣ୍ଣ-ଗ୍ରାସ ନ କରି ପଇସା ସଞ୍ଚୟ କରନ୍ତି । ନିଦ୍ରାରେ ସେମାନଙ୍କର ଅତି ଅଳ୍ପ ସମୟ ନଷ୍ଟ ହୁଏ । ଚୌର୍ଯ୍ୟ ବୃତ୍ତିକୁ ସେମାନେ ଅତିଶୟ ଘୃଣା କରନ୍ତି । ସେମାନଙ୍କ ମଧ୍ୟରେ ଇନ୍ଦ୍ରିୟ ଦୋଷ ଅତି ଅଧିକ । ନିଷ୍କର୍ମା ହୋଇ ବସି ରହିବାକୁ ସେମାନେ ସୁଖ-କର ମନେ କରନ୍ତି । ନିତାନ୍ତ ଆବଶ୍ୟକ ହେଲେ କାର୍ଯ୍ୟରେ ହାତ ଦିଅନ୍ତି ।

ସ୍ତ୍ରୀମାନେ ଖରଚ ବିଷୟରେ ବଡ଼ ହିସାବୀ । ସେମାନେ ଅଧିକ ଖରଚ କରିବାକୁ ଲଜ୍ଜାକର ବିଷୟ ବୋଲି ମନେ କରନ୍ତି, ଏବଂ ସଞ୍ଚୟ କରିବା ସେମାନଙ୍କ ପକ୍ଷରେ ଗୌରବର ବିଷୟ । ଏଠାରେ ଢିଙ୍କିର ବ୍ୟବହାର ନାହିଁ । ଉଦୂଖଳରେ ଧାନ କୁଟନ୍ତି । ଅନ୍ୟାନ୍ୟ ଆସ୍ବାବର ବ୍ୟବହାର ଏ ଦେଶର ଆସ୍ବାବ ବ୍ୟବହାର ସଙ୍ଗେ ସମାନ । ଯେତେବେଳ ପର୍ଯ୍ୟନ୍ତ ଭାତହାଣ୍ଡି ଚୁଲ୍ଲି ଉପରେ ଥାଏ ରନ୍ଧୁଣୀ କଥା କହନ୍ତି ନାହିଁ । ସେମାନଙ୍କର ବିଶ୍ୱାସ, କଥା କହିଲେ ଭାତ ଫୁଟିବ ନାହିଁ ।



ସୁବର୍ଣ୍ଣକୁ ଯେତେ ଥର ଦଗ୍ଧ କଲେ ତେଜ ତାର ନ ଛାଡ଼ଇ ।

## ଅମୃତସର

### ( ୧ମ ଦର୍ଶନୀୟ ସ୍ଥାନ )

ଅମୃତସର ପଞ୍ଜାବର ଦ୍ୱିତୀୟ ସହର । ଲବ କୁଶଙ୍କ ଯୁଦ୍ଧରେ ରାମ ଲକ୍ଷ୍ମଣ ପ୍ରଭୃତି ନିହତ ହେବାରୁ, ସେମାନଙ୍କୁ ପୁନର୍ଜୀବିତ କରିବା ପାଇଁ ଅମୃତ ଅଣା ଯାଇଥିଲା । ସେଥିରୁ କିଛି ଏଠାରେ ଲୁକ୍କାୟିତ ଅବସ୍ଥାରେ ଥିଲା । ଲବଙ୍କ ବଂଶରେ ବାବା ନାନକ ଜନ୍ମ ଗ୍ରହଣ କରି ଏହି ଅମୃତକୁ ଉଦ୍ଧାର କରିଥିଲେ । ସେହି ସ୍ଥାନରେ ଏକ ମନ୍ଦିର ନିର୍ମିତ ହୋଇଅଛି । ସେହି ସ୍ଥାନରେ ଏକ ସରୋବର । ତେଣୁ ସ୍ଥାନର ନାମ ତଥା ସହରର ନାମ ଅମୃତସର । ସରୋବର ମଧ୍ୟରେ ସେହି ମନ୍ଦିର ଅବସ୍ଥିତ । ଯିବାପାଇଁ ତୀରରୁ ମନ୍ଦିର ପର୍ଯ୍ୟନ୍ତ ଏକ ମର୍ମ୍ମର ସେତୁ ନିର୍ମିତ ହୋଇଅଛି । ସରୋବରର ଚତୁପାର୍ଶ୍ୱ ମର୍ମ୍ମର ପ୍ରସ୍ତରରେ ବନ୍ଧା । ଧର୍ମପ୍ରାଣ ଶିଖମାନେ ଏହାର ଚତୁର୍ଦ୍ଦିଗରେ ପ୍ରଦକ୍ଷିଣ କରନ୍ତି । ସେହି ମନ୍ଦିରର ଚଳିତ ନାମ ଦରବାର ସାହେବ । ଏଥିପାଇଁ ଏହା ଶିଖମାନଙ୍କର ପ୍ରଧାନ ତୀର୍ଥ । ୧୫୮୭ ଖ୍ରୀଷ୍ଟାବ୍ଦରେ ଗୁରୁ ରାମଦାସଙ୍କ ସମୟରେ ଏହି ମନ୍ଦିର ନିର୍ମିତ ହୋଇଥିଲା । ମହାରାଜା ରଣଜିତ୍ ସିଂହ ତାହାକୁ ସୁନା ପତ୍ରରେ ମୋଡ଼ି ଦେଇ ଅଛନ୍ତି । ଏହି ଶ୍ୱେତ ମର୍ମର ମନ୍ଦିରର ଭିତର ବାହାର ତମ୍ବା ପତ୍ର ଉପରେ ସୂକ୍ଷ୍ମ ସୁନା ପତ୍ରରେ ମୋଡ଼ା । ଏଣୁ ଏହାକୁ ସ୍ୱର୍ଣ୍ଣ ମନ୍ଦିର ବୋଲି କହନ୍ତି । ଏହି ଦରବାର ସାହେବଙ୍କ ପରି ଅନ୍ୟର ଅନେକ ଶିଖ ମନ୍ଦିର ଅଛି । ସେଥି ମଧ୍ୟରୁ ବାବା ଅଟଳଙ୍କ ମନ୍ଦିର ବିଶେଷ ଉଲ୍ଲେଖ ଯୋଗ୍ୟ ଏହି ମନ୍ଦିରର ମିନାରରୁ ସହର ଦୃଶ୍ୟ ଅତି ମନୋହର ଦେଖାଯାଏ । ଏହି ସ୍ୱର୍ଣ୍ଣ ମନ୍ଦିରରେ ପ୍ରବେଶ କରିବା ପାଇଁ ଜାତି ବିଚାର ନାହିଁ । ପାଦୁକା ଛାଡ଼ି ପଦ ଧୌତ କରି ମୁଣ୍ଡରେ ପଗଡ଼ି କମ୍ବା ଟୁପୀ ଲଗାଇ ଭିତରକୁ ଯିବାକୁ ହୁଏ । ମନ୍ଦିର ଭିତରେ "ଗ୍ରନ୍ଥ ସାହେବ" ଅତି ଯତ୍ନରେ ରକ୍ଷିତ ଓ ସୁଶୋଭିତ । ଏଠାରେ ଫୁଲର ଆଶୀର୍ବାଦ ଓ ଅମୃତସର ବରଫି ଓ ହାଲୁଆ ବିତରିତ ହୁଏ ।

### ( ୨ୟ ଦର୍ଶନୀୟ ସ୍ଥାନ )

ସହରର ପ୍ରାୟ ୨ମାଇଲ ଦୂରରେ ଖାଲ୍‌ସା କଲେଜ । ଏଠାରେ ସର୍ବଜାତୀୟ ଛାତ୍ର ପଢ଼ନ୍ତି । ଏପରି କଲେଜ ପଞ୍ଜାବରେ ଆଉ ନାହିଁ ।

### ତୃତୀୟ ଦର୍ଶନୀୟ ବସ୍ତୁ ।

### ଗଭର୍ଣ୍ଣମେଣ୍ଟ ସେଣ୍ଟ୍ରାଲ ଉଇଭିଂ ଇନ୍‌ଷ୍ଟିଚିଉଟ୍ ।

### ( ୪ର୍ଥ ଦର୍ଶନୀୟ ବସ୍ତୁ, ଜାଲିୟାନୱାଲା ବାଗ )

୧୯୧୯ ମସିହା କଂଗ୍ରେସର ସିଦ୍ଧାନ୍ତ ଅନୁସାରେ ଭାରତର ସକଳ ପ୍ରଦେଶରୁ ଚାନ୍ଦା ସଂଗୃହୀତ ହୋଇ ୫,୬୫,୦୦୦ ଟଙ୍କାରେ ଏହି ବାଗଟି କଣା ଯାଇଛି । କଂଗ୍ରେସ ଏହାର ସତ୍ତ୍ୱାଧିକାରୀ । ଏହା ଭାରତୀୟ ଜାତୀୟ ଆନ୍ଦୋଳନର ଅନ୍ୟତମ ସ୍ମୃତି । ଏହାର ଯୋଗୁଁ ଭାରତୀୟ ରାଷ୍ଟ୍ରୀୟ ଚିନ୍ତା ଓ କର୍ମଧାରା ନୂତନପଥ ଅବଲମ୍ବନ କରିଅଛି । ବର୍ତ୍ତମାନ ସେହି ପରିତ୍ୟକ୍ତ ପଡ଼ିଆ ପୁଷ୍ପୋଦ୍ୟାନରେ ପରିଣତ । ଯେଉଁ କୂପରେ ପଡ଼ି ପ୍ରାଣଭୟରେ ଭୀତ ଶତାଧିକ ନରନାରୀ ପ୍ରାଣ ହରାଇଥିଲେ ତାହା ଆଜ ସୁନ୍ଦର ସ୍ମୃତି ମନ୍ଦିରରେ ପରିଣତ, ବର୍ତ୍ତମାନ ସୁଦ୍ଧା । ଜାଲିୟାନୱାଲାବାଗର ପ୍ରାଚୀର ଦେହରେ ଗୁଳିର ଦାଗ ଅଛି । ଠାଏ ରକ୍ତର ଦାଗର କଳା ହୋଇଯାଇ ଅଦ୍ୟ ମଧ୍ୟ ଅତୀତରେ ନୃଶଂସତାର ସାକ୍ଷ୍ୟ ପ୍ରଦାନ କରୁଅଛି । ଏହି ସ୍ମୃତି ଉଦ୍ୟାନ ରକ୍ଷାକରିବାକୁ ବର୍ଷରେ ପ୍ରାୟ ୧୬୦୦୦ ଟଙ୍କା ଖରଚ ହୁଏ ।

### ( ପଞ୍ଚମ ଦ୍ରଷ୍ଟବ୍ୟ, ରାମବାଗ )

ଏହା ମହାରାଜ ରଣଜିତ୍ ସିଂହଙ୍କର । ଯେତେବେଳେ ସେ ଅମୃତସରକୁ ଆସୁଥିଲେ ତେତେବେଳେ ଏହି ଉଦ୍ୟାନ ପ୍ରାସାଦରେ ବାସ କରୁଥିଲେ । ସମ୍ପ୍ରତି ସେଠାରେ ସେ ପୂର୍ବ ଶୋଭା ନାହିଁ । ପୁରାତନ ତୋରଣମାନ ଭାଙ୍ଗି ପଡ଼ିଅଛି ।

ଅମୃତସରରେ କେତେଗୁଡ଼ିଏ କଳ ଅଛି । ଶାଲ, ଗାଲିଚା କାର୍ପେଟ ଏଠାରୁ ଅନ୍ୟାନ୍ୟ ଦେଶକୁ ରପ୍ତାନି ହୁଏ । କ୍ୟାଣ୍ଟନମେଣ୍ଟ ବ୍ୟତୀତ ଷ୍ଟେଟ ଭିତରେ ଗୋରାପଲ୍‌ଟନ ଅଛନ୍ତି ।



## କେରଳ ପ୍ରଦେଶ

### ( ପ୍ରବାଦ )

ପରଶୁରାମ ଏକବିଂଶତିବାର ପୃଥିବୀ ନିଃକ୍ଷତ୍ରିୟ କରି ଏକାଧିପତ୍ୟ ସ୍ଥାପନ ପୂର୍ବକ ବ୍ରାହ୍ମଣମାନଙ୍କ ପରାମର୍ଶରେ ଏକ

ବୃହତ୍ ଯଜ୍ଞ କଲେ ଏବଂ ଯଜ୍ଞ ସମାପନାନ୍ତେ କଶ୍ୟପମୁନିଙ୍କୁ ଦକ୍ଷିଣାସ୍ୱରୂପ ଏହି ଭାରତ ଭୂମି ପ୍ରଦାନ କଲେ । ତତ୍ପରେ ସେ ଭାରତବର୍ଷ ତ୍ୟାଗକରି କନ୍ୟା କୁମାରୀକୁ ଯାଇ ବହୁକାଳ ବରୁଣ ଦେବଙ୍କୁ କଠୋର ତପସ୍ୟା କଲେ । ବରୁଣ ତାହାଙ୍କ ତପସ୍ୟାରେ ସନ୍ତୁଷ୍ଟ ହୋଇ ଏହି ଆଦେଶ କଲେ ଯେ, ସେ ଯେତେଦୂର ପର୍ଯ୍ୟନ୍ତ ନିଜର ପରଶୁ ନିକ୍ଷେପ କରି ପାରିବେ ସେତେଦୂର ଭୂମି ତାହାଙ୍କ ବାସସ୍ଥାନପାଇଁ ସାଗର ଗର୍ଭରୁ ପ୍ରଦତ୍ତ ହେବ । ପରଶୁରାମ କନ୍ୟା କୁମାରିକାରୁ ଉତ୍ତରଦିଗକୁ ଆପଣା ପରଶୁ ସଜୋରେ ନିକ୍ଷେପ କରିବାରୁ ଦକ୍ଷିଣ କେନାରାର ଅନ୍ତର୍ଗତ ଗୋକର୍ଣ୍ଣରେ ପତିତ ହେଲା । ବରୁଣଦେବ ମଧ କୁମାରିକା ଅନ୍ତରୀପରୁ ଗୋକର୍ଣ୍ଣ ପର୍ଯ୍ୟନ୍ତ ଖଣ୍ଡେ ଭୂମି ସାଗର-ଗର୍ଭରୁ ଉଦ୍ଧାର କରି ପରଶୁରାମଙ୍କୁ ପ୍ରଦାନ କଲେ । ସେହି ଭୂଖଣ୍ଡ କେରଳ ନାମରେ ଅଭିହିତ । ବର୍ତ୍ତମାନ ତ୍ରିବାଙ୍କୁର, କୋଚିନ ଓ ମାଲବାର କେରଳର ଅନ୍ତର୍ଗତ । ତାହା ପରଶୁ-ରାମ କ୍ଷେତ୍ର ନାମରେ କଥିତ । ତଦନନ୍ତର ପରଶୁରାମ କୃଷ୍ଣାନଦୀ ତୀରରୁ ୬୪ ଜଣ ବ୍ରାହ୍ମଣ ଅଣାଇ ସେହି ଭୂଖଣ୍ଡକୁ ୬୪ଭାଗରେ ବିଭକ୍ତ କରି ପ୍ରତ୍ୟେକଙ୍କୁ ଖଣ୍ଡେ ଖଣ୍ଡେ ଜମି ପ୍ରଦାନ କଲେ । ବ୍ରାହ୍ମଣମାନଙ୍କ ସେବା ଶୁଶ୍ରୂଷା କରିବା ପାଇଁ ନାର୍ଯ୍ୟ ନାମକ ଶୂଦ୍ରଜାତି ଅଣାଇ ପ୍ରତ୍ୟେକ ଗ୍ରାମରେ ବାସ କରାଇଲେ । ସେମାନେ ସ୍ୱଦେଶକୁ ପ୍ରତ୍ୟାବର୍ତ୍ତନ ନ କରିବେ ବୋଲି ସେମାନଙ୍କୁ ଆଚାରଭ୍ରଷ୍ଟ କରିଦେଲେ ।

କେରଳ ବ୍ରାହ୍ମଣଗଣ ନମ୍ବୁତିରି ( ନମ୍ବୁ=ବେଦ+ତିରି=ବେତ୍ତା ) ନାମେ କଥିତ । ଏହି ନମ୍ବୁ ତିରିରୁ ନମ୍ବୁରି ହୋଇ-ଅଛି । ସେମାନଙ୍କର ବାସଭୂମିକୁ "ମନ" ଅଥବା 'ଇଲ୍ଲୋମ' କହନ୍ତି । ଏହାର ଏକଦିଗରେ ଗୃହ-ଶ୍ମଶାନ ବା ଦାହଭୂମି ରୂପେ ନିର୍ଦ୍ଦିଷ୍ଟ ଥାଏ । ଏହି ବ୍ରାହ୍ମଣ କନ୍ୟାଙ୍କର ବିବାହ ପୁଷ୍ପୋଦ୍‌ଗମ ପରେ ହୋଇଥାଏ । ବାଳକମାନେ ଉପନୟନ ପରେ ବେଦାଧ୍ୟୟନ କରନ୍ତି । ପ୍ରାପ୍ତ ଯୌବନରେ ଏମାନଙ୍କ ମଧ୍ୟରେ କେବଳ ଜ୍ୟେଷ୍ଠପୁତ୍ର ବିବାହ କରେ । ସେଥିପାଇଁ ଅନେକ ନମ୍ବୁରି କନ୍ୟା ଅବିବାହିତା ଥାଆନ୍ତି । ଏହି କାରଣରୁ କନ୍ୟାମାନଙ୍କ ମଧ୍ୟରେ ବହୁ ବିବାହ ପ୍ରଥା ପ୍ରଚଳିତ ଅଛି । ତଥାପି ବ୍ରାହ୍ମଣୀମାନେ ସତୀ ସାଧ୍ୱୀ ହୋଇ ପତିସେବାରେ ନିଯୁକ୍ତ ଥାଆନ୍ତି, କଦାପି ଅନ୍ୟ ପୁରୁଷର ମୁଖାବଲୋକନ କରନ୍ତି ନାହିଁ । ଏମାନଙ୍କୁ ଘରୁ ବାହାରିବାକୁ ହେଲେ ମୁଖାବରଣ ପାଇଁ ଏକ ତାଳପତ୍ରର ଛତା ସମ୍ମୁଖରେ ଧରି ଯିବାକୁ ହୁଏ । ସ୍ତ୍ରୀଲୋକମାନଙ୍କୁ ଅନ୍ତର୍ଜନା ବୋଲାଯାଏ ଏବଂ ପ୍ରତ୍ୟେକ ଅନ୍ତର୍ଜନାଙ୍କର ଗୋଟିଏ ଲେଖାଏଁ ନାୟାର (ଶୂଦ୍ରା) ଦାସୀଥାଏ । ବହିର୍ଗମନକାଳରେ ନାୟାର ଦାସୀ ସତର୍କ କରିଦେଲେ ଅନ୍ତର୍ଜନାଗଣ ଆତପତ୍ର ଦ୍ୱାରା ମୁଖାବରଣ କରି ଲଜ୍ଜା ନିବାରଣ କରନ୍ତି । ଏମାନଙ୍କ ମଧ୍ୟରେ ଯଦି କେହି ଭ୍ରଷ୍ଟା ହୁଅନ୍ତି ସେ ବିଚାରରେ ଦୋଷୀ ସାବ୍ୟସ୍ତ ହେଲେ ତାହାର ହସ୍ତସ୍ଥିତ ସତୀତ୍ୱର ଚିହ୍ନସ୍ୱରୂପ ତାଳପତ୍ରଟି କାଢ଼ି ନିଆଯାଏ ଏବଂ ଘରୁ ବାହାର କରି ଦିଆଯାଏ । ବ୍ୟଭିଚାରୀ ପୁରୁଷ ମଧ ଭ୍ରଷ୍ଟା ସ୍ତ୍ରୀର ସହିତ ସମାଜଚ୍ୟୁତ ହୁଏ । ଯେଉଁ ସ୍ତ୍ରୀମାନଙ୍କର ବହୁ ବିବାହ ହୁଏ ସେମାନେ ପର୍ଯ୍ୟାୟକ୍ରମେ ଭିନ୍ନ ଭିନ୍ନ ସ୍ୱାମୀର ସହିତ ସହବାସ କରନ୍ତି ଅର୍ଥାତ୍ କୌଣସି ଯୁବକ ଯୁବତୀର ନିକଟ ଯେତେବେଳେ ଥିବ, ସେତେବେଳେ ତାହାର ଗୃହ ଦ୍ୱାରରେ ଅସ୍ତ୍ର ବା ଦଣ୍ଡ ରକ୍ଷିତ ହୁଏ, ଏହା ଦେଖି ଅପର କେହି ସେ ଆଡ଼କୁ ଯାଏ ନାହିଁ । ଏହି ହିସାବରେ ଦ୍ରୌପଦୀ ସତୀପଦ ବାଚ୍ୟା । ଏହି ସନାତନ ନିୟମର ବଶବର୍ତ୍ତୀ ହୋଇ ସେ ଦେଶର ଯୁବତୀମାନେ ସ୍ୱେଚ୍ଛାନୁସାରେ ବହୁପତି ଉପଭୋଗ କରନ୍ତି । ଏ ଦେଶରେ ସ୍ତ୍ରୀଲୋକମାନେ ଗୃହର କର୍ତ୍ତ୍ରୀ, ସେମାନଙ୍କ ଇଚ୍ଛାନୁସାରେ ପତି ନିର୍ବାଚନ କରନ୍ତି । ଯୁବତୀ ଯାହାର ସଂସର୍ଗରେ ଗର୍ଭିଣୀ ହୁଏ ସେହି ସନ୍ତାନର ପିତା ହୁଏ । କିନ୍ତୁ ସେ ସନ୍ତାନ ପିତାର ପିଣ୍ଡ ଦେବାର ବା ପିତୃ ସମ୍ପତ୍ତିର ଅଧିକାରୀ ହୁଏ ନାହିଁ । ମାତୃ ସମ୍ପତ୍ତିରେ ଲାଳିତ ପାଳିତ ହୋଇ ମାତୁଳର ପିଣ୍ଡାଧିକାରୀ ହୁଏ । ଯଦି କାହାର ଭଗ୍ନୀର ଅଭାବ ହୁଏ କିମ୍ବା ଭଗ୍ନୀ ବନ୍ଧ୍ୟା ହୁଏ, ତେବେ ବଂଶ ରକ୍ଷା ନିମିତ୍ତ ଦତ୍ତକ ଭଗ୍ନୀ ଗ୍ରହଣ କରିବାକୁ ବାଧ୍ୟ ହୁଏ । ମାଲବାରରେ ଭଗ୍ନୀ ଅତି ଆଦରଣୀୟ ଓ ତଦୀୟ ସନ୍ତତି ଯତ୍ନର ସହିତ ପାଳନ କରାହୁଏ ।

'କନ୍ୟାର' ନାମକ ଗ୍ରାମାଚାର୍ଯ୍ୟ ବା ପଣ୍ଡିତ ବ୍ରାହ୍ମଣ ଗଣଙ୍କ ମଧ୍ୟରେ 'ମଲ୍ଲୟୁଣ୍ଡି' ବିବାହ ପ୍ରଥା ଅଛି । ଅର୍ଥାତ୍ ଦୁଇ, ତିନି ବା ଚାରିଭ୍ରାତା ମିଳିତ ହୋଇ ଏକପତ୍ନୀ ବିବାହ କରନ୍ତି । ଏମାନଙ୍କ ମଧ୍ୟରେ ଅନେକ ଅବିବାହିତା କନ୍ୟା ରହି ଯାଆନ୍ତି । ଏମାନଙ୍କ ପୁତ୍ର ସମ୍ପତ୍ତିର ଅଧିକାରୀ

ହୁଏ । ଏ ଦେଶରେ ବହୁ ସ୍ୱାମୀ ପ୍ରଥା ଅଛି । ଏ ଦେଶର ଦେବତା ଓ ସମ୍ଭ୍ରାନ୍ତ ବ୍ୟକ୍ତିର ସମ୍ମୁଖୀନ ହେଲେ ପୁରୁଷ ଓ ନାରୀ ଉଭୟ ପକ୍ଷର ଦେହ ଅନାବୃତ ରଖିବା ବିଧି । ନିମ୍ନ ଶ୍ରେଣୀର ସ୍ତ୍ରୀଲୋକମାନେ ସର୍ବଦା ଅନାବୃତ ବକ୍ଷରେ ଥାଆନ୍ତି । ବକ୍ଷ ଅନାବୃତ ରଖିବା ଏ ଦେଶର ନିୟମ । ବିଶେଷତଃ ବ୍ରାହ୍ମଣଗଣଙ୍କ ସମ୍ମୁଖରେ ସ୍ତ୍ରୀମାନେ ଯେବେ ବକ୍ଷ ଆବୃତ କରନ୍ତି ତେବେ ତାହାଙ୍କ ପ୍ରତି ଅସମ୍ମାନ ପ୍ରଦର୍ଶନ କରିବା ହୁଏ । ଏ ସ୍ତ୍ରୀମାନେ ପ୍ରାୟ କୃଷ୍ଣବର୍ଣ୍ଣ ।

ନାୟାରଙ୍କ ମଧ୍ୟରୁ ଯେଉଁମାନେ ସୈନିକ ବୃତ୍ତି କରନ୍ତି ଅଥବା ବାହୁବଳରେ ଯେଉଁମାନେ ବିଦ୍ୟା ଓ ଧନ ଲାଭ କରିଅଛନ୍ତି ସେମାନେ ଆପଣାକୁ କ୍ଷତ୍ରିୟ ବୋଲି ପରିଚୟ ଦିଅନ୍ତି । ନମ୍ବୁଦ୍ରି ସ୍ତ୍ରୀମାନେ ଋତୁକାଳରେ ୩ ଦିନ ଓ ସୂତିକାଗାରରେ ଏହି ନିୟମରେ ଶୂଦ୍ରାଣୀର ଅନ୍ନଗ୍ରହଣ କରନ୍ତି । ଏଥିରେ ସେମାନଙ୍କର ଶୁଦ୍ଧାଚାର ନଷ୍ଟ ହୁଏ ନାହିଁ । ଅନ୍ୟ ସମୟରେ ଏମାନଙ୍କୁ ସ୍ପର୍ଶକଲେ ସ୍ନାନ କରିବାକୁ ବାଧ୍ୟ ହୁଅନ୍ତି । ନମ୍ବୁଦ୍ରି ଓ ନାୟାର ସ୍ତ୍ରୀଗଣ ଉଭୟଙ୍କ ମଧ୍ୟରେ ତାଳିବନ୍ଧନ ପ୍ରଥା ଅଛି । ବିବାହର ପୂର୍ବରେ ଯେ ନିଷ୍ଫଳ ବିବାହର ଅନୁକରଣ ( Court ship ) କରାହୁଏ । ତାହାକୁ ତାଳି ବନ୍ଧନ କହନ୍ତି । ସେହି ସମୟରେ ଶୁଭଦିନେ ଶୁଭକ୍ଷଣରେ ଘର ସଜାଥାଏ ବନ୍ଧୁବାନ୍ଧବମାନେ ଆମନ୍ତ୍ରିତ ହୁଅନ୍ତି । ବରକର୍ତ୍ତା ନିଜ ପୁତ୍ରପାଇଁ କନ୍ୟା କର୍ତ୍ତା ନିକଟ କନ୍ୟାର କର ପ୍ରାର୍ଥୀ ହୁଏ, କନ୍ୟା କର୍ତ୍ତା ବାକ୍‌ଦାନରେ ପରିଣୟର ଦିନ ସ୍ଥିର କରନ୍ତି । ବର ସୁକ୍ଷଣରେ ହସ୍ତରେ ମଙ୍ଗଳ ସୂତ୍ର ଧାରଣ କରି ବଂଶଦଣ୍ଡ ନେଇ କନ୍ୟା ଗୃହରେ ତିନିଦିନ ବାସକରେ । କନ୍ୟା ଉଭୟ ପଦର ମଧ୍ୟମାଙ୍ଗୁଳିରେ ରୌପ୍ୟ ଅଙ୍ଗୁରୀୟ ଦିଏ ଓ ଗଳାରେ ମାଳାଦ୍ୱୟ ଧାରଣ କରେ । ଏହି ମାଳାକୁ ତାଳି କହନ୍ତି । ଏଥିରୁ ଖଣ୍ଡେ ପିତାର ଓ ଅପର ଖଣ୍ଡ ସ୍ୱାମୀ କର୍ତ୍ତୃକ ଉଦ୍‌ବାହ କାଳରେ ପ୍ରଦତ୍ତ ହୁଏ । ବର କନ୍ୟାଘରେ ତିନିଦିନ ରହି ବିବାହ ପରିଚ୍ଛଦ ଛିନ୍ନକରି ଚାଲିଯାଏ । ସେହି ଦିନଠାରୁ ପାତ୍ରୀର ସହିତ ଆଉ କୌଣସି ସମ୍ପର୍କ ଥାଏ ନାହିଁ । କନ୍ୟା ବୟଃପ୍ରାପ୍ତ ହେଲେ ଅନ୍ୟ ପୁରୁଷକୁ ନାୟକ ସ୍ଥିରକରି ପୁନଃ ବିବାହ କରେ । ଏହି ସମୟରେ ଯୁବତୀର ବନ୍ଧୁବାନ୍ଧବମାନେ ନିମନ୍ତ୍ରିତ ହୁଅନ୍ତି । ବର ସ୍ତ୍ରୀର ପରିଧେୟ ବସ୍ତ୍ର ଓ ଲଗାଇବାର ତୈଳ ଦେବାକୁ ସ୍ୱୀକୃତ ହେଲେ ଶୁଭଦିନରେ ଶୁଭ ଲଗ୍ନରେ ଉଦ୍‌ବାହ କାର୍ଯ୍ୟ ସମାଧା ହୁଏ । ବିବାହ କାଳରେ ବର ବସ୍ତ୍ର ଓ ତୈଳ ଆଣି ସ୍ତ୍ରୀର ହସ୍ତରେ ଦେଲେ ଗୃହସ୍ୱାମିନୀ ପାଦ୍ୟ ଅର୍ଘ୍ୟ ପ୍ରଦାନରେ ତାହାକୁ ସମ୍ମାନିତ କରେ । ପରେ ବିବାହ କାର୍ଯ୍ୟ ସମାଧା ହେଲେ ଯୁବକ ତଦବଧି ଅବିବାଦରେ ଯୁବତୀ ନିକଟ ଯାତାୟାତ କରେ । ସ୍ୱଜାତି ହେଲେ ସବିରେ ଭୋଜନ କରେ । ବ୍ରାହ୍ମଣ ହେଲେ ଜଳ ପର୍ଯ୍ୟନ୍ତ ଗ୍ରହଣ କରେ ନାହିଁ । ଯେତେଦିନ ପର୍ଯ୍ୟନ୍ତ ଉଭୟଙ୍କ ମଧ୍ୟରେ ପ୍ରଣୟ ସ୍ନେହ ଥାଏ ସେ ପର୍ଯ୍ୟନ୍ତ ଯୁବକ ଯୁବତୀକୁ ବସ୍ତ୍ର ଓ ତୈଳ ଦିଏ । ଖାଇବା ଖରଚ ଦେବାକୁ ହୁଏ ନାହିଁ । ଯୁବକ ଧନ୍ୟ ହେଲେ ଅଳଙ୍କାର ଦେଇପାରେ । ଦୁହିଙ୍କ ମଧ୍ୟରେ ମନୋମାଳିନ୍ୟ ଘଟିଲେ ସହଜରେ ବିବାହ ଭଙ୍ଗ ହୁଏ । ଯୁବକ ପ୍ରଦତ୍ତ-ବସ୍ତ୍ର ଯୁବତୀ ପ୍ରତ୍ୟର୍ପଣ କଲେ ବିବାହ ଭଙ୍ଗହୁଏ । ତେତେବେଳେ ଯୁବତୀ ଅନ୍ୟ ପୁରୁଷ ନିଯୋଗ କରେ ।

ମାଲବାର ଦେଶର ପୁରୁଷମାନେ ଚନ୍ଦନ ବୋଳି ହୁଅନ୍ତି ଓ ଶିଖା ରଖନ୍ତି । ରମଣୀମାନେ କୌପୀନ ତିନ୍ଧି ବହିର୍ବାସ ପିନ୍ଧନ୍ତି । କିନ୍ତୁ ବକ୍ଷ ଅନାବୃତ ଥାଏ । ମସ୍ତକେ ଚିକୁର ଦାମ ଚୂଡ଼ାପରି ବଦ୍ଧିତ । କର୍ଣ୍ଣରେ ସୁବୃହତ୍ ହିରଣ୍ୟ କର୍ଣ୍ଣିକା, କର୍ଣ୍ଣପଟ ବିଚ୍ଛିନ୍ନକରି ତାକର ପରିଧି ମଧ୍ୟରେ ଅବସ୍ଥାନ କରେ । ଗଳାରେ ସୁବର୍ଣ୍ଣହାର, ମଣିବନ୍ଧ ଭୂଷଣ ହୀନ । ଏମାନଙ୍କର କେଶ ଦୀର୍ଘ ହୁଏ । ଏମାନେ ଦୁଇଓଳି ମତ୍ସ୍ୟାହାର କରନ୍ତି । ବ୍ରାହ୍ମଣଗଣ ବେଦଜ୍ଞ ଓ ସ୍ତ୍ରୀମାନେ ବିଦ୍ୟାଳୟରେ ପାଠାଭ୍ୟାସ କରନ୍ତି । ଏମାନଙ୍କ ଭାଷା କାନାରି । ଚନ୍ଦନ, ମରିଚ, ଜାଇଫଳ, ଜୈତ୍ରୀ, ସାଗୁ, କାଫି, ଏବଂ ନାରିକେଳ ତୈଳ ଏଠାକାର ପ୍ରଧାନ ପଣ୍ୟ । ଏଠାରେ ସ୍ୱର୍ଣ୍ଣ; ରୌପ୍ୟ ଓ ମଧ୍ୟେ ମଧ୍ୟେ ହୀରକର ଖଣି ଦୃଷ୍ଟି ହୁଏ । ଏଠାରେ ତଣ୍ଡୁଳ ପ୍ରଧାନ ଆହାର ।



କାଷ୍ଠ ଇକ୍ଷୁଦଣ୍ଡ କଦଳ ଖଣ୍ଡ ଖଣ୍ଡ ସ୍ୱାଦୁ କି-ଦୁପର ଦୁର ?

## ଭାରତୀୟ ମୁଦ୍ରା

ସେରଶାହଙ୍କ ରାଜତ୍ୱରେ ଟଙ୍କା ପ୍ରଥମେ ପ୍ରଚଳିତ ହୋଇଥିଲା । ସମ୍ରାଟ ଅକବର ତାହାର ଉନ୍ନତି ବିଧାନ କରିଥିଲେ । ତାହାର ନାମ ଜୁଡ୍ଡୋ ଓ ଓଜନ ୧୧୪ ମସା କିନ୍ତୁ ଦେଖିବାକୁ ଗୋଲାକାର । ଅକବର ଏକ ପ୍ରକାର ରୌପ୍ୟ ମୁଦ୍ରା ଚଳାଇ ଥିଲେ । ତାହାର ନାମ ଜଲାଲି । ଓଜନରେ ଏହା ପୂର୍ବପର ମାତ୍ର ଆକାର ବର୍ଗକ୍ଷେତ୍ର ପରି । ତେତେବେଳେ ୨ ପ୍ରକାର ସ୍ୱର୍ଣ୍ଣ ରୌପ୍ୟ ମୁଦ୍ରା ମଧ୍ୟ ଚଳୁଥିଲା । ସୁନା ସବୁଠାରୁ ଶ୍ରେଷ୍ଠ ଓ ତାହାର ଓଜନ ଟଙ୍କାର ୬୦ ଭାଗରୁ ଭାଗେ । ତାମ୍ର ମୁଦ୍ରା ମଧ୍ୟ ଚଳୁଥିଲା । ସବୁଠାରୁ ଶ୍ରେଷ୍ଠ ତାମ୍ର ମୁଦ୍ରାର ନାମ ଦାମର ଏହାର ୮ ଭାଗରୁ ଭାଗେ । ଟଙ୍କାକୁ ୪୦ଟି ଦାମରେ ମିଳୁଥିଲା । ଏହା ଛଡ଼ା ଅନ୍ୟାନ୍ୟ ସ୍ୱାଧୀନ ପ୍ରଧାନମାନେ କେତେକ ପ୍ରକାର ମୁଦ୍ରା ଚଳାଇ ଥିଲେ । ୧୯ଶ ଶତାବ୍ଦୀର ପ୍ରାରମ୍ଭରେ ମଧ୍ୟ ୪ ପ୍ରକାର ଭିନ୍ନ ଭିନ୍ନ ଟଙ୍କା ଚଳୁଥିଲା । ସାହାଆଲମଙ୍କ ରାଜତ୍ୱରେ ମୁର୍ଶିଦାବାଦ ଟଙ୍କାର ଓଜନ ୧୭୯ $\frac{1}{2}$ ଗ୍ରେନ (୧୭୫·୯ ଗ୍ରେନ ବିଶୁଦ୍ଧ ରୁପା) ଥିଲା । ତାହାକୁ ସିକ୍କା ଟଙ୍କା ବୋଲି କହୁଥିଲେ । ସୁରଟ ଟଙ୍କାରେ ୧୭୪·୬ ଗ୍ରେନ୍ ବିଶୁଦ୍ଧ ରୁପା ଆରକଟ ଟଙ୍କାରେ ୧୭୬·୫ ଗ୍ରେନ ବିଶୁଦ୍ଧ ରୁପା ଓ ଅଯୋଧ୍ୟାର ଉଜିରଙ୍କ ଲକ୍ଷ୍ନୌ ଟଙ୍କାରେ ୧୭୫·୨ ଗ୍ରେନ ବିଶୁଦ୍ଧ ରୁପା ଥିଲା । ଏହା ଛଡ଼ା ବଙ୍ଗର ସ୍ୱର୍ଣ୍ଣ ମୋହର, ପୁରାତନ ବୋମ୍ବାଇ ମୋହର । ବୋମ୍ବାଇ ସ୍ୱର୍ଣ୍ଣଟଙ୍କା, ମାନ୍ଦ୍ରାଜର ନାନାପ୍ରକାର ପଗୋଡ଼ା ( ନକ୍ଷତ୍ର ପଗୋଡ଼ା, ପୁରାତନ ପଗୋଡ଼ା, ପୋର୍ତ୍ତୋ ନୋଭୋ ପଗୋଡ଼ା) ଆହୁରି ସୁନାଟଙ୍କା ଅର୍ଦ୍ଧମୁଦ୍ରା, ଚୌରଅଣିଆ ଟଙ୍କା ୧୮୧୮ ମସିହା ଆଇନାନୁସାରେ ମାନ୍ଦ୍ରାଜରେ ଚଳୁଥିଲା ।

୧୮୩୫ ମସିହାରେ ସମଗ୍ର ଭାରତରେ ଏକପ୍ରକାର ମୁଦ୍ରା ଚଳିଲା ତେତେବେଳେ ମାନ୍ଦ୍ରାଜ ଟଙ୍କା ବୋମ୍ବାଇ ଓ ଫରକ୍କାବାଦ ଟଙ୍କାର ମୂଲ୍ୟ ସମାନ ଥିଲା । ତାହାର ଓଜନ ୧୮୦ ଗ୍ରେନ । ସେଥିମଧ୍ୟରୁ ୧୬୫ ଗ୍ରେନ ବିଶୁଦ୍ଧ ରୁପା । ଭାରତରେ କୋମ୍ପାନୀ ରାଜ୍ୟରେ ଏହା ମଧ୍ୟ ନିରୂପିତ ହେଲା । ୧୮୬୨ ସାଲରେ ସରକାରୀ ଟଙ୍କା ଚଳିଲା । ଭାରତର କୋମ୍ପାନୀ ଟଙ୍କା ଓ ଅନ୍ୟାନ୍ୟ ଟଙ୍କା ଉଠାଇ ଦିଆଗଲା ତାହାର ଓଜନ ସମାନ ଏବଂ ଦେଖିବାକୁ ସୁନ୍ଦର ।

ବ୍ରିଟିଶ ଭାରତରେ ସୁନା ମୋହର ପ୍ରଧାନ ସ୍ୱର୍ଣ୍ଣମୁଦ୍ରା ଥିଲା । ତାହା ଠିକ୍ ରୌପ୍ୟ ମୁଦ୍ରାପରି ଦେଖିବାକୁ ସୁନ୍ଦର ଓ ଓଜନରେ ସମାନ । ଏତଦ୍‌ବ୍ୟତୀତ ଡବଲ ମୋହର $\frac{1}{2}$ ମୋହର $\frac{1}{3}$ ମୋହର ମଧ୍ୟ ଚଳୁଥିଲା । ୧୮୭୨ ତାହା ହେଲା । କାରଣ ତେତେବେଳେ ଭାରତ ସରକାର ଭାରତରେ ରୌପ୍ୟମୁଦ୍ରାକୁ ସାର୍ବଜନୀନ ମୁଦ୍ରାରୂପେ ବ୍ୟବହାର କରିବା ପାଇଁ ଆଦେଶ ଦେଲେ ।

ବର୍ତ୍ତମାନ ଭାରତରେ ରୌପ୍ୟ ମୁଦ୍ରା ନିରୂପିତ । ତାହାର ଓଜନ ଟ୍ରୟ ୧୮୦ ଗ୍ରେନ କିମ୍ବା ୧ ତୋଳା । ସେଥିରେ ୧୬୫ ଗ୍ରେନ୍ ରୁପା ଓ ୧୫ ଗ୍ରେନ୍ ଏଲଏ ଅଛି । ତା ତଳକୁ ଅଠଣିର ଓଜନ ୯୦ ଗ୍ରେନ୍ । ତହିଁରେ ସୁକି ଓ ଦୋଅଣି । ନିକେଲର ଅଣି, ଦୋଅଣି, ସୁକି ମଧ୍ୟ ଚଳୁଛି । ତମ୍ବାର ଦୋପଇସା, ପଇସା, ଅଧଲା ଓ ପାହୁଲା ଚଳୁଛି ।

ପୁରାତନ ସିକ୍କା ଟଙ୍କା ଇଷ୍ଟଇଣ୍ଡିଆ କୋମ୍ପାନୀ ଚଳାଇ ଥିଲେ । ଫଳତଃ ସରକାରୀ ଟଙ୍କା ସହିତ ତାହାର ଓଜନ ମିଳୁ ନାହିଁ । ଏଣୁ ଗୋଳମାଳ ଘଟୁଛି । ଯଥା :—

୧୦୦ ସରକାରୀ ଟଙ୍କା=୯୩ $\frac{3}{4}$ ସିକ୍କା ଟଙ୍କା=
୧୦୮ $\frac{3}{4}$ ପ୍ରଚଳିତ ଟଙ୍କା ।

୧୦୦ ସିକ୍କା ଟଙ୍କା=୧୦୬ $\frac{2}{3}$ ସରକାରୀ ଟଙ୍କା=
୧୧୬ ପ୍ରଚଳିତ ଟଙ୍କା ।

୧୫୦ ପ୍ରଚଳିତ ଟଙ୍କା=୯୧·୯୫ ସରକାରୀ ଟଙ୍କା=
୮୬·୨୦ ସିକ୍କା ଟଙ୍କା ।



## ହିମାଳୟର ଶୃଙ୍ଗାବଳୀ

| | | |
|---|---|---|
| ଏଭରେଷ୍ଟ | ୨୯୦୦୨ | ଫୁଟ ଉଚ୍ଚ |
| କାଞ୍ଚନଜଙ୍ଘା | ୨୮୧୫୦ | ,, |
| ନାଗା ପର୍ବତ | ୨୬୬୦୦ | ,, |
| ନନ୍ଦାଦେବୀ | ୨୫୬୬୦ | ,, |
| ବ୍ରାଡ଼ଡ଼ ଶୃଙ୍ଗ | ୨୪୪୪୬ | ,, |
| କାମେଟ୍ ଶୃଙ୍ଗ | ୨୪୦୦୨ | ,, |
| ତ୍ରିଶୂଳ ଶୃଙ୍ଗ | ୨୩୪୦୬ | ,, |



# ଭାରତରେ ନୋଟ ପ୍ରଚଳନ

କାଗଜ ନୋଟର ପ୍ରଚଳନ ବର୍ତ୍ତମାନ ପୁରପଲ୍ଲୀର ଟଙ୍କା ପରିବର୍ତ୍ତେ କାହାରିକୁ ଅବିଦିତ ନାହିଁ । କିନ୍ତୁ ତାହାର ଇତିହାସ ଆଲୋଚନା କଲେ ଜଣାଯାଏ ଯେ, ୧୮୩୯ ଖ୍ରୀଷ୍ଟାବ୍ଦ ପୂର୍ବରୁ ଏ ଦେଶରେ ତାର ଅସ୍ତିତ୍ୱ ପର୍ଯ୍ୟନ୍ତ ନ ଥିଲା । ବଡ଼ ବଡ଼ ବ୍ୟବସାୟୀମାନେ ସେତେବେଳେ ହୁଣ୍ଡିରେ କାରବାର ଚଳାଉ ଥିଲେ । ବ୍ରିଟିଶ ରାଜତ୍ୱରେ ଏ ଦେଶରେ ପ୍ରଥମେ ନୋଟ ପ୍ରଚଳନର ସୂତ୍ରପାତ ହୋଇଅଛି । ୧୮୩୯ ଠାରୁ ୧୮୪୩ ଏହି ପାଞ୍ଚବର୍ଷ ମଧ୍ୟରେ ଏହି ନୋଟ ପ୍ରଚଳନ ସମ୍ପର୍କରେ କେତୋଟି ଆଇନ ମଧ୍ୟ ପ୍ରଣୀତ ହୋଇଥିଲା ଏବଂ ସେହି ଆଇନର ବଳରେ ମାନ୍ଦ୍ରାଜ, ବଙ୍ଗ ଓ ବୋମ୍ବେଇର ପ୍ରାଦେଶିକ ବ୍ୟାଙ୍କମାନଙ୍କୁ ନୋଟ ପ୍ରଚଳନ କରି ପାରିବାର ଅଧିକାର ପ୍ରଦାନ କରା ଯାଇଥିଲା । ୧୮୬୧ ରେ ସେହି ୩ ବ୍ୟାଙ୍କରୁ ସରକାର କାଢ଼ି ନେଇ ନିଜ ହାତରେ ରଖିଲେ ଓ ତାହାର ପ୍ରଚଳନ କାର୍ଯ୍ୟ ସ୍ୱତନ୍ତ୍ର ଏକ ବିଭାଗ ଅଧୀନରେ ରହିଲା । ଭାରତ ସରକାରଙ୍କ ୧ମ ଅର୍ଥ ବିଭାଗର ମେମ୍ବର ସାର୍ ଜେମସ୍ ଉଇଲସନଙ୍କ ଚେଷ୍ଟାରେ ଏହା ହୋଇଥିଲା ।

୧୮୬୧ରେ ପ୍ରଣୀତ ଆଇନ ବଳରେ ଗଭର୍ଣ୍ଣମେଣ୍ଟ ୪ କୋଟି ଟଙ୍କାର ନଗଦ ମହଜୁଦ୍ ଉପରେ ନୋଟ ବାହାର କରିବା ପାଇଁ କ୍ଷମତା ପାଇଲେ । ଏହା ପରେ ଯେତେ ନୋଟ ବାହାର କରିବେ । ତାହା ପାଇଁ ସେତିକ ମୂଲ୍ୟର ଟଙ୍କା, ରୁପା ବା ସୁନା ମହଜୁଦ୍ ରଖିବାର ଆଦେଶ ମଧ୍ୟ ସେ ପାଇ ଥିଲେ ।

୧୮୬୦ ସାଲରୁ ୧୯୨୪ ପର୍ଯ୍ୟନ୍ତ ନୋଟ ପ୍ରଚଳନର ତାଲିକା :—

୧୮୬୩-୬୪—୫୧୧ କୋଟି
୧୮୯୯-୧୯୦୦—୨୭୧୭ କୋଟି
୧୯୧୩-୧୪—୪୯୬୭ କୋଟି
୧୯୧୪-୧୫—୬୫୫୫ କୋଟି
୧୯୧୯-୨୦—୧୭୯୬୮ କୋଟି
୧୯୨୩-୨୪—୧୭୯୦୧ କୋଟି

୧୮୬୧ରେ ପ୍ରଣୀତ ଆଇନ ଅନୁଯାୟୀ ୧୦, ୨୦, ୫୦, ୧୦୦ ,୧୦୦୦ ଟଙ୍କାରେ ନୋଟ ଚଳିବାର ମଞ୍ଜୁର ହୋଇଥିଲା । ପରେ ୫, ୨୫, ଓ ୧ ଟଙ୍କିଆ ନୋଟ ଚଳିଲା । ବର୍ତ୍ତମାନ ୧ ଟଙ୍କିଆ ଓ ୨୫ ଟଙ୍କିଆ ଆଉ ପ୍ରଚଳିତ ହେଉ ନାହିଁ ।

# ଭାରତର ଋଣଭାର

ବିଳାତ ସରକାର ଦରିଦ୍ର ଭାରତ ଉପରେ ବର୍ତ୍ତମାନ ୧୧୦୦ କୋଟି ଟଙ୍କାର ଯେଉଁ ଋଣଭାର ଦେଇଅଛନ୍ତି, ତାହାର ହିସାବ କଂଗ୍ରେସର କରାଚୀ ଅଧିବେଶନ କମିଟି ନିମ୍ନଲିଖିତରୂପେ ଆଲୋଚନା କରି ରିପୋର୍ଟ ଉପସ୍ଥାପିତ କରିଅଛନ୍ତି :—

କମ୍ପାନୀ ଅମଳର ଋଣ ।

| | | |
|---|---|---|
| ପ୍ରଥମ ଆଫଗାନ ସମର— | ୧୫୦୦୦୦୦୦ ପାଉଣ୍ଡ | ଯୁଦ୍ଧ ଋଣ / ଏସିଆ ମହାଦେଶରେ |
| ପ୍ରଥମ ବ୍ରିଟିଶ୍ବ୍ରହ୍ମସମର— | ୧୪୦୦୦୦୦୦ ,, | |
| ଚୀନ ପାରସ୍ୟ ଏବଂ ନେପାଳ ଅଭିଯାନ — | ୬୦୦୦୦୦୦ ,, | |
| | ୩୫୦୦୦୦୦୦ ,, | |
| ୧୮୩୩ଠାରୁ ୧୮୫୭ ପର୍ଯ୍ୟନ୍ତ ସିପାହୀ ବିଦ୍ରୋହ (ଦମନରେ ଋଣ) | ୩୬୨୦୦୦୦୦ ,, | |
| କମ୍ପାନୀ ମୂଳ ଧନ ପାଇଁ ସୁଧ | ୪୦୦୦୦୦୦୦ ,, | |
| ସର୍ବମୋଟ | ୧୧୨୨୦୦୦୦୦ ,, | |

ବ୍ରିଟିଶ ସରକାରଙ୍କ ଅମଳ ।

| | |
|---|---|
| ବହିଃଶକ୍ତିମାନଙ୍କ ସଙ୍ଗେ ଯୁଦ୍ଧ— | ୩୬ କୋଟି |
| ଇଉରୋପୀୟ ମହାସମରରେ ଦାନ— | ୧୮୯ ,, |
| ଅଂଶ— | ୧୭୧ ,, |
| | ୩୯୬ ,, |

ଅନ୍ୟାନ୍ୟ ବିଗରେ ବୃଥା ଖର୍ଚ୍ଚ— ୨୦ କୋଟି
ବ୍ରହ୍ମଦେଶ ବାବତରେ ଖର୍ଚ୍ଚ— ୮୨ ,,
ବିନିମୟ ହାରର ହ୍ରାସବୃଦ୍ଧିରେ ଖର୍ଚ୍ଚ—୩୫ ,,
ରେଲ୍ୱେ ବିଭାଗରେ ଖର୍ଚ୍ଚ— ୮୩ ,,

ସର୍ବମୋଟ ୭୨୯ ,, ଟଙ୍କା

କମିଟିର ମତରେ ଭାରତ ଉପରେ ଏ ଋଣଭାର ନିତାନ୍ତ ଅନ୍ୟାୟ । ଭାରତ ତାହା ବହନ କରି ନ ପାରେ ।



## ସମ୍ପ୍ରତି ଭାରତର ଆର୍ଥିକ ଅବସ୍ଥା

କୃଷିହିଁ ଭାରତବର୍ଷର ପ୍ରଧାନ ଅର୍ଥ । ପୃଥିବୀରେ ରେଲ ବିସ୍ତାର ମାଇଲ ହିସାବରେ ୨ୟ—

ବାର୍ଷିକ ଉତ୍ପନ୍ନ ଦ୍ରବ୍ୟର ମୂଲ୍ୟ—୧୦,୦୦୦,୦୦୦,୦୦୦ ଡୋଲାର ଅର୍ଥାତ୍ ସମୁଦାୟ ପୃଥିବୀର ଶତକରା ୫ ଭାଗ ଭାରତବର୍ଷ ଉତ୍ପନ୍ନ ବାର୍ଷିକ ବାହାରୁ ଆମଦାନୀ ଦ୍ରବ୍ୟର ମୂଲ୍ୟ ୧,୦୦୦,୦୦୦,୦୦୦ ଡୋଲାର ବା ଓ ରପ୍ତାନୀ ପ୍ରାୟ ଏହି ପରିମାଣ :—

କୃଷି—ଟି ଲୋକଙ୍କୁ ପୋଷୁଅଛି ।

(୧) ୮୦,୦୦୦,୦୦୦ ଏକର ଜମି ଧାନ
(୨) ୪୫,୦୦୦,୦୦୦ ଏକର ମକ୍କା ଜାତୀୟ
(୩) ୩୦,୦୦୦,୦୦୦ ଏକର ଗହମ
(୪) ୨୧,୦୦୦,୦୦୦ ଏକର କପା
(୫) ୧୮,୦୦୦,୦୦୦ ଏକର ତୈଳ ଜାତୀୟ କପାଗଛ

ସମ୍ବନ୍ଧରେ ଭାରତବର୍ଷ ୨ୟ ସ୍ଥାନ ଅଧିକାର କରୁଅଛି । ୭,୦୦୦,୦୦୦ ବେଲ ତୁଳା (ପ୍ରତ୍ୟେକ ବେଲ ୪୦୦ପାଉଣ୍ଡ) ଓଜନ ଅମଦାନୀ ହୁଏ । ରପ୍ତାନୀ ଦ୍ରବ୍ୟ ମଧ୍ୟରେ ତୁଳାହିଁ ପ୍ରଧାନ । ଝୋଟ ଭାରତବର୍ଷର ଏକଚାଟିଆ ଦ୍ରବ୍ୟ । ଭାରତବର୍ଷରେ ଚିନି ବିଶେଷ ପରିମାଣରେ ପ୍ରସ୍ତୁତ ହୁଏ ।

ଜୀବଜନ୍ତୁ—୧୮୦,୦୦୦,୦୦୦ ଗାଈ ଓ ମହିଷ ।
୭୦,୦୦୦,୦୦୦, ମେଣ୍ଢା ଓ ଛେଳି ।
୫୦୦,୦୦୦,୦୦୦ ଡୋଲାର ଦୁଧରୁ ଉତ୍ପନ୍ନ ଦ୍ରବ୍ୟ
୩୦୦,୦୦୦,୦୦୦ ଡୋଲାର ଓଜନ୍ଦ ଜୀବ ।
୭,୦୦୦,୦୦୦ ଡୋଲାର ହାଡ଼ ସାର ।
୨୫,୦୦୦,୦୦୦ ମାଂସ ।
୭୦,୦୦୦,୦୦୦ ଚମଡ଼ା ଓ ଲୋମ ।

ଜଙ୍ଗଲ—୧୦୦,୦୦୦,୦୦୦ ଏକର ଜମି ଓ ଜଙ୍ଗଲ ।
୪୫,୦୦୦,୦୦୦ ଡୋଲାର



## ବିଭିନ୍ନ ଦେଶରେ ଭାରତବାସୀଙ୍କ ସଂଖ୍ୟା

| (ଦେଶ) | (ଭାରତୀୟଙ୍କର ସଂଖ୍ୟା ଜନସୁମାରୀ) | (ସାଲ) |
|---|---|---|
| ସିହଳ | ୯୫୯୦୦୦ | ୧୯୨୯ |
| ବୃଟିଶମାଲୟ | ୭୦୦୦ | ୧୯୨୯ |
| ହଂକଂ | ୨୫୫୫ | ୧୯୧୧ |
| ମରିସସ୍ | ୨୮୧୦୨୫ | ୧୯୨୮ |
| ସିସେଇଲସ୍ | ୩୩୨ | ୧୯୧୧ |
| ଜିବ୍ରାଲଟର | ୫୦ | ୧୯୨୦ |
| ନାଇଜେରିଆ | ୧୦୦ | ୧୯୨୦ |
| କେନିଆ | ୨୭୮୫୯ | ୧୯୨୭ |
| ଉଗାଣ୍ଡା | ୧୧୭୧୩ | ୧୯୨୭ |
| ନ୍ୟାସାଲଣ୍ଡ | ୫୧୫ | ୧୯୨୧ |
| ଜାଞ୍ଜିବର | ୧୨୮୪୧ | ୧୯୨୧ |
| ଟାଙ୍ଗାନିକା | ୧୮୪୮୩ | ୧୯୨୭ |
| ଜାମେକା | ୧୬୭୬୧ | ୧୦୧୮ |
| ତ୍ରିନିଦାଦ | ୧୩୦୫୪୨ | ୧୯୧୯ |
| ବୃଟିଶଗିନି | ୧୨୮୨୦୯ | ୧୯୨୯ |
| ଫିଜି | ୭୮୭୩୩ | ୧୯୨୧ |
| ନାମ୍ଫୁଟୋଲାଣ୍ଡ ଓ ସୋୟାଜିଲାଣ୍ଡ | ୧୮୭ | ୧୯୧୧ |
| ରୋଡେସିଆ | ୧୩୦୭ | ୧୯୨୧ |
| କାନଡ଼ା | ୧୨୦୦ | ୧୯୨୦ |
| ଅଷ୍ଟ୍ରେଲିଆ | ୨୭୦୭ | ୧୯୨୨ |
| ଦକ୍ଷିଣଆଫ୍ରିକା | ୧୫୧୩୩୯ | ୧୯୨୧ |
| ଆମେରିକା ଯୁକ୍ତରାଜ୍ୟ | ୩୧୭୫ | ୧୯୧୦ |

( ଏସିଆ ବାସୀ )

| | | |
|---|---|---|
| ମଦାଗାସ୍କର | ୫୨୬୨ | ୧୯୧୬ |
| ନ୍ୟୁଜିଲ୍ୟାଣ୍ଡ | ୨୧୯୮ | ୧୯୨୧ |
| ୱେଷ୍ଟଇଣ୍ଡିଜ | ୫୦୦୦୦ | ୧୯୨୦ |
| ସୁରିନାମ | ୩୪୯୫୬ | ୧୯୨୦ |
| ମୋଜାମ୍ବିକ | ୧୧୦୦ (ଏସିଆବାସୀ) | ୧୯୨୨ |
| ପାରସ୍ୟ | ୩୮୨୬ | ୧୯୨୨ |

ଅମେରିକା ଯୁକ୍ତ ରାଜ୍ୟରେ ପ୍ରବାସୀ ଭାରତୀୟଙ୍କ ସଂଖ୍ୟା ୩୧୬୫ ଜଣ ଧରା ଯାଇଅଛି, କିନ୍ତୁ ଏହି ସଂଖ୍ୟା ଠିକ୍ ବୋଲି ମନେ ହୁଏ ନାହିଁ । କାରଣ ଅମେରିକାରେ ଗୋଟିଏ ଭାରତୀୟ ବହୁଲୋକ ଦଳ ଅଛନ୍ତି । ସେମାନଙ୍କ ସଭ୍ୟ ସଂଖ୍ୟା ପ୍ରାୟ ୩୦୦ ବୋଲି ଜଣାଯାଏ ।



# ଭାରତର ଆୟ କର

## ( INCOME TAX )

୧୮୬୦ ଖ୍ରୀଷ୍ଟାବ୍ଦରେ ଭାରତରେ ପ୍ରଥମେ ଆୟ-କରର ସୂତ୍ରପାତ ହୋଇଥିଲା । ୧୮୫୮ ସିପାହି ବିଦ୍ରୋହ ଫଳରେ ଇଷ୍ଟଇଣ୍ଡିଆ କୋମ୍ପାନୀର ଆର୍ଥିକ ଅବସ୍ଥା ଅତି ଶୋଚନୀୟ ହୋଇ ଉଠିବାରୁ ତାହା ଦୂର କରିବା ନିମନ୍ତେ ଜେମସ୍ ଉଇଲ୍‌ସନ୍ ଏହି କର ପ୍ରଚଳନ କରିଥିଲେ । ୧୮୬୫ ଖ୍ରୀଷ୍ଟାବ୍ଦରେ ଏହି ପ୍ରଥା ଉଠି ଯାଇଥିଲା, କିନ୍ତୁ ୧୮୬୯ ରେ ପୁନର୍ବାର କିଛିବର୍ଷ ପାଇଁ ପ୍ରଚଳିତ । ୧୮୮୬ ଖ୍ରୀଷ୍ଟାବ୍ଦ ଠାରୁ ସ୍ଥାୟୀ ଭାବରେ ଏହି କର ଭାରତରେ ପ୍ରଚଳିତ ହେଲା । କୃଷି ବ୍ୟତୀତ ଅନ୍ୟ ଉପାୟରେ ଯେ ସମସ୍ତ ଆୟ ହୁଏ, ତାହାର ଉପରେ ପ୍ରଥମେ ଏହି କର ଧାର୍ଯ୍ୟ କରାଯାଉ ଥିଲା । ସେତେବେଳେ କରଧାର୍ଯ୍ୟ—ଉପଯୋଗୀ ଆୟର ନ୍ୟୂନତମ ପରିମାଣ ଟ ୫୦୦୲ ଟଙ୍କା ବୋଲି ଧରା ଯାଉଥିଲା, ଏବଂ ପ୍ରତି ଗୃହ ପାଞ୍ଚଲି ହିସାବରେ କର ଧାର୍ଯ୍ୟ କରା ଯାଉଥିଲା । ୧୯୦୩ ରେ ଏହି କର ଧାର୍ଯ୍ୟ ଉପଯୋଗୀ ଆୟର ନ୍ୟୂନତମ ପରିମାଣ ଟ ୧୦୦୦୲ ହୋଇଥିଲା । ୧୯୧୬—୧୭ ରେ ଇଉରୋପୀୟ ମହାସମର ଲାଗିଥିଲା ବେଳେ କରର ହାର ମଧ୍ୟ ଯଥେଷ୍ଟ ବଢ଼ାଇ ଦିଆ ଯାଇଥିଲା । ନିମ୍ନରେ ବର୍ତ୍ତମାନ ପ୍ରଚଳିତ ଆୟକରର ହାର ପ୍ରଦର୍ଶିତ ହେଲା ।

| ଆୟର ନ୍ୟୂନତମ ପରିମାଣ | | ଟଙ୍କା ପ୍ରତି କରର ହାର |
|---|---|---|
| | ଟ ୨୦୦୦୲ | ଟ ୦ ୲ |
| ଟ ୨୦୦୦୲ ଠାରୁ | ଟ ୫୦୦୦୲ | ଟ ୦ ୲୫ ପାଇ |
| ଟ ୫୦୦୦୲ ଠାରୁ | ଟ ୧୦୦୦୦୲ | ଟ ୦ ୲୬ ପାଇ |
| ଟ ୧୦୦୦୦୲ ଠାରୁ | ଟ ୨୦୦୦୦୲ | ଟ ୦ ୲୯ ପାଇ |

ଏହି ଆୟ କରର ପ୍ରଥା ଯେ କେତେଦିନ ଏହିପରି ଭାରତରେ ପ୍ରଚଳିତ ରହିବ, ତାହା ନିର୍ଦ୍ଦେଶ କରିବା ବର୍ତ୍ତମାନ ସହଜ ନୁହେଁ ।

# ନୂଆ ଦିଲ୍ଲୀର ପ୍ରତିଷ୍ଠା ବ୍ୟୟ

୧୯୩୦ ମସିହା ଡିସେମ୍ବର ମାସ ୩୦ ତାରିଖରେ ଏହି ନବନଗରୀର ନିର୍ମାଣ ଆଦି ଯାବତୀୟ କାର୍ଯ୍ୟ ଶେଷ ହେଲା । ଏହି ନଗରୀରେ ଯେଉଁ ପ୍ରାସାଦମାନ ନିର୍ମିତ ହୋଇଅଛି, ସେଥିପାଇଁ ଭାରତ ସରକାରଙ୍କ ସର୍ବମୋଟ ଟ ୧୪୪୬୨୧୬୨୮୲ ବ୍ୟୟ କରିବାକୁ ହୋଇଅଛି ।

ବଡ଼ଲାଟଙ୍କ ବାସଭବନ ଯେଉଁ ଭୂମିଖଣ୍ଡ ଉପରେ ନିର୍ମିତ ହୋଇଅଛି, ତାହାର କ୍ଷେତ୍ରଫଳ ୩୩୦ ଏକର ଅଟେ । ପୂର୍ବେ ଏହି ସ୍ଥାନଟି ଛୋଟ ଛୋଟ ଗୁଳ୍ମ ଓ ଲତାରେ ଜଙ୍ଗଲପରି ହୋଇ ପଡ଼ିଥିଲା ଏବଂ ଛେଳି ଓ ବିଲୁଆମାନଙ୍କର ବାସଗୃହ ହୋଇଥିଲା । ଏବେ କିନ୍ତୁ ସେ ସମସ୍ତ ପରିଷ୍କୃତ ହୋଇ ବଡ଼ଲାଟଙ୍କ ବାସ ନିର୍ମିତ ଏକ ସୁନ୍ଦର ପ୍ରାସାଦ, ତାଙ୍କ ଦେହରକ୍ଷୀମାନଙ୍କ ପାଇଁ ବାସଗୃହ ଓ ସେକ୍ରେଟେରିଏଟ୍ କର୍ମଚାରୀମାନଙ୍କ ପାଇଁ କ୍ୱାର୍ଟର ନିର୍ମିତ ହୋଇଅଛି । ଏଥିପାଇଁ ଭାରତ ସରକାରଙ୍କର ଟ ୧୬୬୧୧୪୪୩୲ ବ୍ୟୟିତ ହୋଇଅଛି । ଏଥିରୁ କେବଳ ବଡ଼ଲାଟଙ୍କ ବାସଭବନରେ ଟ ୧୨୩୮୨୫୧୬୲ ଖର୍ଚ୍ଚ କରାଯାଇଅଛି ।

ଦୁଇଟିଯାକ ସେକ୍ରେଟେରିଏଟ୍ ଯେଉଁ ଭୂମିଖଣ୍ଡ ଉପରେ ନିର୍ମିତ ହୋଇଅଛି, ତାହାର ପରିମାଣ ୨୦ ଏକର । ଏଥିରେ ଭାରତ ସରକାରଙ୍କ ସକଳ ବିଭାଗର କାର୍ଯ୍ୟାଳୟମାନ ଖୋଲା ଯାଇଅଛି । ଲଣ୍ଡନର ଗଭର୍ଣ୍ଣମେଣ୍ଟ ଅଫିସଠାରୁ ଏହା ଆକାର

ଗୃହାଦି ଓ ଗଠନ ପରିପାଟୀରେ ଉତ୍କୃଷ୍ଟତର ହୋଇଅଛି । ଏହି ଦୁଇ ସେକ୍ରେଟେରିଏଟ୍ ନିର୍ମାଣ କାର୍ଯ୍ୟରେ ଭାରତ ସରକାରଙ୍କୁ ସର୍ବମୋଟ ଟ ୧୮୩୨୧୪୩୫୯ ଖର୍ଚ୍ଚ କରିବାକୁ ହୋଇଅଛି ।

ଏହି ପ୍ରାସାଦ ଗୁଡ଼ିକର ସମ୍ମୁଖରେ ଯେ ସମସ୍ତ ପ୍ରାଙ୍ଗଣ ଏବଂ ଫୁଟଣା ନିର୍ମିତ ହୋଇଅଛି, ତହିଁରେ ସରକାରଙ୍କର ଟ ୫୬୦୩୨୪୪୯ ବ୍ୟୟିତ ହୋଇଅଛି । ବଡ଼ଲାଟଙ୍କ ବାସଗୃହ ଏବଂ ସେକ୍ରେଟେରିଏଟ୍ ଅଫିସର ଉପକରଣ ପାଇଁ ଟ ୧୬୧୧୪୧୧୯ ଏବଂ ରାଜକୀୟ ଦପ୍ତରଖାନା ନିର୍ମାଣ ପାଇଁ ଟ ୧୪୬୩୬୦୯ ଖର୍ଚ୍ଚ ହୋଇଅଛି ।

ଅନ୍ୟାନ୍ୟ ଉଚ୍ଚ କର୍ମଚାରୀମାନଙ୍କ ପାଇଁ ମଧ୍ୟ ଯେ ସକଳ ବାସଭବନ ନିର୍ମିତ ହୋଇଅଛି, ତହିଁରେ ନିମ୍ନଲିଖିତ ପ୍ରକାରେ ଅର୍ଥ ବ୍ୟୟିତ ହୋଇଅଛି:—

| | |
|---|---|
| ସେନାପତିଙ୍କ ବାସଗୃହ | ଟ ୧୪୭୩୭୦୯ |
| ଗେଜେଟେଡ୍ ଅଫିସରଙ୍କ ପାଇଁ ବଙ୍ଗଳେ | ଟ ୫୧୮୭୭୧୦୯ |
| କିରାଣିମାନଙ୍କ ପାଇଁ କ୍ୱାଟର | ଟ ୭୭୧୧୮୫୨୯ |
| ଏସେମ୍ବ୍ଲିର ରକ୍ଷଣଶୀଳ ମେମ୍ବରଙ୍କ ପାଇଁ ଗୃହ | ଟ ୮୮୨୮୦୭୨୯ |

ଗତ ମହାଯୁଦ୍ଧର ସ୍ମୃତି ରକ୍ଷଣାର୍ଥେ ଯେଉଁ ତୋରଣ ନିର୍ମିତ ହୋଇଅଛି, ତହିଁରେ ଟ ୭୦୦୦୦୦୯ ଖର୍ଚ୍ଚ ହୋଇଅଛି । ଏତଦ୍‌ବ୍ୟତୀତ ପୋଲିସକ୍ୱାଟର, ହସ୍‌ପିଟାଲ ଓ ସୈନ୍ୟ ଶିବିର ଆଦି ଅନେକ ସୌଧ ମଧ୍ୟ ନିର୍ମିତ ହୋଇଅଛି । ସେ ସମସ୍ତର ଉଲ୍ଲେଖ ଏଠାରେ ନିଷ୍ପ୍ରୟୋଜନ । ଅନ୍ୟ ଯେ କେତୋଟି ଦିଗରେ ବେଶି ଟଙ୍କା ଖର୍ଚ୍ଚ ହୋଇଅଛି । ତଳେ ତାହାର ଏକ ତାଲିକା ପ୍ରଦତ୍ତ ହେଲା—

| | |
|---|---|
| ରାସ୍ତାପାଇଁ | ଟ ୩୦୮୨୪୮୭୯ |
| ବିଜୁଳି ଆଲୁଅପାଇଁ | ଟ ୫୬୬୭୪୫୩୯ |
| ଜଳ ଯୋଗାଇବାପାଇଁ | ଟ ୨୭୮୮୦୧୧୯ |
| ଭବିଷ୍ୟତପାଇଁ ଜମି କିଣା | ଟ ୩୫୧୭୦୨୨୯ |

ଏହି ନବ-ନଗରୀର ଯେଉଁ ବିପୁଳ ଅର୍ଥ ବ୍ୟୟିତ ହେଲା, ସେଥିପାଇଁ ଭାରତ ସରକାରଙ୍କୁ ପରର ଦ୍ୱାରସ୍ଥ ହେବାକୁ ପଡ଼ିନାହିଁ । ରାଜସ୍ୱ ବିଭାଗରୁ ପ୍ରତିବର୍ଷ କିଛି କିଛି ଅର୍ଥ ସଞ୍ଚୟ କରି ସରକାର ଏ ବିଭାଗରେ ଖର୍ଚ୍ଚ କରିଅଛନ୍ତି ।

## ଭାରତର ଜାତୀୟ
# କଂଗ୍ରେସ ବୈଠକ

| (ସାଲ) | (ସ୍ଥାନ) | ( ସଭାପତି ) |
|---|---|---|
| ୧୮୮୫ | ବମ୍ବେଇ | ଡବ୍ଲ୍ୟୁ. ସି. ବାନର୍ଜି |
| ୧୮୮୬ | କଲିକତା | ଦାଦାଭାଇ ନଉରୋଜି |
| ୧୮୮୭ | ମାନ୍ଦ୍ରାଜ | ବଦରୁଦ୍ଦିନ ତୟାବ୍‌ଜି |
| ୧୮୮୮ | ଅଲ୍ଲାହାବାଦ | ଜର୍ଜ ଇଉଲ୍ |
| ୧୮୮୯ | ବମ୍ବେଇ | ସାର୍ ଉଇଲିୟମ୍ ଉଏଡ଼ରବର୍ଣ୍ଣ |
| ୧୮୯୦ | କଲିକତା | ସାର୍ ଫିରୋଜସାହା ମେହେଟା |
| ୧୮୯୧ | ନାଗପୁର | ପି. ଆନନ୍ଦ ଚାରଲୁ |
| ୧୮୯୨ | ଅଲ୍ଲାହାବାଦ | ଡବ୍ଲ୍ୟୁ. ସି. ବାନର୍ଜି |
| ୧୮୯୩ | ଲାହୋର | ଦାଦାଭାଇ ନଉରୋଜି |
| ୧୮୯୪ | ମାନ୍ଦ୍ରାଜ | ଆଲ୍‌ଫ୍ରେଡ୍ ଉଏବ୍ |
| ୧୮୯୫ | ପୁନା | ସୁରେନ୍ଦ୍ର ନାଥ ବାନର୍ଜି |
| ୧୮୯୬ | କଲିକତା | ଏମ୍. ଆର୍. ସାୟାନି |
| ୧୮୯୭ | ଅମରାଓଟି | ସାର୍, ସି. ଶଙ୍କରନ୍ ନାୟାର୍ |
| ୧୮୯୮ | ମାନ୍ଦ୍ରାଜ୍ | ଆନନ୍ଦ ମୋହନ ବୋଷ |
| ୧୮୯୯ | ଲକ୍ଷ୍ନୌ | ରମେଶ ଚନ୍ଦ୍ର ଦତ୍ତ |
| ୧୯୦୦ | ଲାହୋର | ଏନ୍. ଜି. ଚନ୍ଦ୍ରାଭରକର |
| ୧୯୦୧ | କଲିକତା | ଡି. ଇ. ଓ୍ୟାଚ୍ଛା |
| ୧୯୦୨ | ଅହମେଦାବାଦ | ସୁରେନ୍ଦ୍ର ନାଥ ବାନର୍ଜି |
| ୧୯୦୩ | ମାନ୍ଦ୍ରାଜ | ଲାଲମୋହନ ଘୋଷ |
| ୧୯୦୪ | ବମ୍ବେଇ | ସାର୍ ହେନେରି କଟନ୍ |
| ୧୯୦୫ | ବନାରସ୍ | ଜି. କେ ଗୋଖେଲ୍ |
| ୧୯୦୬ | କଲିକତା | ଦାଦାଭାଇ ନଉରୋଜି |
| ୧୯୦୭ | ସୁରଟ୍ | ଡାକ୍ତର ରାସବିହାରି ଘୋଷ |
| ୧୯୦୮ | ମାନ୍ଦ୍ରାଜ | ଡାକ୍ତର ରାସବିହାରି ଘୋଷ |
| ୧୯୦୯ | ଲାହୋର | ପଣ୍ଡିତ ମଦନମୋହନ ମାଲବ୍ୟ |
| ୧୯୧୦ | ଅଲ୍ଲାହାବାଦ | ସାର୍ ଉଇଲିୟମ ଉଏଡ଼ରବର୍ଣ୍ଣ |
| ୧୯୧୧ | କଲିକତା | ବିଶେଣ୍ ନାରାୟଣ ଦତ୍ତ |
| ୧୯୧୨ | ବାଙ୍କିପୁର | ଆର. ଏନ୍. ମୁଧୋଲ କର୍ |
| ୧୯୧୩ | କରାଚି | ନବାବ୍ ସଏଦ୍ ମହମ୍ମଦ |



ଉମେଶ ଚନ୍ଦ୍ର ବାନାର୍ଜି
୧୮୮୫ ବମ୍ବେଇ, ୧୮୯୨ ଏଲାହାବାଦ



ବଦରୁଦ୍ଦିନ ତାୟେବଜୀ
୧୮୮୭ ମାନ୍ଦ୍ରାଜ



ଦାଦାଭାଇ ନୌରୋଜୀ
୧୮୮୬ କଲିକତା, ୧୮୯୩ ଲାହୋର ୧୯୦୬



ଜର୍ଜ ୟୁଲ
୧୮୮୮ ଏଲାହାବାଦ



ସାର ସୁରେନ୍ଦ୍ର ନାଥ ବନ୍ଦ୍ୟୋପାଧ୍ୟାୟ
୧୮୯୫ ପନା, ୧୯୦୨



ରହିମ ତୁଲ୍ଲା ସାୟାନ
୧୮୯୬ କଲିକତା



ସାର ଶଙ୍କରନ୍ ନାୟାର
୧୮୯୭ ଅମରାବତୀ



ଆନନ୍ଦମୋହନ ବସୁ
୧୮୯୮ ମାନ୍ଦ୍ରାଜ



ସାର ଉଇଲିୟାମ ୱେଡ୍ଡରବର୍ଣ୍ଣ
୧୮୮୯ ବମ୍ବେଇ



ଆନନ୍ଦ ଚାର୍ଲୁ
୧୮୯୧



ଫିରୋଜ ସା ମେହେଟା
୧୮୯୦ କଲିକତା



ମିଷ୍ଟର ୱେବ୍
୧୮୯୪ ମାନ୍ଦ୍ରାଜ



ରମେଶଚନ୍ଦ୍ର ଦତ୍ତ
୧୮୯୯ ଲକ୍ଷ୍ନୌ



ନାରାୟଣ ଚନ୍ଦ ବରକର
୧୯୦୦ ଲାହୋର



ଦନସା ଉଆଚ୍ଛ
୧୯୦୧ କଲିକତା



ସାର୍ ହେନ୍‌ରି କଟନ
୧୯୦୪ ବମ୍ବେଇ



ଗୋପାଳ କୃଷ୍ଣ ଗୋଖେଲ
୧୯୦୫ ବନାରସ



ରାସବିହାରୀ ଘୋଷ
୧୯୦୮ ମାନ୍ଦ୍ରାଜ



ମଦନ ମୋହନ ମାଳବ୍ୟ
୧୯୦୯ ଲାହୋର ୧୯୧୮ ଦିଲ୍ଲୀ



ପଣ୍ଡିତ ବିଷଣ ନାରାୟଣ ଦାର
୧୯୧୧ କଲିକତା



ଆର୍ ଏନ୍ ମୁଧଲ୍ କର
୧୯୧୨ ବାଙ୍କୀପୁର



ନବାବ ସୟଦ ମାମୁଦ
୧୯୧୩ କରାଚୀ



ଉପେନ୍ଦ୍ର ନାଥ ବସୁ
୧୯୧୪ ମାନ୍ଦ୍ରାଜ



ସାର ଏସ୍ ପି ସିହ୍ନ
୧୯୧୫ ବମ୍ବେଇ



ଅମ୍ବିକା ଚରଣ ମଜୁମଦାର
୧୯୧୬ ଲକ୍ଷ୍ନୌ



ଆନି ବେସାନ୍ତ
୧୯୧୭ କଲିକତା



ସୟଦ ହାସାନ୍ ଇମାମ୍
୧୯୧୮ ବମ୍ବେ



ପଣ୍ଡିତ ମୋତିଲାଲ ନେହରୁ
୧୯୧୯ ଅମୃତସର, ୧୯୨୮



ଲାଲା ଲଜପତ୍ ରାୟ
୧୯୨୦ ବିଶେଷ କଲିକତା



ବିଜୟ ରାଘବା ଚାରିୟର
୧୯୨୦ ନାଗପୁର



ହାକିମ ଅଜମଲଖାଁ
୧୯୨୧ ଅହମଦାବାଦ



ଦେଶବନ୍ଧୁ ସି ଆର ଦାସ
୧୯୨୨ ଗୟା



ଲାଲମୋହନ ଘୋଷ
୧୯୦୩



ମୌଲନା ଅବୁଲ କଲାମ ଆଜାଦ୍
ଦିଲ୍ଲୀ ( ବିଶେଷ ) ୧୯୨୩



ମୌଲନା ମହମ୍ମଦ ଅଲି
କୋକନଦ ୧୯୨୩



ମହାତ୍ମା ଗାନ୍ଧୀ
ବେଲଗାଓଁ ୧୯୨୪



ଶ୍ରୀମତୀ ସରୋଜିନୀ ନାଇଡୁ
କାନପୁର ୧୯୨୫



ଶ୍ରୀନିବାସ ଅୟେଙ୍ଗାର
ଗୌହାଟୀ ୧୯୨୬



ଡାକ୍ତର ଅନସାରୀ
ମାନ୍ଦ୍ରାଜ ୧୯୨୭



ପଣ୍ଡିତ ଜହର ଲାଲ
ଲାହୋର ୧୯୨୯



ସର୍ଦ୍ଦାର ବଲ୍ଲଭଭାଇ ପଟେଲ
କରାଚୀ ୧୯୩୧



ସେଠ ରଣଛୋଡ଼ ଲାଲ
ଦିଲ୍ଲୀ ୧୯୩୨



ଶ୍ରୀଯୁକ୍ତା ନେଲି ସେନଗୁପ୍ତା
କଲିକତା ୧୯୩୩



ବାବୁ ରାଜେନ୍ଦ୍ର ପ୍ରସାଦ
ବମ୍ବେ ୧୯୩୪



ସମ୍ପାଦକ ଶ୍ରୀ[illegible] ପଣ୍ଡା, ବି. ଏ.



ପଣ୍ଡିତ ବ୍ରଜମଣି ଦାଶ କାବ୍ୟତୀର୍ଥ



ଶ୍ରୀଯୁକ୍ତ ଗୋପାଳଚରଣ ପଟ୍ଟନାୟକ, ବି. ଏ., ବି. ଏଲ୍.,
ମୟୂରଭଞ୍ଜ ଷ୍ଟେଟ୍ ସ୍କୁଲ'ର ଶିଳ୍ପ ଓ ପ୍ରାଥମିକ ଶିକ୍ଷା
ଅବସରପ୍ରାପ୍ତ ଡାଇରେକ୍ଟର୍



ଅଧ୍ୟାପକ ଶ୍ରୀଯୁକ୍ତ ଅର୍ତ୍ତବଲ୍ଲଭ ମହାନ୍ତି, ଏମ୍. ଏ.

| (ସାଲ) | (ସ୍ଥାନ) | (ସଭାପତି) |
|---|---|---|
| ୧୯୧୪ | ମାନ୍ଦ୍ରାଜ୍ | ଭୁପେନ୍ଦ୍ର ନାଥ ବସୁ |
| ୧୯୧୫ | ବମ୍ବେ | ସାର୍, ଏସ୍. ପି. ସିହ |
| ୧୯୧୬ | ଲକ୍ଷ୍ନୌ | ଅମ୍ବିକା ଚରଣ ମଜୁମଦାର |
| ୧୯୧୭ | କଲିକତା | ଡାକ୍ତର ଆନି ବେଶାନ୍ତ |
| ୧୯୧୮ | ବମ୍ବେ (ସ୍ପେଶାଲ୍) | ସଇଦ୍ ହସନ୍ ଇମାମ୍ |
| ୧୯୧୮ | ଦିଲ୍ଲୀ | ପଣ୍ଡିତ ମଦନ ମୋହନ ମାଲବ୍ୟ |
| ୧୯୧୯ | ଅମୃତସହର | ପଣ୍ଡିତ ମୋତିଲାଲ ନେହେରୁ |
| ୧୯୨୦ | କଲିକତା (ସ୍ପେଶାଲ) | ଲାଲା ଲାଜପତ୍ ରାୟ |
| ୧୯୨୦ | ନାଗପୁର | ସି. ଭିଜୟରାଘବାଚାରିଆର୍ |
| ୧୯୨୧ | ଅହମେଦାବାଦ | ହାକିମ୍ ଅଜମଲ୍ ଖାନ୍ |
| ୧୯୨୨ | ଗୟା | ସି. ଆର୍. ଦାସ |
| ୧୯୨୩ | ଦିଲ୍ଲୀ (ସ୍ପେଶାଲ୍) | ଅବୁଲ କାଲାମ ଆଜାଦ |
| ୧୯୨୩ | କୋକନଡ଼ା | ମହମ୍ମଦଅଲି |
| ୧୯୨୪ | ବେଲଗାଁଓ | ମହାତ୍ମା ଗାନ୍ଧି |
| ୧୯୨୫ | କାନପୁର | ସରୋଜିନୀ ନାଇଡୁ |
| ୧୯୨୬ | ଗୌହାଟି | ଶ୍ରୀନିବାସ ଆୟାଙ୍ଗାର |
| ୧୯୨୭ | ମାନ୍ଦ୍ରାଜ | ଡାକ୍ତର ଏମ୍. ଏ. ଆନସାରି |
| ୧୯୨୮ | କଲିକତା | ପଣ୍ଡିତ ମୋତିଲାଲ ନେହେରୁ |
| ୧୯୨୯ | ଲାହୋର | ଜହରଲାଲ୍ ନେହେରୁ |
| ୧୯୩୧ | କରାଚି | ବଲ୍ଲଭ ଭାଇ ପଟେଲ୍ |

୧୯୩୨ [illegible handwriting]
୧୯୩୩ [illegible handwriting]
୧୯୩୪ [illegible handwriting]

## ଭାରତରେ ଜୀବନ ବୀମା ସଂଖ୍ୟା

| | ୧୯୩୦ ମସିହା | ୧୯୩୧ ମସିହା |
|---|---|---|
| **(୧) କୋମ୍ପାନୀର ସଂଖ୍ୟା** | | |
| (କ) ଭାରତୀୟ | ୧୩୦ | ୧୩୬ |
| (ଖ) ଅଭାରତୀୟ | ୧୪୭ | ୧୪୬ |
| (ଗ) ମୋଟ | ୨୭୭ | ୨୮୨ |
| (୨) ନୂତନ ବୀମାର କାର୍ଯ୍ୟ | | |
| **( ବୀମା ପତ୍ରର ସଂଖ୍ୟା )** | | |
| (କ) ଭାରତୀୟ | ୧୦୫, ୬୮୭ | ୯୭, ୯୦୧ |
| (ଖ) ଅଭାରତୀୟ | ୩୯, ୫୨୩ | ୨୮, ୨୨୯ |
| (ଗ) ମୋଟ | ୧, ୮୫, ୨୦୯ | ୧, ୨୫, ୧୩୮ |
| **( ବୀମାର ପରିମାଣ )** | | |
| (କ) ଭାରତୀୟ | ୧୫୪ କୋଟି ଟଙ୍କା | ୧୭ କୋଟି ଟଙ୍କା |
| (ଖ) ଅଭାରତୀୟ | ୧୧୪ କୋଟି | ,, ୯½ ,, ,, |
| (ଗ) ମୋଟ | ୨୭୪ କୋଟି | ୨୬½ ,, ,, |
| **(୩) ବର୍ଷ ଶେଷରେ ମୋଟ ରହୁଥିବା ବୀମା** | | |
| (୧) ବୀମାପତ୍ରର ସଂଖ୍ୟା | | |
| (କ) ଭାରତୀୟ | ୫୧୩ ୯୫୫ | ୫, ୦୨, ୧୪୪ |
| (ଖ) ଅଭାରତୀୟ | ୨, ୦୨, ୬୦୩ | ୨, ୧୧, ୬୭୯ |
| (ଗ) ମୋଟ | ୭, ୧୬, ୭୫୮ | ୭, ୧୩, ୯୧୩ |
| (୨) ବୀମାର ପରିମାଣ | | |
| (କ) ଭାରତୀୟ | ୮୪୪ କୋଟୀ ଟଙ୍କା | ୮୪ କୋଟୀ ଟଙ୍କା |
| (ଖ) ଅଭାରତୀୟ | ୭୯୪ ,, | ୯୪ କୋଟୀ ଟଙ୍କା |
| (ଗ) ମୋଟ | ୧୫୪୫ ,, | ୧୭୮ କୋଟୀ ଟଙ୍କା |



## ଭାରତର ଫସଲ

**ଧାନ**— ଏହା ପ୍ରଚୁର ପାଣି ଓ ଉତ୍ତାପ ଦରକାର । ଏହା ବଙ୍ଗ, ବିହାର, ଓଡ଼ିଶା, ଗୋଦାବରୀ କୃଷ୍ଣା ଓ କାବେରୀ ନଦୀର ତ୍ରିକୋଣ ଭୂମିରେ ଏବଂ ପଶ୍ଚିମ ଉପକୂଳରେ ହୁଏ । ସବୁଠାରୁ ବ୍ରହ୍ମଦେଶରେ ପ୍ରଚୁର ଧାନ ହୁଏ ।

**ଗହମ**— ଏହା ପଙ୍କୁଆ ମାଟି ଓ ଶୁଷ୍କବାୟୁ ଦରକାର କରେ । ଅଧିକ ଉତ୍ତାପ ଓ ଜଳ ଏହାର ଶତ୍ରୁ । ପଞ୍ଜାବ,


୧୯୪୧.—୪୪ [illegible handwriting]

ଯୁକ୍ତପ୍ରଦେଶ, ସିନ୍ଧୁ ପ୍ରଦେଶରେ ଏହା ଭଲ ହୁଏ । ରବି ଫସଲ ପ୍ରାୟ ସବୁଠାରେ ହୁଏ ।

**ବାଜରା ଓ ମାଣ୍ଡିଆ**— ଏହି ଫସଲ ବୃଷ୍ଟି ଦରକାର କରେ ନାହିଁ । ସିନ୍ଧୁପ୍ରଦେଶ, ରାଜପୁତାନା, ପଞ୍ଜାବ, ଓ ମାନ୍ଦ୍ରାଜରେ ହୁଏ ।

**ଯବ**— ଏହାକୁ ବାର୍ଲି କହନ୍ତି । ଏହା ଯୁକ୍ତପ୍ରଦେଶରେ ଓ ପଞ୍ଜାବରେ ହୁଏ । ଏଥିରୁ ମଦ ତିଆର ହୁଏ ।

**ଅଖୁ**— ଗରମ, ଓଦା ଓ ଉର୍ବର ମାଟିରେ ଭଲ ହୁଏ । ଯୁକ୍ତପ୍ରଦେଶ, ବିହାର, ବଙ୍ଗ ଓ ମାନ୍ଦ୍ରାଜ ପ୍ରଦେଶର ନଦୀ ଉପତ୍ୟକାରେ ହୁଏ ।

**ନଡିଆ**—ସମୁଦ୍ର ଉପକୂଳ ବାଲିଆମାଟିରେ ଓ ଲୁଣି ହାଉଆରେ ଭଲ ହୁଏ । ସମସ୍ତ ପୂର୍ବ ଓ ପଶ୍ଚିମ ଉପକୂଳରେ ଏବଂ ଲଙ୍କାରେ ହୁଏ ।

**ଫଳ**— କଦଳୀ, ସପୁରି, ଆମ୍ବ ପ୍ରଭୃତି ଫଳ ସବୁଠାରେ ହୁଏ । ସିନ୍ଧୁ ପ୍ରଦେଶରେ ଖଜୁରି କାଶ୍ମୀରରେ ଅଗଲ ( ଅତ ) ଆସାମରେ ଲେମ୍ବୁ ପ୍ରଚୁର ପରିମାଣରେ ହୁଏ ।

**ମସଲା**— ଗରମ ଓ ଓଦା ଜଳବାୟୁରେ ଭଲ ହୁଏ । ଦାକ୍ଷିଣାତ୍ୟର ପଶ୍ଚିମ ଉପକୂଳରେ ତ୍ରିବାଙ୍କୁଡ଼ରେ ଓ ସିହଳରେ ମରିଚ, ଦାରୁଚିନି, ତେଜପତ୍ର, ଗୁଜୁରାତ, ଅଳାଇଚ ପ୍ରଭୃତି ମସଲା ହୁଏ ।

**ଧଆଁପତ୍ର**— ଏହା ଗରମ ଜଳବାୟୁ ଆବଶ୍ୟକ କରେ । ମଦ୍ରାପଲ୍ଲୀ, ଯୁକ୍ତପ୍ରଦେଶ, ବଙ୍ଗଦେଶ ଓ ଓଡ଼ିଶାରେ ହୁଏ ।

**ଚା**— ସନ୍ତସନ୍ତିଆ ଯାଗାରେ ଓ ଗରମ ଜଳବାୟୁରେ ଭଲ ବଢ଼େ । ଆସାମ, ଦାର୍ଜିଲିଂ, ଡେରାଡୁନ, ପଞ୍ଜାବର କାଙ୍ଗଡ଼ାର ଓ ନୀଲଗିରି ପର୍ବତ ନିକଟରେ ହୁଏ । ଅନ୍ୟଦେଶକୁ ପ୍ରତିବର୍ଷ ୧୬।୧୭ କୋଟି ଟଙ୍କାର ଚା ବିଦେଶକୁ ରପ୍ତାନି ହେଉଛି ।

**କାଫି**—ସନ୍ତସନ୍ତିଆ ଯାଗାରେ ଉଚ୍ଚ ଭୂମିରେ, ଗରମ ଜଳବାୟୁରେ ଭଲ ବଢ଼େ । ତ୍ରିବାଙ୍କୋଡ଼, ନୀଲଗିରି ଓ, କୋଚିନରେ ହୁଏ ।

**ଅଫିମ**— ସନ୍ତସନ୍ତିଆ ଯାଗାରେ ଓ ଗରମ ଜଳବାୟୁରେ ହୁଏ । ପାଟନା, ଗାଜିପୁର, ବନାରସ୍ ମାଲଦହ ମଧ୍ୟଭାରତର ଗଡ଼ଜାତ ମାନଙ୍କରେ ଏହା ଚାଷ କରାଯାଏ । ଏହି ଚାଷର ସମସ୍ତ ଅଧିକାର ସରକାରଙ୍କ ହାତରେ ।

**ସିନ୍‌କୋନା**— ଜରର ଔଷଧ । ନୀଲଗିରିର ଓ ଦାର୍ଜିଲିଂ ପାହାଡ଼ ପାଖରେ ହୁଏ । କାଫି ବଗିଚାମାନଙ୍କ ମଧ୍ୟରେ ମଧ୍ୟ ହୋଇଥାଏ ।

**ଝୋଟ**— ଗରମ, ସନ୍ତସନ୍ତିଆ ଓ ନଦୀକୂଳିଆ ପଟୁମାଟିରେ ଭଲ ହୁଏ । ବଙ୍ଗଦେଶରେ ପ୍ରଚୁର ହୁଏ ।

**କପା**— କଳାମାଟିରେ ଓ ଗରମ ଜଳ ବାୟୁରେ ଭଲ ହୁଏ । ବମ୍ବେ, ବେରାର, ମାନ୍ଦ୍ରାଜ, ଯୁକ୍ତପ୍ରଦେଶ, ମଧ୍ୟପ୍ରଦେଶ, ପଞ୍ଜାବ, ବଙ୍ଗ ଓ ଆସାମରେ ହୁଏ । କପାମଞ୍ଜିର ତେଲରେ ସାବୁନ ତିଆର ହୁଏ । ଇଉରୋପରେ କପାମଞ୍ଜିର ତେଲ ରନ୍ଧନ କାର୍ଯ୍ୟରେ ଲାଗେ । କେତେକ ସ୍ଥାନରେ ପଶୁ କପାମଞ୍ଜି ଖାଆନ୍ତି ।

**ନୀଳ**— ଗରମ ଓ ସନ୍ତସନ୍ତିଆ ପଟୁମାଟିରେ ହୁଏ । ବିହାର ଯୁକ୍ତପ୍ରଦେଶ, ପଞ୍ଜାବ ଓ ମାନ୍ଦ୍ରାଜର କେତେକ ସ୍ଥାନରେ ନୀଳ ଚାଷ କରାଯାଏ ।

**ଚନ୍ଦନକାଠ**—ମହୀଶୂର ରାଜ୍ୟରେ ଚନ୍ଦନକାଠର ଜଙ୍ଗଲ ଅଛି । କଟକ ଜିଲ୍ଲାର ଲଳିତଗିରି ନିକଟରେ ଚନ୍ଦନ ଗଛ ଅଛି ।



## ଭାରତରେ ଖନିଜ ଦ୍ରବ୍ୟ

**ପଥରକୋଇଲା**— ଖଣିରୁ ବାହାରେ । ଏହା ଜାହାଜ ରେଲଗାଡ଼ି କଳର ଇଞ୍ଜିନ୍ ଚଳାଇବାରେ ଲାଗେ ଏବଂ ଜାଳ ହୁଏ । ବଙ୍ଗର ରାଣୀଗଞ୍ଜରେ, ବିହାର

ଓଡ଼ିଶାର ରାଜମହଲ ପର୍ବତ ନିକଟରୁ ସୋମନଦୀ ଓ ଛୋଟନାଗପୁରର ଉଚ୍ଚଭୂମିଯାଏ ଥିବାସ୍ଥାନରେ ଓଡ଼ିଶାର ତାଳଚେରରେ, ପଶ୍ଚିମଘାଟ ପର୍ବତ ନିକଟସ୍ଥ ଗୋଦାବରୀ ଉପତ୍ୟକାରେ, ଜବ୍ବଲପୁର ନିକଟସ୍ଥ ନର୍ମଦା ଉପତ୍ୟକାରେ, ଆସାମର ବ୍ରହ୍ମପୁତ୍ର ଉପତ୍ୟକାରେ, ବ୍ରହ୍ମଦେଶର ପାହାଡ଼ିଆ ଯାଗାରେ ଓ ଦାମୋଦର ନଦୀର ଉପତ୍ୟକାରେ କୋଇଲାର ଖଣିଅଛି ।

**ଲୁହା**— ମାନ୍ଦ୍ରାଜର ସାଲେମରେ, ମଧ୍ୟପ୍ରଦେଶର ସମ୍ବଲପୁର ଜିଲାରେ, ମୟୁରଭଞ୍ଜରେ ଗୋରୁ ମହିଷାଣି ପର୍ବତ ନିକଟରେ ଲୁହାର ଖଣିଅଛି ।

**ସୁନା**— ମହୀଶୂର ଓ ହାଇଦ୍ରାବାଦରେ ସୁନାର ଖଣି ଅଛି । ଗୋଦାବରୀ ଓ ସୁବର୍ଣ୍ଣରେଖା ନଦୀରେ କେତେକ ସୁନା ମିଳିଥାଏ ।

**ଲୁଣ**— ସମୁଦ୍ରକୂଳରେ ଓ ସମ୍ବର ହ୍ରଦରେ ଲୁଣ ମରାଯାଏ । ପଞ୍ଜାବର ସଲ୍ଟ ପର୍ବତ ଓ କୋହାଟ ନିକଟସ୍ଥ ପାହାଡ଼ରୁ ଲୁଣ କଟାଯାଏ ।

**ଅଭ୍ର**—ହଜାରିବାଗ, ଗୟା ଓ ମୁଙ୍ଗେରଜିଲାରେ ମିଳେ ।

**ଟେଯାଇ**—ଉତ୍ତର ବିହାରରେ ମିଳେ ।

**ଟିଣ**—ଟେନାସେରିମରେ ଅଛି ।

**ତମ୍ବା**—ସିଂହଭୂମିରେ ମିଳେ ।

**ମାଙ୍ଗାନିଜ**—ଇସ୍ପାତ ନିର୍ମାଣ କାମରେ ଦରକାର ହୁଏ । ଏହା ବ୍ରହ୍ମଦେଶର ଖଣିରୁ ମିଳେ ।

**ପେଟ୍ରୋଲିୟମ ବା କିରାସିନିତେଲ**— ବ୍ରହ୍ମଦେଶର ୟେନାଙ୍ଗୟୁଙ୍ଗ, ସିଙ୍ଗୁ ଏବଂ ୟେନାଙ୍ଗ-ଯାଟରେ କିରାସିନ୍‌ତେଲର ଖଣିଅଛି । ଆସାମର ମାକୁମ ନିକଟରେ କିରାସିନ କୂଅ ଅଛି । ପଞ୍ଜାବର ଆଟକ ଜିଲାରେ କିରାସିନ୍ ମିଳୁଅଛି ।

**ରୂପା, ସୀସା ଓ ଦସ୍ତା**—ବ୍ରହ୍ମଦେଶର ଉତ୍ତରରେ ଥିବା ସାନରାଜ୍ୟର ବଡ଼ୱିନ ନାମକ ସ୍ଥାନର ଖଣିରୁ ରୂପା, ସୀସା ଓ ଦସ୍ତା ମିଳୁଛି ।

**ପଦ୍ମରାଗମଣି ଓ ନୀଳକାନ୍ତ ମଣି**—ବ୍ରହ୍ମଦେଶରେ ଅଛି ।

**ହୀରା**—ଗୋଦାବରୀ ଉପତ୍ୟକାରେ ମିଳେ ।



## ଭାରତରେ ଯନ୍ତ୍ର ଶିଳ୍ପ

**କଲିକତା**—ହୁଗୁଳି ନଦୀକୂଳରେ, ଏଠାରେ ଝୋଟ କାରଖାନା, କପା କାରଖାନା, ଲୁଗାକଳ, କାଗଜ କଳ, ଚିନି କାରଖାନା, ଲୁହା କାରଖାନା, ଯୋତା ଓ ଚମଡ଼ା କାରଖାନା ମାନ ଅଛି ।

**କାନପୁର**—ଯୁକ୍ତ ପ୍ରଦେଶରେ, ଏଠାରେ ଚମଡ଼ା କପା ଓ ପଶମର କାରଖାନା ମାନ ଅଛି ।

**ଲୁଧିଆନା**—ପଞ୍ଜାବରେ, ଏଠାରେ ପଶମ କାରଖାନା ମାନ ଅଛି ।

**ତ୍ରିଚିନାପଲ୍ଲି ଓ ଡିଣ୍ଡିଗଲ**—ମାନ୍ଦ୍ରାଜ ପ୍ରଦେଶରେ, ଏଠାରେ ଚିନିକାରଖାନା ମାନ ଅଛି ।

**ଅହମ୍ମଦାବାଦ**—ଏହା କାମ୍ବେଉପସାଗର ନିକଟରେ ସାବରମତୀ ନଦୀକୂଳରେ, ଏଠାରେ ଲୁଗାକଳ ଓ ଚମଡ଼ା କାରଖାନା ଅଛି ।

**ଆରେଙ୍ଗାବାଦ**—ହାଇଦ୍ରାବାଦରେ, ଏଠାରେ ଲୁଗାକଳ ଅଛି ଓ ସୁନା ରୁପାର ତାରକସୀ କାମ ହୁଏ ।

**ବମ୍ବେ**—ଏଠାରେ ଲୁଗା ଓ ସୂତା କଳ ଅଛି ।

**ଅହମ୍ମଦାବାଦ**—ଏହା ବମ୍ବେ ପ୍ରଦେଶରେ, ଏଠାରେ ଲୁଗାକଳ ଓ ଚମଡ଼ା କାରଖାନା ଅଛି ।

**ନାଗପୁର**—ହାଇଦ୍ରାବାଦରେ, ଏଠାରେ ଲୁଗାକଳ ଅଛି ।

**ମାନ୍ଦ୍ରାଜ**—ଏଠାରେ ଲୁଗାକଳ ଅଛି ।

**ରେଙ୍ଗୁନ୍**—ଗୁଣ୍ଡଳ କଳ ଓ କରତ କଳ ଅଛି ।



## ଭାରତରେ ହସ୍ତ ଶିଳ୍ପ

**ଶ୍ରୀନଗର**—କାଶ୍ମୀରରେ, ଏଠାରେ ଭଲ ଭଲ ଶାଲ ଓ ଗାଲିଚା ତିଆର ହୁଏ ।

**ଅମୃତସର**—ପଞ୍ଜାବରେ, ଏଠାରେ କାଶ୍ମୀର ଶାଲ ତିଆର ହୁଏ ।

**ବନାରସ**—ଏଠାରେ ଭଲ ପାଟଶାଢ଼ୀ ତିଆର ହୁଏ ।

**ଢାକା**—ଏଠାରେ କପାସୂତାରେ ଭଲ ସରୁ ଲୁଗା ହୁଏ ।

**କଟକ**—ଏଠାରେ ଭଲ ସୁନାର ଅଳଙ୍କାର ତିଆରହୁଏ ।

**କଟକ**—ଏଠାରେ ଭଲ ତାରକସୀ କାମ ହୁଏ ।

## ଭାରତରେ ସିନ୍‌କୋନା (CINCHONA)

ଜାଭାରେ ୪୦ ହଜାରରୁ ଅଧିକ ଏକର ଜମିରେ ସିନ୍‌କୋନା ଫସଲ ହୁଏ । ସମସ୍ତ ପୃଥିବୀରେ ଯେତେ କ୍ୱଇନାଇନ୍ ଆବଶ୍ୟକ ସେଥିରୁ ଶତକଡ଼ା ୯୦ ରୁ ଅଧିକ ଏଠାରୁ ଯାଏ । ୧୮୬୦ ମସିହାରେ ଭାରତ ଗଭର୍ଣ୍ଣମେଣ୍ଟ ଭାରତରେ ସିନ୍‌କୋନା ଫସଲର ପ୍ରଚଳନ କରିଥିଲେ ।

ଦକ୍ଷିଣ ଭାରତରେ ୧୦ ହଜାଧ ଏକର, ବଙ୍ଗରେ ୪ ହଜାର ଏକର, ଆସାମରେ ୩୦ ହଜାର ଏକର ଏବଂ ବର୍ମାରେ ୧୦ ହଜାର ଏକରରେ ଏହି ଫସଲ ହୁଏ । ଏତଦ୍‌ବ୍ୟତୀତ ଦାର୍ଜିଲିଂ ଜିଲ୍ଲା ଜମି ସେଥିପାଇଁ ଉପଯୁକ୍ତ । ସେଠାରେ ୩ ହଜାର ଏକର ଜମି ଏଥିପାଇଁ ନିର୍ଦ୍ଦିଷ୍ଟ ।

ମାନ୍ଦ୍ରାଜସ୍ଥ କୁଇନାଇନ୍ ଫ୍ୟାକ୍ଟରୀରେ ୧୯୨୯—୩୦ ରେ ୫୩୭,୨୦୦ ପାଉଣ୍ଡ ସିନ୍‌କୋନା ଛେଲିରୁ ୨୨,୪୫୪ ପାଉଣ୍ଡ କୁଇନାଇନ ସଲ୍‌ଫେଟ୍ ଏବଂ ଅନ୍ୟ ଲବଣ ଏବଂ ୧୫,୧୬୧ ପାଉଣ୍ଡ ସିନ୍‌କୋନା ଗୁଳ ପ୍ରଭୃତି ଆମଦାନୀ ହୋଇଥିଲା ।

## ନୀଳଗଛ

| | ୧୯୨୯-୩୦ | ୧୯୩୦-୩୧ | ୧୯୩୧-୩୨ | ୧୯୨୯-୩୦ | ୧୯୩୦-୩୧ | ୧୯୩୧-୩୨ |
|---|---|---|---|---|---|---|
| | ଏକର ହିସାବରେ ଜମି | | | ପରିମାଣ | | |
| ମାନ୍ଦ୍ରାଜ | ୫୩,୧୦୦, | ୪୩,୮୦୦ | ୩୫,୬୦୦ | ୧୨,୦୦୦, | ୧୦,୦୦୦, | ୮୯୦୦ |
| ପଞ୍ଜାବ | ୧୫,୧୦୦, | ୮,୯୦୦, | ୮,୮୦୦ | ୨୮୦୦ | ୧୬୦୦ | ୧୨୦୦ |
| ବିହାର ଓ ଓଡ଼ିଶା | ୧୧,୩୦୦, | ୪,୮୦୦, | ୪,୦୦୦ | ୧୫୦୦ | ୮୦୦ | ୬୦୦ |
| ଯୁକ୍ତପ୍ରଦେଶ | ୮,୮୦୦, | ୩,୦୦୦, | ୨,୨୦୦ | ୧୦୦୦ | ୪୦୦ | ୩୦୦ |
| ( ବୋମ୍ବାଇ, ସିନ୍ଧୁ ଓ ଭାରତୀୟ ରାଜ୍ୟମାନଙ୍କ ସହିତ) | ୨,୦୦୦, | ୧୦୦, | ୧୦୦ | ୩୦୦ | ୧୯ | ୨୭ |
| ମୋଟ | ୯୦,୩୦୦, | ୬୦,୬୦୦, | ୫୦,୮୦୦ | ୧୭୬୦୦, | ୧୩,୨୦୦, | ୧୧,୦୨୭, |

| | ୧୯୨୭ | ୧୯୨୮ | ୧୯୨୯ | ୧୯୩୦ |
|---|---|---|---|---|
| ଜମିର ପରିମାଣ ( ଏକରରେ ) | ୭୫୨,୯୩୦ | ୭୭୩,୦୦୦ | ୭୮୮,୮୪୨ | ୮୦୫,୮୦୦ |
| କଳା ( ପାଉଣ୍ଡ ) | ୩୮୭,୮୯୨ | ୪୦୦,୨୪୭ | ୪୨୮,୯୧୩ | ୩୮୫,୮୫୨ |
| ନୀଳ ( ,, ) | ୪,୦୨୮ | ୩,୯୦୭ | ୪,୦୮୫ | ୫,୨୨୯ |

**ଭବିତବ୍ୟ ଯାହା ଅବଶ୍ୟ ଘଟିବ କିଏ ତା କରିବ ଆନ ।**

ନିଯୁକ୍ତ ଲୋକ—

| | | | | |
|---|---|---|---|---|
| ସ୍ଥାୟୀ— | ୭୯୯,୫୫୧ | ୮୧୩,୪୩୮ | ୮୫୭,୪୫୧ | ୮୫୨,୦୦୪ |
| ଅସ୍ଥାୟୀ— | ୭୭,୪୪୫ | ୨୮,୩୪୯ | ୭୩,୦୨୧ | ୬୦,୦୯୧ |

| | ୧୯୨୬—୨୭ | ୧୯୨୭—୨୮ | ୧୯୨୮—୨୯ | ୧୯୨୯—୩୦ | ୧୯୩୦—୩୧ |
|---|---|---|---|---|---|
| ପ୍ରଦତ୍ତ ମୂଳଧନ ( ଲକ୍ଷଟଙ୍କା ହିସାବରେ ) | | | | | |
| ଭାରତୀୟ | | ୧୧,୨୫ | ୧୧,୯୦ | ୧୨,୪୩ | ୧୩,୨୧ |
| ବିଦେଶୀୟ | | ୩୪,୮୩ | ୩୫,୪୦ | ୩୯,୯୭ | ୪୦,୨୨ |
| ଭାରତରେ ଖର୍ଚ୍ଚ (ମିଲିଅନ୍ ପାଉଣ୍ଡ) ହିସାବରେ | | ୪୯ | ୪୩ | ୫୭ | ୭୫ |
| କଲିକତା | ୨୨୯ | ୨୩୮ | ୨୩୦ | ୨୪୬ | ୨୨୮ |
| ଚଟ୍ଟଗ୍ରାମ | ୭୭ | ୭୭ | ୮୦ | ୭୯ | ୭୯ |
| ଦକ୍ଷିଣ ଭାରତ | ୪୪ | ୪୭ | ୫୦ | ୫୦ | ୪୯ |
| ହାରାହାରି ଦର ( ଟଙ୍କାରେ ) | ଟ ୦ ୱ ୧୩ | ଟ ଟ ୱ୵/୧୦ | ଟ ୦ ୱ୵/୪ | ଟ ୦ ୵/୧୧ | ଟ ୦ ୵/୪ |

## ଭାରତରୁ ରପ୍ତାନି ଝୋଟର ପରିମାଣ

| | ୧୯୨୫—୨୬ | ୧୯୨୬—୨୭ | ୧୯୨୭—୨୮ | ୧୯୨୮—୨୯ | ୧୯୨୯—୩୦ | ୧୯୩୦—୩୧ |
|---|---|---|---|---|---|---|
| ପରିମାଣ (ଲକ୍ଷ ବେଲରେ ) | ୩୭ | ୪୫ | ୪୯ | ୫୦ | ୪୫ | ୩୪ |
| ମୂଲ୍ୟ ( ଲକ୍ଷ ଟଙ୍କାରେ ) | ୩୭,୯୫ | ୨୭,୭୮ | ୩୦୭୭ | ୩୭,୩୫ | ୨୭,୧୭ | ୧୨,୮୮ |

## ରପ୍ତାନି ଧାନ

| ଯୁଦ୍ଧ ପୂର୍ବରୁ ହାରାହାରି | | ୧୯୨୬ ୨୭ | ୧୯୨୭ ୨୮ | ୧୯୨୮ ୨୯ | ୧୯୨୯ ୩୦ | ୧୯୩୦ ୩୧ |
|---|---|---|---|---|---|---|
| | ( ୧୦୦୦ ଟନରେ ) | | | | | |
| ଧାନ— | ୨,୩୯୮ | ୧,୩୦୫ | ୨,୧୫୨ | ୧,୭୭୫ | ୨,୨୯୮ | ୨,୨୫୪ |
| ଚାଉଳ— | ୪୨ | ୨୩ | ୩୪ | ୫୧ | ୨୮ | ୨୫ |

୧୯୩୦—୩୧ ରେ କେବଳ ବର୍ମା ୧,୯୯୭,୦୦୦ ଟନ ଚାଉଳ ପଠାଇଥିଲା, ଏବଂ ତାହାର ଅଂଶ ଭାରତରୁ ରପ୍ତାନି ଚାଉଳର ୧୦୦ ଭାଗରୁ ୮୮ ଭାଗ, ଲଙ୍କା, ଷ୍ଟ୍ରେଟ୍ ସେଟଲମେଣ୍ଟସ୍, ଚୀନ, ଜାଭା ଓ ଜାପାନ ଆଦି ଭାରତରୁ ଚାଉଳ ନିଅନ୍ତି । କୋରିଆ ଜାପାନ ଓ ଅସିଆ ନିଜ ନିଜର ଧାନ ଅବାଦ କରିବାରୁ ସେଠାରେ ମାନ୍ଦା ପଡ଼ୁଛି ।

## ଗହମ

| ଯୁଦ୍ଧ ପୂର୍ବରୁ | | ୧୯୨୬ —୨୭ | ୧୯୨୭ —୨୮ | ୧୯୨୮ —୨୯ | ୧୯୨୯ —୩୦ | ୧୯୩୦ —୩୧ |
|---|---|---|---|---|---|---|
| | ( ଏକ ହଜାର ଟନରେ ) | | | | | |
| ରପ୍ତାନି | ୧,୩୦୮ | ୧୭୭ | ୩୦୦ | ୧୧୫ | ୧୩ | ୧୯୭ |
| ଆମଦାନି | — | ୪୦ | ୭୯ | ୫୭୨ | ୩୫୭ | ୨୩୨ |

କିଏ ଅବା ଏକ ଜ୍ୟୋତିଷଙ୍କ ଗଣ୍ଡ ଦେଖିବାକୁ ବଳବାନ ॥

## ରପ୍ତାନି ଗଲେ

| ୧୯୨୬—୨୭ | ୧୯୨୭—୨୮ | ୧୯୨୮—୨୯ | ୧୯୨୯—୩୦ | ୧୯୩୦—୩୧ |
|---|---|---|---|---|
| ୧୧୮,୦୦୦ ଟନ୍ | ୧୩୩,୦୦୦ ଟନ୍ | ୧୧୪,୦୦୦ ଟନ୍ | ୯୭,୦୦୦ ଟନ୍ | ୮୨,୦୦୦ ଟନ୍ |

## ଜୁଟ

୧୯୨୯—୩୦ ରେ ୧୧ ମିଲିୟନ ଏକର ଜମିରେ ଜୁଟ ହୋଇଥିଲା ।

| | ୧୯୨୬—୨୭ | ୧୯୨୭—୨୮ | ୧୯୨୮—୨୯ | ୧୯୨୯—୩୦ |
|---|---|---|---|---|
| ଜୁଟର ପରିମାଣ | ୧୩,୯୯୨ ଟନ୍ | ୧୭,୫୬୭ ଟନ୍ | ୧୩,୯୬୯ ଟନ୍ | ୧୧,୫୧୭ ଟନ୍ |
| ମୂଲ୍ୟ | ୨୪ ଲକ୍ଷ ଟଙ୍କା | ୨୮ ଲକ୍ଷ ଟଙ୍କା | ୨୪ ଲକ୍ଷ ଟଙ୍କା | ୨୧ ଲକ୍ଷ ଟଙ୍କା |

## ଖନିଜ ଦ୍ରବ୍ୟ

| | | |
|---|---|---|
| ୧୯୨୬ ରେ ଭାରତରୁ ଉତ୍ପନ୍ନ ଖନିଜ ଦ୍ରବ୍ୟର ମୂଲ୍ୟ | | ୨୫,୮୧୯,୩୬୩ ପାଉଣ୍ଡ |
| ୧୯୨୭ | ,, ,, | ୬୨,୯୨୬,୮୮୨ ପାଉଣ୍ଡ |
| ୧୯୨୮ | ,, ,, | ୨୨,୦୩୬,୭୭୬ ପାଉଣ୍ଡ |
| ୧୯୨୯ | ,, ,, | ୨୨,୪୨୧,୫୨୮ ପାଉଣ୍ଡ |
| ୧୯୩୦ | ,, ,, | ୧୯,୭୫୦,୨୩୩ ପାଉଣ୍ଡ |

# ଭାରତରେ କୃଷକଙ୍କର ବର୍ତ୍ତମାନ ଅବସ୍ଥା

କୃଷୀମାନଙ୍କର ଆର୍ଥିକ ଅବସ୍ଥା ଦିନକୁଦିନ ଖରାପ ହେଉଛି । ସେମାନେ କ୍ରମେ ଅଧିକ ଋଣୀ ହେଉଛନ୍ତି । ଆଜି କାଲି ସେମାନେ ଯାହା ଆମଦାନୀ କରୁଛନ୍ତି ବର୍ତ୍ତମାନ ଫସଲର ମୂଲ୍ୟ କମିବାରୁ ଖଜଣା, ଋଣ ପରିଶୋଧ ଓ ନିଜର ଆବଶ୍ୟକୀୟ ଖର୍ଚ୍ଚକୁ ନିଅଣ୍ଟ ହେଉଅଛି । ଆଜିକାଲି ଏକ ଏକର ଜମିରେ ଆୟ ବ୍ୟୟର ମୋଟା ମୋଟି ହିସାବ ଦେଖିଲେ ଜଣାଯାଏ, ଏଣିକି କୃଷକ ପକ୍ଷରେ ନିଜ ଗୃହ ରକ୍ଷା କରିବା ଅସମ୍ଭବ ।

| ଏକ ଏକରରେ ଆୟ— | | ବ୍ୟୟ | |
|---|---|---|---|
| ଧାନ ମ ୧୪ କୁ | ଟ ୧୩ ୯ | ଜମି ଚାଷ କରିବା ମଜୁରି | ଟ ୪୯ |
| ନଡ଼ା | ଟ ୨୫ | ବିହନ | ଟ ୧୯ |
| | | ବେଉଷଣ ଅଦ | ଟ ୩୫ |
| | | ସାର | ଟ ୧୫ |
| | | ଧାନକଟା ମଜୁରି | ଟ ୨୯ |
| | | ଅମଳ ମଜୁରି | ଟ ୧୯ |
| | | ଖଜଣା | ଟ ୪୯ |
| | | ପାଣିଯୋଗାଇବା | ଟ ୩୯ |
| ଆ୦ | ଟ ୧୫୫ | | ଟ ୨୦୯ |

ଏଣୁ ଜୀବନ ରକ୍ଷାପାଇଁ କୃଷକମାନେ ବାଧହୋଇ ଋଣଗ୍ରସ୍ତ ହେଉଛନ୍ତି ।

ଭାରତରେ କୃଷକ ସମ୍ପ୍ରଦାୟ ସର୍ବମୋଟ ୯ଶହ କୋଟି ଟଙ୍କା ଋଣରେ ବୁଡ଼ିଛନ୍ତି ।

| | | |
|---|---|---|
| ବଙ୍ଗଳା କୃଷୀଙ୍କର ଋଣ | | ଶହେ କୋଟି ଟଙ୍କା |
| ପଞ୍ଜାବ | ,, | ୧୩୫ କୋଟି ,, |
| ଯୁକ୍ତ ପ୍ରଦେଶ | ,, | ୧୨୪ କୋଟି ,, |
| ବୋମ୍ବେ ପ୍ରଦେଶ | ,, | ୮୧ କୋଟି ,, |
| ବିହାର ଓଡ଼ିଶା | ,, | ୧୫୫ କୋଟି ,, |

ବିହାର ଓଡ଼ିଶାର ଲୋକସଂଖ୍ୟା ବଙ୍ଗଳା ପ୍ରଭୃତି ତୁଳନାରେ ବହୁତ କମ୍ ମାତ୍ର ଋଣ ବେଶୀ ।

ଓଡ଼ିଶାର କଟକ, ପୁରୀ, ବାଲେଶ୍ୱର ୩ ଜିଲ୍ଲା ଭିତରୁ ମଫସଲରେ ଶତକରା ୭୧ ଜଣ ଋଣଗ୍ରସ୍ତ । ଏହି ତିନି ଜିଲ୍ଲାରେ ୮ ଲକ୍ଷ ୨୨ ହଜାର କୃଷକ ପରିବାର ଅଛନ୍ତି ଏବଂ ଏମାନେ ୭ କୋଟିରୁ ୮ କୋଟି ଟଙ୍କା ଭିତରେ ବୁଡ଼ିଛନ୍ତି । ଏଥିମଧ୍ୟରୁ ସାଧାରଣ କୃଷକ ୬ କୋଟି ୫୦ ଲକ୍ଷ ଟଙ୍କା ଋଣ କରିଛନ୍ତି ।



ଶକ୍ତି ନାହିଁ ବସ୍ତ୍ର କାହାର ଜଗତେ ।

## ଖାଦନ୍ତ

| | |
|---|---|
| ୧୯୨୬।୨୭ | ଟ ୩୨୮୮୭୯୪ ( |
| ୧୯୨୭।୨୮ | ଟ ୩୩୦୮୬୩୪ ( |
| ୧୯୨୮।୨୯ | ଟ ୬୯୮୩୦୭୭ ( |
| ୧୯୨୯।୩୦ | ଟ ୬୬୧୯୮୬୯ ( |
| ୧୯୩୦।୩୧ | ଟ ୯୯୦୦୪୮୩ ( |

| | କପ୍ତାନି | ବୃଣାନି |
|---|---|---|
| ୧୯୨୮।୨୯ | ଟ ୫୨୧୨୧ ( | ଟ ୭୩୯୧୧୭ ( |
| ୧୯୨୯।୩୦ | ଟ ୧୧୦୨୨୪୫ ( | ଟ ୧୨୨୦୪୭୫ ( |
| ୧୯୩୦।୩୧ | ଟ ୭୭୫୮୭୧ ( | ଟ ୧୧୪୯୭୭୯ ( |

## ଭାରତର ଉର୍ବରତା

| | ୧୭ ଶ ଶତାବ୍ଦିରେ ଅକବରଙ୍କ ରାଜତ୍ୱ ସମୟରେ ପ୍ରତି ଏକରରେ | ଅଜକାଲ୍ ପ୍ରତି ଏକରରେ |
|---|---|---|
| ଚାଉଳ | ସେ ୭୭୯ | ସେ ୪୦୦ |
| ଗହମ | ସେ ୫୬୭୨ | ସେ ୩୦୦ |
| କାର୍ପାସ | ସେ ୧୧୧୨ | ସେ ୨୭ |

| | ପାଶ୍ଚାତ୍ୟ ଦେଶରେ ଅଜକାଲ୍ ପ୍ରତି ଏକରରେ |
|---|---|
| ଚାଉଳ ( ଇଟାଲି ) | ସେ ୧୨୫୦ |
| ଗହମ ( ,, ) | ସେ ୭୫୦ |
| କାର୍ପାସ ( ମିଶର ) | ସେ ୨୫୦ |
| କାର୍ପାସ (ଆମେରିକା) | ସେ ୧୫୦ |

## ଭାରତର ଶାସନ ତନ୍ତ୍ର

( ୧ ) ବଙ୍ଗ ଦେଶ ଜଣେ ଗଭର୍ଣ୍ଣରଙ୍କ ଦ୍ୱାରା ଶାସିତ ହୁଏ ୫ ଜଣ କମିଶନରଙ୍କ ଅଧୀନରେ ପାଞ୍ଚୋଟି ପ୍ରଦେଶ ଓ ୨୮ ଟି ଜିଲ୍ଲା ।

୧—ବର୍ଦ୍ଧମାନ    ୩—ଢାକା
୨—ପ୍ରେସିଡେନ୍ସି    ୪—ଚଟ୍ଟାଗଙ୍ଗ
୫—ରାଜସାହି

ଲୋକସଂଖ୍ୟା—୫୦, ୧୨୨, ୫୫୦
ମୁସଲମାନ— ୨୭, ୫୩୦, ୩୨୧
ହିନ୍ଦୁ ୨୧, ୫୩୭, ୯୨୧
ବୌଦ୍ଧ ୩୧, ୫, ୮୦୧
ଖ୍ରୀଷ୍ଟିୟାନ ୧୮୦ ୫୭୦

( ୨ ) ବୋମ୍ବାଇ ପ୍ରଦେଶ ଜଣେ ଗଭର୍ଣ୍ଣରଙ୍କ ଦ୍ୱାରା ଶାସିତ ହୁଏ । ୪ ଟି କମିଶନର ଅଧୀନରେ ୪ ଟି ପ୍ରଦେଶ ଓ ଜ ୨୭ ଣ କଲେକ୍ଟରଙ୍କ ଅଧୀନରେ ୨୭ ଟି ଜିଲ୍ଲା ।

୧—ଉତ୍ତର ବିଭାଗ    ୩—ମଧ୍ୟ ବିଭାଗ
୨—ଦକ୍ଷିଣ ବିଭାଗ    ୪—ସିନ୍ଧୁ

ଜନସଂଖ୍ୟା— ୨୧୮୫୪, ୮୪୧
ହିନ୍ଦୁ ୧୭, ୬୧୯, ୮୭୭
ମୁସଲମାନ ୪, ୪୫୭, ୧୩୩
ଖ୍ରୀଷ୍ଟିୟାନ ୩୧୭, ୦୪୨
ଜୈନ ୧୯୯, ୯୬୯
ଶିଖ ୨୦, ୭୨୧
ଜିଉ ୧୭, ୪୪୩
ବୌଦ୍ଧ ୧, ୮୯୦
ଜୋରାଷ୍ଟ୍ରିନ୍ ୮୦, ୫୫୩

( ୩ ) ମାନ୍ଦ୍ରାଜ ପ୍ରେସିଡେନ୍ସି ଜଣେ ଗଭର୍ଣ୍ଣରଙ୍କ ଦ୍ୱାରା ଶାସିତ ହୁଏ ।

୨୬ ଟି ଜିଲ୍ଲା ଓ ୫ ଟି ଦେଶୀୟ ରାଜ୍ୟ (principalities)
( ଜନସଂଖ୍ୟା )—୪୭,୫୭୫,୭୭୦
ହିନ୍ଦୁ— ୪୦,୩୯୨,୯୦୦
ମୁସଲ୍ମାନ— ୩,୩୧୭,୦୮୩
ଖ୍ରୀଷ୍ଟିଆନ— ୧,୭୭୦,୩୨୮

( ୪ ) ବିହାର-ଓଡ଼ିଶା ଜଣେ ଗଭର୍ଣ୍ଣରଙ୍କର ଶାସନାଧୀନ ୫ ଟି କମିଶନରଙ୍କ ଅଧୀନରେ ୫ଟି ପ୍ରଦେଶ ଓ ୨୧ଟି ଜିଲ୍ଲା ।

୧—ପାଟନା    ୩—ଭାଗଲପୁର
୨—ତିରହୁତ    ୪—ଓଡ଼ିଶା
୫—ଛୋଟନାଗପୁର

( ଜନସଂଖ୍ୟା )—୩୭,୬୭୭,୫୭୬
ହିନ୍ଦୁ— ୩୧,୦୧୦,୬୦୦
ମୁସଲମାନ— ୪,୨୬୪,୭୭୬
ଖ୍ରୀଷ୍ଟିଆନ— ୩୪୧,୭୧୦

ଲକ୍ଷ୍ମୀଟିକି ନେବ ଲକ୍ଷ ଉଲ୍ଲାସରେ ॥

( ୫ ) ଆଗ୍ରା ଓ ଅଯୋଧ୍ୟା ଯୁକ୍ତପ୍ରଦେଶ ଜଣେ ଗଭର୍ଣ୍ଣରଙ୍କ ଶାସନାଧୀନ ୧୦ ଟି କମିଶନଙ୍କର ଅଧୀନରେ ୧୦ଟି ପ୍ରଦେଶ, ୪୮ ଟି ଜିଲ୍ଲା ଓ ୩ଟି ଦେଶୀୟ ରାଜ୍ୟ ( Principalities )

୧—ମିରଟ — ୬—ବନାରସ
୨—ଆଗ୍ରା — ୭—ଗୋରଖପୁର
୩—ରୋହିଲଖଣ୍ଡ — ୮—କୁମାନ୍
୪—ଅଲ୍ଲାହାବାଦ — ୯—ଲକ୍ଷ୍ନୌ
୫—ଝାନ୍‌ସି — ୧୦—ଫଏଯାବାଦ

( ଜନସଂଖ୍ୟା )—୪୮,୪୦୮,୭୬୩
ହିନ୍ଦୁ— ୪୦,୮୦୫,୫୨୩
ମୁସଲମାନ— ୭,୧୮୧,୯୨୭
ଖ୍ରୀଷ୍ଟିଆନ— ୨୦୫,୦୦୯
ଜୈନ— ୬୭,୯୫୪
ଶିଖ— ୪୬,୫୦୦

( ୬ ) ପଞ୍ଜାବ ଜଣେ ଗଭର୍ଣ୍ଣରଙ୍କ ଶାସନାଧୀନ ୫ଟି କମିଶନରଙ୍କ ଅଧୀନରେ ୫ଟି ପ୍ରଦେଶ ଓ ୨୯ ଟି ଜିଲ୍ଲା ଏବଂ ଦେଶୀୟ ରାଜ୍ୟ ( Principalities )

୧—ଅମ୍ବାଲ୍ଲା — ୩—ଲାହୋର
୨—ଜଲନ୍ଧର — ୪—ରାଓଲପିଣ୍ଡି
୫—ମୁଲତାନ୍

( ଜନସଂଖ୍ୟା )—୨୩,୫୮୦,୮୫୨
ହିନ୍ଦୁ— ୬,୩୨୮,୫୯୮
ମୁସଲମାନ— ୧୩,୩୩୨,୪୬୦
ଖ୍ରୀଷ୍ଟିଆନ— ୪୧୪,୭୮୮
ଜୈନ— ୩୫,୨୮୪
ଶିଖ— ୩,୦୬୪,୧୪୪

( ୭ ) ମଧ୍ୟପ୍ରଦେଶ ଜଣେ ଗଭର୍ଣ୍ଣରଙ୍କ ଅଧୀନରେ ୪ଟି କମିଶନରଙ୍କ ଅଧୀନରେ ୪ଟି ପ୍ରଦେଶ ଓ ୧୯ଟି ଜିଲ୍ଲା

୧—ନାଗପୁର — ୩—ଛତିଶଗଡ଼
୨—ଜବଲପୁର — ୪—ବେରାର

( ଜନସଂଖ୍ୟା )—୧୫,୫୦୭,୭୨୩
ହିନ୍ଦୁ— ୧୩,୪୦୦,୧୦୫
ମୁସଲମାନ— ୬୮୨,୮୫୪
ଖ୍ରୀଷ୍ଟିଆନ— ୫୦,୫୮୪

( ୮ ) ଆସାମ ଜଣେ ଗଭର୍ଣ୍ଣରଙ୍କ ଶାସନାଧୀନ ୨ଟି କମିଶନରଙ୍କ ଅଧୀନରେ ୨ଟି ପ୍ରଦେଶ ଓ ୧୪ଟି ଜିଲ୍ଲା

୧—ସୁରମା ଉପତ୍ୟକା — ୨—ଆସାମ

( ଜନସଂଖ୍ୟା )—୮,୬୨୨,୨୫୧
ହିନ୍ଦୁ— ୪,୯୩୧,୭୬୦
ମୁସଲମାନ— ୨,୭୫୫,୯୧୪
ଖ୍ରୀଷ୍ଟିଆନ— ୧୦୨,୫୮୬
ବୌଦ୍ଧ— ୧୪୬,୯୫୫
ଜୈନ— ୨,୬୩୬
ଶିଖ— ୨,୪୯୭

( ୯ ) ବର୍ମା ଜଣେ ଗଭର୍ଣ୍ଣରଙ୍କ ଶାସନାଧୀନ ନିମ୍ନବର୍ମା—୪ ଟି କମିଶନରଙ୍କ ଅଧୀନରେ ୪ ଟି ପ୍ରଦେଶ ଓ ୨୧ ଟି ଜିଲ୍ଲା ।

୧—ଆରାକାନ — ୩—ଇରାବାଡି
୨—ପେଗୁ — ୪—ଟେନାସରମ୍

ଉପରବର୍ମା—୪ ଟି କମିଶନରଙ୍କ ଅଧୀନରେ ୪ଟି ପ୍ରଦେଶ ଓ ୧୯ ଟି ଜିଲ୍ଲା ।

୧—ମାଣ୍ଡାଲେ — ୩—ସାଗେଇଂ
୨— ମାଗୁଇ — ୪—ଫେଡ଼ରେଟେଡ୍ ଶାନ୍‌ଷ୍ଟେଟସ୍

( ଜନସଂଖ୍ୟା )—୧୪,୬୪୫,୯୬୯
ମୁସଲମାନ— ୬୦୬,୪୪୧
ହିନ୍ଦୁ— ୫୭୪,୭୯୭
ଜୈନ— ୭୭,୮୯୫

( ୧୦ ) ଉତ୍ତରପଶ୍ଚିମ ସୀମାନ୍ତ ପ୍ରଦେଶ ଜଣେ ଚିଫ୍‌କମିଶନରଙ୍କର ଅଧୀନ

( ଜନସଂଖ୍ୟା )—୨;୪୨୫,୦୬୬
ମୁସଲମାନ— ୨,୨୨୭,୩୦୩
ହିନ୍ଦୁ— ୧୪୨,୯୭୭
ଶିଖ— ୪୨,୫୧୦
ଖ୍ରୀଷ୍ଟିଆନ— ୧୨,୨୧୩

ବଧୂସୃଷ୍ଟିକମ ପ୍ରଚଣ୍ଡେସ ବାସନା ପୋଷଇ ଦୁଃଖେଦ ଯେ ପ୍ରାଣୀ ।

( ୧୧ ) ରାଜପୁତନା, ୫ଟି ରେସିଡେନ୍ସି ଏବଂ ୨୧ଟି ଷ୍ଟେଟ୍ ଓ ଗୋଟିଏ ବ୍ରିଟିଶ ଜିଲ୍ଲା

୧—ମେବାରରେସିଡେନ୍ସ ୩—ହାରଓ୍ତି ଏଜେନ୍ସି
୨—ଜୟପୁର ,, ୪—ଇଷ୍ଟର୍ଣ୍ଣ ରାଜପୁତାନା
ଅଜମିର ବ୍ରିଟିଶ ଜିଲ୍ଲା ୫—ଉଏଷ୍ଟର୍ଣ୍ଣ ,,

( ଜନସଂଖ୍ୟା )—୧୧,୨୮୬,୦୦୪
ହିନ୍ଦୁ— ୧୦,୦୧୩,୩୧୪
ମୁସଲମାନ— ୧,୧୬୬,୪୫୮
ଜୈନ— ୩୨୦,୨୪୫
ଶିଖ— ୪୧,୪୦୬
ଖ୍ରୀଷ୍ଟିଆନ— ୧୨,୨୨୫

(୧୨) ମଧ୍ୟପ୍ରଦେଶ ( ୭ଟି ଏଜେନ୍ସି ଓ ୧୩୪ ଟି ଷ୍ଟେଟ )

୧—ଗ୍ୱାଲିଅର ରେସିଡେନ୍ସି ୪—ମାଲଓ୍ୱା
୨—ଇନ୍ଦୋର୍ ୫—ଭୋପାଓ୍ୱାର
୩—ଭୋପାଳ ୬—ବୁନ୍ଦେଲଖଣ୍ଡ
୭—ବାଘେଲ ଖଣ୍ଡ

ସେଣ୍ଟ୍ରାଲ ଇଣ୍ଡିଆ ଏଜେନ୍ସିର
( ଜନସଂଖ୍ୟା )—୬,୬୫୫,୧୨୦
ହିନ୍ଦୁ— ୫,୮୨୫,୪୮୬
ମୁସଲମାନ— ୩୭୬,୧୭୩
ଜୈନ— ୪୧,୬୮୦
ଖ୍ରୀଷ୍ଟିଆନ— ୧୦,୪୭୬
ଶିଖ— ୧,୫୬୬

ଗ୍ୱାଲିଅର (ଜନସଂଖ୍ୟା)—୩,୫୨୩,୦୭୦ ମଧ୍ୟରୁ
ହିନ୍ଦୁ— ୩,୨୭୧,୫୬ ମୁସଲମାନ—୨୦୪,୨୧୬
ଜୈନ—୪୫,୦୭୧ ଖ୍ରୀଷ୍ଟିୟାନ— ୧,୧୧୮

(୧୩) ନିଜାମ ରାଜ୍ୟ (ଦାକ୍ଷିଣାତ୍ୟ) ହାଇଦ୍ରାବାଦ
ଜନସଂଖ୍ୟା—୧୪,୪୦୬,୫୪୧ ମଧ୍ୟରୁ

ହିନ୍ଦୁ— ୧୧,୧୭୩,୩୨୬ ମୁସଲମାନ-୧,୫୩୫,୦୨୨
ଖ୍ରୀଷ୍ଟିଅନ— ୧୫୧,୧୪୬ ଜୈନ— ୨୧,୫୪୩
ଶିଖ— ୫,୧୧୬

ସୁବାଦାରଙ୍କ ଅଧୀନରେ ୪ଟି ସୁବା ଓ ୧୫ଟି ଜିଲ୍ଲା

(୧୪) ମହୀଶୂର ଓ କୁର୍ଗ, ମହୀଶୂର ମହାରାଜା ଓ ଜଣେ ରେସିଡେଣ୍ଟଙ୍କ ଅଧୀନ

( ଜନସଂଖ୍ୟା )—୬,୬୨୦,୬୧୧
ହିନ୍ଦୁ— ୬,୧୭୯,୮୮୬
ମୁସଲମାନ— ୪୧୨,୪୦୫
ଖ୍ରୀଷ୍ଟିଅନ— ୧୦,୧୬୮

(୧୫) ମଣିପୁର—ଜଣେ ରାଜା ଓ ଜଣେ ପୋଲିଟିକେଲ ଏଜେଣ୍ଟଙ୍କ ଅଧୀନ ।

(୧୬) ବେଲୁଚିସ୍ଥାନ—ଗଭର୍ଣ୍ଣର ଜେନେରଲଙ୍କ ଅଧୀନସ୍ଥ ଏଜେଣ୍ଟଙ୍କ ଅଧୀନ ।

(୧୭) ବରୋଦା—ମହାରାଜା ଓ ରେସିଡେଣ୍ଟଙ୍କ ଅଧୀନ ।

(୧୮) କାଶ୍ମୀର ଓ ଜମ୍ମୁ— ,, ,,

(୧୯) ନେପାଲ— ,, ,,

(୨୦) ଓ୍ୱାଜିରସ୍ଥାନ ,, ,,



## ବ୍ରିଟିଶ ସରକାରଙ୍କ ଶ୍ୱେତପତ୍ର

ତା ୧୭-୩-୩୩ ରେ ପ୍ରକାଶିତ )

( ବ୍ରିଟିଶ ସରକାର ଭାରତରେ ସ୍ୱାୟତ୍ତ ଶାସନ ନାମରେ କି ପ୍ରକାର ଶାସନ ସଂସ୍କାର ପ୍ରବର୍ତ୍ତିତ କରିବେ ତାହାର ସୂଚନା )

ରାଷ୍ଟ୍ରସଂଘ ଗଠନର ସର୍ତ୍ତ ।

ସମସ୍ତ ବ୍ରିଟିଶ ଶାସିତ ଭାରତ ସିନ୍ଧୁ ଓ ଓଡ଼ିଶା ସହିତ ଏଗାର ଗୋଟି ବଡଲାଟ ପ୍ରଦେଶରେ ବିଭକ୍ତ ହେବ ଏବଂ ଭାରତୀୟ କରଦ ରାଜ୍ୟ ବା ଷ୍ଟେଟ୍‌ଗୁଡ଼ିକ ମଧ୍ୟ ସ୍ୱାତନ୍ତ୍ର୍ୟ ଲାଭ କରିବ । ଉପରୋକ୍ତ ରାଜ୍ୟ ଓ ପ୍ରଦେଶ ମାନଙ୍କ ସମ୍ମିଳନରେ ଭାରତରେ ରାଷ୍ଟ୍ରସଂଘଶାସନ ( Federal government ) ପ୍ରବର୍ତ୍ତିତ ହେବ । ବର୍ତ୍ତମାନ ଭାରତ ସରକାରଙ୍କ ହାତରେ ଯେଉଁ କ୍ଷମତାମାନ ଅଛି ତାହା ଶାସନ ପଦ୍ଧତି ନବୀକରଣ ଉଦ୍ଦେଶ୍ୟରେ ଇଂରାଜ ରାଜାଙ୍କ ହାତକୁ ଯିବ । ସେ ସେହି କ୍ଷମତାମାନ ପୁନରାୟ ଏକ

ନୂତନ ଆଇନ ବଳରେ ତାଙ୍କ ଦ୍ୱାରା ନିଯୁକ୍ତ ବଡ଼ଲାଟ ଓ ଲାଟମାନଙ୍କ ହାତରେ ପ୍ରଦାନ କରିବେ । ପ୍ରତି ପ୍ରଦେଶରେ ଅଭ୍ୟନ୍ତରୀଣ ବିଧି ବ୍ୟବସ୍ଥା ପରିଚାଳନ ପାଇଁ ଗୋଟିଏ ୨ ବ୍ୟବସ୍ଥା ପରିଷଦ ରହିବ ଏବଂ ସେହି ପରିଷଦର ସଭ୍ୟମାନଙ୍କ ମଧ୍ୟରୁ କେତେକଙ୍କୁ ନେଇ ଗୋଟିଏ ମନ୍ତ୍ରୀ-ପରିଷଦ ଗଠିତ ହେବ । ସେମାନେ ଶାସନ କାର୍ଯ୍ୟରେ ଲାଟମାନଙ୍କର ସହାୟ ହେବେ ।

ପ୍ରଥମରେ ବର୍ତ୍ତମାନ ପ୍ରଦେଶମାନଙ୍କର ଭୋଟର ତାଲିକା ଓ ନିର୍ବାଚନ ମଣ୍ଡଳୀ ଗଠନ ପ୍ରଭୃତି କାର୍ଯ୍ୟମାନ ହୋଇ ଆଇନ ପ୍ରଣୀତ ହେବ ଏବଂ ତତ୍ପରେ ପ୍ରତ୍ୟେକ ଦେଶୀୟ ରାଜ୍ୟ ସଙ୍ଗେ ଇଂରେଜ ରାଜଙ୍କର ଗୋଟିଏ ଗୋଟିଏ ସ୍ୱତନ୍ତ୍ର ନୂତନ ସନ୍ଧି ହେବ । ଏତଦ୍‌ବ୍ୟତୀତ ରାଷ୍ଟ୍ରସଂଘ ଆଇନ ପ୍ରଣୀତ ହୋଇ ପାର୍ଲିଆମେଣ୍ଟରେ ସ୍ୱୀକୃତ ହେଲା ପରେ ଅର୍ଥ ବିଭାଗର ସୁପରିଚାଳନା ପାଇଁ ସ୍ୱତନ୍ତ୍ର ବିଧି ବ୍ୟବସ୍ଥା ହେବ ଏବଂ ଏଥିପାଇଁ ଗୋଟିଏ ରିଜର୍ଭ ବ୍ୟାଙ୍କ ମଧ୍ୟ ପ୍ରତିଷ୍ଠିତ ହେବ । ଏ ସମସ୍ତ ପରେ ଯେବେ ସମସ୍ତ ଦେଶୀୟ ରାଜ୍ୟର ଲୋକସଂଖ୍ୟାର ଅର୍ଦ୍ଧେକ ସଂଖ୍ୟକ ଲୋକ ବାସ କରୁଥିବା କେତେକ ରାଜ୍ୟ ରାଷ୍ଟ୍ରସଂଘରେ ଯୋଗ ଦେବା ନିମିତ୍ତ ଚାହାଁରିବେ, ତାହା ହେଲେ ଭାରତରେ ରାଷ୍ଟ୍ରସଂଘ ଗଠିତ ହେବ ।

ବ୍ରିଟିଶ ଅନିର୍ଦ୍ଦିଷ୍ଟ କାଳପାଇଁ ରାଷ୍ଟ୍ରସଂଘ ଗଠନ କାର୍ଯ୍ୟକୁ ପକାଇ ରଖିବେ ନାହିଁ । ଯେବେ ପ୍ରକୃତରେ କୌଣସି ବିଷମ ବାଧା ଆସି ଉପସ୍ଥିତ ହୁଏ ତାର ଫଳରେ ରାଷ୍ଟ୍ରସଂଘ ଗଠନ ଅସମ୍ଭବ ବୋଲି ମନେ ହୁଏ, ତେବେ ଭାରତୀୟମାନଙ୍କ ମତାମତ ନେଇ ସେ ଆଉଥରେ କର୍ମପନ୍ଥାର ବିଚାର କରିବେ ।

**ରାଷ୍ଟ୍ରସଂଘର ଶାସନ ଯନ୍ତ୍ରର ପରିଚାଳନ :—**

ବଡ଼ଲାଟ ଇଂରେଜରାଜାଙ୍କର ପ୍ରତିନିଧିରୂପେ ରାଷ୍ଟ୍ରସଂଘ ସରକାରଙ୍କର ସକଳ ଶାସନକ୍ଷମତା ପାଇବେ । ତାଙ୍କୁ କେବଳ ପରାମର୍ଶ ଦେବାପାଇଁ ରାଷ୍ଟ୍ରସଂଘର କେନ୍ଦ୍ର ଓ ପ୍ରାଦେଶିକ ବ୍ୟବସ୍ଥା ସଭାରୁ ମନ୍ତ୍ରୀମାନେ ନିର୍ବାଚିତ ହେବେ ଏବଂ ଏଥିରେ ଦେଶୀୟ ରାଜ୍ୟ ଓ ବିଭିନ୍ନ ପ୍ରଦେଶ ଉଭୟ ପକ୍ଷର ଲୋକ ରହିବେ । ସୈନ୍ୟବିଭାଗ, ବୈଦେଶିକ ବିଭାଗ ଏବଂ ଧର୍ମସଂକ୍ରାନ୍ତ ବିଭାଗମାନଙ୍କରେ ମନ୍ତ୍ରୀମାନଙ୍କର ପରାମର୍ଶ ଲୋଡ଼ା ହେବନାହିଁ । ସେ ବିଭାଗ ଗୁଡ଼ିକର ଭାର ସ୍ୱୟଂ ବଡ଼ଲାଟଙ୍କ ହାତରେ ରହିବ ଏବଂ ବ୍ରିଟିଶ ପାର୍ଲିଆମେଣ୍ଟର ପରାମର୍ଶ ଓ କର୍ତ୍ତୃତ୍ୱରେ ପରିଚାଳିତ ହେବ । ଏହା ଛଡ଼ା ବଡ଼ଲାଟ ତାଙ୍କ ମନ୍ତ୍ରିମଣ୍ଡଳଙ୍କ ବିନା ପରାମର୍ଶରେ ଅନ୍ୟାନ୍ୟ ଅନେକ ବିଷୟରେ ମନ ଇଚ୍ଛା କାର୍ଯ୍ୟ କରି ପାରିବେ ।

କେଉଁ ୨ କ୍ଷେତ୍ରରେ ବଡ଼ଲାଟଙ୍କ ମନ ଇଚ୍ଛା ସ୍ୱତନ୍ତ୍ରକ୍ଷମତା ଅନୁସାରେ କାର୍ଯ୍ୟକରି ପାରିବେ ?

୧—ଶାନ୍ତି ଶୃଙ୍ଖଳା ଉପରେ ବିପତ୍ତି ପଡ଼ିଲେ ତାର ନିରାକରଣ ପାଇଁ,

୨—ରାଷ୍ଟ୍ରସଂଘର ଆର୍ଥିକ ସ୍ୱଚ୍ଛଳତା ସଂରକ୍ଷଣ ପାଇଁ,

୩—ସଂଖ୍ୟାଲଘିଷ୍ଠ ସମ୍ପ୍ରଦାୟ ଗୁଡ଼ିକର ସ୍ୱାର୍ଥ ରକ୍ଷାପାଇଁ

୪—ସରକାରୀ କର୍ମଚାରୀମାନଙ୍କର ଶାସନ ପଦ୍ଧତି ଅନୁରୂପ ଅଧିକାର ଆଦି ଓ ଅନ୍ୟାନ୍ୟ ନ୍ୟାଯ୍ୟ ଯୁକ୍ତ ସ୍ୱାର୍ଥରକ୍ଷାପାଇଁ

୫—ପ୍ରତ୍ୟେକ ଦେଶୀୟ ରାଜ୍ୟର ସ୍ୱାର୍ଥ ଓ ଅଧିକାର ରକ୍ଷା, ବ୍ୟବସାୟ ବାଣିଜ୍ୟ କ୍ଷେତ୍ରରେ ସମସ୍ତଙ୍କୁ ସମାନ ସୁବିଧା ଦେବାପାଇଁ ସ୍ୱତନ୍ତ୍ର ବ୍ୟବସ୍ଥା । ଏବଂ ଏହା ଛଡ଼ା ସୈନ୍ୟବିଭାଗ, ବୈଦେଶିକ ବିଭାଗ ଓ ଧର୍ମସଂକ୍ରାନ୍ତ ବିଭାଗକୁ ସ୍ପର୍ଶ କରୁଥିବା ଯେ କୌଣସି ବିଷୟରେ ଏ ସମସ୍ତ ବିଷୟରେ ମନ୍ତ୍ରୀମାନେ ତାଙ୍କୁ ବାଧା ଦେଇ ପାରିବେ ନାହିଁ । ମନ୍ତ୍ରୀ ପରିଷଦର କୌଣସି କାର୍ଯ୍ୟ ଫଳରେ ଯଦ୍ୟପି ଏ ସମସ୍ତ ବିଭାଗକୁ ସ୍ପର୍ଶକରେ ବା ବାଧା ଦେବାର ଆଶଙ୍କା ହୁଏ, ତେବେ ବଡ଼ଲାଟ ତାହାକୁ ରଦ କରିଦେଇ ପାରିବେ ।

ଏତଦ୍‌ବ୍ୟତୀତ ନିରଙ୍କୁଶ ଶାସନ ଚଳାଇବାରେ ଯେପରି କୌଣସି ବାଧା ବିପତ୍ତି ନ ଲାଗିବ, ସେଥିପାଇଁ ବଡ଼ଲାଟ ଇଚ୍ଛାକଲେ ବ୍ୟବସ୍ଥା ପରିଷଦକୁ ଭାଙ୍ଗିଦେଇ ପାରିବେ, ଅଧିବେଶନର ସମୟ ଓ କାର୍ଯ୍ୟ ଗଡ଼ାଇ ଦେଇ ପାରିବେ ଓ ଡକାଇ ପାରିବେ । ବ୍ୟବସ୍ଥା ପରିଷଦରେ ଯେଉଁ ସମସ୍ତ ଆଇନ ପ୍ରଣୀତ ହେବ, ସେ ସବୁକୁ ସେ ଇଚ୍ଛାନୁସାରେ ମଞ୍ଜୁର ବା ନାମଞ୍ଜୁର କରିପାରିବେ ଏବଂ ବିଶେଷ କେତେକ ଆଇନ ପ୍ରଣୟନ ପାଇଁ ପୂର୍ବରୁ ତାଙ୍କ ଅନୁମତି ନେବାପାଇଁ ଆଦେଶ ପ୍ରଚାର କରି ପାରିବେ । ସେ ଇଚ୍ଛାକଲେ ରାଷ୍ଟ୍ରସଂଘର ତଳ ଓ ଉପର ଉଭୟ ବ୍ୟବସ୍ଥା ସଭାକୁ ମିଶାଇ ଗୋଟିଏ ସମ୍ମିଳିତ ଅଧିବେଶନ ମଧ୍ୟ

**ଯେ କି ବଢ଼ିବାକୁ ଶିଖିନାହିଁ ସେ ମରଣ ।**

ଅଗ୍ରାହ୍ୟ କରି ପାରିବେ । ଅଧିକ ସଂଖ୍ୟକ ଭୋଟ ବଳରେ ଯଦ୍ୟପି ତାଙ୍କର ଏହି ସ୍ୱତନ୍ତ୍ର ବିଭାଗ ଓ ସ୍ୱତନ୍ତ୍ର କ୍ଷମତା ଉପରେ ବାଧା ଉପସ୍ଥିତ ହୁଏ, ତେବେ ସେ ତାହାକୁ ରହିତ କରିବାପାଇଁ ମନଇଚ୍ଛା ସ୍ୱତନ୍ତ୍ର ଆଇନ ଜାରି କରି ପାରିବେ । ମନ୍ତ୍ରିପରିଷଦ ଯଦି ଏ ଭଳି ଆଇନକୁ ସମର୍ଥନ ନ କରନ୍ତି କିମ୍ବା ପରିବର୍ତ୍ତନ କରିବାକୁ ଚେଷ୍ଟା କରନ୍ତି ତେବେ ମନ୍ତ୍ରୀମାନଙ୍କୁ ଉପେକ୍ଷା ପ୍ରଦର୍ଶନ କରି ସ୍ୱତନ୍ତ୍ର କ୍ଷମତା ବଳରେ ସେ ନିଜ ଆଇନ ଚଳାଇ ପାରିବେ । ଏହି ଧରଣର ଆଇନମାନ 'ବଡ଼ଲାଟଙ୍କ' ଆଇନ ନାମରେ ଅଭିହିତ ହେବ ।

ବଡ଼ଲାଟ ମନଇଚ୍ଛା ଟଙ୍କା ପଇସା ଖର୍ଚ୍ଚ କରି ପାରିବେ । ଅର୍ଥ ବିଭାଗର ମନ୍ତ୍ରୀ ଅବଶ୍ୟ ତାଙ୍କ ସଙ୍ଗୀମାନଙ୍କ ସହିତ ପରାମର୍ଶ କରି ଆୟବ୍ୟୟର ବଜେଟ ପ୍ରସ୍ତୁତ କରିବେ । କିନ୍ତୁ ତହିଁରେ ବଡ଼ଲାଟଙ୍କ ସ୍ୱତନ୍ତ୍ର ବିଭାଗ ଓ ସ୍ୱତନ୍ତ୍ର କ୍ଷମତାର ପରିଚାଳନ ପାଇଁ ବ୍ୟୟର ଅନୁରୂପ ବ୍ୟବସ୍ଥା ଯଦ୍ୟପି ସେ କରି ନ ଥିବେ ତେବେ ବଡ଼ଲାଟ ତାଙ୍କ ଆବଶ୍ୟକତା ଅନୁଯାୟୀ ଏକ ସ୍ୱତନ୍ତ୍ର ବଜେଟ ତାହା ସହିତ ଯୋଗ କରି ଦେଇ ପାରିବେ । ବ୍ୟବସ୍ଥା ପରିଷଦ ଯଦି ଏ ଭଳି ବଜେଟକୁ ମଞ୍ଜୁର ନ କରେ, ତେବେ ତାହା 'ବଡ଼ଲାଟ'ଙ୍କ ବଜେଟ ବୋଲି ତାଙ୍କ ସ୍ୱତନ୍ତ୍ର ଆଦେଶରେ କାର୍ଯ୍ୟକାରୀ ହେବ ।

ଦେଶରେ କୌଣସି ଆକସ୍ମିକ ଅବସ୍ଥା ଉପସ୍ଥିତ ହେଲେ ତାହାକୁ ତୁଲାଇବାପାଇଁ ବଡ଼ଲାଟ ନିଜ ଆଦେଶରେ ଅର୍ଡିନାନ୍ସ ଭଳି ସ୍ୱତନ୍ତ୍ର ଆଇନ ମନଇଚ୍ଛା ଜାରି କରିପାରିବେ । ଏହା ଛଡ଼ା ବ୍ୟବସ୍ଥା ପରିଷଦର ଅଧିବେଶନ ହେଉ ନ ଥିଲା ବେଳେ ସେ ତାଙ୍କ ମନ୍ତ୍ରୀମାନଙ୍କ ସହିତ ମିଳିତ ହୋଇ ନିଜ ଆଦେଶ ବଳରେ ସ୍ୱତନ୍ତ୍ର ଆଇନ ବା ଅର୍ଡିନାନ୍ସ ମଧ୍ୟ ପ୍ରଣୟନ କରିପାରିବେ । ପ୍ରାଦେଶିକ ଲାଟମାନେ ଏହି ଭଳି ବଡ଼ଲାଟଙ୍କ ଅନୁରୂପ ସକଳ କ୍ଷମତାରେ ଅଧିକାରୀ ହୋଇ ପ୍ରଦେଶମାନଙ୍କରେ ମଧ୍ୟ ନିରଙ୍କୁଶ ଶାସନ ଚଳାଇବେ ।

୧୧ ଟି ପ୍ରଦେଶ ପରସ୍ପରଠାରୁ ସ୍ୱତନ୍ତ୍ର ହେବେ ଏବଂ ସ୍ୱାଧୀନ ଭାବରେ ନିଜନିଜର ଆଭ୍ୟନ୍ତରୀଣ ଶାସନ ଚଳାଇବେ । ଇଂରେଜ ରାଜାଙ୍କର ପ୍ରତିନିଧିରୂପେ ଗୋଟିଏ ଲାଟ ଏ ସମସ୍ତଙ୍କର ଶାସନ ବା ଗଭର୍ଣ୍ଣର ହୋଇ ଆସିବେ । ବଡ଼ଲାଟଙ୍କ ଭଳି ସେମାନେ ସ୍ୱତନ୍ତ୍ର କ୍ଷମତା ବଳରେ ଯେ ସକଳ ବିଧି ବ୍ୟବସ୍ଥା ପ୍ରଣୟନ କରିବେ, ଯେ ସମସ୍ତ ସାରା ଭାରତ ପ୍ରତି ପ୍ରଯୋଜ୍ୟ ହେବ ନାହିଁ । ବଡ଼ଲାଟଙ୍କଠାରୁ ଯେତେବେଳେ ଯାହା ଆଦେଶ ଆସିବ, ତାହା ପ୍ରାଦେଶିକ ମନ୍ତ୍ରି ପରିଷଦଦ୍ୱାରା ଗୃହୀତ ନ ହେଲେହେଁ ଲାଟମାନେ ତାହାକୁ ନିଜ ପ୍ରଦେଶରେ ଜାରି କରିବେ । ଏହା ଛଡ଼ା ବିଭିନ୍ନ ପ୍ରଦେଶମାନଙ୍କରେ ଯେ କେତେକ ଅନୁନ୍ନତ ଅଞ୍ଚଳ ଅଛି, ତହିଁପ୍ରତି ଏ ଶାସନ ସଂସ୍କାର ପ୍ରୟୋଗ କରାଯିବ ନାହିଁ । ସେହି ଅଞ୍ଚଳମାନଙ୍କର ଶାସନ ଦାୟିତ୍ୱ ଲାଟମାନେ ନିଜ ସ୍କନ୍ଧରେ ବହନ କରିବେ । ଅବଶ୍ୟ ଏ ଭଳି କେତେକ ଅଞ୍ଚଳର ଶାସନ ଭାର ମନ୍ତ୍ରୀଙ୍କ ଉପରେ ନ୍ୟସ୍ତ କରାଯାଇ ପାରେ । କିନ୍ତୁ ସେପରି ହେଲେ ଆବଶ୍ୟକତା ଅନୁସାରେ ଲାଟ ଯେ କୌଣସି ଶାସନ କାର୍ଯ୍ୟରେ ସ୍ଥଳେ ମନ୍ତ୍ରୀଙ୍କ ବ୍ୟବସ୍ଥା ରଦ କରିଦେବାର ଅଧିକାର ପାଇଥିବେ ।



## ଭାରତରେ ଫ୍ୟାକ୍ଟରୀ ବା କାରଖାନାର ସଂଖ୍ୟା ଓ ସେଥିରେ କାର୍ଯ୍ୟ କରୁଥିବା ଲୋକଙ୍କର ସଂଖ୍ୟା

| ( କାରଖାନାର ନାମ ) | ( କାରଖାନାର ସଂଖ୍ୟା ) | | ( ନିଯୁକ୍ତ ବ୍ୟକ୍ତିଙ୍କ ସଂଖ୍ୟା ) | |
|---|---|---|---|---|
| | ୧୯୨୯ | ୧୯୩୦ | ୧୯୨୯ | ୧୯୩୦ |
| ଲୁଗା ମିଲ | ୨୯୧ | ୨୯୮ | ୩,୩୬,୭୮୨ | ୩,୫୨,୨୬୮ |
| ଝୋଟ ମିଲ | ୯୫ | ୯୭ | ୩,୪୬,୭୬୫ | ୩,୩୬,୩୫୬ |
| ସିଲ୍କ ମିଲ | ୭ | ୭ | ୧,୯୮୦ | ୧,୭୧୨ |
| ଉଲ ମିଲ | ୯ | ୯ | ୫,୭୨୨ | ୩,୮୨୬ |
| ଇଲେକ୍ଟ୍ରିକେଲ ଇଞ୍ଜିନିୟରିଂ | ୧୩ | ୧୫ | ୧,୪୦୮ | ୨,୧୫୧ |
| ଗାଡ଼ି ମରାମତି | ୯୪ | ୯୫ | ୭,୯୧୫ | ୬,୪୭୨ |
| ରେଲୱେ କାରଖାନା | ୭୩ | ୬୬ | ୫୭,୩୩୭ | ୫୭,୭୨୮ |
| ଜାହାଜ ତୟାର | ୧୯ | ୧୮ | ୨୪,୪୩୪ | ୨୦,୨୪୨ |
| ଷ୍ଟିଲ ଟ୍ରଙ୍କ | ୪ | ୩ | ୬,୭୭ | ୮୦୮ |
| ପେଟ୍ରୋଲିୟମ ପରିଷ୍କାର କରିବା | ୧୨ | ୧୨ | ୧୨,୦୫୭ | ୧୨,୦୩୪ |
| ବିସ୍କୁଟ ପ୍ରଭୃତି | ୧୮ | ୧୨ | ୧,୩୪୫ | ୧,୩୯୮ |
| ଲୁହା ଓ ଷ୍ଟିଲ | ୫ | ୫ | ୩୨,୧୧୦ | ୩୦,୪୮୪ |
| ଛପା | ୧,୭୦୬ | ୧,୭୧୫ | ୭୬,୨୧୪ | ୭୮,୨୭୧ |
| ଚିନି | ୪୫ | ୪୮ | ୧୫,୦୭୬ | ୧୫,୨୦୩ |
| ଗୁଡ଼ | ୯୩୪ | ୯୫୯ | ୬୩,୦୭୪ | ୬୦,୧୭୧ |
| ତମାଖୁ | ୧୭ | ୧୮ | ୯,୯୨୨ | ୬,୦୪୦ |
| ହାଡ଼ ଖେତ | ୨୧ | ୨୧ | ୩,୭୨୯ | ୩,୭୩୬ |
| ତେଲକଳ | ୨୪୪ | ୨୪୯ | ୧୧,୪୯୫ | ୧୧,୯୧୯ |
| ଧଅମିଲ | ୩୯ | ୪୧ | ୧୫,୦୫୫ | ୧୭,୧୩୭ |
| ସାବୁନ | ୭ | ୯ | ୬୫୧ | ୮୯୧ |
| ଟାର୍ପିନ୍ ତେଲ | ୨ | ୨ | ୨୫୨ | ୨୨୯ |
| କାଗଜ କଳ | ୭ | ୭ | ୫,୭୨୧ | ୫,୫୯୭ |
| ଇଟା ଓ ଟାଇଲ | ୭୩ | ୬୬ | ୧୦,[illegible]୭୫ | ୯,୭୧୧ |
| ଚମଡ଼ା ଓ ଜୋତା | ୧୨ | ୧୧ | ୨,୮୧୯ | ୨,୭୨୬ |
| ଟେନେରି | ୧୬ | ୨୦ | ୩,୩୦୨ | ୩,୩୧୪ |
| ଝୋଟ | ୧୧୫ | ୧୧୫ | ୭୩,୩୦୦ | ୩୩,୦୩୧ |
| ଗ୍ୟାସ | ୧୪ | ୧୪ | ୧,୭୩୦ | ୧,୬୪୦ |

ଦୁଷ୍ଟ ଯବ ଧନସ୍ଥାନ ହେଲ ମୂର୍ଖ ଘେନ ଏହି ନିବେଦନ ।

## ଭାରତରେ ମୋଟର ଗାଡ଼ି

୧୯୨୨ ଠାରୁ ୧୯୩୨ ପର୍ଯ୍ୟନ୍ତ ଯେତେ ଗାଡ଼ି ପ୍ରତିବର୍ଷ ଏ ଦେଶକୁ ଆସିଛି ତାହାର ତାଲିକା :—

| | |
|---|---|
| ୧୯୨୨-୨୩— | ୪୩୨୩ |
| ୧୯୨୩-୨୪— | ୭୯୮୪ |
| ୨୪-୨୫— | ୯୩୮୦ |
| ୨୫-୨୬— | ୧୨୭୫୭ |
| ୨୬-୨୭— | ୧୩୧୯୭ |
| ୨୭-୨୮— | ୧୫୧୨୨ |
| ୨୮-୨୯— | ୧୯୫୭୭ |
| ୨୯-୩୦— | ୧୭୮୧୧ |
| ୩୦-୩୧— | ୧୨୬୦୧ |
| ୩୧-୩୨— | ୭୬୨୦ |

| | | |
|---|---|---|
| ୧୯୨୯-୩୦ ମସିହାରେ | ଇଂଲଣ୍ଡରୁ— | ୩୬୪୫ |
| | ଆମେରିକା— | ୧୦୧୪୫ |
| | କାନାଡ଼ା— | ୨୩୧୮ |
| | ଫ୍ରାନ୍ସ — | ୩୬୪ |
| | ଇଟାଲି— | ୧୧୫୦ |
| | ଅନ୍ୟାନ୍ୟ ଦେଶ— | ୧୮୯ |
| | | ୧୭୮୧୧ |
| ୧୯୩୦-୩୧ ରେ | ଇଂଲଣ୍ଡ— | ୨୮୮୫ |
| | ଆମେରିକା— | ୫୦୯୮ |
| | କାନାଡ଼ା— | ୩୨୫୦ |
| | ଫ୍ରାନ୍ସ— | ୨୬୧ |
| | ଇଟାଲି— | ୯୧୭ |
| | ଅନ୍ୟାନ୍ୟଦେଶ— | ୧୯୦ |
| | | ୧୨୬୦୧ |
| ୧୯୩୧-୩୨ ରେ | ଇଂଲଣ୍ଡ— | ୨୧୭୮ |
| | ଆମେରିକା— | ୩୩୬୮ |
| | କାନାଡ଼ା— | ୬୬୭ |
| | ଫ୍ରାନ୍ସ— | ୧୬୧ |
| | ଇଟାଲି— | ୯୧୦ |
| | ଅନ୍ୟାନ୍ୟ ଦେଶ— | ୩୨୭ |
| | | ୭୬୨୦ |

ଏହି ୭୬୨୦ ମଧ୍ୟରୁ ବମ୍ବାଇରେ ୩୩୨୫,
ବଙ୍ଗଳାରେ ୧୮୦୧
ମାନ୍ଦ୍ରାଜରେ ୧୩୦
ସିନ୍ଧରେ ୮୨୪
ବ୍ରହ୍ମଦେଶରେ ୪୧୦ ବିକ୍ରୀତ ହୋଇଅଛି

ଏହା ଛଡ଼ା ସେହିବର୍ଷ ମଟର ଲରି, ବସ୍ ଓ ମଟର ସାଇକେଲ ଆସି ଅଛି । କେବଳ ମଟର ସାଇକେଲ ସଂଖ୍ୟା ୧୫୦୧ ।

ଲରି ଓ ବସ୍ ପ୍ରଭୃତିରେ ସର୍ବ ମୋଟ ୭୭ ଲକ୍ଷ ଟଙ୍କା ବିଦେଶକୁ ଏ ଦେଶରୁ ପ୍ରତିବର୍ଷ ଯାଏ । ସେଥିରୁ ଇଂଲଣ୍ଡକୁ ଯାଏ ୪୭ ଲକ୍ଷ ଟଙ୍କା । ୧୯୩୧-୩୨ ରେ ଯେତେ ମଟର ଗାଡ଼ି ଏ ଦେଶକୁ ଆସିଛି ସେ ସବୁର ମୂଲ୍ୟ ୧ କୋଟି ୧୮ ଲକ୍ଷ ଟଙ୍କା । ଏହାର ପୂର୍ବବର୍ଷ ୨ କୋଟି ୫୮ ଲକ୍ଷ ଟଙ୍କା ମୂଲ୍ୟର ମଟର ଏ ଦେଶକୁ ଆସିଥିଲା ।

ଉପରୋକ୍ତ ହିସାବରୁ ବେଶ୍ ଜଣାଯାଉଛି ପ୍ରତିବର୍ଷ ଭାରତରୁ କିପରି ଅଜସ୍ର ଅର୍ଥ ବିଦେଶକୁ ଯାଉଅଛି ।



## ପ୍ରଥମ ଭାରତୀୟ

ଭାରତରେ ଇଂରାଜୀ ଶିକ୍ଷା ପ୍ରଚଳନର ସମର୍ଥ—
ରାଜା ରାମମୋହନ ରାୟ

ଭାରତର ଶ୍ରେଷ୍ଠ ଔପନ୍ୟାସିକ—
ବଙ୍କିମଚନ୍ଦ୍ର ଚଟ୍ଟୋପାଧ୍ୟାୟ

ଭାରତର ଦାର୍ଶନିକ କବି—
ରବୀନ୍ଦ୍ରନାଥ ଠାକୁର

ଆଧୁନିକ ଯୁଗେ ଦୟାର ସାଗର—
ଈଶ୍ୱରଚନ୍ଦ୍ର ବିଦ୍ୟାସାଗର

**ମାତଳୁଙ୍ଗେ ଜାତ ନୋହିବ ମୋହର ନ ସେବିବ ମାତଙ୍ଗନ ॥**

ଲ୍ଡ ଅବ୍ ନେଶନର ପ୍ରତିନିଧି
କଂସ କୌନ୍ସିଲ
ଡେପ୍ୟୁଟି
ବିଲାତ କେବିନେଟର ସଭ୍ୟ
ବିଲାତରେ ଲର୍ଡ ହାଉସ ସଭ୍ୟ
ପ୍ରାଦେଶିକ ଶାସନ କର୍ତ୍ତା
ବଙ୍ଗଳାର ଏକ୍ଜିକ୍ୟୁଟିଭ ଜେନେରେଲ
ଭାଇସ୍ରାଇ ସମ୍ବନ୍ଧରେ ସ୍ୱାକ୍ଷରକାରୀ — ଲର୍ଡ ସିହ୍ନ

ଯେଉଁମାନେ ଆଇ, ସି, ଏସ୍, ପଦତ୍ୟାଗ କରନ୍ତି—
ସୁଭାଷଚନ୍ଦ୍ର ବସୁ

ଆଧୁନିକ ଯୁଗରେ ତ୍ୟାଗର ଆଦର୍ଶ—
ମହାତ୍ମା ଗାନ୍ଧି
ମୋତିଲାଲ ନେହେରୁ (ମଧ୍ୟପ୍ରଦେଶ)
ଦେଶବନ୍ଧୁ ଚିତ୍ତରଞ୍ଜନ ଦାସ (ବଙ୍ଗ)
ଗୋପବନ୍ଧୁ ଦାସ (ଓଡ଼ିଶା)

ଇଂରାଜୀ କବିତାରେ ଯଶସ୍ୱିନୀ ହୋଇଥିବା ପ୍ରଥମ ମହିଳା—
ତରୁ ଦତ୍ତ

ପଦାର୍ଥ ବିଜ୍ଞାନରେ କୃତିତ୍ୱ ଲାଭ କରନ୍ତି—
ଆଚାର୍ଯ୍ୟ ସ୍ୟାର୍ ଜଗଦୀଶଚନ୍ଦ୍ର ବସୁ

ପାଶ୍ଚାତ୍ୟ ରସାୟନ ଶାସ୍ତ୍ରରେ କୃତିତ୍ୱ ଲାଭ କରନ୍ତି—
ସ୍ୟାର୍ ପ୍ରଫୁଲ୍ଲଚନ୍ଦ୍ର ରାୟ

ଭାରତ ବାହାରେ ପ୍ରଥମ ବଙ୍ଗାଳୀ ବାଗ୍ମୀ—
କେଶବଚନ୍ଦ୍ର ସେନ୍

ନାଇଟ ଉପାଧି ତ୍ୟାଗ କରନ୍ତି—
ରବୀନ୍ଦ୍ରନାଥ ଠାକୁର

ଭାରତୀୟ କଂଗ୍ରେସର ସଭାପତି (ମହିଳା)
ଶ୍ରୀମତୀ ସରୋଜିନୀ ନାଇଡୁ

ସାଇକେଲରେ ପୃଥିବୀ ପର୍ଯ୍ୟଟକ—
ବିମଳ ମୁଖୋପାଧ୍ୟାୟ

ମହାଯୁଦ୍ଧରେ ବିମାନ ପୋତଚାଳକ—
ଲେ: ଇନ୍ଦ୍ରଲାଲ ରାୟ

ସାମ୍ୟଭାବ ପ୍ରଚାରକ—
ଶ୍ରୀ ଶ୍ରୀ ରାମକୃଷ୍ଣ ପରମହଂସ

ଭାରତ ବାହାରେ ହିନ୍ଦୁଧର୍ମ ପ୍ରଚାରକ—
ଶ୍ରୀମତ୍ ବିବେକାନନ୍ଦ ସ୍ୱାମୀ

କଂଗ୍ରେସରେ ପ୍ରଥମ ମହିଳା ସଭ୍ୟା—
ସ୍ୱର୍ଣ୍ଣକୁମାରୀ ଦେବୀ

ନୋବେଲ ପୁରସ୍କାର ପାଆନ୍ତି—
ଡା: ରବୀନ୍ଦ୍ରନାଥ ଠାକୁର

ଭାରତ ବାହାରେ ପ୍ରାଚ୍ୟ ଗୀତ ବାଦ୍ୟରେ ସୁଖ୍ୟାତି ଅର୍ଜନ କରନ୍ତି ମହିଳା— ସତ୍ୟବାଳା ଦେବୀ

ଡିଭିସନାଲ କମିଶନର—
ରମେଶଚନ୍ଦ୍ର ଦତ୍ତ

ପ୍ରେସିଡେନ୍ସି କଲେଜର ପ୍ରିନ୍ସିପାଲ
ଡା: ପି, କେ, ରାୟ

ପାଶ୍ଚାତ୍ୟ ଭାରତୀୟ ନୃତ୍ୟକଳାବିଦ—
ଉଦୟଶଙ୍କର ଚୌଧୁରୀ

ପଦବ୍ରଜେ ପୃଥିବୀ ପର୍ଯ୍ୟଟକ—
ଉପେନ୍ଦ୍ରନାଥ ଚକ୍ରବର୍ତ୍ତୀ

ଇଂରାଜୀ କାବ୍ୟ ଲେଖକ—
ମାଇକେଲ ମଧୁସୂଦନ ଦତ୍ତ

କଲିକତା ବିଶ୍ୱବିଦ୍ୟାଳୟର ଗ୍ରାଜୁଏଟ—
ରାୟ ବଙ୍କିମଚନ୍ଦ୍ର ଚଟ୍ଟୋପାଧ୍ୟାୟ
ଓ ଯଦୁନାଥ ବସୁ

ହାଇକୋର୍ଟର ପ୍ରଧାନ ବିଚାରପତି—
ସ୍ୟାର୍ ରମେଶଚନ୍ଦ୍ର ମିତ୍ର



## ଭାରତରେ ବିଳାସ ବ୍ୟସନରେ ବ୍ୟୟ

| | |
|---|---|
| ମୋଜା, ଗେଞ୍ଜି, ଜୋତା | ୭ କୋଟି ଟଙ୍କା |
| ରୁ ରୁଟି | ୨ କୋଟି ୫୦ ଲକ୍ଷ ଟଙ୍କା |
| ସାବୁନ | ୨ କୋଟି ଟଙ୍କା |
| ଅତର ଓ ସୁଗନ୍ଧ ଦ୍ରବ୍ୟ | ୨ କୋଟି ଟଙ୍କା |
| ଶିଶୁ ଖାଦ୍ୟ | ୧ କୋଟି ୧୦ ଲକ୍ଷ ଟଙ୍କା |
| ଜମାଟ ବନ୍ଧା ଦୁଧ | ୧ କୋଟି ଟଙ୍କା |

କଣ୍ଠାଗତ ପ୍ରାଣ ହେଲେ ହେଁ ତୃଣ ନ ଖାଇ ଯଥା କେଶରୀ ।

| | |
|---|---|
| ତାସ ଓ ଫୁଟବଲ | ୧ କୋଟି ଟଙ୍କା |
| ନକଲି ମୁକ୍ତା ଆଦ | ୭୭ ଲକ୍ଷ ଟଙ୍କା |
| ଲେସ୍ | ୩୦ ଲକ୍ଷ ଟଙ୍କା |
| ଚିଠି କାଗଜ ଓ ଲଫାଫା | ୨୧ ଲକ୍ଷ ଟଙ୍କା |
| ଜୋତା କାଳି | ୧୭ ଲକ୍ଷ ଟଙ୍କା |
| ଜୋତା ଫିତା | ୧୭ ଲକ୍ଷ ୫୦ ହଜାର ଟଙ୍କା |
| କେଶ କଣ୍ଟା | ୧୫ ଲକ୍ଷ ଟଙ୍କା |
| ବ୍ଲଟିଂ ପେପର୍ | ୩ ଲକ୍ଷ ୫୦ ହଜାର ଟଙ୍କା |
| ବ୍ରୁସ୍ | ୩ ଲକ୍ଷ ୫୦ ହଜାର ଟଙ୍କା |
| ଦାନ୍ତଘଷା ବ୍ରୁସ୍ | ୨ ଲକ୍ଷ ୫୦ ହଜାର ଟଙ୍କା |

ପ୍ରତିବର୍ଷ ଉପରୋକ୍ତ ପରିମାଣରେ ବିଳାସ ସାମଗ୍ରୀମାନ ସାତ ସମୁଦ୍ର ତେର ନଦୀ ପାର ହୋଇ ଭାରତକୁ ଆସେ ।



## ୧୯୩୧-୩୨ ରେ ଆସିଥିବା ବିଳାସ ସାମଗ୍ରୀର ବିବରଣ

( ସ୍ତ୍ରୀମାନଙ୍କ ପାଇଁ )

| | |
|---|---|
| ସିନ୍ଦୂର | ୨୧ ଲକ୍ଷ ଟଙ୍କା |
| କେଶ କଣ୍ଟା | ୧୧ ଲକ୍ଷ ଟଙ୍କା |
| ପାନଅ | ୨୭ ଲକ୍ଷ ଟଙ୍କା |
| କେଶ ବନ୍ଧା ଫିତା | ୮ ଲକ୍ଷ ୫୦ ହଜାର ଟଙ୍କା |

( ପୁରୁଷମାନଙ୍କ ପାଇଁ )

| | |
|---|---|
| ହାଡ ନିର୍ମିତ ବୋତାମ | ୨୨ ଲକ୍ଷ ଟଙ୍କା |
| ଧାତୁ ନିର୍ମିତ ବୋତାମ | ୧୦ ଲକ୍ଷ ୫୦ ହଜାର ଟଙ୍କା |
| ଜୋତା ଫିତା | ୧୭ ଲକ୍ଷ ୫୦ ହଜାର ଟଙ୍କା |
| ସେଫ୍ଟି ପିନ୍ | ୩ ଲକ୍ଷ ୫୦ ହଜାର ଟଙ୍କା |



## ୧୩୦୦ ସାଲରେ ଭାରତରେ ଦ୍ରବ୍ୟାଦିର ମୂଲ୍ୟ

| | | |
|---|---|---|
| ଗହମ | ୧ ମହଣ | ୭ ½ ପଇସା |
| ଧାନ | ,, | ୫ ,, |
| ଡାଲି | ,, | ୫ ,, |
| ଚିନି | ୧ ସେର | ୧ ½ ,, |
| ଗୁଡ଼ | ,, | ¼ ,, |
| ଘିଅ | ୨ ½ ସେର | ୧ ,, |
| ତିଳ ତେଲ | ୩ ସେର | ୧ ,, |
| ଲୁଣ | ୧ ମହଣ | ୨ ,, |

ସେକାଳର ମହଣ ଆଜିକାଲିର ୧୪ ସେର ସଙ୍ଗେ ସମାନ, ଏଣୁ ଆଜିକାଲିର ଦର ସହିତ ଆଲ୍ଲାଉଦ୍ଦିନଙ୍କ ନିର୍ଦ୍ଧାରିତ ମୂଲ୍ୟ ତୁଳନା କରିବାକୁ ଗଲେ ସ୍ଥୂଳତଃ ପ୍ରଥମର ତିନିଗୁଣ ଧରିବାକୁ ହେବ ।



## ୧୩୩୫ ସାଲରେ ଇବନ୍ ବତୁତାଙ୍କ ପ୍ରଦତ୍ତ ବଙ୍ଗରେ ଦ୍ରବ୍ୟାଦିର ମୂଲ୍ୟ

| | | |
|---|---|---|
| ଧାନ | ୧ ମହଣକୁ | ଟ ୦ ✓. |
| ଘିଅ | ,, | ଟ ୧ ।√ |
| ଚିନି | ,, | ଟ ୧ ।√ |
| ତିଳ ତେଲ | ,, | ଟ ୦ ୳√୨ |
| ସରୁ ସୂତା ଲୁଗା | ୧୫ ଗଜକୁ | ଟ ୨ ( |
| ଦୋହାଁଳ ଗାଈ | ୧ ଗୋଟାକୁ | ଟ ୩ ( |
| କୁକୁଡ଼ା | ,, | ଟ ୦ (୩ ପାହୁ |
| ମେଣ୍ଢା | ,, | ଟ ୦ । |
| କ୍ରୀତ ଦାସୀ | ,, | ଟ ୧୦( |



## ପ୍ରାଚୀନ ଅସବର୍ଣ୍ଣ ବିବାହ

| ( ବରର ନାମ— | ଜାତି ) | ( କନ୍ୟାର ନାମ— | ଜାତି ) |
|---|---|---|---|
| ବଶିଷ୍ଠ | ବ୍ରାହ୍ମଣ | ଅକ୍ଷମାଳା | ନୀଚବର୍ଣ୍ଣ |
| ମନ୍ଦପାଳ | ,, | ସାରଙ୍ଗୀ | ,, |
| ଜମଦଗ୍ନି | ,, | ରେଣୁକା | କ୍ଷତ୍ରିୟ |
| ବିଶ୍ରବା | ,, | କୈଳାସୀ | ରାକ୍ଷସକନ୍ୟା |
| ଗୌତମ | ,, | ଅହଲ୍ୟା | କ୍ଷତ୍ରିୟ |
| ରାମଚନ୍ଦ୍ର | କ୍ଷତ୍ରିୟ | ସୀତା | ଅଜ୍ଞାତ |
| ଯଯାତି | ,, | ଦେବଯାନୀ | ବ୍ରାହ୍ମଣ |
| ଶାନ୍ତନୁ | ,, | ସତ୍ୟବତୀ | କୈବର୍ତ୍ତ |

## ସ୍ମୃତିକର୍ତ୍ତା ଏବଂ ସେମାନଙ୍କର ଜାତି

| ( ଋଷି ) | ( ବଂଶ ) |
|---|---|
| ବଶିଷ୍ଠ | ଦାସୀ ପୁତ୍ର |
| ପରାଶର | ଚଣ୍ଡାଳୀର ପୁତ୍ର |
| ନାରଦ | ଶୂଦ୍ରା ପୁତ୍ର |
| ବ୍ୟାସ | କେଉଟୁଣୀ ପୁତ୍ର |

## ତନ୍ତ୍ର ଚୂଡ଼ାମଣି ମତେ ସତୀଙ୍କ ପୀଠସ୍ଥାନ

| କ୍ରମିକ ନମ୍ବର | ସତୀଙ୍କ ଅଙ୍ଗ ପତନ ସ୍ଥାନ ଅର୍ଥାତ୍—ପୀଠ ସ୍ଥାନ | ସତୀଙ୍କ ଶରୀରର ପତିତାଂଶ । | ତତ୍ରତ୍ୟ ଦେବୀଙ୍କ ନାମ | ତତ୍ରତ୍ୟ ଭୈରବଙ୍କ ନାମ | ମନ୍ତବ୍ୟ |
|---|---|---|---|---|---|
| ୧ | ୨ | ୩ | ୪ | ୫ | ୬ |
| ୧ | ହିଙ୍ଗଳା | ବ୍ରହ୍ମରନ୍ଧ୍ର | କୋଟ୍ଟରୀ | ଭୀମଲୋଚନ | |
| ୨ | ଶର୍କରା | ତ୍ରିନଚକ୍ଷୁ | ମହିଷମର୍ଦ୍ଦିନୀ | କ୍ରୋଧୀଶ | |
| ୩ | ସୁଗନ୍ଧା | ନାସିକା | ସୁନନ୍ଦା | ତ୍ର୍ୟମ୍ବକ | |
| ୪ | କାଶ୍ମୀର | କଣ୍ଠ | ଭଗବତୀ | ତ୍ରିସନ୍ଧ୍ୟେଶ୍ୱର | |
| ୫ | ଜ୍ୱାଳାମୁଖୀ | ଜିହ୍ୱା | ଅମ୍ବିକା | ଉନ୍ମତ୍ତ | |
| ୬ | ଜଳନ୍ଧର | ବାମସ୍ତନ | ତ୍ରିପୁରମାଳିନୀ | ଭୀଷଣ | |
| ୭ | ବୈଦ୍ୟନାଥ | ହୃଦୟ | ଜୟଦୁର୍ଗା | ବୈଦ୍ୟନାଥ | |
| ୮ | ନେପାଳ | ଜାନୁଦ୍ୱୟ | ମହାମାୟା | କପାଳୀ | |
| ୯ | ମାନସକ୍ଷେତ୍ର | ଦକ୍ଷିଣ ହସ୍ତ | ଦାକ୍ଷାୟଣୀ | ଅମର | |
| ୧୦ | ଉତ୍କଳ ବିରଜାକ୍ଷେତ୍ର | ନାଭି | ବିମଳା | ଜଗନ୍ନାଥ | |
| ୧୧ | ଗଣ୍ଡକୀନଦୀ | ଦକ୍ଷିଣ ଗଣ୍ଡ | ଗଣ୍ଡକୀଚଣ୍ଡୀ | ଚକ୍ରପାଣି | |
| ୧୨ | ବହୁଳା | ବାମବାହୁ | ବହୁଳା | ଭୀରୁକ | |

ସୁନ୍ଦରେ ତୃପ୍ତିର ଅବସାଦ ନାହିଁ ।

| ୧ | ୨ | ୩ | ୪ | ୫ | ୬ |
|---|---|---|---|---|---|
| ୧୩ | ଉଜ୍ଜୟିନୀ | କଫୋଣୀ | ମଙ୍ଗଳଚଣ୍ଡିକା | କପିଳାମ୍ବର | |
| ୧୪ | ଚଟ୍ଟଗ୍ରାମ | ଦକ୍ଷିଣ ବାହୁ | ଭବାନୀ | ଚନ୍ଦ୍ରଶେଖର | |
| ୧୫ | ତ୍ରିପୁରା | ଦକ୍ଷିଣପାଦ | ତ୍ରିପୁରା | ତ୍ରିପୁରେଶ | |
| ୧୬ | ତ୍ରିସ୍ରୋତା | ବାମପାଦ | ଭ୍ରାମରୀ | ଅମ୍ବର | |
| ୧୭ | କାମାଚଳ | ଯୋନି | କାମାଖ୍ୟା | ଉମାନନ୍ଦ | |
| ୧୮ | କ୍ଷୀରଗ୍ରାମ | ଦକ୍ଷିଣଚର ଅଙ୍ଗୁଷ୍ଠ | ଯୁଗାଦ୍ୟା | କ୍ଷୀରଚଣ୍ଡକ | |
| ୧୯ | କାଳପୀଠ | ଦକ୍ଷିଣ ଚରଣର ଅଙ୍ଗୁଳ | କାଳିକା | ନକୁଳେଶ | |
| ୨୦ | ପ୍ରୟାଗ | ଦୁଇ ହସ୍ତର ଦଶଅଙ୍ଗୁଳ | ଲଳିତା | ଭବ | |
| ୨୧ | ଜୟନ୍ତୀ | ବାମଜଙ୍ଘା | ଜୟନ୍ତୀ | କ୍ରମଦୀଶ୍ୱର | |
| ୨୨ | କିରୀଟ | କିରୀଟ | ବିମଳା | ସମ୍ବର୍ତ୍ତ | |
| ୨୩ | କାଶୀ | କୁଣ୍ଡଳ | ବିଶାଳାକ୍ଷୀ | କାଳ | |
| ୨୪ | କନ୍ୟାଶ୍ରମ | ପୃଷ୍ଠ | ସର୍ବାଣୀ | ନିମିଷ | |
| ୨୫ | କୁରୁକ୍ଷେତ୍ର | ଦକ୍ଷିଣ ପାଦର ଗୁଲ୍ଫ | ସାବିତ୍ରୀ | ସ୍ଥାଣୁ | |
| ୨୬ | ମଣିବେଦ | ମଣିବନ୍ଧ | ଗାୟତ୍ରୀ | ସର୍ବାନନ୍ଦ | |
| ୨୭ | ଶ୍ରୀ ଶୈଳ ( ଶ୍ରୀହଟ୍ଟ ) | ଗ୍ରୀବା | ମହାଲକ୍ଷ୍ମୀ | ଶମ୍ବରାନନ୍ଦ | |
| ୨୮ | କାଞ୍ଚିଦେଶ | କଙ୍କାଳ | ଦେବଗର୍ଭା | ରୁରୁ | |
| ୨୯ | କାଳମାଧବ | ଦକ୍ଷିଣ ନିତମ୍ବ | କାଳୀ | ଅସିତାଙ୍ଗ | |
| ୩୦ | ନର୍ମଦାତୀର | ବାମ ନିତମ୍ବ | ଶୋଣାଖ୍ୟା | ଭଦ୍ରସେନ | |
| ୩୧ | ରାମଗିରି | ଦକ୍ଷିଣ ସ୍ତନ | ଶିବାନୀ | ଚଣ୍ଡ | |
| ୩୨ | ବୃନ୍ଦାବନ | କେଶ ଜାଲ | ଉମା | ଭୂତେଶ | |
| ୩୩ | ଶୁଚିଦେଶ | ଊର୍ଦ୍ଧ୍ୱ ଦନ୍ତପଂକ୍ତି | ନାରାୟଣୀ | ସଂହାର | |
| ୩୪ | ପଞ୍ଚସାଗର | ଅଧୋଦନ୍ତ ପଂକ୍ତି | ବାରାହୀ | ମହାରୁଦ୍ର | |
| ୩୫ | କରତୋୟା | ବାମତଳ୍ପ | ଅପର୍ଣ୍ଣା | ବାମନ | |
| ୩୬ | ଶ୍ରୀ ପର୍ବତ | ଦକ୍ଷିଣ ତଳ୍ପ | ଶ୍ରୀ ସୁନ୍ଦରୀ | ସୁନ୍ଦରାନନ୍ଦ | |
| ୩୭ | ବିଭାସ | ବାମ ଗୁଲ୍ଫ | ଭୀମରୂପା | କପାଳୀ | |
| ୩୮ | ପ୍ରଭାସ | ଉଦର | ଚନ୍ଦ୍ରଭାଗା | ବକ୍ରତୁଣ୍ଡ | |
| ୩୯ | ଭୈରବପର୍ବତ | ଊର୍ଦ୍ଧ୍ୱ ଓଷ୍ଠ | ଅବନ୍ତୀ | ଲମ୍ବକର୍ଣ୍ଣ | |
| ୪୦ | ଜନସ୍ଥାନ | ଚିବୁକ | ଭ୍ରାମରୀ | ବିକୃତାକ୍ଷ | |
| ୪୧ | ଗୋଦାବରୀ ତୀର | ବାମଗଣ୍ଡ | ବିଶ୍ୱମାତୃକା | ଦଣ୍ଡପାଣି | |
| ୪୨ | ରତ୍ନାବଳୀ | ଦକ୍ଷିଣ ସ୍କନ୍ଧ | କୁମାରୀ | ଶିବ | |
| ୪୩ | ମିଥିଳା | ବାମ ସ୍କନ୍ଧ | ଉମାଦେବୀ | ମହୋଦର | |
| ୪୪ | ନଳହାଟୀ | ନଳା | କାଳିକା | ଯୋଗେଶ | |
| ୪୫ | କର୍ଣ୍ଣାଟ | କର୍ଣ୍ଣ ଦ୍ୱୟ | ଜୟଦୁର୍ଗା | ଅଭୀରୁ | |
| ୪୬ | ବକ୍ରେଶ୍ୱର | ମନଃ | ମହିଷମର୍ଦ୍ଦିନୀ | ବକ୍ରନାଥ | |
| ୪୭ | ଯଶୋର | ପାଣି ପଦ୍ମ | ଯଶୋରେଶ୍ୱରୀ | ଚଣ୍ଡ | |
| ୪୮ | ଅଟ୍ଟହାସ | ଅଧଃ ଓଷ୍ଠ | ଫୁଲ୍ଲରା | ବିଶ୍ୱେଶ | |
| ୪୯ | ନନ୍ଦପୁର | ହାର | ନନ୍ଦିନୀ | ନନ୍ଦିକେଶ୍ୱର | |
| ୫୦ | ଲଙ୍କା ବା ସିଂହଳ | ନୂପୁର | ଇନ୍ଦ୍ରାକ୍ଷୀ | ରାକ୍ଷସେଶ୍ୱର | |
| ୫୧ | ବିରାଟ | ପଦାଙ୍ଗୁଳ | ଅମ୍ବିକା | ଅମୃତାକ୍ଷ | |
| ୫୨ | ମଗଧ | ଦକ୍ଷିଣ ଜଙ୍ଘା | ସର୍ବାନନ୍ଦକରୀ | ବ୍ୟୋମକେଶ | |

ଯେତେ ଦେଖିଲେହେଁ ନୂଆ ଲାଗୁଥାଇ ॥

# ଉତ୍କଳ

## ଉତ୍କଳ ଇତିହାସର ପ୍ରସିଦ୍ଧ ଘଟଣାମାନ ଓ ସେମାନଙ୍କର ସମୟ

### ( ପୌରାଣିକ ଯୁଗ )

ମହାଭାରତ ସମୟରୁ ଖ୍ରୀଷ୍ଟପୂର୍ବ ୩୬୦ ପର୍ଯ୍ୟନ୍ତ
କଳିଙ୍ଗରେ ୩୨ ଜଣ ରାଜତ୍ୱ କରିଥିଲେ ।

**ମହାପଦ୍ମନନ୍ଦ**—ରାଜତ୍ୱସମୟ, ଖ୍ରୀଷ୍ଟପୂର୍ବ ୩୬୦—୩୨୨ ଅବ୍ଦ

ନନ୍ଦରାଜତ୍ୱ, ନନ୍ଦରାଜାଙ୍କ ରାଜଧାନୀ ପାଟଳିପୁତ୍ର ଥିଲା । ନନ୍ଦବଂଶରେ ୯ ଜଣ ରାଜା ରାଜତ୍ୱ କରିଥିଲେ । "ତୋଷାଳି" କଳିଙ୍ଗର ରାଜଧାନୀ ଥିଲା ।

**ଚନ୍ଦ୍ରଗୁପ୍ତ, ଅଶୋକ**— ରାଜତ୍ୱସମୟ, ଖ୍ରୀଷ୍ଟପୂର୍ବ ୩୨୨—୩୨୦ ଅବ୍ଦ

ଜୈନ ଓ ମୌର୍ଯ୍ୟରାଜତ୍ୱ, ମନ୍ତ୍ରୀ ଚାଣକ୍ୟଙ୍କର ମନ୍ତ୍ରଣା ବଳରେ ଚନ୍ଦ୍ରଗୁପ୍ତ ମୌର୍ଯ୍ୟବଂଶର ରାଜତ୍ୱ ପ୍ରତିଷ୍ଠା କରିଥିଲେ । ଏହି ବଂଶର ତୃତୀୟ ଓ ସର୍ବପ୍ରସିଦ୍ଧ ସମ୍ରାଟ୍ ଅଶୋକ ବୌଦ୍ଧ-ଧର୍ମର ପ୍ରଚାର ଓ ପ୍ରତିଷ୍ଠା କରାଇଥିଲେ । ପ୍ରଜାଙ୍କ ସୁବିଧା ପାଇଁ ପଥ, ଘାଟ ଚଉଁରା ଓ କୂଅ, ପୋଖରୀ ସ୍ଥାନେ ସ୍ଥାନେ ଖୋଳାଇଥିଲେ ।

**ପୁଷ୍ପମିତ୍ର**— ରାଜତ୍ୱସମୟ, ଖ୍ରୀଷ୍ଟପୂର୍ବ ୨୨୦ ଠାରୁ ୧୦୦ ଅବ୍ଦ

ପୁଷ୍ପମିତ୍ର, ମିତ୍ରବଂଶ, ଅଶ୍ୱମେଧ ଯଜ୍ଞକର ସମ୍ରାଟ୍ ହୋଇଥିଲେ । ବୌଦ୍ଧଧର୍ମ ପରିବର୍ତ୍ତରେ ବ୍ରାହ୍ମଣଧର୍ମ ଏହି ବଂଶ ଶାସନରେ ପୁଣି ପ୍ରସାର ପାଇଲା ।

**ଚୈତ୍ରବଂଶ** ରାଜତ୍ୱସମୟ, ଖ୍ରୀଷ୍ଟପୂର୍ବ ୨୦୦ ଠାରୁ ୧୦୦ ପର୍ଯ୍ୟନ୍ତ

ଭାରତରେ ଏକଛତ୍ର ସମ୍ରାଟ୍ ହୋଇଥିଲେ ।

**ଖାରବେଳ**—ରାଜତ୍ୱସମୟ, ଖ୍ରୀଷ୍ଟପୂର୍ବ ୧୭୩

ବାଣିଜ୍ୟ ଓ କୃଷିର ସୁବିଧାପାଇଁ କେନାଲ ଖୋଳାଇ ଥିଲେ । 'ବିଦ୍ୟାଧର ଦାସ' ନାମରେ କେତେକ ଧର୍ମ ମନ୍ଦିର ବା ମଠ ନିର୍ମାଣ କରାଇ ଥିଲେ । ତାଳପତ୍ର ଥାଇ ଗୋଟିଏ ସୁନାର କଳ୍ପବୃକ୍ଷ ଏବଂ ତାହା ସହିତ ହାତୀ, ଘୋଡ଼ା, ରଥ ମହନ୍ତ ଓ ବାହକ ସହ ବ୍ରାହ୍ମଣଙ୍କୁ ଦାନ କରିଥିଲେ । ପ୍ରାଚୀ ନଦୀକୂଳରେ ବିଜୟର ସ୍ମାରକ ସ୍ୱରୂପ ୩୮ଲକ୍ଷ ଟଙ୍କା ବ୍ୟୟରେ "ମହାବିଜୟ ପ୍ରାସାଦ" ନାମରେ ଏକ ରାଜଭବନ ନିର୍ମାଣ କରାଇଥିଲେ । ଉଦୟ ଗିରିରେ ମନ୍ଦିରମାନ ରାଣୀହଂସପୁରରେ ଅଟ୍ଟାଳିକା ଓ ହାତୀଗୁମ୍ଫା ତାହାଙ୍କର କୀର୍ତ୍ତି ।

ରାଜତ୍ୱସମୟ, ଖ୍ରୀଷ୍ଟପୂର୍ବ ୧୦୦ ଠାରୁ ଖ୍ରୀଷ୍ଟାବ୍ଦ ୫୨୦ ଅବ୍ଦ

ଓଡ଼ିଶାରେ କେତେଜଣ ସ୍ୱାଧୀନ ରାଜା ଓ ଯବନମାନେ ରାଜତ୍ୱ କରିଥିଲେ ।

**କେଶରୀବଂଶ**—

ମହାରାଜାଧିରାଜ, ତ୍ରିକଳିଙ୍ଗାଧିପତି, ପରମ ମାହେଶ୍ୱର, ପରମ ଭଟ୍ଟାରକ, ସୋମକୁଳ ତିଳକ, ମହାଭବଗୁପ୍ତ, ଈଶ୍ୱର ରକ୍ଷିତ ଏହାଙ୍କର ଉପାଧି ଥିଲା ।

**ଜନ୍ମେଜୟ**—ରାଜତ୍ୱସମୟ, ୫୨୦—୫୫୨ ଖ୍ରୀଷ୍ଟାବ୍ଦ ବା ୪୪୨—୪୭୪ ଶକାବ୍ଦ

ଚୌଦ୍ୱାର ଏହାଙ୍କର ରାଜଧାନୀ ଥିଲା । କଟକଜିଲାର ଡ଼ାଳଯୋଡ଼ାର ଅଗ୍ରାହାଟ ଗ୍ରାମରେ ଏକ ଯଜ୍ଞ କରିଥିଲେ ।

**ଯଯାତିକେଶରୀ**—ରାଜତ୍ୱସମୟ, ଖ୍ରୀଷ୍ଟ
୪୭୪—୫୨୬ ଅବ୍ଦ

ଭାଦ୍ରବମାସ ଶୁକ୍ଳ ଦ୍ୱାଦଶୀଠାରୁ ଏକ ସାଲ ଚଳାଇ ଥିଲେ । ତାର ନାମ ଅଙ୍କ । କଟକରେ ଦୁର୍ଗ ନିର୍ମାଣ, ଯାଜପୁରନଗର ସ୍ଥାପନ, ବିଧିପୂର୍ବକ ଜଗନ୍ନାଥ ଦେବଙ୍କ ଶ୍ରୀମୂର୍ତ୍ତିନିର୍ମାଣ ଓ ମନ୍ଦିରର ସକଳ ବିଧିବିଧାନ, ଭୁବନେଶ୍ୱର ବଡ଼ ଦେଉଳର ମୂଳପତ୍ତନ, କାନ୍ୟକୁବ୍ଜରୁ ଦଶସହସ୍ର ବିଶୁଦ୍ଧ ବୈଦିକ ବ୍ରାହ୍ମଣ ଆନୟନ ପୂର୍ବକ ଏକ ମହାଯଜ୍ଞ ସମାପନ ।

**ସୂର୍ଯ୍ୟ ଓ ଅନନ୍ତ କେଶରୀ**—ରାଜତ୍ୱସମୟ
୫୨୬-୬୨୩ ଅବ୍ଦ

ଭୁବନେଶ୍ୱର ଦେଉଳର କାର୍ଯ୍ୟ ।

**ଲଲିତେନ୍ଦ୍ର କେଶରୀ**—ରାଜତ୍ୱସମୟ,
୬୨୩-୬୭୭ ଅବ୍ଦ

୬୫୭ ଖ୍ରୀଷ୍ଟାବ୍ଦରେ ଭୁବନେଶ୍ୱର ଦେଉଳ ନିର୍ମାଣ କାର୍ଯ୍ୟ ସମାପନ ଭୁବନେଶ୍ୱର ତାହାର ସ୍ଥାପନ ( ସାତସାହି ଓ ବିଯୁଳିଶ କନ୍ଦ ବିଶିଷ୍ଟ ) ଚୀନ ପରିବ୍ରାଜକ ହୁଏନସାଙ୍ଗ ଓଡ଼ିଶା ଆଗମନ, ବିନ୍ଦୁସାଗର ଖନନ, ଚିଲିକା ହ୍ରଦଠାରେ ବନ୍ଦର ସ୍ଥାପନ ।

**୩୯ ଜଣ କେଶରୀବଂଶୀୟ ରାଜା**—
ରାଜତ୍ୱସମୟ, ୬୭୭-୧୦୪୨ ଅବ୍ଦ

**ବୃଦ୍ଧକେଶରୀ**—
ଜଗନ୍ନାଥ ମନ୍ଦିରର ଜୀର୍ଣ୍ଣ ସଂସ୍କାର ।

**କୋଶଳକେଶରୀ**—
ପୁରୀର ମାର୍କଣ୍ଡେଶ୍ୱର ଦେଉଳ ନିର୍ମାଣ ଓ ପୁଷ୍କରଣୀ ଖନନ ।

**ଶୁଭାକର କେଶରୀ**—
ଚୀନ ସମ୍ରାଟଙ୍କୁ "ଗୁଣ୍ଡାବତଂସକସୂତ୍ର" ବୌଦ୍ଧ ଗ୍ରନ୍ଥ ଓ ନାନାରଙ୍ଗ ବିଚିତ୍ର ଚନ୍ଦ୍ରାତପ ଉପହାର ପ୍ରେରଣ । ଅଦ୍ୟାପି ସେମାନ ଚୀନରେ ରକ୍ଷିତ ।

**କର୍ଣ୍ଣକେଶରୀ**—
ବିହାର ରାଜାଙ୍କ ସହିତ ଯୁଦ୍ଧ ।

**ବସୁକଳ୍ପ କେଶରୀ**—
ସିଂହଳ, ଗୈାଳ, ଗୌଡ଼ ରାଜାମାନଙ୍କୁ ଯୁଦ୍ଧରେ ପରାଜୟ, ଭୁବନେଶ୍ୱର ମନ୍ଦିରର ନାଟମନ୍ଦିର ନିର୍ମାଣ, ରାଣୀ କୋଳାବତୀଙ୍କ ଦ୍ୱାରା ଭୁବନେଶ୍ୱରରେ ବ୍ରହ୍ମେଶ୍ୱରଙ୍କ ମନ୍ଦିର ନିର୍ମାଣ ଓ ଜୈନ ସନ୍ୟାସୀ ଶୁଭଚନ୍ଦ୍ରଙ୍କ ଦ୍ୱାରା ଖଣ୍ଡଗିରିରେ ନବମୁନି ଗୁମ୍ଫା ଖନନ ।

**ଶିଶୁପାଳ କେଶରୀ**—
ଭୁବନେଶ୍ୱରର ଦକ୍ଷିଣ ପୂର୍ବରେ ଗଙ୍ଗୁଆନଦୀ କୂଳରେ ଏକ ଦୁର୍ଗ ନିର୍ମାଣ ।

**ପୁରନ୍ଦର କେଶରୀ**—
କୋଣାର୍କରେ ସୂର୍ଯ୍ୟମନ୍ଦିର ନିର୍ମାଣ ଓ ପୂଜା ବିଧାନ ବୃଦ୍ଧୀକରଣ ଓ କୋଣାର୍କ ନିକଟରେ ଅଠଗୋଟି ବ୍ରାହ୍ମଣ ଶାସନ ସ୍ଥାପନ ।

**ବରାହକେଶରୀ**—
ଯାଜପୁରରେ ବରାହନାଥଙ୍କ ମନ୍ଦିର ନିର୍ମାଣ ଓ ବିନ୍ଦୁସାଗର ଖନନ ।

**ନୃପତିକେଶରୀ**—ରାଜତ୍ୱସମୟ,
୯୨୦-୯୩୫ ଅବ୍ଦ

କଟକ ନଗର ସ୍ଥାପନ ।

**ମରକତ କେଶରୀ**—ରାଜତ୍ୱସମୟ,
୯୩୫-୯୫୧

ରାଜଧାନୀ ବାରଣସୀ କଟକର ରକ୍ଷାପାଇଁ କାଠଯୋଡ଼ି ଓ ମହାନଦୀ କୂଳରେ ପଥର ବନ୍ଧର ନିର୍ମାଣ ।

**ସାରଙ୍ଗ କେଶରୀ**—ରାଜତ୍ୱସମୟ,
୯୫୧-୯୬୫

କଟକର ଦକ୍ଷିଣରେ ସାରଙ୍ଗ ଗଡ଼ର ନିର୍ମାଣ ଓ ସାରଙ୍ଗ ହ୍ରଦ ପୁଷ୍କରଣୀ ଖନନ ।

## ମର୍ଦ୍ଦନ କେଶରୀ—ରାଜତ୍ୱସମୟ,

୯୭୫-୯୯୫

ପୁରୀର "ମଧୁପୁର" ନଦୀ ଉପରେ ଅଠରନଳା ସେତୁ ନିର୍ମାଣ ।

## ସୁବର୍ଣ୍ଣ କେଶରୀ—ରାଜତ୍ୱସମୟ,

୯୯୫-୧୦୪୨

କେଶରୀ ବଂଶର ଶେଷ ରାଜା । ନିଜ ସନ୍ତାନ ହେତୁ ଚୋଳଗଙ୍ଗଙ୍କୁ ଉତ୍କଳ ପ୍ରଦାନ ।

## ଚୋଳଗଙ୍ଗଦେବ—ରାଜତ୍ୱସମୟ,୧୦୪୨-୧୧୧୨ ଅବ୍ଦ

ବୈଷ୍ଣବ ଧର୍ମର ଶ୍ରୀବୃଦ୍ଧି ସାଧନ, ଜଗନ୍ନାଥଙ୍କ ନିମନ୍ତେ କ୍ଷୁଦ୍ର ସେବା ପୂଜାର ବୃଦ୍ଧିକରଣ, ମାଦଳା ପାଞ୍ଜିର ଆରମ୍ଭ, ଜଗନ୍ନାଥମନ୍ଦିର ନିର୍ମାଣ, ମନ୍ଦାର ବିଜୟ, ବର୍ଦ୍ଧମାନ ପର୍ଯ୍ୟନ୍ତ ରାଜ୍ୟ ବିସ୍ତାର, ସୂର୍ଯ୍ୟ ସିଦ୍ଧାନ୍ତ ଗ୍ରନ୍ଥ ପ୍ରଣୟନ ଓ ଚୌଦ୍ୱାର ଏବଂ ସାରଙ୍ଗଗଡ଼ରେ ଦୁର୍ଗସ୍ଥାପନ ।

## କାମାର୍ଣ୍ଣବ ଦେବ ବା ଗଙ୍ଗେଶ୍ୱରଦେବ—

ରାଜତ୍ୱସମୟ, ୧୧୧୨—୧୧୨୨ ଅବ୍ଦ

ଗଙ୍ଗାଠାରୁ ଗୋଦାବରୀ ପର୍ଯ୍ୟନ୍ତ ରାଜ୍ୟବିସ୍ତାର, ଯାଜପୁର, ଛତିଆ, କଟକ, ଚୌଦ୍ୱାର ଏବଂ କୃଷ୍ଣାନଦୀ ତୀରସ୍ଥ ଅମରାବତୀରେ ଦୁର୍ଗସ୍ଥାପନ, ନିଜର ଓ ନିଜକନ୍ୟା କୌଶଲ୍ୟାଙ୍କର ନାମାନୁସାରେ "କୌଶଲ୍ୟାଗଙ୍ଗ" ପୁଷ୍କରିଣୀ ଖନନ ।

## ଶ୍ରୀ ରାଘବ ଦେବ—

ରାଜତ୍ୱସମୟ ୧୧୨୨—୧୧୩୭ ଅବ୍ଦ

## ଶ୍ରୀ ରାଜ ରାଜ ଦେବ—

ରାଜତ୍ୱସମୟ, ୧୧୩୭—୧୧୬୨ ଅବ୍ଦ

## ଅନିୟଙ୍କ ଭୀମ ଦେବ—

ରାଜତ୍ୱସମୟ,୧୧୬୨—୧୧୭୨ ଅବ୍ଦ

## ରାଜ ରାଜେଶ୍ୱର ଦେବ—

ରାଜତ୍ୱସମୟ, ୧୧୭୨-୧୧୮୯ ଅବ୍ଦ

ରାଜ୍ୟରେ ଶିକ୍ଷା ବିସ୍ତାର

## ଅନଙ୍ଗ ଭୀମଦେବ—

ରାଜତ୍ୱସମୟ, ୧୧୮୯-୧୨୨୩ ଅବ୍ଦ

ଅନେକ ଦେଉଳ, ସେତୁ, ବାପୀ, ଘାଟ ନିର୍ମାଣ, କୂପ, ପୁଷ୍କରିଣୀ ଖନନ, ନାନାସ୍ଥାନରେ ବ୍ରାହ୍ମଣଶାସନ ସ୍ଥାପନ, ଶତ ଶତ ରାଜମାର୍ଗ ନିର୍ମାଣ, ଚଟିଘର ସ୍ଥାପନ, ବାରବାଟୀ ଦୁର୍ଗ ଓ ଜଗନ୍ନାଥ ମନ୍ଦିର ନିର୍ମାଣ. ଜଗନ୍ନାଥଙ୍କ ସମ୍ମୁଖରେ ଭୈରବ ମୂର୍ତ୍ତି ସ୍ଥାପନ, ଜଗନ୍ନାଥଙ୍କ ସେବାପାଇଁ 'ଛତିଶା ନିଯୋଗ' ଖଞ୍ଜି ଥିଲେ । ଗୁଣ୍ଡେଶ୍ୱର ମନ୍ଦିର ନିର୍ମାଣ, ଦେଶବାସିଙ୍କ ମଧ୍ୟରେ ବିଦ୍ୟା ଓ ଗୁଣର ଉତ୍କର୍ଷତା ଦେଖି ସମ୍ମାନ-ସୂଚକ ଉପାଧି ସୃଜନ, ନାନାସ୍ଥାନରେ ୧୭ ଜଣ ସାମନ୍ତ ରାଜା ସ୍ଥାପନ, ନୂତନ ମୁଦ୍ରା ପ୍ରସ୍ତୁତ ଓ ମୋହରରେ ନିଜର ଉପାଧି "ବୀର ଶ୍ରୀ ଗଜପତି ଗୌଡ଼େଶ୍ୱର ନବକୋଟି କର୍ଣ୍ଣାଟୋତ୍କଳ ବର୍ଗେଶ୍ୱରାଧିରାଜ ଭୁତ-ଭୈରବ-ଦେବ-ସାଧୁଶାସନୋତ୍କୀର୍ଣ୍ଣ ରାଉତରାୟ ଅତୁଳ ବଳ ପରାକ୍ରମ ସଂଗ୍ରାମ ସହସ୍ରବାହୁ କ୍ଷତ୍ରିୟକୁଳ ଧୂମକେତୁ," ଖୋଳାଇଥିଲେ । ସମସ୍ତ ଦେଶ ମାପ ଓ କରଧାର୍ଯ୍ୟ । ମୁସଲମାନଙ୍କର ପ୍ରଥମ ଉତ୍କଳ ଆକ୍ରମଣ ଓ ପରାଜୟ, ବଙ୍ଗଦେଶର ଶେଷ ହିନ୍ଦୁରାଜା ଲକ୍ଷ୍ମଣସେନଙ୍କୁ ଆଶ୍ରୟ ଦାନ ।

## ଲାଙ୍ଗୁଳା ନରସିଂହ ଦେବ—

ରାଜତ୍ୱସମୟ, ୧୨୨୩-୧୨୫୭ ଅବ୍ଦ

କୋଲବର୍ଗ ଓ ରାଢ଼ ଏବଂ ବରେନ୍ଦ୍ର ବିଦର ରାଜ୍ୟ ବିଜୟ ମୁସଲମାନମାନଙ୍କର ବାରମ୍ବାର ଆକ୍ରମଣ ଓ ପରାଜୟ, କୋଣାର୍କ ମନ୍ଦିର ନିର୍ମାଣ, ସୂର୍ଯ୍ୟବିଗ୍ରହ ସ୍ଥାପନ ଓ ସେବା ପୂଜାର ବ୍ୟବସ୍ଥା, ବଙ୍ଗଦେଶ ଆକ୍ରମଣ ।

## ଭାନୁ ଦେବ—ରାଜତ୍ୱସମୟ, ୧୨୫୭-୧୨୬୪ ଅବ୍ଦ

ଜଗନ୍ନାଥଙ୍କ ରଥଯାତ୍ରାରେ ୭ରଥ ପରିବର୍ତ୍ତେ ୩ରଥର ସୃଷ୍ଟି ଓ ଗୁଣ୍ଡିଚାଘର ନିକଟରେ ନଦୀ ଉପରେ ସେତୁ ନିର୍ମାଣ।

## ପ୍ରତାପ ନରସିଂହ ଦେବ ଓ ପରବର୍ତ୍ତୀ ରାଜଗଣ

ରାଜତ୍ୱସମୟ, ୧୨୬୫-୧୪୩୫ ଅବ୍ଦ

୧୨୮୦ ଖ୍ରୀଷ୍ଟାବ୍ଦରେ ବଙ୍ଗସୁଲତାନ ତୋଗ୍ରୋଲ ଖାଁଙ୍କର ଉତ୍କଳର ଉତ୍ତରାଞ୍ଚଳ ଆକ୍ରମଣ ୧୩୦୯ ଖ୍ରୀଷ୍ଟାବ୍ଦରେ ଦାକ୍ଷିଣାତ୍ୟରେ ମାଲିକ୍ କାଫୁରଙ୍କ ସହିତ ଓରାଙ୍ଗଲ ଆକ୍ରମଣ ।

ପରବର୍ତ୍ତୀ ୯ ଜଣ ରାଜାଙ୍କ ସମୟରେ ଉତ୍ତର ଓ ଦକ୍ଷିଣରେ ମୁସଲମାନଙ୍କ ସଙ୍ଗେ ଓରାଙ୍ଗଲ ରାଜ୍ୟ ଅଧିକାର ୧୩୬୭ ଖ୍ରୀଷ୍ଟାବ୍ଦରେ ବୁକ୍କାରାୟଙ୍କ ଭ୍ରାତୃଷ୍ପୁତ୍ର ଦ୍ୱିତୀୟ ସଙ୍ଗମଙ୍କ ଦ୍ୱାରା ଉତ୍କଳ ଗଜପତିଙ୍କର ପରାଜୟ ୧୩୨୩ ମହମ୍ମଦ ତୋଗଲକଙ୍କ ଆକ୍ରମଣ ୧୩୬୦ ରେ ସମ୍ରାଟ୍ ଫିରୋଜ ସାହାଙ୍କୁ ଉପହାର ପ୍ରଦାନ ୧୪୧୨ ରେ ମାଳବଦେଶର ରାଜା ହୁମାନୁଦ୍ଦିନ ହୋସାଙ୍ଗଙ୍କ ଆକ୍ରମଣ ।



# ସୂର୍ଯ୍ୟ ବଂଶ

( ୧୪୩୫—୧୫୩୫ )

## କପିଳେନ୍ଦ୍ର ଦେବ—ରାଜତ୍ୱସମୟ, ୧୪୩୫-୧୪୬୭ ଅବ୍ଦ

ଉତ୍ତରରେ ଗଙ୍ଗାନଦୀଠାରୁ ଦକ୍ଷିଣରେ ପାଲାର ପର୍ଯ୍ୟନ୍ତ ରାଜ୍ୟ ବିସ୍ତାର—ଦେଶରେ ଶାନ୍ତି ସ୍ଥାପନ ବାହାମନି ରାଜାଙ୍କ ସହିତ ତିନଥର ଯୁଦ୍ଧ ବ୍ରାହ୍ମଣଶାସନ ସ୍ଥାପନ-ଜଗନ୍ନାଥ ମନ୍ଦିରର ବାହାର ପାଚେରି ନିର୍ମାଣ ବ୍ରାହ୍ମଣମାନଙ୍କୁ ଚୌକିଦାରି କରରୁ ମୁକ୍ତି ପ୍ରଦାନ ସର୍ବ ସାଧାରଣଙ୍କୁ ଲୁଣ ମାରିବା ଓ କଉଡ଼ି ଆମଦାନି ନିମନ୍ତେ ପୂର୍ଣ୍ଣସ୍ୱାଧୀନତା ଦାନ—ଗୋଚର ଜମି ସଂରକ୍ଷଣ ନୂତନ ଅବ୍ଦ ପ୍ରଚଳନ । ଉପପତ୍ନୀ ଗର୍ଭଜାତ ପୁରୁଷୋତ୍ତମଙ୍କୁ ରାଜ୍ୟ ପ୍ରଦାନ ।

## ପୁରୁଷୋତ୍ତମ ଦେବ—ରାଜତ୍ୱସମୟ,

୧୪୬୭—୧୪୯୭ ଅବ୍ଦ

କାଞ୍ଚିକାବେରୀ ଯୁଦ୍ଧ—

## ପ୍ରତାପରୁଦ୍ର ଦେବ— ରାଜତ୍ୱସମୟ,

୧୪୯୭—୧୫୩୨ ଅବ୍ଦ

ସଂସ୍କାର ଯୁଗ, ଦାକ୍ଷିଣାତ୍ୟରେ ଯୁଦ୍ଧ, ବିଜୟନଗର ରାଜା କୃଷ୍ଣରାୟଙ୍କ ଦ୍ୱାରା ପରାଜୟ ଓ କନ୍ୟାଦାନ, ବୈଷ୍ଣବଧର୍ମର ପ୍ରସାର, ଚୈତନ୍ୟଦେବଙ୍କ ଓଡ଼ିଶା ଆଗମନ, ବ୍ରାହ୍ମଣ ଶାସନ ସ୍ଥାପନ, ଯାଜପୁରରେ ବିରଜାନାଥ ମନ୍ଦିର ଓ ବହୁ ଦେବତା ମନ୍ଦିର ନିର୍ମାଣ ଉତ୍କଳ ଭାଷା ଓ ସାହିତ୍ୟର ଶ୍ରୀବୃଦ୍ଧି ସାଧନ, ଜଗନ୍ନାଥ ଦାସ ଓ ବଳରାମ ଦାସଙ୍କର ଭାଗବତ ଏବଂ ରାମାୟଣ ରଚନା, ବିବିଧ ସଂସ୍କୃତ ଗ୍ରନ୍ଥ ପ୍ରଣୟନ, ୧୫୧୪ରେ ପର୍ତ୍ତୁଗୀଜମାନଙ୍କୁ ବାଣିଜ୍ୟ କରିବାପାଇଁ ଅନୁମତି ପ୍ରଦାନ ଓ ସେମାନଙ୍କର ସୁବର୍ଣ୍ଣରେଖା ତୀରସ୍ଥ ପିପିଲି ବନ୍ଦରରେ ବାଣିଜ୍ୟ କୋଠି ସ୍ଥାପନ, ହୋସେନସାଙ୍କ ଓଡ଼ିଶା ଆକ୍ରମଣ ଓ ପରାଜୟ, କୁତବସାଙ୍କ ଆକ୍ରମଣ ଓ ପରାଜୟ, ଅନ୍ତର୍ବିବାଦ ଦମନ, ଭ୍ରାତୃ ବିବାଦ ଦମନ, "ନିର୍ଣ୍ଣୟକାଣ୍ଡଶେଷ" ନାମକ ସଂସ୍କୃତ ଅଭିଧାନ ପ୍ରଣୟନ, କବି ବିଶ୍ୱନାଥ ମହାପାତ୍ରଙ୍କର "ସାହିତ୍ୟ ଦର୍ପଣ" ନାମକ ଅଳଙ୍କାର ଗ୍ରନ୍ଥ ରଚନା, ନୂତନ ରାଜ୍ୟ ଜୟ ।

## ସୂର୍ଯ୍ୟବଂଶର ଶେଷ ରାଜଗଣ—ରାଜତ୍ୱ ସମୟ,

ଖ୍ରୀଷ୍ଟପୂର୍ବ ୧୫୩୨—୧୫୩୪ ଅବ୍ଦ

ସ୍ୱାଧୀନତାର ଅବସାନ ।

## ଗୋବିନ୍ଦ ବିଦ୍ୟାଧର—ରାଜତ୍ୱସମୟ, ଖ୍ରୀଷ୍ଟପୂର୍ବ

୧୫୩୪—୧୫୪୧ ଅବ୍ଦ

## ପ୍ରତାପଚନ୍ଦ୍ର ଦେବ— ରାଜତ୍ୱସମୟ, ଖ୍ରୀଷ୍ଟପୂର୍ବ

୧୫୪୧—୧୫୪୯ ଅବ୍ଦ

## ନରସିଂହ ଜେନା—ରାଜତ୍ୱସମୟ, ଖ୍ରୀଷ୍ଟପୂର୍ବ

୧୫୪୯—୧୫୫୦ ଅବ୍ଦ

## ରଘୁ ଭଞ୍ଜ—ରାଜତ୍ୱସମୟ, ଖ୍ରୀଷ୍ଟପୂର୍ବ

୧୫୫୦—୧୫୫୯ ଅବ୍ଦ

ଏକପ୍ରକାର ଅରାଜକତା ।

## ମୁକୁନ୍ଦଦେବ—ରାଜତ୍ୱସମୟ, ଖ୍ରୀଷ୍ଟପୂର୍ବ

୧୫୫୯—୧୫୬୮

ଅନେକ କୂପ, ପୁଷ୍କରିଣୀ ଖନନ, ବାସ୍ତୁତ ଅଟ୍ଟାଳିକା, ଦେବମନ୍ଦିର ନିର୍ମାଣ, ହୁଗୁଳୀ ନଦୀରେ ତ୍ରିବେଣୀଘାଟ ଓ ମନ୍ଦିର ନିର୍ମାଣ, ବ୍ରାହ୍ମଣଶାସନ ସ୍ଥାପନ, ବାରବାଟୀ ଦୁର୍ଗରେ ନବତଳ ପ୍ରାସାଦ ନିର୍ମାଣ, ଶେରବଂଶର ଶେଷ ରାଜା ଇବ୍ରାହିମଙ୍କୁ ଆଶ୍ରୟଦାନ ପ୍ରବଳ ପ୍ରତାପ ଆକବରଙ୍କୁ ସାହାଯ୍ୟ ପ୍ରଦାନ ପାଇଁ ସନ୍ଧି, ସାରଙ୍ଗ ଗଡ଼ର ଅଧିପତି ରାମଚନ୍ଦ୍ରଦେବଙ୍କ ବିଦ୍ରୋହାଚରଣ, ୧୫୬୮ରେ ରାମଚନ୍ଦ୍ରଙ୍କ ଅସ୍ତ୍ରାଘାତରେ ପ୍ରାଣତ୍ୟାଗ—ଓଡ଼ିଶାର ସ୍ୱାଧୀନତା ଲୋପ ।

# ଭୋଇବଂଶରାଜା

**ରାମଚନ୍ଦ୍ରଦେବ**—ରାଜତ୍ୱସମୟ, ଖ୍ରୀଷ୍ଟପୂର୍ବ
୧୫୬୮—୧୬୦୦ ଅବ୍ଦ

କଳାପାହାଡ଼ର ଓଡ଼ିଶା ଲୁଣ୍ଠନ ଅର୍ଦ୍ଧଦଗ୍ଧ ଜଗନ୍ନାଥଙ୍କ ନାଭିସ୍ଥଳ ବ୍ରହ୍ମ ଉଦ୍ଧାର ଓ ଖୁରୁଙ୍ଗ ରାଜାଙ୍କ ଦ୍ୱାରା ନବ କଳେବରରେ ପ୍ରତିଷ୍ଠା ।

୧୫୭୫—

ମୋଗଲ ସଙ୍ଗେ ଦାଉଦଙ୍କର ସୁବର୍ଣ୍ଣରେଖା କୂଳରେ ତୁକାରୁଆଚଉରାଠାରେ ଯୁଦ୍ଧ । ମୋଗଲମାରୀଠାରେ ଦାଉଦ ଓ ତୋଡ଼ରମଲ୍ଲଙ୍କର ଯୁଦ୍ଧ ।

୧୫୭୬—

ତୋଡ଼ରମଲ୍ଲଙ୍କ ସହିତ ଦାଉଦଙ୍କର ଯୁଦ୍ଧ—ଦାଉଦ ହତ ।

**ଆକବର**—ରାଜତ୍ୱସମୟ, ଖ୍ରୀଷ୍ଟପୂର୍ବ
୧୫୬୮—୧୬୦୫ ଅବ୍ଦ

୧୫୭୧ରୁ ପଠାଣ ବିଦ୍ରୋହ ।

**ପୁରୁଷୋତ୍ତମଦେବ**—ରାଜତ୍ୱସମୟ, ଖ୍ରୀଷ୍ଟପୂର୍ବ
୧୬୦୦—୧୬୨୨ ଅବ୍ଦ

୧୫୮୦ ରେ ଅକବରଙ୍କ ଦ୍ୱାରା ତୋଡ଼ରମଲ୍ଲଙ୍କର ବଙ୍ଗ, ବିହାରର ଶାସନକର୍ତ୍ତାରୂପେ ନିଯୁକ୍ତ ମାନସିଂହଙ୍କ ସ୍ତ୍ରୀ ଗୌରୀ ରାଣୀଙ୍କ ଦ୍ୱାରା ମୁକ୍ତିମଣ୍ଡପ ନିର୍ମାଣ । ୧୫୮୨ରେ ତୋଡ଼ରମଲ୍ଲଙ୍କ ଓଡ଼ିଶା ବନ୍ଦୋବସ୍ତ ଓଡ଼ିଶାରେ ଭୋଇବଂଶର ପ୍ରତିଷ୍ଠା ରାମଚନ୍ଦ୍ର ଦେବ ଖୋରଧାର ସ୍ୱାଧୀନ ରାଜା ବୋଲି ସ୍ୱୀକାର । ୧୫୮୩ରେ କୁତୁବ ଖାଁ ପରାସ୍ତ ଓ କଳାପାହାଡ଼ ନିହତ । ୧୫୮୭ରେ ମାନସିଂହଙ୍କର ବଙ୍ଗର ସୁବାଦାର ପଦରେ ନିଯୁକ୍ତି ଓ ୧୫୯୦ରେ ଓଡ଼ିଶା ଆକ୍ରମଣ । ୧୫୯୨ ରେ ପୁରୀ ଆକ୍ରମଣ ଓ ଲୁଣ୍ଠନ । ମାନସିଂହଙ୍କ ଦ୍ୱାରା ପଠାଣ ଦୌରାତ୍ମ୍ୟରୁ ଓଡ଼ିଶାକୁ ମୁକ୍ତିଦାନ ଓ ଖୋରଧା ରାଜାଙ୍କ ରାଜ୍ୟ ବିସ୍ତାର—ମୁକୁନ୍ଦଦେବଙ୍କ ଦୁଇ ପୁତ୍ରଙ୍କୁ ଆଳି ଓ ପଟିଆ ରାଜ୍ୟର ରାଜସିଂହାସନ ପ୍ରଦାନ ।

**ଜାହାଙ୍ଗୀର**—ରାଜତ୍ୱସମୟ,
୧୬୦୫-୧୬୨୭ ଅବ୍ଦ

ମାନସିଂହଙ୍କର ବଙ୍ଗ, ବିହାର ଓ ଓଡ଼ିଶାର ସୁବାଦାର ପଦରେ ନିଯୁକ୍ତି । ୧୬୦୭ ରେ ଓଡ଼ିଶା ବଙ୍ଗସୁବାରୁ ପୃଥକ୍ ହେଲା ଓ ହାସିମ ଖା ଓଡ଼ିଶାର ପ୍ରଥମ ମୋଗଲ ସୁବାଦାର ହେଲେ । ୧୬୧୧ ରେ ରାଜା କଲ୍ୟାଣ ମଲ୍ଲଙ୍କର ଓଡ଼ିଶା ସୁବାଦାର ପଦରେ ନିଯୁକ୍ତି—ସାହାଜାନ ସମ୍ରାଟ୍ ଜାହାଙ୍ଗୀର ପୁତ୍ର ହୋଇ ପିତୃ ବିଦ୍ରୋହୀ ହେଲେ ଏବଂ ଓଡ଼ିଶାରେ ଆଶ୍ରୟ ଗ୍ରହଣ କଲେ ।

**ନରସିଂହଦେବ**—ରାଜତ୍ୱସମୟ,
୧୬୨୨-୧୬୪୭

**ଗଙ୍ଗାଧର ଓ ବଳଭଦ୍ର ଦେବ**—
ରାଜତ୍ୱସମୟ, ୧୬୪୭—୧୬୫୫

ହରିଶପୁର ଦୁର୍ଗର ରାଜା 'ଲକ୍ଷ୍ମୀପ' ପର୍ତ୍ତୁଗିଜ ମାନଙ୍କୁ ପରାସ୍ତ ଓ ବନ୍ଦୀକରି ଇଂରେଜ ବଣିକମାନଙ୍କ ରକ୍ଷା କଲେ । ମୁତାଦକ ଖାଁ ଓଡ଼ିଶାର ସୁବାଦାର ଇଂରେଜମାନଙ୍କୁ ଓଡ଼ିଶା ମଧ୍ୟରେ ସ୍ୱାଧୀନ ବାଣିଜ୍ୟ ଚଳାଇବାର ଅଧିକାର ପ୍ରଦାନ । ହରିହରପୁର (ଜଗତ୍‌ସିଂହପୁର) ଓ ବାଲେଶ୍ୱରରେ ଇଂରେଜ ମାନଙ୍କର ବାଣିଜ୍ୟକୋଠି ନିର୍ମାଣ । ତଦନନ୍ତର ପୁରୀ, ପିପିଲି ଓ ହିଜଲି ବନ୍ଦରରେ ସେମାନଙ୍କର ବାଣିଜ୍ୟ କୋଠି ସ୍ଥାପିତ । ପର୍ତ୍ତୁଗିଜ ଜଳଦସ୍ୟୁମାନଙ୍କ ଦ୍ୱାରା ଓଡ଼ିଶା ଉପକୂଳମାନ ଲୁଣ୍ଠନ

୧୬୪୮-୫୮ ସାହାଜାହାନଙ୍କର ୨ୟ ପୁତ୍ର ସୁଜା ବଙ୍ଗର ସୁବାଦାର ହେଲେ ଓ ଓଡ଼ିଶାକୁ ବଙ୍ଗର ଅନ୍ତର୍ଗତ ହେଲା ।

**ଆଓରଙ୍ଗଜେବ୍**—ରାଜତ୍ୱସମୟ, ୧୬୫୮-୧୭୦୭

**ମୁକୁନ୍ଦ ଦେବ**—ରାଜତ୍ୱସମୟ, ୧୬୫୫—୧୬୯୩

ମୁକୁନ୍ଦଦେବଙ୍କ ବିଦ୍ରୋହ- ୧୬୬୧ରେ ଖାନଦରାଣୀଙ୍କ ଦ୍ୱାରା ବିଦ୍ରୋହ ଦମନ, ରାଜାଙ୍କର ପଳାୟନ, ଭ୍ରମରବରଙ୍କ ରାଜ୍ୟ ପ୍ରଦାନ, ଓଡ଼ିଶାବ୍ୟାପୀ ବିଦ୍ରୋହ ଦମନ ଓ ଶାନ୍ତି ସ୍ଥାପନ । ୧୬୯୦ ରେ ଇଂରେଜମାନଙ୍କର ଆଓରଙ୍ଗଜେବଙ୍କ ଠାରୁ ସନନ୍ଦ ଗ୍ରହଣ ଓ ଓଡ଼ିଶା ବାଣିଜ୍ୟର ପୁନରୁଦ୍ଧାର ।,

୧୬୯୫ ରେ ମେଦନୀପୁରର ଘାଟାଲ ଅନ୍ତର୍ଗତ ଜମିଦାର ଶୋଭାସିଂହ ଓ ରହିମ୍‌ଖାଁଙ୍କ ଓଡ଼ିଶାରେ ଦୌରାତ୍ମ୍ୟ । ୧୭୦୦ ରେ ଓଡ଼ିଶାରେ ଭୀଷଣ ତୋଫାନ । ପୁରୀ ବଡ଼ଦେଉଳ ଉପର ନୀଳଚକ୍ର ଭଗ୍ନ । ୧୭୦୪ ରେ ମୁର୍ଶିଦକୁଲିଖାଁଙ୍କର ବଙ୍ଗ, ବିହାର ଓ ଓଡ଼ିଶାର ସୁବାଦାର ପଦରେ ନିଯୁକ୍ତି—୧୭୦୭ ରେ ସୁଜାଉଦ୍ଦିନଙ୍କର ଓଡ଼ିଶାର ନାଏବ ସୁବାଦାର ପଦରେ ନିଯୁକ୍ତି ଓ ଓଡ଼ିଶା ବନ୍ଦୋବସ୍ତ ଓ ଜମାବନ୍ଦି ଏବଂ ମେଦିନୀପୁର ଓଡ଼ିଶାରୁ ବିଚ୍ଛିନ୍ନତା-କଟକରେ କଦମ୍ବରସୁଲ ମସଜିଦ୍ ନିର୍ମାଣ—ସତ୍ୟନାରାୟଣ ପାଲାର ସୃଷ୍ଟି ।

## ମୋଗଲଶାସନର ଅବଶେଷ-

( ୧୭୦୭-୧୭୫୧ )

### ଦିବ୍ୟସିଂହ ଦେବ—ରାଜତ୍ୱସମୟ ୧୬୯୩ -୧୭୨୦

ଜଗନ୍ନାଥମନ୍ଦିର ଆକ୍ରମଣ-ଜଗନ୍ନାଥଙ୍କର ନବକଳେବର ଓ ପୁନଃ ପ୍ରତିଷ୍ଠା ।

### ହରେକୃଷ୍ଣ ଦେବ—ରାଜତ୍ୱସମୟ ୧୭୨୦--୧୭୨୫

'ଗୋଅନେଦ୍ଦି' ନାମକ ୪ର୍ଥ ଶ୍ରେଣୀ ସାମନ୍ତ ସୃଷ୍ଟି । ପୁରୀ ମନ୍ଦିର ଚୂନ ଦିଆଯାଇଥିଲା ଓ ବେଢ଼ପାଖ ଭିତର ବେଢ଼ା ଦ୍ୱାରଠାରୁ ଜଗମୋହନ ପର୍ଯ୍ୟନ୍ତ ପାହାଚ ନିର୍ମାଣ ।

### ଗୋପୀନାଥ ଦେବ—ରାଜତ୍ୱସମୟ ୧୭୨୫-୧୭୩୨

୧୭୨୪ ରେ ମହମ୍ମଦ ତକିଖାଁଙ୍କର ଓଡ଼ିଶାର ନାଏବ ନବାବ ପଦରେ ନିଯୁକ୍ତି-ଜଗନ୍ନାଥଙ୍କ ଉପରେ ଅତ୍ୟାଚାର—ପଣ୍ଡାମାନେ ଜଗନ୍ନାଥଙ୍କୁ ଚିଲ୍କା ପାର କରାଇ ହ୍ରଦ ମଧ୍ୟସ୍ଥିତ ଏକ ପର୍ବତ ଉପରେ ଲୁଚାଇ ରଖିଲେ ।

### ରାମଚନ୍ଦ୍ର ଦେବ—ରାଜତ୍ୱସମୟ ୧୭୩୨-୧୭୪୩

୨ୟ ରାମଚନ୍ଦ୍ର ଦେବଙ୍କ ବିଦ୍ରୋହ ଓ ଯୁଦ୍ଧ ଏବଂ ପରାସ୍ତ ହୋଇ ବନ୍ଦୀ । ଜଗନ୍ନାଥଙ୍କ ସେବା ପୂଜା ବନ୍ଦ । ସିଂହଦ୍ୱାର ମନ୍ଦିରରେ ପତିତପାବନ ମୂର୍ତ୍ତିର ପ୍ରତିଷ୍ଠା । ୧୭୩୪ ରେ ତକିଙ୍କର ମୃତ୍ୟୁ ଓ ମୁର୍ଶିଦକୁଲିଖାଁଙ୍କର ଓଡ଼ିଶାର ନାଏବ ନବାବ ପଦରେ ନିଯୁକ୍ତି-ରାମଚନ୍ଦ୍ରଦେବଙ୍କୁ କାରାମୁକ୍ତି ଦାନ—ଜଗନ୍ନାଥଙ୍କୁ ଆଣି ମନ୍ଦିର ମଧ୍ୟରେ ବସାଇବାର ସୁବିଧା ପ୍ରଦାନ-ରାମଚନ୍ଦ୍ରଦେବଙ୍କର ମୁର୍ଶିଦକୁଲିଙ୍କ କନ୍ୟାର ପାଣିଗ୍ରହଣ—୧୭୪୦ରେ ଅଲିବର୍ଦ୍ଦିଖାଁର ବଙ୍ଗସିଂହାସନ ଆରୋହଣ ଓ ଓଡ଼ିଶା ଆକ୍ରମଣ, ଯୁଦ୍ଧ ଏବଂ କଟକ ଅଧିକାର—ସୟଦ ଅହମ୍ମଦ ଖାଁଙ୍କର ଓଡ଼ିଶାର ଶାସନକର୍ତ୍ତା ପଦରେ ନିଯୁକ୍ତି—ମରହଟ୍ଟାମାନଙ୍କର ଓଡ଼ିଶା ଆକ୍ରମଣ, ଯୁଦ୍ଧ ଓ ପରାଜୟ ।

### ବୀରକିଶୋର ଦେବ—ରାଜତ୍ୱସମୟ ୧୭୪୩-୧୭୮୦

୧୭୪୫ ରେ ନାଗପୁର ଭୋନ୍‌ସଲା ରଘୁଜିଙ୍କର ଓଡ଼ିଶା ଲୁଣ୍ଠନ ଓ ଅଧିକାର । ୧୭୫୧ ରେ ମରହଟ୍ଟାମାନଙ୍କର ଓଡ଼ିଶାରେ ସ୍ୱାଧୀନରାଜତ୍ୱ ଆରମ୍ଭ । ସୁବର୍ଣ୍ଣରେଖା ନଦୀ ଓଡ଼ିଶା ଓ ବଙ୍ଗଦେଶର ସୀମା ନିର୍ଦ୍ଧାରଣ ।

### ଦିବ୍ୟସିଂହ ଦେବ—ରାଜତ୍ୱସମୟ ୧୭୮୦-୧୭୯୮



## ମରହଟ୍ଟା ରାଜତ୍ୱ ।

( ୧୭୫୧—୧୮୦୩ )

## ( ସୁବାଦାରଗଣ )

### ଶିବଭଟ୍ଟସାମନ୍ତରାଓ—(ସୁବାଦାର)୧୭୫୨—୬୪

ଖେମଣ୍ଡିରାଜା ନାରାୟଣଦେବଙ୍କର ଖୋର୍ଦ୍ଧା ଆକ୍ରମଣ, ଯୁଦ୍ଧ ଓ ପରାଜୟ । ୧୭୬୨ ରେ ଓଡ଼ିଶାରେ ନୂତନବନ୍ଦୋବସ୍ତ ଓ ଜମାବନ୍ଦି ।

### ଚିମନା ସାହୁ ଓ ଉଦୟପୁରୀ ଗୋସ୍ୱାମୀ

(ସୁବାଦାର) ୧୭୬୪

### ଭବାନୀ ପଣ୍ଡିତ—ସୁବାଦାର୧୭୬୪-୬୮

ମରହଟ୍ଟା ସୈନ୍ୟମାନଙ୍କର ଉତ୍କଟ ଅତ୍ୟାଚାର ।

### ଶମ୍ଭୁଜୀ ଗଣେଶ—(ସୁବାଦାର) ୧୭୬୮--୧୭୭୧

୧୭୭୦ ରେ ଓଡ଼ିଶାରେ ଭୀଷଣ ଦୁର୍ଭିକ୍ଷ ।

### ବାବାଜୀ ନାୟକ—(ସୁବାଦାର) ୧୭୭୧ ୧୭୭୩

### ମାଧୋଜୀ ହରି—(ସୁବାଦାର) ୧୭୭୩--୧୭୭୫

### ବାବାଜୀ ନାୟକ—(ସୁବାଦାର) ୧୭୭୫

ଅନ୍ୟନାମ ଭାର ଆକାଶ କୁସୁମ ॥

## ମାଧୋଜୀ ଭୂର—(ସୁବାଦାର) ୧୭୭୫—୧୭୭୮

୧୭୭୭ ରେ ପୁଣି ଦୁର୍ଭିକ୍ଷ

## ଭାଜାରାମ ପଣ୍ଡିତ—(ସୁବାଦାର) ୧୭୭୮-୧୭୮୨

## ସଦାଶିବ ରାଓ
## ଲଙ୍କାଜି ଶୁକଦେବ
## ବାଲାଜି କଞ୍ଚି

(ସୁବାଦାରଗଣ) ୧୭୮୨-୧୮୦୩

୧୮୦୩ ରେ ଇଂରେଜମାନଙ୍କର ଦେବଗ୍ରାମ ସନ୍ଧିରେ ଓଡ଼ିଶା ଅଧିକାର ଓ ମରହଟ୍ଟା ଶାସନ ଲୋପ ।

ଖୋରଧା ରାଜବିଦ୍ରୋହ-ଯୁଦ୍ଧ, ମୁକୁନ୍ଦଦେବ ବନ୍ଦୀ-ବିଦ୍ରୋହ ଅପରାଧରେ ଖୋରଧା ରାଜବଂଶର ବିଗତ ୩୦୦ ବର୍ଷରେ ରାଜତ୍ୱ ଲୋପ-ଖୋରଧା ଇଂରେଜ ସରକାରଙ୍କ ଖାସମାହାଲରେ ଯୋଗ ଖୋରଧା ପାଇଁ ମାସିକ ଟ ୨୧୩୩ ।/ ୪ ପାହ ମାଲିକାନା ସୂତ୍ରେ ରାଜବଂଶଧରଙ୍କଇ ପ୍ରାପ୍ତି—ଜଗନ୍ନାଥ ମନ୍ଦିରର ସକଳ ପରିଚାଳନାର ଭାର ତାଙ୍କ ହସ୍ତରେ ଅର୍ପଣ ।

## ୨ୟ ମୁକୁନ୍ଦଦେବ—୧୭୯୮—୧୮୧୭

( ଖୋରଧାର ଶେଷରାଜା )

୧୮୦୫ରେ ଓଡ଼ିଶାରେ ତିନିବର୍ଷ ପାଇଁ ନୂତନ ବନ୍ଦୋବସ୍ତ କରାଗଲା । ବୋର୍ଡ଼ ଅଫ୍ କମିସନର ପଦ ଓଡ଼ିଶାରୁ ଉଠିଗଲା ଏବଂ କଲିକତାର ବୋର୍ଡ଼ ଅଫ୍ କମିସନର ଅଧୀନରେ ରହିଲା ।

୧୮୦୬—ନିଲାମ ପ୍ରଥାର ସୃଷ୍ଟି ।

୧୮୦୬ରେ ମୁକୁନ୍ଦଦେବଙ୍କର ବନ୍ଦୀଶାଳାରୁ ମୁକ୍ତି-ଖୋରଧା ପାଇକ ବିଦ୍ରୋହ-ମୁକୁନ୍ଦଦେବ ପୁଣି ବନ୍ଦୀ ।

## ରାମଚନ୍ଦ୍ର ଦେବ—୧୮୧୭—୧୮୫୬

ପୁରୀ ବଡ଼ ଦାଣ୍ଡରେ ନୂତନ ନଅର ନିର୍ମାଣ ।

୧୮୧୭—ପାଇକ ବିଦ୍ରୋହ ।

୧୮୧୮—ଓଡ଼ିଶାରେ କମିସନର ପଦର ସୃଷ୍ଟି—ସେ ପୁଣି ଗଡ଼ଜାତର ସୁପରିଣ୍ଟେଣ୍ଡେଣ୍ଟ ହେଲେ ଓ ଜଣେ ସ୍ୱତନ୍ତ୍ର ଜଜ ନିଯୁକ୍ତ ହେଲେ । ଏହି ସାଲ ବନ୍ଦୋବସ୍ତ ଠାରୁ ଓଡ଼ିଶାର ପ୍ରଥମ ଜରିପ ଆରମ୍ଭ କରାଗଲା ।

୧୮୧୯—ବ୍ଲଣ୍ଟ ସାହେବ କମିସନର ହେଲେ ।

୧୮୨୨—ମିସନରୀମାନେ ପ୍ରଥମେ ଓଡ଼ିଶାକୁ ଆସିଲେ ।

୧୮୨୯—ଅତ୍ୟାଲ୍ଟ ସେସ୍‌ବିସ୍‌ରେ ମୟୂରଭଞ୍ଜ ଏକରାରନାମା ଲେଖି ଦେଲେ ।

୧୮୩୬—ଓଡ଼ିଶାରେ ଭୟଙ୍କର ଦୁର୍ଭିକ୍ଷ । ଜମିଦାରମାନଙ୍କ ସଙ୍ଗେ ୩୦ ବର୍ଷ ନିମନ୍ତେ ବନ୍ଦୋବସ୍ତ ସ୍ଥିର ହେଲା ।

୧୮୩୮—ଓଡ଼ିଶାରେ ମୁଦ୍ରାଯନ୍ତ୍ର ଓ ପୁରୀରେ ଇଂରେଜୀ ଓ ସଂସ୍କୃତ ସ୍କୁଲ ସ୍ଥାପନ ।

୧୮୪୦—ଯାତ୍ରୀ କର ଉଠାଇ ଦିଆଗଲା ଏବଂ ପୁରୀରାଜାଙ୍କ ହସ୍ତରେ ଜଗନ୍ନାଥମନ୍ଦିରର ସମ୍ପୂର୍ଣ୍ଣ ଓ ବିଶେଷ ଅଧିକାର ଦିଆଗଲା ।

୧୮୪୩—ମନ୍ଦିର ବ୍ୟୟ ନିମନ୍ତେ "ସତେଇଶ ହଜାରୀ ମାହାଲ" ରାଜାଙ୍କ ହସ୍ତରେ ପ୍ରଦାନ ।

୧୮୫୩—ବାଲେଶ୍ୱରରେ ଇଂରାଜୀ ସ୍କୁଲ ବସିଲା ।

## ୨ୟ ବୀରକିଶୋର ଦେବ—୧୮୫୬—୧୮୬୨

ଅପୁତ୍ରିକ ହେତୁ ବଡ଼ଖେମୁଣ୍ଡି ରାଜବଂଶରୁ ପୋଷ୍ୟ ପୁତ୍ର ଗ୍ରହଣ ।

## ୨ୟ ଦିବ୍ୟସିଂହ ଦେବ—୧୮୬୨—୧୮୭୭

୧୮୬୬—ଓଡ଼ିଶାରେ ଦୁର୍ଭିକ୍ଷ, କଟକ ବାଲେଶ୍ୱରରେ ଅନାଥାଶ୍ରମ ସ୍ଥାପନ, ଉତ୍କଳଦୀପିକାର ପ୍ରକାଶ ।

୧୮୬୮—କଟକରେ ଇଂରେଜୀ ହାଇସ୍କୁଲ ସ୍ଥାପନ ।

୧୮୬୯—କଟକରେ ନର୍ମାଲ୍ ସ୍କୁଲ ବସିଲା । କେନ୍ଦ୍ରାପଡ଼ା ଓ ଯାଜପୁରରେ ମ୍ୟୁନିସିପାଲିଟି ବସିଲା ।

୧୮୬୯—କେନାଲ କାର୍ଯ୍ୟ ଶେଷ ।

୧୮୬୫—ରେଭେନ୍ସା କଲେଜ ସ୍ଥାପନ ।

୧୮୭୭ ରେ ଦିବ୍ୟସିଂହ ଦେବ ଜଣେ ବାବାଜିର ପ୍ରାଣ ନାଶ କରିଥିବା ଅପରାଧରେ ଯାବଜୀବନ ଦ୍ୱୀପାନ୍ତର ।

## ଗଜପତି ମୁକୁନ୍ଦଦେବ—୧୮୭୭—୧୯୨୬

୧୮୭୬-୧୮୮୧—କଟକ, ପୁରୀ, ବାଲେଶ୍ୱର ଜିଲ୍ଲାରେ ଜିଲ୍ଲାବୋର୍ଡ଼ ଓ ମ୍ୟୁନିସିପାଲିଟିମାନ ସୃଷ୍ଟି କରାଗଲା ।

୧୮୭୮—ସମ୍ବାଦ ବାହିକାର ପ୍ରକାଶ ।

୧୮୯୬—ଚିଲିକା କୂଳରପ୍ରତ୍ୟେକ ମତ୍ସ୍ୟଜୀବିଙ୍କ ଉପରେ ଟ ୦ ୫ ଲେଖାଏଁ କର ଧାର୍ଯ୍ୟ କରାଗଲା ।

୧୯୦୦—ଲୁଣମରା ବ୍ୟବସାୟ ସମ୍ପୂର୍ଣ୍ଣ ବନ୍ଦ ହେଲା । ଗଭର୍ଣ୍ଣର ଜେନେରେଲଙ୍କ ଓଡ଼ିଶା ଆଗମନ ।

ବନ ପୋଡ଼ିଗଲେ ସମସ୍ତେ ଜାଣନ୍ତି ମନରେ ପୋଡ଼େ ମନ ।

୧୯୦୧—ଓଡ଼ିଶାର ସାନ୍ତ ବନ୍ଦୋବସ୍ତ କାର୍ଯ୍ୟ ଶେଷ ।

୧୯୦୫—ସମ୍ବଲପୁର ଓ ସନ୍ନିହିତ ଗଡ଼ଜାତମାନ ଓଡ଼ିଶାର ଅନ୍ତର୍ଭୁକ୍ତ ହେଲା ଓ ସମ୍ବଲପୁରରେ ଜଣେ ପଲିଟିକାଲ ଏଜେଣ୍ଟ ରହିଲେ ।

୧୯୦୭—ଓଡ଼ିଶାରେ ନଦୀବୃଦ୍ଧି, ମରୁଡ଼ି ଓ ଦୁର୍ଭିକ୍ଷ ।

୧୯୧୨—ଓଡ଼ିଶା ବଙ୍ଗଳାରୁ ପୃଥକ୍ ହୋଇ ବିହାର ସଙ୍ଗେ ମିଶି ଏକ ନୂତନ ଲେଫ୍ଟେନାଣ୍ଟଙ୍କ ଅଧୀନରେ ରହିଲା ।

୧୯୧୩—ଭାରତର ଭାଇସରାୟ ଏବଂ ଗଭର୍ଣ୍ଣର ଜେନେରେଲ ଲର୍ଡ ହାର୍ଡିଞ୍ଜ କଟକ ଆସିଥିଲେ ।

୧୯୨୦—ଶାସନ ସଂସ୍କାର ଓ ଜଣେ ଭାରତୀୟ ଲର୍ଡ ସତ୍ୟେନ୍ଦ୍ର ପ୍ରସନ୍ନ ସିଂହ ବିହାର ଓଡ଼ିଶାର ପ୍ରଥମ ଗଭର୍ଣ୍ଣର ହେଲେ ।

୧୯୨୧—ଆଇନ ଅମାନ୍ୟ ଆରମ୍ଭ ହେଲା । ଓଡ଼ିଶାର ପ୍ରାୟ ପ୍ରତି ଥାନାରେ ଆଶ୍ରମ ଖୋଲାଗଲା । ଦଳକୁଦଳ ସ୍ୱେଚ୍ଛାସେବକ ଯୋଗ ଦେଲେ ।

୧୯୨୨—ଓଡ଼ିଶାରୁ ଗଡ଼ଜାତ ବିଚ୍ଛିନ୍ନ ହେଲା । ମହାତ୍ମା ଗାନ୍ଧି ଓଡ଼ିଶାକୁ ଆସିଲେ ଓ ପ୍ରତି ଜିଲାରେ ବୁଲି ସଭାରେ ବକ୍ତୃତା ଦେଇ ଲୋକମାନଙ୍କୁ ବୁଝାଇଥିଲେ । ରେଭେନ୍ସା କଲେଜ ସ୍ଥାନାନ୍ତର-ଇନ୍ଦ୍ରଭୁବନର ପ୍ରତିଷ୍ଠା-ଶିଳ୍ପ ସଦନର ପ୍ରତିଷ୍ଠା-ବନ୍ୟା ବିତ୍ପାତ ଯୋଗୁଁ ଓଡ଼ିଶାରେ ଅସାମାନ୍ୟ କ୍ଷତି ।

## ୪ର୍ଥ ରାମଚନ୍ଦ୍ର ଦେବ—୧୯୨୬

୧୯୨୮—ପଣ୍ଡିତ ଗୋପବନ୍ଧୁ ଦାସଙ୍କ ପରଲୋକଗମନ ।

୧୯୩୦—ଲବଣ ଆଇନ ଅମାନ୍ୟ--ବନ୍ଦୋବସ୍ତ ଶେଷ ।

୧୯୩୩—ଇଚ୍ଛାପୁରରେ ନିଖିଳଉତ୍କଳ କବି ସମ୍ମିଳନୀ । ଓଡ଼ିଶା ସ୍ୱତନ୍ତ୍ର ପ୍ରଦେଶ ହେବାର ସୂଚନା ।

୧୯୩୪—ମହାତ୍ମା ଗାନ୍ଧିଙ୍କର ଓଡ଼ିଶାରେ ପଦବ୍ରଜରେ ଭ୍ରମଣ—ଭୟାନକ ଗ୍ରୀଷ୍ମ, ଉତ୍କଳର ବରପୁତ୍ର ମଧୁବାବୁଙ୍କର ତିରୋଧାନ ।

## ଓଡ଼ିଶାର ଭୌଗଳିକ ବିବରଣ

ପୂର୍ବେ ପ୍ରଦ୍ୟୁମ୍ନଙ୍କ ପୁତ୍ର ଉତ୍କଳ ଏହି ଦେଶର ରାଜାଥିଲେ ବୋଲି ଏହାର ନାମ ଉତ୍କଳ ହୋଇଅଛି । ଏହାର ରାଜାମାନେ 'ତ୍ରିକଳିଙ୍ଗାଧିପତି' ନାମରେ ଆପଣାର ପରିଚୟ ଦେଇଥିଲେ ଏହି ରାଜ୍ୟ ଉତ୍ତରରେ ଗଙ୍ଗାନଦୀ ଓ ଗୟାଠାରୁ ଦକ୍ଷିଣରେ ଗୋଦାବରୀ ନଦୀ ପର୍ଯ୍ୟନ୍ତ ଏବଂ ପୂର୍ବରେ ବଙ୍ଗୋପସାଗର ଓ ପଶ୍ଚିମରେ ମହାରାଷ୍ଟ୍ରଭାଷୀ ପ୍ରଦେଶ ପର୍ଯ୍ୟନ୍ତ ବିସ୍ତୃତ ଥିଲା । ସମ୍ପ୍ରତି ଏହି ବିଶାଳ ଉତ୍କଳ ରାଜ୍ୟ ଛିଡ଼ ଛିଡ଼—ବର୍ତ୍ତମାନ

**ସୀମା**—ଉତ୍ତରରେ ଛୋଟନାଗପୁର, ଦକ୍ଷିଣରେ ମାନ୍ଦ୍ରାଜ ଓ ବଙ୍ଗୋପସାଗର, ପୂର୍ବରେ ବଙ୍ଗୋପସାଗର ଓ ପଶ୍ଚିମରେ ମଧ୍ୟ ପ୍ରଦେଶ ଏବଂ ମାନ୍ଦ୍ରାଜ ରହିଅଛି ।

**ବିସ୍ତୃତି**—ଉତ୍ତର ଦିଗରେ ସୁବର୍ଣ୍ଣରେଖାଠାରୁ ଦକ୍ଷିଣରେ ଚିଲ୍କା ପର୍ଯ୍ୟନ୍ତ, ପଶ୍ଚିମରେ ମଧ୍ୟ ପ୍ରଦେଶଠାରୁ ପୂର୍ବରେ ସମୁଦ୍ର ପର୍ଯ୍ୟନ୍ତ ।

ଓଡ଼ିଶା ମୋଗଲବନ୍ଦୀ ଓ ଗଡ଼ଜାତ ଏହି ଦୁଇ ଭାଗରେ ବିଭକ୍ତ । ମୋଗଲବନ୍ଦୀରେ ବାଲେଶ୍ୱର, କଟକ, ପୁରୀ, ଅନୁଗୁଳ ଓ ସମ୍ବଲପୁର ଏ ପାଞ୍ଚଗୋଟି ଜିଲା ଏବଂ ମୟୁରଭଞ୍ଜ ପ୍ରଭୃତି ୨୬ ଗୋଟି ଗଡ଼ଜାତ ମାହାଲ ମିଶି ଓଡ଼ିଶା ବିଭାଗ ଗଠିତ । ମୋଗଲବନ୍ଦୀର ୫ ଗୋଟି ଜିଲାର କ୍ଷେତ୍ରଫଳ ୧୩୭୫୨ ବର୍ଗମାଇଲ ଓ ଗଡ଼ଜାତମାହାଲ ମାନଙ୍କର କ୍ଷେତ୍ରଫଳ ୨୮୬୬୪ ବର୍ଗମାଇଲ । ମୋଟ ଓଡ଼ିଶାର କ୍ଷେତ୍ରଫଳ ୪୨୪୧୬ ବର୍ଗମାଇଲ । ମୋଗଲବନ୍ଦୀର ଲୋକସଂଖ୍ୟା ୫୩୦୫୨୮୬

ଗଡ଼ଜାତମାନଙ୍କର ଲୋକସଂଖ୍ୟା ୩୮୧୭୦୭୨ । ମୋଗଲବନ୍ଦୀରେ ପ୍ରତିବର୍ଗମାଇଲରେ ୩୭୦ ରୁ ଅଧିକ ଓ ଗଡ଼ଜାତରେ ସେହି ପରିମାଣ ଭୂମିରେ ୧୩୬ଜଣ ମାତ୍ର ଲୋକ ବାସକରନ୍ତି । ଏବେ ଖରସୁଆଁ ଓ ସରେଇକଳା ଦୁଇଟି ଷ୍ଟେଟ ଓଡ଼ିଶା ସହିତ ମିଶିଅଛି । ଏହି ଦୁଇରାଜ୍ୟର ଲୋକସଂଖ୍ୟା ୧ ଲକ୍ଷ ୮୨ ହଜାର ଅଟେ ।

## ଓଡ଼ିଶାର ପର୍ବତ

ବଙ୍କାଶ୍ୟାମ, କରଲାପାଟ ମାଳଭୂମି, ଟକରଗୁଡ଼, ବମ୍ଲିଆମାଳ, ମାଲ୍ୟଗିରି, ମେଘାସନ, ମାଙ୍କଡ଼ନାଚ, ବାଦାମଗଡ଼, କୁମ୍ଭିତାର, ଛେଳିଆଟୋକା, ଗନ୍ଧମାଦନ, ଠାକୁରାଣୀ, ପଞ୍ଚଧାର, ତୋମାକ, ଗୋଅଲଦେଓ, ଘୁଲିଆ, କପିଳାସ, ବାଙ୍କମୁଣ୍ଡୀ, କନକଧାର, ଖଲାଅମ୍ବା, ଏରସଦା, ଘୁମେଇ, ଦଣ୍ଡିକଥ, ବୁମୁନ, ମହେନ୍ଦ୍ର, ଦାମସିଙ୍ଗା, ପେରଅସାରୁ,

ଘୋର,ସାଳଦା, ଜେରୁଜ, ବୋଦା, ଲେସ୍‌ବୁମ୍ମା, ଡଙ୍ଗାର, ରଣପାଟଳ, ପଗ୍ରଣି, ପକାଳି, ପେଟ୍ଟଙ୍ଗଆ ଓ ପାକାଟୋଇ ଅଲମଗିର ।

## ଘାଟି

କୁଲଅନା, ମିନା, ବାରବାଙ୍କ, ଗୋବସ୍ର, ବୁଢାବୁଢ଼ି, କୁକୁଡ଼ା, ବାମନଘାଟି, କୁମାର ଖୋଲ, ପାଣିଶାଳ, ବବଢ଼ଙ୍ଗଆ ବୁଦ୍ଧା, ଗୋଛସାହ, ବଡ଼ମୂଳ ।

## ହ୍ରଦ

ଚିଲକା, ସର, ଅଂଶୁପା ।

## ଦ୍ୱୀପ

ଧାମରା ଓ ମହାନଦୀ ମୁହାଣରେ ଏବଂ ଚିଲକାହ୍ରଦ ମଧ୍ୟରେ କେତେ ଗୁଡଏ ଦ୍ୱୀପ ଅଛି ।

## ଅନ୍ତରୀପ

ପାଲମିରା ଓ ଫଲ୍‌ସ ପଏଣ୍ଟ ।

## ବନ୍ଦର

ପିପିଲି; ଚୁଡ଼ାମଣି ଓ ଫଲ୍‌ସ ପଏଣ୍ଟ ।

## ଜଳପ୍ରପାତ-

୧ ବାମଣ୍ଡା ରାଜ୍ୟର ପଞ୍ଚଖଣ୍ଡା ପର୍ବତ ନିକଟରେ 'ପ୍ରଧାନପାଟ'

୨ ମୟୂରଭଞ୍ଜ ଭିତରେ ବୁଢ଼ାବଳଙ୍ଗ ନଦୀରେ 'ବରେହିପାଣି'।

## ଉଷ୍ଣ ପ୍ରସ୍ରବଣ

ଖୋରଧାଠାରୁ ଆଠମାଇଲ ଦୂର ଅଟ୍ଟକେଶ୍ୱରଠାରେ (ଅତ୍ରି) ଉଷ୍ଣ ପ୍ରସ୍ରବଣ ଅଛି ।

## ଗଣ୍ଡ

ବୌଦର ସୁନାଖଣିଆଠାରୁ ଦଶପଲ୍ଲାର ବଡ଼ମୂଳ ଯାଏଁ ମହାନଦୀ ଅତି ଅଣଓସାରିଆ ଓ ଗହିରା । ଏ ସ୍ଥାନର ଦୁଇ କୂଳରେ ପର୍ବତ ପାଚେରୀ ପରି ଠିଆ ହୋଇ ରହିଅଛି । ଏହା ଏତେ ଉଚ୍ଚ ଯେ, ନଦୀ ଜଳରେ ସୂର୍ଯ୍ୟ କିରଣ ପଡ଼େନାହିଁ । ଏହି ଅଂଶକୁ ସାତକୋଶିଆ ଗଣ୍ଡ କହନ୍ତି ।

## ରେଲ ରାସ୍ତା

(୧) ବେଙ୍ଗଲନାଗପୁର ରେଲଓ୍ୱେ (୨) ମୟୂରଭଞ୍ଜର ରେଲ ରାସ୍ତା (୩) ତାଳଚେର ଲାଇନ୍ (୪) ସମ୍ବଲପୁର ରେଲ୍ ଲାଇନ (୫) ଟାଟାନଗରଠାରୁ ବାଦାମ ପାହାଡ଼ଯାଏ ୫୫ ମାଇଲ ଓ ଏହି ଲାଇନର ଓଲମାନଯୋଡ ଷ୍ଟେସନରୁ ଗୋରୁମହିଷାଣୀ ୭ ମାଇଲ ।

## ମଟର ରାସ୍ତା

### ବାଲେଶ୍ୱର ଜିଲାରେ

ବାଲେଶ୍ୱରଠାରୁ ରେମୁଣା ଯାଏ ଏବଂ ଭଦ୍ରକଠାରୁ ଚୁଡ଼ାମଣି ଓ ଧାମନଗର ଯାଏ ମଟର ଗତାୟାତ କରେ ।

### କଟକ ଜିଲାରେ

କଟକ ସହରରୁ ଜଗତ୍‌ସିଂହପୁର ବା ହରିହରପୁର, ବାଲିକୁଦା, ତାରପୁର, ଅନନ୍ତପୁର ଓ ମାଛଗାଁ । କଟକ ପାଖ ମୁଣ୍ଡମୁହାଣଠାରୁ ବାଙ୍କି ଓ ବୈଦେଶ୍ୱର । ଯାଜପୁର ରୋଡ଼ ଷ୍ଟେସନ ଠାରୁ ଯାଜପୁର ଓ କେନ୍ଦୁଝରର ଆନନ୍ଦପୁର । ଜଗତ୍‌ପୁର ଷ୍ଟେସନଠାରୁ କେନ୍ଦ୍ରାପଡ଼ା ଓ ପଟ୍ଟାମୁଣ୍ଡେଇ ।

### ପୁରୀ ଜିଲାରେ

ପୁରୀ ସହରଠାରୁ ପିପିଲି, କୋଣାର୍କ, ନୟାଗଡ଼, ଚନ୍ଦ୍ରଭାଗା ଓ ସତ୍ୟବାଦୀପୁର । କଇଁଶି ଷ୍ଟେସନଠାରୁ ବୋଲଗଡ଼ ନୟାଗଡ଼ ଓ କଳାପଥର ।

### ସମ୍ବଲପୁର ଜିଲାରେ

ସମ୍ବଲପୁର ସହରଠାରୁ ବରଗଡ଼, ବରପାଲି; ପାଟଣାର ବଲାଙ୍ଗୀର ଓ କଳାହାଣ୍ଡି ଷ୍ଟେଟର ଭବାନୀପାଟଣା ।

### ଗଡ଼ଜାତରେ

ତାଳଚେର ରେଲଲାଇନର ରାଜ ଆଠଗଡ଼ ଷ୍ଟେସନଠାରୁ ନରସିଂହପୁରଷ୍ଟେଟ୍; ମେରାମଣ୍ଡଳୀ ଷ୍ଟେସନଠାରୁ ଅନୁଗୁଳ, ରେଢ଼ାଖୋଲ ଓ ସମ୍ବଲପୁର ।

---

ମନସିନା ସର୍ବ ସୁଖର ନିଦାନ ମନଟ ଦୁଃଖ କାରଣ ।

# ନଦୀ

| (ନଦୀର ନାମ) | (ଉତ୍ପତ୍ତି ସ୍ଥାନ) | (ପତନ ସ୍ଥାନ) | (ଉପନଦୀ) | (ଶାଖାନଦୀ) | (କୂଳସ୍ଥିତ ପ୍ରଧାନ ସ୍ଥାନ) |
|---|---|---|---|---|---|
| ୧—ମହାନଦୀ | ରାଏପୁର | ବଳାଶର ଠାରେ ସମୁଦ୍ରରେ | ଇବ, ଅଙ୍ଗ, ଦଣ୍ଡାପାଟ, ମାହେନ୍ଦ୍ରୀ, ସାପୁଅ, କୁସୁମି, କମେଇ, ଯୋଡ଼ାମୁ, ସିଳାମଣ୍ଡା, ଗାଣ୍ଡୁଣୀ ବୋଲତ, ସାଲଙ୍କୀ, ବାଘ ଓ ମାରଣୀ, | କାଠଯୋଡ଼ି, ପାଇକା, ଚନ୍ଦ୍ରପୁଲା, ନୁଣା ଓ ବିରୁପା । | ସମ୍ବଲପୁର, ବୌଦ, କଣ୍ଟିଲୋ, ପଦ୍ମାବତୀ, ବୈଦ୍ୟେଶ୍ୱର, ବାଙ୍କପୁର, ଚଣ୍ଡିକା ଓ କଟକ । |
| ୨—ବ୍ରାହ୍ମଣୀ— | ଛୋଟନାଗପୁର ଲୋହାରଡାଗା | ଧାମରାଠାରେ ସମୁଦ୍ରରେ | ଲଙ୍କର | ପାଟୁଆ ଓ ଖରସୁଆ | ତାଳଚେର, ଢେଙ୍କାନାଳ, ଧର୍ମଶାଳା ଓ ପଟ୍ଟାମୁଣ୍ଡାଇ । |
| ୩—ବୈତରଣୀ— | କେନ୍ଦୁଝରର ଗୋନାସିକା ପର୍ବତରୁ | ଧାମରାଠାରେ ସମୁଦ୍ରରେ | ଖଯୁରା, ଭଣ୍ଡନା, ମୂଷଳ, ସାଳନ୍ଧ, ଓ ମତେଇ | | ଆନନ୍ଦପୁର, ଯାଜପୁର, ଶୁଭବାଲି । ସାଳନ୍ଧ କୂଳରେ କାଉପୁର, ଭଦ୍ରକ । |
| ୪—କାଁଶବାଁଶ— | ଗଡ଼ଜାତର ଅମ୍ବହତା ଅଞ୍ଚଳରୁ | ଲଇଛଣପୁର ଠାରେ ସମୁଦ୍ରରେ | ଗମେଇ | ସୋର | |
| ୫—ବଲଙ୍ଗ— | ମୟୂରଭଞ୍ଜର ଶିମୂଳପାଳ ପର୍ବତରୁ | ସମୁଦ୍ରରେ | | ଚପଟ, ସୋନ ଓ ଗଙ୍ଗାହାର | ବାରିପଦା ଓ ବାଲେଶ୍ୱର । |
| ୬—ସୁବର୍ଣ୍ଣରେଖା— | ଛୋଟନାଗପୁରର ରାଞ୍ଚି ମାନଭୂମିରୁ | ସମୁଦ୍ରରେ | | ଗୁଛିନ୍ଦା | ଲକ୍ଷ୍ମଣନାଥ, ଜଳେଶ୍ୱର ଓ ବାଲିଆପାଳ । |

## ବିହାର ଓ ଓଡ଼ିଶା ପ୍ରଦେଶର ଶାସନତନ୍ତ୍ର

କ୍ଷେତ୍ରଫଳ ତେୟାଅଶୀହଜାର ଏକଶତ ଏକାଅଶୀ ବର୍ଗ ମାଇଲ । ଲୋକସଂଖ୍ୟା ତିନିଶତ ସତେଇଶ ଲକ୍ଷ ନବେ ହଜାର ତିନିଶତ ଛପନ । ବିହାର ଓଡ଼ିଶାର ଗଭର୍ଣ୍ଣମେଣ୍ଟ ଜଣେ ଗଭର୍ଣ୍ଣର ଓ ତିନିଜଣ ଇକ୍ସିକ୍ୟୁଟିଭ ମେମ୍ବରଙ୍କୁ ନେଇ ଗଠିତ । ଗଭର୍ଣ୍ଣରଙ୍କର ସେହି ତିନିଜଣ ମନ୍ତ୍ରଣାଦାତାଙ୍କ ମଧ୍ୟରୁ ଜଣେ ଭାରତୀୟ ରହିଛନ୍ତି । ଲୋକେଲ୍‌ସେଲ୍ଫ ଗଭର୍ଣ୍ଣମେଣ୍ଟପାଇଁ କେତେକ କ୍ଷମତା ଲୋକମାନଙ୍କୁ ଦିଆଯାଇ ଥିବାରୁ ତାହାଙ୍କର ଦୁଇଜଣ ମନ୍ତ୍ରୀ ଅଛନ୍ତି ।

ଗଭର୍ଣ୍ଣରଙ୍କର ସଭାକୁ ଲେଜିସ୍‌ଲେଟିଭ କାଉନ୍‌ସିଲ କୁହାଯାଏ । ସେଥିରେ ୧୦୩ଜଣ ମେମ୍ବର ଥାନ୍ତି—ସେଥି ମଧ୍ୟରୁ ୭୬ଜଣ ନିର୍ବାଚିତ ଏବଂ ୨୭ଜଣ ମନୋନୀତ ସଭ୍ୟ । ଉଲ୍ଲେଖିତ ୨୭ଜଣଙ୍କ ମଧ୍ୟରୁ ୧୮ଜଣରୁ ଅଧିକ ସରକାରୀ କର୍ମଚାରୀ ରହିବେ ନାହିଁ । ଗଭର୍ଣ୍ଣରଙ୍କର ଜଣେ ଚିଫ୍ ସେକ୍ରେଟେରୀ ଏବଂ ଜଣେ ପ୍ରାଇଭେଟ ସେକ୍ରେଟେରୀ ଅଛନ୍ତି ।

ମନ ଯେବେ ନାହିଁ ସୁଖ ଏ ସଂସାରେ ସବୁ ହୁଏ ଅକାରଣ ॥

## ବୃଷ୍ଟି

ବର୍ଷକ ମଧ୍ୟରେ ହାରାହାରି ୬୦ ଇଞ୍ଚ ପର୍ଯ୍ୟନ୍ତ ଜଳ ବର୍ଷା ହୁଏ ।

## ଓଡ଼ିଶାର ରାଜନୈତିକ ବିଭାଗ

| (ଜିଲ୍ଲା) | (କ୍ଷେତ୍ରଫଳ) | (ସବ୍‌ଡିଭିଜନ) | (ପ୍ରଧାନ ନଗର) | (ପୁଲିସ ଷ୍ଟେସନ ସଂଖ୍ୟା) | | (ଗ୍ରାମସଂଖ୍ୟା) | (ଲୋକସଂଖ୍ୟା) |
|---|---|---|---|---|---|---|---|
| କଟକ | ୩୬୭୩ ବର୍ଗମାଇଲ | କଟକ<br>କେନ୍ଦ୍ରାପଡ଼ା<br>ଯାଜପୁର | କଟକ<br>କେନ୍ଦ୍ରାପଡ଼ା<br>ଯାଜପୁର | ୧୩<br>୭<br>୭ | ୨୫ | ୫,୭୨୧ | ୨୧୭୭୩୫୦ |
| ବାଲେଶ୍ୱର | ୨୦୮୫ ବର୍ଗମାଇଲ | ବାଲେଶ୍ୱର<br>ଭଦ୍ରକ | ବାଲେଶ୍ୱର<br>ଭଦ୍ରକ | ୧୪<br>୯ | ୨୩ | ୩,୪୮୫ | ୧୧୦୫୧୧ |
| ପୁରୀ | ୨୪୯୯ ବର୍ଗମାଇଲ | ପୁରୀ<br>ଖୋର୍ଦ୍ଧା | ପୁରୀ<br>ଖୋର୍ଦ୍ଧା | ୧୩<br>୯ | ୨୨ | ୩,୦୪୦ | ୧୦୩୪୮୫୧ |
| ସମ୍ବଲପୁର | ୩୮୨୪ ବର୍ଗମାଇଲ | ସମ୍ବଲପୁର<br>ବରଗଡ଼ | ସମ୍ବଲପୁର<br>ବରଗଡ଼ | ୯<br>୧୩ | ୨୨ | ୧,୧୭୯ | ୮୮୦୮୫୭ |
| ଅନୁଗୁଳ | ୧୬୮୧ ବର୍ଗମାଇଲ | ଅନୁଗୁଳ<br>କନ୍ଧମାଳ | ଅନୁଗୁଳ<br>ଫୁଲବାଣୀ | ୫<br>୪ | ୯ | ୧,୫୭୨ | ୨୨୨୬୧୦ |
| ୫ | | ୧୧ | ୧୧ | | ୧୦୧ | ୧୫,୭୮୫ | ୫୩୦୫୨୮୭ |

## ଓଡ଼ିଶାର କମିଶନର

୧୮୫୪—ମି. ଦ, ଯେ, କଲଭିନ
୧୮୫୬—ମି. ଇ, ଏ, ସାମୁଏଲ
୧୮୫୭—ମି. ଜ, ଏଫ, କକ୍‌ବର୍ଣ୍ଣ
୧୮୬୩—ମି. ଅର୍, ଏନ୍, ଷ୍ଟୋର
୧୮୬୫—ମି. ଟି, ଇ, ରେଭେନ୍ସା
୧୮୬୭—ମି. ଭ, ଏଚ, ସ୍ମିଥ
୧୮୬୯—ମି. ଟି, ଇ, ରେଭେନ୍ସା
୧୮୭୦—ମି. ଇ, ଡବଲ୍ୟୁ, ମଲନ
୧୮୭୧—ମି. ଟି, ଇ, ରେଭେନ୍ସା
୧୮୭୯—ମି. ଏ, ସ୍ମିଥ୍
୧୮୮୪—ମି. ସି, ଟି, ମେଟ୍‌କାଫ
୧୮୮୭—ମି. ସି, ଏଫ, ଉଆର୍ସଲି
୧୮୯୧—ମି. ଜ, ଟଏନ୍‌ବ
୧୮୯୨—ମି. ଏଚ, ଜ, କୁକ୍
୧୮୯୫—ମି. ଅର୍, ସି, ଦତ୍ତ
୧୮୯୭—ମି. ଏଚ, ଜ, କୁକ୍

ନାହିଁ ଯାହା ପିଣ୍ଡେ ନାହିଁ ତା ବ୍ରହ୍ମାଣ୍ଡେ ସୃଷ୍ଟି ମତ ଅନୁଯାୟୀ ।

୧୮୯୮—ମି. ଜ, ଷ୍ଟିଭେନ୍ସନ୍
୧୮୯୯—ମି. ସି, ଅର, ମାର୍ଟିନ୍‌ଡ଼ନ
୧୯୦୦—ମି. ଇ, ବ, ହ୍ୱାଇସ
୧୯୦୧—ମି. ଅର, କାର୍ଷ୍ଟେୟାର୍ସ
୧୯୦୨—ମି. କେ, ଜ, ଗୁପ୍ତ
୧୯୦୩—ମି. ଏଫ, ଏନ୍ ଫିସର
୧୯୦୪—ମି. ଏଫ, ଡବଲଉ, ଡ଼ଉକ
୧୯୦୫—ମି. ଇ, ଭ, ଲେଭଞ୍ଜ
୧୯୦୬—ମି. ଅର, ଟି, ଗ୍ରିଅର
୧୯୦୭—ମି. ଏଫ, ଡବଲ୍ଉ, ଡଉକ
୧୯୦୭—ମି. ଇ, ଭ, ଲେଭଞ୍ଜ
୧୯୦୮—ମି. ଏଲ, ବର୍ଲି
୧୯୦୯—ମି. ଇ, ଭ, ଲେଭଞ୍ଜ
୧୯୧୦—ମି. ଏଲ, ବର୍ଲି
୧୯୧୦—ମି. ଜେ, ଏଚ, ଇ, ଗେରେଟ
୧୯୧୦—ମି. ଏଲ, ବର୍ଲି
୧୯୧୦—ମି. ଏର୍, ଇ, ଗେରେଟ
୧୯୧୦—ମି. ଇ, ଭ, ଲେଭଞ୍ଜ
୧୯୧୧—ମି. ଜେ, କ୍ଲାର୍କ
୧୯୧୧—ମି. ଇ, ଭ, ଲେଭଞ୍ଜ
୧୯୧୨—ମି. ଡବଲଉ, ଇଜରଟନ୍
୧୯୧୩—ମି. ଏଫ, ଏନ, ଫିସର
୧୯୧୪—ମି. ଜେ, ଏଫ, ଗ୍ରୁନିଂ
୧୯୧୫—ମି. ଇ, ଏଚ, ବର୍ଥୁଡ୍
୧୯୧୬—ମି. ଏଚ, ଲି, ମଷ୍ଟ୍ରଅର
୧୯୧୫—ମି. ବ, ଫଲି
୧୯୧୫—ମ. ଏଚ, ଲି, ମସ୍ତ୍ରଅର
୧୯୧୭—ମି. ଜେ, ଏଫ, ଗ୍ରୁନିଂ
୧୯୨୧—ମି, ବ, ଫଲି
୧୯୨୨—ମି. ଡ, ଓସ୍ଟ୍ରେନ
୧୯୨୨—ମି. ଏଚ, ଟି, ଏସ୍, ଫରେଷ୍ଟ
୧୯୨୩—ମି, ଡ, ଓସ୍ଟ୍ରେନ୍
୧୯୨୩—ମି. ଅର୍, କଲ

୧୯୨୩—ମି. ଏଚ, ଟି, ଏସ୍, ଫରେଷ୍ଟ
୧୯୨୪—ମି, ଏ, ଏଲ, ଇଂଲଣ
୧୯୨୪—ମି. ପି, ଟି, ମେନୁଫିଲ୍ଡ୍
୧୯୨୪—ମି. ପି, ଡବଲଉ, ମରଫେ
୧୯୨୪—ମି. ଏଚ, ଟି, ଏସ୍, ଫରେଷ୍ଟ
୧୯୨୫—ମି, ଜେ, ଏ, ହଭକ୍
୧୯୨୫—ମି. ବ, ସି, ସେନ୍
୧୯୨୮—ମି. ଏନ୍, ଏଫ, ପେକ୍ I.C.S.
୧୯୨୯—ମି. ଜେ, ଏ, ହଭକ
୧୯୨୯—ମି. ଏନ୍, ଏଫ୍, ପେକ ,,
୧୯୩୦—ମି. ଜେ, ଏ, ହଭକ୍ ,,
୧୯୩୦—ମି. ସି, ଏଲ୍, ଫିଲ୍‌ଡ୍ C.I.E. I.C.S.
୧୯୩୩—ମି. ଇ, ଏଚ, ହର୍ଣ୍ଣେଲ
୧୯୩୩—ମି. ଏ, ଡ, ଟେଲ
୧୯୩୪—ମି. ଏ, ଅର, ଟଫଲସ୍ I.C.S.



## ଓଡ଼ିଶାର ଜଜ୍

୧୮୫୦ ମି. ଏନ୍, ଏସ୍, ଗିଲ୍‌ମୋର
୧୮୫୭ ମି. ଯେ, ଯେ, ଉଅଡ଼
୧୮୬୧ ମି. ଅର୍, ଏନ୍, ସୋର
୧୮୬୨ ମି. ଓ, ହୁଗ୍ଗଡ଼
୧୮୬୫ ମି. ଅର୍, ଅଲେକ୍‌ଜାଣ୍ଡର
୧୮୭୩ ମି. ଯେ, ଏଫ. ବ୍ରାଉନ
୧୮୮୦ ମି. ଡବଲଉ, ମାକ୍‌ଫର୍ସନ
୧୮୮୪ ମି. ଯେ, ବ, ଉଅରଗନ୍
୧୮୮୮ ମି. ଏଫ୍, ବ, ଟେଲର୍
୧୮୮୯ ମି. ଏ, ଇ, ଷ୍ଟେଲି
୧୮୮୯ ମି. ଯେ, ବ, ଓ୍ୟାରତାନ୍
୧୮୯୦ ମି. ଯେ, ଜ, କାମ୍ପବେଲ
୧୮୯୦ ମି. ବ, ଏଲ୍ ଗୁପ୍ତ
୧୮୯୫ ମି. ଏଫ୍, ଇ, ପାର୍ଜିଟର

ସାରବୃଷ୍ଟି ଶୂନ୍ୟ ଶୁଷ୍କମରୁ ସର ମନେ ଯେବେ ସୁଖ ନାହିଁ ॥

୧୮୯୬ ମେ: ଏ, ପି, ସେନ୍
୧୮୯୭ ମେ: ଡବଲିଉ, ଭି, ବ୍ରାଉନ
୧୯୦୧ ମେ: ଇ, ଏସ, କନଷ୍ଟାଣ୍ଟ
୧୯୦୧ ମେ: ଏଚ, ହଅଲ୍‌ପେଲ
୧୯୦୧ ମେ: ବି, ସି, ମିତ୍ର
୧୯୦୩ ମେ: ଡବଲିଉ, ଟିଉନନ
୧୯୦୪ ମେ: ଇ, ଭି, ଏଚ୍, ପେଣ୍ଟନ
୧୯୦୪ ମେ: ଡବଲିଉ, ଟିଉନନ୍
୧୯୦୫ ମେ: ଏସ୍, ଏସ୍, ସ୍ପେନର
୧୯୦୫ ମେ: ଯେ, ଯେ, ପ୍ଲାଟେଲ
୧୯୦୯ ମେ: ଏଲ୍, ସି, ଏଡ଼ାମି
୧୯୦୯ ମେ: ଜେ, ମୁଖାର୍ଜି
୧୯୦୯ ମେ: ଆର୍, ଏଲ୍, ରସ
୧୯୧୦ ମେ: ଟି, ଏସ୍, ମେକ୍‌ଫର୍ସନ
୧୯୧୦ ମେ: ଏଲ୍ ସି, ଏଡାମି
୧୯୧୨ ମେ: ଏନ୍, କେ, ଦତ୍ତ
୧୯୧୨ ମେ: ଏଲ୍, ସି, ଏଡ଼ାମି
୧୯୧୨ ମେ: ଏଚ୍, ଆର, ଟି, ଏସ୍, ପେରଟ
୧୯୧୩ ମେ: ଏ, ଇ, ସ୍କଟ୍
୧୯୧୪—ମି. ଏସ୍, ଭି, ଧବଲେ (Dhavle)
୧୯୧୪—ମି. ଏଚ୍, ଏଲ, ଏଲ, ଏଲେନସନ (Allanson)
୧୯୧୬—ମି. ଏଚ, ଡବଲିଉ, ଉଇଲିୟମ୍‌ସ୍ (Williams)
୧୯୧୮—ମି ଏଚ. ଏଲ. ଏଲେନସନ୍ (Allanson)
୧୯୧୯—ମି. ଡ, ଏଚ; କଙ୍ଗ୍‌ସ୍‌ଫୋର୍ଡ (Kingsford)
୧୯୨୦—ମି. ଏଫ୍, ଏଫ୍, ମେଡ୍ଡେନ (Madan)
୧୯୨୦—ମି. ଡ, ଏଚ, କଙ୍ଗ୍‌ସ୍‌ଫୋର୍ଡ (Kingsford)
୧୯୨୧—ମି. ଏସ୍, ସି. ମିତ୍ର, ସବ୍ ଜଜ୍ ଅଫସିଏଟିଂ (Mitra)
୧୯୨୧—ମି. ଡ଼, ଏଚ, କିଂସ୍‌ଫୋର୍ଡ (Kingsford)
୧୯୨୨—ମି. ଏଚ, ଇ, ହର୍ସଫିଲ୍ଡ (Horsfield)
୧୯୨୨—ମି. ଏସ୍, ଭି, ଧବଲେ (Dhavle)
୧୯୨୨—ମି. ଏସ୍, ସି, ମିତ୍ର, ସବ୍-ଜଜ୍ ଅଫସିଏଟିଂ (Mitra)
୧୯୨୩—ମି. ଏସ୍, ଭି, ଧବଲେ (Dhavle)
୧୯୨୩—ମି, ଓ୍ୟାଇ, ଏ, ଗଡ୍‌ବୋଲ (Godbole)
୧୯୨୪—ମି. ଏସ୍, ଭି, ଧବଲେ (Dhavle)
୧୯୨୪—ମି. ସି, ଏଚ, ରେଡ୍ଡ (Reid)
୧୯୨୫—ମି. ଏସ, ଭି, ଧବଲେ (Dhavle)
୧୯୨୫—ମି, ଜେ, ଜି, ସିଅରର (Shearer)
୧୯୨୬—ମି, ଜି, ଜେ, ମନହାନ (Monahan
୧୯୨୭—ମି, ଡି, କେ, ଘୋଷ, ସବ୍-ଜଜ୍ ଅଫିସିଏଟିଂ (Ghose)
୧୯୨୭—ମି. ଜି, ଜେ, ମନ୍‌ହାନ୍ (Monahan)
୧୯୨୭—ମି, ଏଚ, ଆର, ମେରେଡ଼ିଥ୍ (Meredith)
୧୯୨୯—ମି, ଡ, ଇ, ରୁବେନ (Reuben)
୧୯୩୨—ମି, ଏଫ, ଏଫ, ମେଡ୍ଡେନ (Madan)
୧୯୩୪—ମି. ଏ, ମୁଖାର୍ଜି (Mukherji)

## କଟକ ଜିଲ୍ଲା ।

ସୀମା :—ଉଃ—ବାଲେଶ୍ୱର ଜିଲ୍ଲା ଓ କେନ୍ଦୁଝର; ଦଃ—ପୁରୀ ଜିଲ୍ଲା, ପୂଃ—ବଙ୍ଗୋପସାଗର; ପଃ—ଢେଙ୍କାନାଳ, ଖଣ୍ଡପଡ଼ା, ବଡ଼ାମ୍ବା, ତିଗିରିଆ ଗଡ଼ଜାତ ମାହାଲ । ଏହାର କ୍ଷେତ୍ରଫଳ ୩୬୬୩ ବର୍ଗମାଇଲ ଓ ଜନସଂଖ୍ୟା ୨୧ଲ, ୬୬ହ, ୩ଶ, ୫୦ । ଏ ଜିଲ୍ଲା ପ୍ରଧାନ ନଗର କଟକ । ଏହା ଓଡ଼ିଶା ବିଭାଗର ପ୍ରଧାନ କେନ୍ଦ୍ର ଓ ରାଜଧାନୀ । ଏହି ନଗରର କ୍ଷେତ୍ରଫଳ ୭ ବର୍ଗମାଇଲ ଓ ଲୋକ ସଂଖ୍ୟା ପ୍ରାୟ ୬୫ହଜାର । ପ୍ରାୟ ଏକହଜାର ବର୍ଷ ତଳେ କେଶରୀବଂଶୀୟ ରାଜା ମର୍କତକେଶରୀ ମହାନଦୀ ଓ କାଠଯୋଡ଼ିର ବନ୍ୟାରୁ ଏହାକୁ ରକ୍ଷା କରିବା ପାଇଁ ପଥର ବନ୍ଧ ବନ୍ଧାଇଥିଲେ । ସୁନା ରୁପାର ତାରକସି କାମ ପାଇଁ ଏହା ପୃଥିବୀ ମଧ୍ୟରେ ବିଖ୍ୟାତ । ଏ ନଗରର ଉତ୍ତର ପଟେ ମହାନଦୀକୂଳରେ ବାରବାଟୀ କିଲ୍ଲାର ଭଗ୍ନାବଶେଷ ଅଛି । ଗୋପାଳଜୀଉ, କାଳୀ, ବିନୋଦବିହାରୀ, କଟକଚଣ୍ଡୀ ପୁରାତନ ଓ ରାମବିହାରୀ ମଠ ଅଧୁନିକ ହିନ୍ଦୁ ମନ୍ଦିର ଅଟେ । ମାରୁଆଡ଼ିଙ୍କ ସ୍ଥାପିତ ମନ୍ଦିର ମାନଙ୍କରେ ସୁସଜ୍ଜିତ ଝୁଲଣଯାତ୍ରା ହୁଏ । ଚୌଦ୍ୱାରରେ ଓଡ଼ିଶାର ସର୍ବାପେକ୍ଷା ପ୍ରାଚୀନ ଦୁର୍ଗର ଭଗ୍ନାବଶେଷ ଅଛି । ନରାଜ ପାହାଡ଼ ଦେହରେ ବୌଦ୍ଧ ମୂର୍ତ୍ତି ଅଛି । ବାଙ୍କିରେ ଚର୍ଚ୍ଚିକା ଠାକୁରାଣୀ ଅଛନ୍ତି । ମହାବିଷୁବ ସଂକ୍ରାନ୍ତି ଦିନ ଏଠାରେ ମେଳା ହୁଏ । ସାରଙ୍ଗଗଡ଼ରେ ପ୍ରାଚୀନ ଦୁର୍ଗର ଭଗ୍ନାବଶେଷ ଅଛି । ସାଲେପୁର ଥାନାରେ ଅନଙ୍ଗଭୀମଦେବଙ୍କ ଆଦେଶରେ ନିର୍ମିତ ଗୁଟେଶ୍ୱର ନାମକ ଶିବ ମନ୍ଦିର ଅଛି । କନକପୁରରେ ସାରଳାଦେବୀଙ୍କ ମନ୍ଦିର ବିଦ୍ୟମାନ । କେନ୍ଦ୍ରାପଡ଼ା ନଗରରେ ବଳଦେବଙ୍କ ମନ୍ଦିର ଅଛି । ତାଙ୍କ ନିକଟରେ ପୁରୀ ଜଗନ୍ନାଥଙ୍କ ଅନୁକରଣରେ ଯାତ୍ରାଦି ହୁଏ । ଗୁଲନଗର ଲୁଗାବୁଣାର ପ୍ରଧାନ କେନ୍ଦ୍ର ଥିଲା । ଓଳାସୁଣିରେ ଅରକ୍ଷିତ ଦାସ ମହାପୁରୁଷଙ୍କ ଗାଦି ଅଛି । ଉଦୟଗିରିରେ ବୁଦ୍ଧଦେବଙ୍କ ପ୍ରତିମୂର୍ତ୍ତି ଅଛି । ଆଲମଗିରିରେ ପିରଙ୍କ ଆସ୍ଥାନ ଅଛି । ନଳତିଗିରିରେ ବୌଦ୍ଧ ଗୁମ୍ଫା ଅଛି ଓ ପଥର ବାସନ ମିଳେ । ଦର୍ପଣୀରେ ମହାବିନାୟକ ପାହାଡ଼ ବା ଗଣେଶ କ୍ଷେତ୍ରରେ ଦେବମନ୍ଦିର ଓ ନିର୍ଝର ଅଛି । ଏଠାରେ ଗଣେଶ, ରବି, ଶିବ, ବିଷ୍ଣୁ ଓ ଦୁର୍ଗା ଏହି ପଞ୍ଚଦେବତାଙ୍କର ପୂଜା ହୁଏ । ଯାଜପୁର ବା ବିରଜା ପୀଠ ଓଡ଼ିଶାର ପୂର୍ବ ରାଜଧାନୀ । ଏଠାରେ ଦଶାଶ୍ୱମେଧ ଘାଟ, ବରାହନାଥଙ୍କ ମନ୍ଦିର ବିରଜାଦେବୀଙ୍କ ମନ୍ଦିର, ଯମ ସାତଭଉଣୀଙ୍କ ମନ୍ଦିର, ଶୁଭସ୍ତମ୍ଭ, ଗୋବିନ୍ଦକୁଣ୍ଡ ଓ ତ୍ରିଲୋଚନମାନଙ୍କଠାରେ ପ୍ରାଚୀନ ସେତୁ ଦର୍ଶନୀୟ ବସ୍ତୁ । ଛତିଆରେ ଅମରାବତୀ ଦୁର୍ଗର ଭଗ୍ନାବଶେଷ ଏବଂ ଇନ୍ଦ୍ର, ଇନ୍ଦ୍ରାଣୀଙ୍କ ମୂର୍ତ୍ତି ଓ ଜୈନ ଗୁମ୍ଫାମାନ ଅଛି । ବିରୂପା ନଦୀ କୂଳରେ ଜଳୌକାରେ ବୌଦ୍ଧକୀର୍ତ୍ତି ଓ ଗୁମ୍ଫା ଅଛି । ଧର୍ମଶାଳା ଅଞ୍ଚଳରେ ଅନେକ ମହାଜନ ଅଛନ୍ତି । ଘଣ୍ଟିପୁଣ୍ଡ୍ରା କଂସା ବାସନ ନିମନ୍ତେ ପ୍ରସିଦ୍ଧ । ଏ ଜିଲ୍ଲାରେ ଉଚ୍ଚଶିକ୍ଷା ସକାଶେ ୧୫ଟି କଲେଜ ଓ ବାଳିକାମାନଙ୍କପାଇଁ ସ୍କୁଲ ଏବଂ କଲେଜ ଅଛି । ଶିକ୍ଷକମାନେ ଟ୍ରେନିଂକଲେଜ ଓ ସ୍କୁଲରେ ପଢ଼ନ୍ତି । ୯ଟି ଉଚ୍ଚ ଇଂରାଜୀ ଓ ୩୩ଟି ମଧ୍ୟ ଇଂରାଜୀ ବିଦ୍ୟାଳୟ କେତୋଟି ଟୋଲ ଓ ମକ୍ତବ ବ୍ୟତୀତ ଇଞ୍ଜିନିଅରିଂ ଓ ଡାକ୍ତରୀ ସ୍କୁଲମାନଙ୍କରେ ନିର୍ଦ୍ଦିଷ୍ଟ ସଂଖ୍ୟକ ଛାତ୍ର ଅଧ୍ୟୟନ କରନ୍ତି । ଏହାଛଡ଼ା ଇଉରେସିଆନ ସ୍କୁଲ ଓ କନ୍‌ଭେଣ୍ଟ ସ୍କୁଲ ଅଛି । ବିଦ୍ୟାଧର ପୁର କୃଷିକ୍ଷେତ୍ରରେ କୃଷି ସମ୍ବନ୍ଧୀୟ ପ୍ରାଥମିକ ଶିକ୍ଷାଦାନର ବ୍ୟବସ୍ଥା ଅଛି । ଏ ଜିଲ୍ଲାରେ ୨୨ଟି ଡାକ୍ତରଖାନା ଓ ଜଣେ ହେଲ୍‌ଥ ଅଫିସର ଅଛନ୍ତି । କେତେକ ସ୍ଥାନରେ ପଶୁମାନଙ୍କ ଚିକିତ୍ସାର ବନ୍ଦୋବସ୍ତ କରା ହୋଇଅଛି । କଟକ, କେନ୍ଦ୍ରାପଡ଼ା, ଯାଜପୁର, କଳାପଥର, ଭଦ୍ରେଶ୍ୱର, ଚର୍ଚ୍ଚିକା, ନିଆଳି, ଜଗତ୍‌ସିଂହପୁର, ତିର୍ତ୍ତୋଲ, ସାଲେପୁର, ପାଟପୁର, ବାଲିଚନ୍ଦ୍ରପୁର, ହରିପୁର, ଟାଙ୍ଗି, ବଲିହାଟ, କୁଜଙ୍ଗ, କଟରା, ଅନନ୍ତପୁର, ଜଷ୍ଟିନ୍ତକୋଇଲି, ମାର୍ଶାଘାଇ, ଇଚ୍ଛାପୁର ପ୍ରଧାନ ହାଟ । ଫଲ୍‌ସ ପଏଣ୍ଟ ପ୍ରଧାନ ବନ୍ଦର । ଜଗନ୍ନାଥ ସଡ଼କ, ତାଳଦଣ୍ଡା, ମାଛ ଗାଁ, ପଟାମୁଣ୍ଡାଇ, ଗୋବିନ୍ଦବାଲି, ସୋନପୁର, ଯାଜପୁର-ଜେନାପୁର, ସାଲେପୁର-ଛତିଆ, କେନ୍ଦ୍ରପଡ଼ା-ଯାଜପୁର, ବରୁଆଁ-କଳାମାଟିଆ, ବ୍ୟାସସରୋବର-ଯାଜପୁର, ଫୁଲନଖରା-ମାଧବ ସଡ଼କ ପ୍ରଧାନ । ଏ ଜିଲ୍ଲାର ଜଳବାୟୁ ସାଧାରଣତଃ ଉତ୍ତମ । ଜମ୍ବୁକେନାଲ

ଭରିବାକୁ ଏହି ସଂସାର ବାରିଧି ।

କେନ୍ଦ୍ରାପଡ଼ା, ତାଳଦଣ୍ଡା, ମାଛଗାଁ, ପଟ୍ଟାମୁଣ୍ଡେଇ, ହାଇଲେଭେଲ ଓ ଯାଜପୁର ପ୍ରଧାନ କେନାଲ ।

କଟକ ନଗରରେ କମିସନର, ଜଜ ଓ ମାଜିଷ୍ଟ୍ରେଟ ସାହେବମାନଙ୍କ କଚେରୀ, ଛାପାଖାନା ଓ କଳଘରମାନ ଅଛି । ଉତ୍କଳ ଟାନେରିରେ ମଜବୁତ ଯୋତା ତିଆର ହୁଏ ।

## କଟକ ଜିଲାର ନଦୀମାନ

ମହାନଦୀ, କାଠଯୋଡ଼ି, କୁଆଖାଇ, ବିରୂପା, ପାଇକା, ଚିତ୍ରୋତ୍ପଳା, ଲୁଣା, ଗୋଦାବରୀ, ଚଣ୍ଡାକଥ, ବ୍ରାହ୍ମଣୀ, ଖରସୁଆ ବୁଢା, ଗାଙ୍ଗୁଥ, କମଣ୍ଡିଆ, ଟେଙ୍ଗୁଟି ଓ ବୈତରଣୀ ।

## ସ୍ୱାୟତ୍ତ ଶାସନ

କଟକଠାରେ ଗୋଟିଏ ଜିଲ୍ଲାବୋର୍ଡ ଓ ତାର ଅଧୀନରେ କଟକ, କେନ୍ଦ୍ରାପଡ଼ା ଓ ଯାଜପୁରଠାରେ ୩ଟି ଲୋକେଲ ବୋର୍ଡ ଏବଂ କେତୋଟି ଇଉନିଅନ ବୋର୍ଡ ଅଛି । ଏ ଜିଲ୍ଲାର ପ୍ରତ୍ୟେକ ସବ୍‌ଡିଭିଜନରେ ଗୋଟିଏ ଲେଖାଏଁ ମ୍ୟୁନିସିପାଲିଟି ଅଛି । ଏମାନେ ବୋର୍ଡ ପ୍ରାପ୍ତ ଆୟରୁ ଶିକ୍ଷା, ସ୍ୱାସ୍ଥ୍ୟ, ଆଲୋକ-ଦେବା, ରାସ୍ତାନିର୍ମାଣ ଓ ମରାମତି, ଜଳ ଯୋଗାଇବା ଏବଂ ଡାକ୍ତରଖାନା ପରିଚାଳନ କାର୍ଯ୍ୟମାନ ନିର୍ବାହ କରନ୍ତି । ଉପରୋକ୍ତ ବୋର୍ଡର ମେମ୍ବରମାନେ ସରକାରଙ୍କ ଦ୍ୱାରା ନିଯୁକ୍ତ ଓ ଲୋକମାନଙ୍କ ଦ୍ୱାରା ମନୋନୀତ ଅଟନ୍ତି ।

ଏହି ବୋର୍ଡ ପଥକର, ଘାଟମାସୁଲ, ରାସ୍ତାକଡ଼ଜମିର କର ଓ ଗଛକଟା ଟଙ୍କା, କାଞ୍ଜିଅହାଉଦର ମାସୁଲ ଟଙ୍କା, ବଙ୍ଗଳୋ ଭଡ଼ା ଏବଂ ସ୍କୁଲ ଦରମା ଗ୍ରହଣ କରେ, ଏତଦ୍‌ବ୍ୟତୀତ ସରକାରରୁ କିଛି ଟଙ୍କା ସାହାଯ୍ୟ ପାଏ ।



## ରାଜନୈତିକ ବିଭାଗ

| (ସବ୍‌ଡିଭିଜନ ଓ ଲୋକସଂଖ୍ୟା) | (ଥାନା ଓ ଲୋକସଂଖ୍ୟା) | (ପୁଲିଶ ଷ୍ଟେସନ) | (ଲୋକସଂଖ୍ୟା) |
|---|---|---|---|
| କେନ୍ଦ୍ରାପଡ଼ା ୪୭୮୭୭୩ | (୧) କେନ୍ଦ୍ରାପଡ଼ା ୨୪୯୩୬୯ | ୧ କେନ୍ଦ୍ରାପଡ଼ା | ୧୮୨୨୦୫ |
| | | ୨ ପଟ୍ଟକୁରା | ୬୭୧୬୪ |
| | (୨) ପଟ୍ଟାମୁଣ୍ଡେଇ ୧୨୦୭୦୭ | ୧ ପଟ୍ଟାମୁଣ୍ଡେଇ | ୯୫୫୨୯ |
| | | ୨ ମହାକାଳପଡ଼ା | ୨୫୧୭୮ |
| | (୩) ଅଳି ବା ରାଜବାଟି ୧୦୮୬୯୭ | ୧ ଅଳି | ୭୭୬୪୦ |
| | | ୨ ରାଜନଗର | ୩୧୦୫୭ |
| ଯାଜପୁର ୫୪୨୬୦୪ | (୧) ଯାଜପୁର ୨୫୯୩୭୭ | ୧ ଯାଜପୁର | ୧୪୭୦୬୧ |
| | | ୨ ବିଂଝାରପୁର | ୧୧୨୩୧୬ |
| | (୨) ଧର୍ମଶାଳା ୨୮୩୨୨୭ | ୧ ଧର୍ମଶାଳା | ୧୪୦୭୦୬ |
| | | ୨ ସୁକିନ୍ଦା | ୩୪୬୬୬ |
| | | ୩ ବଡ଼ଚଣା | ୪୫୫୫୮ |
| | | ୪ କୋରାଇ | ୬୨୨୯୭ |
| କଟକ ସଦର ୧୦୫୦୮୭୬ | (୧) କଟକ ୨୨୨୪୪୭ | ୧ କଟକ ଟାଉନ | ୫୮୫୮୨ |
| | | ୨ କଟକ ସଦର | ୧୨୦୬୫୪ |
| | | ୩ ଟାଙ୍ଗି | ୪୩୨୧୧ |
| | (୨) ବାଙ୍କି ୭୦୧୧୦ | ୧ ବାଙ୍କି | ୫୨୯୮୪ |
| | | ୨ ବୈଦ୍ୟେଶ୍ୱର | ୧୭୧୨୬ |
| | (୩) ସାଲେପୁର ୨୮୯୨୪୫ | ୧ ସାଲେପୁର | ୧୫୭୪୪୬ |
| | | ୨ ମାହାଙ୍ଗା | ୯୦୭୩୩ |
| | | ୩ କେଶନଗର | ୪୧୩୬୬ |
| | (୪) ତିର୍ତ୍ତୋଲ ୧୮୧୫୪୯ | ୧ ତିର୍ତ୍ତୋଲ | ୧୩୫୫୭୩ |
| | | ୨ ଏରସମା | ୪୫୯୭୬ |
| | (୫) ଜଗତ୍‌ସିଂହପୁର ୨୮୭୫୨୫ | ୧ ଜଗତ୍‌ସିଂହପୁର | ୧୮୦୬୭୫ |
| | | ୨ ଗୋବିନ୍ଦପୁର | ୫୨୪୦୫ |
| | | ୩ ବାଲିକୁଦା | ୫୪୪୪୫ |

ଧର୍ମ ଏକା ପିଲା ମହତ ପଣଆ ।

# ପୁରୀ ଜିଲ୍ଲା

ସୀମା :—ଉଃ ଓ ପୂଃ—କଟକ ଜିଲ୍ଲା; ଦଃ ଓ ଦଃ ପୂଃ—ବଙ୍ଗୋପସାଗର; ପଃ—ଗଞ୍ଜାମ ଜିଲ୍ଲା; ଉଃ ଓ ପଃ—ନୟାଗଡ଼, ରଣପୁର, ଖଣ୍ଡପଡ଼ା ଗଡ଼ଜାତମାନ । ଏହାର କ୍ଷେତ୍ରଫଳ, ୨୪୧୧ ବର୍ଗମାଇଲ ଓ ଜନସଂଖ୍ୟା—୧୦୩୪୮୫୧ ।

ପୁରୀ ଏ ଜିଲ୍ଲାର ପ୍ରଧାନ ନଗର । ଏହାର ଅପର ନାମ ଶଙ୍ଖକ୍ଷେତ୍ର । ଏଠାରେ ଶ୍ରୀ ଜଗନ୍ନାଥଙ୍କ ମନ୍ଦିର ଅଛି । ଏହା ଭାରତୀୟ ହିନ୍ଦୁମାନଙ୍କର ସର୍ବପ୍ରଧାନ ତୀର୍ଥସ୍ଥାନ । ଭୁବନେଶ୍ୱରରେ ଗୋଟିଏ ଶିବମନ୍ଦିର ଅଛି । କୋଣାର୍କରେ ସୂର୍ଯ୍ୟମନ୍ଦିର ଅଛି । ଜଗଦଲପୁରଠାରେ ବିଶ୍ୱନାଥ ମହାଦେବଙ୍କ ମନ୍ଦିର ଅଛି । ସତ୍ୟବାଦୀରେ ଗୋପାଳ ମନ୍ଦିର ଅଛି, ପିପିଲିର ସିଲାଇକାର୍ଯ୍ୟ ଓଡ଼ିଶାରେ ପ୍ରସିଦ୍ଧ । ପ୍ରାଚୀ ନଦୀକୂଳରେ କାକଟପୁରରେ ମଙ୍ଗଳା ଅଛନ୍ତି । ବାଣପୁରରେ ଭଗବତୀ ଦେବୀ ଓ ଦକ୍ଷପ୍ରଜାପତିଙ୍କ ମନ୍ଦିର ଅଛି । ଏଠାରେ ଅନେକ କୁଳୀନ ମହାଜନ ଅଛନ୍ତି । କାଇପଦାରେ ବୋଖାରୀ ସାହେବ ନାମକ ପୀରଙ୍କ କବର ଅଛି । ଅତ୍ରିରେ ଉଷ୍ଣପ୍ରସ୍ରବଣ ଅଛି । ଖଣ୍ଡଗିରି ପାହାଡ଼ରେ ଭୁବନ ପ୍ରସିଦ୍ଧ ବୌଦ୍ଧ ଓ ଜୈନକୀର୍ତ୍ତିମାନ ଅଛି । ଧଉଳି ପାହାଡ଼ରେ ଅଶୋକ ରାଜାଙ୍କ ଅନୁଶାସନ ଅଙ୍କିତ ଅଛି । ଭିମପୁର (ବାଲିପାଟଣା)ରେ ତ୍ରିବେଣୀ ମେଳା ହୁଏ । ଖୋରଧାରେ ଦୁର୍ଗର ଭଗ୍ନାବଶେଷ ଅଛି । ଚଣ୍ଡେଶ୍ୱର ଗ୍ରାମରେ ଚଣ୍ଡେଶ୍ୱରଙ୍କ ମନ୍ଦିର ଓ ଗୋଟିଏ ଦୁର୍ଗର ଭଗ୍ନାବଶେଷ ଅଛି । ବାଲକାଟିରେ ଅନେକ ମହାଜନ ଓ ରଥ୍ୟା-ଜାମାରେ ଅନେକ ଥଟାର ଅଛନ୍ତି । ଚନ୍ଦ୍ରଭାଗା ତୀର୍ଥ ସ୍ଥାନ । ମାଣିକପଟଣାରେ କାଞ୍ଚି ଯିବା ସମୟରେ ଜଗନ୍ନାଥ ଦେବ ମାଣିକା ଗଉଡ଼ୁଣୀଙ୍କୁ ମୁଦି ବନ୍ଧା ଦେଇ ଦୁଧ ଖାଇଥିଲେ ବୋଲି ପ୍ରବାଦ ଅଛି । ବୀର ନରସିଂହ-ପୁର ଓ ବୀର ରାମଚନ୍ଦ୍ରପୁର ପ୍ରଧାନ ବ୍ରାହ୍ମଣ ଶାସନ । ଭିଙ୍ଗାରପୁର ଓ ଦମାପଡ଼ା ପ୍ରଧାନ ଜମିଦାରଙ୍କ ବାସ-ସ୍ଥଳ । ମାଳୁଦରେ ଜଣେ ମୁସଲମାନ ଜାଗିରଦାର ବାସ କରନ୍ତି । ଚିଲିକା ମଧ୍ୟରେ କାଳୀଜାଈ ପାହାଡ଼ରେ କାଳୀଜାଈ ଦେବୀ ଅଛନ୍ତି । ପୁରୀ, ଖୋର୍ଦ୍ଧା, ସତ୍ୟବାଦୀ, ପିପିଲି, ବାଲକାଟି, ବାଣପୁର ପ୍ରଧାନ ବାଣିଜ୍ୟସ୍ଥଳୀ । ଭିଲଅବାଡ଼, ବାଲିପାଟଣା, ବେଗୁନିଆ, ଅସ୍ତରଙ୍ଗ, ନବପଲ୍ଲବ, ଲତାହରଣ, ଛଣଗିରି, ବନମାଳୀପୁର, ବାଲଚନ୍ଦ୍ରପୁର, ଜଟଣି, ଜଗକାବ ପୁର, ମେହେନ୍ଦ୍ରପୁର ଦେଲାଙ୍ଗ, କୁମ୍ଭେଇ, ଦମାପଡ଼ା ପ୍ରଧାନ ସ୍ଥାନ । ଜଗନ୍ନାଥ ସଡ଼କ, ଗଞ୍ଜାମ, ଖୋର୍ଦ୍ଧା-କଲାପଥର, ପିପିଲି-ଅସ୍ତରଙ୍ଗ, ବାଘମାରି-ବୋଲଗଡ଼, ପଟନାୟିକା-ଖୋର୍ଦ୍ଧା, ବାଲୁଗାଁ-ବାବୁରମାଳ, ପିପିଲି-ଖୋର୍ଦ୍ଧା, ବାଲିପାଇ-ମାଧବ, ମାର୍କଣ୍ଡେଇପୁର-ଗୋପ ସଡ଼କ ପ୍ରଧାନ । ଏ ଜିଲ୍ଲାରେ ୫ଟି ଉଚ୍ଚ ଇଂରାଜୀ, ଗୋଟିଏ ସଂସ୍କୃତ କଲେଜ, ୨୭ଟି ସଂସ୍କୃତ ସ୍କୋଲ, ୪୫ଟି ମକ୍ତବ, ୨୨ଟି ମଧ୍ୟ ଇଂରାଜୀ ସ୍କୁଲ ଅଛି । ଏ ଜିଲ୍ଲାରେ ୧୫ଟି ଡାକ୍ତରଖାନା ଅଛି ।

## ପୁରୀଜିଲାର ନଦୀମାନ

କୁଶଭଦ୍ରା, ଦୟା, ଭାର୍ଗବୀ, ରତନଚର ଓ ଲୁଣା, କାଦୁଆ, ପ୍ରାଚୀ, ଦେବୀ, ସାଳିଆ, କୁସୁମୀ, ମଙ୍ଗଳାଗୁଣି, ରଣ-ନଦୀ, କାଁସାରୀ, ଦାର, ବାଘଗୁଲ, ଘାଗୁଡିଆ, କଣି, ସାରଦା ଇତ୍ୟାଦି ।

## ସ୍ୱାୟତ୍ତଶାସନ

ଜିଲାବୋର୍ଡରେ ୨୮ ଜଣ ସଭ୍ୟଙ୍କ ମଧ୍ୟରୁ ୭ ଜଣ ସରକାରଙ୍କ ଦ୍ୱାରା ଓ ଅବଶିଷ୍ଟ ଜିଲାବାସୀଙ୍କ ଦ୍ୱାରା ନିର୍ବାଚିତ ହୁଅନ୍ତି ।

ବୋର୍ଡର କାର୍ଯ୍ୟ :—ପ୍ରାଥମିକ ଓ ମଧ୍ୟଶିକ୍ଷା ନିମନ୍ତେ ସାହାଯ୍ୟ ଦାନ, ରାସ୍ତାନିର୍ମାଣ ଓ ମରାମତ, ସ୍ୱାସ୍ଥ୍ୟୋନ୍ନତି ପାଇଁ ଡାକ୍ତରଖାନା ଚଳାଇବା, ମନୁଷ୍ୟ ଓ ପଶୁଙ୍କ ରୋଗ ନିବାରଣ ସକାଶେ ସ୍ୱାସ୍ଥ୍ୟ ପରିଦର୍ଶକ ନିଯୁକ୍ତ କରିବା ।

## ମ୍ୟୁନିସିପାଲିଟି

କେବଳ ପୁରୀ ଟାଉନରେ ମ୍ୟୁନିସିପାଲିଟି ଅଛି । ତାହାର ୨୦ ଜଣ ସଭ୍ୟ ମଧ୍ୟରୁ ୪ ଜଣ ସରକାରଙ୍କ ମନୋନୀତ ଓ ବାକି ସହରବାସୀଙ୍କ ଦ୍ୱାରା ନିର୍ବାଚିତ । ସହରର ଶିକ୍ଷା, ସ୍ୱାସ୍ଥ୍ୟ, ରାସ୍ତା ଓ ଆଲୋକଦାନ ଇତ୍ୟାଦି କାର୍ଯ୍ୟ ପରିଚାଳନା ଏହାର କାର୍ଯ୍ୟ । ବୋର୍ଡ ପଥକର, ଘାଟ ମାସୁଲ, କାଞ୍ଜିଆହୁଦା ମାସୁଲ ଟଙ୍କା ଗ୍ରହଣ କରେ ଓ ସରକାରଙ୍କଠାରୁ କିଛି ଟଙ୍କା ସାହାଯ୍ୟ ପାଏ ।



## ରାଜନୈତିକ ବିଭାଗ

| (ସବ୍‌ଡିଭିଜନ ଓ ଲୋକସଂଖ୍ୟା) | (ଥାନା ଓ ଲୋକସଂଖ୍ୟା) | (ପୁଲିଶ ଷ୍ଟେସନ) | (ଲୋକସଂଖ୍ୟା) |
|---|---|---|---|
| ପୁରୀ ସଦର ୬୧୪୭୫୪ | (୧) ପୁରୀ ୨୪୬୧୯୦ | ୧ ପୁରୀ ଟାଉନ | ୩୮୬୯୪ |
| | | ୨ ପୁରୀ ସଦର | ୬୩୭୨୨ |
| | | ୩ ସତ୍ୟବାଦୀ | ୩୭୦୮୪ |
| | | ୪ କଣାସ | ୫୫୦୩୯ |
| | | ୫ ବ୍ରହ୍ମଗିରି | ୩୩୦୨୬ |
| | | ୬ କୃଷ୍ଣପ୍ରସାଦ | ୧୪୬୨୫ |
| | (୨) ଗୋପ ୧୧୦୩୩୭ | ୧ ଗୋପ | ୫୨୦୧୯ |
| | | ୨ କାକଟପୁର | ୫୮୩୧୮ |
| | (୩) ପିପିଲି ୨୬୨୨୨୭ | ୧ ପିପିଲି | ୫୯୪୯୫ |
| | | ୨ ବାଲିଅନ୍ତା | ୩୮୧୬୪ |
| | | ୩ ନିମାପଡ଼ା | ୨୦୬୯୫ |
| | | ୪ ଡେଲାଙ୍ଗ | ୪୩୭୬୫ |
| | | ୫ ବାଲିପାଟଣା | ୫୦୧୦୮ |
| ଖୋର୍ଦ୍ଧା ୩୩୬୮୯୭ | (୧) ଖୋର୍ଦ୍ଧା ୨୩୭୭୨୭ | ୧ ଖୋର୍ଦ୍ଧା | ୭୩୩୪୫ |
| | | ୨ ଜଟଣି | ୧୬୨୪୯ |
| | | ୩ ବୋଲଗଡ଼ | ୩୧୨୪୧ |
| | | ୪ ଭୁବନେଶ୍ୱର | ୩୫୮୯୫ |
| | | ୫ ଟାଙ୍ଗିଆ | ୩୬୫୭୦ |
| | | ୬ ବେଗୁନିଆ | ୩୧୧୯୯ |
| | | ୭ ଚନ୍ଦକା | ୧୩୨୮୮ |
| | (୨) ବାଣପୁର ୯୯୧୭୦ | ୧ ବାଣପୁର | ୫୪୮୬୭ |
| | | ୨ ଟାଙ୍ଗି | ୪୪୩୦୩ |

## ବାଲେଶ୍ୱର ଜିଲା

ସୀମା :—ଉଃ-ମେଦିନୀପୁର ଜିଲା, ଓ ମୟୂରଭଞ୍ଜ; ଦଃ—କଟକ ଜିଲା; ପୂଃ—ବଙ୍ଗୋପସାଗର ଓ ପଃ—ନୀଳଗିରି, ମୟୂରଭଞ୍ଜ ଏବଂ କେନ୍ଦୁଝର । ଏହାର କ୍ଷେତ୍ରଫଳ ୨୦୮୫ ବର୍ଗମାଇଲ ଏବଂ ଜନସଂଖ୍ୟା ୯୧୦୫୧୯ । ପ୍ରତିବର୍ଗ ମାଇଲରେ ୫୭୦ ଜଣ ବାସ କରନ୍ତି । ଏ ଜିଲାର ପ୍ରଧାନ ନଗର ବାଲେଶ୍ୱର ବୁଢ଼ାବଲଙ୍ଗ ନଦୀକୂଳରେ ଅବସ୍ଥିତ । କଂସା ବାସନ ଓ ଲୁଗା ନିମନ୍ତେ ଏହା ପ୍ରସିଦ୍ଧ । ସୁନହଟ ପର୍ତ୍ତୁଗାଲ ବ୍ୟବସାୟୀଙ୍କର ବାସସ୍ଥଳୀ ଥିଲା । ଝାଡ଼େଶ୍ୱର ଓ ବାଣେଶ୍ୱର ମହାଦେବଙ୍କ ନିକଟରେ ଶିବରାତ୍ରି ଦିନ ମେଳା ହୁଏ । ରେମୁଣାରେ କ୍ଷୀରଚୋରା ଗୋପୀନାଥ ନାମକ ବିଖ୍ୟାତ ଦେବତା ଅଛନ୍ତି । ରାଇବଣିଆରେ ଥିବା ପ୍ରାଚୀନ ଦୁର୍ଗକୁ ଲୋକେ ମହାଭାରତର ବିରାଟ ରାଜାଙ୍କ ଦୁର୍ଗ କହନ୍ତି । ସେଠାରେ ଥିବା କୀଚକେଶ୍ୱରୀ ଠାକୁରାଣୀ ବର୍ତ୍ତମାନ ମୟୂରଭଞ୍ଜରେ ଅଛନ୍ତି । ମୋଗଲମାରିଠାରେ ପୁରାତନ ଦୁର୍ଗର ଭଗ୍ନାବଶେଷ ଅଛି । ଚାନ୍ଦିପୁରରେ ସୈନ୍ୟ ବିଭାଗର ଗୋଲା ବାରୁଦର ପରୀକ୍ଷାଗାର ଅଛି । ଭଦ୍ରକରେ କାଳୀମନ୍ଦିର ଓ ପାଳିଆବିନ୍ଧାଠାରେ ବିରଞ୍ଚିନାରାୟଣ ମନ୍ଦିର ଅଛି । ସନ୍ତିଆରେ ଚୈତନ୍ୟଦେବଙ୍କ କନ୍ଥା ସଂରକ୍ଷିତ ଅଛି । ଗରଦପୁରରେ ଏକ ଆଶ୍ରମ ମଠ ଓ ସୁବର୍ଣ୍ଣମୁଖୀ ଠାକୁରାଣୀ ଅଛନ୍ତି । ଅଣିଜରେ ଏକ ପ୍ରସିଦ୍ଧ ମହାଦେବ ଅଛନ୍ତି । କୁପାରିରେ ବୌଦ୍ଧକୀର୍ତ୍ତି ଅଛି । ମହାଭାରତର କୃପାଚାର୍ଯ୍ୟ ଏଠାରେ ହୋମ କରିଥିବାର ପ୍ରବାଦ ଅଛି । ଆରଡିରେ ଆଖଣ୍ଡଳମଣି ନାମକ ପ୍ରସିଦ୍ଧ ଶିବ ମନ୍ଦିର ଅଛି । କାଜିପୁରରେ ଶାଳନ୍ଦୀ ନଦୀ ଶଯ୍ୟାରେ ଦେବରକୁଣ୍ଡ ନାମକ ଉଷ୍ଣପ୍ରସ୍ରବଣ ଅଛି । ଦଇସିଂଠାରେ ଭୀମଗଦା ପାହାଡ଼ । ସୋଲମପୁରରେ କପିଳେନ୍ଦ୍ର ଦେବଙ୍କ ସମୟର ଦୁର୍ଗର ଭଗ୍ନାବଶେଷ ଅଛି । ଗୁହାଳଗ୍ରାମରେ ବଳଦେବଙ୍କ ମନ୍ଦିର ଅଛି । ମଙ୍ଗଳପୁରରେ ମୁଗୁନି ପଥର ବାସନ ମିଳେ । ବାଲେଶ୍ୱର, ଚାନ୍ଦବାଲି ଓ ଧାମରା ପ୍ରଧାନ ବନ୍ଦର । କୋଠାର, କାଜିପୁର, ଇରମ, ଲକ୍ଷ୍ମଣନାଥ, ଧାମନଗର, ସୁନହଟ ଜମିଦାର ବାସସ୍ଥଳୀ । ଅନ୍ଧପାଳ, ଅନନ୍ତପୁର, ଲକ୍ଷ୍ମଣନାଥ, ଚାନ୍ଦବାଲି, ଭୋଗରାଇ, ଦେହୁରିଦା, ବାସୁଦେ, ଖଇରା, ଝିନ୍ନାପଡ଼ା, ଧୂସୁରୀ, ଅଗ୍ରା, ଓସ୍ତପୁର, ଭଦ୍ରଖ, ନୀଳଗିରି, ଭୁଡନଡିଆ, ସୋରୋ, ଦୁବଗଡ଼, ରେମୁଣା, ଦେଉଳା ଓ ସିଙ୍ଗଲା ପ୍ରଧାନ ହାଟ । ଜଗନ୍ନାଥ ସଡ଼କ ସୋରୋ-କୁପାରି, ବାଲେଶ୍ୱର-ଅନନ୍ତପୁର, ବାଲେଶ୍ୱର-ନୀଳଗିରି, ବସ୍ତା--ବାଲିଆପାଳ ବଳରାମପୁର-ରାଇବଣିଆ, ବାଲିଆପାଳ-କଣବା, ଭଦ୍ରଖ-ଚାନ୍ଦବାଲି, ଭଦ୍ରଖ-ବାସୁଦେବପୁର, ଭଦ୍ରଖ--ଆନନ୍ଦପୁର, ଭଦ୍ରଖ--ଅଗରପଡ଼ା, ଭଦ୍ରଖ-କୋଠାର ରାସ୍ତାମାନ ପ୍ରଧାନ । ଏ ଜିଲାରେ ୪ଟି ଉଚ୍ଚ ଇଂରାଜୀ ଓ ୨୪ଟି ମଧ୍ୟ ଇଂରାଜୀ ବିଦ୍ୟାଳୟ ଓ ୧୦ଟି ଡାକ୍ତରଖାନା ଅଛି । ରାଧାନାଥ, ଫକୀରମୋହନ, ଚନ୍ଦ୍ରମୋହନ, ଚିନ୍ତାମଣି ଲକ୍ଷ୍ମୀକାନ୍ତ ନାରାୟଣ ମୋହନ ପ୍ରଭୃତି ଆଧୁନିକ କବି ଓ ଭାଷାବିତ୍ ପଣ୍ଡିତମାନେ ଏହି ଜିଲାର ଲୋକ । ଓଡ଼ିଶାରେ ଉଚ୍ଚଶିକ୍ଷାପ୍ରାପ୍ତ ଗ୍ରାମମାନଙ୍କ ମଧ୍ୟରେ ବାଉଦପୁର ପ୍ରଧାନ ।

## ବାଲେଶ୍ୱର ଜିଲାର ନଦୀମାନ

ସୁବର୍ଣ୍ଣରେଖା, ପାଞ୍ଚପଡ଼ା, ବୁଢ଼ାବଲଙ୍ଗ, କାଁଶବାଁଶ, ଗମେଇ, ମତେଇ, ସାଳନ୍ଦୀ, ବୈତରଣୀ, ହଂସବୁଢ଼ା, ସାଲଥା, ପାରା, ନେମୁ, ରେବା, କପାଳୀ, ଗେଙ୍ଗୁଟି ପ୍ରଭୃତି ।

## ସ୍ୱାୟତ୍ତଶାସନ

ଏଠା ଜିଲା ବୋର୍ଡର ୨୭ ଜଣ ସଭ୍ୟ ମଧ୍ୟରୁ ୨୧ ଜଣ ଲୋକଙ୍କ ଦ୍ୱାରା ମନୋନୀତ ଓ ୭ ଜଣ ସରକାରଙ୍କ ଦ୍ୱାରା ନିଯୁକ୍ତ । ଏହା ଅଧୀନରେ ବାଲେଶ୍ୱର ଓ ଭଦ୍ରକଠାରେ ଦୁଇଟି ଲୋକାଲ ବୋର୍ଡ ଅଛି । ଶିକ୍ଷା, ସ୍ୱାସ୍ଥ୍ୟ, ରାସ୍ତା, ଜଳ-ଯୋଗାଇବା ଇତ୍ୟାଦି ଏ ବୋର୍ଡର କାର୍ଯ୍ୟ ।

## ମ୍ୟୁନିସିପାଲିଟି

ବାଲେଶ୍ୱର ସଦରରେ ଗୋଟିଏ ମ୍ୟୁନିସିପାଲିଟି ଅଛି । ସେଥିର ସଭ୍ୟ ସଂଖ୍ୟା ୨୦ । ଶିକ୍ଷା, ସ୍ୱାସ୍ଥ୍ୟ, ରାସ୍ତା ମରାମତି, ଆଲୋକଦାନ ପ୍ରଭୃତି ଏହାର କାର୍ଯ୍ୟ ।

( ଭଦ୍ରକରେ ଗୋଟିଏ ଇଉନିଅନ ବୋର୍ଡ ଅଛି । ତାହାର ସଭ୍ୟସଂଖ୍ୟା ୭ । )



## ବାଲେଶ୍ୱର ଜିଲା ରାଜନୈତିକ ବିଭାଗ ।

| (ସବ୍‌ଡିଭିଜନ ଓ ଲୋକସଂଖ୍ୟା) | (ଥାନା ଓ ଲୋକସଂଖ୍ୟା) | (ପୁଲିଶ ଷ୍ଟେସନ) | (ଲୋକସଂଖ୍ୟା) |
|---|---|---|---|
| ସଦର ସବ୍‌ଡିଭିଜନ ୫୪୧୯୦୩ | (୧) ସୋର ୨୧୮୬୩୩ | ୧ ସୋର | ୮୨୬୪୯ |
| | | ୨ ଖଇର | ୫୪୪୯୭ |
| | | ୩ ଅନନ୍ତପୁର | ୩୪୪୩୪ |
| | | ୪ ସିମିଳିଆ | ୪୭୦୫୩ |
| | (୨) ବାଲେଶ୍ୱର ୧୦୨୩୬୪ | ୧ ବାଲେଶ୍ୱର | ୭୮୮୪୩ |
| | | ୨ ରେମୁଣା | ୨୩୫୨୧ |
| | (୩) ଜଳେଶ୍ୱର ୫୩୦୨୭ | ୧ ଜଳେଶ୍ୱର | ୩୭୦୫୪ |
| | | ୨ ନାମୋ | ୧୫୯୭୩ |
| | (୪) ବାଲିଆପାଳ ୧୦୦୧୦୬ | ୧ ବାଲିଆପାଳ | ୪୪୬୫୯ |
| | | ୨ ପଞ୍ଚପଲ୍ଲୀ | ୧୨୯୮୩ |
| | | ୩ ଭୋଗରାଇ | ୪୨୪୬୪ |
| | (୫) ବସ୍ତା ୬୭୭୭୩ | ୧ ବସ୍ତା | ୪୩୨୪୨ |
| | | ୨ ଫିଲା | ୧୪୨୬୪ |
| | | ୩ ରାଜଘାଟ | ୧୦୨୬୭ |
| ଭଦ୍ରକ ସବ୍‌ଡିଭିଜନ ୪୩୮୬୦୧ | (୧) ଭଦ୍ରକ ୧୮୧୮୪୧ | ୧ ଭଦ୍ରକ | ୧୪୦୦୨୨ |
| | | ୨ ବନ୍ତ | ୪୧୮୧୯ |
| | (୨) ବାସୁଦେବପୁର ୭୧୦୨୬ | ୧ ବାସୁଦେବପୁର | ୭୧୦୨୬ |
| | (୩) ଧାମନଗର ୧୨୯୦୫୬ | ୧ ଧାମନଗର | ୮୫୪୬୬ |
| | | ୨ ଭଣ୍ଡାରି ପୋଖରୀ | ୪୩୫୯୦ |
| | (୪) ଚାନ୍ଦବାଲି ୫୬୬୭୮ | ୧ ଚାନ୍ଦବାଲି | ୫୬୬୭୮ |

## ଅନୁଗୁଳ

ଏ ଜିଲାର କ୍ଷେତ୍ରଫଳ ୧୬୮୧ ବର୍ଗମାଇଲ । ଗ୍ରାମସଂଖ୍ୟା ୧୫୬୧ ଓ ଲୋକସଂଖ୍ୟା ୨୨୨୭୧୦ । ଏହାର ପ୍ରଧାନ ନଗର ଅନୁଗୁଳ, ନଗ୍ରା କୂଳରେ । ପୂର୍ବନାମ ହୁଲୁରସିଙ୍ଗା । ଏଠାରେ ଡେପୁଟି କମିସନରଙ୍କ ଅଫିସ, ଡାକ୍ତରଖାନା, ସ୍କୁଲ ଓ ଗୋଟିଏ ବଜାର ଅଛି । ବଳରାମପ୍ରସାଦରେ ଦୁର୍ଗର ଭଗ୍ନାବଶେଷ ଅଛି । କୋଶଳରେ ରାମଚଣ୍ଡୀଙ୍କଠାରେ ଝୁଲଣ ପୂର୍ଣ୍ଣିମା ସମୟରେ ମେଳା ହୁଏ । କୃଷ୍ଣଚନ୍ଦ୍ରରେ ସ୍ୱାଧୀନ ରାଜାଙ୍କର ଶେଷ ରାଜଧାନୀ ହୋଇଥିବାର ଚିହ୍ନମାନ ଅଛି । କୁଳଙ୍ଗୀରେ ପଞ୍ଚଖଣ୍ଡୀ ଦେବଙ୍କ ମନ୍ଦିର ଅଛି । ପୁରୁଣାଗଡ଼ରେ ଜଗନ୍ନାଥ ଓ ମଦନମୋହନ ଠାକୁରଙ୍କର ମନ୍ଦିର ବିଦ୍ୟମାନ । ସନ୍ଧୀରେ ଲୋଭୀ ଠାକୁରାଣୀଙ୍କଠାରେ କାର୍ତ୍ତିକ ପୂର୍ଣ୍ଣିମାରେ ମେଳା ହୁଏ । ତଳଗଡ଼, ନୂଆଗଡ଼, କନ୍ତମେଘ, ବଳଙ୍ଗ, ପୁରୁଣାକୋଟ କାଗଜ ଓ କମଳାଲେମ୍ବୁ ନିମିତ୍ତ ପ୍ରସିଦ୍ଧ । ତଳମୂଳ, ମାଣିକଯୋଡ଼, ଜଗନ୍ନାଥପୁର, ପୁରୁଣାକୋଟ ଅଭ୍ର

କମିଷ୍ଠ ଓ ଉପରବର୍ଗ ଏବଂ ଭୁରୁଡ଼ ଲୌହ କର୍ମଷ୍ଠ ବିଖ୍ୟାତ । ହାତୀଖୋଲରେ ଅନେକ ବନ୍ୟହସ୍ତୀ ଦେଖାଯାନ୍ତି । ଗଡ଼ ତଳମୂଳଠାରେ ରାଜାଙ୍କ ପାଇକମାନଙ୍କର ଛାଉଣି ଥିଲା । ଶାସନ—ତଳମୂଳରେ ବ୍ରାହ୍ମଣ ଶାସନ ଓ ପାଟଣା—ତଳମୂଳରେ ହାଡ଼ୁଅଙ୍କର ବାସସ୍ଥାନ । ଫୁଲବାଣୀର ପୂର୍ବନାମ ବଇଫ । ଏଠାରେ କଚେରୀମାନ, ଡାକ୍ତରଖାନା ଓ ସ୍କୁଲ ପ୍ରଭୃତି ଅଛି । ବଳସ୍କୁମ୍ପାରେ ବଡ଼ ରାଉଳ ଠାକୁରାଣୀଙ୍କ ନିକଟରେ ଅଗ୍ରହାନ ମାସରେ ମେଳା ହୁଏ । ଏ ଜିଲ୍ଲାରେ ଗୋଟିଏ ଉଚ୍ଚ ଇଂରାଜୀ ଓ ଫୁଲବାଣୀରେ ଗୋଟିଏ ମଧ୍ୟ ଇଂରାଜୀ ବିଦ୍ୟାଳୟ ଅଛି । କଟକ ସଡ଼କ, ସମ୍ବଲପୁର ସଡ଼କ, ବାଗଦୁଆ ସଡ଼କ, ଫୁଲବାଣୀ-ଅନୁଗୁଳ, କୁଦ୍ଧଗଡ଼, କଟରଙ୍ଗିଆ, କୁମାରଖୋଲ୍, ବୁଲଣ୍ଡପଡ଼ା ଓ ନୂଆପଡ଼ା ସଡ଼କ ପ୍ରଧାନ । ସାଧାରଣ ସ୍ୱାସ୍ଥ୍ୟ ଭଲ ନୁହେ ।

## ରାଜନୈତିକ ବିଭାଗ

୧ ଅନୁଗୁଳ ସବ୍‌ଡିଭିଜନ ଉ :—ରେଢ଼ାଖୋଲ ଓ ବାମଣ୍ଡା,
ପୂ :—ତାଳଚେର, ଢେଙ୍କାନାଳ ଓ ହିନ୍ଦୋଳ,
ଦଃ :—ଦଶପଲ୍ଲା ଓ ନରସିଂହପୁର
ପ :—ଆଠମଲ୍ଲିକ

କ୍ଷେତ୍ରଫଳ ୮୮୧ ବର୍ଗମାଇଲ
ଲୋକସଂଖ୍ୟା—ପ୍ରାୟ ୧୪୦ ହଜାର

( ୧୯୨୧ ସେନ୍‌ସେସ୍ )

| (ପୁଲିସ ଷ୍ଟେସନ) | ଲୋକସଂଖ୍ୟା |
|---|---|
| ୧—ଅନୁଗୁଳ | ୪୬୫୫୧ |
| ୨—ବାନ୍ତିଲା | ୧୫୯୭୨ |
| ୩—ଜରପଡ଼ା | ୧୯୮୩୧ |
| ୪—ପୁରୁଣାକୋଟ | ୭୨୮୦ |
| ୫—ଛେଣ୍ଡିପଦା | ୨୧୬୬୧ |

୨ କନ୍ଧମାଳ ସବ୍‌ଡିଭିଜନ—ସୀମା—ଉଃ, ପୂ, ଓ ପଃ—ବୌଦ, ଦ,—ଗଞ୍ଜାମ ଜିଲ୍ଲା ।

ଏହାର କ୍ଷେତ୍ରଫଳ ୮୦୦ ବର୍ଗମାଇଲ ଓ
ଲୋକସଂଖ୍ୟା—ପ୍ରାୟ ୮୨ ହଜାର

(୧୯୨୧ ସେନ୍‌ସେସ୍)

| ( ପୁଲିସ ଷ୍ଟେସନ ) | ( ଲୋକସଂଖ୍ୟା ) |
|---|---|
| ୧ । ଫୁଲବାଣୀ | ୨୦୩୯୯ |
| ୨ । ଖେଜୁରିପଡ଼ା | ୧୯୭୮୦ |
| ୩ । ଫିରିଙ୍ଗିଆ | ୧୯୦୯୭ |
| ୪ । ଗୋଛାପଡ଼ା | ୧୫୦୮୪ |

ଅନୁଗୁଳ ଜିଲ୍ଲାର ଲୋକସଂଖ୍ୟା (୧୯୩୧ ସେନ୍‌ସେସ ଅନୁସାରେ) ୨୨୨, ୭୩୭

| | |
|---|---|
| ଉତ୍ତମ ଜାତି ହିନ୍ଦୁ | ୧୨୭,୯୩୦ |
| ମୁସଲମାନ | ୨୯୩ |
| ଖ୍ରୀଷ୍ଟିୟାନ | ୩୦୭ |
| ନୀଚ ଜାତି ହିନ୍ଦୁ | ୩୭,୭୩୩ |
| କନ୍ଧ | ୫୮,୪୬୩ |

| | ଅନୁଗୁଳ ସଦର ସବ୍‌ଡିଭିଜନ | କନ୍ଧମାଳ ସବ୍‌ଡିଭିଜନ |
|---|---|---|
| ଉଚ୍ଚ ଜାତି ହିନ୍ଦୁ | ୧୦୪,୫୧୪ | ୨୩,୯୦୦ |
| ମୁସଲମାନ | ୨୭୩ | ୨୮ |
| ଖ୍ରିଷ୍ଟିଆନ | ୨୨୦ | ୨୮ |
| ନୀଚ ହିନ୍ଦୁ | ୩୫,୨୪୯ | ୮୭ |
| କନ୍ଧ | ୨୦୯ | ୫୮,୨୭୪ |
| ମୋଟ | ୧୪୦,୪୫୭ | ୮୨,୨୭୮ |

## ଅନୁଗୁଳ ଜିଲ୍ଲାର ନଦୀମାନ

ମହାନଦୀ, ବଡ଼ଯୋଡ଼, ଟିକରା, ଅଇଁଳ, ନିଗ୍ରା, ବଉଳ, ମାତଳିଆ, ସିଙ୍ଗାରିତନଈ, ବାଘ, ସାଲକୀ ।



ଈଷତ୍ପ୍ର ହୃଦୟେ ଶାନ୍ତି ବାଇ ସର୍ବ୍ବଁ ।

## ସମ୍ବଲପୁର ଜିଲ୍ଲା

ସମଲେଇ ଠାକୁରାଣୀଙ୍କ ନାମରୁ ଏ ଜିଲ୍ଲାର
ନାମକରଣ ହୋଇଅଛି ।

ସୀମା :—ଉଃ—ଗାଙ୍ଗପୁର, ପୂଃ— ବାମଣ୍ଡା, ରେଢ଼ାଖୋଲ ଓ ସୋନପୁର, ଦଃ—ପାଟନା ଷ୍ଟେଟ୍ ଏବଂ ପଃ— ମଧ୍ୟପ୍ରଦେଶ । ଏହାର କ୍ଷେତ୍ରଫଳ ୩୮୨୪ ବର୍ଗମାଇଲ ଏବଂ ଲୋକସଂଖ୍ୟା—୮୮୦୮୫୭ ଗ୍ରାମସଂଖ୍ୟା—୧୧୭୧

ଏ ଜିଲ୍ଲାର ପ୍ରଧାନ ନଗର ସମ୍ବଲପୁର । ଲୋକସଂଖ୍ୟା-ପ୍ରାୟ ୩ ଲକ୍ଷ ୨୬ ହଜାର । ଏଠାରେ ଗଡ଼ଜାତର ପୋଲିଟିକେଲ ଏଜେଣ୍ଟ ଓ କମିଶନର, ଡେପୁଟି କମିଶନର, ଶିକ୍ଷାବିଭାଗର ଏଜେନ୍ସି-ଇନ୍‌ସ୍ପେକ୍ଟର ପ୍ରଭୃତିଙ୍କ ଅଫିସମାନ ଅଛି । ଏଠାରେ ସମଲେଇ ଠାକୁରାଣୀ, ବଡ଼ ଜଗନ୍ନାଥ, ବ୍ରହ୍ମପୁର ମନ୍ଦିର ଓ ଗୋଟିଏ ଦୁର୍ଗର ଭଗ୍ନାବଶେଷ ଅଛି । ଧମାଠାରେ ବିଖ୍ୟାତ ହାଟ ବସେ ଓ ଅନେକ କାଠର କାରବାର ହୁଏ । ହୀରାକୁଦ ମହାନଦୀର ଦୁଇସୋଁତି ଧାର ମଧ୍ୟରେ । ଏହାର ନିକଟବର୍ତ୍ତୀ ନଦୀଶଯ୍ୟାରୁ ମୂଲ୍ୟବାନ୍ ହୀରାଖଣ୍ଡମାନ ମିଳୁଥିଲା । ଝାରସୁଗୁଡ଼ାରେ ସମ୍ବଲପୁର ରାଜପରିବାରର ବଂଶଧରମାନେ ବାସ କରନ୍ତି । ବରଗଡ଼ରେ ସବ୍‌ଡିଭିଜନ କଚେରୀ ପ୍ରଭୃତି ଅଛି । ଅମ୍ବାଭୋନାରେ ଗୋଟିଏ ପୁରାତନ ଦୁର୍ଗର ଭଗ୍ନାବଶେଷ ଓ କେଦାରନାଥ ଶିବଙ୍କର ପୁରାତନ ମନ୍ଦିର ଅଛି । ହୁମାଁରେ ମାହେଶ୍ୱରଙ୍କ ବିଖ୍ୟାତ ମନ୍ଦିର ଅଛି । ନରସିଂହ ନାଥଠାରେ ଥିବା କାରୁକାର୍ଯ୍ୟ ବିଶିଷ୍ଟ ପୁରାତନ ମନ୍ଦିର ଓ ପାପହାରିଣୀ ନାଳା ବିଖ୍ୟାତ । ରେମେଣ୍ଡରେ ଭଲ ମଠାଶାଢ଼ୀ ଓ ଧୋତି ବୁଣାଯାଏ । ଝାରସୁଗୁଡ଼ା ବାଣିଜ୍ୟର କେନ୍ଦ୍ର । ଦେବ୍‌ଗଡ଼ରେ ଥିବା ବାରବଖରା ଗୁମ୍ଫାରେ ୪୦୦ ଲୋକ ବସି ପାରନ୍ତି । ବରପାଲିରେ ଭଲ ମଠାଲୁଗା ମିଳେ ଏ ଜିଲ୍ଲାରେ ଦୁଇଟି ଉଚ୍ଚ ଇଂରାଜୀ ଓ ଛଅଟି ମଧ୍ୟ ଇଂରାଜୀ ବିଦ୍ୟାଳୟ ଅଛି । ସୂତାର ମୋଟା ଲୁଗା ଓ ତସରର ଲୁଗାମାନ ଏଠାରେ ବୁଣାଯାଏ । ଏଠାରେ ପ୍ରସ୍ତୁତ ବସ୍ତ୍ରମାନ ଖାଣ୍ଟି । ସୁନା, ରୁପା ଓ କଂସା ପିତ୍ତଳର ପଦାର୍ଥମାନ କେତେକ ଲୋକ ଗଢ଼ନ୍ତି । ଏ ଜିଲ୍ଲାରେ ୧୦ଟି ଡାକ୍ତରଖାନା ଅଛି । ବରଗଡ଼, ଭୁକ୍ତା, ସାହେଲା, ଲଇମୁଣ୍ଡା, ଜୈଉଟେନପାଲି, କାଦୋବାହାଲ, କମ୍ପଲବଜାର, ସମ୍ବଲପୁର, ତାଳପଟିଆ, ଧମା ପ୍ରଭୃତି ହାଟ ଓ ବାଣିଜ୍ୟର ପ୍ରଧାନ କେନ୍ଦ୍ର । ରାଇପୁର, ସୋନପୁର, କଟକ, ବରଗଡ଼, ବଲାଙ୍ଗିର, ମେଦିନୀପୁର ସଡ଼କ ପ୍ରଧାନ । ଲୋକେ ରେଲରେ ଖଡ଼୍‌ଗପୁର ବାଟେ ଝାରସୁଗୁଡ଼ା ଦେଇ ସମ୍ବଲପୁର ଯାଆନ୍ତି । ଏହାଠାରୁ ରେଲରେ ତାଳଚେର ପର୍ଯ୍ୟନ୍ତ ଆସି ମଟରଦ୍ୱାରା ସମ୍ବଲପୁରକୁ ଯିବା ସୁବିଧାଜନକ । ଏ ଜିଲ୍ଲାରେ ୨୫ଟି ଜମିଦାରୀ ଅଛି ।

## ସମ୍ବଲପୁର ଜିଲାର ନଦୀମାନ

ମହାନଦୀ, ଇବ, ଭେଡ଼ନ, ଅଙ୍ଗ, ମାଳଡଙ୍ଗୋର, ହରଦ, ଜମଲା, ଜିରା ଓ ଜୋକ ।

## ସ୍ୱାୟତ୍ତଶାସନ

ଏଠାରେ ଗୋଟିଏ ଜିଲ୍ଲାକାଉନ୍‌ସିଲ ଅଛି । ସେଥିର ସଭ୍ୟସଂଖ୍ୟା ୨୪ । ଏହା ଅଧୀନରେ ୪ ଗୋଟି ସ୍ଥାନୀୟ ବୋର୍ଡ ଅଛି । କଟକ ଜିଲ୍ଲା ବୋର୍ଡର କ୍ଷମତା ଓ କାର୍ଯ୍ୟ ଯାହା ଏ ବୋର୍ଡର କ୍ଷମତା ଓ କାର୍ଯ୍ୟ ମଧ୍ୟ ତାହା ।

## ମ୍ୟୁନିସିପାଲିଟି

ସମ୍ବଲପୁର ନଗରରେ ୨୦ ଜଣ ସଭ୍ୟଙ୍କୁ ନେଇ ଏକ ମ୍ୟୁନିସିପାଲିଟି ଅଛି । ଆଲୋକଦାନ, ଶିକ୍ଷାବିସ୍ତାର, ସ୍ୱାସ୍ଥ୍ୟୋନ୍ନତି ଓ ରାସ୍ତା ମରାମତି ଏହାର କାର୍ଯ୍ୟ ।



ଦୂର କର କଷ୍ଟ ବିଷାଦ ବେଦନା ।

| ( ସବ୍‌ଡିଭିଜନ ଓ ଲୋକସଂଖ୍ୟା) | (ଥାନା ଓ ପୁଲିସ ଷ୍ଟେସନ) | (ଲୋକ ସଂଖ୍ୟା) |
|---|---|---|
| ସଦର ସବ୍‌ଡିଭିଜନ ୩୦୩୬୧୯ | ୧ ସମ୍ବଲପୁର | ୫୧୬୦୯ |
| | ୨ ଝାରସୁଗଡ଼ା | ୪୧୯୪୪ |
| | ୩ ଲାଇକେରା | ୪୨୯୫୧ |
| | ୪ ମୁରା | ୨୬୨୧୦ |
| | ୫ ରମ୍ପେଲ୍ଲ | ୩୦୧୪୮ |
| | ୬ କାରବଗେ | ୩୫୪୦୬ |
| | ୭ ଶାସନ | ୨୯୬୩୧ |
| | ୮ ଧମା | ୨୮୯୬୫ |
| | ୯ ମୁଣ୍ଡେର | ୧୫୫୪୪ |
| ବରଗଡ଼ ୪୮୫୬୪୬ | ୧ ବରଗଡ଼ | ୫୫୮୩୪ |
| | ୨ ଅତ୍ତାବିରା | ୪୯୦୯୪ |
| | ୩ ସୋହେଲା | ୩୯୬୫୬ |
| | ୪ ଅମ୍ବାଭୋନା | ୨୮୬୧୬ |
| | ୫ ପଦ୍ମପୁର | ୩୮୪୯୬ |
| | ୬ ଭେଡ଼ନ | ୪୬୮୦୫ |
| | ୭ ବିଜେପୁର | ୩୮୫୪୧ |
| | ୮ ମେଲ୍ଛମୁଣ୍ଡା | ୨୩୬୪୧ |
| | ୯ ଖୈସିଲ୍ଲତ | ୨୫୬୯୧ |
| | ୧୦ ଜଗଦଲପୁର | ୨୮୬୨୮ |
| | ୧୧ ବରପାଲି | ୪୩୫୫୬ |
| | ୧୨ ଭଟଲି | ୪୧୨୧୮ |
| | ୧୩ ପାଇକମଲ | ୨୪୬୩୯ |

## ଜମିଦାରମାନଙ୍କ ନାମ ଓ ସେମାନଙ୍କ କ୍ଷେତ୍ରଫଳ

| | | | | | | | |
|---|---|---|---|---|---|---|---|
| ୧ | ବୁଢ଼ାସମ୍ବର | ୮୪୧, | ( ଖ ) | ୯ | ପାହ୍‌କୁଲୁଣ୍ଡା | ୬, | ( ଖ ) |
| ୨ | ବରପାଲି | ୯୮, | ( ଖ ) | ୧୦ | କୋଲାବିରା | ୨୬୮, | ( କ ) |
| ୩ | ବିଜେପୁର | ୮୩, | ( ଖ ) | ୧୧ | ରାମପୁର | ୧୪୯, | ( କ ) |
| ୪ | ଘେସ | ୪୦, | ( ଖ ) | ୧୨ | ରାଜପୁର | ୩୬, | ( କ ) |
| ୫ | ଭେଡାନ୍ | ୩୩, | ( ଖ ) | ୧୩ | କୋଡ଼ାବଗା | ୨୯, | ( କ ) |
| ୬ | ଖରସାଲ | ୨୮, | ( ଖ ) | ୧୪ | ମଛଦା | ୧୦, | ( କ ) |
| ୭ | ପାହାଡ଼ଶ୍ରୀଗିଡ଼ା | ୧୭, | ( ଖ ) | ୧୫ | ଲାଇଦା | ୪୧, | ( କ ) |
| ୮ | ମାଣ୍ଡୋମହଲ | ୭, | ( ଖ ) | ୧୬ | ଲୋଇସିଂ | ୧୫, | ( କ ) |

ସମ୍ବଲପୁର ତହସିଲରେ ୭୪୩ ବର୍ଗମାଇଲ ଓ ୭ ଟି ଜମିଦାରୀ ( କ )
ବରଗଡ଼ ତହସିଲରେ ୮୨୭ ବର୍ଗମାଇଲ ଓ ୯ ଟି ଜମିଦାରୀ ( ଖ )

ପୂର କରବାର ଅପାର ଭାବନା ॥

## ଗଡଜାତ

ମହାନଦୀ ମଧ୍ୟରେ ପ୍ରସିଦ୍ଧ ଧବଳେଶ୍ୱରଙ୍କ ମନ୍ଦିର ଅଛି । ଅଠମଲ୍ଲିକରେ କଇନ୍ତ୍ରାଗଡ଼ଠାରେ ହୃଷ୍ଟପ୍ରସ୍ରବଣ ଅଛି । ତାଳଚେରରେ ବିଖ୍ୟାତ ହିଙ୍ଗୁଳାଦେବୀଙ୍କ ମନ୍ଦିର ଅଛି । ଏଠାରେ ଲୁହା ଓ ପଥର କୋଇଲି ଖଣି ଅଛି । ଟିଗିରିଆରେ ଭଣ୍ଡାରିକା ଠାକୁରାଣୀ ଅଛନ୍ତି । ବଡ଼ାମ୍ବାପାଖ ମହାନଦୀ ମଧ୍ୟରେ ନରସିଂହ ନାଥ ମନ୍ଦିର ବିଦ୍ୟମାନ । ନରସିଂହପୁରସ୍ଥ ଚମ୍ପେଶ୍ୱରଠାରେ ଚମ୍ପାନାଥ ମହାଦେବ ଅଛନ୍ତି । କାନପୁର ପ୍ରଧାନ ଗ୍ରାମ । ବୁଢ଼ାବୁଢ଼ି ଘଣ୍ଟି ଉପରେ କେତେକ ଗ୍ରାମ ଅଛି । ମାଣିଆବନ୍ଧ ଓ ରତ୍ନପଡ଼ାରେ ମାଣିଆବନ୍ଧ ଲୁଗା ପ୍ରସ୍ତୁତ ହୁଏ । କଣ୍ଟିଲୋରେ ନୀଳମାଧବଙ୍କ ମନ୍ଦିର ଅଛି ଓ ଭଲ ବାସନ ମିଳେ । ନୂଆପାଟଣା ତସର ଲୁଗା ଓ ଖଣ୍ଡୁଆ ପାଇଁ ପ୍ରସିଦ୍ଧ । ଆନନ୍ଦପୁର, କ୍ୟୋଝପୁର, ପଦ୍ମାବତୀ, ଇଟାମାଟି, କଣ୍ଟିଲୋ, ଗୋପୀନାଥପୁର, କାନପୁର ପ୍ରସିଦ୍ଧ ବାଣିଜ୍ୟ ସ୍ଥାନ । ଓଡ଼ଗାଁରେ ରଘୁନାଥଙ୍କ ମନ୍ଦିର ଓ ଶରଣକୁଳର ଲଡ଼ୁବାବାଙ୍କ ମନ୍ଦିର ଅଛି । କପିଳାସ ପର୍ବତରେ ମହାଦେବ ମନ୍ଦିର ଓ ନିର୍ଝର ଅଛି । ସପ୍ତଶଯ୍ୟା ପର୍ବତରେ ନିର୍ଝର ଅଛି । କେନ୍ଦୁଝର ଉଷ୍ଣ ସୀତାବ୍ରତାର ପାଇଁ ପ୍ରସିଦ୍ଧ । ଦେଓଗାଁରେ କୁଶଳେଶ୍ୱରଙ୍କ ମନ୍ଦିର ଅଛି । ନୀଳଗିରିରେ ମୁଗୁନିପଥର ବାସନ ମିଳେ । କାଦଖୁଲାର ଅଳ୍ପଦୂରରେ ଖଣ୍ଡାଧାର ଜଳପ୍ରପାତ ଅଛି । ଖଡ଼ପୁରରେ ମୁଗୁନି ପଥରର ଖଣିଅଛି । ଅଯୋଧ୍ୟାରେ ବୌଦ୍ଧକୀର୍ତ୍ତି ଅଛି । ହିନ୍ଦୋଳରେ ଭଲ କମଳାଲେମ୍ବୁ ମିଳେ । ରାଇରଙ୍ଗପୁର ପ୍ରଧାନହାଟ । ମାଣିକ୍ୟ ଶିବମନ୍ଦିର ଅଛି । ରବୁଆରେ କୀଚକେଶ୍ୱରୀ ମନ୍ଦିର ଅଛି । ଖିଚିଂଠାରେ ପ୍ରତ୍ନତତ୍ତ୍ୱ ଅବସ୍ଥାର ଚିହ୍ନ ଅଛି । ମୟୂରଭଞ୍ଜର ତସର ଲୁଗା ପ୍ରସିଦ୍ଧ । ଜୋରନ୍ଦାରେ ଅଲେଖ ଭକ୍ତଙ୍କର ଗାଦିଅଛି । ଅନୁଗୁଳର ଝୁଣା ପ୍ରସିଦ୍ଧ । ସୋନପୁରରେ ଟସରର କାରବାର ଚଳେ । ଦେବଗଡ଼ ନିକଟରେ ଥିବା ପ୍ରଧାନ ଖଣ୍ଡାଗରର ପ୍ରଧାନପାଟ ଜଳପ୍ରପାତ ଓଡ଼ିଶାରେ ବିଖ୍ୟାତ । ଗାଙ୍ଗପୁରରେ ମହାନଦୀର ଉପନଦୀ ଇବରେ ସମୟ ସମୟରେ ହୀରା ମିଳେ । ଓଲମରା ଟସର ଲୁଗା ପାଇଁ ପ୍ରସିଦ୍ଧ । ଖାରଡ଼ରେ କାଳୀ ଅଛନ୍ତି । ଗାଙ୍ଗପୁର ଭୁବନରେ ଭଲ କଂସାବାସନ ମିଳେ । ମୟୂରଭଞ୍ଜ, ଅଠମଲ୍ଲିକ, ଗାଙ୍ଗପୁର, ଦଶପଲ୍ଲା ଓ ବାମଣ୍ଡା ବ୍ୟତୀତ ଅନ୍ୟ ଗଡ଼ଜାତମାନଙ୍କର ନାମ ଯାହା ରାଜଧାନୀର ନାମ ତାହା । ଦଶପଲ୍ଲାର ରାଜଧାନୀ କୁଞ୍ଜବନ, ଅଠମଲ୍ଲିକର ରାଜଧାନୀ କଇନ୍ତ୍ରାଗଡ଼, ବାମଣ୍ଡାର ରାଜଧାନୀ ଦେଓଗଡ଼, ମୟୂରଭଞ୍ଜର ରାଜଧାନୀ ବାରିପଦା ଏବଂ ଗାଙ୍ଗପୁରର ରାଜଧାନୀ ସୁନ୍ଦରଗଡ଼ ଅଟେ । ବହଳଦା, କପ୍ତିପଦା, ମାଣିକି, ଦାସପୁର ମୟୂରଭଞ୍ଜରେ; ଖଡ଼ପୁର, ଅଯୋଧ୍ୟା ନୀଳଗିରିରେ; ଆନନ୍ଦପୁର କେନ୍ଦୁଝରରେ; ଗୋପାଳପ୍ରସାଦ ତାଳଚେରରେ; ଭୁବନ ଏବଂ ମତ୍ତି ଢେଙ୍କାନାଳରେ; ରସୋଲ ହିନ୍ଦୋଳରେ; ପାଣ୍ଡୁଗାଁ ଟିଗିରିଆରେ; ବାଙ୍ଗରସିଂହା ଓ ମାଣିଆବନ୍ଧ ବଡ଼ାମ୍ବାରେ; କାନପୁର ନରସିଂହ ପୁରରେ; ହଣ୍ଡପା ଅଠମଲ୍ଲିକରେ; କୁସୁମଗଡ଼ ଓ ଦଗପଲ୍ଲୀ ବୌଦ୍ଧରେ; କୁଞ୍ଜବନ ଦଶପଲ୍ଲାରେ; କଣ୍ଟିଲୋ ଓ ପଦ୍ମାବତୀ ଖଣ୍ଡପଡ଼ାରେ; ଇଟାମାଟି ଓ ବିରୁଦା ନୟାଗଡ଼ରେ ଏବଂ ଗୋପାଳପୁର ରଣପୁରରେ ପ୍ରଧାନ ପ୍ରଧାନ ଗ୍ରାମ ଅଟେ ।



## ଗଡ଼ଜାତର ଆୟ ବିବରଣ ।

| | |
|---|---|
| ୧—ମୟୂରଭଞ୍ଜ | ଟ ୨୬୩୭ ୦୦୦ |
| ୨—କେନ୍ଦୁଝର | ଟ ୧୪୨ ୦୦୦ |
| ୩—ବଲାଙ୍ଗିର ପାଟଣା | ଟ ୮୫୫ ୦୦୦ |
| ୪—ଗାଙ୍ଗପୁର | ଟ ୬୫୫ ୦୦୦ |
| ୫—କଳାହାଣ୍ଡି | ଟ ୬୩୨ ୦୦୦ |
| ୬—ବାମଣ୍ଡା | ଟ ୫୧୧ ୦୦୦ |
| ୭—ଢେଙ୍କାନାଳ | ଟ ୫୦୧ ୦୦୦ |
| ୮—ସୋନପୁର | ଟ ୩୬୫ ୦୦୦ |
| ୯—ନୟାଗଡ଼ | ଟ ୩୫୪ ୦୦୦ |
| ୧୦—ନୀଳଗିରି | ଟ ୩୫୪ ୦୦୦ |
| ୧୧—ବୌଦ୍ଧ | ଟ ୨୮୨ ୦୦୦ |
| ୧୨—ତାଳଚେର | ଟ ୨୬୮ ୦୦୦ |
| ୧୩—ବଣାଇ | ଟ ୨୩୬ ୦୦୦ |
| ୧୪—ଅଠମଲ୍ଲିକ | ଟ ୨୦୦ ୦୦୦ |
| ୧୫—ଅଠଗଡ଼ | ଟ ୧୬୧ ୦୦୦ |



ମୟୂରଭଞ୍ଜାଧୀଶ୍ୱର
ମହାରାଜା ଶ୍ରୀ ଶ୍ରୀ ପ୍ରତାପଚନ୍ଦ୍ର ଭଞ୍ଜଦେବ



ରାଜା ଓ ଚୁଲଙ୍ଗରଫ୍ ଶ୍ରୀ ଶ୍ରୀ ରଘୁନାଥ ଦେବ—ଅଠଗଡ଼ ଷ୍ଟେଟ୍



ରାଜା ଶ୍ରୀ ଶ୍ରୀ ରାମଚନ୍ଦ୍ର ଦେବ—ପୁରୀ



ଶ୍ରୀ ଶ୍ରୀ ଶ୍ରୀ କିଶୋରଚନ୍ଦ୍ର ଦେବ, ରାଜାସାହେବ, ଅଠମଲ୍ଲିକ



ରାଜାସାହେବ ବଣେଇ



ଶ୍ରୀ ଶ୍ରୀ ଶ୍ରୀ ନାରାୟଣ ପ୍ରସାଦ ଦେବ, ରାଜାସାହେବ, ବୌଦ୍ଧ



ଶ୍ରୀ ଶ୍ରୀ ଶ୍ରୀ କିଶୋରଚନ୍ଦ୍ର ଦେବ ଭଞ୍ଜ ରାଜା ସାହେବ ଦଶପଲ୍ଲା 



ଶ୍ରୀ ଶ୍ରୀ ଶ୍ରୀ ରାଜେନ୍ଦ୍ର ନାରାୟଣ ସିଂହ ଦେବ ମହାରାଜା ସାହେବ, ପାଟଣା



ଶ୍ରୀ ଶ୍ରୀ ଶଙ୍କରପ୍ରତାପ ମହୀନ୍ଦ୍ର ବାହାଦୁର
ରାଜା ଏବଂ ରୁଲିଙ୍ଗ ଚିଫ, ଢେଙ୍କାନାଳ



ଶ୍ରୀ ଶ୍ରୀ ଶ୍ରୀ ଅନନ୍ତନାରାୟଣ ମାନସିଂହ ହରିଚନ୍ଦନ ମହାପାତ୍ର
ରାଜାସାହେବ ଓ ରୁଲିଂ ଚିଫ୍, ନରସିଂହପୁର ଷ୍ଟେଟ

| | |
|---|---|
| ୧୬—ଖଣ୍ଡପଡ଼ା | ଟ ୧୩୫ ୦୦୦ |
| ୧୭—ହିନ୍ଦୋଳ | ଟ ୧୨୨ ୦୦୦ |
| ୧୮—ନରସିଂହପୁର | ଟ ୧୧୬ ୦୦୦ |
| ୧୯—ବଡ଼ାମ୍ବା | ଟ ୧୦୮ ୦୦୦ |
| ୨୦—ରେଢ଼ାଖୋଲ | ଟ ୮୨ ୦୦୦ |
| ୨୧—ପାଲଲହଡ଼ା | ଟ ୮୦ ୦୦୦ |
| ୨୨—ରଣପୁର | ଟ ୭୭ ୦୦୦ |
| ୨୩—ତିଗିରିଆ | ଟ ୩୨ ୦୦୦ |

# ଓଡ଼ିଶା ଗଡ଼ଜାତର ଇତିହାସ ।

## ମୟୂରଭଞ୍ଜ

ଉଃ- ସିଂହଭୂମ ଜିଲ୍ଲା, ପଃ- ସିଂହଭୂମ ଓ କେନ୍ଦୁଝର, ଦଃ- ବାଲେଶ୍ୱର ଜିଲ୍ଲା, ପୂଃ- ବାଲେଶ୍ୱର ଓ ମେଦିନୀପୁର ଜିଲ୍ଲାମାନ । ଏହାର କ୍ଷେତ୍ରଫଳ ୪୨୪୩ ବର୍ଗମାଇଲ; ଗ୍ରାମ ସଂଖ୍ୟା ୩୭୧୫, ଲୋକ ସଂଖ୍ୟା-ପ୍ରାୟ ୯ଲକ୍ଷ ଏବଂ ପେସକସ୍ ଟ ୧୦୭୭ ୨।୦/ ୯ ପାହି ଓ ଗାଈ ପାଇବା ସମ୍ବନ୍ଧରେ ନଜରାନା ଦିଏ । ଦୁଇ ସହସ୍ରାଧିକ ବର୍ଷ ପୂର୍ବେ ରାଜପୁତାନାର ଜୟପୁର ରାଜବଂଶର ଜଣେ ରାଜପୁରୁଷ ମୟୂରଭଞ୍ଜ ସ୍ଥାପନ କରି ରାଜତ୍ୱ କରୁଥିଲେ । ଏହାର ନାମ 'ହରିହର' ପୁର ଥିଲା । ପରେ ମୟୂର ରାଜବଂଶର ସଙ୍କେତ ଥିବାରୁ ଏବଂ ରାଜାମାନେ ଭଞ୍ଜବଂଶୀୟ ଥିବାରୁ ରାଜ୍ୟ "ମୟୂରଭଞ୍ଜ" ନାମରେ ପରିଚିତ ହେଲା । ପ୍ରାତଃସ୍ମରଣୀୟ ସ୍ୱର୍ଗତ ମହାରାଜ ରାମଚନ୍ଦ୍ର ଭଞ୍ଜ ଦେଓଙ୍କ ରାଜତ୍ୱସମୟରୁ ଏହି ରାଜ୍ୟ କ୍ରମଶଃ ଉନ୍ନତ ହେଉଅଛି ।

## ଢେଙ୍କାନାଳ

ଉଃ- ପାଲଲହଡ଼ା, କେନ୍ଦୁଝର, ଦଃ-ତିଗିରିଆ, ଆଠଗଡ଼, କଟକ, ପୂଃ- କଟକ, କେନ୍ଦୁଝର, ପଃ- ତାଳଚେର, ଅନୁଗୁଳ, ହିନ୍ଦୋଳ । ଏହାର କ୍ଷେତ୍ରଫଳ ୧୪୬୩ ବର୍ଗମାଇଲ, ଗ୍ରାମ ସଂଖ୍ୟା ୮୨୪, ଲୋକ ସଂଖ୍ୟା ୨୮୪୩୨୬ ଓ ପେସ୍କସ୍ ଟ ୫୦୯୯ ୯୯ । ଢେଙ୍କା ନାମକ ଜଣେ ଆରଣ୍ୟକ ରାଜା ଏହି ରାଜ୍ୟ ସ୍ଥାପନ କରିଥିଲେ । ବର୍ତ୍ତମାନ ରାଜବଂଶ ଆରଣ୍ୟକ ରାଜବଂଶକୁ ବହିଷ୍କୃତ କରି ଖ୍ରୀଷ୍ଟ ୧୪ ଶତାବ୍ଦିରେ ରାଜ୍ୟ ଅଧିକାର କରିଥିଲେ । ସେହିକାଳରୁ ପ୍ରାୟ ୨୫ ଜଣ ରାଜା ରାଜତ୍ୱ କରି ଅଛନ୍ତି । ୧୮୬୬ ମସିହାର ଓଡ଼ିଶା ଦୁର୍ଭିକ୍ଷରେ ଏଠାର ରାଜା ବିଶେଷ ସାହାଯ୍ୟ କରିଥିବାରୁ ୧୮୬୯ ସାଲରେ ଗଭର୍ଣ୍ଣମେଣ୍ଟ ତାହାଙ୍କୁ 'ମହାରାଜା' ଉପାଧି ଦେଇଥିଲେ ।

## ଆଠଗଡ଼

ଉଃ- ଓ ପଃ- ଢେଙ୍କାନାଳ, ଦଃ- ଓ ପୂଃ- କଟକଜିଲ୍ଲା । ଏହାର କ୍ଷେତ୍ରଫଳ ୧୬୮ ବର୍ଗ ମାଇଲ, ଗ୍ରାମ ସଂଖ୍ୟା ୨୧୦, ଲୋକ ସଂଖ୍ୟା ପ୍ରାୟ ୫୦ ହଜାର, ପେସକସ୍ ଟ ୨୮୦୦ । ଏହି ରାଜ୍ୟ ଗଜପତିଙ୍କ ଖାସ ଦଖଲ ରାଜ୍ୟ ମଧ୍ୟରେ ଥିଲା । ପ୍ରାୟ ଷୋଡ଼ଶ ଶତାବ୍ଦିରେ ଉତ୍କଳ ରାଜା ଆପଣାର ବେବର୍ତ୍ତା ବା ପ୍ରଧାନ ମନ୍ତ୍ରୀଙ୍କ କନ୍ୟାର ପାଣିଗ୍ରହଣ କରି ମନ୍ତ୍ରୀଙ୍କୁ ରାଜ୍ୟ ଖଣ୍ଡି ଦାନ କରିଥିଲେ । ଏଠା ରାଜବଂଶ ବେବର୍ତ୍ତା ପଟ୍ଟନାୟକ ଉପାଧିଧାରୀ ଓ ଜାତିରେ କରଣ । ଉକ୍ତ ରାଜବଂଶରେ ୧୩ ଜଣ ରାଜା ହୋଇଛନ୍ତି ।

## ଆଠମଲ୍ଲିକ

ଉଃ- ରେଢ଼ାଖୋଲ, ଅନୁଗୁଳ, ପଃ- ଓ ଦଃ- ବୌଦ, ପୂଃ- ଅନୁଗୁଳ । ଏହାର କ୍ଷେତ୍ରଫଳ ୭୩୦ ବର୍ଗ ମାଇଲ, ଗ୍ରାମ ସଂଖ୍ୟା ୫୦୭, ଲୋକ ସଂଖ୍ୟା ପ୍ରାୟ ୭୬ହଜାର ଓ ପେସ୍କସ୍ ଟ ୪୮୦ । ପୂର୍ବେ ଏହି ରାଜ୍ୟ ଅଷ୍ଟମଲ୍ଲ ଶାସନ କରୁଥିଲେ ବୋଲି ରାଜ୍ୟର ନାମ ଆଠମଲ୍ଲିକ ହୋଇଅଛି । ବର୍ତ୍ତମାନ ରାଜବଂଶର ପୂର୍ବ ପୁରୁଷମାନେ କଦମ୍ବ ପୁଷ୍ପ ରାଜଚିହ୍ନ ସ୍ୱରୂପ ଧାରଣ କରୁଥିଲେ ବୋଲି ଏହି ବଂଶକୁ କଦମ୍ବ ବଂଶ କୁହାଯାଏ । ବର୍ତ୍ତମାନ ରାଜା ବଡ଼ ସରଳ, ସାହିତ୍ୟିକ, ପ୍ରଜାରଞ୍ଜକ ଓ ରାଜ୍ୟର ଉନ୍ନତି ପାଇଁ ସର୍ବଦା ଯତ୍ନଶୀଳ ।

## ବଡ଼ାମ୍ବା

ଉଃ-ହିନ୍ଦୋଳ, ପଃ-ନରସିଂହପୁର, ଦଃ-ମହାନଦୀ, ପୂଃ-ତିଗିରିଆ । ଏହାର କ୍ଷେତ୍ରଫଳ ୧୪୨ ବର୍ଗମାଇଲ, ଗ୍ରାମସଂଖ୍ୟା ୧୩୭, ଲୋକସଂଖ୍ୟା ପ୍ରାୟ ୪୭ ହଜାର ଏବଂ ପେସକସ୍ ଟ ୧୩୯୭ ଙ୍କା । ଜଣେ ପ୍ରସିଦ୍ଧ ମଲ୍ଲଯୋଦ୍ଧା ଆପଣାର ବୀରତ୍ୱରେ ଉତ୍କଳର ଗଜପତିଙ୍କୁ ସନ୍ତୁଷ୍ଟ କରି ଦୁଇଖଣ୍ଡ ଗ୍ରାମ ପାଇଥିଲେ । କନ୍ଧମାନେ ସେହି ଗ୍ରାମର ଅଧିବାସୀ ଥିଲେ । ମଲ୍ଲ ଗଜପତିଙ୍କ ଆଶ୍ରୟରେ ସେମାନଙ୍କୁ ତଡ଼ି ଦେଇ ଏହି ରାଜ୍ୟ ସ୍ଥାପନ କଲେ । ଏହାର ନାମ ବୃହଦମ୍ବାରୁ ବଡ଼ମ୍ବା ହୋଇଅଛି । ବୋଧହୁଏ ଭଟ୍ଟାରିକା ଠାକୁରାଣୀ ଏହି ରାଜ୍ୟର

ଅଶ୍ୱସ୍ଥାନୀ ଦେଖା ହୋଇ ରାଜ୍ୟର ନାମ ବୃଦ୍ଧମ୍ବା ଥିଲା । ପ୍ରାୟ ୫୦୦ ବର୍ଷ ପୂର୍ବେ ଏହି ରାଜ୍ୟ ସ୍ଥାପିତ ହୋଇଥିଲା । କ୍ରମେ ସେ ବୃଦ୍ଧି ପାଇଥିଲା । ସେହି ରାଜାଙ୍କ ବଂଶରେ ଆଜକୁ ୨୧ ଜଣ ରାଜପଣ କରିଅଛନ୍ତି । ପୂର୍ବେ ରାଜାମାନେ ସିଂହର ମୁଣ୍ଡ ଚିହ୍ନ ସ୍ୱରୂପ ବ୍ୟବହାର କରୁଥିଲେ, ଏଣୁ କନ୍ଧମାନେ ସିଂହର ମୁଣ୍ଡ ସ୍ୱରୂପ ଟୋପି ବ୍ୟବହାର କରୁଅଛନ୍ତି ।

## ନରସିଂହପୁର

ଉଃ-ଅନୁଗୁଳ, ହିନ୍ଦୋଳ, ପଃ ଓ ଦଃ-ମହାନଦୀ ପୂଃ-ବଡ଼ମ୍ବା ଓ ହିନ୍ଦୋଳ । ଏହାର କ୍ଷେତ୍ରଫଳ ୧୯୯ ବର୍ଗମାଇଲ, ଗ୍ରାମସଂଖ୍ୟା ୧୮୭, ଲୋକସଂଖ୍ୟା ପ୍ରାୟ ୪୧ ହଜାର ଓ ପେସକସ୍ ଟ ୧୪୫୫୫୩ । ନରସିଂହ ଓ ପୁର ନାମରେ ଦୁଇଜଣ କନ୍ଧ ରାଜା ଏଠାରେ ରାଜପଣ କରୁଥିଲେ । ଜଣେ ରାଜପୁତ ସେମାନଙ୍କୁ ମାରି ରାଜଗାଦିରେ ବସିଲେ । ପ୍ରାୟ ପଞ୍ଚଦଶ ଶତାବ୍ଦିରେ ଏହା ଘଟିଥିଲା । ଏଠାକାର ରାଜା କଙ୍କଡ଼ା ଚିତ୍ରର ଛବି ଚିହ୍ନ ସ୍ୱରୂପ ବ୍ୟବହାର କରନ୍ତି । ତାହାଙ୍କ ବଂଶରେ ଆଜକୁ ୨୭ ଜଣ ରାଜା ହୋଇଛନ୍ତି ।

## ହିନ୍ଦୋଳ

ଉଃ-ଢେଙ୍କାନାଳ, ଅନୁଗୁଳ । ପୂଃ-ଢେଙ୍କାନାଳ । ଦଃ-ବଡ଼ମ୍ବା, ନରସିଂହପୁର, ପଃ-ଅନୁଗୁଳ । ଏହାର କ୍ଷେତ୍ରଫଳ ୩୧୨ ବର୍ଗମାଇଲ, ଗ୍ରାମସଂଖ୍ୟା ୧୮୬, ଲୋକସଂଖ୍ୟା ପ୍ରାୟ ୪୧ ହଜାର ଓ ପେସକସ୍ ଟ ୫୫୧୮/୧୧ ଙ୍କା । ତିନି ଗୋଟି ରାଜ୍ୟ ମିଳି ଏହି ରାଜ୍ୟ ହୋଇଅଛି । ଏଠାକାର ରାଜା ଗଙ୍ଗବଂଶୀୟ । ଖେମଣ୍ଡି ରାଜବଂଶୀୟ ଜଣେ ରାଜା ସେହି ରାଜ୍ୟର ଅଧ୍ୟକ୍ଷ ମାନଙ୍କୁ ପରାସ୍ତ କରି ରାଜପଣ କରିଥିଲେ ।

## ତାଳଚେର

ଉଃ-ବାମଣ୍ଡା, ଦଃ-ଅନୁଗୁଳ ଓ ଢେଙ୍କାନାଳ, ପୂଃ-ଢେଙ୍କାନାଳ ଓ ପାଲଲହଡ଼ା, ପଃ-ଅନୁଗୁଳ । ଏହାର କ୍ଷେତ୍ରଫଳ ୩୯୯ ବର୍ଗମାଇଲ, ଗ୍ରାମସଂଖ୍ୟା ୨୮୫, ଲୋକସଂଖ୍ୟା ପ୍ରାୟ ୭୦ ହଜାର ଏବଂ ପେସକସ୍ ଟ ୧୦୩୯ ୪୮/୫ ଙ୍କା । ଏହା ପ୍ରଥମେ ଅଦମ ରାଜ୍ୟ ଥିଲା । ପ୍ରାୟ ଚତୁର୍ଦ୍ଦଶ ଶତାବ୍ଦିରେ ଅଯୋଧ୍ୟା ରାଜବଂଶର ଜଣେ ରାଜପୁରୁଷ ଗଜପତିଙ୍କ ଆଶ୍ରୟରେ ରାଜ୍ୟରେ ରାଜା ହୋଇଥିଲେ । ସେହିକାଳରୁ ୨୦ ଜଣ ରାଜା ଏହି ରାଜ୍ୟରେ ରାଜତ୍ୱ କରି ଆସିଛନ୍ତି । ଏଠାକାର ରାଜା ବାଘମୁଣ୍ଡ ଛବି ଚିହ୍ନ ସ୍ୱରୂପ ବ୍ୟବହାର କରନ୍ତି । କଥିତ ଅଛି ପ୍ରଥମ ରାଜା ଅନେକ ତାଳଗଛ କାଟି ରାଜ୍ୟ ପ୍ରସ୍ତୁତ କରି ଥିବାରୁ ରାଜ୍ୟର ଏପରି ନାମ ହୋଇଅଛି । ଅନୁଗୁଳ ବିଦ୍ରୋହ ସମୟରେ ଏଠାର ରାଜା ଗଭର୍ଣ୍ଣମେଣ୍ଟଙ୍କୁ ସାହାଯ୍ୟ କରିଥିଲେ ବୋଲି ଗଭର୍ଣ୍ଣମେଣ୍ଟ ଏହାଙ୍କୁ 'ମହେନ୍ଦ୍ର ବାହାଦୁର' ପଦ ଦେଇଥିଲେ ।

## ଅନୁଗୁଳ

ଏଠାକାର ରାଜା ଜଗଦେବ ସୋମନାଥ ସିଂହ ଗଭର୍ଣ୍ଣମେଣ୍ଟଙ୍କ ବିରୁଦ୍ଧରେ ବିଦ୍ରୋହ କରି ଥିବାରୁ ସରକାର ୧୮୪୭ ସାଲରେ ଏହାଙ୍କୁ ଖାସ କରି ଜଣେ ତହସିଲଦାର ଦ୍ୱାରା କାର୍ଯ୍ୟ ଚଳାଉ ଥିଲେ । ବର୍ତ୍ତମାନ ଡେପୁଟି କମିଶନରଙ୍କ ଦ୍ୱାରା ଶାସିତ ହେଉଅଛି । ପୂର୍ବେ ଅନୁ ନାମକ ଜଣେ କନ୍ଧ ରାଜ୍ୟ ସ୍ଥାପନ କରି ଏଠାରେ ରାଜତ୍ୱ କରୁଥିଲେ । ଜଣେ ବଣିକ ବାଣିଜ୍ୟ ସୂତ୍ରରେ ସେଠାରେ ବାସ କରି କାଳକ୍ରମେ କନ୍ଧ ରାଜବଂଶ ନିପାତ କରି ନିଜେ ରାଜା ହେଲେ । ଏ ରାଜ୍ୟ ରାଜାଙ୍କ ବଂଶଧରମାନେ ଇଂରାଜ ବାହାଦୁରଙ୍କଠାରୁ ପେନ୍‌ସନ୍ ପାଆନ୍ତି । ଏ ରାଜ୍ୟ କ୍ରମଶଃ ଉନ୍ନତ ହେଉଅଛି । ସେହି ରାଜବଂଶରେ ୨୭ ଜଣ ରାଜା ରାଜତ୍ୱ କରିଅଛନ୍ତି । ଏ ରାଜ୍ୟର ରାଜା ଚିହ୍ନସ୍ୱରୂପ କଟାରି ବ୍ୟବହାର କରନ୍ତି ।

## ତିଗିରିଆ

ଉଃ- ଢେଙ୍କାନାଳ, ପଃ- ବଡ଼ମ୍ବା, ଦଃ- ମହାନଦୀ, ପୂଃ- ଢେଙ୍କାନାଳ, ଆଠଗଡ଼ ଓ କଟକ । ଏହାର କ୍ଷେତ୍ରଫଳ ୪୬ ବର୍ଗମାଇଲ, ଗ୍ରାମସଂଖ୍ୟା ୪୫, ଲୋକସଂଖ୍ୟା ପ୍ରାୟ ୨୫ ହଜାର ଓ ପେସ୍‌କସ ଟ ୮୮୨ ୧ । ତିନି ଗୋଟି ଗଡ଼ ମିଶି ଏ ରାଜ୍ୟ ହୋଇଥିବାରୁ ଏହାର ନାମ ତିଗିରିଆ ହୋଇଅଛି । ପ୍ରାୟ ୫୦୦ ବର୍ଷ ପୂର୍ବେ ଧୁରନ୍ଧର ସିଂହ ଉତ୍ତରଭାରତରୁ ପୁରୀକୁ ତୀର୍ଥାଟନରେ ଆସୁ ଆସୁ ପଥ ମଧ୍ୟରେ ଅଦମ ଅଧିବାସିଙ୍କୁ ଜିତି ରାଜ୍ୟ ସ୍ଥାପନ କରିଥିଲେ । ସେହି ବଂଶରେ ଆଜକୁ ୨୧ ଜଣ ରାଜା ରାଜତ୍ୱ କରିଅଛନ୍ତି । ଏଠାକାର ରାଜା ଚିହ୍ନସ୍ୱରୂପ ପଞ୍ଚଶସ୍ତ୍ର ଧାରଣ କରନ୍ତି ।

## ଦଶପଲ୍ଲା

ଉଃ- ଅନୁଗୁଳ, ପଃ- ବୌଦ, ଦଃ- ଘୁମୁସର, ପୂଃ- ଖଣ୍ଡପଡ଼ା ଓ ନୟାଗଡ଼ । ଏହାର କ୍ଷେତ୍ରଫଳ ୫୬୮ ବର୍ଗମାଇଲ, ଗ୍ରାମ ସଂଖ୍ୟା ୩୧୨, ଲୋକସଂଖ୍ୟା-ପ୍ରାୟ ୪୩ ହଜାର ୪ ଶହ ଓ ପେସକସ୍ ଟ ୬୬୧ ।୵୧୦ ପ୍ରଥମେ ଏହା ବୌଦ ରାଜ୍ୟ-ମଧ୍ୟରେ ଗୋଟିଏ କନ୍ଧ ରାଜ୍ୟ ଥିଲା । ବୌଦର ଜଣେ ରାଜପୁତ୍ର ବ ୫୦୦ ଷ ପୂର୍ବେ ଏହି ରାଜ୍ୟ ସ୍ୱତନ୍ତ୍ର ସ୍ଥାପନ କଲେ । ଅନୁଗୁଳର ଏକଅଂଶ ଜୁଡ଼ୁମକୁ ଏହି ରାଜ୍ୟର ରାଜା ଜୟକରି ନିଜ ରାଜ୍ୟରେ ପୂରାଇଅଛନ୍ତି । ଏହି ଗାଦିରେ ଆଜକୁ ୧୬ ଜଣ ପର୍ଯ୍ୟନ୍ତ ରାଜା ରାଜତ୍ୱ କଲେଣି । ଏଠା ରାଜା ଭଞ୍ଜ ନାମରେ କଥିତ । ସେ ମୟୂର ଛତ୍ର ଚିହ୍ନ ସ୍ୱରୂପ ବ୍ୟବହାର କରନ୍ତି । କଥିତ ଅଛି ଏହି ବଂଶର ରାଜା ଏକ ମୟୂର ଡିମ୍ବରୁ ଜାତ ହୋଇଥିଲେ ।

## ଖଣ୍ଡପଡ଼ା

ଉଃ- ମହାନଦୀ, ପଃ-ଦଶପଲ୍ଲା, ଦଃ- ନୟାଗଡ଼, ପୂଃ- ବାଙ୍କି ଓ ଖୋର୍ଦ୍ଧା । ଏହାର କ୍ଷେତ୍ରଫଳ ୨୪୪ ବର୍ଗମାଇଲ, ଗ୍ରାମସଂଖ୍ୟା-୨୫୬, ଲୋକସଂଖ୍ୟା ପ୍ରାୟ ୭୮ ହଜାର ଓ ପେସକସ୍ ଟ ୪୨୧୧ ୷୮ ।

ପୂର୍ବେ ଏହା ନୂଆଗଡ଼ ମଧ୍ୟରେ ଅନ୍ତର୍ଭୁକ୍ତ ଥିଲା । ପ୍ରାୟ ୩୦୦ ବର୍ଷ ପୂର୍ବେ ନୂଆଗଡ଼ର ଜଣେ ରାଜଭ୍ରାତା ଏହାକୁ ସ୍ୱତନ୍ତ୍ର ରାଜ୍ୟକରି ରାଜତ୍ୱ କଲେ । ଏଠା ଗାଦିରେ ୧ ଜଣ ରାଜା ବସିଛନ୍ତି । ଏ ରାଜ୍ୟର ରାଜା ଚିହ୍ନସ୍ୱରୂପ ବାଘମୁଣ୍ଡର ଛତ୍ର ବ୍ୟବହାର କରନ୍ତି ।

## ରଣପୁର

ଉଃ, ପୂଃ, ଦଃ- ପୁରୀଜିଲ୍ଲା, ପଃ- ନୟାଗଡ଼ । ଏହାର କ୍ଷେତ୍ରଫଳ ୨୦୩ ବର୍ଗମାଇଲ, ଗ୍ରାମସଂଖ୍ୟା ୨୪୬ ଓ ଲୋକସଂଖ୍ୟା ପ୍ରାୟ ୪୮ ହଜାର ଏବଂ ପେସକସ୍ ଟ ୧୪୦୦୷୵୨ । ଗଡ଼ଜାତ ମଧ୍ୟରେ ଏହା ଅତି ପୁରାତନ । ଏଠାକାର ରାଜସରକାରରେ ୩୬୦୦ ବର୍ଷର ପୁରାତନ ରାଜାମାନଙ୍କର ଧାରାବାହିକ ଇତିହାସ ରହିଅଛି । ଅତି ପ୍ରାଚୀନ କାଳରେ ଏଠାରେ 'ରଣାସୁର' ନାମକ ଗୋଟିଏ ରାକ୍ଷସ ବାସ କରୁଥିବାରୁ ଏହାର ନାମ 'ରଣପୁର' ହୋଇଅଛି । ୩୬୦୦ ବର୍ଷ ପୂର୍ବେ ବାସୁନ ବାସୁନ ନାମକ ଜଣେ ଶିକାରୀ ଏହି ରାଜ୍ୟ ସ୍ଥାପନ କରିଥିଲେ ବୋଲି ପ୍ରବାଦ ଅଛି । ସେହି ଦିନରୁ ୧୧୨ ଜଣ ରାଜା ଏଠାରେ ରାଜତ୍ୱ କରିଛନ୍ତି । ଏ ରାଜ୍ୟର ରାଜାଙ୍କ ପୂର୍ବପୁରୁଷ କୁଞ୍ଜବିହାରୀ ନରେନ୍ଦ୍ର, ବଜ୍ରଧର ଓ ମହାପାତ୍ର ଉପାଧି ଧାରଣ କରିଥିଲେ । ପୂର୍ବେ ଏହା ଅତି କ୍ଷୁଦ୍ର ରାଜ୍ୟ ଥିଲା । ରାଜାମାନେ ନିକଟବର୍ତ୍ତୀ ରାଜ୍ୟ ଅଧିକାର କରି ରାଜ୍ୟ ବଢ଼ାଇଥିଲେ । ଏ ରାଜ୍ୟର ରାଜା ଚିହ୍ନସ୍ୱରୂପ କଟାର ବ୍ୟବହାର କରନ୍ତି ।

## ନୟାଗଡ଼

ଉଃ-ଦଶପଲ୍ଲା, ଖଣ୍ଡପଡ଼ା, ପଃ-ଘୁମୁସର (ମାନ୍ଦ୍ରାଜ), ଦଃ- ପୁରୀଜିଲ୍ଲା, ପୂଃ ରଣପୁର ଓ ପୁରୀଜିଲ୍ଲା । ଏହାର କ୍ଷେତ୍ରଫଳ ୫୮୮ ବର୍ଗମାଇଲ, ଗ୍ରାମସଂଖ୍ୟା ୬୧୬, ଲୋକସଂଖ୍ୟା ପ୍ରାୟ ୧୪୨ ହଜାର ଓ ପେସକସ୍ ଟ ୫୫୨୫୧ ଙ୍କା । ୧୪ଶ ଶତାବ୍ଦି ବା କିଛି ପୂର୍ବରୁ ରେବା ରାଜବଂଶର ଜଣେ ରାଜପୁତ୍ର ମହାନଦୀ ବାଟେ ଜଗନ୍ନାଥ ଦର୍ଶନକୁ ଆସୁଥିଲେ । ପଥରେ ଏହି ଅଞ୍ଚଳର ଲୋକେ ବ୍ୟାଘ୍ର ଉତ୍ପାତରେ ଅତିଶୟ ଆକୁଳ ହେଉଥିଲେ, ରାଜପୁତ୍ର ସେ ବ୍ୟାଘ୍ରକୁ ବଧ କରିବାରୁ ଅଧିବାସୀମାନେ ତାହାଙ୍କୁ ସେ ରାଜ୍ୟର ରାଜା ହେବାପାଇଁ ଅନୁରୋଧ କଲେ ଏବଂ ସେ ସେଠାରେ ରାଜା ହେଲେ । ଏପର୍ଯ୍ୟନ୍ତ ନୂଆଗଡ଼ରେ ୨୩ ଜଣ ରାଜା ରାଜତ୍ୱ କରିଛନ୍ତି । ଏଠା ରାଜବଂଶର ସଙ୍କେତ ବ୍ୟାଘ୍ରମସ୍ତକ ଅଟେ । ପୂର୍ବେ ଖଣ୍ଡପଡ଼ା ଏହାର ଅନ୍ତର୍ଭୁକ୍ତ ଥିଲା । ୩୦୦ ବର୍ଷ ତଳେ ତାହା ସ୍ୱତନ୍ତ୍ର ରାଜ୍ୟ ହୋଇଅଛି ।

## କେନ୍ଦୁଝର

ଉଃ- ସିଂହଭୂମ ଜିଲ୍ଲା, ପଃ- ବଣାଇ, ପାଲଲହଡ଼ା, ଦଃ- ଢେଙ୍କାନାଳ, ଯାଜପୁର ସବ୍ ଡିଭିଜନ, ପୂଃ ମୟୂରଭଞ୍ଜ ଓ ବାଲେଶ୍ୱର । ଏହାର କ୍ଷେତ୍ରଫଳ ୩୦୧୬ ବର୍ଗମାଇଲ, ଗ୍ରାମସଂଖ୍ୟା ୧୯୩୨, ଲୋକସଂଖ୍ୟା ପ୍ରାୟ ୪ ଲକ୍ଷ ୬୦ ହଜାର ଓ ପେସକସ୍ ଟ ୧୬୧୦୵୩ । ପୂର୍ବେ ଏ ରାଜ୍ୟ ମୟୂରଭଞ୍ଜର ଅନ୍ତର୍ଭୁକ୍ତ ଥିଲା । ଏ ରାଜ୍ୟର ଲୋକମାନେ ଜଙ୍ଗଲ ପାହାଡ଼ ପାରହୋଇ ମୟୂରଭଞ୍ଜକୁ ଯାଇ ଆପେ ସବୁ କାର୍ଯ୍ୟ ସମାଧା କରି ନ ପାରିବାରୁ ମୟୂରଭଞ୍ଜ ରାଜବଂଶରୁ

ଜଣେ ରାଜପୁତ୍ରଙ୍କୁ ନେଇ ଆଣି କେନ୍ଦୁଝରର ରାଜା କଲେ । ସନ ୧୮୫୭ ସାଲରେ କୋଲ୍ଲ ବିଦ୍ରୋହରେ ଏଠା ରାଜା ଗଭର୍ଣ୍ଣମେଣ୍ଟଙ୍କୁ ସାହାଯ୍ୟ କରିଥିବାରୁ ଗଭର୍ଣ୍ଣମେଣ୍ଟ ତାଙ୍କୁ 'ମହାରାଜା' ଉପାଧି ଦେଇଥିଲେ । ସନ ୧୮୭୧ ସାଲରେ ଏ ରାଜ୍ୟର ରାଜା ନିଃସନ୍ତାନ ହୋଇ ମୃତ ହେବାରୁ ତାହାଙ୍କ ରାଣୀ ପୋଷ୍ୟପୁତ୍ର ଗ୍ରହଣ କରିଥିଲେ । ଏ ରାଜ୍ୟର ରାଜା ସୂର୍ଯ୍ୟବଂଶୀୟ ଏବଂ 'ମୟୂରପୁଚ୍ଛ' ଚିହ୍ନସ୍ୱରୂପ ଧାରଣ କରନ୍ତି ।

## ପାଲଲହଡ଼ା

ଉ :—ବଣାଇ ଓ କେନ୍ଦୁଝର, ପ :—ବାମଣ୍ଡା, ଦ :-ତାଳଚେର, ଢେଙ୍କାନାଳ ପୂ :—କେନ୍ଦୁଝର । ଏହାର କ୍ଷେତ୍ରଫଳ ୪୫୨ ବର୍ଗମାଇଲ, ଗ୍ରାମସଂଖ୍ୟା ୨୨୭, ଲୋକସଂଖ୍ୟା ପ୍ରାୟ ୨୮ ହଜାର ଓ ପେସକସ୍ ଟ ୨୬୭ ୩/୮ । ପୂର୍ବେ ଏହି ରାଜ୍ୟ କେନ୍ଦୁଝରର ଅନ୍ତର୍ଭୁକ୍ତ ଥିଲା । ଗୃହବିବାଦ ଯୋଗୁଁ ଏହା ଅଲଗା ହୋଇଅଛି । ଏ ରାଜ୍ୟର ରାଜା ସର୍ପର ଛବି ଚିହ୍ନ ସ୍ୱରୂପ ବ୍ୟବହାର କରନ୍ତି । କେନ୍ଦୁଝର ବିଦ୍ରୋହ ସମୟରେ ଏ ରାଜ୍ୟର ରାଜା ଗଭର୍ଣ୍ଣମେଣ୍ଟଙ୍କୁ ସାହାଯ୍ୟ କରି ଥିବାରୁ 'ରାଜା ବାହାଦୁର' ଉପାଧି ପାଇଥିଲେ ।

## ବୌଦ

ଉଃ—ମହାନଦୀ, ପଃ--ସୋନପୁର, ଦଃ--କନ୍ଧମାଳ, ପୂଃ--ଦଶପଲ୍ଲା । ଏହାର କ୍ଷେତ୍ରଫଳ ୧୨୬୪ ବର୍ଗମାଇଲ, ଗ୍ରାମସଂଖ୍ୟା ୧୦୦୦, ଲୋକସଂଖ୍ୟା ପ୍ରାୟ ୧୩୪୨୪୮ ଓ ପେସକସ୍ ଟ ୮୦୦ ୧ ଙ୍କା । ଏହା ପୂର୍ବେ କନ୍ଧ ରାଜ୍ୟ ଥିଲା । ସହସ୍ରାଧିକ ବର୍ଷ ପୂର୍ବେ ଜଣେ ବ୍ରାହ୍ମଣ କନ୍ଧମାନଙ୍କୁ ଦକ୍ଷିଣାଞ୍ଚଳକୁ ତଡ଼ି ଦେଇ ରାଜ୍ୟ ଅଧିକାର କଲେ । ବୌଦ ପୂର୍ବେ ବଡ଼ ରାଜ୍ୟ ଥିଲା । କାଳକ୍ରମେ ନିକଟବର୍ତ୍ତୀ ରାଜାମାନେ ସେଥିରୁ ଖଣ୍ଡେ ଖଣ୍ଡେ ଅଧିକାର କରି ନେଇଥିଲେ । ଏଠା ରାଜାମାନେ ଜଙ୍ଗଲ ଭାଙ୍ଗି ରାଜ୍ୟ ସ୍ଥାପନ କରିଥିବାରୁ ଭଞ୍ଜ ଉପାଧି ପାଇଥିଲେ । ମୟୂରଭଞ୍ଜ ରାଜବଂଶ ସହିତ ଏମାନଙ୍କର ବଂଶଗତ ସମ୍ପର୍କ ନାହିଁ । ଏଠା ଗାଦିରେ ଅଦ୍ୟାବଧି ୭୨ ଜଣ ରାଜା ବସିଛନ୍ତି । କନ୍ଧମାଳ ବୌଦର ଅନ୍ତର୍ଭୁକ୍ତ ଥିଲା । କନ୍ଧମାନେ ନରବଳି ଦେଉଥିବାରୁ ରାଜା ପୀତାମ୍ବର ଦେଓ ସ୍ୱଇଚ୍ଛାରେ କନ୍ଧମାନଙ୍କୁ ଇଂରାଜମାନଙ୍କ ହସ୍ତରେ ଅର୍ପଣ କଲେ । ସେହି ଦିନରୁ ଜଣେ ତହସିଲଦାର ସମସ୍ତ କାର୍ଯ୍ୟ ତୁଲାଉ ଅଛନ୍ତି ।

## ନୀଳଗିରି

ଉଃ ଓ ପଃ--ମୟୂରଭଞ୍ଜ, ଦଃ ଓ ପୂଃ -ବାଲେଶ୍ୱର ଜିଲ୍ଲା । ଏହାର କ୍ଷେତ୍ରଫଳ ୨୮୪ ବର୍ଗମାଇଲ, ଗ୍ରାମସଂଖ୍ୟା ୨୧୨, ଲୋକସଂଖ୍ୟା ପ୍ରାୟ ସାଢ଼େ ୭୮ ହଜାର ଓ ପେସକସ୍ ଟ ୩୧୦୦ ।୬/୮ । ଛୋଟନାଗପୁରର ଜଣେ ରାଜପୁତ୍ର ପ୍ରତାପରୁଦ୍ର ଦେବଙ୍କ ଜେମାର ପାଣିଗ୍ରହଣ କରି ନୀଳଗିରି ରାଜ୍ୟ ସ୍ଥାପନ କରିଥିଲେ । ଏଠା ଗାଦିରେ ୨୭ଜଣ ରାଜା ବସିଛନ୍ତି । ଏ ରାଜ୍ୟର ରାଜା କଲବଫୁଲ ଚିହ୍ନ ସ୍ୱରୂପ ବ୍ୟବହାର କରନ୍ତି ।

## ବାଙ୍କି

ଏହାର କ୍ଷେତ୍ରଫଳ ୧୧୮ ବର୍ଗମାଇଲ । ୧୮୦୫ ସାଲ ଠାରୁ ୧୮୪୦ ସାଲ ପର୍ଯ୍ୟନ୍ତ ଏଠା ରାଜା ଗଭର୍ଣ୍ଣମେଣ୍ଟଙ୍କୁ ଟ ୪୪୩୦ଟଙ୍କା ପେସକସ୍ ଦେଉଥିଲେ । ସେ ନରହତ୍ୟା ଅପରାଧରେ ଅପରାଧୀ ହେବାରୁ ଗଭର୍ଣ୍ଣମେଣ୍ଟ ଏ ରାଜ୍ୟକୁ ଖାସ୍ କଲେ । ୧୮୪୦ସାଲ ଠାରୁ ଗଭର୍ଣ୍ଣମେଣ୍ଟ ଜଣେ ସବ୍ ଡେପୁଟୀଦ୍ୱାରା କାର୍ଯ୍ୟ ନିର୍ବାହ କରାଉ ଅଛନ୍ତି । ବର୍ତ୍ତମାନ ଏହା କଟକଜିଲ୍ଲାର ଅନ୍ତର୍ଭୁକ୍ତ ।

## ବାମଣ୍ଡା

ଉଃ--ଗାଙ୍ଗପୁର, ପଃ--ସମ୍ବଲପୁର, ଦଃ--ରେଢ଼ାଖୋଲ, ପୂଃ--ତାଳଚେର, ପାଲଲହଡ଼ା । ଏହାର କ୍ଷେତ୍ରଫଳ ୧୯୮୮ ବର୍ଗମାଇଲ, ଗ୍ରାମସଂଖ୍ୟା ୧୦୨୮, ଲୋକସଂଖ୍ୟା ପ୍ରାୟ ୧୫୧ ହଜାର ଓ ପେସକସ୍ ଟ ୨୫୦୦ଟଙ୍କା । ଏ ରାଜ୍ୟର ସର୍ବବିଧ ଉନ୍ନତିକଳ୍ପେ ସ୍ୱର୍ଗୀୟ ରାଜା ବାସୁଦେବ ଓ ସ୍ୱର୍ଗୀୟ ରାଜା ସଚ୍ଚିଦାନନ୍ଦ ତ୍ରିଭୁବନଦେବ ବହୁତ ଭଲକାର୍ଯ୍ୟ କରିଥିଲେ । ଉତ୍କଳ ସାହିତ୍ୟର ଉନ୍ନତିକଳ୍ପେ ସେମାନେ ଅଶାନରୂପ ଯତ୍ନକରି ଯଶସ୍ୱୀ ହୋଇ ଅଛନ୍ତି । କପିଳେନ୍ଦ୍ର ଦେବଙ୍କ ପୁତ୍ର ପୁରୁଷୋତ୍ତମ ଏଠାକାର ରାଜା ଥିଲେ । ଏଣୁ ସେ ବଂଶର ରାଜାମାନେ ଆପଣାକୁ ଗଙ୍ଗବଂଶୀୟ ବୋଲି ପରିଚୟ ଦିଅନ୍ତି ।

## ରେଢାଖୋଲ

ଉଃ--ସମ୍ବଲପୁର, ବାମଣ୍ଡା, ପଃ--ସୋନପୁର, ଦଃ--ଆଠମଲ୍ଲିକ, ଅନୁଗୁଳ ଓ ପୂଃ--ବାମଣ୍ଡା । ଏହାର କ୍ଷେତ୍ରଫଳ ୮୩୩ ବର୍ଗମାଇଲ, ଗ୍ରାମସଂଖ୍ୟା ୩୦୫, ଲୋକସଂଖ୍ୟା ପ୍ରାୟ ୩୭ ହଜାର ପେସକସ୍ ଟ ୨୦୦୦ ଟଙ୍କା ।

## ସୋନପୁର

ଉଃ -ସମ୍ବଲପୁର, ପଃ--ପାଟନାଷ୍ଟେଟ, ଦଃ--ବୌଦ, ପୂଃ-ରେଢ଼ାଖୋଲ, ଆଠମଲ୍ଲିକ । ଏହାର କ୍ଷେତ୍ରଫଳ ୯୦୬ ବର୍ଗମାଇଲ, ଗ୍ରାମସଂଖ୍ୟା ୮୦୮, ଲୋକସଂଖ୍ୟା ପ୍ରାୟ ୨୩୮ ହଜାର ଓ ପେସକସ୍ ଟ ୧୨୦୦୦ ଟଙ୍କା । ପାଟନା ମହାରାଜା ପ୍ରଥମେ ସମ୍ବଲପୁର ମଧ୍ୟସ୍ଥ ଅଠର ଗଡ଼ଜାତ ଉପରେ ପ୍ରାଧାନ୍ୟ କରୁଥିଲେ । ପ୍ରାଚୀନ ରତ୍ନପୁର ରାଜ୍ୟର ପୂର୍ବବର୍ତ୍ତୀ ସକଳ ରାଜ୍ୟ ପାଟଣା ଅଧୀନରେ ଥିଲା । ମୈନପୁରୀ ରାଜ୍ୟର ଜଣେ ରାଜପୁତ ମୁସଲମାନଙ୍କ ଦ୍ୱାରା ବିତାଡ଼ିତ ହୋଇ ପାଟଣା ଅଧିକାର କରିବାକୁ ବସିଲେ । ମାତ୍ର ଯୁଦ୍ଧରେ ସେ ହତ ହେବା ପରେ ତାଙ୍କର ସ୍ତ୍ରୀ ରମାଇ ଦେବଙ୍କୁ ଜନ୍ମ ଦେଲେ । ରମାଇଦେବ ପାଟଣା ଅଧିକାର କରି ରାଜତ୍ୱ କଲେ । ଖ୍ରୀଷ୍ଟ ପଞ୍ଚଦଶ ଶତାବ୍ଦିରେ ପାଟନା ରାଜବଂଶର ଦ୍ୱାଦଶ ରାଜା ନରସିଂହ ଦେବ ସ୍ୱୀୟ ଭ୍ରାତା ବଳରାମ ଦେବଙ୍କୁ ତେଲ, ଅଙ୍ଗ, ଜଙ୍କ, ଏବଂ ମହାନଦୀ ମଧ୍ୟସ୍ଥ ଜଙ୍ଗଲ ରାଜ୍ୟର ରାଜା କଲେ । ବଳରାମ ପ୍ରଥମେ ନୂଆଗଡ଼ ପରେ ବରଗଡ଼ ଏବଂ ଶେଷରେ ସମ୍ବଲପୁରରେ ରାଜଧାନୀ କଲେ । ସମ୍ବଲପୁର କ୍ରମେ କ୍ଷମତାଶାଳୀ ହୋଇ ଉଠିଲା ଏବଂ ପାଟନାର ପ୍ରାଧାନ୍ୟ କ୍ରମେ ହ୍ରାସ ପାଇଲା ବଳରାମଙ୍କ ପରେ ଅଷ୍ଟମ ରାଜାଙ୍କ ଦ୍ୱିତୀୟ ପୁତ୍ର ମଦନଗୋପାଳ ସୋନପୁରର ରାଜା ହେଲେ । ଅଦ୍ୟାବଧି ତାଙ୍କ ବଂଶଧରମାନେ ସୋନପୁରରେ ରାଜତ୍ୱ କରୁଛନ୍ତି । ଏହି ରାଜବଂଶ ଚୌହାନ କ୍ଷତ୍ରିୟ !

## ପାଟନା

ଉଃ-ସମ୍ବଲପୁର, ପଃ-ରାୟପୁର, ଦଃ-କଳାହାଣ୍ଡି, ପୂଃ-ବୌଦ, ସୋନପୁର । ଏହାର କ୍ଷେତ୍ରଫଳ ୨୩୯୯ ବର୍ଗମାଇଲ ଗ୍ରାମସଂଖ୍ୟା ୧୮୭୨, ଲୋକସଂଖ୍ୟା ୫ ଲକ୍ଷ ୭୭ ହଜାର, ପେସକସ୍ ଟ ୧୩୦୦୦ଙ୍କା । ଏଠା ରାଜବଂଶ ଚୌହାନ କ୍ଷତ୍ରିୟ ।

## କଳାହାଣ୍ଡି

ଉଃ-ପାଟଣାଷ୍ଟେଟ, ପଃ-ରାୟପୁର, ଭିଜାଗାପଟ୍ଟାମ୍, ଦଃ-ଭିଜାଗାପଟ୍ଟାମ୍, ପୂଃ-ଭିଜାଗାପଟ୍ଟାମ୍, ଗଞ୍ଜାମ । ଏହାର କ୍ଷେତ୍ରଫଳ ୩୭୪୫ ବର୍ଗମାଇଲ, ଗ୍ରାମସଂଖ୍ୟା ୨୧୭୫, ଲୋକସଂଖ୍ୟା ପ୍ରାୟ ୫୧୪ ହଜାର ଓ ପେସ୍କସ ଟ୧୬୦୦୦ଙ୍କା । ( ନୂତନ ବ୍ୟବସ୍ଥା ଅନୁସାରେ ପରିବର୍ତ୍ତିତ ହୋଇପାରେ ) । ଏହା ଏକ ସ୍ୱତନ୍ତ୍ର ରାଜ୍ୟ ଥିଲା । କଳିଙ୍ଗ ଗଙ୍ଗ ରାଜା କେହି ଏହି ରାଜ୍ୟ ଜୟକରି ରାଜତ୍ୱ କରୁଥିଲେ । ଗଙ୍ଗବଂଶ ୧୦୦୮ ଖ୍ରୀଷ୍ଟାବ୍ଦ ପର୍ଯ୍ୟନ୍ତ ରାଜତ୍ୱ କଲା ପରେ, ଶେଷରାଜା ଅପୁତ୍ରିକ ଥିବାରୁ ଉତ୍ତରାଞ୍ଚଳବାସୀ କୌଣସି ରାଜପୁତ୍ରଙ୍କୁ ଆପଣାର କନ୍ୟା ଓ ରାଜଧାନୀ ଦାନ କରିଥିଲେ । ଏହା ଅଧୀନରେ ୧୮ ଜଣ ସାମନ୍ତ ରାଜା ଥିଲେ ।

## ଗାଙ୍ଗପୁର

ଉଃ-ରାଞ୍ଚି ଜିଲ୍ଲା, ପଃ-ଯାଶପୁର, ରାୟଗଡ଼, ଦଃ-ସମ୍ବଲପୁର ବାମଣ୍ଡା, ବଣାଇ, ପୂଃ-ସିଂହଭୂମ ଜିଲ୍ଲା । ଏହାର କ୍ଷେତ୍ରଫଳ ୨୪୯୨ ବର୍ଗମାଇଲ, ଗ୍ରାମସଂଖ୍ୟା ୧୦୭୫, ଲୋକସଂଖ୍ୟା ପ୍ରାୟ ୩ଲକ୍ଷ ୫୭ ହଜାର ଓ ପେସକସ୍ ଟ ୧୦୦୦୦ ଟଙ୍କା

## ବଣାଇ

ଉଃ—ଗାଙ୍ଗପୁର ଓ ସିଂହଭୂମ ଜିଲ୍ଲା । ପଃ ଓ ଦଃ—ବାମଣ୍ଡା, ପୂଃ—ପାଲଲହଡ଼ା, କେନ୍ଦୁଝର । ଏହାର କ୍ଷେତ୍ରଫଳ ୧୨୯୬ ବର୍ଗମାଇଲ । ଗ୍ରାମସଂଖ୍ୟା—୧୮୯, ଲୋକସଂଖ୍ୟା ପ୍ରାୟ ୮୦ ହଜାର ଓ ପେସକସ ଟ ୨୭୦୦ ଟଙ୍କା

## କନିକା

ଏହାର କ୍ଷେତ୍ରଫଳ ୪୪୦ ବର୍ଗମାଇଲ । ସେଥିମଧ୍ୟରୁ ୧୭୫ ବର୍ଗମାଇଲ ବାଲେଶ୍ୱର ଜିଲ୍ଲାର ଅନ୍ତର୍ଗତ । କଟକ ଅଂଶର ନାମ ଛମୁକା ଏବଂ କେରଡ଼ା ( ରାଜନଗର ) ଓ ବାଲେଶ୍ୱର ଅଂଶର ନାମ ପାଞ୍ଚମୁକା । ପେସକସ୍ ଟ ୨୦୪୦୭୩୧୧ । ପୂର୍ବେ ଏହା ଗଡ଼ଜାତ ପରି କ୍ଷମତାଶାଳୀ ରାଜ୍ୟ ଥିଲା । ସମୁଦ୍ର ଉପ-

କୂଳରୁ ଜଳଦସ୍ୟୁ ଦମନ ଓ ଶତ୍ରୁ ଆକ୍ରମଣରୁ ଦେଶରକ୍ଷା ଏହି ରାଜାଙ୍କର କାର୍ଯ୍ୟ ଥିଲା । ଏ ରାଜ୍ୟ ମଧ୍ୟରେ କେତେଗୁଡ଼ିଏ କ୍ଷୁଦ୍ର କ୍ଷୁଦ୍ର ରାଜ୍ୟ ଥିଲା ଏବଂ ପ୍ରତ୍ୟେକରେ ଜଣେ ଜଣେ ରାଜା ଥିଲେ । ପ୍ରାୟ ୧୨୦୦ ଖ୍ରୀଷ୍ଟାବ୍ଦରେ ଅନଙ୍ଗଭୀମଦେବଙ୍କ ରାଜତ୍ୱ କାଳରେ ମୟୂରଭଞ୍ଜର ଜଣେ ରାଜଭ୍ରାତା ଚତୁର୍ଭୁଜ ଭଞ୍ଜ ବର୍ତ୍ତମାନ ଇଲାକା ନ୍ୟସ୍ତ ଭାବରେ ପ୍ରଥମେ ରାଜତ୍ୱ ଆରମ୍ଭ କଲେ । ପରେ ତାହାଙ୍କ ବଂଶଧରମାନେ ଅନ୍ୟାନ୍ୟ ଇଲାକାମାନ ହସ୍ତଗତ କରି ରାଜ୍ୟ ବଢ଼ାଇଥିଲେ । ଏହି ଗାଦିରେ ୨୨ ଜଣ ରାଜା ବସିଲେଣି ।

## କୁଜଙ୍ଗ

ଏହାର କ୍ଷେତ୍ରଫଳ ୩୬୦ ବର୍ଗମାଇଲ । କନକା ପରି ଏ ରାଜ୍ୟ ମଧ୍ୟ କ୍ଷମତାଶାଳୀ ରାଜ୍ୟ ଥିଲା । ଏଠା ରାଜବଂଶ ଯୋବେଇଗଡ଼ ରାଜବଂଶରୁ ଉଦ୍ଭୂତ । ୧୬୦୦ ଖ୍ରୀଷ୍ଟାବ୍ଦରେ କନକା ରାଜାଙ୍କ ସାହାଯ୍ୟରେ ସେମାନେ ସେହି ଅଞ୍ଚଳର କଳିଦାରମାନଙ୍କୁ ବଶୀଭୂତ କରି କୁଜଙ୍ଗ ରାଜ୍ୟ ସ୍ଥାପନ କରିଥିଲେ । ୧୮୬୧ ଖ୍ରୀଷ୍ଟାବ୍ଦରେ ବର୍ତ୍ତମାନ ମହାରାଜା ଏହାକୁ ଖରିଦ କରିଥିଲେ । ଏଠାରୁ ଟ୬୫୦୨।୬/୨ ସରକାରଙ୍କୁ ଖଜଣା ଦିଆଯାଏ ।

## ଖରସୁଆଁ

ଏହାର କ୍ଷେତ୍ରଫଳ ୧୫୩ ବର୍ଗମାଇଲ, ଲୋକସଂଖ୍ୟା ୪୮ ହଜାର ଓ ବାର୍ଷିକ ଆୟ ପ୍ରାୟ ୧ ଲକ୍ଷ ୧୩ ହଜାର ଏହାର ପେସକସ୍ ନାହିଁ । ମାତ୍ର ଗନ୍ଧନସିନ ସମୟରେ ନଜରନା ଦିଏ ଏଠା ରାଜାଙ୍କ ଉପାଧି ଠାକୁର-ରାଜା ବାହାଦୁର । ସେ ପୋରହତ ( Porahat ) ରାଜବଂଶର ଏକ ଶାଖାର ବଂଶଧର ଅଟନ୍ତି ଏବଂ କ୍ଷତ୍ରିୟ । ବିଦ୍ରୋହ ସମୟରେ ୧୮୫୭ ରେ ଏଠା ରାଜା ସରକାରଙ୍କୁ ସାହାଯ୍ୟ କରିଥିଲେ ।

## ସରେଇକଳା

ଏହାର କ୍ଷେତ୍ରଫଳ ୪୪୯ ବର୍ଗମାଇଲ, ଲୋକସଂଖ୍ୟା ୧ ଲକ୍ଷ ୪୪ ହଜାର ଓ ବାର୍ଷିକ ଆୟ ପ୍ରାୟ ୩ ଲକ୍ଷ ୫୪ ହଜାର । ଏହାର ପେସକସ୍ ନାହିଁ । ମାତ୍ର ଗନ୍ଧନସିନ ସମୟରେ ନଜରନା ଦିଏ । ଖରସୁଆଁ ରାଜା ବଂଶ ପରି ସରେଇକଳା ରାଜବଂଶ ଅଟେ । ସେ ୧୮୫୭ ରେ କେନ୍ଦୁଝର ଗୋଳମାଳ ଏବଂ ବିଦ୍ରୋହରେ ସରକାରଙ୍କୁ ସାହାଯ୍ୟ କରିଥିଲେ ଏବଂ ସରକାର ତାହାଙ୍କୁ ୧୮୮୪ ରେ ରାଜା ବାହାଦୁର ପଦ ଦେଇଥିଲେ । ଅଧିକନ୍ତୁ ସେ ଖିଲାତ ଓ (Porahat) ରାଜାଙ୍କ ରାଜ୍ୟରୁ କେତେକାଂଶ ପାଇଥିଲେ ।

## ମଧ୍ୟ ପ୍ରଦେଶସ୍ଥ ଗଡ଼ଜାତ

ମଧ୍ୟ ପ୍ରଦେଶରେ ୧୦ ଗୋଟି ଗଡ଼ଜାତ ଅଛି । ସେଥିମଧ୍ୟରୁ ୯ ଗୋଟି ରାୟପୁର କମିଶନରଙ୍କ ଅଧୀନ ଓ ଅବଶିଷ୍ଟ ଗୋଟିକ ହୁସଙ୍ଗାବାଦ ଡେପୁଟୀ କମିଶନରଙ୍କ ଅଧୀନ । ଉପରୋକ୍ତ ୯ ଗୋଟି ଗଡ଼ଜାତର ତତ୍ତ୍ୱାବଧାରକ ରୂପେ ଜଣେ ପୋଲିଟିକାଲ ଏଜେଣ୍ଟ ନିଯୁକ୍ତ ଅଛନ୍ତି ।

( ଏହି ୧୦ ଗୋଟି ଗଡ଼ଜାତ ଦୁଇ ଶ୍ରେଣୀରେ ବିଭକ୍ତ )

### ୧ମ ଶ୍ରେଣୀ

୧ କାଙ୍କେର—ଏହାର କ୍ଷେତ୍ରଫଳ ୧୪୨୯ ବର୍ଗମାଇଲ । ଲୋକସଂଖ୍ୟା ୧,୨୨,୯୨୮ । ରାଜସ୍ୱ ୩,୮୪,୦୦୦ ପ୍ରାୟ । ରାଜଧାନୀ କାଙ୍କେର । ପ୍ରଚଳିତ ଭାଷା ହିନ୍ଦୀ । ଶାସନକର୍ତ୍ତାଙ୍କ ଉପାଧି ମହାରାଜାଧିରାଜ । ପେସକସ୍ କିଛି ନାହିଁ ।

୨ ରାୟଗଡ଼—ଏହାର କ୍ଷେତ୍ରଫଳ ୧୪୮୬ ବର୍ଗମାଇଲ । ଲୋକସଂଖ୍ୟା ୨,୪୧,୬୩୪ । ରାଜସ୍ୱ ୭,୩୩,୦୦୦ ଟଙ୍କା ପ୍ରାୟ ଓ ପେସକସ୍ ଟ ୪୦୦୦୧ ଙ୍କା । ରାଜଧାନୀ ରାୟଗଡ଼ । ପ୍ରଚଳିତ ଭାଷା ଓଡ଼ିଆ ହିନ୍ଦୀ । ଶାସନକର୍ତ୍ତାଙ୍କ ଉପାଧି ରାଜା ।

୩ ଶକ୍ତି—ଏହାର କ୍ଷେତ୍ରଫଳ ୧୩୮ ବର୍ଗମାଇଲ । ଲୋକସଂଖ୍ୟା ୪୧,୫୧୫ । ରାଜସ୍ୱ ୧,୨୬,୦୦୦୧ ଟଙ୍କା ଓ ପେସକସ୍ ୧୩୦୦ ଟଙ୍କା । ରାଜଧାନୀ ଶକ୍ତି । ପ୍ରଚଳିତ ଭାଷା ହିନ୍ଦୀ । ଶାସନକର୍ତ୍ତାଙ୍କ ଉପାଧି ରାଜା ।

୪ ଖଇରାଗଡ଼—ଏହାର କ୍ଷେତ୍ରଫଳ ୯୩୧ ବର୍ଗମାଇଲ । ଲୋକସଂଖ୍ୟା ୧,୨୪,୬୬୦ । ରାଜସ୍ୱ ୫,୭୨,୦୦୦୧ ଟଙ୍କା ପ୍ରାୟ ଓ ପେସକସ୍ ଟ ୬୦୦୦୧ ଙ୍କା । ରାଜଧାନୀ ଖଇରାଗଡ଼ । ପ୍ରଚଳିତ ଭାଷା ହିନ୍ଦୀ । ଶାସନକର୍ତ୍ତାଙ୍କ ଉପାଧି ରାଜା ।

## ୨ୟ ଶ୍ରେଣୀ

୫ ବସ୍ତର—ଏହାର କ୍ଷେତ୍ରଫଳ ୧୩,୦୬୨ ବର୍ଗମାଇଲ, ଲୋକସଂଖ୍ୟା ୫୨୪,୭୨୧, ରାଜସ୍ୱ ୮୨୭,୦୦୦ ଟଙ୍କା ପ୍ରାୟ ଓ ପେସକସ୍ ୧୫୬୦୦ ଟଙ୍କା ପ୍ରଚଳିତ ଭାଷା ହିନ୍ଦୀ । ରାଜଧାନୀ ଜଗଦଲପୁର । ଏଠାରେ ପ୍ରଥମେ ନାଗବଂଶୀ ରାଜାମାନେ ରାଜତ୍ୱ କରୁଥିଲେ ଓ ପରେ କାକତୀୟ ବଂଶ ରାଜା ହେଲେ । ଏମାନେ ସୋମବଂଶୀ କ୍ଷତ୍ରିୟ ଥିଲେ ।

୬ ସାରଙ୍ଗଗଡ଼—ଏହାର କ୍ଷେତ୍ରଫଳ ୫୪୦ ବର୍ଗମାଇଲ, ଲୋକସଂଖ୍ୟା ୧୨୮,୯୬୭, ରାଜସ୍ୱ ୩,୧୩,୦୦୦ ଟଙ୍କା ପ୍ରାୟ ଓ ପେସକସ୍ ୩୫୦୦ ଟଙ୍କା । ପ୍ରଚଳିତ ଭାଷା ଓଡ଼ିଆ ଓ ହିନ୍ଦୀ । ରାଜଧାନୀ ସାରଙ୍ଗଗଡ଼ ।

୭ କବର୍ଧା—ଏହାର କ୍ଷେତ୍ରଫଳ ୭୯୮ ବର୍ଗମାଇଲ, ଲୋକସଂଖ୍ୟା ୭୨,୮୨୦ ରାଜସ୍ୱ ୩,୦୪,୦୦୦ ଟଙ୍କା ପ୍ରାୟ ଓ ପେସକସ ଟ ୩୨୦୦୦ । ପ୍ରଚଳିତ ଭାଷା ହିନ୍ଦୀ ରାଜଧାନୀ କବର୍ଧା । ଶାସନକର୍ତ୍ତାଙ୍କ ଉପାଧି ରାଜା ।

୮ ନନ୍ଦଗାଁ—ଏହାର କ୍ଷେତ୍ରଫଳ ୮୭୧ ବର୍ଗମାଇଲ, ଲୋକସଂଖ୍ୟା ୧,୮୨,୩୮୦, ରାଜସ୍ୱ ୬,୨୪,୦୦୦ ଟଙ୍କା ପ୍ରାୟ ଓ ପେସକସ ଟ ୭୦୦୦୦ । ପ୍ରଚଳିତ ଭାଷା ହିନ୍ଦୀ । ରାଜଧାନୀ ରାଜନନ୍ଦଗାଁ ।

୯ ଛୁଇଖଦାନ—ଏହାର କ୍ଷେତ୍ରଫଳ ୧୫୩ ବର୍ଗମାଇଲ, ଲୋକସଂଖ୍ୟା ୩୧,୬୯୮, ରାଜସ୍ୱ ଟ ୧,୧୩,୦୦୦ ପ୍ରାୟ । ପେସକସ୍ ଟ ୧୫୦୦୦ । ପ୍ରଚଳିତ ଭାଷା ହିନ୍ଦୀ ରାଜଧାନୀ ଛୁଇଖଦାନ ( ଅପର ନାମ କୋଣ୍ଡକା )

୧୦ ମକରାଇ—ଏହାର କ୍ଷେତ୍ରଫଳ ୧୫୫ ବର୍ଗମାଇଲ, ଲୋକସଂଖ୍ୟା ୧୪,୫୧୬, ରାଜସ୍ୱ ଟ ୧,୧୩ ୦୦୦ ପ୍ରାୟ ଓ ପେସକସ୍ କିଛି ନାହିଁ । ପ୍ରଚଳିତ ଭାଷା ହିନ୍ଦୀ । ରାଜଧାନୀ ମକରାଇ ।

## ଗଞ୍ଜାମ ଗଡ଼ଜାତ

ଜୟପୁର—ଏହାର ପ୍ରଥମ ନାମ ନନ୍ଦପୁର ଥିଲା । ଗଞ୍ଜାମ ଓ ଭିଶାଖାପଟ୍ଟନ ଜିଲ୍ଲାର ପାର୍ବତୀୟ ଅଞ୍ଚଳ ରାଜ୍ୟମାନଙ୍କ ମଧ୍ୟରେ ଏହା ସର୍ବାପେକ୍ଷା ବୃହତ୍ । ଏଠାରେ ଶୈଳବଂଶ ରାଜାମାନେ ରାଜତ୍ୱ କରୁଥିଲେ । ପ୍ରତାପରୁଦ୍ର ଦେବଙ୍କ ଜଣେ ପୁତ୍ର ବିନାୟକ ଦେବ ବା ଭୀମଦେବ ଶୈଳବଂଶର ଶେଷରାଜାଙ୍କ କନ୍ୟାଙ୍କୁ ବିବାହ କରି ଏଠାରେ ରାଜା ହେଲେ । ସେତେବେଳେ ସାଲୁର, କୁରୁପମ୍, କାଶୀପୁର, ମେରଙ୍ଗ, ମାଡ଼ଗୋଳ, ପାର୍ବତୀପୁର ଏବଂ ବିଜୟ ନଗରର କେତେକ ଅଂଶ ଏହି ରାଜ୍ୟ ମଧ୍ୟରେ ଥିଲା । ଗଙ୍ଗବଂଶଙ୍କ ପରେ ଏହା ୧୫୭୧ ଖ୍ରୀଷ୍ଟାବ୍ଦରେ ଗୋଲକୁଣ୍ଡାର ଅଧୀନସ୍ଥ ହୋଇ ରହିଲା ।

ଖେମଣ୍ଡି—ଏହା ପାରଳାଖେମଣ୍ଡି, ବଡ଼ଖେମଣ୍ଡି ଓ ସାନଖେମଣ୍ଡି ଏବଂ ଗଞ୍ଜାମର ମାଳ ପ୍ରଦେଶ ନେଇ ଗଠିତ ଥିଲା । ଗଙ୍ଗବଂଶର ରାଜପୁରୁଷମାନେ ଏଠାରେ ରାଜତ୍ୱ କରୁଥିଲେ । ଏ ସବୁ ରାଜ୍ୟର ରାଜାମାନେ 'ଗଜପତି' ଆଖ୍ୟା ଧାରଣ କରନ୍ତି । ପାରଳା ଖେମୁଣ୍ଡି ନାମକ ଜଣେ ଅନାର୍ଯ୍ୟ ପ୍ରଥମେ ପାରଳା ଖେମଣ୍ଡିର ରାଜା ଥିଲେ । କପିଳେନ୍ଦ୍ର ଦେବଙ୍କ ଅଷ୍ଟାଦଶ ପୁତ୍ରମାନଙ୍କ ମଧ୍ୟରୁ ଜଣେ ଏଠାକୁ ଆସି ଅନାର୍ଯ୍ୟମାନଙ୍କୁ ପରାସ୍ତ କରି ଖେମଣ୍ଡି ଅଧିକାର କଲେ । ୧୬୦୭ ଖ୍ରୀଷ୍ଟାବ୍ଦରେ ରାଜା ତାଙ୍କର ଏକ ପୁତ୍ରଙ୍କୁ ଅନଙ୍ଗଭୀମ ଖେମଣ୍ଡି ନାମକ ରାଜ୍ୟ ଦେଇଥିଲେ । ପରେ ତାହା ଦୁଇ ଭାଇଙ୍କ ମଧ୍ୟରେ ବିଭକ୍ତ ହୋଇ ବଡ଼ ଖେମଣ୍ଡି ଓ ସାନ ଖେମଣ୍ଡି ରାଜ୍ୟ ହେଲା ।

ଘୁମୁସର—ବୌଦ୍ଧ ଓ ଦଶପଲ୍ଲାର ଯେଉଁ ଭଞ୍ଜମାନେ ରାଜା ଥିଲେ ଏଠାରେ ସେହି ବଂଶ ରାଜାମାନେ ରାଜତ୍ୱ କରୁଥିଲେ ।

ଏ ସବୁ ଅଞ୍ଚଳର ରାଜାମାନେ ଉତ୍କଳ ଗଜପତିଙ୍କର କରଦ ଓ ମିତ୍ର ରାଜା ରୂପେ ଥାଇ ଯୁଦ୍ଧ ସମୟରେ ସୈନ୍ୟ ସାମନ୍ତ ଏବଂ ଯୁଦ୍ଧୋପକରଣ ଯୋଗାଉଥିଲେ । ଏହିପରି ଉତ୍କଳ ଏକ ରାଜାମଣ୍ଡଳୀ ରାଜ୍ୟ ଥିଲା ଓ ଗଜପତିଙ୍କ ଖାସ ଦଖଲ ରାଜ୍ୟ ମଧ୍ୟରେ ଗ୍ରାମେ ଗ୍ରାମେ ସମର ଶିକ୍ଷା ଚାଲିଥିଲା । ଏଣେ ଏହି ଉତ୍କଳ ବୀରଭୂମି ଓ ବୀରପ୍ରସବିନୀ

ଥିଲା । ତେଣୁ ଯବନମାନେ ସମଗ୍ର ଭାରତବର୍ଷ ଅଧିକାର କରିଥିଲେ ପୁଣା ୩୦୦ ବର୍ଷ ବ୍ୟାପୀ ବାରମ୍ବାର ଆକ୍ରମଣ କରି ଏହାକୁ ଅଧିକାର କରି ପାରି ନ ଥିଲେ । ଅନ୍ତର୍ବିବାଦ ଉପସ୍ଥିତ ହେବାରୁ ଉତ୍କଳର ସ୍ୱାଧୀନତା ଓ ଗୌରବ ଲୁପ୍ତ ହେଲା ।

—୨୦—

## ଓଡ଼ିଶାର ରାଜବଂଶ ଓ ସେମାନଙ୍କର ଆୟ

| ରାଜବଂଶ | ସମୟ | ଉତ୍କଳର କ୍ଷେତ୍ରଫଳ ବର୍ଗମାଇଲରେ | ( ବାର୍ଷିକ ) ରାଜସ୍ୱ |
|---|---|---|---|
| କେଶରୀବଂଶ | ୫୨୦-୧୦୪୨ ଖ୍ରୀଷ୍ଟାବ୍ଦ | ୧୫ ହଜାର | ୧୫ ଲକ୍ଷ ମାଢ଼ ସୁନା । |
| ଗଙ୍ଗବଂଶ | ୧୦୪୨-୧୪୩୫ ଅବ୍ଦ | ୩୯ ହଜାର ୪ ଶତ ୭ | ୪୬ ଲକ୍ଷ ୮୮ ହଜାର ମାଢ଼ ସୁନା ଅର୍ଥାତ୍ ପ୍ରାୟ ୪ କୋଟି ୪୩ ଲକ୍ଷଟଙ୍କା । |
| ସୂର୍ଯ୍ୟବଂଶ | ୧୪୩୫-୧୫୩୪ ଅବ୍ଦ | ,, | ଏଥି ମଧ୍ୟରୁ କେବଳ ଭୂମି ରାଜସ୍ୱ ୩ କୋଟି ୨୭ଲକ୍ଷ ୧୦ ହଜାର ଟଙ୍କା । |
| ସ୍ୱାଧୀନତାର ଅବସାନ | ୧୫୩୪-୧୫୬୮ ଅବ୍ଦ | ,, | |
| ମୋଗଲ | ୧୫୬୮-୧୭୫୧ ଅବ୍ଦ | ,, | ଟ ୩୧୪୩୩୧୭ ( ତୋଡ଼ରମଲ୍ଲ ) ଏଥିରୁ ସମସ୍ତ ଖୋର୍ଦ୍ଧା, ରହାଙ୍ଗ, ଚବଶ-କୁଦ, ସରଇ ଓ ଲେମ୍ବାଇ ମିଶି ୧୫୪୭ ବର୍ଗମାଇଲ ଖୋର୍ଦ୍ଧା ରାଜାଙ୍କ ପାଇଁ ଛାଡ଼ ଯାଇଥିଲା । ବାସ୍ତରଲକ୍ଷ ସତୁର ହଜାରଟଙ୍କା ( ଔରଙ୍ଗଜେବ ) |
| ମରହଟ୍ଟା | ୧୭୫୧-୧୮୦୩ | ,, | ସାଧାରଣତଃ ୧୪ ଲକ୍ଷ ୪୦ ହଜାରଟଙ୍କା । |
| ଇଂରାଜ | ୧୮୦୩-୧୮୧୮ | ୨୪ ହାଜର | ପ୍ରଥମ ବନ୍ଦୋବସ୍ତରେ ୪ ଲକ୍ଷ ୪୩ ହଜାର ଟଙ୍କାରୁ ବଢ଼ିବଢ଼ି ଟ ୧୭,୪୭,୯୨୪୧ ଟଙ୍କା ହେଲା । ଏବେ ନୂତନ ବନ୍ଦୋବସ୍ତ ଅନୁସାରେ କେବଳ ରାଜନୈତିକ ଓଡ଼ିଶାର ରାଜସ୍ୱ ପ୍ରାୟ ୪୧ ଲକ୍ଷ ଟଙ୍କା ହୋଇଅଛି । |

## ୧୯୩୨—୩୩ ( ମାଲିକାନା, ରେଭିନିଉ ଓ ପୋଲିସ ଜମି )

| (ଜିଲାର ନାମ) | (ଇଷ୍ଟେଟର ସଂଖ୍ୟା) | (ଦାବି) | (ଅଦାୟ) | (ଛାଡ଼) | (ବାକି) |
|---|---|---|---|---|---|
| କଟକ | ୮୪୦୫ | ଟ ୧୭,୮୧୦୩୩ | ଟ ୧୭,୭୧୬୭୫ | ୦ | ଟ ୧୯,୩୭୮ |
| ବାଲେଶ୍ୱର | ୨୯୫୩ | ଟ ୯,୪୧୧୮୧ | ଟ ୯,୨୭୪୬୫ | ୦ | ଟ ୧୫,୫୦୭ |
| ପୁରୀ | ୫୮୨ | ଟ ୧୧,୦୧୪୧୭ | ଟ ୯,୫୭୧୫୭ | ୦ | ଟ ୧,୪୫,୨୬୧ |
| ସମ୍ବଲପୁର | ୧୭୭ | ଟ ୩,୧୭୦୭୬ | ଟ ୩,୧୭୦୫୩ | ୨୦ | ଟ ୪୧ |
| ଅନୁଗୁଳ ଓ କନ୍ଧମାଳ | ୨ | ଟ ୧,୫୬୨୧୦ | ଟ ୧,୫୬୧୧୦ | ୦ | ଟ ୦ ୧ |
| | ୧୨୯୦୮ | ଟ ୪୧,୧୭୬୧୮୧ | ଟ ୪୦,୧୨୪୫୯୧ | ଟ ୨୦୧ | ଟ ୧,୮୦,୧୩[illegible] |

୧ ମାଢ଼ ସୁନା—ଅଧତୋଳା ସୁନା । ଅଲ୍ଲାଉଦ୍ଦୀନ ଖିଲ୍‌ଜି ଦିଲ୍ଲୀ ସମ୍ରାଟ୍ ଥିବାବେଳେ ସୁନା ଓ ରୁପାର ଅନୁପାତ ୧ ଓ ୧୦ ଥିଲା । ସୁତରାଂ ଅଧତୋଳା ସୁନା ୫ ତୋଳା ରୁପା ସଙ୍ଗେ ସମାନ । ବର୍ତ୍ତମାନ ଟଙ୍କାରେ ବିଶୁଦ୍ଧ ରୁପା ଶତକଡ଼ା ୫୪ ହିସାବରେ ଥାଏ । ଅତଏବ ୧ ମାଢ଼ ସୁନା ବା ୫ ତୋଳା ରୁପାରେ ବର୍ତ୍ତମାନ ୯।୨୭ ବା ଟ ୯ । ହେବ ।

କେହୁ ରହନାହିଁ ରହିବ ନାହିଁ, ଛକ-ରଙ୍ଗଭୂମିତଳେ ।

# ଓଡ଼ିଶାର ନାଲ ବା କେନାଲ

ଇରଗେସନ ଓ କେନାଲ କମ୍ପାନୀ ବୋଲି ଏକ କମ୍ପାନୀ ୧୮୬୮ ମସିହାରେ ଓଡ଼ିଶାରେ ଗଢ଼ା ଯାଇଥିଲା । ସେମାନେ କଟକ ନିକଟ ମହାନଦୀରେ ପଥର ବନ୍ଧ କରି ପାଣି ଅଟକାଇ ନାଲ ଖୋଳିବା କାର୍ଯ୍ୟ ଆରମ୍ଭ କରିଥିଲେ । ଏହି ବନ୍ଧର ନାମ ଆନିକଟ୍ । ୧୮୬୭ ମସିହାରେ ଓଡ଼ିଶାରେ ଭୟଙ୍କର ଦୁର୍ଭିକ୍ଷ ପଡ଼ିବାରୁ ସେ ଆଉ କାର୍ଯ୍ୟ କରି ନ ପାରି ତାଙ୍କ କାମକୁ ସରକାରଙ୍କୁ ବିକିଦେଲେ । ତାହାର ମୂଲ୍ୟ ୧୦୯ ଲକ୍ଷ ଟଙ୍କା ହୋଇଥିଲା । ସରକାର ସେଥିରେ ଅଧିକ ୧୫୪ ଲକ୍ଷ ଟଙ୍କା ଖରଚ କରି ୧୮୭୧ ଖ୍ରୀଷ୍ଟାବ୍ଦ ମଧ୍ୟରେ ନାଳଖୋଳା କାମ ଶେଷ କଲେ । ମୋଟ ଖର୍ଚ୍ଚ ଟ ୨, ୬୫, ୭୫, ୦୦୦ ଓ ସେଥିର ସୁଧ ଟ ୮, ୮୨, ୦୦୦ ଅଟେ ।

ଓଡ଼ିଶାରେ ୭ଟି କେନାଲ ପ୍ରଧାନ । ଯଥା—କେନ୍ଦ୍ରାପଡ଼ା, ପଟାମୁଣ୍ଡେଇ, ତାଳଦଣ୍ଡା, ମାଛଗାଁ, ହାଇଲେଭଲ, କୋଷ୍ଟ ଓ ଯାଜପୁର ।

୧—କେନ୍ଦ୍ରାପଡ଼ା କେନାଲ—୩୯$\frac{3}{8}$ ମାଇଲ ଲମ୍ବା । ଏଥିରୁ ପଟାମୁଣ୍ଡେଇ, ଗୋବରୀ ଓ ଜମ୍ବୁ କେନାଲମାନ ବାହାରି ଅଛି । ଏଥିରେ ଜଗତ୍‌ପୁରଠାରୁ କେନ୍ଦ୍ରାପଡ଼ା ଯାଏ ବୋଟ ଓ ଲଞ୍ଚ ଚାଲେ । ଏହାର ବନ୍ଧ ମହାନଦୀ, ଚିତ୍ରୋତ୍ପଳା ଓ ଲୁଣାନଦୀର ବାମ ପାଖରେ ନଈବନ୍ଧର କାମ କରୁଛି । ଗୋବରୀ ୨୪ ମାଇଲ ଅଟେ ।

୨—ପଟାମୁଣ୍ଡେଇ କେନାଲ—ଏହା ୪୭ମାଇଲ ଲମ୍ବ । ଏହି କେନାଲ ଜଗତ୍‌ପୁର ନିକଟରେ କେନ୍ଦ୍ରାପଡ଼ା କେନାଲରୁ ବାହାରି ଅଲଭା ପର୍ଯ୍ୟନ୍ତ ଯାଇଅଛି । ଏଥିରେ ଜଗତ୍‌ପୁର ଠାରୁ ଚାନ୍ଦବାଲି ପର୍ଯ୍ୟନ୍ତ ଟଣାବୋଟ ଚାଲେ । ଏହା ବିରୂପା ଓ ବ୍ରାହ୍ମଣୀ ନଦୀକୂଳରେ ବନ୍ଧର କାର୍ଯ୍ୟ କରୁଛି ।

୩—ତାଳଦଣ୍ଡା କେନାଲ—ଏହା ୫୦$\frac{3}{8}$ ମାଇଲ ଲମ୍ବ । କଟକରେ ଜୋବ୍ରା ନିକଟରେ ମହାନଦୀ ଆନିକଟରୁ ବାହାରି ତାଳଦଣ୍ଡା ଯାଏ ଯାଇଛି । ଏଥିରୁ ମାଛଗାଁ କେନାଲ ବାହାରିଛି । ଏହା ମଧ୍ୟରୁ ଗଡ଼ଦାବାଙ୍କରୁ କଟକକୁ ଷ୍ଟିମାର ଏବଂ ନୌକାମାନ ଆସେ । ଏହା ମହାନଦୀ, ପାଇକା ଓ କାଠଯୋଡ଼ି ନଦୀ କୂଳରେ ବନ୍ଧର କାର୍ଯ୍ୟକରେ ।

୪—ମାଛଗାଁ କେନାଲ—ଏହାର ଦୈର୍ଘ୍ୟ ୨୮ ମାଇଲ । ଏହା ବିରବାଟୀ ନିକଟରୁ ତାଳଦଣ୍ଡା କେନାଲରୁ ବାହାରି ମାଛଗାଁ ଯାଏ ଯାଇଅଛି । ଏହା କାଠଯୋଡ଼ି ଓ ଅଳକା ନଦୀକୂଳରେ ବନ୍ଧରୂପେ ରହିଅଛି ।

୫—ହାଇଲେଭଲ କେନାଲ:—ଏହାର ତିନିଗୋଟି ରେଞ୍ଜ ଅଛି । ଏହା ପ୍ରାୟ ୭୭ ମାଇଲ ଲମ୍ବ । ଏହା କଟକ ନିକଟ ଚଉଦୁଆରଠାରେ ବିରୂପା ନଦୀର ଆନିକଟରୁ ବାହାରି ଯେନାପୁର ନିକଟ ବ୍ରାହ୍ମଣୀ ନଦୀ ପର୍ଯ୍ୟନ୍ତ ଯାଇଅଛି । ଏଥିରେ ନୌକା ଯିବା ଆସିବା କରେ । ଏହା ରେଞ୍ଜ ନଂ ୧ ମ୍ବର ଅଟେ ।

ହାଇଲେଭଲ ରେଞ୍ଜନମ୍ବର—ଏହା ୧୨$\frac{1}{4}$ ମାଇଲ ଲମ୍ବ । ଏହା ବ୍ରାହ୍ମଣୀରୁ ବାହାରି ବୁଢ଼ିଆ ପର୍ଯ୍ୟନ୍ତ ଯାଇ ଅଛି— ଏହା ବନ୍ୟାରେ ଅନେକ ସ୍ଥାନ ଭାଙ୍ଗି ଯାଇ ଥିବାରୁ ପରିତ୍ୟକ୍ତ ହୋଇଥିଲା । ବର୍ତ୍ତମାନ ଏ କେନାଲର କେତେକ ଅଂଶ ଦ୍ୱାରା ଜଳ ସେଚନ କାର୍ଯ୍ୟ ହେଉଅଛି । ମାତ୍ର ନୌକା ଗମନାଗମନର ସୁବିଧା ହୋଇନାହିଁ ।

ବୈତରଣୀ ଆନିକଟରୁ ଗୋଟିଏ କେନାଲ ଭଦ୍ରକ ସହର ଯାଏ ଯାଇଛି । ତାହାକୁ ମଧ୍ୟ ହାଇଲେଭଲ କେନାଲ ରେଞ୍ଜ ନମ୍ବର କହନ୍ତି ।

ବୈତରଣୀରୁ ଅଖୁଆପଦାଠାରେ ବୁଢ଼ା ନଦୀ ବାହାରି ଅଛି । ସେଠାରେ ଏହି ଦୁଇ ନଦୀରେ ଆନିକଟ ଅଛି । ବୁଢ଼ା ନଦୀର ଆନିକଟରୁ ଯାଜପୁର କେନାଲ ଯାଜପୁର ଯାଏ ଯାଇଛି । ଏହାର ଲମ୍ବ ୭$\frac{1}{4}$ ମାଇଲ ଅଟେ ।

୬—କୋଷ୍ଟ କେନାଲ—ଏହାର ଲମ୍ବ ପ୍ରାୟ ୪୫ ମାଇଲ । ଏହା ଭଦ୍ରକ ସବ୍‌ଡିଭିଜନର ମଧ୍ୟେଇନଦୀର ଗୁରବାଟିଆଠାରୁ ସୁବର୍ଣ୍ଣରେଖା ନଦୀ କୂଳସ୍ଥ ଗେଓଖାଲି ପର୍ଯ୍ୟନ୍ତ ଯାଇଅଛି । ଏଥିରେ ନୌକା ଚାଲେ । ବର୍ତ୍ତମାନ

ଏ କେନାଲ ଅନେକ ସ୍ଥାନ ଭଙ୍ଗି ଯାଇଅଛି ଏବଂ ଅନେକ ଅଂଶ ପରିତ୍ୟକ୍ତ ।

ଉପରୋକ୍ତ କେନାଲ ମାନଙ୍କରୁ କୋଷ୍ଟକେନାଲକୁ ଛାଡ଼ି ଜଳକର, ନୌକାକର ଓ ବାଜେକର ଏକସଙ୍ଗରେ ବାର୍ଷିକ ପ୍ରାୟ ଟ ୫୨୦୫୬୨୧ ଅଧି ଏବଂ ସେମାନଙ୍କ ରକ୍ଷଣାବେକ୍ଷଣ ନିମିତ୍ତ ସବପ୍ରକାର ପ୍ରାୟ ଟ ୪୮୬୫୭୨୧ ଖର୍ଚ୍ଚ ହୁଏ । ଜଳ ଯୋଗାଇବା ଓ ନୌକା ଗମନା ଗମନ କରିବା ନାଳର ପରିମାଣ ୨୩୪½ ଓ କେବଳ ପାଣି ଯୋଗାଇବା ନାଳର ପରିମାଣ ୧୨୨ ମାଇଲ ଅଛି । ପାଣି ଯୋଗାଇବା ପାଇଁ ଶାଖାନାଳ ୧୨୪୬½ ମାଇଲ, ଗ୍ରାମ୍ୟ ମାହାଣ ୮୬୭୭ ମାଇଲ ଓ ଡ୍ରେନେଜ ମାହାଣ ୩୩୨ ମାଇଲ ଅଛି । କଟକ ଜିଲ୍ଲା ନାଳର ରାଜସ୍ୱ ପ୍ରାୟ ଟ ୩୪୧୫୩୮ ଓ ବାଲେଶ୍ୱର ଜିଲ୍ଲା ନାଳର ରାଜସ୍ୱ ପ୍ରାୟ ଟ ୭୦୫୯ ଅଛି । ପ୍ରତିବର୍ଷ ଏହି ରାଜସ୍ୱର ପରିବର୍ତ୍ତନ ଘଟେ ।

| | |
|---|---|
| କେନ୍ଦ୍ରାପଡ଼ା ନାଳରୁ | ୯୯୮୩୩ ମାଣ |
| ହାଇଲେଭେଲ ନାଳ ୧ମ ରୁ | ୨୭୧୫୭ ,, |
| ୨ୟ ରୁ | ୪୪୨୭ ,, |
| ୩ୟ ରୁ | ୪୫୩୪୩ ,, |
| ତାଳଦଣ୍ଡା ନାଳରୁ | ୬୬୮୭୯ ,, |
| ଯାଜପୁର ନାଳରୁ | ୨୨୪୫୫ ,, |
| ବୁଧେଇ ନାଳରୁ | ୨୫୨୯ ,, |
| [illegible] | ୨୬୮୬୬୩ ମାଣ ଅବାଦ ହୁଏ |

ମୋଟ ଇରିଗେସନ୍ ଏରିଆ ହାରାହାରି ୧୮୦୦୦୦ ମାଣ ।

ଜଳକର ଭିନ୍ନ ଶାଖା ଦୁଇ ଭାଗରେ ବିଭକ୍ତ ଯଥା :—ମଡ଼ା ଓ ଧୋଇଆ । ମଡ଼ା ହାରାହାରି ଏକମାଣ ପ୍ରତି ବର୍ତ୍ତମାନ କଟକ ଜିଲ୍ଲାରେ ଟ ୩୧ ଓ ବାଲେଶ୍ୱର ଜିଲ୍ଲାରେ ଟ ୨ୟ । ଧୋଇଆ ଏକମାଣ ପ୍ରତି କଟକଜିଲ୍ଲାରେ ଟ ୧ୟ ଓ ବାଲେଶ୍ୱରଜିଲ୍ଲାରେ ଟ ୧ୟ ।

କଟକ ଜିଲ୍ଲାରେ ଛୋଟ ବଡ଼ ସବୁ କେନାଲର ଲମ୍ବ ଏକଜ ମିଶାଇଲେ ପ୍ରାୟ ୧୪୦୦ ମାଇଲ ହେବ ।

ଓଡ଼ିଶାରେ ଯେଉଁ ଜମିରେ ପାଣି ମଡ଼ା ଯାଇ ପ୍ରତି ବର୍ଷ ଫସଲ ଅମଳ କରାଯାଏ ସେଥିରେ ଧୋଇ ନାହିଁ କ ମଞ୍ଜୁରି ନାହିଁ ।

ଉପରୋକ୍ତ ନାଳମାନଙ୍କ ମଧ୍ୟରୁ କଟକ ଜିଲ୍ଲାରେ ବେଶୀ ବାଲେଶ୍ୱର ଜିଲ୍ଲାରେ ଅଳ୍ପ ଏବଂ ପୁରୀ ଜିଲ୍ଲାରେ ଆଦୌ ନାହିଁ ।

# ନଦୀବନ୍ଧ

ଏ ପର୍ଯ୍ୟନ୍ତ ନଦୀବନ୍ଧ ସମ୍ବନ୍ଧରେ ସଠିକ ବିବରଣ ମିଳି ନାହିଁ । ତେବେ ଓଡ଼ିଶାରେ ୯୬୯ ମାଇଲ ନଦୀବନ୍ଧ ମଧ୍ୟରୁ ସରକାର ବାହାଦୁର ୩୭୨ ମାଇଲ ୧୮୦୫ ସାଲ ବନ୍ଦୋବସ୍ତ ଆରମ୍ଭରୁ ଛାଡ଼ଦେଇ ଅବଶିଷ୍ଟ ୫୯୭ ମାଇଲ ନିଜ ତତ୍ତ୍ୱାବଧାନରେ ରଖିବାର ପ୍ରସ୍ତାବ କରିଥିଲେ । ସେଥିମଧ୍ୟରୁ ଉଚିତ ତଦାରଖ ପରେ ୧୪୧ ମାଇଲ କ୍ରମେ ଛାଡ଼ିଦେବାର ପ୍ରସ୍ତାବ ହୋଇଥିଲା ଓ ଅବଶିଷ୍ଟ ୪୫୬ ମାଇଲ ଉତ୍ତମ ଅବସ୍ଥାରେ ରଖିବାର ଆବଶ୍ୟକ ଥିଲେ ମଧ୍ୟ ଗଭର୍ଣ୍ଣମେଣ୍ଟ ସେଥିଲାଗି ବିଶେଷ କିଛି ବନ୍ଦୋବସ୍ତ କରିବେ ନାହିଁ ବୋଲି କହିଥିଲେ । କିନ୍ତୁ ଉପରୋକ୍ତ ୫୯୭ ମାଇଲ ମଧ୍ୟରୁ କେତେକ ବର୍ଷ ପର୍ଯ୍ୟନ୍ତ କୌଣସି ବନ୍ଧ ଛାଡ଼ିଦେବାର ସମ୍ଭାବନା ନାହିଁ ଏବଂ ଦରକାର ହେଲେ ସ୍ଥାନେ ସ୍ଥାନେ ପରିବର୍ତ୍ତନ କରି ଯାଉଥିବ ।

# ଓଡ଼ିଶାର ଚିରସ୍ଥାୟୀ ବନ୍ଦୋବସ୍ତ ମାହାଲ

ସରକାର ବାହାଦୁର ଆଳି, କନିକା, କୁଜଙ୍ଗ, ଛେଡ଼ରା, ହରିଶପୁର, ବିଷ୍ଣୁପୁର, ଉଗ୍ରୀ, ମରିଚପୁର, ମଙ୍ଗଳପୁର, ଆମ୍ବହତା, ଅମ୍ବୋ, ବଳରାମପୁର, ଚଉଦଠି ପଡ଼ା, କଣ୍ଟାଝର, ସୁକିନ୍ଦା, ମଧୁପୁର, ଦର୍ପଣୀ, କଳକଳା ଓ ତମପଡ଼ା ଆଦି ୨୪ ଟି ଜମିଦାରୀର ସତ୍ତ୍ୱାଧିକାରୀଙ୍କଠାରୁ ଏକରାରନାମା ଲେଖାଇ ନେଇ ଚିରସ୍ଥାୟୀ ପେସ୍‌କସ୍‌ର ବନ୍ଦୋବସ୍ତ କରିଅଛନ୍ତି । ପଟିଆ କିଲ୍ଲା ନିଷ୍କର ମାହାଲ ଅଟେ । ବାଲେଶ୍ୱର ଜିଲ୍ଲାରେ ୧୫୦ ଗୋଟି ଚିରସ୍ଥାୟୀ ବନ୍ଦୋବସ୍ତଭୋଗୀ ଜମିଦାରୀ ଅଛି ।

# ଓଡ଼ିଶାର ପ୍ରଧାନ ପ୍ରଧାନ ଜମିଦାରୀ

## କଟକ

| ଜମିଦାରୀର ନାମ | କ୍ଷେତ୍ରଫଳ | | ପେସ୍‌କସ୍ |
|---|---|---|---|
| ୧ କନକା-(୪୬୦ ବର୍ଗ ମାଇଲ ମଧ୍ୟରୁ କଟକ ଜିଲ୍ଲାରେ ୨୭୨ ବର୍ଗ ମାଇଲ ଓ ବାଲେଶ୍ୱରରେ ୧୭୫ ବର୍ଗ ମାଇଲ) | | | ଟ ୨୦୪୦୭ ।୴୲ ୧୧ |
| ୨ କୁଜଙ୍ଗ | ୩୭୦ | ବର୍ଗମାଇଲ | ଟ ୭୫୦୨ ୷୯ ୭ |
| ୩ ହୁକିଟୋଲା | ୩୩୭ | ,, | ଟ ୧୩୭୪ ।/ ୫ |
| ୪ ଦରଭିଣୀ | ୧୦୦ | ,, | ଟ ୭୩୦୭ ।/ |
| ୫ ଡମପଡ଼ା | ୮୩ | ,, | ଟ ୧୩୩୩ ।/ ୪ |
| ୬ ମଧୁପୁର | ୬୧ | ,, | ଟ ୬୧୭୪ ।୴ |
| ୭ ହରିଶପୁର | ୬୦ | ,, | ଟ ୩୬୩୫ ।୵ ୧୦ |
| ୮ କଲକଲା | ୧୯ | ,, | ଟ ୧୩୧ ୷ ୭ |
| ୯ ପଟ୍ଟିଆ | ୫୩ | ,, | ଟ ୦ ୧ |
| ୧୦ ଆଳି | ୧୩୫ | ,, | ଟ ୨୮୧୨୫ ୵ |

ଏତଦ୍ ବ୍ୟତୀତ ଡାଳିଯୋଡ଼ା, ସାଇବର, ଅସୁରେଶ୍ୱର, ହରିହରପୁର, କଳାମାଟିଆ, ବାଲୁବିଶି, ଉତିକଣ, ବେଣାହାର ପ୍ରଭୃତି ଜମିଦାରମାନ ଅଛି ।

## ପୁରୀ

୧-କୋଠଦେଶ ୧୩୮ ବର୍ଗମାଇଲ ଟ ୧୩୨୦୦୦ ୧ ।

ଏଥିରେ ୩ ଜଣ ଜମିଦାର, ସରକାର ସାଧାରଣ ମେନେଜର ଦ୍ୱାରା ବୁଝା ସୁଝା କରନ୍ତି । ଜମିଦାରମାନେ ଟ ୨୨୮୦୦୦ ପାନ୍ତି ।

୨-ମରଚପୁର ୫୨ ବର୍ଗ ମାଇଲ । ଏଥିରେ ପ୍ରାୟ ୪୦ ଜଣ ଜମିଦାର ।

୩ ପାରକୁଦ ୬୭ ବର୍ଗ ମାଇଲ

ସରକାରଙ୍କ ଆଦେଶ ଅନୁସାରେ ଏଠା ରଜା ମାଲୁଦର ଜମିଦାରଙ୍କୁ ବର୍ଷକୁ ଟ ୧୬୦୦ (ଦିଅନ୍ତି) ।

ଏହାଛଡ଼ା ଲେମ୍ବେଇ, କୋଟ୍‌ରହାଙ୍ଗ, ଚଉଦକୁଦ୍ ଅଛି ।

## ବାଲେଶ୍ୱର ଜିଲ୍ଲା

୧—ମଙ୍ଗଳପୁର ଭୂୟାଁ
୨—ନମାଣ୍ଡା କାନୁନଗୋ
୩—କୁଡ଼େଇ ପ୍ରଧାନଜ
୪—କାଜପୁର ମହାଶୟ
୫—ପୁନହଟ ଦାସବର୍ଣ୍ଣ
୬—ବାଲେଶ୍ୱର ରଜା
୭—ଦରଡ଼ା ପ୍ରଧାନଜ
୮—ଶାହାବନ୍ଦର ଭୂୟାଁ
୯— ,, କାନୁଗୋଇ
୧୦—ଆଠରପଡ଼ା ବଳବର୍ଣ୍ଣ
୧୧—କୋଠାର ଘୋଷ
୧୨—ଅମୃତଦତା ଦାସ
୧୩—ଇରମ ପାତ୍ର
୧୪—ବାଲିଖଣ୍ଡ ଚୌଧୁରୀ
୧୫—ଧାମନଗର ମିଶ୍ର
୧୬—ଭଦ୍ରକ ମିଶ୍ର
୧୭—ଲକ୍ଷ୍ମଣନାଥ ମହାଶୟ
୧୮—ବାଲେଶ୍ୱର କର
୧୯—ଅଙ୍କୁଡ଼ା ମଣ୍ଡଳ

---

ସମ୍ବଲପୁର ଜିଲ୍ଲାର ପ୍ରଧାନ ଜମିଦାରୀ ପୂର୍ବରୁ ପ୍ରଦତ୍ତ ହୋଇଅଛି ।

## ଶିଳ୍ପ

ଏ ଜିଲ୍ଲାରେ ମୁରବା ନାମରେ ଏକପ୍ରକାର ଗଛ ଅଛି । ସେ ଗଛର ପତ୍ରରୁ ସୂତା ବାହାର କରାଯାଏ ଏବଂ ସେଥିରେ ମଜ୍‌ବୁତ୍ ଲୁଗା ବୁଣାଯାଏ ।

ଏ ଜିଲ୍ଲାରେ ଭୁଲିଆ ଓ କୋଷ୍ଟା ନାମରେ ଦୁଇ ପ୍ରକାର ତନ୍ତୀ ଅଛନ୍ତି । ସେମାନେ କପାଲୁଗା ଓ କୋଷାରେ ସୁନ୍ଦର ମଠା ଲୁଗା ବୁଣନ୍ତି ।

ସାହସିଆ ନାମକ ଓଡ଼ିଆ ବନ୍ଧାଣୀ ପଥରରେ ସୁନ୍ଦର ମୂର୍ତ୍ତି ଓ ବାସନ ତିଆର କରନ୍ତି ।

ଏ ଜିଲ୍ଲାର କେତେକ ଲୋକ ସୁନା, ରୁପା, କଂସା ଓ ପିତଳରେ ଜିନିଷ ତିଆର କରି ବ୍ୟବସାୟ କରନ୍ତି ।

# ପୁରୀ

ସୀମା—ଉଃ ଓ ପୂଃ- ବଙ୍ଗୋପସାଗର, ଦ- ଚିଲିକା, ଓ ପଃ-ଚତୁର୍ଦ୍ଦଶକୁଦ ପ୍ରଗନ୍ନା । ଏହା କଲିକତାରୁ ରେଲରେ ୩୧୧ ମାଇଲ ଓ କଟକରୁ ରେଲରେ ୫୮ ମାଇଲ । ଜଗନ୍ନାଥ ମନ୍ଦିର ନୀଳଗିରି ପର୍ବତ ଉପରେ ଅବସ୍ଥିତ । ତାହା ସମୁଦ୍ରଠାରୁ ୨୨ ଫୁଟ ଉଚ୍ଚ । ମନ୍ଦିରରେ ପ୍ରବେଶ କରିବାକୁ ହେଲେ ଦୁଇଟି ପ୍ରାଚୀର ଅତିକ୍ରମ କରିବାକୁ ହୁଏ । ପ୍ରଥମ ପ୍ରାଚୀରର ନାମ 'ମେଘନାଦ ପାଚେରି' । ତାହା ୬୬୫ ଫୁଟ ଲମ୍ବ, ୬୪୪ ଫୁଟ ପ୍ରସ୍ଥ, ୬ ଫୁଟ ଚଉଡ଼ା ଓ ୨୦ ଫୁଟ ଉଚ୍ଚ । ଦ୍ୱିତୀୟ ପ୍ରାଚୀର ବା କୂର୍ମ ପ୍ରାଚୀର ୪୦୦ ଫୁଟ ଲମ୍ବ ଓ ୨୭୮ ଫୁଟ ପ୍ରସ୍ଥ । ସର୍ବାପେକ୍ଷା ବଡ଼ଦେଉଳଟି ୧୯୦ ଫୁଟ ଉଚ୍ଚ । ଏହି ଦେଉଳ ଅନଙ୍ଗ ଭୀମଦେବଙ୍କ ସମୟରେ ନିର୍ମିତ । ନୀଳକଣ୍ଠ ରାଜଗୁରୁ ମହାପାତ୍ର ପରମହଂସ ବାଜପେୟୀଙ୍କ ଉପରେ ମନ୍ଦିର ନିର୍ମାଣ ଭାର ନ୍ୟସ୍ତ ଥିଲା । ନିର୍ମାଣ କାର୍ଯ୍ୟନିମନ୍ତେ ୧୨ ଲକ୍ଷ ୫୦ ହଜାର ମାଢ଼ ସ୍ୱର୍ଣ୍ଣ ଓ ୨୫ ଲକ୍ଷ ମାଢ଼ ସ୍ୱର୍ଣ୍ଣ ମୂଲ୍ୟର ରତ୍ନାଦି ବ୍ୟୟ କରାଯାଇଥିଲା । ୧୨୦୫ ଖ୍ରୀ: ଅ:ରେ ନିର୍ମାଣ ଶେଷ ହୋଇଥିଲା । ମାଦଳା ପାଞ୍ଜି ଅନୁସାରେ ଏହି ଦେଉଳ ପ୍ରତାପରୁଦ୍ରଦେବ, ନରସିଂହଦେବ ଏବଂ କୃଷ୍ଣଦେବଙ୍କ ରାଜତ୍ୱ ସମୟରେ ଥରେ ଲେଖାଏଁ ମରାମତ ହୋଇଥିଲା । ପୁଣି ବୀରକିଶୋର ଦେବଙ୍କ ପାଟରାଣୀଙ୍କ ଦ୍ୱାରା ଥରେ ଏବଂ ସାଧାରଣ ଚାନ୍ଦାଦ୍ୱାରା ଆଉ ଦୁଇଥର ମରାମତ ହୋଇଅଛି । ଏହି ମନ୍ଦିର ସମ୍ମୁଖସ୍ଥ ଅରୁଣସ୍ତମ୍ଭ ୨୫ ଫୁଟ ଉଚ୍ଚତା ବିଶିଷ୍ଟ ଖଣ୍ଡିଏ ମାତ୍ର ପଥରରେ ଗଢ଼ା ହୋଇଅଛି । ତାହାର ପରିଧି ୬ଫୁଟ ୩ଇଞ୍ଚ । କୋଣାର୍କ ମନ୍ଦିର ଭାଙ୍ଗିଯିବାପରେ ଏହି ସ୍ତମ୍ଭ ସେଠାରୁ ଅଣା-ଯାଇ ଏଠାରେ ରଖା ଯାଇଅଛି । ଏହା ଏୟୋଦଶ ଶତାବ୍ଦିରେ ନିର୍ମିତ ହୋଇଥିଲା ବୋଲି ଲୋକେ କହନ୍ତି । ଯେତେବେଳେ କଳାପାହାଡ଼ ପୁରୀ ଆକ୍ରମଣ କଲା ପଣ୍ଡାମାନେ ଜଗନ୍ନାଥଙ୍କୁ ନେଇ ଚିଲିକା ମଧ୍ୟସ୍ଥ ପାରିକୁଦରେ ଲୁଚାଇ ରଖିଲେ । କଳାପାହାଡ଼ ସନ୍ଧାନ ପାଇ ଜଗନ୍ନାଥ ଦେବଙ୍କୁ ଏକ ହାତୀ ଉପରେ ଲଦି ଗଙ୍ଗା କୂଳକୁ ଘେନିଗଲା । ସେଠାରେ ଶ୍ମଶାନରେ ଏକ ଜଳନ୍ତ ଚିତାରେ ସେ ତାହାଙ୍କୁ ନିକ୍ଷେପ କଲା । ବେଶାର ମହାନ୍ତି ନାମକ ଜଣେ ପରମଭକ୍ତ ଗୋପନରେ ଜଗନ୍ନାଥଙ୍କ ସଙ୍ଗେ ସଙ୍ଗେ ଥିଲେ । ଜଗନ୍ନାଥ ସମ୍ପୂର୍ଣ୍ଣ ଦଗ୍ଧ ନ ହେଉଣୁ ବେଶାର କୌଣସିମତେ ତାହାଙ୍କ ନାଭିସ୍ଥଳ ବ୍ରହ୍ମଙ୍କୁ ଉଦ୍ଧାର କରି ସ୍ୱଦେଶକୁ ଫେରି ଆସିଲେ । ଖୁର୍ଦ୍ଦାର ରାଜା ସେ ବ୍ରହ୍ମ ପାଇ ନବ କଳେବର କରାଇ ପୁନର୍ବାର ଜଗନ୍ନାଥ ପ୍ରତିଷ୍ଠା କରାଇଲେ । ମୋଗଲମାନଙ୍କ ଆକ୍ରମଣ ସମୟରେ ସେବକମାନେ ଦୁଇ ତିନଥର ଶ୍ରୀଜୀଉଙ୍କୁ ଚିଲିକାକୂଳକୁ ନେଇ-ଯାଇଁ ପର୍ବତମଧ୍ୟରେ ଲୁଚାଇ ରଖିଥିଲେ । ଯାବନିକର ଧାର୍ଯ୍ୟ ହେଲା ପରେ ପୁନର୍ବାର ଜଗନ୍ନାଥ ଦେବଙ୍କୁ ଆଣି ସିଂହାସନରେ ବସାଇଲେ ।

ବଡ଼ଦାଣ୍ଡରେ ପ୍ରାୟ ଦେଢ଼ମାଇଲ ଗଲେ ଗୁଣ୍ଡିଚା ମନ୍ଦିର ପଡ଼େ । ଏହାର ବେଢ଼ା ଫୁ ୪୩୦ ଟ ଲମ୍ବା ଓ ଫୁ ୩୨୦ ଟ ଚଉଡ଼ା ଏବଂ ଗୁଣ୍ଡିଚାଘର ଫୁ ୭୫ ଟ ଉଚ୍ଚ । ଏହାର ଚତୁ-ପାଖରେ ଫୁ ୨୦ ଟ ଉଚ୍ଚ ଓ ଫୁ ୫।୨ ଇଞ୍ଚ ବହଳ ପ୍ରାଚୀର ଅଛି । ଗୁଣ୍ଡିଚା ଘର ମଧ୍ୟରେ ଫୁ ୪ ଟ ଉଚ୍ଚ ଓ ଫୁ ୧୯ ଟ ଲମ୍ବା ଗୋଟିଏ ମଣ୍ଡପ ଅଛି; ତାହାର ନାମ ରତ୍ନବେଦୀ । ରଥରୁ ଓହ୍ଲାଇ ଜଗନ୍ନାଥ ଆଦି ତିନମୂର୍ତ୍ତି ଏହା ଉପରେ ବସନ୍ତି । ବାଲେଶ୍ୱରର ରାଜା ଶ୍ୟାମାନନ୍ଦ ଦେ ବାହାଦୁର ଏଥିର ସଂସ୍କାରକ ।

ନରେନ୍ଦ୍ର ପୁଷ୍କରଣୀ ଫୁ ୮୭୩ ଟ ଲମ୍ବ ଓ ଫୁ ୩୪ ଟ ପ୍ରସ୍ଥ, ଇନ୍ଦ୍ରଦ୍ୟୁମ୍ନ ଫୁ ୪୮୫ ଟ ଲମ୍ବ ଓ ଫୁ ୩୯୬ଟ ପ୍ରସ୍ଥ; ଶ୍ୱେତଗଙ୍ଗା ଫୁ ୨୫୪ ଟ ଲମ୍ବ ଓ ଫୁ ୧୮୪ ଟ ପ୍ରସ୍ଥ । ଶ୍ୱେତଗଙ୍ଗା ଉପରେ ଦୁଇଗୋଟି ମନ୍ଦିର ଅଛି । ଗୋଟିକରେ ଶ୍ୱେତମାଧବ ଓ ଅପର-ଟିରେ ମତ୍ସ୍ୟମାଧବ ଅଛନ୍ତି । ଇନ୍ଦ୍ରଦ୍ୟୁମ୍ନର ଜଳ ଉତ୍କୃଷ୍ଟ । ନରେନ୍ଦ୍ର ପୁଷ୍କରଣୀରେ ବୈଶାଖମାସରେ ଚନ୍ଦନ ଯାତ୍ରା ହୁଏ । ମାର୍କଣ୍ଡ ପୁଷ୍କରଣୀର ଉତ୍ତରପାଖ ଫୁ ୩୫୦ଟ, ପୂର୍ବପାଖ ଫୁ ୨୦୫ଟ ଦକ୍ଷିଣ ପାଖ ଫୁ ୩୮୫ ଟ ଓ ପଶ୍ଚିମ ପାଖ ଫୁ ୫୪୨ ଟ ଲମ୍ବ । ଏହି ପୁଷ୍କରଣୀରେ ଅନେକ ଗୁଡ଼ିଏ ସୁନ୍ଦର ଘାଟ ଅଛି ଏବଂ ଦକ୍ଷିଣରେ ମାର୍କଣ୍ଡେଶ୍ୱରଙ୍କର ଦେଉଳଅଛି । ବର୍ଦ୍ଧମାନର ରାଜା କୀର୍ତ୍ତିଚନ୍ଦ୍ର ଏହାକୁ ମରାମତ କରାଇ ଦେଇଅଛନ୍ତି ।

ଅଠରନଳା ସେତୁ ମଧୁପୁର ନଦୀ ଉପରେ ନିର୍ମିତ । ଏହା ଲମ୍ବାରେ ଫୁ ୨୯୦ଟ । ଏଥିରେ ଅଠରଗୋଟି ମେହେଲା ଅଛି । ଖିଲଣ ଗୁଡ଼ିକର ଓସାର ୧୭ ରୁ ୨୬ ଫୁଟ ପର୍ଯ୍ୟନ୍ତ । ମଧ୍ୟ ଖିଲଣଟି ସବୁଠାରୁ ବଡ଼ ଏବଂ ଦୁଇପାଖକୁ ଅଳ୍ପେ ଛୋଟ କରାଯାଇଅଛି । ଏହି ଅଠରନଳା କଡ଼ା ଓ ବାଲିଅଙ୍କା

ପଥରରେ ମଯୂରକେଶରୀଙ୍କ ରାଜତ୍ୱ ସମୟରେ ୯୫୭ ରୁ ୯୯୫ ଖ୍ରୀ: ମଧ୍ୟରେ ନିର୍ମିତ ହୋଇଥିଲା । ଏହା ଅଦ୍ୟାପି ଅକ୍ଷୁନ୍ନ ରହିଅଛି ଏବଂ ପ୍ରାଚୀନ ଉତ୍କଳୀୟମାନଙ୍କର ଶିଳ୍ପ କାର୍ଯ୍ୟର ଜୀବନ୍ତ ପ୍ରମାଣ ।

ପୁରୀ ନଗରରେ ପ୍ରାୟ ୭୦ ରୁ ଅଧିକ ବୈଷ୍ଣବ ଓ ଶୈବ ମଠମାନ ଅଛି ।

## ସତ୍ୟବାଦୀ

ସତ୍ୟବାଦୀ :—ପୁରୀ ନଗରରୁ ମାଇଲ ଉତ୍ତରରେ ଗୋପାଳ ମନ୍ଦିର ଅଛି । ମନ୍ଦିର ମଧ୍ୟରେ ଫୁଟ ଉଚ୍ଚରେ ଗୋପାଳ ଓ ରାଧିକା ରହିଅଛନ୍ତି । ପୁରୁଷୋତ୍ତମଦେବ (୧୪୭୧-୯୭) କାଞ୍ଚି ରାଜାଙ୍କୁ ଜୟ କରି ଏହି ମୂର୍ତ୍ତି ଆଣି ପ୍ରଥମରେ କଟକରେ ସ୍ଥାପନ କରିଥିଲେ । ପରେ ମୋଗଲ-ମାନଙ୍କ ଶାସନ ସମୟରେ ଏହା କଟକରୁ ସତ୍ୟବାଦୀକୁ ଅଣା ହୋଇଅଛି । କାଞ୍ଚି ଦେଶର ଦୁଇ ଜଣ ବ୍ରାହ୍ମଣ ତୀର୍ଥ ଭ୍ରମଣ କରୁଁ କରୁଁ ବୃନ୍ଦାବନରେ ଉପସ୍ଥିତ ହେଲେ । ସେଠାରେ ବୃଦ୍ଧ ବ୍ରାହ୍ମଣ ପୀଡ଼ିତ ହେବାରୁ ଯୁବା ବ୍ରାହ୍ମଣ ତାହାଙ୍କୁ ସେବା କରି ରୋଗ ମୁକ୍ତ କରାଇଲେ । ତେଣୁ ସେ ସନ୍ତୁଷ୍ଟ ହୋଇ ତାହାଙ୍କୁ ନିଜ କନ୍ୟା ପ୍ରଦାନ କରିବେ ବୋଲି ଅଙ୍ଗୀକାର କଲେ । ଘରକୁ ଫେରି ଆସି ବୃଦ୍ଧ ନିଜର ପ୍ରତିଜ୍ଞା ପାଳନ ନ କରିବାରୁ ଯୁବକ ଗ୍ରାମର ଭଦ୍ରଲୋକମାନଙ୍କୁ ଡ଼ାକି ସମସ୍ତ ବିଷୟ ଜଣାଇଲେ । ବୃଦ୍ଧ ସେ ସମସ୍ତ ମିଥ୍ୟା ବୋଲି କହିବାରୁ ଭଦ୍ରଲୋକମାନେ ସାକ୍ଷୀ ଖୋଜିଲେ । ଯୁବକ ବୃନ୍ଦାବନକୁ ଯାଇ ଯେଉଁ ଗୋପାଳ ମନ୍ଦିରରେ ଦୁଇ ଜଣଙ୍କର କଥାବାର୍ତ୍ତା ହୋଇଥିଲା, ତାହାଙ୍କ ନିକଟରେ ସମୁଦାୟ ବିଷୟ ଗୁହାରି କରି ସାକ୍ଷ୍ୟ ଦେବା ନିମନ୍ତେ ପ୍ରାର୍ଥନା କଲେ । ସ୍ୱପ୍ନରେ ଗୋପାଳ ସେହି ବ୍ରାହ୍ମଣଙ୍କୁ କହିଲେ "ତୁମେ ଆଗେ ଆଗେ ଯାଅ, ମୁଁ ପଛେ ପଛେ ଯିବି, କିନ୍ତୁ ଯେଉଁଠାରେ ପଛକୁ ଗୁହିବ ମୁଁ ସେହିଠାରେ ରହିବି ।" ଯୁବକ ନିଦ୍ରାରୁ ଉଠି ସ୍ୱପ୍ନାଦେଶା-ନୁସାରେ ଗମନ କଲେ । ନିଜ ଗ୍ରାମ ନିକଟରେ ହଠାତ୍ ପଛକୁ ଗୁହିଁ ଦେବାରୁ ଗୋପାଳ ସେଠାରେ ରହିଲେ । ପରଦିନ ଭଦ୍ରଲୋକମାନେ ଆସି ତାଙ୍କୁ ଦେଖି ଯୁବକ ବ୍ରାହ୍ମଣର କଥା ବିଶ୍ୱାସ କଲେ ଏବଂ ବୃଦ୍ଧ ବ୍ରାହ୍ମଣ ନିଜ ପ୍ରତିଜ୍ଞା ଅନୁସାରେ ସେହି ଯୁବକଙ୍କୁ ନିଜ କନ୍ୟା ସମ୍ପ୍ରଦାନ କଲେ । ସେହି ଦିନରୁ ତାଙ୍କର ନାମ ସାକ୍ଷୀଗୋପାଳ ହେଲା ।

ପ୍ରଥମେ ସେ କାବେରୀ ନଦୀ କୂଳରେ ପ୍ରତିଷ୍ଠିତ ହୋଇ ଥିଲେ । ପୁରୁଷୋତ୍ତମଦେବ ତାଙ୍କୁ ସେଠାରୁ ଆଣି ବାରବାଟୀ ଦୁର୍ଗ ମଧ୍ୟରେ ରଖାଇଥିଲେ । ଯେତେବେଳେ ବାରବାଟୀ ମୁସଲମାନ ହସ୍ତଗତ ହେଲା ଓ ଖୋରଧାରେ ଭୋଇବଂଶ ରାଜା ରାମଚନ୍ଦ୍ର ରାଜତ୍ୱ ପାଇଲେ ତେତେବେଳେ ସେ ଖୋରଧାରେ ସ୍ଥାପିତ ହେଲେ । ତଦନନ୍ତର ରଥିପୁରରେ ମନ୍ଦିର ନିର୍ମାଣ କରାଯାଇ ସେବା ପୂଜା ଚଳାଗଲା । ପୁଣି ଉକ୍ତ ସ୍ଥାନ ବିପଜ୍ଜନକ ବୋଧ ହେବାରୁ ତାଙ୍କୁ ଡେଲଙ୍ଗା ଅଞ୍ଚଳରେ କନ୍ତଲବାଇରେ ସ୍ଥାପନ କରାଗଲା । ପୁଣି ୧୮୧୭ ଖ୍ରୀଷ୍ଟାବ୍ଦରେ ବାବା କୃଷ୍ଣଦାସଙ୍କ ଯତ୍ନରେ ସେ ଫୁଲଅଳସା ଗ୍ରାମର ମଞ୍ଜୁଳ-ବକୁଳ ନିକୁଞ୍ଜରେ ସ୍ଥାପିତ ହେଲେ ।



## ଭୁବନେଶ୍ୱର

ଭୁବନେଶ୍ୱର କଟକରୁ ଦକ୍ଷିଣରେ ୧୮ ମାଇଲ ଓ ପୁରୀ ଠାରୁ ୩୦ ମାଇଲ ଉତ୍ତରରେ ଅବସ୍ଥିତ ।

ଆଗେ ଭୁବନେଶ୍ୱରର ସୀମା—ଉଃ—ବାରାଙ୍ଗ ଦେଶୀ, ଦଃ—ଧଉଳି ପର୍ବତ, ପୂଃ—କୁଣ୍ଡଳେଶ୍ୱର ଓ ପଃ—ଖଣ୍ଡ-ଗିରି ଥିଲା ଏହାର କ୍ଷେତ୍ରଫଳ ତିନି ଯୋଜନ ବା ବାର ବର୍ଗ-ମାଇଲ ।

ବର୍ତ୍ତମାନ ସୀମା—ଉଃ—ରାମେଶ୍ୱର, ଦଃ—କପିଳେ-ଶ୍ୱର, ପୂଃ—ଭାସ୍କରେଶ୍ୱର ଓ ପଶ୍ଚିମ ପଃ—ସିଦ୍ଧେଶ୍ୱର । କ୍ଷେତ୍ରଫଳ ୧୨୫୩ ଏକର । ଏହି ୧୨୫୩ ଏକର ମଧ୍ୟରୁ ଭୁବନେଶ୍ୱରଙ୍କର ୧୧୯୭ ଏକର । କପିଳେଶ୍ୱରଙ୍କର ୩୭ ଏକର, ଅନନ୍ତ ବାସୁଦେବଙ୍କର ୯ଏକର, ପରଦାରେଶ୍ୱରଙ୍କର ୪ ଏକର, ଉତ୍ତରେଶ୍ୱରଙ୍କର ୩୨ ଏକର ଏବଂ ଗୋପାଳୁ-ଣୀଙ୍କର ୭୨ ଏକର ଦେବୋତ୍ତର ଅଟେ । କିନ୍ତୁ ମୋଟ କ୍ଷେତ୍ରଫଳ ମଧ୍ୟରୁ ପ୍ରାୟ ୪୦୫ ଏକର ଜମି ପଡ଼ିଆ ।

ବିନ୍ଦୁସାଗର ଠାରୁ ୯୦୦ ଫୁଟ ଦକ୍ଷିଣରେ ଭୁବନେଶ୍ୱର ଦେଉଳ ଅବସ୍ଥିତ । ଏହାର ଉଃ—ବଡ଼ଦାଣ୍ଡ, ଦଃ—

ଦ୍ୱାର, ପୂ—କପିଳେଶ୍ୱରକୁ ଯିବା ରାସ୍ତା ଓ ପଃ—ପାପନାଶିନୀ ପୋଖରୀ ଏବଂ କେତେକ ଛୋଟ ଛୋଟ ଦେଉଳ । ୫୨୦ ଫୁଟ ଦୀର୍ଘ ଓ ୪୬୫ ଫୁଟ ପ୍ରସ୍ଥର ୫୳ ଏକର ଜମିରେ ଥିବା ପ୍ରାଚୀର ବେଷ୍ଟିତ ବେଢ଼ା ମଧ୍ୟରେ ଏହି ମନ୍ଦିର ଅଛି । ବଡ଼ଦେଉଳ ଭୂମିଠାରୁ ତ୍ରିଶୂଳ ପର୍ଯ୍ୟନ୍ତ ୧୬୦ ଫୁଟ ଉଚ୍ଚ । ପ୍ରାଚୀରର ଉଚ୍ଚତା ୫୦ ଫୁଟ ଓ ବହଳ ୭ ଫୁଟ ୫ଇଞ୍ଚ । ଘଣ୍ଟର ବ୍ୟାସ ୮ ଫୁଟ ଓ ଉଚ୍ଚତା ୮ ଇଞ୍ଚ । ବେଢ଼ା ମଧ୍ୟରେ ପାର୍ଶ୍ୱଦେବତାଙ୍କର କ୍ଷୁଦ୍ର କ୍ଷୁଦ୍ର ମନ୍ଦିର ୬୦ ରୁ ୭୦ ପର୍ଯ୍ୟନ୍ତ ଅଛି । ଏହି ଦେଉଳ ଓ ମୋହନ କେଶରୀ ବଂଶୀୟ ରାଜା ଯଯାତି କେଶରୀଙ୍କ ରାଜତ୍ୱ ସମୟରେ ଆରମ୍ଭ ହୋଇ ଲଲାଟେନ୍ଦୁ କେଶରୀଙ୍କ ସମୟରେ ୬୬୬ ଖ୍ରୀଷ୍ଟାବ୍ଦରେ ଶେଷ ହୋଇଥିଲା ଏବଂ ନାଟମନ୍ଦିର ଆଦି ବପୁକଲ୍ପ କେଶରୀଙ୍କ ସମୟରେ ତିଆରି ହୋଇଥିଲା । ଭୁବନେଶ୍ୱର ମନ୍ଦିରର ବାର୍ଷିକ ଆୟ ପ୍ରାୟ ୧୦ ହଜାର ଟଙ୍କା ଏବଂ ଏହା ଗତ ୭୪ ବର୍ଷ ହେଲା ଜଜ୍ ସାହେବଙ୍କ ଦ୍ୱାରା ନିଯୁକ୍ତ ଗୋଟିଏ କମିଟି ଦ୍ୱାରା ପରିଚାଳିତ ହେଉଅଛି । ବେଢ଼ା ମଧ୍ୟସ୍ଥ ଅନ୍ୟାନ୍ୟ ମନ୍ଦିରମାନଙ୍କ ମଧ୍ୟରେ ପାର୍ବତୀଙ୍କ ମନ୍ଦିର ବିଶେଷ କାରୁକାର୍ଯ୍ୟପୂର୍ଣ୍ଣ ଓ ପ୍ରତିମା ଜୀବନ୍ତ ।

ଅନନ୍ତ ବାସୁଦେବଙ୍କ ବେଢ଼ା ୧୩୧ ଫୁଟ ଦୀର୍ଘ ଏବଂ ୧୧୭ ଫୁଟ ପ୍ରସ୍ଥ । ବେଢ଼ାର ପ୍ରାଚୀର ୯ ଫୁଟ ଉଚ୍ଚ ଓ ୪ ଫୁଟ ବହଳ ଏବଂ ଦେଉଳର ଉଚ୍ଚତା ୬୦ ଫୁଟ ।

ସିଦ୍ଧେଶ୍ୱର ଦେଉଳର ଉଚ୍ଚତା ୭୮ ଫୁଟ । ବେଢ଼ାର ଦୈର୍ଘ୍ୟ ୪୦ ଫୁଟ ଓ ପ୍ରସ୍ଥ ୩୮ ଫୁଟ ।

କପିଳେଶ୍ୱର ବେଢ଼ାର ଦୈର୍ଘ୍ୟ ୧୭୮ ଫୁଟ ଓ ପ୍ରସ୍ଥ ୧୬୨ ଫୁଟ ଏବଂ ପ୍ରାଚୀରର ଉଚ୍ଚତା ୮ ଫୁଟ । ଦେଉଳ ୧୧୦ ଫୁଟ ଲମ୍ବା, ୭୨ ଫୁଟ ଚଉଡ଼ା ଓ ୩ ଫୁଟ ଉଚ୍ଚା ଗୋଟିଏ ମଣ୍ଡପ ଉପରେ ତିଆରି ହୋଇଅଛି । ଦେଉଳର ଉଚ୍ଚତା ୪୬ ଫୁଟ । ଏଠାରେ ଧାରଣା ଦେଲେ ବ୍ୟାଧି ଦୂର ହୁଏ ।

ବିନ୍ଦୁସାଗର ୧୩୦୦ ଫୁଟ ଲମ୍ବା, ୭୦୦ ଫୁଟ ଚଉଡ଼ା ଏବଂ ୧୬ ଫୁଟ ଗଭୀର । ଏହି ପୁଷ୍କରିଣୀ ତୀରରେ ବାସୁଦେବ ଉତ୍ତରେଶ୍ୱର, ଶିଶିରେଶ୍ୱର, କପାଳିନୀ ଓ ସାରି ଦେଉଳମାନ ଅଛି । ଏଠାରେ ଯାତ୍ରିମାନେ ପିଣ୍ଡ ଦାନାଦି ଦିଅନ୍ତି ।

ପାପନାଶିନୀ ପୁଷ୍କରିଣୀ କୂଳରେ ବରୁଣେଶ୍ୱର, ମୈତ୍ରେଶ୍ୱର ଓ ଚନ୍ଦ୍ରଶେଖରୀ ଦେଉଳମାନ ଅଛି ।

କେଦାରକୁଣ୍ଡ ୨୦ ଫୁଟ ଲମ୍ବା, ୨୮ ଫୁଟ ଚଉଡ଼ା ଓ ୧୬ ଫୁଟ ଗଭୀର । ଏହାର ଜଳ ଯେପରି ନିର୍ମଳ ସେହିପରି ସୁସ୍ୱାଦୁ । କୁଣ୍ଡ ଉପରେ ଠିଆ ହୋଇ ଚାହିଁଲେ ପାଣିଭିତରକୁ ପ୍ରାୟ ୮ ଫୁଟ ପର୍ଯ୍ୟନ୍ତ ସମ୍ପୂର୍ଣ୍ଣରୂପେ ଦେଖାଯାଏ । ଡାକ୍ତରମାନଙ୍କ ମତରେ ଏହି ଜଳ ଗୋଟିଏ ଉତ୍କୃଷ୍ଟ ପୁଷ୍ଟିକାରକ ଔଷଧ । ଆଜିକାଲି ଭାରତର ନାନାସ୍ଥାନରେ ଏହି କୁଣ୍ଡର ଜଳ ବିକ୍ରୟ କରାଯାଉଛି । ଏହା ନିକଟରେ ପରଶୁରାମେଶ୍ୱର, ସିଦ୍ଧେଶ୍ୱର, ମୁକ୍ତେଶ୍ୱର, କେଦାରେଶ୍ୱରୀ ଓ ଗୌରୀ, ରାଜା ରାଣୀ ଓ ନାଗେଶ୍ୱର ଦେଉଳମାନ ଅଛି ।

କପିଳକୁଣ୍ଡ ୨୨୦ ଫୁଟ ଲମ୍ବା, ୧୬୪ ଫୁଟ ଚଉଡ଼ା ଓ ୧୬ ଫୁଟ ଗଭୀର ।

ଗୋସହସ୍ରେଶ୍ୱର, ଦକ୍ଷିଣରେ କପିଳେଶ୍ୱର, ପଶ୍ଚିମରେ ଯମେଶ୍ୱର, ଉତ୍ତରରେ ସିଦ୍ଧେଶ୍ୱର ଏବଂ ପୂର୍ବରେ ବ୍ରହ୍ମେଶ୍ୱର, ମେଘେଶ୍ୱର, ଭାସ୍କରେଶ୍ୱର ପ୍ରଭୃତି ଅନେକ ସୁନ୍ଦର କାରୁକାର୍ଯ୍ୟଯୁକ୍ତ ମନ୍ଦିରମାନ ଅଛି ।

ଏତଦ୍‌ବ୍ୟତୀତ ଆଧୁନିକ ଶେଠ ପ୍ରଭୃତିଙ୍କ ଦ୍ୱାରା ନିର୍ମିତ ଧର୍ମଶାଳା ଓ ଶ୍ରୀ ଶ୍ରୀ ରାମକୃଷ୍ଣଦେବଙ୍କ ମଠ ବିଦ୍ୟମାନ ।

ଭୁବନେଶ୍ୱରର ସମସ୍ତ ମନ୍ଦିର ମଧ୍ୟରେ ମୁକ୍ତେଶ୍ୱର ମନ୍ଦିର ଶିଳ୍ପରେ ସର୍ବାଙ୍ଗସୁନ୍ଦର ବୋଲି ପ୍ରଶଂସିତ । କେହି ଲେଖକ ଏହାକୁ 'ଶିଳ୍ପର ସାରସଂଗ୍ରହ' ଏବଂ କେହି ଅବା ଏହାକୁ 'ପଥରର ସ୍ୱପ୍ନ' ଆଖ୍ୟା ଦେଇଛନ୍ତି । ପୂର୍ବେ ଭୁବନେଶ୍ୱରରେ ସାତହଜାର କ୍ଷୁଦ୍ର ଦେବାଳୟ ଥିଲା ।

ଖଣ୍ଡଗିରି ଓ ଉଦୟଗିରି—ଭୁବନେଶ୍ୱରଠାରୁ ୩ ମାଇଲ ଉଃ, ପଃ, ରେ ଥିବା ପାହାଡ଼, ଯଥାକ୍ରମେ ୧୨୩ ଓ ୧୧୦ ଫୁଟ ଉଚ୍ଚ । ଏଠାରେ ଯେଉଁ ଗୁମ୍ଫାମାନ ଅଛି ଖ୍ରୀଷ୍ଟପୂର୍ବ ୨୦୦ ସାଲରେ ଖୋଦିତ ହୋଇଥିବାର ଅନୁମିତ ହୁଏ ।

ଧଉଳି ପାହାଡ଼ ଭୁବନେଶ୍ୱରଠାରୁ ୪ ମାଇଲ ଦଃ ପଃରେ ଦୟାନଦୀ ତୀରରେ ଅବସ୍ଥିତ । ଅଶୋକଙ୍କ ଆଦେଶରେ ଖୋଦିତ ଶିଳାଲିପିର ଅନୁଶାସନମାନ ଏଥିରେ ଦେଖିବାକୁ ମିଳେ । କୌଶଲ୍ୟାଗଙ୍ଗ ଗୋଟିଏ ବିଖ୍ୟାତ ପ୍ରକାଣ୍ଡ ପୁଷ୍କରିଣୀ । ଦୈର୍ଘ୍ୟ ଓ ପ୍ରସ୍ଥରେ ୨ ମାଇଲ ଅର୍ଥାତ୍ ପୋଖରୀର କ୍ଷେତ୍ରଫଳ ୦ ବର୍ଗ ମାଇଲ ଥିଲା । ବର୍ତ୍ତମାନ ଏହାର ଅଧିକ ଅଂଶ ଜଳଶୂନ୍ୟ ଗୃହଜମିରେ ପରିଣତ । ତଥାପି ଲମ୍ବରେ ୧୳ ମାଇଲ ଓ ଓସାରରେ ୧ ମାଇଲ ପର୍ଯ୍ୟନ୍ତ ହେବ ।

ଚିରସ୍ଥାୟୀ ନୁହେଁ ଏଣୁ ସକଳ ଅସ୍ଥିର ।

ଏହାର ମଧ୍ୟରେ ଗୋଟିଏ ଦ୍ୱୀପାକାର ସ୍ଥାନ ଅଛି । ତହିଁରେ ଏକ ରାଜଭବନ ଥିଲା । ତାହାର ଅବଶେଷ ଅଦ୍ୟାପି ବିଦ୍ୟମାନ ଅଛି ।

ସୁନ୍ଦରେଶ୍ୱର—ଭୁବନେଶ୍ୱରଠାରୁ ୧ ମାଇଲ ଦୂରରେ ସୁନ୍ଦରପଦା ଗ୍ରାମରେ ଅବସ୍ଥିତ । ଏହି ଦେଉଳ ୩୫ ଫୁଟ ଉଚ୍ଚ, ୨୮ ଫୁଟ ଦୀର୍ଘ ଓ ୧୮ ଫୁଟ ପ୍ରସ୍ଥ । ଏହାର ନିମ୍ନ ଦେଶରେ ସୁନ୍ଦରେଶ୍ୱର ନାମକ ଗୋଟିଏ ସୁନ୍ଦର ପୁଷ୍କରିଣୀ ଅଛି ।

ଭୁବନେଶ୍ୱରର ମନ୍ଦିର ମାନଙ୍କରେ ନାନାପ୍ରକାର ଲତାପତ୍ର, ଫଳ ପୁଷ୍ପର କାମ, ପଶୁ ପକ୍ଷୀ ଓ ଅନ୍ୟାନ୍ୟ ଜୀବଜନ୍ତୁର ମୂର୍ତ୍ତି ଏବଂ ନର ଦେବତାଙ୍କ ପ୍ରତିମୂର୍ତ୍ତି ସବୁ ଦେଖିଲେ ଆଶ୍ଚର୍ଯ୍ୟାନ୍ୱିତ ହେବାକୁ ହୁଏ । ମନୁଷ୍ୟର ହାବଭାବ ଓ ମନର ସକଳ ପ୍ରକାର ଅବସ୍ଥା ତାହାରେ ସମ୍ପୂର୍ଣ୍ଣରୂପେ ପ୍ରକାଶ ପାଉଛି । ସମରକ୍ଷେତ୍ରରେ ସୈନିକର ମନୋଭାବ, ପ୍ରେମରେ ପ୍ରେମିକର ଭାବୋଚ୍ଛ୍ୱାସ, ବିରହରେ ବିରହୀର ଶୂନ୍ୟପ୍ରାଣ, ସମ୍ଭୋଗରେ ଭୋଗିର ନିଶ୍ଚିନ୍ତ ହୃଦୟ ପ୍ରଭୃତି ସହ ଯୁଦ୍ଧଅଭିଯାନ ଓ ରାଜଦରବାର ଇତ୍ୟାଦିର ଦୃଶ୍ୟ ପରମ ରମଣୀୟ । ଭୁବନେଶ୍ୱର ମନ୍ଦିରର ଏକଦିଗରେ ରାମାୟଣ ଓ ଅପରଦିଗରେ ମହାଭାରତର ଚିତ୍ର ଖୋଦିତ ହୋଇ ଉତ୍କଳର କଳା-ଇତିହାସ ସକଳ ସାର ସଂଗ୍ରହ କରି ରଖିଅଛି ।

ଭୁବନେଶ୍ୱର ମନ୍ଦିରରେ ନିର୍ମାଣ-କାଳର ଖୋଦିତ ଲିପି ଅଛି—

ରାଜାଷ୍ଟେ ଶ୍ୟମିତେ ଜାତେ ଶକାବ୍ଦେ କୃତିବାସସଃ
ପ୍ରାସାଦ ମକରୋଦ୍ରାଜା ଲଲାଟେନ୍ଦୁ କେଶରୀ ।

ଅର୍ଥାତ୍ ୫୮୮ ଶକାବ୍ଦ ବା ୬୬୬ ଖ୍ରୀଷ୍ଟାବ୍ଦରେ ଲିଙ୍ଗରାଜଙ୍କ ମନ୍ଦିର ନିର୍ମାଣ ଶେଷ ହୋଇଥିଲା ।



# କୋଣାର୍କ

କୋଣାର୍କର ଅନ୍ୟନାମ ପଦ୍ମକ୍ଷେତ୍ର ଏବଂ ସମଗ୍ର ହିନ୍ଦୁରାଜ୍ୟରେ ପ୍ରଧାନ ସୂର୍ଯ୍ୟକ୍ଷେତ୍ର । ପୁରାଣମାନଙ୍କରେ ଏହାର ନାମ 'ମୈତ୍ରେୟବନ' ଥିଲା । ଶ୍ରୀକୃଷ୍ଣଙ୍କର ପୁତ୍ର ଶାମ୍ବ ପିତୃ ଅଭିଶାପରେ କୁଷ୍ଠରୋଗାକ୍ରାନ୍ତ ହୋଇ ଚନ୍ଦ୍ରଭାଗା ନଦୀକୂଳରେ ସୂର୍ଯ୍ୟ ଆରାଧନା କରିଥିଲେ ଏବଂ ରୋଗମୁକ୍ତ ହୋଇ ଏଠାରେ ସୂର୍ଯ୍ୟବିଗ୍ରହ ସ୍ଥାପନ କରି ମନ୍ଦିର ନିର୍ମାଣ ଓ ଦେବାପୂଜାର ବ୍ୟବସ୍ଥା କରିଥିଲେ । ତତ୍ପରେ ପୁରନ୍ଦରକେଶରୀ ନୂତନ ମନ୍ଦିର କରି କ୍ଷେତ୍ରମଧ୍ୟରେ ୮ ଗୋଟି ବ୍ରାହ୍ମଣଶାସନ ବସାଇ ସୂର୍ଯ୍ୟପୂଜାର ବିରାଟ ଆୟୋଜନ କରିଥିଲେ । ଏହି କୋଣାର୍କ ଏକ ସମୃଦ୍ଧିଶାଳୀ ନଗର ଓ ବନ୍ଦର ଥିଲା । ଚନ୍ଦ୍ରଭାଗାର ସ୍ରୋତ ଖୁବ ପ୍ରବଳ ଥିଲା । କୋଣାର୍କ ମଧ୍ୟ ପ୍ରାଚୀନ ଉତ୍କଳ ଓ କଳିଙ୍ଗର ଅନ୍ୟତମ ରାଜଧାନୀ ଥିଲା । କାଳକ୍ରମେ ସେ ମନ୍ଦିର ଜୀର୍ଣ୍ଣ ହୋଇଯିବାରୁ ଲାଙ୍ଗୁଳା ନରସିଂହଦେବ ବର୍ତ୍ତମାନ ମନ୍ଦିର ନିର୍ମାଣ କରାଇଲେ । ଶିବାଇ ସାଆନ୍ତରା ବା ସଦାଶିବ ସାମନ୍ତରାଏ ତାହାର ନିର୍ମାଣ କାର୍ଯ୍ୟରେ ନିଯୁକ୍ତ ଥିଲେ । ୧୨୨୫ ଖ୍ରୀଷ୍ଟାବ୍ଦରେ ନିର୍ମାଣକାର୍ଯ୍ୟ ଆରମ୍ଭ ହୋଇ ୧୬ ବର୍ଷରେ ୧୨୪୦ ଖ୍ରୀଷ୍ଟାବ୍ଦରେ ଶେଷ ହେଲା । ସେଥିରେ ୧୨୦୦ ଶିଳ୍ପୀ ୧୬ ବର୍ଷ କାମ କରିଥିଲେ ଏବଂ ଉତ୍କଳର ୧୨ ବର୍ଷର ରାଜସ୍ୱ ପ୍ରାୟ ୪୦୦୦୦୦୦୦୦ ଟଙ୍କା ଖରଚ କରାଯାଇଥିଲା । ତାହା ସମସ୍ତ ଭାରତରେ ଉଚ୍ଚତମ ମନ୍ଦିର ଥିଲା । ବଡ଼ ଦେଉଳର ଉଚ୍ଚତା ୨୩୦ ଫୁଟ ଓ ମୁଖଶାଳା ୧୫୦ ଫୁଟ ଥିଲା । ମନ୍ଦିରର ପୀଠବାଡ଼ ଦେହରେ ଉତ୍ତର ଓ ଦକ୍ଷିଣ ଭାଗ ପାଖରେ ୨୪ଟି ଚକର କାମ କରାଯାଇଛି । ବଡ଼ଦେଉଳ ଓ ମୁଖଶାଳା ଏହି ୨୪ ଚକ ଉପରେ ସପ୍ତାଶ୍ୱବିଶିଷ୍ଟ ଗୋଟିଏ ରଥ ଆକାରରେ ନିର୍ମିତ ହୋଇଥିଲା । ବଡ଼ଦେଉଳ ଭାଙ୍ଗି ଯାଇଛି ଓ ମୁଖଶାଳାର କଳସ ଇତ୍ୟାଦି ଭାଙ୍ଗିପଡ଼ି କେବଳ ୧୦୦ ଫୁଟ ଉଚ୍ଚରେ ମନ୍ଦିରଟି ଅଛି । ବେଢ଼ାମଧ୍ୟରେ କେତେଗୁଡ଼ିଏ ପୀଠ ଅଛି । ପୀଠ ଚତୁର୍ଦ୍ଦିଗରେ ଏକ ବେଢ଼ା ପାଚେରି ଥିଲା । ବେଢ଼ାମଧ୍ୟସ୍ଥ କ୍ଷେତ୍ରର ପରିମାଣ ୬୧୧-୦ ଭୂମି । କୋଣାର୍କର ହସ୍ତୀ ଅଶ୍ୱ ପୃଥିବୀର ଗୌରବମୟ ଭୂଷଣ ବୋଲି କହିଲେ ଅତ୍ୟୁକ୍ତି ହେବ ନାହିଁ । ଏଠାକାର ଖଣ୍ଡିଏ ପଥର ଗୋଟିଏ ପାହାଡ଼ ପରି । ମୁଖଶାଳାର ପୂର୍ବ ଦ୍ୱାର ଉପରେ ଯେଉଁ ନବଗ୍ରହ ପାଟ ଥିଲା, ତାହା ବର୍ତ୍ତମାନ ସ୍ଥାନାନ୍ତରିତ । ସେ ମୂର୍ତ୍ତି ଗୁଡ଼ିକର ସୌନ୍ଦର୍ଯ୍ୟ ମହନୀୟ । କୋଣାର୍କର ସର୍ବାଙ୍ଗରେ ନାନା ସ୍ଥାନରେ ପଦ୍ମଫୁଲର କାମ ହୋଇଥିବାରୁ ଏହାକୁ 'ପଦ୍ମାଳୟ' ବୋଲି କୁହାଯାଇପାରେ । ଶିଳ୍ପ ଏବଂ ସ୍ଥାପତ୍ୟ ନିମନ୍ତେ ଏହା ସମସ୍ତ ପୃଥିବୀରେ ଅଦ୍ୱିତୀୟ ବୋଲି ପରିଚିତ ।

## ଓଡ଼ିଆ ବାହାରେ ଓଡ଼ିଆ

| (ଦେଶର ନାମ) | (ଓଡ଼ିଆଙ୍କ ସଂଖ୍ୟା) |
|---|---|
| ଆସାମରେ | ୧୬୧୮୫୯ |
| ପୁରୁଷ—୮୧୮୦୭, ସ୍ତ୍ରୀ—୮୦୦୫୨ | ମୋଟ—୧୬୧୮୫୯ |

ଏମାନେ ଚା ଚାଷ କରନ୍ତି ।

| | |
|---|---|
| ଆଣ୍ଡାମାନ ଓ ନିକୋବରରେ | ୭୬୩ |
| ବଙ୍ଗଳାରେ | ୨୯୩୬୦୦ |
| ବ୍ରହ୍ମଦେଶରେ | ୪୨୫୪୫ |
| ମଧ୍ୟ ପ୍ରଦେଶରେ | ୨୦୪୯୩୭ |
| ଦିଲ୍ଲୀରେ | ୧୧୬୭ |
| ମାନ୍ଦ୍ରାଜରେ | ୧୫୭୩୯୪୨ |
| ବଙ୍ଗର ଦେଶୀୟ ରାଜ୍ୟ କୁଚବିହାର ଓ ତ୍ରିପୁରାରେ | ୪୭୭୨ |
| ମଧ୍ୟପ୍ରଦେଶର ଦେଶୀୟ ରାଜ୍ୟ ମାନଙ୍କରେ | ୧୦୨୮୫୧ |
| ହାଇଦରାବାଦରେ | ୨୪୦ |
| ମହୀଶୂରରେ | ୭୨୧ |
| ଦକ୍ଷିଣ ଆମେରିକାରେ | ୧ |



## ଇଂରାଜ ଶାସନରେ ଓଡ଼ିଶାରେ ଦୁର୍ଭିକ୍ଷ

ଇଂରାଜମାନେ ୧୮୦୩ ଖ୍ରୀଷ୍ଟାବ୍ଦରେ ଓଡ଼ିଶା ଅଧିକାର କଲେ । ତାଙ୍କ ଶାସନର ପ୍ରଥମାବସ୍ଥାରୁ ଦେଶରେ ଦୁର୍ଭିକ୍ଷ ଦେଖାଦେଲା । ୧୮୦୬, ୧୮୦୭, ୧୮୦୯, ଖ୍ରୀଷ୍ଟାବ୍ଦରୁ ଆରମ୍ଭ କରି ବର୍ଷେ ଦୁଇବର୍ଷ ଓ ୩ବର୍ଷ ଅନ୍ତରରେ ଦୁର୍ଭିକ୍ଷ ପଡ଼ୁଥିଲା । ତନ୍ମଧ୍ୟରେ ୧୮୩୭ ଖ୍ରୀଷ୍ଟାବ୍ଦରେ ତାହା ଭୟଙ୍କର ହୋଇଥିଲା । ପୁଣି ୧୮୬୬-୬୭ ଖ୍ରୀଷ୍ଟାବ୍ଦରେ ଯେଉଁ ଦୁର୍ଭିକ୍ଷ ପଡ଼ିଥିଲା ତାହା ବର୍ଣ୍ଣନା କରିଯାଇ ନ ପାରେ । ନଗର ଓ ଗ୍ରାମମାନ ଆର୍ତ୍ତ ହାହାକାରରେ ପରିପୂର୍ଣ୍ଣ ହୋଇଥିଲା । ଶ୍ମଶାନମାନ ଶବରେ ପୂରି ଯାଇଥିଲା ଓ ଶୃଗାଳ, ଶକୁନମାନେ ନରମାଂସ ଭକ୍ଷଣ କରି ଆନନ୍ଦରେ ଚିତ୍କାର କରୁଥିଲେ । କାହାରିଠାରେ ଦୟା ମାୟା ଆଉ ନ ଥିଲା । ମାତାମାନେ ନିଜ କୋଳରୁ ଶିଶୁଙ୍କୁ ବ୍ୟାଘ୍ରାଦି ହିଂସ୍ର ପଶୁମାନଙ୍କ ନିକଟରେ ପକାଇ ଦେଉଥିଲେ ଏବଂ କେହି କେହି ବା ଭକ୍ଷଣ କରୁଥିଲେ । ସମାଜରେ ଆତ୍ମହତ୍ୟା, ନରହତ୍ୟା, ଉନ୍ମାଦ ପ୍ରଭୃତି ପ୍ରବଳ ହୋଇଥିଲା । ଟଙ୍କାକୁ ସେରେ ଚାଉଳ ମିଳିବା ଅସମ୍ଭବ ହୋଇଥିଲା । ସୁନା, ରୁପାର ମୂଲ୍ୟ ନଥିଲା କହିଲେ ଚଳେ । ନର ନାରୀମାନେ ଗଛର ପତ୍ର, ସାରୁ ନାଡ଼, ଗେଣ୍ଡା କୋଚଆ ଆଦି ଖାଇ ଜୀବନ ରଖିଥିଲେ । ଏହି ଦୁର୍ଭିକ୍ଷର ପ୍ରଥମାବସ୍ଥାରେ ସରକାର କିଛି କରି ନ ଥିଲେ । ପରେ ବାହାରୁ ୧ ଲକ୍ଷ ୭୫ ହଜାର ଚାଉଳ ଆଣି ଯୋଗାଇ ଥିଲେ ଏବଂ ଦୈନିକ ହାରାହାରି ୫୨୭୮୬ ଜଣଙ୍କୁ ସାହାଯ୍ୟ ଦିଆ ଯାଇଥିଲା । ସେଥିମଧ୍ୟରୁ ୧୫୧୫୫ ଜଣ ଲଘୁକାମ କରି ମଜୁରି ପାଉଥିଲେ । ଏଥିରେ ଓଡ଼ିଶାର ଚତୁର୍ଥାଂଶ ଲୋକ ମରିଥିଲେ ବୋଲି ସରକାରୀ ରିପୋର୍ଟରୁ ଜଣା ପଡ଼େ । ତେତେବେଳେ ପୁରୀର ରାଜା ଦିବ୍ୟସିଂହ ଦେବ । ତାହାଙ୍କ ୯ ଅଙ୍କରେ ଏହା ପଡ଼ିଥିବାରୁ ଲୋକେ ତାହାର ନାମ 'ନଅଙ୍କ ଦୁର୍ଭିକ୍ଷ' ଦେଇଥିଲେ । ଏହି ସମୟରେ ରାସ୍ତା ଓ କେନାଲ ହେବାର ପ୍ରସ୍ତାବ ହୋଇଥିଲା । ତା' ପରେ ଯେଉଁ ଦୁର୍ଭିକ୍ଷ ପଡ଼ୁଛି ଲୋକେ ସହି ନେଇଛନ୍ତି ସତ, ମାତ୍ର ଅନ୍ତଃସାର ଶୂନ୍ୟ ହେଲେଣି ।

| ଚାଉଳର ହାରାହାରି ଦାମ | ଏକ ଟଙ୍କାକୁ |
|---|---|
| ୧୮୩୭-୪୭ | ୪୮.୧୪ ସେର |
| ୧୮୪୭-୫୭ | ୫୭.୯୪ ,, |
| ୧୮୫୭-୬୭ | ୨୮.୫୮ ,, |
| ୧୮୬୭ ୭୭ | ୫ ,, |
| ୧୮୭୯-୮୦ | ୨ ,, |
| ୧୮୭୫ | ୧୨ ,, |
| ୧୮୬୬ ୬୭ | ୨୬.୮୭ ,, |
| ୧୮୭୭ ୮୭ | ୨୧.୨୭ ,, |
| ୧୮୮୭ ୯୮ | ୧୮.୨୪ ,, |

ବ୍ରିଟିଶଙ୍କ ୧୩୦ ବର୍ଷ ରାଜତ୍ୱରେ ବଡ଼ ବଡ଼ କାରେରେ ୧୫ଟା ଦୁର୍ଭିକ୍ଷ ( ୧୮୦୬, ୧୮୦୭, ୧୮୦୯ ୧୮୧୭,

୧୮୨୮, ୧୮୩୪, ୧୮୩୭, ୧୮୩୭, ୧୮୪୨, ୧୮୬୬, ୧୮୮୮, ୧୮୯୧, ୧୯୦୮, ୧୯୧୯ ) ପଡ଼ିଛି ।

ଇତପୂର୍ବରୁ କପିଳେନ୍ଦ୍ରଦେବଙ୍କ ରାଜତ୍ୱର (୧୪୪୪ଖ୍ରୀ:) ୧୪ ଅଙ୍କ, ୨୭ ଅଙ୍କ ଓ ୩୨ ଅଙ୍କରେ, ପ୍ରତାପରୁଦ୍ରଦେବଙ୍କ ୧୩ ଅଙ୍କରେ ଓ ମୁକୁନ୍ଦଦେବଙ୍କ ୧୮ ଅଙ୍କରେ ଦନାଇ ବିଦ୍ୟାଧରଙ୍କ ସମୟରେ ଦୁର୍ଭିକ୍ଷ ହୋଇଥିଲା ।

ଷ୍ଟାର୍ଲିଙ୍ଗ ସାହେବ କହନ୍ତି—

୧୭୬୯-୭୦ ରେ ଟଙ୍କାକୁ ସେ ୨

୧୭୭୫ ରେ ସେ ୧ ରକୁ ଟ ° ୷୵

୧୯୦୭ ସାଲରେ ଦୁର୍ଭିକ୍ଷ ସମ୍ବନ୍ଧରେ ଫରିଦପୁର କଲେକ୍ଟର କହିଥିଲେ 'There are Still leaves in the trees & women are not yet prostitutes therefore there is no famine in this part of the Country.'

ଅର୍ଥାତ୍ ଗଛମାନଙ୍କରେ ଅଦ୍ୟାପି ପତ୍ର ଅଛି, ନାରୀମାନେ ଅଦ୍ୟାପି ବେଶ୍ୟା ହୋଇ ନାହାନ୍ତି; ତେଣୁ ଏ ଅଞ୍ଚଳରେ ଦୁର୍ଭିକ୍ଷ ହୋଇନାହିଁ ।

## ଏକଶତାବ୍ଦୀ ପୂର୍ବେ ଓଡ଼ିଶାର ଦ୍ରବ୍ୟାଦିର ମୂଲ୍ୟ

( ହଣ୍ଟର ସାହେବଙ୍କ ଇତିହାସ ଅନୁସାରେ )

୧୮୦୩ ମସିହାରେ ୧ ଟଙ୍କାକୁ ଧାନ ୪ ମହଣ

୧୭୭୧ ,, ଗୋଟିଏ ହଳ ବଳଦର ମୂଲ୍ୟ ଟ ୫ ୲

ମେଣ୍ଢାର ମୂଲ୍ୟ ଟ ° ୷ କିମ୍ବା ଟ ° ୷୵

ସୁଆର ଗଡ଼ଜାତମାନଙ୍କର ମାସିକ ଦରମା ଟ ୨ ୲

ଘିଅ ୧ ଟଙ୍କାକୁ ମୃ୍ଯସେର

ଗଡ଼ଜାତରେ ଟଙ୍କାକୁ କଉଡ଼ି କା ୫ ୲ ୧୫ଗଣ୍ଡାରୁ କା ୬

୧୮୦୩ ମସିହାରେ ଟଙ୍କାକୁ କା ୪ ୲ °

ଇଂରେଜ ଗଭର୍ଣ୍ଣମେଣ୍ଟ ଧାର୍ଯ୍ୟକଲେ ।

## ରାଜନୈତିକ ଓଡ଼ିଶାର ଶିକ୍ଷା ( ୧୯୨୭ ଠାରୁ ୧୯୩୨ )

| ଜିଲ୍ଲା | | ଜନସଂଖ୍ୟା | | | ସ୍କୁଲ ଛାତ୍ରସଂଖ୍ୟା | | | ହାରହାର |
|---|---|---|---|---|---|---|---|---|
| | | ପୁରୁଷ | ସ୍ତ୍ରୀ | ମୋଟ | ପୁରୁଷ | ସ୍ତ୍ରୀ | ମୋଟ | ଶତକଡ଼ା—ମୋଟ |
| କଟକ | ୧୯୨୬—୨୭ | ୯୫୨୪୩୫ | ୧୧୧୧୯୨୧ | ୨୦୬୪୩୬୦ | ୬୬୫୭୭ | ୧୫୭୪୫ | ୯୨୩୨୨ | ୪·୧ |
| | ୧୯୩୧—୩୨ | ୧୦୨୭୯୯୧ | ୧୧୪୮୩୫୯ | ୨୧୬୭୩୫୦ | ୭୨୮୪୭ | ୧୩୬୪୧ | ୯୧୪୮୮ | ୪·୨ |
| ବାଲେଶ୍ୱର | ୧୯୨୬-୨୭ | ୪୬୬୦୬୭ | ୫୧୪୩୨୯ | ୯୮୦୪୦୫ | ୩୭୨୮୪ | ୮୧୨୯ | ୪୪୨୧୩ | ୪·୩ |
| | ୧୯୩୧-୩୨ | ୪୮୦୪୬୬ | ୫୧୦୦୫୨ | ୯୯୦୫୧୯ | ୩୪୧୪୭ | ୬୪୫୩ | ୪୧୫୯୯ | ୪·୨ |
| ପୁରୀ | ୧୯୨୬-୨୭ | ୪୫୫୩୭୦ | ୪୯୫୯୯୮ | ୯୫୧୩୬୮ | ୩୨୦୬୮ | ୫୮୪୩ | ୩୭୯୨୧ | ୩·୯୮ |
| | ୧୯୩୧-୩୨ | ୫୦୦୦୫୩ | ୫୩୪୭୬୯୮ | ୧୦୩୪୫୧ | ୩୦୯୫୧ | ୫୬୦୫ | ୩୬୬୬୪ | ୯·୫ |
| ସମ୍ବଲପୁର | ୧୯୨୬-୨୭ | ୩୮୬୮୭୫ | ୪୦୧୫୩୩ | ୬୮୯୩୯୮ | ୧୯୩୨୧ | ୩୯୦୬ | ୨୩୨୨୮ | ୨·୯ |
| | ୧୯୩୧-୩୨ | ୪୩୧୪୦୪ | ୪୪୯୪୫୨ | ୮୦୦୮୫୬ | ୧୮୫୩୯ | ୩୯୪୧ | ୨୨୪୮୦ | ୨·୬ |
| ଅନୁଗୁଳ | ୧୯୨୬ ୨୭ | ୮୮୬୮୨ | ୯୩୮୮୧ | ୧୮୨୫୬୩ | ୬୬୪୫ | ୧୨୩୭ | ୭୮୮୨ | ୪·୩ |
| | ୧୮୩୧-୩୨ | ୧୦୮୯୧୪ | ୧୧୩୭୯୬ | ୨୨୨୬୧୦ | ୮୬୨୨ | ୧୮୦୩ | ୯୪୭୫ | ୫·୩ |
| ମୋଟ | ୧୯୨୬—୨୭ | ୨୩୫୦୪୨୮ | ୨୬୧୭୭୨୦ | ୪୯୬୮୦୯୮ | ୧୭୦୬୯୫ | ୩୪୮୬୧ | ୨୦୫୫୬୬ | ୪·୧ |
| | ୧୯୩୧—୩୨ | ୨୫୪୮୮୨୯ | ୨୭୫୬୪୫୬ | ୫୩୦୫୨୮୬ | ୧୬୯୧୬୩ | ୩୨୫୪୩ | ୨୧୨୭୦୬ | ୩·୮ |

ସାଧୁ ହସ୍ତେ ମଇଳ ପୂଜା ଶବର ନିସ୍ତାର ॥

# ବେହାର ଓଡ଼ିଶାର ଲୋକସଂଖ୍ୟା ଓ ଛାତ୍ରସଂଖ୍ୟା

କ୍ଷେତ୍ରଫଳ—୮୩୧୪୨ ବର୍ଗମାଇଲ ।

| ବର୍ଷ | ( ଲୋକସଂଖ୍ୟା ) ପୁରୁଷ | ସ୍ତ୍ରୀ | ( ସ୍କୁଲରେ ଥିବା ଛାତ୍ର ସଂଖ୍ୟା ) ପୁରୁଷ | ସ୍ତ୍ରୀ |
|---|---|---|---|---|
| ୧୯୧୧—୧୨ | ୧୬୩୫୯୯୨୯ | ୧୭୬୩୦୧୫୫ | ୭୭୧୦୫୫ | ୮୯୮୪୩ |
| ୧୯୧୬—୧୭ | ୧୬୮୧୧୨୩୮ | ୧୭୪୩୩୪୫୪ | ୭୩୩୭୩୭ | ୧୧୧୩୮୮ |
| ୧୯୨୧—୨୨ | ୧୭୭୭୨୫୪୭ | ୧୭୨୩୭୭୫୪ | ୭୦୩୦୮୦ | ୧୦୭୩୦୨ |
| ୧୯୨୬—୨୭ | ୧୬୬୭୮୩୪୩ | ୧୮୦୭୦୦୯୮ | ୯୮୯୪୭୧ | ୧୧୯୦୪୦ |
| ୧୯୩୧—୩୨ | ୧୮୭୯୪୨୭୪ | ୧୮୮୮୩୫୮୫ | ୯୭୮୩୭୦ | ୧୨୭୪୫୩ |

## ଖରଚ

| ୧୯୩୧-୩୨ | ୧୯୩୦-୩୧ | ୧୯୨୬-୨୭ |
|---|---|---|
| ୧୭୩୯୧୩୦୭ | ୧୮୪୪୮୨୦୦ | ୧୭୭୪୨୦୫୯ |

ଜଣେ ଛାତ୍ରପାଇଁ ହାରାହାରି ଖର୍ଚ୍ଚ ଟ ୧୨ ୱ ୯

,, ଛାତ୍ରୀ ,, ,, ଟ ୧୩ / ୧

## ପ୍ରାଇମେରୀ ଶିକ୍ଷା

୧୯୨୬-୨୭ ଠାରୁ ୧୯୩୧-୩୨ ପୁଛା

| ବର୍ଷ | ସ୍କୁଲସଂଖ୍ୟା | ଛାତ୍ରସଂଖ୍ୟା |
|---|---|---|
| ୧୯୧୬-୨୭ | ୨୭,୪୪୮ | ୮୬୫,୩୧୧ |
| ୧୯୨୭-୨୮ | ୨୭,୯୦୦ | ୮୯୮,୨୧୮ |
| ୧୯୨୮-୨୯ | ୨୭,୦୩୭ | ୮୭୭,୩୪୯ |
| ୧୯୨୯-୩୦ | ୨୭,୧୫୩ | ୮୪୦,୭୨୦ |
| ୧୯୩୦-୩୧ | ୨୫,୭୪୫ | ୮୧୭,୨୨୧ |
| ୧୯୩୧-୩୨ | ୨୫,୧୧୪ | ୮୨୦,୪୭୨ |

## ଶିକ୍ଷିତ ସଂଖ୍ୟା

| | (ହିନ୍ଦୁ) | | (ନୀଚ ହିନ୍ଦୁ) | | (ଅନ୍ୟ ହିନ୍ଦୁ) | | (ମୁସଲମାନ) | | (ଖ୍ରୀଷ୍ଟିଆନ) | |
|---|---|---|---|---|---|---|---|---|---|---|
| | ପୁରୁଷ | ସ୍ତ୍ରୀ | ପୁରୁଷ | ସ୍ତ୍ରୀ | ପୁରୁଷ | ସ୍ତ୍ରୀ | ପୁରୁଷ | ସ୍ତ୍ରୀ | ପୁରୁଷ | ସ୍ତ୍ରୀ |
| କଟକ | ୩୭,୫୯୪ | ୧,୯୧୯ | ୩୦୧୨ | ୭୯ | ୧୦୫,୮୫୩ | ୭,୭୧୮ | ୫୩୦୮ | ୫୨୮ | ୭୮୭ | ୧୦୩୩ |
| ବାଲେଶ୍ୱର | ୨୨,୪୧୯ | ୧,୧୯୪ | ୧,୫୫୧ | ୭୭ | ୫୦,୨୭୯ | ୨୧୦୭ | ୧୯୫୭ | ୨୭୦ | ୩୫୭ | ୩୭୮ |
| ଅନୁଗୁଳ | ୧୨୦୫ | ୭୧ | ୫୪୮ | ୧୭ | ୪,୭୨୮ | ୪୩୭ | ୮୨ | ୭ | ୮୯ | ୪୯ |
| ପୁରୀ | ୧୭୪୦୭ | ୧,୧୦୭ | ୭୩୯ | ୧୩ | ୪୨,୧୫୯ | ୩୭୨୭ | ୧୪୧୭ | ୧୨୯ | ୪୧୨ | ୩୪୧ |
| ସମ୍ବଲପୁର | ୮୮୨୩ | ୮୨୭ | ୪୭୩ | ୧୩ | ୨୭,୮୭୩ | ୧,୩୯୭ | ୭୧୪ | ୭୭ | ୩୩୪ | ୯୯ |

ମୋଟ ମୂଲ୍ୟ କାହୁଁ ଜାଣିବ ଖବର ।

## ଇଂରାଜୀ ଜାଣିଥିବା ଜନସଂଖ୍ୟା

| | (ପୁରୁଷ) | (ସ୍ତ୍ରୀ) |
|---|---|---|
| କଟକ | ୧୨,୨୫୯ | ୬୦୯ |
| ବାଲେଶ୍ୱର | ୪,୫୦୫ | ୮୬ |
| ଅନୁଗୁଳ | ୪୫୭ | ୨୬ |
| ପୁରୀ | ୪,୪୭୪ | ୨୮୧ |
| ସମ୍ବଲପୁର | ୨,୪୪୯ | ୮୨ |



## ଓଡ଼ିଶାରେ କୁଟୀର ଶିଳ୍ପ

୧--ବାଉଁଶ—ସମ୍ବଲପୁର, ଅନୁଗୁଳ, ସୁକନ୍ଦା, ଦୁରପାଣି, ବାଙ୍କି ଓ ଚନ୍ଦକା (କାଗଜକଳ ପାଇଁ ବ୍ୟବହୃତ ହୋଇପାରେ)

୨--କଂସା ଓ ପିତ୍ତଳ,ବାସନ—ବାଲକାଟି, ବୈଦ୍ୟରାଜପୁର, ଘଣ୍ଟିମୁଣ୍ଡା, ରେମୁଣା, ବରଗଡ଼ ଓ ସମ୍ବଲପୁର ।

୩--ବସ୍ତ୍ର—ସମ୍ବଲପୁର, କଟକ ଟାଉନ, ବାଲେଶ୍ୱର ଓ ଭଦ୍ରକ ଟାଉନ ।

୪ -କମ୍ବଳବୁଣା—କଟକଟାଉନ, ଗୋଡସାହି ଓ ଭୋଗରାଇ ଥାନା (ଉପରୋକ୍ତ ସ୍ଥାନମାନଙ୍କରେ ଅନେକ ମେଣ୍ଢାଅଛନ୍ତି । ସେମାନଙ୍କ ଲୋମ ବୃଥାରେ ନଷ୍ଟ ହେଉଅଛି । ଲୋକେ ବ୍ୟବହାର କରି ଜାଣନ୍ତି ନାହିଁ )

୫--ହାଡ଼-କଟକ, ଅନୁଗୁଳ, ବାଲେଶ୍ୱର, ଭଦ୍ରକ ଓ ସମ୍ବଲପୁର

୬--ପାଛିଆ ବୁଣା--ଅନୁଗୁଳ, ନାମାପଡ଼ା, କୁଜଙ୍ଗ, ଭଦ୍ରକ ଓ ସମ୍ବଲପୁର ।

୭--ବାସ୍ନାଲୁଗା—ସମ୍ବଲପୁର, ଅଗରପଡ଼ା, ( ଭଦ୍ରକ ) ଓ ଗୋପାଳପୁର ।

୮—ସୋଡ଼ା, ଲେମୋନେଡ୍ ପ୍ରଭୃତି ଜଳ--ପ୍ରାୟ ଜିଲ୍ଲାମାନଙ୍କରେ ତିଆର ହୁଏ ।

୯—ବନ୍ଧୁକ ବନ୍ଧାଇ- କଟକ ଟାଉନ ।

୧୦—ନୌକା ତିଆର--କୁଜଙ୍ଗ, ପୁରୀ, କଟକ ଟାଉନ ଓ ବାଲେଶ୍ୱର ।

୧୧—ବାଦାମ ତେଲ— ସର୍ବତ୍ର ଗୃହ ଆରମ୍ଭ କରାଯାଇଛି ।

୧୨—ବେତବୁଣା--ଖାନନଗର, ଡୁମପଡ଼ା ଓ ନାମାପଡ଼ା

୧୩—କାର୍ପେଟ ଓ ଦରିବୁଣା- କଟକ ଟାଉନ ।

୧୪—ଚୂଆ--କଟକ ଓ ପୁରୀଟାଉନ ।

୧୫—ଚିନାମାଟି—ଖୋର୍ଦ୍ଧା ଟାଉନ ।

୧୬—ମାଟି କଣେଇ ପ୍ରଭୃତି--କଟକ ଟାଉନ ଓ ଭଦ୍ରକ ।

୧ —ନଡ଼ିଆ ତେଲ—ପୁରୀଜିଲ୍ଲା ।

୧୮—ନଡ଼ିଆକତା ବୁଣା—କୁଜଙ୍ଗ, ସତ୍ୟବାଦୀ ଓ ହେଲଙ୍ଗ ।

୧୯—ଖଇର—ସମ୍ବଲପୁର ଓ ଅନୁଗୁଳ ।

୨୦—ଗାଡ଼ ପଥର—କପିଳାସ ରୋଡ଼, ଶ୍ୟାମସୁନ୍ଦରପୁର ( ବାଲେଶ୍ୱର ), ଖୋର୍ଦ୍ଧା ଓ କଳାପଥର ।

୨୧—ଘୋଡ଼ାଗାଡ଼ି ଓ ରିକ୍ସା ତିଆର—କଟକ ଟାଉନ ।

୨୨—ଏଣ୍ଡି ଓ ଟସର—ଏଣ୍ଡି ଓଡ଼ିଶାରେ ସର୍ବତ୍ର ଏବଂ ଟସର ସୁକନ୍ଦା, ସମ୍ବଲପୁର ଓ ଅନୁଗୁଳ ।

୨୩—ପାନିଆ—କଟକ ଟାଉନ, ସୁନାମୁହିଁ (ଜଗତ୍‌ସିଂହପୁର) ଖୋରଧା ।

୨୪—କଟା, କୁରଢ଼ି, ସାବଳ ପ୍ରଭୃତି—କଳାପଥର,କାକଟପୁର, କୁଜଙ୍ଗ ଓ ମହାଙ୍ଗିହପୁର ।

୨୫—ତୂଳା-ବୁଣା—ଓଡ଼ିଶାରେ ସର୍ବତ୍ର, ବରପାଲି ରେମୁଣା ଓ ବର୍କେପୁର (ସମ୍ବଲପୁରରେ) ସୁଲନଗର ଓ ଠାକୁର ପାଟନା (କେନ୍ଦ୍ରାପଡ଼ାରେ) ଭଣ୍ଡାରି, ହରିପୁର ଓ ବାଣପୁର (ଜାଜପୁରରେ) ବଡ଼ବାଗ, ନୂଆପାଟଣା ଓ ରଘୁନାଥପୁର (କଟକରେ) ରଟଡ଼ି, (ବାଙ୍କିରେ) ଧଳାପଥର, ତୋରବୋଇ ଓ ତଳସିଂହ (ଖୋର୍ଦ୍ଧାରେ) କଳାପାହାର ( ସତ୍ୟବାଦୀରେ ) ମାଖାଳପୁର ଓ ରେମୁଣା (ବାଲେଶ୍ୱରରେ) ଜାନୁଗଞ୍ଜ, ବାଉଦପୁର ଗରଦପୁର ( ଭଦ୍ରକରେ ) ।

୨୬—ସିଗାର ତିଆର—କଟକ ଟାଉନ ।

୨୭—ଶୁଖୁଆ—ବାଲୁଗାଁ,କୁଜଙ୍ଗ, ଇରମ, ମନ୍ଧାର ଓ ଚୂଡ଼ାମଣି

୨୮—ଲୁଗା ରଙ୍ଗ କରିବା—ସମ୍ବଲପୁର. କଟକ ।

୨୯ —ଏଣ୍ଡି—ପଟ୍ଟାମୁଣ୍ଡେଇ,ପଣ୍ଡୁଆ, କଲ୍ୟାଣପୁର, କପିଳେଶ୍ୱର, ଡିହଡ଼ି, ଗୁଆମାଳ ଓ ଅନୁଗୁଳ ।

୩୦—ଷ୍ଟିଏଟର ପିନ—କଟକ, ବାଲେଶ୍ୱର ଓ ଭଦ୍ରକ ।
,, ପୋଷାକ—ହରିପୁର ।

ମୋଟା ଖଦଡ଼ ଘରେ ଗୃହଁରେ ଆଦର ।

୩୧—କୁନ୍ଦକାମ—କଟକ ଓ ଭଦ୍ରକ ।
୩୨—ଅସ୍ତ୍ର—କଟକ ଟାଉନ ।
୩୩—ଚୌକୀ ପ୍ରଭୃତି—କଟକ, ବାଲେଶ୍ୱର ଓ ଭଦ୍ରକ ।
୩୪—ମନ୍ଥ ଓ ଔଷଧନିମିତ୍ତ ଚେର, ଲତା ପ୍ରଭୃତି—
ଗଡ଼ଜାତମାନଙ୍କରେ ।
୩୫—ଭୂଜ—କଟକ, ଚନ୍ଦ୍ରମଧୂପୂର ଓ ଅନୁଗୁଳ ।
୩୬—ଚିଂଓ—କନକା, କୁଜଙ୍ଗ, ସୁନ୍ଦବାଲି, ବାସୁଦେବପୁର ।
ଭେଡ଼ା ଏବଂ ଖରସୁଆଁ ନଦୀର ଉଭୟତୀରବର୍ତ୍ତୀ
ଗ୍ରାମମାନ ।
୩୭—ଗୁଡ଼—ଖୋର୍ଦ୍ଧା, ବାଙ୍କି, ଭଦ୍ରକ, ସମ୍ବଲପୁର, ବାଲେ-
ଶ୍ୱର ଓ ଅନୁଗୁଳ ।
୩୮—ସାବାଇ ଘାସ—ଅନୁଗୁଳ ଓ ସମ୍ବଲପୁର ।
୩୯—ଶିଙ୍ଘକାମ—କଟକ ଟାଉନ ।
୪୦—ହାତପଙ୍ଖା—ଓଡ଼ଶାରେ ସର୍ବତ୍ର ।
୪୧—ଚମଡ଼ା— ,,
୪୨—ଶିଂ ଓ ପକ୍ଷିଅ—,,(ବିଶେଷତଃ ଗଡ଼ଜାତମାନଙ୍କରେ)
୪୩—ଶଙ୍ଖ—କେନ୍ଦ୍ରାପଡ଼ା ଓ ଧାମନଗର ।
୪୪—ହାତୀଦାନ୍ତର-ଦ୍ରବ୍ୟ ମୟୂରଗଡ଼, ଖଣ୍ଡପଡ଼ା ଓ ଜାଜପୁର ।
୪୫—ଲୌହ—ମୟୂରଭଞ୍ଜ ଓ କଳାହାଣ୍ଡି ।
୪୬—ସୁନା ରୂପାର ତାରକସ କାମ—କଟକ ଟାଉନ ।
୪୭—ଖୋଟ—(କଟା ଓ ବୁଣା) କେନ୍ଦ୍ରାପଡ଼ା, ମାର୍ଚ୍ଚାଘାଇ,
ମରେଇ ଗାଁ ଓ ଜଗତ୍‌ପୁର ।
୪୮—ବେଣା ବୁଣା ଦ୍ରବ୍ୟ—ଓଡ଼ଶାରେ ସର୍ବତ୍ର ।
୪୯—କୁନ୍ଦନ କାମ—ବାଙ୍କି ଓ କଟକ ।
୫୦—କାଣ୍ଡିଆ ଲୁଗା—ସମ୍ବଲପୁର, ଅଗରପଡ଼ା ଓ ଓଳଙ୍ଗ ।
୫୧—ଜରିକାମ—କଟକ ଓ ପୁରୀଟାଉନ ।
୫୨—ଚମଡ଼ା କାମ—କଟକ ଓ ସମ୍ବଲପୁର ।
୫୩—ପଥରବାସନ—ମଙ୍ଗଳପୁର ଓ ଈଶ୍ୱରପୁର (ନୀଳଗିରି) ।
୫୪—ତମ୍ବୁ—ସୀତାନାଥ ପଟ୍ଟନାୟକ, ଫିରଙ୍ଗବଜାର ଓ ମିଶନ
କୋ: କଟକ ।
୫୫—ମହୁଆ—ସମ୍ବଲପୁର, ଖୋର୍ଦ୍ଧା ଓ ବାଙ୍କି ।
୫୬—ସପ—ବାଲେଶ୍ୱରର ଭୋଗରାଇ ଥାନା ।
୫୭—ଦିଆସିଲି—କଟକ ଟାଉନ ।
୫୮—ଦଉଡ଼ା—ସମ୍ବଲପୁର ଓ କଟକ ।
୫୯—ସୂତା କାମ—ପିପିଲି ।
୬୦—ମୁରବା—କଟକ ଟାଉନ ।
୬୧—ଜାଲବୁଣା--କାଳୁପଡ଼ା, ବାଲୁଗାଁ, ପୁରୀ, କୁଜଙ୍ଗ,
ଭଦ୍ରକ ଓ କଟକ ।
୬୨—ନବାତ—କଟକ ।
୬୩—ସମସ୍ତ ପ୍ରକାର ତେଲ—ଓଡ଼ଶାରେ ସର୍ବତ୍ର ।
୬୪—ହାଣ୍ଡି ପ୍ରଭୃତି—ଓଡ଼ଶାରେ ସର୍ବତ୍ର ।
୬୫—ଫଟୋନେବା—କଟକ, ପୁରୀ ଓ ବାଲେଶ୍ୱର ।
୬୬—(ତୈଳ ଓ ଜଳ) ଚିତ୍ର—କଟକ ।
୬୭—ପାଚ୍ଛିଅ—ଭଦ୍ରକ ଓ ବାଲେଶ୍ୱର ।
୬୮—ଛବି ବନ୍ଧାଇ—କଟକ, ପୁରୀ, ବାଲେଶ୍ୱର ଓ ସମ୍ବଲପୁର ।
୬୯—ସମସ୍ତପ୍ରକାର ପଙ୍ଖା—ଓଡ଼ଶାରେ ସର୍ବତ୍ର ।
୭୦—ପାଲଙ୍କ—କଟକ ଓ ଜାଜପୁର ।
୭୧—ନଡ଼ିଆ କତା ଓ ଖୋଟ ଦଉଡ଼ି--ସତ୍ୟବାଦୀ ଓ କୁଜଙ୍ଗ
(ନଡ଼ିଆ କତା) କେନ୍ଦ୍ରାପଡ଼ା ଓ ଭଦ୍ରକ (ଖୋଟ) ।
୭୨—ଦଉଡ଼ିରେ ବାକ୍ସ—ପୁଅର ଇନ୍‌ଡଷ୍ଟ୍ରି କଟେଜ, କଟକ
୭୩—ଲୁଣ—ଚିଲିକା, ବାଲେଶ୍ୱର ।
୭୪—ଢୋଉତା—କଟକ, ପୁରୀ, ସମ୍ବଲପୁର, ବାଲେଶ୍ୱର ଓ
ଭଦ୍ରକ ଟାଉନମାନ ।
୭୫—ପଥର କାମ—ଭୁବନେଶ୍ୱର, ପୁରୀଟାଉନ, ନୟାଗଡ଼ ଓ
ନୀଳଗିରି ।
୭୬—ସାବୁନ—କଟକ ଓ ସମ୍ବଲପୁର ଟାଉନ ।
୭୭—କମାର କାମ—କଟକ, ବାରଙ୍ଗ ଓ ଗୋଡ଼ସାହି ।
୭୮—ଛତି—ବାଙ୍କି, ଜାଜପୁର ଓ ପୁରୀଟାଉନ ।
୭୯—ଷ୍ଟିଲଟ୍ରଙ୍କ—କଟକ, ବାଲେଶ୍ୱର ଓ ସମ୍ବଲପୁର ଟାଉନ ।
୮୦—ସୁରମା—କଳାହାଣ୍ଡିରେ ଖଣି ଅଛି ।
୮୧—ସୋଲକାମ—ଓଡ଼ିଶାରେ ସର୍ବତ୍ର ।
୮୨—ଖେଳନାତିଆରି—କଟକ ।
୮୩—ଟିଣକାମ—ଓଡ଼ଶାରେ ସର୍ବତ୍ର
୮୪—ଦରଜିକାମ— ,, ( ବିଶେଷତଃ ପିପିଲି )
୮୫—ଟାଇଲ—କଟକ ଓ ସମ୍ବଲପୁର ।
୮୬—ଚମଡ଼ା ଟେନିଂ—କଟକ, ସମ୍ବଲପୁର ଓ ବରଗଡ଼
୮୭—ଟାଇପ ଫାଉଣ୍ଡ୍ରି—କଟକ ।
୮୮—ଦାନ୍ତଘଷା ଗୁଡ଼ାଖୁ—କଟକ ।

**ନିର୍ମଳ ସୁଖ ବାଣ୍ଟି ଯାଅ ।**

୮୯—ତାଳପତ୍ର ପଙ୍ଖା—ଓଡ଼ିଶାରେ ସର୍ବତ୍ର ।
୯୦—ଜୋତା, ତାଳପତ୍ର, ଖଜୁରିପତ୍ର, ଜଲ୍, ଏଣ୍ଡି, ତସର, ଝୋଟ, ତୁଳାବୁଣା—ଓଡ଼ିଶାରେ ସର୍ବତ୍ର ।
୯୧—ପଟ୍ଟ ନକ୍ସମଡ଼—ସମସ୍ତ ଟାଉନ ।
୯୨—କାଠ ଖୋଳାଇ—କଟକ ଓ ଜାଜପୁର ।
୯୩—ଛାପା ବ୍ଲକ—କଟକ ଟାଉନ ।
୯୪—କେମିକେଲ—ପ୍ରାଚୀ ଶିଳ୍ପସଦନ ।
୯୫—ବଢ଼େଇକାମ—କଟକ, ଭଦ୍ରକ ଓ ବାଲେଶ୍ୱର ଟାଉନ ।
୯୬—ଖଟଫିତା—[ Newar weaving ] ସମ୍ବଲପୁର ।
୯୭—ଅଚାର [ Pickels ]—ଓଡ଼ିଶାରେ ସର୍ବତ୍ର ।
୯୮—ଅଖୁ ପେଡ଼ା—ବାଙ୍କି, ଖୋର୍ଦ୍ଧା, ସମ୍ବଲପୁର, ଭଦ୍ରକ ଓ ବାଲେଶ୍ୱର ।
୯୯—ଗୁଣ୍ଡ—ଭଦ୍ରକ, ଯାଜପୁର, କଟକ ପ୍ରଭୃତି ।
୧୦୦—ରେଶମ—ଓଲସିଂହ ( ଖୋରଧା ) ଗଞ୍ଜାମ ।
୧୦୧—ସମସ୍ତପ୍ରକାର କାଠର କାମ—କଟକଟାଉନ, ବାଲେଶ୍ୱର ।
୧୦୨—ଚିନି କାରଖାନା—ଅସ୍ତା, ବାଙ୍କି ।
୧୦୩—କାଚ ଫ୍ୟାକ୍ଟରି—ବାରଙ୍ଗ ।
୧୦୪—ଅଖୁ ,, —ବାଙ୍କି ।
୧୦୫—ନେଣ୍ଡ୍ରାଲୋମରେ କମ୍ବଳ—ଚଷାପଡ଼ା ।
୧୦୬—କଅଁଫୁଲ ନିର୍ଯ୍ୟାସ—ଗଞ୍ଜାମ
୧୦୭—ସୁବାସିତ ତେଲ, ସାବୁନ, କାଳି, ଅଳତା, ସ୍ନୋ-ପାଉଡ଼ର ଦ-ଓଡ଼ିଶା କେମିକାଲ ଏଣ୍ଡ ଫର୍ମାସିଉଟିକାଲ ଓ୍ୟାର୍କସ ।
୧୦୮—ସୁନା ରଙ୍ଗ କରିବା—କଟକ ଟାଉନ, ଛତିଆ ।
୧୦୯—କାଇଁଶ ପେତ ଓ ବଟଣା—ଛଅଗାଁ, ମଧୁପୁର, ଯେନାପୁର, କପିଳାସ ଓ କନିକା ଅଞ୍ଚଳ ।
୧୧୦—ନାଲିଆ ଝୋଟକାଇ—କନିକା, ଡେଡ଼ା ।
୧୧୧—ଶାମୁକାର ଖେଳନା ପ୍ରଭୃତି—ପୁରୀ ଟାଉନ ।
୧୧୨—ଝିଁଝିସ—କନିକା, ଡେଡ଼ା ପ୍ରଭୃତି ।

ଏତଦ୍‌ବ୍ୟତୀତ ଭୁବନେଶ୍ୱରର କୋରା, ପୁରୀର ନାନାପ୍ରକାର ପିଠା, କେନ୍ଦ୍ରାପଡ଼ାର ରସାବଳୀ, ଭଦ୍ରକର ପାଳଲଡୁ ଓ ରେମୁଣାର କ୍ଷୀର ମିଷ୍ଟାନ୍ନ ଦ୍ରବ୍ୟ ମଧ୍ୟରେ ଉତ୍କୃଷ୍ଟ ।

## ରାଜ୍ୟଙ୍କ ଯାଦୁଘର

ପୁରୀ ଟାଉନରେ ଗୋଟିଏ ଯାଦୁଘର ଅଛି । ସେଠାରେ ଓଡ଼ିଶାର ଅତି ପ୍ରାଚୀନ କାଳର ସାହିତ୍ୟ ଓ ଶିଳ୍ପକଳାର ନମୁନା ସଂରକ୍ଷିତ ହୋଇ ରଖା ଯାଇଛି । ସେମାନଙ୍କର ଆନୁମାନିକ ମୂଲ୍ୟ ଦୁଇଲକ୍ଷ ଟଙ୍କାରୁ ଅଧିକ ହେବ । ଏହା ପ୍ରତ୍ୟେକ ଲୋକଙ୍କର ଦେଖିବା ଉଚିତ ।



## ଓଡ଼ିଶାର ପରବର୍ତ୍ତୀ ସମ୍ବାଦ

ବ୍ରିଟିଶ ଓଡ଼ିଶା ଓ ଗଡ଼ଜାତର ଲୋକସଂଖ୍ୟା—୯୭୭୧୫୨୬
ସେଥିମଧ୍ୟରୁ ସହରବାସୀ ୧୩୬୧୪୪
ସହରବାସୀ—ଜନସଂଖ୍ୟାର ଶତକଡ଼ା ୨
ପଲ୍ଲୀବାସୀ— ,, ୯୮

ଓଡ଼ିଶା ଓ ଗଡ଼ଜାତରେ ସହର ସଂଖ୍ୟା—୧୬
,, ପଲ୍ଲୀ ସଂଖ୍ୟା ୩୩୧୨୯

| | |
|---|---|
| କଟକ | ୫୫୦୬ |
| ପୁରୀ | ୨୯୮୭ |
| ବାଲେଶ୍ୱର | ୩୪୭୯ |
| ଅନୁଗୁଳ | ୧୬୦୮ |
| ସମ୍ବଲପୁର | ୩୯୪୩ |
| ଗଡ଼ଜାତ | ୧୮୭୦୬ |

କୃଷିଜୀବୀ ଶତକଡ଼ା ୭୫

ଓଡ଼ିଶାରେ ଧାନ—ଭୂସଜମିର ଶତକଡ଼ା ପ୍ରାୟ—୮୨୳ ଏକର
ବିହାର ଓଡ଼ିଶାରେ ,, ,, —୪୫୳ ,,
ଜମି ଜଣପିଛୁ ହାରାହାରି ୪—୫ ଏକର
ଖଜଣା ହାରାହାରି ଏକର ପ୍ରତି ଟ ୨୳

ଓଡ଼ିଶାରେ ହାରାହାରି ଶତକଡ଼ା ୬ରୁ କମ୍ ଲେଖାପଢ଼ାଜାଣନ୍ତି ।
ଗଡ଼ଜାତ ,, ୩ରୁ ,, ,,

ସନ୍ତୋଷେ ଥିବ ଚିରକାଳ ॥

| | (କ୍ଷେତ୍ରଫଳ ବର୍ଗମାଇଲରେ) Area in Sq. miles. | (ଗ୍ରାମ) Villages. | (ଘର) Occupied houses. | (ଜନସଂଖ୍ୟା) Persons. | (ପୁରୁଷ) Males. | (ସ୍ତ୍ରୀ) Females |
|---|---|---|---|---|---|---|
| ଓଡ଼ିଶା ଡିଭିଜନ | ୧୩,୬୦୭ | ୧୫,୫୨୩ | ୧,୧୩୪,୭୭୯ | ୫,୩୦୭,୧୪୨ | ୨,୫୪୯,୨୫୧ | ୨,୭୫୭,୮୯୧ |
| କଟକ ଜିଲ୍ଲା | ୩,୬୫୪ | ୫,୫୦୬ | ୪୫୭,୫୦୭ | ୨,୧୭୬,୭୦୭ | ୧,୦୨୮,୧୩୪ | ୧,୧୪୮.୫୭୩ |
| କଟକ ସ. ଡ. | ୧,୫୬୨ | ୨.୫୨୭ | ୨୩୦,୫୧୧ | ୧.୦୮୭,୯୯୧ | ୫୧୮,୬୭୧ | ୫୬୯,୩୨୦ |
| କଟକ ସଦର | ୨୯୮ | ୩୭୨ | ୪୯,୨୨୭ | ୨୩୭,୧୪୮ | ୧୧୭,୮୯୭ | ୧୧୯,୨୫୧ |
| ବାଙ୍କି | ୧୯୮ | ୧୪୯ | ୧୬,୪୫୧ | ୮୪,୪୦୬ | ୪୦,୯୮୪ | ୪୩,୪୨୨ |
| ସାଲେପୁର | ୩୦୩ | ୬୦୫ | ୬୦,୪୭୬ | ୨୬୬,୪୪୯ | ୧୨୪,୧୦୬ | ୧୪୨,୩୪୩ |
| ତିର୍ତୋଲ | ୩୯୧ | ୬୧୭ | ୩୯,୮୧୮ | ୧୯୩,୪୯୧ | ୯୧,୯୦୧ | ୧୦୧,୫୯୦ |
| ଜଗତ୍‌ସିଂହପୁର | ୩୬୨ | ୬୯୪ | ୬୩,୫୪୯ | ୩୦୬,୪୯୭ | ୧୪୩,୭୮୩ | ୧୬୨,୭୧୪ |
| କେନ୍ଦ୍ରାପଡ଼ା ସ. ଡ | ୯୬୬ | ୧,୩୫୩ | ୯୮,୬୨୫ | ୪୯୬,୪୯୮ | ୨୩୧,୯୯୮ | ୨୬୪,୫୦୦ |
| କେନ୍ଦ୍ରାପଡ଼ା | ୩୦୧ | ୫୯୭ | ୪୯,୮୮୨ | ୨୪୮,୦୬୯ | ୧୧୭,୩୯୨ | ୧୩୦,୬୫୭ |
| ପଟ୍ଟାମୁଣ୍ଡେଇ | ୩୦୨ | ୨୮୪ | ୨୫,୩୯୨ | ୧୨୭,୧୧୨ | ୫୮,୪୪୬ | ୬୮,୬୬୬ |
| ଅଳି କମ୍ପା ରଜବାଡ଼ | ୩୨୪ | ୪୬୨ | ୨୩,୪୩୧ | ୧୨୧,୩୧୭ | ୫୭,୨୪୦ | ୬୪,୦୭୭ |
| ଯାଜପୁର ସ. ଡ | ୧,୧୧୫ | ୧,୭୨୭ | ୧୨୬,୩୭୧ | ୫୯୨,୨୧୮ | ୨୭୭,୪୬୫ | ୩୧୪,୭୫୩ |
| ଯାଜପୁର | ୩୨୦ | ୭୧୦ | ୬୦,୭୩୨ | ୨୮୧,୭୮୯ | ୧୨୯,୫୯୬ | ୧୫୨,୧୯୩ |
| ଧର୍ମଶାଳା | ୭୯୫ | ୧୦୧୬ | ୬୬,୭୩୯ | ୩୧୦,୪୨୯ | ୧୪୬,୮୬୯ | ୧୬୨,୫୬୦ |
| ବାଲେଶ୍ୱର ଜିଲ୍ଲା | ୨୦୫୫ | ୩୪୭୯ | ୨୧୪,୯୪୫ | ୯୯୦,୬୦୦ | ୪୮୦,୫୧୮ | ୫୧୦,୦୮୨ |
| ଭଦ୍ରକ ସ. ଡ | ୯୦୬ | ୧,୨୩୮ | ୯୭,୩୯୯ | ୪୪୬,୭୭୧ | ୨୦୭,୨୮୮ | ୨୩୯,୪୮୩ |
| ଭଦ୍ରକ | ୨୮୮ | ୪୩୯ | ୩୯,୪୨୭ | ୧୬୧,୮୮୪ | ୭୮,୮୮୯ | ୮୨,୯୯୫ |
| ବାସୁଦେବପୁର | ୧୧୦ | ୨୧୯ | ୧୫,୯୬୩ | ୭୮,୭୫୭ | ୩୬,୫୪୯ | ୪୨,୨୦୮ |
| ଧାମନଗର | ୨୩୦ | ୩୨୫ | ୨୮,୮୪୨ | ୧୩୩,୭୧୧ | ୬୧,୭୫୮ | ୭୧,୯୫୩ |
| ଚନ୍ଦବାଲି | ୧୯୯ | ୨୫୫ | ୧୩,୧୫୮ | ୬୨,୪୧୯ | ୩୦,୦୯୨ | ୩୨,୩୨୭ |
| ସଦର ସ. ଡ | ୧,୧୪୮ | ୨,୨୪୧ | ୧୧୬,୫୪୬ | ୫୪୩,୮୨୯ | ୨୭୩,୩୨୦ | ୨୭୦.୫୦୯ |
| ସୋର | ୪୦୦ | ୮୧୭ | ୪୩,୪୬୨ | ୧୯୧,୬୫୫ | ୯୧,୯୭୪ | ୯୯,୬୮୧ |
| ବାଲେଶ୍ୱର | ୨୨୭ | ୩୯୫ | ୨୪,୮୮୩ | ୧୧୧,୭୫୯ | ୫୮,୨୩୦ | ୫୩,୫୨୯ |
| ଜଳେଶ୍ୱର | ୧୩୪ | ୧୬୯ | ୧୨,୦୧୧ | ୫୬,୮୯୯ | ୨୮,୭୮୪ | ୨୮,୧୨୫ |
| ବାଲିଅପାଳ | ୨୦୭ | ୪୬୦ | ୨୧,୩୯୮ | ୧୦୮,୧୦୭ | ୫୫,୫୫୨ | ୫୨,୫୫୫ |
| ବସ୍ତା | ୧୮୨ | ୩୮୦ | ୧୫,୬୯୨ | ୭୫,୩୦୯ | ୩୮,୭୯୦ | ୩୬,୫୧୯ |
| ଅନୁଗୁଳ | ୧୬୮୧ | ୧୬୦୮ | ୪୯,୧୬୬ | ୨୨୨,୭୩୯ | ୧୦୮,୯୨୮ | ୧୧୩,୮୧୧ |
| ସଦର ସ. ଡ | ୮୮୧ | ୪୬୬ | ୩୦,୦୮୬ | ୧୪୦,୪୫୮ | ୬୮,୬୯୪ | ୭୧,୭୬୪ |
| ଅନୁଗୁଳ | ୮୮୧ | ୪୬୬ | ୩୦,୦୮୬ | ,, | ,, | ,, |
| ଖଣ୍ଡମାଳ ସ. ଡ | ୮୦୦ | ୧,୧୪୨ | ୧୯,୦୯୦ | ୮୨,୨୭୮ | ୪୦,୨୩୧ | ୪୨,୦୪୭ |
| ଫୁଲବାଣୀ | ୮୦୦ | ୧,୧୪୨ | ୧୯,୦୯୦ | ,, | ,, | ,, |

ନାହିଁକ ଅଙ୍କ ହିସାବର ।

| | (କ୍ଷେତ୍ରଫଳ ବର୍ଗମାଇଲରେ) Area in Sq. miles. | (ଗ୍ରାମ) Villages. | (ଘର) Occupied houses. | (ଜନ ସଂଖ୍ୟା) persons. | (ପୁରୁଷ) Males. | (ସ୍ତ୍ରୀ) Femeles. |
|---|---|---|---|---|---|---|
| ପୁରୀ | ୨,୪୯୨ | ୨,୯୮୭ | ୨୧୩,୧୭୭ | ୧,୦୩୫,୧୫୪ | ୫୦୦,୨୧୪ | ୫୩୪,୯୪୦ |
| ସଦର ସଃ ଡ | ୧,୫୨୧ | ୧,୮୩୦ | ୧୩୧,୫୨୯ | ୬୫୭,୬୨୫ | ୩୨୧,୪୨୯ | ୩୩୬,୧୯୬ |
| ପୁରୀ | ୫୯୮ | ୬୫୩ | ୫୧,୦୨୪ | ୨୫୫,୮୨୧ | ୧୨୭,୧୫୨ | ୧୨୮,୬୬୯ |
| ଗୋପ | ୨୮୮ | ୪୩୯ | ୨୨,୯୫୮ | ୧୨୮,୯୧୪ | ୬୩,୩୯୬ | ୬୫,୫୧୮ |
| ପିପିଲି | ୩୭୫ | ୭୩୮ | ୫୭,୫୪୭ | ୨୭୨,୮୯୦ | ୧୩୦,୮୮୧ | ୧୪୨,୦୦୯ |
| ଖୋର୍ଦ୍ଧା ସଂ ଡ | ୯୭୧ | ୧,୧୫୭ | ୮୧,୬୪୮ | ୩୭୭,୫୨୯ | ୧୭୮,୭୮୫ | ୧୯୮,୭୪୪ |
| ଖୋର୍ଦ୍ଧା | ୬୦୫ | ୭୧୨ | ୫୮,୦୬୬ | ୨୬୨,୫୬୦ | ୧୨୪,୭୯୦ | ୧୩୭,୭୭୦ |
| ବାଣପୁର | ୩୬୬ | ୪୪୫ | ୨୩,୫୮୨ | ୧୧୪,୯୬୯ | ୫୩,୯୯୫ | ୬୦,୯୭୪ |
| ସମ୍ବଲପୁର | ୩,୮୨୪ | ୧,୯୪୩ | ୨୦୦,୮୮୩ | ୮୮୦,୯୪୫ | ୪୩୧,୪୬୦ | ୪୪୯,୪୮୫ |
| ସଦର ସଂ ଡ | ୧,୭୧୨ | ୭୫୨ | ୭୯,୪୨୮ | ୩୪୩,୫୩୯ | ୧୬୬,୪୬୮ | ୧୭୭,୦୭୧ |
| ସମ୍ବଲପୁର | ୧୪୪ | ୯୨ | ୧୪,୦୪୫ | ୫୭,୫୫୩ | ୨୮,୨୩୧ | ୨୯,୩୨୨ |
| ଝାଡ଼ସୁଗଡ଼ା | ୨୦୮ | ୧୦୭ | ୧୧,୧୩୯ | ୫୧,୧୨୫ | ୨୫,୨୮୪ | ୨୫,୮୪୧ |
| ଲାଇକେରା | ୨୭୩ | ୧୧୮ | ୧୦,୭୪୮ | ୫୧,୦୪୩ | ୨୪,୯୪୦ | ୨୬,୧୦୩ |
| ମୁସ | ୧୫୮ | ୭୭ | ୭,୦୩୦ | ୩୦,୦୮୯ | ୧୪,୮୦୫ | ୧୫,୨୮୪ |
| ରଙ୍ଗାଲି | ୧୧୦ | ୪୪ | ୭,୭୯୮ | ୩୨,୩୮୫ | ୧୫,୭୧୫ | ୧୬,୬୭୦ |
| କଟରବଗା | ୨୨୦ | ୭୨ | ୯,୩୪୯ | ୩୯,୭୧୧ | ୧୯,୨୭୨ | ୨୦,୪୩୯ |
| ସାସନ | ୧୨୩ | ୭୮ | ୭,୦୩୭ | ୩୨,୩୮୮ | ୧୫,୫୦୨ | ୧୬,୮୮୬ |
| ଧମା | ୧୦୬ | ୮୪ | ୭,୮୭୨ | ୩୦,୯୩୪ | ୧୪,୭୧୧ | ୧୬,୨୨୩ |
| ମୁନ୍ଧର | ୨୧୦ | ୮୦ | ୪,୪୮୦ | ୧୮,୩୧୧ | ୯,୦୧୮ | ୯,୨୯[illegible] |
| ବରଗଡ଼ ସଂ ଡ | ୨,୨୧୨ | ୧,୧୯୧ | ୧୨୧,୪୫୫ | ୫୩୭,୪୦୬ | ୨୬୩,୯୮୨ | ୨୭୩,୪୨୪ |
| ବରଗଡ଼ | ୧୫୦ | ୬୪ | ୧୪,୧୦୭ | ୬୦,୯୫୬ | ୨୯,୮୩୧ | ୩୧,୧୨୫ |
| ଅଟ୍ଟାବୀର | ୨୫୮ | ୮୬ | ୧୩,୧୧୫ | ୫୩,୯୮୫ | ୨୬,୨୫୩ | ୨୭,୭୩୨ |
| ସୋହେଲା | ୧୭୪ | ୯୩ | ୧୦,୪୦୪ | ୪୪,୬୬୦ | ୨୧,୯୫୪ | ୨୨,୭୦୬ |
| ଅମ୍ବାଭୋନା | ୨୦୪ | ୧୧୦ | ୭,୪୬୮ | ୩୧,୦୪୧ | ୧୫,୨୦୦ | ୧୫,୮୪୧ |
| ପଦ୍ମପୁର | ୧୯୧ | ୧୨୫ | ୯,୩୦୫ | ୪୧,୯୭୪ | ୨୦,୮୧୪ | ୨୧,୧୬୦ |
| ଭେଡ଼ାନ | ୧୫୩ | ୯୩ | ୧୨,୩୩୨ | ୫୦,୩୮୬ | ୨୪,୩୪୪ | ୨୬,୦୪୨ |
| ବିଜେପୁର | ୧୨୫ | ୧୦୭ | ୯,୩୬୮ | ୪୩,୪୫୫ | ୨୧,୪୩୨ | ୨୨,୦୨୩ |
| ମେଲ୍ଛମୁଣ୍ଡା | ୧୨୫ | ୭୪ | ୫,୫୭୮ | ୨୬,୬୪୦ | ୧୩,୨୪୫ | ୧୩,୩୯୫ |
| ଗୈସିଲାଟ | ୧୧୬ | ୮୨ | ୫,୭୩୧ | ୨୯,୨୫୧ | ୧୪,୫୫୯ | ୧୪,୬୯୨ |
| ଜଗଦଲପୁର | ୨୪୨ | ୧୦୧ | ୬,୯୩୭ | ୩୪,୭୦୫ | ୧୭,୩୦୩ | ୧୭,୪୦୨ |
| ବରପାଲି | ୧୦୯ | ୭୪ | ୧୦,୫୬୪ | ୪୭,୪୩୪ | ୨୩,୧୨୭ | ୨୪,୩୦୭ |
| ଭଟଲି | ୧୮୪ | ୮୪ | ୧୦,୮୭୮ | ୪୩,୯୪୭ | ୨୧,୪୩୦ | ୨୨,୫୧୭ |
| ପାଇକମାଳ | ୧୯୧ | ୯୮ | ୫,୬୭୮ | ୨୮,୯୭୨ | ୧୪,୪୯୦ | ୧୪,୪୮୨ |

ତେଣୁ ସନ୍ତୋଷ କର ସାର ।

## ଶ୍ରୀମନ୍ଦିର ପରିଚାଳନା ଇତିହାସ

ପୁରୀରେ ଜଗନ୍ନାଥ ଯେଉଁ ମନ୍ଦିରରେ ସ୍ଥାପିତ ହୋଇଥିଲେ କାଳକ୍ରମେ ତାହା ଭାଙ୍ଗିଯିବାରୁ ପ୍ରଥମେ ମହାରାଜ ଯଯାତିକେଶରୀ ଏକ ନୂଆମନ୍ଦିର ତୋଳାଇ ଦେଲେ ଓ ବର୍ତ୍ତମାନ ଯେପରି ଜଗନ୍ନାଥଙ୍କ ପାଖରେ ଅନ୍ନ ମହାପ୍ରସାଦ ଓ ପୂଜାବିଧି ଶୃଙ୍ଖଳିତ ତାହା ସବୁ ବିଧାନ କରାଇ ଦେଲେ । ଏଣୁ ତାହାଙ୍କୁ ଦ୍ୱିତୀୟ ଇନ୍ଦ୍ରଦ୍ୟୁମ୍ନ ବୋଲି କହନ୍ତି । ତତ୍ପରେ କୋଶଳ କେଶରୀ ସେ ମନ୍ଦିରର ଜୀର୍ଣ୍ଣସଂସ୍କାର କରିଥିଲେ । ପୁଣି ତାହା କ୍ଷୁଦ୍ର ଓ ଜୀର୍ଣ୍ଣ ହୋଇଥିବାର ଦେଖି ଚୋଡ଼ଗଙ୍ଗଦେବ ନୂତନ ମନ୍ଦିର ନିର୍ମାଣର ବ୍ୟବସ୍ଥାକରି କାର୍ଯ୍ୟ ଆରମ୍ଭ କଲେ । ମାତ୍ର ସେ ପରଲୋକ ଗମନ କରିବାରୁ ତାଙ୍କ ପୁତ୍ର ପୌତ୍ରାଦିମାନେ ତାହା ଶେଷ କରିବାକୁ ମନ ଦେଇ ନ ଥିଲେ । ଅନଙ୍ଗ ଭୀମଦେବ ( ୧୧୮୯-୧୨୨୩ ଖ୍ରୀଷ୍ଟାବ୍ଦ ) ସେ କାର୍ଯ୍ୟ ଆରମ୍ଭ କଲେ । ନୀଳକଣ୍ଠ ରାଜଗୁରୁ ମହାପାତ୍ର ପରମହଂସ ବାଜପେୟୀଙ୍କ ଉପରେ ନିର୍ମାଣ ଭାର ରହିଲା । ୧୫ ବର୍ଷରେ ୧୨ ଲକ୍ଷ ୫୦ ହଜାର ମାଢ଼ର ସ୍ୱର୍ଣ୍ଣ ଓ ଅଢ଼େଇ-ଲକ୍ଷ ସ୍ୱର୍ଣ୍ଣ ମୂଲ୍ୟର ରତ୍ନାଦି ବ୍ୟୟ ହୋଇ କାର୍ଯ୍ୟ ଶେଷ ହେଲା ଏବଂ ସେବା ଓ ନୀତିମାନ ବହୁତ ବଢ଼ାଇ ଦିଆଗଲା । ଗଙ୍ଗବଂଶ, ସୂର୍ଯ୍ୟବଂଶ ଓ ଭୋଇ ବଂଶର ରାଜାମାନଙ୍କ ତତ୍ତ୍ୱାବଧାନରେ ମନ୍ଦିରର କାର୍ଯ୍ୟ ଚାଲିଲା । ମୋଗଲ ରାଜତ୍ୱରେ ମୋଗଲମାନେ ଯାତ୍ରୀକର ୯ ଲକ୍ଷ ଟଙ୍କା ପାଇ ଜଗନ୍ନାଥ ମନ୍ଦିରର ସମ୍ପୂର୍ଣ୍ଣ ଅଧିକାର ଖୋରଧା ରାଜାଙ୍କୁ ଦେଇଥିଲେ । ମରହଟ୍ଟାମାନେ ଯାତ୍ରୀକର ଓ ଖୋରଧା ରାଜାଙ୍କଠାରୁ କେତେକ ପ୍ରଗଣା ନେଇ ସେଥିରୁ ମନ୍ଦିର ବ୍ୟୟ ଚଳାଉଥିଲେ । ବର୍ତ୍ତମାନ ତାହାର ନାମ 'ସତାଇଶ ହଜାରୀ ଜମା' । ଇଂରେଜମାନେ ଓଡ଼ିଶା ଅଧିକାର କରି [୧୮୦୩] ନିଜ ହାତରେ ମନ୍ଦିର ପରିଚାଳନା ଭାର ରଖିଲେ । କେତେକ ଦିନ ପରେ ୩ ଜଣ ପଣ୍ଡିତଙ୍କର ଏକ କମିଟି ନିଯୁକ୍ତ କରି ସେହି କମିଟି ହାତରେ ମନ୍ଦିର ପରିଚାଳନା ଭାର ଦେଲେ । ୨ ବର୍ଷପରେ କମିଟିକୁ ଉଠାଇ ଦେଇ ପୁରୀ ରାଜାଙ୍କ ଉପରେ ସେ ଭାର ଦେଇ ତାହାର ଖରଚ ପାଇଁ ବାର୍ଷିକ ୫୩ ହଜାର ଟଙ୍କା ଖଞ୍ଜିଦେଲେ । ପୁଣି ୧୮୪୦ ମସିହାରେ ଯାତ୍ରୀକର ଉଠାଇ ଦେଇ ଉକ୍ତ ରାଜାଙ୍କୁ ସମ୍ପୂର୍ଣ୍ଣ ଓ ସର୍ବଶେଷ ଅଧିକାର ଦେଲେ । ୧୮୪୩ରେ ସରକାର ଉଲ୍ଲିଖିତ ଖଞ୍ଜା ଟ ୩୫୨୩୮୯ ରେ ରଖି 'ସତାଇଶ ହଜାରୀ ମାହାଲ' ରାଜାଙ୍କ ହସ୍ତରେ ଦେଲେ । ୧୮୪୫ ରେ ତାହା କମ୍ କରାଯାଇ ୨୩୩୨୧ ଟଙ୍କାରେ ରଖିଲେ ଓ ଶାନ୍ତିରକ୍ଷା ପାଇଁ ଟ ୨୮୦୪୯ ସେଥିରୁ କାଟିନେଲେ । ଦୁଇ ବର୍ଷପରେ ତାହା ବନ୍ଦ କରି ଖୋରଧା ଖାସ ମାହାଲରୁ ୧୭୨୬ ଟଙ୍କା ରାଜସ୍ୱର ମାହାଲ ମନ୍ଦିର ଖରଚ ପାଇଁ ଖଞ୍ଜିଦେଲେ । ପୁଣି ରାଜା ଶାନ୍ତିରକ୍ଷା ପାଇଁ ଦାୟୀ ହେବାରୁ ସରକାର ୬୮୮୯ ଟଙ୍କ ବାକି ଜମାର କେତେକ ମୌଜା ଖୋରଧା ଖାସ ମାହାଲରୁ ରାଜାଙ୍କୁ ଛାଡ଼ି-ଦେଲେ । ୧୮୧୮ ରୁ ୧୮୬୩ ପର୍ଯ୍ୟନ୍ତ ଯେ ମୌଜାମାନ ରାଜା ପାଇଲେ ତାହାର ନାମ 'ଏଇଖରାଜାତ ଖର୍ଚ୍ଚ ମାହାଲ' । ସେଥିରେ ୧୨୪ ମୌଜା ଓ ୭୨, ୫୨୦ ଏକର ଭୂମିଥାଏ । ୧୮୬୮ ମସିହା ପର୍ଯ୍ୟନ୍ତ ରାଜା ମନ୍ଦିର ଚଳାଇଲେ ଓ ତା' ପରେ ପୁରୀ ରାଜା ଦ୍ୱୀପାନ୍ତରିତ ହେବାରୁ ଏବଂ ତାଙ୍କ ପୁତ୍ର ନାବାଳକ ଥିବାରୁ ୧୮୯୭ ମସିହା ପର୍ଯ୍ୟନ୍ତ ଜଣେ ମ୍ୟାନେଜର ରହିଲେ । ତତ୍ପରେ ୧୯୦୨ ପର୍ଯ୍ୟନ୍ତ ରାଜାଙ୍କ ହାତରେ ରହି ପୁଣି ୪ବର୍ଷ ସକାଶେ ଜଣେ ଡେପୁଟୀ ମାଜିଷ୍ଟ୍ରେଟ ମାନେଜର ହୋଇ ଆସୁଛନ୍ତି । ଏହା ରାଜାଙ୍କ ଅନୁମତି ନିମେ ହେଉଅଛି ।

ସତାଇଶ ହଜାରୀ ମାହାଲ !—

( ୧ ) ରହାଙ୍ଗ, ସିରେଇ, ଚବିଶକୁଦ ଓ ପଞ୍ଚିମଦ୍ୱାହି ପ୍ରଗଣା ମଧ୍ୟରେ ଥିବା ୧୨ ଘଣ୍ଟି ହସ୍ତବୁଜ ମୌଜା ।

( ୨ ) ରହାଙ୍ଗ ପ୍ରଗଣାରେ ଥିବା ୫୦ ଟଙ୍କି ବାହାଲ ମୌଜା ।

( ୩ ) ୮ ଟଙ୍କି ବାହାଲ ମୌଜା, ୧୦ ଟଙ୍କି ବାଯ୍ୟାପ୍ତି ମୌଜା ଓ ୮ ସରବରାକାରୀ ଏବଂ ମୁସ୍ତାଜରୀ ମୌଜାର ରାଜସ୍ୱର କେତେ-କାଂଶ । କଟକଜିଲାରେ ଡ଼ାଳଯୋଡ଼ାରେ ୨ ମକଦମୀ ମୌଜା ଏବଂ ଅଘରେଶ୍ୱରରେ ୧ ମୌଜା । ଏହା ଛଡ଼ା ଦଶପଲ୍ଲାର ରଥକାଠ ଯୋଗାଇବା ଅଞ୍ଚଳ ।

## ଶ୍ରୀ ଶ୍ରୀ ଶ୍ରୀ ଜଗନ୍ନାଥଙ୍କ ସମ୍ବନ୍ଧରେ ପ୍ରକୃତ ଇତିହାସ ।

( ଜନୈକ ସାଧୁ ବର୍ଣ୍ଣିତ )

ସମସ୍ତ ତୀର୍ଥ ସମାନ ଏବଂ ସର୍ବତ୍ର ଦେବତାଙ୍କର ମୂର୍ତ୍ତି ବିରାଜିତ । ମନୁଷ୍ୟ ହୃଦୟରେ ପ୍ରୀତି ଓ ଭକ୍ତି ଅନୁଯାୟୀ

କରିବା ନିମିତ୍ତ, ଭିନ୍ନ ଭିନ୍ନ ସ୍ଥାନରେ ଆମ୍ଭମାନଙ୍କର ପୂର୍ବ ପୁରୁଷଗଣ ଏହି ସକଳ ଦେବତା ଓ ମନ୍ଦିର ପ୍ରତିଷ୍ଠା କରି ଏକ ଏକ ତୀର୍ଥ କରି ଯାଇଛନ୍ତି । କିନ୍ତୁ ତନ୍ମଧ୍ୟରୁ--ଶ୍ରୀକ୍ଷେତ୍ରରେ କିଛି ବିଶେଷତ୍ୱ ଅଛି । ସେଥିପାଇଁ ଶ୍ରୀକ୍ଷେତ୍ର ଶ୍ରେଷ୍ଠ ଏବଂ ଏଥିରେ ଅନେକ ବିଷୟ ବୁଝିବାର ଅଛି -ଜନ ସାଧାରଣ ତାହା ଜାଣନ୍ତି ନାହିଁ । ପ୍ରକୃତ ତଥ୍ୟ ନିମ୍ନରେ ବର୍ଣ୍ଣିତ ହେଲା ।

ଅବୋଧ ଶିଶୁକୁ ସିଂହ କିପରି ବୁଝାଇବାକୁ ଗଲେ ସିଂହର ଅନୁରୂପ ଅଙ୍କନ କରି ଦେଖାଇ ଓ ମାଟିର ସିଂହ ଆଣି ଦେଇ ବୁଝାଇବାକୁ ହୁଏ ଯେ, ସିଂହ ଏହିପରି ଆକୃତି ବିଶିଷ୍ଟ ଜନ୍ତୁ । ତଦ୍ରୂପ ଅବୋଧ ମାନବମାନଙ୍କୁ ଆମ୍ଭମାନଙ୍କର ଜଟିଳ ହିନ୍ଦୁଶାସ୍ତ୍ର ଓ ଭଗବାନ କ'ଣ, ତାହା ସହଜରେ ବୁଝାଇବା ନିମିତ୍ତ ଏହି ଶ୍ରୀକ୍ଷେତ୍ରଧାମ ନିର୍ମିତ ହୋଇଅଛି । ଉତ୍କଳର ରାଜା ଇନ୍ଦ୍ରଦ୍ୟୁମ୍ନଙ୍କ ଅର୍ଥ ସାହାଯ୍ୟରେ କୌଣସି ସାଧୁ କର୍ତ୍ତୃକ ଏହି ପୁରୀଧାମ ଠିକ୍ ଶାସ୍ତ୍ରାନୁସାରେ ସଜାଯାଇ ନିର୍ମିତ ହୋଇ ଅଛି ଏବଂ ଏହା କେତେ ସୁନ୍ଦର ଦେଖିଲେ ବୁଝାଯାଏ ।

ରେଳପଥ ନ ହେବା ପୂର୍ବରୁ ସମସ୍ତେ ଅଠରନଳା ପାର ହୋଇ ଯାଉଥିଲେ । ଭଗବାନ୍ ଚୈତନ୍ୟଦେବଙ୍କ ଆଗମନ ପର୍ଯ୍ୟନ୍ତ ଏହା ଉପରେ ସେତୁ ନ ଥିଲା । ସେ ଏଠାକୁ ଆସି କିପରି ପାର ହେବେ ବୋଲି ଚିନ୍ତା କରିଥିଲେ । ଏହି ୧୮ଟି ନଳାହିଁ ଆମ୍ଭମାନଙ୍କର ଅଷ୍ଟାଦଶ ପୁରାଣ । ପୁରାଣରେ ବାରବ୍ରତ ଉପବାସ ପ୍ରଭୃତି କରିବାର ବ୍ୟବସ୍ଥା ଅଛି । ତାହାର କାରଣ ଏହି ଯେ, ଅଳ୍ପ ଅଳ୍ପ କରି ଏହି ସକଳ ବାରବ୍ରତ ଦ୍ୱାରା ପୁଣ୍ୟ ସଞ୍ଚୟ କଲେ ଧର୍ମରେ ମତି ହେବ ଏବଂ ଉପବାସାଦି ଅଭ୍ୟାସ ଥିଲେ କ୍ରମେ ସାଧନ ପଥରେ ଅଗ୍ରସର ହୋଇ ପାରିବ । ନଚେତ୍ ଏକାବେଳକେ ଅନଭ୍ୟସ୍ତ ଦେହ ନେଇ ସାଧନକାର୍ଯ୍ୟ କଲେ ଅସୁସ୍ଥ ହୋଇ ମୃତ୍ୟୁମୁଖରେ ପତିତ ହେବ, ସୁତରାଂ ଅଭ୍ୟାସ ଦରକାର । ଏହି ଅଷ୍ଟାଦଶ ନଳା ପାର ହେଲେ, ବଡ଼ ରାସ୍ତାକୁ ଉଠି ପାରିବ । ସେହିପରି ଆମ୍ଭମାନଙ୍କର ଏହି ଅଷ୍ଟାଦଶ ପୁରାଣ ଲିଖିତ ବାରବ୍ରତାଦି କଲେ ତେବେ ସାଧନ ପଥରେ ଅଗ୍ରସର ହୋଇପାରିବ । ନଳାରେ କଣ ଥାଏ ? ନା ପଙ୍କ, ପାରହେବା ସମୟରେ ଏହି ପଙ୍କ ଆମ୍ଭମାନଙ୍କ ଦେହରେ ଲାଗେ । ତେତେବେଳେ ଏହାକୁ ଧୌତ କରିବା ପ୍ରୟୋଜନ, ଧୌତ କଲେ କ'ଣ ହେବ ? ନା--ଚିତ୍ତର ପ୍ରସନ୍ନତା ଲାଭ ହେବ । ଏହି ପଙ୍କ ଧୌତ କରିବାପାଇଁ ଇନ୍ଦ୍ରଦ୍ୟୁମ୍ନ ସରୋବର ରହିଅଛି । ପୂର୍ବେ ଯାତ୍ରୀଗଣ ଅଠରନଳା ପାରହୋଇ ଇନ୍ଦ୍ରଦ୍ୟୁମ୍ନ ସରୋବରରେ ସ୍ନାନ ଓ ତର୍ପଣାଦି କରି ତେବେ ଜଗନ୍ନାଥ ଦର୍ଶନ କରିବାକୁ ଯାଉଥିଲେ । ସେହିପରି ଆମ୍ଭମାନଙ୍କର ଅଷ୍ଟାଦଶ ପୁରାଣରେ ପଙ୍କିଳ କାର୍ଯ୍ୟମାନ କରି, ପଙ୍କ ଧୌତ କରିବା ନିମିତ୍ତ ଇନ୍ଦ୍ରିୟାଦି ଦମନରୂପ ସରୋବରରେ ସ୍ନାନ କରିବାକୁ ହୁଏ । ନଚେତ୍ ସାଧନ ପଥରେ ଅଗ୍ରସର ହେବା ସୁକଠିନ । ସରୋବରରେ ସ୍ନାନ କଲେ ଚିତ୍ତ ଯେପରି ପ୍ରଫୁଲ୍ଲ ହୁଏ, ସେହିପରି ଇନ୍ଦ୍ରିୟ ଦମନ କଲେ ଚିତ୍ତରେ ସ୍ୱତଃ ପ୍ରସନ୍ନତା ଲାଭ ହୋଇଥାଏ ।

ତତ୍ପରେ ସାଧନ ପଥରେ ଯେତେ ଅଗ୍ରସର ହେବ ତେତେ ଭଗବାନଙ୍କ ସ୍ୱରୂପ ଦେଖିବ । ଏଣେ ମନ୍ଦିରକୁ ଯିବା ପାଇଁ ବଡ଼ ରାସ୍ତା ବାଟେ ଯେତେ ଯାଉଥିବ, ତେତେ ମନ୍ଦିରକୁ ଦେଖିବ । ଏହି ପ୍ରକାଣ୍ଡପଥ ସହିତ ସାଧନ ମାର୍ଗର ତୁଳନା କରା ଯାଇଅଛି । ଅଠରନଳା, ଇନ୍ଦ୍ରଦ୍ୟୁମ୍ନ ସରୋବର ଏବଂ ଏହି ରାସ୍ତାରେ, ଏହି ତିନିସ୍ଥାନରେ, କଣ ଜଗନ୍ନାଥ ବସି ଅଛନ୍ତି ? ନା--ତାହା ନୁହେଁ । କିନ୍ତୁ ଏମାନ ପାର ନ ହେଲେ ଜଗନ୍ନାଥଙ୍କ ନିକଟକୁ ଯିବାର ଉପାୟ ନାହିଁ । ତଦ୍ରୂପ ବାରବ୍ରତ ତପସ୍ୟା ବା ସାଧନ ଭଜନ ନ କଲେ ଭଗବାନଙ୍କୁ ପାଇବା ନାହିଁ । ରାସ୍ତା ପାରହୋଇ କ୍ରମେ ମନ୍ଦିରରେ ଉପସ୍ଥିତ ହେଲଏ ପର୍ଯ୍ୟନ୍ତ ମଧ୍ୟ ଜଗନ୍ନାଥଙ୍କର ଦର୍ଶନ ପାଇଲ ନାହିଁ । ମନ୍ଦିର ଭିତରେ ପ୍ରବେଶ ନ କଲେ ପ୍ରଭୁଙ୍କର ସାକ୍ଷାତ୍ ମିଳିବ ନାହିଁ । ଏହି ମନ୍ଦିର ସଙ୍ଗରେ ଜଗତ୍ ସଂସାରର ତୁଳନା କରାଯାଇ ଅଛି । ସେହିପରି ଏହି ଜଗତ୍ ଉପରେ ଭଗବାନ ନାହାନ୍ତି, ଏହାର ଭିତରେ ପ୍ରବିଷ୍ଟ ହେଲେ ତାହାଙ୍କର ଦର୍ଶନ ପାଇବ । ମନ୍ଦିର ଉପରେ କଣ ଦେଖିବ, ନା- କେତେଗୁଡ଼ାଏ ଅଶ୍ଳୀଳ ଛବି, କେତେକ ଅବତାର ଓ କେତେକ ସାଧୁଙ୍କର ମୂର୍ତ୍ତି । ତଦ୍ରୂପ ଏହି ସଂସାରରେ ଯେଉଁ ଆଡ଼କୁ ଦୃଷ୍ଟି ନିକ୍ଷେପ କରିବ ସେଠାରେ କଣ ଦେଖିବ ? କେବଳ ସୃଷ୍ଟିର କାର୍ଯ୍ୟ । ସୃଷ୍ଟି—ସ୍ତ୍ରୀ ପୁରୁଷଙ୍କର ସଂଯୋଗ ନ ହେଲେ ହୁଏ ନାହିଁ, ସେଥିଲାଗି ମନ୍ଦିର ଗାତ୍ରରେ ସ୍ତ୍ରୀପୁରୁଷର ସଂଯୋଗ ଛବି; ଆଉ ଏହି ସଂସାରରେ ଅନେକ ସାଧୁ ସନ୍ନ୍ୟାସୀ ଦେଖିବାକୁ ମିଳନ୍ତି-- ତେଣୁ ମନ୍ଦିର ଦେହରେ ସାଧୁ ସନ୍ନ୍ୟାସୀଙ୍କ ଛବିର ଅଭାବ ନାହିଁ; ତତ୍ପରେ ଏହି ପୃଥିବୀରେ ମଧ୍ୟେ ମଧ୍ୟେ ଯେ ଅବତାର ହୋଇ

ଜନ୍ମଗ୍ରହଣ କରନ୍ତି, ସେଥିପାଇଁ ମନ୍ଦିର ଗାତ୍ରରେ ବାମନ, ନରସିଂହ ଇତ୍ୟାଦି ଅବତାରର ମୂର୍ତ୍ତି ରହିଅଛି । ମନ୍ଦିରର ବହିର୍ଭାଗରେ ଯେତେବେଳେ ଭଗବାନଙ୍କୁ ପାଇଲ ନାହିଁ, ସେତେବେଳେ ଭିତରେ ପ୍ରବେଶକଲ, ଦେଖିବ ଅତୁଳନୀୟ ସୁନ୍ଦର ମୂର୍ତ୍ତି । ଏହି ଜଗତ ସହିତ ଯେପରି ମନ୍ଦିରର ତୁଳନା କରାଯାଏ, ତଦ୍ରୂପ ପୁଣି ଏହି ଦେହ ସହିତ ମଧ୍ୟ ତୁଳନା କରାଯାଏ ।

ଯାହାହେଉ, ମନ୍ଦିରରେ ପ୍ରବେଶ ହୋଇ କଣ ଦେଖିଲ ? ନା—ଜଗନ୍ନାଥ ଦେବଙ୍କର ନୀଳାଭ ବିଶାଳ ବଦନ, ସେଥିରେ ବଡ଼ ବଡ଼ ଗୋଲାକାର ଦୁଇଚକ୍ଷୁ, ତାଙ୍କର କର୍ଣ୍ଣ ନାହିଁ, ବାହୁ ମାତ୍ର ଅଛି—ସେଥିରେ ଅଙ୍ଗୁଳି ନାହିଁ । ଅଜ ପ୍ରକାଣ୍ଡ ଉଦର, ଚରଣ ଆଦୌ ଦେଖାଯାଏ ନାହିଁ । ଅପିଚ ଭଗବାନଙ୍କର ସୃଷ୍ଟି କୌଣସି ପଦାର୍ଥ ବା ପ୍ରାଣୀର ସହିତ ଏହାଙ୍କର ତୁଳନା ଦେଇ ପାରିବ ନାହିଁ । ଏହାର ଅର୍ଥ କଣ ? ଏହି ଅନନ୍ତ ନୀଳାକାଶ ସହିତ ତାହାଙ୍କ ବିଶାଳ ବଦନର ତୁଳନା କରାଯାଇଅଛି । ସେ ଚନ୍ଦ୍ର ଓ ସୂର୍ଯ୍ୟରୂପ ବଡ଼ ବଡ଼ ଗୋଲାକାର ଦୁଇ ଚକ୍ଷୁଦ୍ୱାରା ସର୍ବଦା ଦର୍ଶନ କରୁଅଛନ୍ତି । ତାହାଙ୍କର କର୍ଣ୍ଣ ନାହିଁ । କର୍ଣ୍ଣ ଥିଲେ, କାଳେ ପାପୀର କରୁଣକ୍ରନ୍ଦନ ଶ୍ରବଣ କରିବାକୁ ହେବ । ପୁଣି ତାଙ୍କ ହସ୍ତର ବାହୁମାନ ଅଛି, ଅଙ୍ଗୁଳି ନାହିଁ । ଏହାର ଅର୍ଥ କଣ ? ନା—କାର୍ଯ୍ୟ କରେ ଅଙ୍ଗୁଳି, ବାହୁ ଅଙ୍ଗୁଳିର ପ୍ରୟୋଜକ ମାତ୍ର, ତଦ୍ରୂପ ସେ ନିଷ୍କ୍ରିୟ; ସେ ମନୁଷ୍ୟକୁ କାର୍ଯ୍ୟ କରିବାକୁ କହୁଅଛନ୍ତି, ମନୁଷ୍ୟ ନିଜେ କାର୍ଯ୍ୟ କରେ । ଯେପରି କାର୍ଯ୍ୟ କରିବ, ସେହିପରି ଫଳ ଭୋଗ କରିବ, ଏଥିରେ ତାଙ୍କର କୌଣସି ହାତ ନାହିଁ । ସେ ସେପରି ବାହୁ ଦେଖାଇ କହୁଛନ୍ତି, ବାପ, ପୁଣ୍ୟକର୍ମ କର, ପୁଣ୍ୟର ଫଳ ପାଇବ, ପାପକର୍ମ କର, ପାପର ପ୍ରତିଫଳ ପାଇବ, ମୋର କୌଣସି ଦୃଷ୍ଟି ନାହିଁ । ତଦ୍ଭିନ୍ନ ଏହି ଯେ ପ୍ରକାଣ୍ଡ ଉଦର, ତାହା ବ୍ରହ୍ମାଣ୍ଡ ଭାଣ୍ଡୋଦର । ଜଗତ୍ ବ୍ରହ୍ମାଣ୍ଡ ଏହି ଉଦର ମଧ୍ୟରେ ନିହିତ ରହିଅଛି । ଅତଃ, ତାଙ୍କର ଚରଣ ପାତାଳରେ, କି ରସାତଳରେ, କି ତଳାତଳରେ, କେଉଁଠି ଅଛି, ତାହା ମଧ୍ୟ ସବୁ ତପସ୍ୟାରେ ମଧ୍ୟ ଦେଖିବାର ଉପାୟ ନାହିଁ । କାରଣ ଚରଣ ପାଇଲେ ତ ସମସ୍ତ ଉଦ୍ଧାର ହୋଇଯିବେ, ସେଥିଲାଗି ସେ ଚରଣ ଦୁଇଟି ଲୁଚାଇ ରଖିଅଛନ୍ତି ।

ଜଗନ୍ନାଥ ଦର୍ଶନ କଲେ କ'ଣ ହୁଏ ? ନା— ଚିର ଅନନ୍ତସାଗରରେ ଭାସେ । ତାହାଙ୍କ ନିକଟରେ ପୁଣି ଜାତିଭେଦ ନାହିଁ । ମନରେ କୌଣସି ପ୍ରକାର ଦ୍ୱିଧା ନାହିଁ, ତେଣୁ ମନ୍ଦିରରେ ତାଙ୍କର ଆନନ୍ଦ ବଜାର, ସେଠାରେ କୌଣସି ପ୍ରକାର ଜାତିଭେଦ ନାହିଁ । ଉଚ୍ଛିଷ୍ଟ ଖାଇବାକୁ ମନରେ କୌଣସି ପ୍ରକାର ଦ୍ୱିଧା ନାହିଁ । ତତ୍ପରେ ଭଗବାନ କେଉଁଠାରେ ଅଛନ୍ତି ? ନା—ଭବସମୁଦ୍ର ପାରରେ, ତେଣୁ ସମୁଦ୍ରତୀରରେ ତାଙ୍କର ଏହି ମନ୍ଦିର ନିର୍ମିତ ହୋଇଅଛି ।

ହିନ୍ଦୁ ନରନାରୀଙ୍କୁ ସହଜରେ ଭଗବାନଙ୍କ ସ୍ୱରୂପ ବୁଝାଇବା ନିମିତ୍ତ ସାଧୁ ମହାଶୟ ଜଗନ୍ନାଥ ଦେବ ସମ୍ବନ୍ଧରେ ଏହି ସୁନ୍ଦର ଆଧ୍ୟାତ୍ମିକ ବର୍ଣ୍ଣନା କରି ଅଛନ୍ତି ।



## ଶ୍ରୀ ଶ୍ରୀ ଶ୍ରୀ ଜଗନ୍ନାଥ ମହାପ୍ରଭୁଙ୍କର ନିତ୍ୟକୃତ୍ୟ ପୂଜାବିଧି ବ୍ୟବସ୍ଥା

ପ୍ରତିଦିନ ରାତ୍ରି ଏକପ୍ରହର ଥାଇ ଠାକୁରମାନଙ୍କ ନିଦ୍ରାଭଙ୍ଗ କରାଇବାକୁ ହେବ । ଶୁଦ୍ଧଶଙ୍ଖ, ମହୁରି, ବୀଣା, ଭେଟ, ରବା, ତାଳ, ଶିଙ୍ଗା, ଘଣ୍ଟା, ଭେରି, ମୃଦଙ୍ଗ ଓ କମ ଏପରି ୧୨ଶବ୍ଦ କଲାପରେ ଗମ୍ଭୀର ଦ୍ୱାରେ କବାଟ ଫିଟାଇବା ଲାଗି ପରିଛା, ପଟ୍ଟଜୋଷୀ, ମୁଦିରଥ, ଶ୍ରୋତ୍ରୀୟବ୍ରାହ୍ମଣ, ପାଳିଆପଣ୍ଡା, ସିଂହାସନପଶୁପାଳକ, ଅଖଣ୍ଡମେକାପ, ବାହାରଦେଉଳବଡ଼ୁ, ଭିତର ଗରାବଡ଼ୁ, ଶ୍ରୀମୁଖସିଂହାରୀ, ଭିତର ସୁନାଦିଅଁଣ୍ଡ ସେବକ, ପଲିବଡ଼ୁ, ଭିତର ଭଣ୍ଡାରମେକାପ, ଫାରେକ ମୁଦୁଲି, ଜ୍ୟୋତିଷ, ପାଣି, ଦରଦଣିଆ, ଖଟଣି ସମସ୍ତ ସେବକମାନେ ଥାଇ ମୁଦ ଦେଖି ମୁଦଭାଙ୍ଗି କବାଟ ଫିଟାଇବେ । ପାଦପ୍ରକ୍ଷାଳନ କରି ସେବକମାନେ ଭିତରେ ପ୍ରବେଶ କରିବେ । ଶେଯଘର ମେକାପ ଖଟଶେଯ ଖଟଦଡ଼ିଜ କରାଇ ଶେଯ ଘରକୁ ନେଲା ଉତ୍ତାରେ ସିଂହାସନ ଉପରକୁ ହାତରେ ସୁନାବଇଠା ନେଇ ଭିତରଭଣ୍ଡାରମେକାପ ଶ୍ରୀଅଙ୍ଗମାନ ମଣ୍ଡିବ । ସିଂହାସନ ପଶୁପାଳକ ସିଂହାସନ ଉପରକୁ ଉଠି ତଡ଼ାଉଲାଗିମାନ ଉଲାଗି କରିବ । ବସ୍ତ୍ର ଉଲାଗି କରି ଗୋଟିଏ ଗୋଟିଏ ଖଣ୍ଡ ପିନ୍ଧାଇବା । ଶ୍ରୀମୁଖସିଂହାରୀ ସୁନା କୋପରାରେ କର୍ପୂର ମିଶ୍ରିତ ଜଳରେ

ଖୋଲ ଲୁଗା ଗୁଡ଼ାଇ ଶ୍ରୀମୁଖମାନ ପୋଛି ଶଙ୍ଖକଳା, ହେଙ୍ଗୁଳ, ହରିତାଳବର୍ଣ୍ଣମାନ ଶ୍ରୀମୁଖରେ ଲାଗି କରିବ । ପରେ ସିଂହାସନ ତଳେ ପାଳିଆପଣ୍ଡା ପିଢ଼ା ମାଡ଼ ବସି କଂସାଦର୍ପଣ ଭଳିଗୋଟି ଛାମୁରେ ବସାଇବ । ଏ ଦର୍ପଣରେ ପ୍ରକ୍ଷାଳନ, ଦାନ୍ତକାଠିଲାଗି ଆଚମନ, ତୋଳାମାନଙ୍କରେ ତ୍ରିଫଳା ପାଣି ଲାଗି କରାଇ ଧୂପସାପରେ ପୂଜାକରି ପଞ୍ଚାମୃତ ସ୍ନାହାନ କରାଇବ । ପଞ୍ଚାମୃତ ସ୍ନାନ ଲାଗି ଗୁଆଦୁଧ, ଦହି, ଘୃତ, ମହୁଖଣ୍ଡ ଦେଇ ବେଦ-ମନ୍ତ୍ରରେ ସ୍ନାନ କରାଇବ । ପରେ ଉଷ୍ଣଜଳ, ତୀର୍ଥଜଳ, ମନ୍ତ୍ରଜଳ, ବସ୍ତ୍ରକ୍ଷାଳିତ ସୁବାସ ଜଳ ପ୍ରଭୃତି ଜଳମାନ ସଂସ୍କାର ପୂର୍ବକ ତହିଁ ଦ୍ୱାରା ସ୍ନାନ କରାଇବ । ଶୁକ୍ଳ ଶୁଷ୍କ ବସ୍ତ୍ରଦ୍ୱାରା ଶ୍ରୀଅଙ୍ଗ ପୋଛିବ । ଏହା ପାହାନ୍ତ୍ୟ ଶ୍ରୀମୁଖ ପଖାଳ ପୂଜାପଣ୍ଡା-ମାନଙ୍କର ସେବା । ପଣ୍ଡା କୌଣସି ଦିନ କୌଣସି କାରଣରୁ କରି ନ ପାରିଲେ ସିଂହାରିପଶୁପାଳକ କରିବ ।

କାଠିଲାଗି ଦ୍ରବ୍ୟ— କୁମ୍ଭାଟୁଆ ଦାନ୍ତକାଠି ତିନିଖଣ୍ଡ ପୋଡ଼ାଗୁଆର ଗୁଣ୍ଡି, ସୁନାଖଡ଼କା୩, ସୁନା ଜଉଚଷ୍ଟା ପାତିଆ ୩, ତ୍ରିଫଳା ପାଣି ୩ ବଟା, ହରିଡ଼ା ବାହାଡ଼ା ଚଅଁଳା ୩ ପୁଞ୍ଜା, ପଞ୍ଚାମୃତ ଦୁଧ ୩ କୁଣ୍ଡା, ବସାଦହି ୩ଦଟୋଇ, ଘିଅ ୩ମାଣିକା ମହୁ ୩ ମାଣିକା, ଖଣ୍ଡ ୩ପୁଞ୍ଜା, କାଙ୍କୋଳ ଖଇରବନ୍ଧା ଗନ୍ଧମିସି ବଟା, ଅଁଳା ଟୋ ୩ ଓ ୩ ପୁଞ୍ଜା, ସରସଚନ୍ଦନ । ମାଜଣା ଜଆ ପିଠାଉକୁ ଗୁଜୁଳ ଯାଧମାଣ, ନଡ଼ିଆ ୩ଗୋଟା, ପାଣିସକାଶେ ବଡ଼ ନଉତି ୧, ତୀର୍ଥଜଳ ୧ କୁଡ଼ୁଆ, ଚତୁଃସମଜଳ ସରସ ଚନ୍ଦନ ଅଗୁରୁ ମାଂ୩, କର୍ପୂର ଚନାଏ, କସ୍ତୁରୀ ଅଧଚନାଏ ଗନ୍ଧ ୨ ଚନା । ନୈବେଦ୍ୟ— ପାଚିଲା ଅମୃତପାଣି କଦଳୀ ୩୦, କଦଳୀପତ୍ର ୩ ଖଣ୍ଡ ।

ଆଦ୍ୟସମ୍ବୋଧନୀ ପୂଜା—ସିଂହାରି ପଶୁପାଳମାନେ ସିଂହାସନ ଉପରେ ଶ୍ରୀଅଙ୍ଗରେ ଲୁଗା ଲାଗିକରି ଶ୍ରୀକାପଡ଼ା ଲାଗି କରା-ଇବେ । ପରେ ଚୂନମ୍ବଳି ବଢ଼ିବ, ପୁରବଢ଼ୁ ଗମ୍ଭୀରା ଧୋପଖାଳ କରି ପାହାଡ଼ାଲୁଗା ଖେଦି ପୋଛିମାରି ଧୋବ ଲୁଗା ପାହାଡ଼ା-ପାଡ଼ ଶୀତଳହାର ଭୋଗରେ କର୍ପୂର ମରିଚମିଶି ଖଣ୍ଡମଣ୍ଡା, ଖଣ୍ଡସାକର, ଖଣ୍ଡପନ୍ତି, ନଡ଼ିଆରସକୋରା, ଅମୃତପାଣି ପାଚିଲା କଦଳୀ, ସିଂହାରଲଡ଼ୁ, କର୍ପୂରଖଣ୍ଡ ମିଶ୍ରିତ ଭଜା ଚୂଡ଼ା, ବଣପଇଡ଼, ଯେଉଁ ଋତୁରେ ଯେଉଁ ଫଳ, ପଞ୍ଚ ଉପଚା-ରରେ ପୂଜା ହେବ । ଏପରେ ବାହାରେ ସୂର୍ଯ୍ୟପୂଜା, ଗରୁଡ଼-ପୂଜା, ଦ୍ୱାରପାଳ ପୂଜା ହେବ ।

ସକାଳ ଧୂପ :—ଗମ୍ଭୀରା ଧୋପଖାଳ ହୋଇ ପାହାଡ଼ା ପଡ଼ୁ ସୁବର୍ଣ୍ଣ ପାତ୍ରମାନଙ୍କରେ ଭୋଗମଣ୍ଡପ ବଢ଼ା ହୋଇ ୧୬ ଉପଚାର ପୂଜା ହେବ । ପଣ୍ଡା ପିଢ଼ା ଉପରେ ଉତ୍ତରାଭିମୁଖ ହୋଇ ବସି ପୂଜା କରିବ । ଦ୍ୱାଦଶାକ୍ଷର ମନ୍ତ୍ରରେ ବଳରାମଙ୍କ ପୂଜା, ରାଜମନ୍ତ୍ରରେ ପରମେଶ୍ୱରଙ୍କ ପୂଜା ହେବ । ଭୁବନେଶ୍ୱରୀ ମନ୍ତ୍ରରେ ସୁଭଦ୍ରାଙ୍କୁ ପୂଜା କରିବ । ସୁଦର୍ଶନଙ୍କୁ ପୂଜା କଲା ବେଳେ ତଳେ ବସି ପୂଜା କରିବ ।

ଆସନଂ ସ୍ୱାଗତଂ ପାଦ୍ୟଂ ଅର୍ଘ୍ୟମାଚମନୀୟକଂ
ମଧୁପର୍କଂ ଚ ମସ୍ନାନ ବସନାଭରଣାନି ଚ ।
ସୁଗନ୍ଧଂ ସୁମନଂ ଧୂପ, ଦୀପ ନୈବେଦ୍ୟ ବନ୍ଦନଂ ।

ଆସନ :—ସୁବର୍ଣ୍ଣ ପଦ୍ମପାତ୍ର ୩ ତୁଳସୀ ।
ସ୍ୱାଗତ :— ,, ,, ,, ମିଶ୍ରିତ ଫଳ
ପାଦ୍ୟ :— ,, ତାହିଆ ୩, ଜଳ ପଦ୍ମଫୁଲ ୩ ମାଢ଼, ଦଶ କାନ୍ତିଫୁଲ ୩ ମାଢ଼, ସୁନାଧାନଫୁଲ ୩ ମାଢ଼, ଦୂର୍ବାଙ୍କୁର ମା ୩ ଢ଼, ଶ୍ୱେତ ସୋରିଷ, ଚନ୍ଦନ, ଉଷୀର ଓ କୁଙ୍କୁମ ।
ଆଚମନ :—ସୁବର୍ଣ୍ଣ ଝାଳ ୩ ବସ୍ତ୍ରକ୍ଷାଳିତ ଜଳରେ ଲବଙ୍ଗ, ଜାଇଫଳ, ଉଶୀର, ବେଣା, ଚନ୍ଦନ, ମୁରମାଂସୀ, କସ୍ତୁରୀ, କର୍ପୂର ମିଶ୍ରିତ ।
ମଧୁପର୍କ :—ରୂପାକୁଣ୍ଡିକ ୩ରେ ମହୁ, ଗୁଆଦହି, ଘୃତ, ମହୁ ଅଭାବେ ଗୁଡ଼, ରୂପାଚୁଙ୍କୁଣି ୩ ।
ପୁନରାଚମନ :—ସୁନାଝାଳ ୩ରେ ଲବଙ୍ଗ, ଜାଇଫଳ, ଅଳାଇଚ, କାଙ୍କୋଳ, ଉଶୀର, ବେଣା, ଅଗୁରୁ, କର୍ପୂର ମିଶ୍ରିତ ବସ୍ତ୍ରକ୍ଷାଳିତ ସୁଗନ୍ଧଜଳ ।
ସ୍ନାନ :—ସୁନା ଝାଳ ୩ରେ ବସ୍ତ୍ରକ୍ଷାଳିତ କର୍ପୂର ମିଶ୍ରିତ ଜଳ ୧୦୦ ପଳ ଲେଖାଏଁ ୩୦୦ ପଳ । ଗଙ୍ଗାଯମୁନାଦି ମନ୍ତ୍ରରେ ମନ୍ତ୍ର କରି ଆବାହନ କରିବ, ସୁନା ବଇଠି-ଲଗା କଂସା ଦର୍ପଣ ଛାମୁରେ ରଖି ସ୍ନାନ କରାଇବ । ଧୋବ ବସ୍ତ୍ରରେ ଶ୍ରୀଅଙ୍ଗ ପୋଛିବ, ନୂତନ ପଟନୀ ବସନ ପିନ୍ଧାଇବ, ଅଳଙ୍କାର ଲାଗି କରିବ । ଫୁଲ, ଚନ୍ଦନ, ଅଗୁରୁ, କସ୍ତୁରୀ, ସେବତୀଫୁଲ, କାକର ପଣାର ଜଳ ଲାଗି ହେବ । ସୁନା ଘଟରେ ଅଳତି ହେବ, ଧୂପ ହେବ, ବାଦ୍ୟ ବାଜିବ, କୋଠ ତୋଟା ମାଳୀ ଏ ପୂଜାକୁ ଫୁଲ ଦେବ । ସର୍ବୋପଚାର ହେଲାପରେ ଛାମୁରେ

ନୈବେଦ୍ୟ ପଡ଼ିବ, ଭିତରେ ମଣୋହି ହେବ, ବାହାରେ ପୁରାଣ ପଣ୍ଡା ପୁରାଣ ଶୁଣାଇବ (କଳାପାବଛଟାରେ)। ଷଡ଼ରସରେ ମୁଣୋହି ପଦାର୍ଥମାନ ହେବ, କେବଳ ତିକ୍ତ ଦେବ ନାହିଁ । ୪ ପ୍ରକାର ପାକ ହେବ ଯଥା:— ଭୀମ, ନଳ, ସୌରି, ଗଉରୀ । ଅନ୍ନ ୪ ପ୍ରକାର:— ଶାଳି, କ୍ଷୀର, ଦଧି, ଶୀତଳ ।

୧ ସୁବାସିତ ଓରିଅ ଚାଉଳ ପାକ ହେବା ପରେ ସେଥି ସଙ୍ଗେ ଗୁଆଘିଅ ମିଶିବ । ଫାଳଟଭି, ଖରଡ଼ାଲବଣ ସହିତ ଶାଳୀ ତଣ୍ଡୁଳ ତବତ ଅନ୍ନ । ଏ ମୁଣୋହିବେଳକୁ ଗଉରୀ ପାକର ମୁଗ ତିଅଣ, ଭୀମ ପାକର ବଡ଼ ତିଅଣ, ସୌରି ପାକର ଦୁଧ ମହୁର, ଅଳ୍ପୁଭଜା, ନଳ ପାକର ଶାକର ତିଅଣ ।

୨—ଦଧି ଅନ୍ନ—ଓରିଆ ଅନ୍ନ ଗୁଆ ବସାଦହି ମିଶ୍ରିତ । ନଳପାକ ଇଷ୍ଟବ ତିଅଣ, ଗଉରୀ ପାକ ମଧୁରୁଚ, ସଉରୀ ପାକ କଦଳୀଭଜା, ଭୀମ ପାକର ଗୁଡ଼, ଖୁଆଇ ପାକକଲା ନଡ଼ିଆ ରସ ।

୩—କ୍ଷୀର ଅନ୍ନ—ଗୁଆ ଦୁଧରେ ସୁବାସିତ ଓରିଅ ଚାଉଳ, ପାକ ଗୁଆଘୃତ ଖରଡ଼ା ଲୁଣ ମିଶିବ । ସାରଖଣ୍ଡ ମରିଚ କର୍ପୂର ମିଶିବ, ଗଉରୀ ପାକର ଅଥାର ସିଝା ପିଠା, ଭୀମ ପାକର ପୁର ପିଠା, ସଉରୀ ପାକର ଘୃତ ଲବଙ୍ଗ ପ୍ରଭୃତି ମିଶ୍ରିତ ନାନାପ୍ରକାର ପିଠା, ନଳ ପାକର ନାନାପ୍ରକାର ପଣାଚେଞ୍ଚା ।

ଶୀତଳ ଅନ୍ନ:—ଓରିଅ ଚାଉଳ ଅନ୍ନ ବାଟୁଲା କରି ଚୂରି ଧୋଇ ଏଥିରେ ଟଭି ରସ ଖରଡ଼ା ଲବଣ ମିଶ୍ରିତ କରିବ । ଗଉରୀପାକ ବଥୁଆ, ଲେଉଟିଆ, କୋଶଳା, ମଧୁର ନଳିତା ଋତୁ ଅନୁସାରେ ଶାକ, ସଉରୀ ପାକର ଅମ୍ବାପାରେଲି, ଭୀମ ପାକର ବରବଟି, ଗୁଡ଼କାଞ୍ଜି, ନଳ ପାକର ଅହଙ୍ଗା । ଭାତ, ତିଅଣ, ଖିରିପିଠା, ଗୋଟିକା ଦହି, ଅମୃତମଣ୍ଡା, ନଡ଼ିଆ, ରସକୋରି, ପାଚିଲା କଦଳୀ, ପଇଡ଼, ଘସା ବାସପାଣି, ଋତୁଫଳ ଏ ସବୁ ଏକାବେଳେକେ ମୁଣୋହି କଲେ ଭୋଗ କୁହାଯାଏ । ଖିରିପିଠା, ଗୋଟିକା, ପଣା, ସରସରକ ପଇଡ଼, ଘସା ବାସ ପାଣି ଏମାନ ମୁଣୋହି କଲେ ଫିହାର କୁହାଯାଏ ।

ଏ ସମସ୍ତ ଷ୍ଟମ୍ଭରେ ଧୋବଲୁଗା ପାଏଡ଼ା ପଡ଼ି ତା ଉପରେ ସୁବର୍ଣ୍ଣ ଥାଳିମାନଙ୍କରେ ଅନ୍ନ ପର୍ବତାକାରରେ କୁଢ଼ା ହୋଇ ଘିଅ ପଡ଼ିବ । ବଡ଼ ଗୋଟା ଭାତ, ସାନ ରେକା ଏଣ୍ଡୁରି, ଅଡ଼ ଏଣ୍ଡୁରି ଏମାନେ ପର୍ବତର ପଥର ହେବେ । ବଡ଼ କାନକା କୁଡ଼ିଆ ଭାତମାନ ଗଛ ହେବ, ବଡ଼ ବଡ଼ ଖଣ୍ଡ ଅଳୁ ଭଜା ଗୋଜାହୋଇ କଣ୍ଟା ହୋଇ ଅମୃତମଣ୍ଡା ସହିତ ପର୍ବତର ଶୃଙ୍ଗହେବ; କାକରପିଠା, ଆରିସା, ପୁଳି, ଅମାଲୁ, ହୋଲବଡ଼ା, ନାଡ଼ୀ, ତିପୁରି ଏମାନେ ଗଛର ଡାଳ ପତ୍ର ହେବେ । ଗଜାପିଠା, ଗୋଟା କଦଳୀଭଜା, ଖଣ୍ଡଖୋଷୀ ଏମାନ ଗଛର ଫୁଲ କଢ଼ ହେବେ; ସଜପାପୁଡ଼ି ଗୋଟିକା, କଦମ୍ବଫୁଲ ନିମନ୍ତ୍ରେ ରସକୋରି ଏମାନେ ଫୁଲ ହେବେ; ହରିବଲ୍ଲଭ, ଧର୍ମଶରଣ, ବଡ଼ ଡାଳିମ୍ବ, ଛେନାଲଡ଼ୁ, ମଶ୍ଚରଲଡ଼ୁ, ବଡ଼ା, ଖଇରଚୂଳ, ଚଢ଼ାଇ-ନେଦା, ଛେନାମଣ୍ଡା, ପଣୁଝିଅ, ସୋଧୁଅ, ପଇଡ଼, ପାଚିଲା-କଦଳୀ ଏମାନେ ଗଛର ଫଳ ହେବେ; ନାନାପ୍ରକାର ତିଅଣ, ଖିରିଖିରିଷା, ଅମୃତଦୁଧ, ଅଧାମଦସାଦହି, ସରଦହି, ବହଳ-ଦୁଧ, ଦ୍ୱିଗୁଣ ଦୁଧ, ହିଗୁଣ ଦୁଧ ଏମାନ ଖଣ୍ଡମରିଚ ଶାକର ମିଶ୍ରିତ ହୋଇ ଗଛର ରସ ହେବେ; ନାନାପ୍ରକାର ପଣା, ଏମାନେ ପର୍ବତ କନ୍ଦରର ଜଳ । ଏପରି ପର୍ବତାକାର କରି ପଣ୍ଡା ମନରେ କଳ୍ପନା କରିବ । ପଦ୍ମମୂଳ ହୋଇ ମୁଣୋହି ବେଳେ ଯେଉଁ ପଦାର୍ଥ ଉତ୍ତାରୁ ଯାହା ମୁଣୋହି ହେବ ସେ ପ୍ରକାର ମହାପୁଆର ପଦ୍ମମୂଳ କରି ବାଢ଼ ଖଦ ଗୋଟିଏ ଯେମନ ବାନ୍ଧୁଥିବ । ପଣ୍ଡା ମନ୍ତ୍ରଦ୍ୱାରା ମୁଣୋହି କରାଇବ, ମୁଣୋହି ପରେ ଭିତର ଗରବଡ଼ୁ ଆଚମନକୁ ସୁବାସପାଣି ଦେବ । ଆଚମନ ସାରି ଝୋଲ ବସ୍ତ୍ରରେ ଶ୍ରୀହସ୍ତ ପୋଛିଲା ଉତ୍ତାରୁ ବେଢ଼ା ନ ଫିଟିବା ପୂର୍ବରୁ ପୂଜାପଣ୍ଡା ଅନ୍ନ ମହାପ୍ରସାଦ ଖେଚଡ଼ିଭାତ ଗୋଟାଏ ଯେମନ ବାହାରକୁ ଆସି ଦେଉଳ ଗୃହପାଖେ ଦଶଦିଗପାଳଙ୍କୁ ବଳି ଦେଇ ଆଚମନ କରି ବେଢ଼ା ଭିତରକୁ ଆସି ତାମ୍ବୁଳ ଲାଗି କରାଇବ । ବେଢ଼ା ଫିଟିବା ପରେ ଆଳତି ହେବ, ସକାଳଧୂପରେ ଆଳତି ହେବ । ୧୬ ପଦାର୍ଥ ଲୋଡ଼ାହେବ—ପଇତା, ଧ୍ୱଜ, ଛତ୍ର, ଚାମର, ଆଳଟ, ଧୂପ, କର୍ପୂର, ଆଳତୀ, ଅଗୁରୁ, ଧୂପକାଠି, ସୁନାବେତ, ପୁରାଣ ଶ୍ରବଣ, ନୃତ୍ୟଗୀତ, ଭାଟକଏବାର ଘଣ୍ଟାଦି ଚତୁର୍ବିଧ ବାଦ୍ୟ, ଅସୁରମାନଙ୍କର ମର୍ଦ୍ଦଳାଦି ଚର୍ମବାଦ୍ୟ, ଯକ୍ଷମାନଙ୍କର ଘଣ୍ଟା

ଲୁଚ୍ଛା ଅଣ୍ଡୁ ଲୁଚ୍ଛା ଚନ୍ଦ୍ରା ଆଣ୍ଠାକର ।

କାହାଳ ଅଦ୍ଧ ଫୁଙ୍କ ବାଦ୍ୟ, କନ୍ଦରମାନଙ୍କ ତାଳ କଂସାଳ **ଅଦ୍ଧ ଘଣ୍ଟବାଦ୍ୟ,** ଦେବତାମାନଙ୍କ ଖଣାଦ ବାଦ୍ୟ ।

ଦାରୁବ୍ରହ୍ମ ଅବତାର ପୂଜାରେ ଆବାହନ ବିସର୍ଜନ ନାହିଁ । ଧୂପ ବଢ଼ିଲେ ପଣ୍ଡା ଅକ୍ଷତ ହୋଇ ରାଜାଙ୍କୁ ଆଶୀର୍ବାଦ କରିବ ।

ଧୂପଶେଷରେ ହୋମ ହେବ, ଉପନଭୋଗ ମଢ଼ଫୁଲ ଗନ୍ଧପୁଷ୍ପ ଧୂପଦୀପ ନୈବେଦ୍ୟ ସହିତ ପଞ୍ଚୋପଚାରରେ ପୂଜା ହେବ ଏବଂ ମୁଣୋହି ହେବ; ପରେ ସୁବର୍ଣ୍ଣ ନାରାୟଣ ଦେବତାମାନଙ୍କରେ ବଜେକରି ଦେଉଳ ଗୁରୁପାଖ ୩ ବେଢ଼ା ବୁଲି ଜଗମୋହନ ଦ୍ୱାରରେ ରତ୍ନପଲଙ୍କ ଉପରେ ବଜେ କରିବେ । ଏଠାରେ ବେଢ଼ା ଅସ୍ଥାନ ହେବ । ଏଠାରେ ଗୋଟିଏ ଶୀତଳ ସଂହାର ମୁଣୋହି ଭୋଗ ହେବ, ବନ୍ଦାପନା ହୋଇ ଭିତରକୁ ବଜେ କରିବେ । ଏ ପରେ ଦହିକଢ଼ମା ଭୋଗ ହେବ ।

ଦୁଇପ୍ରହର ଧୂପ:—ଠାକୁରମାନେ ମଇଲମ ହେବେ, ଏବଂ ବସ୍ତ୍ରଲାଗି, ତଳକଲାଗି, ମାଳଚୂଳଲାଗି ହେବାପରେ ଗମ୍ଭୀର ଧୋପଖାଳ ହେବ, ପାହାଡ଼ା ଲୁଗା ପଡ଼ ସୁବର୍ଣ୍ଣ ଯୋଗାଡ଼ମାନଙ୍କରେ ଭୋଗ ମଢ଼ଫୁଲ ସକାଳ ଧୂପ ପରି ପଙ୍କ୍ତାକାରରେ ଜମାହେବ, ଷୋଡ଼ଶୋପଚାର ପୂଜାହେବ । ହୋମ, ଉପନଭୋଗମାନ ସକାଳ ପରି ହେବ, ସକାଳ ପରି ନାରାୟଣଙ୍କ ବେଢ଼ାବୁଲା, ଶୀତଳ ସଂହାର ଭୋଗ ଓ ବନ୍ଦାପନା ପରେ ଭିତର ବଜେ ହେବ, ବେଶଉଲାଗ ହୋଇ ନେତପଟନ ଲୁଗା ଲାଗି ହୋଇ, ରତ୍ନ-ତଡ଼ାଉ ସୁବାସବଳୟ ମାଳଚୂଳ-କର୍ପୂର ଲାଗି ହୋଇ ଗମ୍ଭୀର ଧୋପଖାଳ ପରେ ଖଟଶେଯ ପଡ଼ିବ, ତହିଁରେ ଠାକୁର ପହୁଡ଼ିବେ । ଏଠାରେ ଶୀତଳ ଭୋଗ ହୋଇ ଟେରା ପଡ଼ିବ ।

ସନ୍ଧ୍ୟାଧୂପ:—ସକାଳ ଧୂପ ପରି ଷୋଡ଼ଶୋପଚାର ପୂଜା, ଏ ଧୂପରେ ଅଧିକ ବନ୍ଦାପନା, ସୁନାକାଠରେ ଜମ୍ବୁ ମଙ୍ଗଳ ଆରତିର ବନ୍ଦାପନା, ନାରାୟଣଙ୍କ ବେଢ଼ାବୁଲା, ଶୀତ ଭୋଗ. ଉପନ ଭୋଗ ବଡ଼ସିଂହାର ଅବକାଶ, ସଙ୍ଗଢ଼ ସଂହାର ଅବକାଶ, ପୁରାଣ ପାଠ, ତାମ୍ବୁଳ ଲାଗି, ହଡ଼ପ ନାଏକ ବଡ଼ଅ ଲାଗି, ଉତ୍ତମ ସିଂହାର ପିଠାକାଞ୍ଜି, ବାଟୁଳା ପଖାଳ ଇତ୍ୟାଦି । ଅଳଟ ବନ୍ଦାପନା ପରେ ଖଟଶେଯ ପଡ଼ିବ । ଶ୍ରୀମୁଣ୍ଡିମୁଚୁଳା ଗାଲମୁଚୁଳା, କୋଳମୁଚୁଳା, କୋଳ ମୁଠଳା ଶ୍ରୀପୟର

ମୁଚୁଳା ଦିଆଯିବ । କଳାପାହାର ସହିତ ଲୁଗା ପଡ଼ିବ । ସୁନା ଅର୍ଦ୍ଧନାସ୍ର ନାରାୟଣଦେବଙ୍କୁ ଫୁଲର ମଣ୍ଡାରୂଳ ଗୋଟିଏ ଅପେଟର ଦେଇ ଦହୁଡ଼, ଚନ୍ଦ୍ରଉଦଅ, ଛତ୍ର, ଚାମର, ଅଳଟ, ଖଣ୍ଡା, ସାଣ, ଗୀତଗାୟନ, ସୁନାବେତ ଏମାନ ମାହାଣମାନେ ଘେନ ପଶୁପାଳକ ବଜେ କରାଇ ଆଖି ଜଗମୋହନ ଦ୍ୱାରେ ସୁନା ଚଉଁରିଅ ଉପରେ ବଜେ କରାଇ ଜମ୍ବୁ ସିଂହାର ଶୀତଳ ଭୋଗ ୫ ଉପଚାରରେ ପୂଜା କରିବେ । ଅଳଟ ପରେ ପହଡ଼ ହେବ; ଖଟ ପାଖେ ଶୀତଳ ଭୋଗ ସିଂହାର ବଡ଼ା ହୋଇଥିବ । ଭିତର ଭଣ୍ଡାରମେକାପ ବାଇଘା ନେଇ ସିଂହାସନ ଗୁରୁପାଖେ ଶୋଧି ଆଣିବ । ଅଖଣ୍ଡମେକାପ ଛାମୁ ଅଖଣ୍ଡମାନ ଓ ବାହୁ-ଦୀପମାନ ବାହାର କରି ଆଣିଲା ପରେ କବାଟ ପଡ଼ିବ; ଏପରି ୭ ଭୋଗ, ୯ ସଂହାର ଶେଷ ହେବ । ୭ ଭୋଗର ମୂଲ୍ୟ ୧୨୨ ମାତ୍ର ୫ ଟଙ୍କା, ୯ ସିଂହାର ମୂଲ୍ୟ ମା ୧୪୯।୫ ଟଙ୍କା । ଏ ହିସାବେ ୩୬୫ ଦିନକୁ ମା ୫୪୫୭୭।୫ ଟଙ୍କା ।

୧୭ । ମହାଲକ୍ଷ୍ମୀ, ସବସ୍ୱଳ, ଅଷ୍ଟଶମ୍ଭୁ, ଅଷ୍ଟଚଣ୍ଡୀ ଦେଉଳ ଆୟତନ ମଧ୍ୟସ୍ଥ ଦେବତା, ବାଲ୍ଲନ ସଂହନାଥ, କ୍ଷେତ୍ରଆୟତନ ମଧ୍ୟସ୍ଥ ଦେବତା, ତୀର୍ଥ ପୂଜକ, ଜଳସ୍ଥଳ, ଆକାଶ, ଅନ୍ତରୀକ୍ଷ ଦେବତାମାନଙ୍କପାଇଁ ଦେଲେ ସୁନା ମା ୧୫୨୫।୨୫

୧୮ । କର୍ପୂରଚନ୍ଦନ ନଡ଼ିଆଳ ମା ୭୦୦୦୦

୧୯ । ନାନାପ୍ରକାର ପର୍ବଯାତ୍ରା ମା ୧୦୦୦୦

୨୦ । ଭୋଗ ପରୀକ୍ଷା ମା ୫୦୦୦୦

ପୋରେ ନାଏକ ମତ ଦେଲେ ଯେ ଏ ହିସାବରେ ଦେଲେ ଆୟକୁ ବ୍ୟୟ ବଳପାରେ, ସୁତରାଂ ଏ ଭିଆଣର ୩ ଭାଗରୁ ଭାଗେ ହେଲେ ସର୍ବଦା ରହି ପାରିବ । ତାଙ୍କ ମତ ସମୀଚୀନ ବୋଧ ହେବାରୁ ନିର୍ଣ୍ଣୟ ହେଲା ଯେ ସୁନା ମା ୪୦୦୦୦ ଡ଼ ଦିଆଯିବ ।

୨୨ ଅଙ୍ଗୁଳିଅ ଅଡ଼ାରେ ଗୁଉଳ ୧୪ ମାଣ, ତହିଁ ନଉତିରେ ଧାନ ୭ ଭରଣ ଲେଖାଏଁ ବର୍ଷକୁ ୨୫୨୦ ଭରଣ, ପର୍ବ ପର୍ବାଣି ୨୦୦ ଭରଣ । ଭରଣକୁ କଉଡ଼ି ୩୦ କାହାଣ ଲେଖାଏଁ ୫୧୦୦୦ କାହାଣ, ଶାରଦ ବଗଡ଼ା ଦାଣ୍ଡିଅ ୧୨୦୦୦୦ ଭରଣ, ଭରଣକୁ ୨୫ କାହାଣ ଲେଖାଏଁ ୨୫୫୦୦ କାହାଣ, ମୋଟରେ ୭୬୫୦୦୦ କାହାଣ । ସିଅ ସୃଡ଼ ଓଗେର କଉଡ଼ି ୧୪୮୫୦୦ କାହାଣ, ଗାଏ ୨୮୧୨୫୦

କାହାଣ । ଏଥି ମଧ୍ୟରେ ଧୋଇ ମରୁଡ ଲାଗି ୫୭୨୫୦ କାହାଣ । ୧୫ କାହାଣକୁ ୧ ମାଢ଼ ସୁନା ହେଲେ ୧୮୭୫୦ ମାଢ଼ ସୁନା ହେବ ।

୨୧—ଅନ୍ୟାନ୍ୟ ଦେବତାମାନଙ୍କ ଭୋଗ ଲାଗି ନିମ୍ନଲିଖିତ ପ୍ରକାରେ ବନ୍ଦୋବସ୍ତ । ଅଙ୍କ ସଂଖ୍ୟାକୁ ସେତେମାଢ଼ ସୁନା ବୋଲି ବୁଝିବାକୁ ହେବ ।

ମହାଲକ୍ଷ୍ମୀ ୮୦୦, ସତ୍ୟବଟ ୫୦୦, ଅଷ୍ଟଶମ୍ଭୁ, କ୍ଷେତ୍ରାଧିପତି ମାର୍କଣ୍ଡେଶ୍ୱର ୧୫୦, କପାଳମୋଚନ ୫୦, ବଟେଶ୍ୱର ୫୦, କାମଦେବ କ୍ଷେତ୍ରପାଳ ୫୦, ଈଶାନେଶ୍ୱର ୫୦, ନୀଳକଣ୍ଠେଶ୍ୱର ୫୦, ବିଲେଶ୍ୱର ୫୦, ବିମଳା ୯୦, ବଟମଙ୍ଗଳା ୩୦, ଦକ୍ଷିଣକାଳୀ ୩୦, ଚାମୁଣ୍ଡା ୩୦, ମରଚୁଇ ୩୦, ଅର୍ଦ୍ଧଶୋଷିଣୀ ୩୦, ସର୍ବମଙ୍ଗଳା ୩୦, ଲୋକନାଥ ୧୫୦, ନୃସିଂହନାଥ ୧୫୦, ନୃସିଂହ ୩୦, ବଟଗଣପତି ୭, ବଟ ହନୁମାନ ୭, ଗରୁଡ଼ଦେବ ୯, ଜମ୍ବୁବନସ୍ତ ଓଗେର ୪୦, କାଳଚକ୍ରନାରାୟଣ ୭, ଚତୁର୍ମୁଖ ବ୍ରହ୍ମା ୭, ଚନ୍ଦ୍ରସୂର୍ଯ୍ୟ ୧୨, ଇନ୍ଦ୍ର ୧୨, ଇନ୍ଦ୍ରାଣୀ ୭, ବଟବୃକ୍ଷ ୭, ରତାଇଦେବୀ ୭, ଉତ୍ତରକାଳୀ ୩, ଦକ୍ଷିଣକାଳୀ ୩, ବଳୀମାର୍କଣ୍ଡେଶ୍ୱର ୭, ପାତାଳେଶ୍ୱର ୭, ଜଟେଶ୍ୱର ୭, ବସୁଦେବ ଦେବକୀ ୭, ନନ୍ଦଯଶୋଦା ୭, ବାହାର ଭଣ୍ଡାର ଗଣପତି ୩, ବେଷଘର ମହାଲକ୍ଷ୍ମୀ ୭, ବେଷଗଣପତି ୩, ନାଟ୍ୟାରମ୍ଭ ଓ ବେଦ୍ଧରଣ ଗଣପତି ୩, ରୁକ୍ମିଣୀ, ସତ୍ୟଭାମା, ଜମ୍ବୁବତୀ, ମିତ୍ରବିନ୍ଦା, କାଳନ୍ଦୀ, ଭଦ୍ରା, ଲକ୍ଷଣା ୨୪, ବରାହ ନୃସିଂହ ନିବେଦନ ୧୮. ସୁବର୍ଣ୍ଣ ଦେବତା ଓ ନାରାୟଣ ୧୨. ରାମକୃଷ୍ଣ ୧୨, ଲକ୍ଷ୍ମୀନୃସିଂହ ୭. ଶଙ୍ଖ ଦେବତା ୯, ଦେଉଳ ସ୍ତରପ୍ରାଚୀର ଅଧିଷ୍ଠାତ୍ରୀଦେବତା ୩, କ୍ଷେତ୍ରଦେବତା ଶ୍ୱେତ ଓ ମତ୍ସ୍ୟ ମାଧବ ୧୮. ତଣ୍ଡାମସ୍ତୁ ଦେବ, ଉଗ୍ରସେନମାଧବ ୭୭, ରୁକ୍ମିଣୀ ମାଧବ ୭. ସମୁଦ୍ରକୂଳ ହନୁମନ୍ତ ୩, ଶ୍ରୀଧର ଦେବ ୩ ଇନ୍ଦ୍ରଦ୍ୟୁମ୍ନ ସର୍ବେଶ୍ୱର ବୁଢେଶ୍ୱର ୧୨. ଇନ୍ଦ୍ରମାଧବ ୩, ବୃଦ୍ଧଗଣପତି ୩, ଇନ୍ଦ୍ରଦ୍ୟୁମ୍ନରାଜା ୩, ଗାଲମାଧବ ରାଜା ୩, ପଞ୍ଚଦେବତା ପୂଜା୭, ସାହିଦେବତା ହରଚଣ୍ଡୀ୩, ବରାହଦେବୀ ୩, ନାରାୟଣୀଦେବୀ ୩, ଯାଗୁଲାଇ ୩. ମାଣ୍ଡଦେବୀ ୩, କାଳିକା ୩, ସିଦ୍ଧେଶ୍ୱର ୩, ଅଲଣାଦେବୀ ୩, ମାଣ୍ଡି ମଣ୍ଡପସାହି ଭିତର ଇଚ୍ଛାପୁର ସାହି କାଳିକା ୩, ଦଇତାପଡ଼ା ଯାଗୁଲାଇ ୩; ଗଉଡ଼ବାଡ଼ସାହି ଯାଗୁଲାଇ ୩, କପଟେଶ୍ୱର ଦେବୀ ୩. ଚକ୍ରଙ୍ଗ ସାହି ଭୂତଙ୍ଗ ରାଜା ୭, ପଣ୍ଡାସାହି ନୃସିଂହନାଥ ୩, ବଳଗଣ୍ଡି ବଳବାମନ ୩, ଗୁଣ୍ଡିଚାଘର ପଞ୍ଚ ଦର୍ଶଙ୍କ ପୂଜା ୨୪, ମହୋଦଧି ତୀର୍ଥପୂଜା ୭, ମାର୍କଣ୍ଡ ୩, ଶ୍ୱେତଗଙ୍ଗା ୩, ମଣିକର୍ଣ୍ଣିକା ୩, ଇନ୍ଦ୍ରଦ୍ୟୁମ୍ନ ୩, ଜଳ ସ୍ଥଳ ଆକାଶ ଦଶଦିଗପାଳ ୭, ମଶାଣିଚଣ୍ଡୀ ୨ ।

୨୨—ମହିଆଲ ଭିଆଣ ଅର୍ଥାତ୍ ଦେବତାମାନଙ୍କ ଲୁଗାପାଟ, ପତନୀ, ନେତ, ସିନ୍ଦୁଆ, ଧ୍ୱଜାପତନୀ, ଶୁକ୍ଳଲୁଗା, ବାନ୍ଧ ଲୁଗା ମା ୨୦୦୦ ଢ଼ ସୁନା ।

୨୩—କର୍ପୂର ଚନ୍ଦନ ପ୍ରଭୃତି—ଚନ୍ଦନ ୨୦୦--ବିଶା. ( ବିଶାକୁ ସୁନା ମା ୨ ) ଅଗୁରୁ ୧୦୨ ବିଶା ( ବିଶାକୁ ୪ ମାଢ଼ ) କର୍ପୂର ୩୭୫ ତୋଳା ( ତୋଳାକୁ ମାଢେ ) କସ୍ତୁରୀ ୧୫୦ ତୋଳା ( ତୋଳାକୁ ୧୪ ମାଢ଼ ) କୁସୁମ ୧୫ ବିଶା (ବିଶାକୁ ୭ ମାଢ଼) ଶିଳ୍ଭଆ ୧୫୦୦ ତୋଳା ( ୧୫ତୋଳାକୁ ସୁନା ୧ ମାଢ଼ ) ପଞ୍ଜର ପାଣିକାଠ ୧୦୦ ( ସାତଚନା ଲେଖାଏଁ )

୨୪ ପର୍ବ ଯାତ୍ରା—ଅଙ୍କକୁ ଏତେ ମାଢ଼ ସୁନା ବୁଝିବାକୁ ହେବ ।

ମକରଯାତ୍ରା ୧୭୭, ବସନ୍ତପଞ୍ଚମୀ ୩, ବସନ୍ତୋତ୍ସବ ୧୦, ରାମଉତ୍ସବ ୧୦, ମାଘଷଷ୍ଠୀଯାତ୍ରା ୫ ଚନା, ଶିବରାତ୍ରି ୭୦, ବେଣ୍ଠଉତ୍ସବ ୧୫, ଫଗୁଗୃହେସେ ୩୦, ଅଗ୍ନିଉତ୍ସବ ୩, ଦୋଳଯାତ୍ରା ୧୦୦, ଅଶୋକାଷ୍ଟମୀ ୨, ରାମଜନ୍ମ ୧୦, ଦମନକ ଯାତ୍ରା ୫, ପଣାସଂକ୍ରାନ୍ତି ୨୦. ଅକ୍ଷୟ ତୃତୀୟାଠାରୁ ଚନ୍ଦନ ୨୧, ଦିନ ୧୦୦, ବୈଶାଖ ଶୁକ୍ଳଚତୁର୍ଦ୍ଦଶୀ ନୃସିଂହ ଉତ୍ସବ ୧୫, ମାର୍କଣ୍ଡେଶ୍ୱର ବିବାହ ୫, ଶୀତଳଷଷ୍ଠୀ ୧୦, ଦଶହରା ୧, ପଦ୍ମଲାଗି ଏକାଦଶୀ ୩, ରୁକ୍ମିଣୀବିବାହ ୧୦, ଚମ୍ପକଯାତ୍ରା ୫, ନୃସିଂହସ୍ଥାପନ ୧୦, ଦେବସ୍ନାନ ୧୮୦, ଦକ୍ଷିଣ ମୂର୍ତ୍ତି ଯାତ୍ରା ୨୦, ଅଣସର ୧୨୦. ଶ୍ରୀଗୁଣ୍ଡିଚାଯାତ୍ରା ୧୨୦୦, ଅୟନଯାତ୍ରା ୫, ଚିତାଲାଗି ୫, ଅଙ୍ଗାଭରଣ ଯାତ୍ରା ୧୦, ବଳଭଦ୍ରଜନ୍ମ ୫, ଗମ୍ଭାପର୍ବ ୫, କୃଷ୍ଣ ଅଷ୍ଟମୀ ୨୦, ସାତପୁରୀ, ୩୦, ହରତାଳିକା ୨, ମହାଲକ୍ଷ୍ମୀଙ୍କ ଋଷି ପଞ୍ଚମୀ ୫, ଚନା, ପାର୍ଶ୍ୱ ପରିବର୍ତ୍ତନ ୫, ଲକ୍ଷ୍ମୀବ୍ରତ ୩, ଷଷ୍ଠୀ ୫, ଚନା ଭାଦ୍ର ଶୁକ୍ଳ ଦ୍ୱାଦଶୀ ପବିତ୍ର ଆଭରଣ ୨୦, କମଳାକ୍ଷୀଙ୍କ ୧୬ ଦିନ ୨୫, ଅପରାଜିତା ୫, କୁମାରୋତ୍ସବ ୧୦୦, ତୁଳାସଂକ୍ରାନ୍ତି

୫, କାର୍ତ୍ତିକ ବାଲଧୂପ ୪୫, ଏ ମାସର ପାଞ୍ଚଦିନ ଲକ୍ଷବତୀ ୫୦୦, ଯମଦ୍ୱିତୀୟା ୧, ସ୍ଥାପନ ଯାତ୍ରା ୫, କାର୍ତ୍ତିକପୂର୍ଣ୍ଣିମା ଗୋବର୍ଦ୍ଧନାଭିଷେକ ୨, ପ୍ରଥମାଷ୍ଟମୀ ୧୦, ଦୀପାବଳୀ ୧୦, ଓଢ଼ଣ ଯାତ୍ରା ୧୦୦, ପଣ୍ଡୁପର୍ବ ୧, ଧନୁଭୋଗ ୩୦, ପୁଷ୍ୟାଭିଷେକ ୧୦୦, ଉତ୍ଥାପନ ଯାତ୍ରା ୩, କପଟେଶ୍ୱର ୧, ବେଢ଼ା ପାଳ ଯାତ୍ରା ୩୬୨, ପାଳ ପାଳକୁ ୩ ଟଙ୍କା ଲେଖାଏଁ, ଲକ୍ଷ୍ମୀ ନାରାୟଣ ଅଭିଷେକ ୮, ଅନନ୍ତ ପୁରୁଷୋତ୍ତମ ଦେବଙ୍କ ଅନନ୍ତ ଚତୁର୍ଦ୍ଦଶୀ ୩, ଯମେଶ୍ୱର; ନାରିକେଶ୍ୱର ଓ ମାର୍କଣ୍ଡେଶ୍ୱରଙ୍କ ୨୩ ପାଳ ମା ୬୨୧ ଟଙ୍କା, ଗ୍ରହଣ ଶୀତଳ ଭୋଗ ୫, ମୋଟରେ ମା ୨୧୧୧୦ ଢ଼ ସୁନା ।

୨୫ ( ୧ ) ୫୨ ମଠ ସନ୍ନ୍ୟାସୀ ଏମାନେ ପ୍ରତିଦିନ ଦେଉଳରୁ ମହାପ୍ରସାଦ ପାଇବେ ।

ଏମାନଙ୍କ ସେବାକାର୍ଯ୍ୟ ଲାଗି ବ୍ରହ୍ମଗୃହୀ ୧ ଜଣ ଲେଖାଏ ଏପରି ୧ମଠର ବର୍ଷରେ ଖର୍ଚ୍ଚ ଲାଗି

| | |
|---|---|
| ସୁନା ୨୦ ମାଢ଼କୁ | ମା୧୦୪୦ |
| (୨) ମୁଦ୍ରାହସ୍ତ ମଠ | ମା୪୫୦ |
| (୩) ଅଠର ବ୍ରହ୍ମପୁର ମହାଜନ ଜଂ୧୩୧୩ଣ | ମା୨୬୨୬ |
| (୪) ତୀର୍ଥବାକ୍ୟକର୍ତ୍ତା ଜ୨୦ଣ | ମା୨୫୮୬ |
| (୫) ମହାପୁରୁଷ ପାଣିଗ୍ରାହୀ ଜ୨ଣ | ମା୪୦ |
| (୬) ଦଇତା ପଶୁପାଳକ | ମା୩୦୦ |
| (୭) ପାଣିଛଡ଼ାପଣ୍ଡା | ମା୨୦୦ |
| (୮) ସିଂହାରୀ ପଶୁପାଳକ | ମା୧୦୦ |
| (୯) ଗ୍ରମୁଖୁଣ୍ଡିଆ | ମା୮୦ |
| (୧୦) ଶ୍ରୀମୁଖସିଂହାରୀ | ମା ୬୦ |
| (୧୧) ଗୁଣ୍ଡୁଚା ମେକାପ | ମା୩୧୦୦ |
| (୧୨) ଅଖଣ୍ଡ ମେକାପ | ମା ୩୦ |
| (୧୩) ସୁଆର ବଡ଼ୁ | ମା ୩୦ |

ପନ୍ତିବଡ଼ୁ ୨୦୦, ଶୋଯଘର ମେକାପ ୨୦, ପାହାଡ଼ା ଘର ମେକାପ ୧୦, ଅସ୍ଥି ମହାଜନ ୫୦, ସୁଦୁ ସୁଆର ୪୦, ଭିତର ଗରାବଡ଼ୁ ୩୦, ବାହାର ଗରାବଡ଼ୁ ୪୦, ହଡ଼ପ ନାୟକ ୨୦, କଉଟିଆ ମୁଦୁଲି ୪୦, କର୍ପୂର ଚନ୍ଦନ ଘଷୁଆର ୩୦, ବେଷେଯ୍ୟା ସେବକ, ଭିତ ସୁଆର ଓଗେର ଛତଶା ନିଯୋଗ ୩୬୩ଜଣକୁ ସେବା ୩୬, ବୋଷଲୁଅରୁ ପାଣି କାଢ଼ି ବହି ଆଣିବାକୁ ବଇଠା ପାଳିଆ ୧୨୩ଜଣକୁ ସେବା ୧୨, ଗୃହଳଧୂଆ ୪ଜଣକୁ ସେବା ୪, ଧାଣ୍ଡିରେ ଗୃହଳ ଭରି ୪ଜଣକୁ ସେବା ୪, ଝୋଲା ଲଗାଇ କାଠ ଟାଣିବାକୁ ୪ଜଣକୁ ସେବା ୪, କାଠଚଟୁ ଘେନି ଦାଣ୍ଡିରେ ଭାତ ଚଲାଇବାକୁ ଚଲଣିଆ ଜ୪ଣକୁ ସେବା ୪, ଏପରି ନାୟକ ସେବକ ୩୬ ଏମାନେ ପୁଅଭାଇ ଘେନି ଖଟଣି ବୋଲଣା କରିବେ ଏବଂ ୧୫୦ମାଢ଼ ସୁନା ବର୍ତ୍ତନ ପାଇବେ । ତିଅଣ ସୁଆର ବର୍ତ୍ତନ ୬୦ମାଢ଼, ଦେଉ ସୁଆର ୪୦, ସାରେଖାଯ୍ୟ, ପିଠା ସୁଆର ୧୦, ମହାସୁଆର ୫୦, ବ୍ରାହ୍ମଣ ସମର୍ଥା ୨୦, ଶୂଦ୍ର ସମର୍ଥା ୨୦, ତୋଳାବଡ଼ୁ ୪୦, ତଳବଡ଼ୁ ୨୦, ପନ୍ତିବଡ଼ୁ ୩୦, ଭିତର ବଢ଼ା ୨୦, ଘିଅପରସା ୫, ତୋଳାବଡୀ ସେବକ୫, ରୋଷରୁ ଭୋଗ ବହି ଆଣିବାକୁ ଗିନାତାଟି ଝାଡିବା ସେବକ ୧୦, ରୋଷ ସରଘର ମେକାପ ୧୦, ରୋଷ ବ୍ରାହ୍ମଣ ୧୦, ଅଙ୍ଗାର ପାଉଁଶ କଢ଼ା ସେବକ ୫, ରୋଷ ଯୋଗଶାଳ ସେବକ ୫, ଦ୍ୱାରନାୟକ ୧୦, ଫାରକ ମୁଦୁଲି ୫୦, ପ୍ରସାଦବଡୁ ୪୦, ଫୁଲବଡୁ ୨୦, ସିଂହଦ୍ୱାର ପ୍ରତିହାରୀ ୩୦, ଅସ୍ଥାନ ପଢ଼ିଆରୀ ୧୦, ପର୍ବଯାତ୍ରା ପଢ଼ିଆରୀ ୧୦, ଛତ ସେବକ ୫, କାଯ ସେବକ ୫, ଚଅଁର ସେବକ ୨୦, ରତ୍ନ ଅଲଟ ସେବକ ୨୦, ଖଣ୍ଡି ସେବକ ୧୦, ଧ୍ୱଜାଧରୀ ସେବକ ୧୫, ସୁନାବେତ ସେବକ ୧୦, ସୁନା ବନ୍ଧୁକ ସେବକ ୨୦, ପୁରାଣପଣ୍ଡା ସେବକ ୧୦, ମଣ୍ଡଣୀ ବୃନ୍ଦାବନ ନାଏକ ୧୦, ମଣ୍ଡଣୀ ଖୁଣ୍ଟିଆ ୬, ଦରପଣିଆ ୬, ବମାନ ବଡୁ ୨୦, ହାନ୍ଦୋଳା ଅପଟ ୨୦, ବମଳା ଖଟଣୀ ୨୦, ସୁଧଘର ସେବକ ମହାଭୋଇ ୩୦, ଅଲତି ସେବକ ୨୦, ଦୁଧଘର ପାଇକ ୫, ସୁନାରୁପା କଂସା ତମ୍ବା ଯୋଗାଡ଼ ମଜାସେବକ ୧୦, ଛତା ବନ୍ଧାଣି ୧୦, ରତ୍ନକମ ବନ୍ଧାଣୀ ୨୫, ମାଠ କମବନ୍ଧାଣୀ ୩୦, ଚନରୀ ସେବକ ୨୦, ସିପୁଟୀ ମାହାରଣା ୩୦, ଘଣ୍ଟୁଆ ସେବକ ୪୦, ଗାର କାହାଳିଆ ୧୦, ପାଟରା ବନ୍ଧାଣୀ ୧୦, ବେଣ୍ଟବନ୍ଧା ବଉତ ୬, ପାହାନ୍ତ ପାଣି ଶଙ୍ଖୁଆ ୧୦, ମାଦେଳିଆ ୧୦, ଶଙ୍ଖମହୁରିଆ ୧୦, ଉପାଦିଆ ୫, ଯୋଗ କାହାଳିଆ ୬, ଘଣାକାର ୧୦, ଗୀତ ଗାୟୁଣୀ ୧୦, ଚଉଷଠୀ ସମ୍ପ୍ରଦାୟ ୧୮୦, ମୀନା ନାୟକ ୫, ବାହାର ପହଁରୀ ୫, ଜ୍ୟୋତିଷ ମହାରଣା ୧୦, ଖୁରୀ ଜଗାସେବକ ୧୦, ଦଯୁଣା ମାଳୀ ୪, ପଣ୍ଡା ପଶୁପାଳକମାନଙ୍କ ଓ ରୋଷ ସୁଆର ସେବକମାନଙ୍କ ଗୋଡ଼ଧୂଆ ପାଣି ଖଟିବା ସେବକ ୫, ବଢେଇ ମାହାରଣା...୪୬ [illegible]

ପାହାରଣୀ ୩୦, ପଥୁରିଆ ମାହାରଣା ୩୦, ରୂପକାର ମାହାରଣା ୩୦, ଚନ୍ଦକାର ମାହାରଣା ୧୨, ଚୂନର ମୁଦୁଲି ଦେଉଳ ଉପରୁ ଚଳ କାଟିବା ଅଧିକାରୀ ୫୦, ତାମରା ମାହାରଣା ୩୦, କଂସାରି ମାହାରଣା ୧୦, ଅଷ୍ଟଲୌହ ମାହାରଣା ୧୦, କାଚରା ମାହାରଣା ୭, ଓଡରା ୮, ମଟିଆଳ ମହାସେଠୀ ୫୦, ବାରଗୋଟ ଗାଈ ରକ୍ଷକ ୨୫୦, ସୁଆଁସିଆ ୮୦, ରଥ କଟା ଦହୁଡ ବଳା ସେବକ ୧୦, ଗୁପଦଳାଇ ୩୦, ଯବନ ଉପଦ୍ରବ ନିମନ୍ତେ ମାଣିକପାଟଣା ଖାଲକଟା ପାଟଣା ମୁହାଣ ମୁହଁରେ ଡଙ୍ଗା ସେନ ଜଗିଥିବା ଆରଆ ४०, ଭାଟ ସେବକ ୧୦, ଭଣ୍ଡାର କରଣ ୫୦, ଦେଉଳ କରଣ ୫୦, ଷେନ ବୈଦ୍ୟ ୫୦, ଶସ୍ତ୍ର ବୈଦ୍ୟ ୫୦, ସୁହାସ ଉଧାନ ୨୦, ଚକରଅ ଲେଙ୍କା ४०, ଚୂହିଣୀ ୧୦, ଢୋଲଦମା ସେବକ ୧୦, ଦହୁଡିଆ ୩୦, ଧାନଘର ପାଇକ ୧୦, ଧାନମାପ ମୁଦୁଲି ୧୦, ଦୁଆର ଦଳେଇ ୨୦୦, ଦଣ୍ଡୁଆ ଡଗର ୧୦, ମାଙ୍ଗି ପାଇକ ୮୦, ସୁଣ୍ଡିଗୁନବର ଜଗିଆ ୮, ବାହାର ଦେଉଳ ମହାଲକ୍ଷ୍ମୀ ଦେଉଳ ସେବକ ୧୦୦, ସର୍ବେଶ୍ୱର ଦେଉଳ ସେବକ ୭୦, ଅଗ୍ନୁରୁ ବୃକ୍ଷ, ନୃସିଂହନାଥ ସେବକ ୩୦, ଅଷ୍ଟଶମ୍ଭୁ ଦେଉଳ ସେବକ ୧୧୦, ସକଳପୁର ଲାଉକେଶ୍ୱର ସେବକ ୨୦, ଅଷ୍ଟଚଣ୍ଡୀ ସେବକ ୫୫, ଗୁଣ୍ଡିଚା ନବର ଦଣ୍ଡୀସେବକ ୫, କ୍ଷେତ୍ରର ଅନ୍ୟାନ୍ୟ ଦେବତାମାନଙ୍କ ସେବକ ୫୦, ତୀର୍ଥ ପୁଷ୍କରଣୀମାନଙ୍କରୁ ବର୍ଷକୁ ବର୍ଷ ପଙ୍କକଢ଼ା ସେବକ ୨୦, ତୋଟାଗଛ ତଳ ସେବକ ୩୦୦, ପଦ୍ମକଦଳୀ ତୋଟା ସେବକ ୭୦, ଜଗମୋହନ ବଇଠା ହୁଳାଟର ତେଲପକା ସେବକ ୨୦, ବାଦ୍ୟକାର ୨୦, ପସାରୀ ୩୦୦, ପଟ୍ଟନାୟକ ୮୦, ବେହରଣ ଡଗର ୭୦, ସୁଆଁସିଆ ଡଗର ୭୦୦ କର ଅଦାଏ ୧୦୦୦ ।

ଯେତେ ପ୍ରକାର ସେବକ ଓ ଯାହାଙ୍କର ଯାହା ବର୍ତ୍ତନ ଶିକ୍ଷା ହୋଇଥିଲା ତାହା ଉପରେ ଦିଆଗଲା । ନାମରୁ ସେବକର କର୍ତ୍ତବ୍ୟ କାର୍ଯ୍ୟ କେତେକ ଜଣା ପଡୁଅଛି ମାତ୍ର କେତେକ ସ୍ଥଳ ସୁବୋଧ ନୁହେଁ, ସୁତରାଂ ସେମାନଙ୍କ କାର୍ଯ୍ୟର ବିବରଣ ନିମ୍ନରେ ସଂକ୍ଷେପରେ ଦିଆଗଲା । ପ୍ରାଚୀନ ପ୍ରଚଳିତ ଶବ୍ଦମାନ ଅବିକଳ ଲେଖା ଯାଇଛି; କାରଣ ଏଥିରୁ ପ୍ରାଚୀନ ଭାଷାର ପରିଚୟ ମିଳିବ ।

୨୬—ଦଇତା ପଶୁପାଳକ—ନୀଳମାଧବ ଅବତାର ସମୟରେ ବିଶ୍ୱାବସୁ ଶବର ସେବା କରୁଥିଲେ । ଏମାନେ ଦାରୁବ୍ରହ୍ମ ଅବତାରରେ ଶୂଦ୍ର ଦଇତା ସେବକ ହେଲେ । ବିଦ୍ୟାପତି ବ୍ରାହ୍ମଣ ନୀଳମାଧବଙ୍କୁ ଦେଖି ଯାଇ ଇନ୍ଦ୍ରଦ୍ୟୁମ୍ନ ମହାରାଜାଙ୍କୁ ସମ୍ବାଦ ଦେଇ ଥିବାରୁ ସେ ବ୍ରାହ୍ମଣ ସେବକ ହେଲେ । ସୁତରାଂ ଏ ଦୁଇ ସେବାର ନାୟକ ଅର୍ଥାତ୍ ଯେ ବୟସରେ ବଡ଼ ସେ ତାର ପୁଅ ଭାଇମାନଙ୍କୁ ଯେନ ସେବା ଖଟେ, ଶ୍ରୀମୁଣ୍ଡଠାରୁ ଶ୍ରୀପୟର ପର୍ଯ୍ୟନ୍ତ ବାମାର୍ଦ୍ଧ ଦଇତାମାନେ ସେବା କରନ୍ତି ଏବଂ ଦକ୍ଷିଣାର୍ଦ୍ଧ ପତିମାନେ ସେବା କରନ୍ତି । ଦଇତାମାନେ ବନରୁ ଦାରୁ ଆଣିବେ । ଠାକୁରମାନଙ୍କ ଶ୍ରୀଅଙ୍ଗ ବୈଗମ ହେଲେ ସେମାନଙ୍କୁ କର୍ମକୁଟି ଘରକୁ ବିଜେ କରାଇବେ । ଅଣସର ତାଟି ଭିତରେ ୧୫ ଦିନ ସେବା କରିବେ । ଦେବସ୍ନାନ ଠାରୁ ବାହୁଡ଼ା ପର୍ଯ୍ୟନ୍ତ ସେବା କରିବେ, ସେଣ୍ଠା ଲାଗି କରିବେ ।

୨୭—ପଣୀଛଡ଼ା ପଣ୍ଡାସେବକ—ଏ ୧୩ଜଣ, ଏମାନଙ୍କ ମଧ୍ୟରୁ ଜଣେ ମାସେ ପର୍ଯ୍ୟନ୍ତ ସମୁଦ୍ର ତୀରରେ ଜପ କରିବା ପରେ ଅଗ୍ନି ପୂଜା କରିବେ । ଏମାନେ ଶ୍ରୀମୁଖ ପଖାଳା ସେବା କରିବେ ।

୨୮—ପଶୁପାଳକ ସେବକ—ଏମାନେ ଦର୍ପଣ ଦେଖାଇ ଶ୍ରୀମୁଖ ପ୍ରକ୍ଷାଳନ, ଦାନ୍ତକାଠି ଲାଗି, ଆଚମନ, ଧୂପଦୀପ ସହିତ ଶ୍ରୀମୂର୍ତ୍ତିରେ ପଞ୍ଚାମୃତ ସ୍ନାନ, ସୁଗନ୍ଧ ଅର୍ପଣ ଲାଗି ଇତ୍ୟାଦି କରାଇବେ ।

୨୯—ଛାମୁ ଖୁଣ୍ଟିଆ ସେବକ—ସିଂହାସନ ଜଗିବ, ଫୁଲତୋଟା ମାଳିମାନଙ୍କଠାରୁ ପ୍ରତ୍ୟହ ଫୁଲ, ଚୂଳ, ମାଳ, କରପଲ୍ଲବ ଇତ୍ୟାଦି ଆଣି ସରଘରେ ସାଇତି ରଖିବ । ଅବକାଶ ବେଳକୁ ସିଂହାରିମାନଙ୍କୁ ହକାରି ଆଣିବ । ଅବକାଶ ବେଳେ ଫୁଲମାନ ବଢ଼ାଇ ଦେବ, ଭଣ୍ଡାର ମେକାପଠାରୁ କର୍ପୂର ମାଗିଆଣି ଦେବ ଇତ୍ୟାଦି ଡକରା ହକରା କାର୍ଯ୍ୟ କରିବ । ଅଣସର ଦ୍ୱାରେ ଜଗିବ ଇତ୍ୟାଦି ।

୩୦—ଶ୍ରୀମୁଖସିଂହାରୀ ସେବକ—ଏ ସେବା ଦଇତାପତିଙ୍କର । ଏ ଶ୍ରୀମୁଖ ପୋଛିବ, ଖଡଲାଗି କରାଇବ, କନକ ଲାଗି କରାଇବ, ନେତ୍ରୋତ୍ସବ ଯାତ୍ରାବେଳେ କଳାତୋଳା ଦେବ ଇତ୍ୟାଦି ।

୩୧—ଶୃଙ୍ଗାର ମେକାପ—ଏ ବେଶ ମଡ଼ିଅଲମାନ ପଣ୍ଡା-ପାଳଙ୍କ ହାତକୁ ବଢ଼ାଇ ଦେବ । ଗଣ୍ଡାକୁ ଗଣ୍ଡା ଉଲଗି ହେଲେ ବାଛୁଡ଼ା କରି ପାଞ୍ଜି ପ୍ରମାଣେ ଗଣାଣ କରି ଭଣ୍ଡାର ମେକାପ ମୂଳେ ଦେବ ।

୩୨—ଭିତର ଭଣ୍ଡାର ମେକାପ—ଏ ସମସ୍ତ ଅଯୁ ଅଳଙ୍କାର ଅଦ ଭଣ୍ଡାରଘର ସାଇତିବ ।

୩୩—ଅଖଣ୍ଡ ମେକାପ—ଏ ବଇଠା ବସାଇବ ।

୩୪—ସୁଆର ବଡ଼ୁ ସେବକ—ମଇଲମବେଳେ କାଠଯୋଡ଼ା ବଢ଼ାଇ ଦେବ । ଭୋଗ ପରେ ପାଣି ପକାଇ ଧୋଇବ, ପାହାଡ଼ା ପକାଇବ, ଅଳତି ସକାଶେ ଘେଷରୁ ନିଅଁ-ଅଣିଦେବ, ପଣ୍ଡାମାନଙ୍କୁ ଅଳତି ବଢ଼ାଇ ଦେବ ଇତ୍ୟାଦି ।

୩୫—ପଳିବଡ଼ୁ ସେବକ—ପୂଜାର ସମସ୍ତ ଉପକରଣ ପଣ୍ଡା-ମାନଙ୍କୁ ବଢ଼ାଇ ଦେବ ।

୩୬—ଭିତର ଗରାବଡ଼ୁ—ଏ ଅବଶ୍ୟକ ବେଳେ ପାଣି ଧରି ଖଟିବ ।

୩୭—ବାହାର ଗରାବଡ଼ୁ—ଏ ଘେଷକୁ ପାଣିଦେବ ।

୩୮—ହଡ଼ପନାୟକ—ଏ ବିଡ଼ିଆ ପଣ୍ଡା ହାତକୁ ବଢ଼ାଇ ଦେବ ।

୩୯—ବିଡ଼ିଆ ଯୋଗଣ ସେବକ—ଏ ପାନ ସଂଗ୍ରହ କରି ଅଣିବ ଏବଂ ହଡ଼ପନାଏକଙ୍କୁ ଦେବ ।

୪୦—ସୁଦୁସୁଆର ସେବକ—ମୁଣୋହି କୋଠରୁ ଜଗ-ମୋହନ ପର୍ଯ୍ୟନ୍ତ ପରିଷ୍କାର କରିବ, ପଞ୍ଚାମୃତ ଖଟିବ, ମୁଗ ଭିଜାଇବ, ପରିବା କାଟିବ, ମୁଣୋହି ପାଚିଲା କଦଳୀ ପ୍ରଭୃତି ଦେବ, ଦୂବ ବରକୋଳି ପତ୍ର, ହଳଦିଆ ଗୁଡ଼ଳ ପ୍ରଭୃତି ଦେବ, ପୂର୍ଣ୍ଣକୁମ୍ଭ କରାଇବ ଇତ୍ୟାଦି ।

୪୧—ବ୍ରାହ୍ମଣ କରଟିଆ ମୁଦୁଲି ସେବକ—ଚନ୍ଦନ ଘୋରିବ ବା ଘଟୁଆରି ।

୪୨—ଜମ୍ବୁ ମଙ୍ଗଳ ଅରତୀସେବକ—ଅଳତି କରିବ ।

୪୩—ପ୍ରସାଦବଡ଼ୁ ସେବକ—ପ୍ରସାଦ ନେଇ ରଜାଙ୍କ ଉଆସରେ ଦେବ ।

୪୪—ଫୁଲବଡ଼ୁ ସେବକ—ଏ ଫୁଲ ପ୍ରସାଦ ନେଇ ରଜାଙ୍କ ନଅରରେ ପହଞ୍ଚାଇବ ।

୪୫—ବିମାନବଡ଼ୁ ସେବକ—ଏମାନେ ବିମାନ କାନ୍ଧେଇବେ ।

୪୬—ହାଣ୍ଡୋଳାବଡ଼ୁ ସେବକ—ଠାକୁରାଣୀଙ୍କ ହାଣ୍ଡୋଳା କାନ୍ଧେଇବେ ।

୪୭—ଦରପଣିଆ ସେବକ—ଏ ଦର୍ପଣ ଦେଖାଇବ ।

୪୮—ପୁରାଣ ପଣ୍ଡା ସେବକ—ପୁରାଣ ପାଠ କରିବେ ।

୪୯—ଧ୍ୱଜଧରା ସେବକ—ଗରୁଡ଼ଧ୍ୱଜ, ତାଳଧ୍ୱଜ, ପଦ୍ମଧ୍ୱଜ ମାନ ମୁଣୋହି ବେଳେ ଧରିବ ।

୫୦—ହାସ ସେବକ—ହାସ ଧରିବ ।

୫୧—ଚାମର ସେବକ—ଚାମର ଧରିବ ।

୫୨—ଅଲଟ ସେବକ—ଅଲଟ ଧରିବ ।

୫୩—ସୁନାବେତ ସେବକ—ବେତ ଧରିବ ।

୫୪—ଖଡ଼ିବଣା ସେବକ—ଖଡ଼ି ବାଣ୍ଟିବ ।

୫୫—ପାହାନ୍ତି କବାଟଫିଟା ସେବକ—କବାଟ ଫିଟାଇବ ।

୫୬—ଦୟଣା ମାଳଗୋଛୁଡ଼ି ସେବକ—ଦୟଣା ତୋଟା ଅରାଧିବ ଏବଂ ଦୟଣାମାଳ ଯୋଗାଇବ ।

୫୭—ଯୋଗାଡ଼ି ମଜା ସେବକ—ଏ ବାସନ ମାଜିବ ।

୫୮—ପାଣିଆପଟ ସେବକ ଏ ପାଣି ଅଣିଦେବ ।

୫୯—ରହୁକାମ ବିନ୍ଧାଣି—ଏ ରହୁକାମମାନ କରିବ ।

୬୦—ଅନ୍ୟାନ୍ୟ ସେବକମାନଙ୍କ କାର୍ଯ୍ୟ ସେମାନଙ୍କ ନାମରୁ ଜଣାଯିବ, ବିଶେଷ ବିବରଣ ଅନାବଶ୍ୟକ । ଚିତ୍ତରି ମହାରଣା ସିପୁଟି ମହାରଣା (ଏ ଚିତ୍ର ଦେଇ ଲୁଗାମାନ ଗଣାମଣା କରିଦେବ) ଘଣ୍ଟାବାଜଣା ସେବକ, ଖାର କାହାଳିଆ ସେବକ, ପାହାନ୍ତି ଅବକାଶ ନିଦ୍ରା ଆଳସ୍ୟ ଭାଙ୍ଗିବାକୁ ପାଣି ଶଙ୍ଖୁଆସେବକ, ଧୂପଗଙ୍ଗ ମହୁରିଆ ସେବକ, ମାଦଳ ମୃଦଙ୍ଗ ସେବକ, ଯୋଡ଼ା କାହାଳି ସେବକ, ଉପାଙ୍ଗିଆ ସେବକ (ଏକପ୍ରକାର ବାଜା) ୭୪ ସମ୍ପ୍ରଦାୟ ମଧ୍ୟରେ ୨୦ ନାଚୁଣୀ, ମୀନନାୟକ (ଏ ନାଚୁଣୀମାନଙ୍କୁ ଘରୁ ଡ଼ାକି ଅଣିବ) ଗୀତ ଗାଆଣି ସେବକ, ଯନ୍ତ୍ରକାର ସେବକ, ରବାଜ ସେବକ (ଏକ-ପ୍ରକାର ବାଜା) ବଢ଼େଇ ମହାରଣା ସେବକ, କରଣୀ ମହାରଣା, ଦହିଡ ସେବକ, ତାମ୍ବା ମହାରଣା, କଂସାର ମହାରଣା, ପାଟରା ବିନ୍ଧାଣୀ, ମୁଗନି ଘଟୁଆରି, ଘେଷ ଛତଣା ନିଯୋଗ, ପିଠାସୁଆର, ବଡ଼ଡ଼ା ପିଠାସୁଆର, ମହା ସୁଆର (ରାନ୍ଧିବ), ଖିରିସୁଆର, ତଉଣି ସୁଆର, ପଣାସୁଆର, ପାଚେଲି ସୁଆର, ଡୋଳାବଡ଼ୁ (ମୁହଁରେ ଲୁଗାବାନ୍ଧି ଅନ୍ନ ପ୍ରଭୃତି ବହି ଅଣିବ) ପନ୍ତିବଡ଼ୁ (ଅନ୍ନ-ପ୍ରଭୃତି ବାଢ଼ିବ) ଭିତର ବଢ଼ା ସେବକ, ଘିଅ ପରସା

କ୍ଷଣକ ସହଜରେ ମନୁଷ୍ୟ ମତ । ପ୍ରଭଞ୍ଜନର ବେଗ ଅଲେଖ ଗତ ।

ସେବକ ବ୍ରାହ୍ମଣ ସାମର୍ଥୀ (ବନ୍ଧାଘଯା କରିବ) ଶୂଦ୍ର ସାମର୍ଥୀ ( ଚୂନା କୁଟିବ, ବରତ୍ର ରଖିବ, ହଳଦିବେସର ବାଟିବ ) ଶ୍ରୋତ ସରଘର ମେକାପ, କୁଅଅଡ଼ା ମେଚକ (ଭୋଗ ଅସିବାବେଳେ କାଉ ଅଡ଼ାଇବ), ତୋଳାବତୀ ସେବକ, ସେଷଦ୍ୱାର ଜଗିଆ ବ୍ରାହ୍ମଣ ପାଇକ, ଓ ଶୂଦ୍ର ପାଇକ, ସେଷ ଯୋଗଶାଳ ସେବକ, ସେଷ ଅଙ୍ଗାରିଆ ସେବକ (ଅଙ୍ଗାର ବାହାର କରିବ ), ବାହାର ଭଣ୍ଡାର ମେକାପ, ( ଏ ପିତଳ ଗରିଆ, ନାଳୁଆ, ବଟଲୋହି, ଡାଲମ, କୁଣ୍ଡ, କୁଡ଼କା, ଇତ୍ୟାଦି ସାଇତିବ ) ପାହାଡ଼ା ଘର ମେକାପ ସେବକ, ଦ୍ୱାରନାୟକ, ଛତାସେବକ ନିଯୋଗ, ପୁଁ ଅସିଅସେବକ, ସ୍ୱର୍ଣ୍ଣ ସରଘର ମେକାପ, ବେଣ୍ଟବନ୍ଧା ଗରଡ଼ସେବକ ( ମାଘ ଶୁକ୍ଳ ପଞ୍ଚମୀ ୧ ବେଣ୍ଟ, ଫାଲ୍‌ଗୁନ କୃଷ୍ଣ ଅମାବାସ୍ୟା ଶିବରାତ୍ରି ୧ ବେଣ୍ଟ, ଶୁକ୍ଳ ୪ର୍ଥୀ ୧, ଅଷ୍ଟମୀ ୧, ଦ୍ୱାଦଶୀ ୧, ଦୋଳଯାତ୍ରା ବାସି ୨, ହଳଦିପାଣି ୧, ଏତେ ବେଣ୍ଟ ସେହିମାଛ ବନ୍ଧାଯିବ, ମାଛଧର ରାଜପ୍ରାସାଦରେ ଦେବେ) ଅଯ୍ୟାମହାଜନ ସେବକ ( ସୁନା, ରୁପା, ପିତଳ, ଦେବତା ମାନଙ୍କୁ ମାଜଣା କରିବ, ଚଢ଼ାଉ ଲାଗିକରି ବେଶ କରାଇବ, ନାରାୟଣଙ୍କୁ ହାତରେ ଧରି ବଜେ କରାଇବ ଇତ୍ୟାଦି ), ଭଣ୍ଡାର ଜଗିଆ ଫାରକ ଦଳସେବକ ( ଭଣ୍ଡାରଦ୍ୱାର ଜଗିବ, ପିଣ୍ଡିକା ଜଗିବ, ବେହରଣଠାରେ ଭଣ୍ଡାର ଅନ୍ତବ୍ୟସ୍ଥ ଜଗିବ, ମେକାପ ସଙ୍ଗେ ଥିବ, ଭଣ୍ଡାର ମେକାପ ଗଲା-ବେଳେ ଝଡ଼ା ସୋଧ କରି ଛାଡ଼ିବ, ରାତିରେ ଭଣ୍ଡାର ଜଗି ଶୋଇବ, ଯାତ୍ରାମାନଙ୍କରେ ଦଇତାମାନଙ୍କୁ ଘରୁ ହକାରି ଆଣିବ, ପୂଷ୍ୟାଭିଷେକ ବେଳେ ଦଣ୍ଡଛତ୍ର ନେଲାବେଳେ ପହଣ୍ଡ ମଣାଇ ନେବ, ପଢ଼ିଆରିଙ୍କି ଜଗି-ଥିବ, ସିଂହାସନ ଗଣ୍ଡପାଳକ ମାନଙ୍କୁ ଝଡ଼ାସୋଧନ କରି ଛାଡ଼ିବ, ଶ୍ରୀଅଙ୍ଗାଭରଣ ଜଗିବ, ଘଣ୍ଟୁଆରିକ ଜଗିବ, ଯାତ୍ରାବେଳେ ଠାକୁରଙ୍କ ସଙ୍ଗେ ଜଗି ରହିବ, ଚୋରି-ହେଲେ ମେକାପ ତିନିଭାଗ ଦେବ ସେ ଭାଗେ ଦେବ ) ସିଂହଦ୍ୱାର ପଢ଼ିହାରୀ ନିଯୋଗ, ପଦଯାତ୍ରା ପଢ଼ିଆରୀ, ଅଟ୍ଟାଳ ପଢ଼ିଆରୀ (ପରିଷ୍ଠ ବେହରଣ ଜଗିବ, ପରିଷ୍ଠାକୁ ଉଆସରେ ଛାଡ଼ିବ ) ବୃନ୍ଦାବନ ନାଏକ ( ମଣ୍ଡଣିବେଳକୁ ଜଳଷ ଦେବ ) ମଣ୍ଡଣି ଖୁଣ୍ଟିଆ ( ମଣ୍ଡପ ରଥ ମଣ୍ଡିବ ) ରଥଙ୍କତା ଦଉଡ଼ି ବଳା ସେବକ, ଶୃପ ଦଳାଇ, ଅରିଆ

ସେବକ ( ଯବନ ଉପଦ୍ରବଲାଗି ମାଣିକପାଟଣା ଖାଲକାଟ ପାଟଣା ଦୁଇ ମୁହାଣଠାରେ ବୋଇତ ଡଙ୍ଗା ଘେନି ରହିଥିବ ) ଭାଟ ସେବକ, ପଦ୍ମକଦଳୀ ତୋଟାସେବକ (ଅମୃତପାଣି, ବଳ୍ଳଳ, ପାଟକପୁରା, ବିଳାସ, ଗନ୍ଧତୁଳସୀ, ମୁଗୁନି, ମଞ୍ଜି କଦଳୀ, ଦକ୍ଷିଣିସାଗର, ପଦ୍ମକଦଳୀ ପ୍ରଭୃତି କଦଳୀ ଗଛ ଅରାଥିବ ଏବଂ ଫଳ ସେଷଘରେ ପଇଠ କରିବ ) ତୋଟାମାଳୀ, ଷଡ଼ବୈଦ୍ୟ, ଶସ୍ତ୍ରବୈଦ୍ୟ, ଦୁଧ-ଘର ସେବକ ( ମହାଭୋଇ ସେବା ଦ୍ୱିଗୁଣ, ତିନିଗୁଣ, ବହଳଦୁଧ, ଅଧାମସରି, ପାପୁଡ଼ି, ଗଳାଦହି, ବସାଦହି, ଚକାଦହି, ପିଠାଛେନା, ଲହୁଣୀ ଏମାନ ଉଜକରିବ, ଦୁଧ ମେଲାଣ ଯାତ୍ରାରେ ବାରଗୋଠ ପଲ ଗାଈ ଘେନି ଅସିବ, ମକର ଦହି ବସାଇବ, ଜନ୍ମଯାତ୍ରାକୁ ଲହୁଣୀ ଦେବ ) ବାର ଗୋଠାପଲଇ ସେବକ (ଗାଈ ଗୋଠ ଗଣି ରଖିବ, ଦୁଧ ଆଣି ଦୁଧଘରେ ପଇଠ କରିବ, ଗାଈ ଜନ୍ମ କଲେ ଦେଉଳ ବେହରଣୁ ଲୋକ ନେଇ ଦେଖାଇବ, ଛମାସରେ ଥରେ ଗାଈ ଗଣତି କରିବ, ଦୁଧ ବଳବା କମ୍ବା ପାଣି ମିଶାଇବାର ପ୍ରମାଣିତ ହେଲେ ଦଣ୍ଡ ପାଇବ ) ଦୁଧଘର ଜଗିଆ ପାଇକ ( ରାତିଦିବସ ଏ ଘର ଜଗିବ, ଦୁଧ ପରିମାଣ ପରିଛାଙ୍କୁ ଜଣାଇବ ) ଭିଆଣ ନିଯୋଗ ବଡଶୋଇ ସେବକ (ଭୋଗହେବା ଲାଗି ଡିଅ ପ୍ରଭୃତି ଖଟିବ ) ଗଉଡ଼ ନିଯୋଗ ବଡଶୋଇ ସେବକ ( ଏ ଦୁଧ ଆଣି ପିଠିକରଣ ପରିମୁଖେ ଭିଆଣ କୁଣ୍ଡାରେ ମପାଇ ଦେବ, ଗାଈ ଦୁହାଁଇବ ) କୁମ୍ଭାର ନିଯୋଗ ବଡଶୋଇ ( ଭୋଗ ରନ୍ଧାକୁ ହାଣ୍ଡି ଦେବ, ସାତପୁରୀ ତେଲୁଣୀ, ମକର ନାଡ଼ ତେଲୁଣୀ ଘଣ୍ଟବାଜା ଏହା ଘରୁ ଅସିବ ) ଲୁଣ ବଡଶୋଇ, ଗୁଆଟିଆଙ୍କ ବଡଶୋଇ ( ବଡ଼ଆକୁ ଗୁଆ ଖଟିବ ) ପାଟହାତୀ ମାହୁନ୍ତ ସେବକ, ଧାନଘର ସେବକ ଓ କୋଠାଇତ ସେବକ (ଚକୁରିଆ ନଉତିରେ ଧାନ ମାପି ଦେବ ଓରିଆକୁ ୨୨ ନଉତିକ ଗୁଣ୍ଡଳ ୧° ଗଉଣି । ବଗଡ଼ାକୁ ପଚଶାକୁଟାରେ ଧାନ ୧ ଖଣ୍ଡିକୁ ଗୁଣ୍ଡଳ ୧୦, ପଡ଼ିଗୁଣ୍ଡଳକୁ ୨୪ ଶା କୁଟାରେ ଗୁଣ୍ଡଳ ୧° ଗଉଣି, ପାଣିରେ ବତୁରାଇ ଧାନ କୁଟିବ ନାହିଁ, ଥରେ କୁଟା ନେଇ ଗୁଣ୍ଡଳ ଦେଲେ ଅଉ ଥରେ ନେବ) ତାଡ଼ଣିଆ ମୁହୁଲି ସେବକ (ଧାନ ଅସିଲେ ଏଥିରୁ ଅଗାଡ଼ି ପ୍ରଭୃତି ଉଡ଼ାଇ ସାଇତି ରଖିବ), ଧାନଘର

ଜନକ ଜନନୀସମ ହରିକାରୀ ନାହାନ୍ତି ଜଗତେ ।

ଜଗିଆ ପାଇକ, ଦେଉଳ ଅଯୁତନ ଭିତର ବାହାର ପହରୀ ସେବକ (ଦେଉଳ ଗୃହାଙ୍ଗ ପରିଷ୍କାର କରିବ), ପରିବାର ସେବକ ନିଯୋଗ ଶୁଦ୍ଧାଶୁଦ୍ଧ ପ୍ରଧାନୀ ବ୍ରାହ୍ମଣ ସେବକ (ଏ ପରୀକ୍ଷା ବେହରଣ ଜଗିଥିବ, ବ୍ରାହ୍ମଣ ସେବକମାନଙ୍କୁ ପରୀକ୍ଷା ଆଜ୍ଞା ପ୍ରମାଣେ ଡାକି ଆଣିବ— ପରୀକ୍ଷା ଆଜ୍ଞା ପ୍ରମାଣେ ସମସ୍ତ କାର୍ଯ୍ୟ କରିବ ) ଠାକୁରିଆ ଲେଙ୍କା ସେବକ ( ଏ ପରୀକ୍ଷାଙ୍କ ସେବା କରିବ ), ତୀର୍ଥ ମାଟିଆ ସେବକ (ତୀର୍ଥ ପୁଷ୍କରିଣୀମାନଙ୍କରୁ ବର୍ଷକୁ ବର୍ଷ ପଙ୍କ ବାହାର କରିବ), କ୍ଷେତ୍ର ଜଗିଆ ସେବକ (କ୍ଷେତ୍ର ଜଗିବ, ସବୁ ସାଇରେ ଚୋର ହେଲେ ବୁଝିବ ), ବାଦ୍ୟକାର ସେବକ (ଧୂପ, ଅବକାଶ, ପୁଷ୍ପାଞ୍ଜଳି, ପର୍ବ ଯାତ୍ରା, ରଥ ଯାତ୍ରାରେ ଓ ପରୀକ୍ଷା ବୁଲି ବାହାରିଲେ ତାଙ୍କ ଆଗେ ବାଜା ବଜାଇବ), ଭୋଗ ପରୀକ୍ଷା ସେବକ (ଶାସ୍ତ୍ରଜ୍ଞ ବ୍ରାହ୍ମଣ ଏ ସେବା କରିବ, ପରୀକ୍ଷା ତଳେ ଏ ସେବକର ସମସ୍ତ ଅଧିକାର ) ।

ଏ ସମସ୍ତ ସେବକ ମାନେ ନିମ୍ନଲିଖିତ କେତେଗୋଟି ନିଯୋଗରେ ବିଭକ୍ତ :—

୧ ପଣ୍ଡା ନିଯୋଗ, ୨ ପଶୁପାଳକ ନିଯୋଗ, ୩ ସୁପକାର ବା ସୁଆର ନିଯୋଗ, ୪ ପ୍ରତିହାରୀ ନିଯୋଗ, ୫ ଖୁଣ୍ଟିଆ ନିଯୋଗ ୬ ଗରାବଡୁ ନିଯୋଗ, ୭ ସମାନବଡୁ ନିଯୋଗ, ୮ ଦଇତା ନିଯୋଗ, ୯ ବିଦ୍ୟାପତି ନିଯୋଗ, ୧୦ ଭିତର ଛୁ ଛେତ୍ର ନିଯୋଗ, ୧୧ ମେକାପ ନିଯୋଗ, ୧୨ ତଢ଼ାଉ ନିଯୋଗ, ୧୩ ଦେଉଳକରଣ ନିଯୋଗ, ୧୪ ମୁଦିରଥ ନିଯୋଗ, ୧୫ ରାଜ ନିଯୋଗ ।

## ଦ୍ୱାଦଶ ଯାତ୍ରା—

୧ ସ୍ନାନ, ୨ ଗୁଣ୍ଡିଚା ବା ରଥଯାତ୍ରା, ୩ ଶୟନ, ୪ ଦକ୍ଷିଣାୟନ, ୫ ଉତ୍ତରାୟଣ, ୬ ପାର୍ଶ୍ୱପରିବର୍ତ୍ତନ, ୭ ଉତ୍ଥାନ, ୮ ପ୍ରାବରଣ, ୯ ପୁଷ୍ୟପୂଜା, ୧୦ ଦୋଳ, ୧୧ ଦମନକ ମହୋତ୍ସବ, ୧୨ ଚନ୍ଦନ । କ୍ଷେତ୍ର ମାହାତ୍ମ୍ୟ ଓ ନୀଳାଦ୍ରି ମହୋଦୟ ଗ୍ରନ୍ଥମାନଙ୍କରେ ଯାତ୍ରାମାନଙ୍କର ବିଶେଷ ବିଧି ବର୍ଣ୍ଣିତ ଅଛି । ଯାତ୍ରାମାନଙ୍କରେ ବିଜେ ପ୍ରତିମା ମଦନ ମୋହନ ଦେବ ଆସି ଯାତ୍ରା କାର୍ଯ୍ୟ ନିର୍ବାହ କରନ୍ତି ମାତ୍ର ରଥ ଓ ସ୍ନାନ ଯାତ୍ରାମାନଙ୍କରେ ସ୍ୱୟଂ ଜଗନ୍ନାଥମହାପ୍ରଭୁ ଯାତ୍ରାସ୍ଥାନକୁ ଆଗମନ କରନ୍ତି ।

## ପ୍ରତିମା ନିର୍ମାଣ ବିଧି—

ଯେତେବେଳେ ନବକଳେବର ହେବାର ଶ୍ରୀମୁଖ ଆଜ୍ଞା ହେବ ସେତେବେଳେ ଦୟିତା ଓ ପତି ବଂଶୀୟ ଲୋକମାନେ ଯାଇ ବୃକ୍ଷ ଅନୁସନ୍ଧାନ କରି ଆଣିବେ । ନିମ୍ବବୃକ୍ଷ ସର୍ବାପେକ୍ଷା ଶ୍ରେଷ୍ଠ । ଏ ବୃକ୍ଷର ପରିମାଣ ମଧ୍ୟମାଙ୍ଗୁଷ୍ଠି ଯବରେ ୨୪ ଯବ ଲେଖାଏଁ,ଚୌରସ ୧୭ ଯବ ଥିବ । ସେ ବୃକ୍ଷ ୪ ଶାଖା ବିଶିଷ୍ଟ ହୋଇଥିବ । ଏପରି ୪ଗୋଟି ବୃକ୍ଷ ଆସିବ । ଏକଶାଖା, ଦ୍ୱିଶାଖା ବା ତ୍ରିଶାଖା ବୃକ୍ଷ ହେବ ନାହିଁ । ଏ ବୃକ୍ଷମାନ ଗ୍ରାମସନ୍ନିଧିରେ ନ ଥିବେ, ଚଢ଼େଇମାନେ ବସା କରି ନ ଥିବେ, ପକ୍ଷୀନଖୀ ଜନ୍ତୁ ସଂଶ୍ଳିଷ୍ଟ ହୋଇ ନ ଥିବେ, ଅନ୍ୟ ବୃକ୍ଷ ଡାଳ ଦ୍ୱାରା ଏ ବୃକ୍ଷମାନ ଆଚ୍ଛାଦିତ ହୋଇ ନ ଥିବ, ବଜ୍ରଯୁତ ପଡ଼ି ବୃକ୍ଷ ଫାଟି ନ ଥିବ, ଅଗ୍ନି ତେଜ ଲାଗି ନ ଥିବ,ଜଳ ସମୀପରେ ଥିଲେ ଉତ୍ପାଟିତ ହୋଇ ପଙ୍କରେ ପଡ଼ି ନ ଥିବ, ଦେଖିବାକୁ ବୃକ୍ଷମାନେ ଶୋଭନୀୟ ହୋଇଥିବେ, ଏ ସମସ୍ତ ଲକ୍ଷଣ ଥିବା ବୃକ୍ଷ ଗ୍ରହଣୀୟ ବିଶ୍ୱକର୍ମା ମଧ୍ୟମାଙ୍ଗୁଷ୍ଠ ଯବ ମାପରେ ମାପ ନେବ ।

## ଶ୍ରୀ ଜଗନ୍ନାଥ ଦେବ—

ଚକ୍ରାକୃତ, ଉଚ୍ଚ ୮୪ ଯବ, ମେଘ ଶ୍ୟାମବର୍ଣ୍ଣ ।

## ଶ୍ରୀ ବଳରାମ ଦେବ—

ଶଙ୍ଖାକୃତ, ଉଚ୍ଚ ୮୪ ଯବ, ଶୁଭ୍ରବର୍ଣ୍ଣ ।

## ଶ୍ରୀ ସୁଭଦ୍ରା ଦେବୀ—

ପଦ୍ମାକୃତ, ଉଚ୍ଚ ୫୨୨ ଯବ, ହରିଦ୍ରାବର୍ଣ୍ଣ,

## ଶ୍ରୀ ସୁଦର୍ଶନ ଦେବ—

ଗଦାକୃତ, ଉଚ୍ଚ ୮୪ ଯବ, ରକ୍ତବର୍ଣ୍ଣ ।

ପ୍ରତିମାମାନଙ୍କର ଅଦ୍ଭୁତ ଯନ୍ତ୍ର ଅନୁସାରେ ନିର୍ମିତ ।

**ଚକ୍ର ଯନ୍ତ୍ର**—ଊର୍ଦ୍ଧ୍ୱ ୧୪ ଭାଗ, ନିମ୍ନ ୧୮ ଭାଗ । ପାଦପଦ୍ମଦ୍ୱୟ ୧୫ ½ ଯବ, ଅବଶିଷ୍ଟ ଉପର୍ଯ୍ୟୁକ୍ତ ୧୪ଶ ଭାଗ ୫୦ ½, ପ୍ରତ୍ୟେକ ଭୁଜ ୨୮ ଯବ । ପାର୍ଶ୍ୱଭୁଜ

ଦ୍ୱସ୍ତ ୮ ଯବ । ଦ୍ଭଜଦ୍ୱୟର ଦଶମାଂଶ ନାସିକା—ରନ୍ଧ୍ର, ନାସିକାର ଅଧୋଭାଗ ୧୬ ଯବ । ଅଧୋଭାଗଠାରୁ ମସ୍ତକାବଧି ୬୫ ଯବ । ଶ୍ରୀମୁଖ ଆୟତନ ୩୦ ଯବ । ହୃଦସ୍ଥ ମଧ୍ୟରେ ବ୍ରହ୍ମସ୍ଥାପନ ସ୍ଥାନ ୧୪ ଯବ ।

**ଶଙ୍ଖଯନ୍ତ୍ର**—ମୁଖପଦ୍ମ ୩୧ ଯବ । ଶ୍ରୀମୁଖର ଊର୍ଦ୍ଧ୍ୱ-ଫଳକ ୫ ଯବ । ଚତୁର୍ବନ୍ଧ ସ୍ଥାନ ୧୧ ଯବ । ହୃଦସ୍ଥ ୧ ଯବ । ମଧ୍ୟଭାଗ ୧୦୨ ଯବ । ପ୍ରତ୍ୟେକ ଭୁଜ ୬୪ ଯବ । ସ୍କନ୍ଧୋପର ଦେଖାଯାଉଥିବା ଫଳା ୬୪ ୬ ଯବ । ନାସାରନ୍ଧ୍ର ୨ ଯବ, ନାସିକାର ଅଧୋଭାଗ ୮ ଯବ, ଊର୍ଦ୍ଧ୍ୱଭାଗ ୧୮ ଯବ । ଲଲାଟ ୧ ଯବ, କେଶ ୫ ଯବ ।

**ପଦ୍ମଯନ୍ତ୍ର**—ଶ୍ରୀମୁଖର ବିସ୍ତାର ୧୫ଯବ, କେଶକପାଳ ୩୨ ଯବ, ଶ୍ରୀମୁଖ ୧୭ ଯବ, ମଧ୍ୟସ୍ଥଳ ୧୬ ଯବ, ପାଦ-ପଦ୍ମ-ଯୁଗଳ ୧୭ ଯବ, ପ୍ରତ୍ୟେକଭୁଜ ୧୫ ଯବ, ପାର୍ଶ୍ୱ-ଭୁଜ ୧୭ ଯବ ।

**ଗଦାଯନ୍ତ୍ର**—ଗଦାକୃତି, ପ୍ରସାର ୬୧ ଯବ ।

## ଶରୀର ଗ୍ରହଣ

ଶିବ ପ୍ରତିମା ଲାଗି ପାଟସୂତା ବଳା ହୋଇ ଡୋର ।

## ସପ୍ତାଭରଣ

**ଚର୍ମ** ଲାଗି ବସ୍ତ୍ର, ରକ୍ତ ନିମନ୍ତେ ନେତପାଟ, ମାଂସ ନିମନ୍ତେ ସଜଳ ସମେଦଳୀ ସୁବାସ ତୈଳ, ଅସ୍ଥି ନିମନ୍ତେ ଦାରୁ, ମଜ୍ଜା ନିମନ୍ତେ ଚନ୍ଦନ, ଶୁକ୍ର ନିମନ୍ତେ ଅଷ୍ଟକାଳ ।

## ପ୍ରତିଷ୍ଠା ବିଧି

ପ୍ରାସାଦ ପୂର୍ବ ଭାଗରେ ପ୍ରତିଷ୍ଠା ମଣ୍ଡପ ହେବ, ମଣ୍ଡପର ଓସାର ପ୍ରାସାଦର ୨ ଗୁଣ ହେବ । ମଣ୍ଡପ ଚାରି ଦିଗରେ ବାଡ଼ ଦିଆଯିବ । ଚାରି ଦ୍ୱାର ହୋଇ ୪ ତୋରଣ ହେବ । ଅଶ୍ୱତ୍ଥ, ଉଦୁମ୍ବର, ବଟ ଓ ପଳାଶ ଦ୍ୱାର ୫ ହାତ ଉଚ୍ଚରେ ତୋରଣ ହେବ, ହୋମ ଧୂମ ବାହାରିଯିବା ଲାଗି ଚୂଳ ଉପରେ ବାଟ ଥିବ । ମଣ୍ଡପରେ ଚାନ୍ଦୁଆ ବାନ୍ଧିବ, ଚାମର, ବସ୍ତ୍ର, ଘଣ୍ଟି ଓ ଫୁଲମାନଙ୍କଦ୍ୱାରା ମଣ୍ଡପ ମଣ୍ଡିତ ହେବ । ମଣ୍ଡପରେ ଈଶାନ୍ୟ କୋଣରେ ସ୍ନାନ ମଣ୍ଡପ ଗୋଟିଏ ହେବ, ସ୍ନାନଜଳ ବାହାରି ଯିବାକୁ ନାଳ ରଖିବ । ମଣ୍ଡପର ଦକ୍ଷିଣ ଦିଗରେ ବେଦୀ କରିବ, ପୂର୍ବ ଦିଗରେ ଯଜ୍ଞ ଦ୍ରବ୍ୟମାନ ରଖିବାକୁ ସ୍ଥାନ କରିବ, ବେଦୀପରେ ଗଙ୍ଗା ବାଲି ପକାଇବ, ପଞ୍ଚଗବ୍ୟ ଦ୍ୱାରା ବେଦୀ ପ୍ରକ୍ଷାଳନ କରିବ । ପଞ୍ଚଗବ୍ୟ ଦ୍ରବ୍ୟ—( ଗୁଆଦୁଧ, ଦହି, ଘୃତ, ଗୋମୟ, ଗୋମୂତ୍ର ) ଏ ମଣ୍ଡପ ୪ କୋଣରେ ୪ ପ୍ରକାର ହୋମ କୁଣ୍ଡ ହେବ (ଚନ୍ଦ୍ରାକାର, ଅର୍ଦ୍ଧଚନ୍ଦ୍ରାକାର, ମଣ୍ଡଳାକାର, ପଦ୍ମାକାର) । ତୋରଣମାନଙ୍କରେ ଫୁଲମାଳ ମଣ୍ଡନ କରିବ, ଧ୍ୱଜ ପତାକା ବାନ୍ଧିବ, ପତାକା ଲମ୍ବ ୫ ହାତ, ଓସାର ୧୬ ଅଙ୍ଗୁଳ । ମଣ୍ଡପ ମଧ୍ୟରେ ବେଦୀ ଉପରେ ପଦ୍ମାକାର ଶୁକ୍ଳ ଚାନ୍ଦୁଆ ବନ୍ଧା ହେବ । ପାଣ୍ଡୁର ବର୍ଣ୍ଣ କଳସରେ ଛଣାପାଣି ୧୬୮ ପଳ ପୂରାଇବ, ଏଥିରେ ଖଣ୍ଡିଏ ସୁବର୍ଣ୍ଣ ପକାଇବ, ନୂତନ ବସ୍ତ୍ର କଳସ ଗୋଡ଼-ପାଖେ ଗୁଡ଼ାଇବ, କଳସରେ ଆମ୍ବଡ଼ାଳ ଦେଇ ନାରିକେଳ ରଖି ମାଣେ ଧାନ ଉପରେ କଳସ ଥୋଇବ । ମଣ୍ଡପ ଚାରି-ଦ୍ୱାରେ ଚାମର ଝୁଲାଇବ । ପରମେଶ୍ୱରଙ୍କୁ ନେଇ ଖଟ ଉପରେ ବିଜେ କରାଇବ । ପରେ ବେଦୋକ୍ତ ମନ୍ତ୍ରମାନଙ୍କରେ ବିଧିବିଧାନ ଅନୁସାରେ ଜୀବନ୍ୟାସ ହେବ ।

## ରାଜାଙ୍କର ଠାକୁରମାନଙ୍କୁ ଦର୍ଶନ କରିବା ବିଧି

ରାଜା ବିଜେ ହେଲେ ଘଣ୍ଟା, କାହାଳୀ, ମାଦଳ, ମହୁରୀ, ଶଙ୍ଖ, ଢୋଲ ଓ ଦମା ବାଜିବ । କଳାଛତି, ଧଳା ଛତି ଟେକା ହେବ । ସେବକମାନେ ମାଳ ପ୍ରସାଦ ନେଇ ନଅରଠାରେ ହାଜର ଥିବେ । ରାଜା ନଅର ଦ୍ୱାରେ ପ୍ରସାଦ ଲାଗି ହେବେ, ସେଠାରୁ ବିଜେ କରି ଆସି ସିଂହଦ୍ୱାରଠାରେ ବିଜେ କରିବାରୁ ଉପରୁ ଉତୁରି ପାଦପ୍ରକ୍ଷାଳନ କରି ଆଚମନ କରିବେ । ପରେ ବଟ ବିଘ୍ନେଶ୍ୱରଙ୍କୁ ଦର୍ଶନ କରି ବଟ ପ୍ରଦକ୍ଷିଣ ପୂର୍ବକ ବଟେଶ୍ୱର ଓ ବଟମଙ୍ଗଳାଙ୍କୁ ଦର୍ଶନ କରିବେ ଓ ଏଠାରେ ପରମେଶ୍ୱରଙ୍କୁ ଦଣ୍ଡପ୍ରଣାମ କରିବେ । ଏଥି ଉତ୍ତାରୁ ଜଗମୋହନ କଳାପାବଛଠାରେ ଜୟ ବିଜୟଙ୍କୁ ଦର୍ଶନ

କରିବେ, ଏଠାରୁ ଅଖଣ୍ଡ ପଲଙ୍କ ବଇଠା ଦେଖାଇ ସିଂହାସନ ତଳକୁ ନେଇ ଉତ୍ତରୁ ଏଠାରେ ଚାର ଠାକୁରଙ୍କ ନାଳିଷ୍ଠଳ କରି ଦଣ୍ଡ ପ୍ରଣାମ କରିବେ । ପରେ ଭଣ୍ଡାରିମେକାପ ସୁନାଛେଦ୍ର ପର୍ହରି ବଢ଼ାଇ ଦେବ, ସେ ସିଂହାସନ ଗୃହପାଖ ପର୍ହରିବେ, ଭିତର ଗର୍ଭବଢ଼ୁ ଶ୍ରୀହସ୍ତ ପୋଛିବାଲାଗି ଖଣ୍ଡା ବଢ଼ାଇଦେବ, ଶ୍ରୀହସ୍ତ ପୋଛି ପୁଷ୍ପାଞ୍ଜଳି ଦେଇ ଚାମର ପକାଇବେ, ସୁନାବେତ ଧରି ଛାମୁରେ ପଢ଼ିଆରି କରି ସ୍ତୁତି-ପାଠ କରି ଦର୍ଶନ କରିବେ, ଗୃହଥର ପ୍ରଦକ୍ଷିଣ କରି ଦଣ୍ଡ-ପ୍ରଣାମ କରିବେ, ପ୍ରସାଦ ପାଇ ପତନି ଲାଗି ହେବେ, ପୁନର୍ବାର ଦଣ୍ଡ ପ୍ରଣାମ କରି ଫେରିଆସି ଦକ୍ଷିଣଘର ସୁନା ପ୍ରତିମାମାନଙ୍କୁ ଦର୍ଶନ କରିବେ । ପରେ ନୃସିଂହନାଥଙ୍କୁ ଦର୍ଶନ କରିବେ, ପରେ ମୁକ୍ତି ମଣ୍ଡପରେ ବ୍ରାହ୍ମଣମାନଙ୍କୁ ନମସ୍କାର କରି ନୃସିଂହନାଥଙ୍କ-ଠାରୁ ପ୍ରସାଦ ନେଇ ବିମଳାଙ୍କୁ ଦର୍ଶନ କରିବେ, ପ୍ରସାଦ ନେଇ ସରସ୍ୱତୀଙ୍କ ଦର୍ଶନ କରିବେ । ସେଠାରୁ ଯାଇ ମହାଲକ୍ଷ୍ମୀ ଠାକୁରାଣୀଙ୍କୁ ଦର୍ଶନକରି ନବରକୁ ବିଜେ କରିବେ ।

## ମୁକ୍ତିମଣ୍ଡପ

କ୍ଷେତ୍ର-ମାହାତ୍ମ୍ୟରେ ଏ ସ୍ଥାନ "ବ୍ରହ୍ମାସନ" ସ୍ୱରୂପ ବର୍ଣ୍ଣିତ ଅଛି । ଏହାର ନାମ ଭରତ-ବେଦୀ । ଏଠାରେ ସନ୍ନ୍ୟାସୀମାନେ, ବ୍ରହ୍ମଚାରୀମାନେ ଓ ଷୋଳ ଶାସନର ବ୍ରାହ୍ମଣ ପଣ୍ଡିତମାନେ ବୈଠକ କରି ବିଦ୍ୟାଚର୍ଚ୍ଚା ଓ ଧର୍ମଚର୍ଚ୍ଚା କରନ୍ତି । ସ୍ମୃତିବିଷୟକ କଠିନ ପ୍ରଶ୍ନମାନ ଏଠାରେ ମୀମାଂସିତ ହୁଏ ।

## ପରମେଶ୍ୱରଙ୍କ ନୀତି

ରାତ୍ର ୪ ଘଡ଼ି ଥାଉଁ କବାଟ ଫିଟିବ । ରାତ୍ର ଏକ ଘଡ଼ି ଥାଉଁ ପାହାନ୍ତି ଅବକାଶ ବଢ଼ିବ । ଦିନ ବେଳ ୬ ଘଡ଼ିକି ଗୋପାଳବଲ୍ଲଭ ହେବ । ବେଳ ୭ ଘଡ଼ିଠାରେ ସକାଳ ଧୂପ ହେବ, ପରେ ୪ ଘଡ଼ିରେ ସାହାଣମେଲା ହେବ । ୧୪ ଘଡ଼ି ଠାରେ ଦ୍ୱିପ୍ରହର ଧୂପ ହେବ । ଏ ଉତ୍ତାରୁ ୬୦ ଘଡ଼ି ମଧ୍ୟରେ ଅଧରପୋଛା ଓ ମୁକୁନ୍ଦବଲ୍ଲଭ ବଢ଼ିବ । ୬ ଘଡ଼ି ପହୁଡ଼ିବେ । ବେଳ ୬ ଘଡ଼ି ଥାଉଁ କବାଟ ଫିଟିବ । ରାତ୍ର ୪ ଘଡ଼ି ଠାରେ ସନ୍ଧ୍ୟା ଧୂପ ହେବ । ଏ ଉତ୍ତାରୁ ୭ ଘଡ଼ି ବଡ଼ ସିଂହାର ବେଶ ବଢ଼ିବ । ରାତ୍ର ୧୬ ଘଡ଼ି ଠାରେ ବଡ଼ସିଂହାର ବଢ଼ିବ । ପରେ ପହୁଡ଼ ହେବ । ଯାହା ଦୋଷରୁ ନୀତ ଡେରି ହେବ ସେ କୋଠଭଣ୍ଡାରକୁ ୧୦ ଅମୃତକୁଣ୍ଡ ଗୁଣାଗାର ଦେବ । (ଘଡ଼ି=ଦଣ୍ଡ, ଗୁଣାଗାର=ଜରିମାନା ବା ଅର୍ଥଦଣ୍ଡ ।)

## ଛାମୁ ଚିଠାଉ

ରାଜାମାନେ ଯେଉଁ ଆଦେଶ ପତ୍ର ଲେଖିଥାଆନ୍ତି ତାକୁ ଛାମୁ ଚିଠାଉ କୁହାଯାଏ ।

## ୧୯୩୩—୩୪ ରେ ବିହାର ଓଡ଼ିଶାର ଆମଦାନୀ–ରପ୍ତାନି ଜିନିସ

(ଆମଦାନୀ)

(୧) ପ୍ରାୟ ୪½ କୋଟି ପାଉଣ୍ଡ ଚାଉଳ

(୨) ପ୍ରାୟ ୧ ,, ,, ଗହମ ଓ ମଇଦା

(୩) ୧.୭ ,, ,, ଅନ୍ୟାନ୍ୟ ଶସ୍ୟ ସାମଗ୍ରୀ

ପ୍ରାୟ ୭ ,, ,, ଶସ୍ୟ ଆମଦାନୀ ହୋଇ-ଅଛି । ଏଥିରୁ ଅନୁମାନ ଯେ ଦେଶ ଖାଦ୍ୟ ସମ୍ବନ୍ଧରେ ପର ଉପରେ ନିର୍ଭର କରୁଛି ।

(୪) ବସ୍ତ୍ର

୯.୨୮ କୋଟି ପାଉଣ୍ଡ ବିଦେଶୀ ବସ୍ତ୍ର

୭୭.୭ ,, ,, ଭାରତବର୍ଷରୁ ମିଲ ବସ୍ତ୍ର

୩୦.୭ ,, ,, ହାତ ତନ୍ତ ବସ୍ତ୍ର

ମୋଟ ———

୧୧୭ ,, ,, ବସ୍ତ୍ର ବିହାର-ଓଡ଼ିଶାରେ ୧୯୩୩-୩୪ ରେ ଦରକାର ହୋଇଥିଲା । ତାହାର ମୂଲ୍ୟ ୧୩ କୋଟି ଟଙ୍କା; ଏବଂ ସେଥିର ଶତକଡ଼ା ୩୦ ଅଂଶ କେବଳ ତନ୍ତ୍ରୀଲୁଗାରୁ ଆସୁଛି ।

ରପ୍ତାନି ସମ୍ବନ୍ଧେ—

ବିହାର ଓଡ଼ିଶାରୁ ହାଡ଼, ହରଡ଼ା, ଝୋଟ, ଚମଡ଼ା ଓ ତୈଳ ବୀଜ ଓ ତମାଖୁ ।

ସିମେଣ୍ଟ, କୋଇଲା, ଲୁହା, ଅଭ୍ର, ଚିନି ଓ ପିତଳ ବିଦେଶକୁ ରପ୍ତାନି ହୋଇଅଛି ।

## ଓଡ଼ିଶାର ପ୍ରାଚୀନ କବି

**ଉପେନ୍ଦ୍ର ଭଞ୍ଜ**—ଘୁମୁସରର ରାଜା ନୀଳାଦ୍ରି ଭଞ୍ଜଙ୍କର ପୁତ୍ର, ଏ ମହାଶୟ ତାରକ ମନ୍ତ୍ରର ଉପାସକ ଥିଲେ । ଓଡ଼ିଶା କବିମାନଙ୍କ ମଧ୍ୟରେ ଏହାଙ୍କର ଆସନ ବହୁତ ଉଚ୍ଚରେ । ୩୦୦ ବର୍ଷରୁ ଊର୍ଦ୍ଧ୍ୱ ହେଲା ସେ ଦେହତ୍ୟାଗକଲେଣି, ମାତ୍ର ଅଦ୍ୟାପି ଯଶୋଦେହରେ ଜୀବିତ ଅଛନ୍ତି । ଅବନା ରସତରଙ୍ଗ, ବୈଦେହୀଶ ବିଳାସ, କୁଞ୍ଜବିହାର, କଳା କଉତୁକ, କାମକଳା, କାନକଣ୍ଟକ, ଭାବବତୀ, ବ୍ରଜଲୀଳା, ଚନ୍ଦ୍ରରେଖା, ଚୌପଦୀଭୂଷଣ, ସୁଭଦ୍ରା—ପରିଣୟ, କଳାବତୀ, ଚୌପଦୀଚନ୍ଦ୍ର, ଛାନ୍ଦରେଖା, ଛାନ୍ଦକାବ୍ୟ ବନ୍ଧୋଦୟ ଛନ୍ଦ ଭୂଷଣ, ଚିତ୍ରକଳା, ମୁକ୍ତାବତୀ, ପ୍ରେମସୁଧାନିଧି, ପୁରୁଷୋତ୍ତମ ମାହାତ୍ମ୍ୟ, ଇଚ୍ଛାବତୀ, ଗୀତାଭିଧାନ, ରସଲେଖା, ରସଲୀଳା, ସୁବର୍ଣ୍ଣରେଖା, ଶୋଭାବତୀ, ରସମଞ୍ଜରୀ, ମନକରାଜ ଚୌତିଶା, ହେମମଞ୍ଜରୀ, କୋଟିବ୍ରହ୍ମାଣ୍ଡସୁନ୍ଦରୀ, ଲାବଣ୍ୟବତୀ, ମନୋରମା, ପ୍ରେମଲତା, ରସପଞ୍ଚକ, ରସିକହାରାବଳୀ, ରାମଲୀଳାମୃତ, ଷଡ଼ଋତୁ, ସଙ୍ଗୀତ କୌମୁଦୀ, ଶରରେଖା, ତ୍ରୈଲୋକ୍ୟ ମୋହିନୀ ପ୍ରଭୃତି ଗ୍ରନ୍ଥମାନ ଏ ମହାତ୍ମାଙ୍କ ରଚିତ । ଏ ମହାଶୟଙ୍କର ଅନ୍ୟାନ୍ୟ ଗ୍ରନ୍ଥ ମିଳୁନାହିଁ । ଦୀନ କୁଟୀରଠାରୁ ରାଜପ୍ରାସାଦ ପର୍ଯ୍ୟନ୍ତ ସର୍ବତ୍ର ଏହାଙ୍କର ଗୀତ ଶୁଣାଯାଏ ।

**ଦୀନକୃଷ୍ଣ ଦାସ**—ଏ ମହାତ୍ମା ଜଣେ ଭକ୍ତ କବି । ପୁରୀ ସହରରେ ପ୍ରାୟ ୩୦୦ ବର୍ଷ ହେବ ଏ ଦେହତ୍ୟାଗ କରିଥିଲେ । ଏ ଜଣେ କରଣ ବୈଷ୍ଣବ ଏବଂ କବି ସମ୍ରାଟ୍ ଉପେନ୍ଦ୍ରଭଞ୍ଜଙ୍କ ସମସାମୟିକ । ରସକଲ୍ଲୋଳ, ଚକ୍ରଧର ବିଳାସ, ମଧୁସୂଦନ ବିଳାସ, ମାଧବଙ୍କର ଗୀତା, ସାମୁଦ୍ରିକ, ଜଗମୋହନ, ଅର୍ତ୍ତିତ୍ରାଣ, ବାରମାସି କୋଇଲି, ପ୍ରସ୍ତାବସିନ୍ଧୁ, ଗୁଣ୍ଡିଚା ବିଜେ, ଗୁଣସାଗର, ଦ୍ୱାଦଶକୁଞ୍ଜ ଲୀଳା, ଅମୃତସାଗର, ଉତ୍କଳ ନୀଳମଣି କାରିକା, କୃଷ୍ଣରସାବଳୀ ଏ ମହାଶୟ ରଚନା କରିଥିଲେ ।

**ଅଭିମନ୍ୟୁ ସାମନ୍ତ ସିଂହାର**— କଟକ ଜିଲ୍ଲା ବାଲିଆରେ ଏ ମହାତ୍ମା ଜନ୍ମଗ୍ରହଣ କରିଥିଲେ । ୧୫୦ ବର୍ଷରୁ ଊର୍ଦ୍ଧ୍ୱ ହେବ ଇହଧାମ ତ୍ୟାଗ କଲେଣି । ବିଦଗ୍ଧ ଚିନ୍ତାମଣି, ପ୍ରୀତି ଚିନ୍ତାମଣି, ସୁଲକ୍ଷଣା ପ୍ରଭୃତି ଏହି ଭକ୍ତ କବିଙ୍କର ରଚନା । ଏ ମହାଶୟ ଶ୍ରୀକୃଷ୍ଣମନ୍ତ୍ର ଜପକରି କବିତ୍ୱ ଶକ୍ତି ପାଇ ଥିଲେ ବୋଲି ପ୍ରବାଦ ଅଛି ।

**ବତ୍ସଦାସ**—୧୪୦୦ ଖ୍ରୀଷ୍ଟାବ୍ଦରେ ଏ ମହାଶୟ ଜୀବିତ ଥିଲେ । କଳସା ଚଉତିଶା ଏହାଙ୍କ ରଚିତ ।

**ଭକ୍ତଚରଣ ଦାସ (ଭକ୍ତକବି)**—ପ୍ରାୟ ୧୭୬୧-୧୮୧୩ ବର୍ଷ ପୂର୍ବେ ପୁନାଖଳଗ୍ରାମର ୫ମାଇଲ ଦୂରବର୍ତ୍ତୀ ଖୋର୍ଦ୍ଧା ଅନ୍ତର୍ଗତ ସାନ ପଦର ମଠରେ ଏ ମହାଶୟ ବାସ କରୁଥିଲେ । ମଥୁରାମଙ୍ଗଳ ଏହାଙ୍କର ଲେଖା । ଭାଷା ଯେପରି ସରଳ ଓ ପ୍ରାଞ୍ଜଳ ଭାବ ସେହିପରି ମନୋମୁଗ୍ଧକର ।

**କପିଳେନ୍ଦ୍ର ଦେବ**—ଏ ମହାଶୟ ସଂସ୍କୃତରେ 'ପରଶୁରାମ ବିଜୟ' ନାମକ ଏକାଙ୍କ ନାଟକ ଲେଖିଥିଲେ ।

**ଦାମୋଦର ଦାସ**—ଏ ମହାଶୟ ବଳରାମ ଦାସ ଓ ଜଗନ୍ନାଥ ଦାସଙ୍କ ପୂର୍ବବର୍ତ୍ତୀ କବି । ଏ ରସକୁଲ୍ୟା ଚଉତିଶାର ଜନ୍ମଦାତା ଅଟନ୍ତି ।

**ଭୀମା ଧୀବର**—ଏ ଜାତିରେ କେଉଟ, ଏହାଙ୍କର ଘର ରେଢ଼ାଖୋଲରେ । ସେ କପଟପାଶା ଓ ଭାରତ ସାବିତ୍ରୀ ରଚନା କରିଥିଲେ । ୧୫୦ ବର୍ଷରୁ ଅଧିକ ହେବ ସେ ଇହସଂସାର ତ୍ୟାଗ କଲେଣି । ଏହାଙ୍କ ଲେଖାକୁ ସମସ୍ତେ ଆଦର କରନ୍ତି ।

**ରାଏ ଦାମୋଦର ଦାସ**
ପ୍ରଥମ ରାମଚନ୍ଦ୍ରଦେବଙ୍କ ସଭାକବି ।
**ଚଣ୍ଡୀକବି ଓ ଯଦୁପତି ଦାସ**
ନରସିଂହଦେବଙ୍କ ସଭା କବି ।
} ଏମାନେ ବିଦ୍ୟାପତି ଓ ଚଣ୍ଡୀ ଦାସଙ୍କୁ ଅନୁକରଣ କରି ରଚନା କରିଥିଲେ ।

**ବିଶ୍ୱନାଥ ଦାସ**—
ବା
ପୁରୁଷୋତ୍ତମ ବିଶ୍ୱନାଥ ଖୁଣ୍ଟିଆ
} ବିଚିତ୍ର ରାମାୟଣ ଏହାଙ୍କର ରଚନା । ୩୦୦ ବର୍ଷ ହେଲା ସେ ଭବଧାମ ଛାଡ଼ିଗଲେଣି । ପୁରୀରେ ଏହାଙ୍କର ଜନ୍ମସ୍ଥାନ

ଅସାଧୁ ହୁଅଇ ସାଧୁ ସାଧୁର ସଙ୍ଗରେ । ନିର୍ମଳ ଏକ୍ରି ଜଳ ନିର୍ମଳୀ ଯୋଗରେ ॥

**ଶିଶୁଶଙ୍କର ଦାସ**— ୧୭ଶ ଶତାବ୍ଦୀରେ ଏ ମହାଶୟ ଉଷାଭିଳାଷ ରଚନା କରିଥିଲେ ।

**ଚନ୍ଦ୍ରଶର୍ମା ମହାପାତ୍ର**—ସଂସ୍କୃତରେ ସୁଦର୍ଶନ ବିଳାସ, ହଂସଦୂତ ଓ ଶବ୍ଦକଳ୍ପଲତା ଏ ମହାଶୟ ରଚନା କରିଥିଲେ । ୧୭୦ ବର୍ଷ ହେଲା ସେ ଇହଧାମରୁ ବିଦାୟ ନେଲେଣି ।

**ଦେବଦୁର୍ଲ୍ଲଭ ଦାସ**— ୧୭ଶ ଶତାବ୍ଦୀରେ ଏ ରହସ୍ୟମଞ୍ଜରୀ ରଚନା କରିଥିଲେ ।

**ଗଦାଧର ମହାପାତ୍ର ରାଜଗୁରୁ**— ୬୧୦ ବର୍ଷ ତଳେ ପୁରୀ ନଗରୀରେ ଏ ମହାଶୟ ଜନ୍ମଗ୍ରହଣ କରି ସଂସ୍କୃତରେ କାଳସାର, ଶ୍ରାଦ୍ଧସାର ଓ ଆଗ୍ନେୟସାର ରଚନା କରିଥିଲେ । ଏ ଓଡ଼ିଶା ରାଜାଙ୍କ ଗୁରୁ ଥିଲେ ।

**ହଳଧର ଦାସ**—ଏ ମହାଶୟ ପ୍ରାୟ ୫୧୦ ବର୍ଷ ତଳେ ଜୀବିତ ଥିଲେ । ଅଧ୍ୟାତ୍ମ ରାମାୟଣ ଓ ହଳଧର କାରିକା ଏହାଙ୍କର ରଚନା ।

**ନୀଳାମ୍ବର ଭଞ୍ଜ**—ଏ ମହାଶୟ ପ୍ରାୟ ୧୭୦ ବର୍ଷ ତଳେ ହଳଦିଆର ରଜା ଥିଲେ । କୃଷ୍ଣ ଲୀଳାମୃତ ଓ ପଞ୍ଚସାୟକ ଏହାଙ୍କର ରଚନା ।

**ହରିଚନ୍ଦନ ଦେବ**—ପ୍ରାୟ ୩୧୦ ବର୍ଷ ତଳେ ଏ ଜଣେ ଗଡ଼ଜାତର ରାଜା ଥିଲେ । ଲୀଳାବତୀ ଓ ଚନ୍ଦ୍ରଭାନୁ ଏହାଙ୍କର ରଚନା ।

**ଲୋକନାଥ ବିଦ୍ୟାଧର**—୬୦୦ ବର୍ଷରୁ ଅଧିକ ହେବ ଏ ମହାଶୟ ଗୈଡ଼ଖୋରଧାରେ ବାସ କରୁଥିଲେ । ଚିତ୍ରୋତ୍ପଳା, ଚନ୍ଦ୍ରକଳା, ସର୍ବାଙ୍ଗସୁନ୍ଦରୀ, ରସକଳା ଓ ପଦ୍ମମଳା ଏହାଙ୍କର ରଚନା ।

**ରଘୁନାଥ ଦାସ**—ପ୍ରାୟ ୧୭୦ ବର୍ଷତଳେ ସୁନ୍ଦରଗ୍ରାମରେ ଏ ମହାଶୟ ଦେହ ତ୍ୟାଗ କଲେ । ପ୍ରାୟଶ୍ଚିତ୍ତ, ତରଙ୍ଗିଣୀ, ବୈଦ୍ୟ କଳ୍ପଲତିକା, ଅମରକୋଷ ଟୀକା, ରଘୁବଂଶ ଟୀକା, ଉତ୍ପାତ ତରଙ୍ଗିଣୀ ଓ ସଂସ୍କୃତ ମଞ୍ଜରୀ ଏହାଙ୍କର ଲେଖା ।

**ତ୍ରିପୁରାରି ଦାସ**—ଏ ମହାଶୟ ୬୧୦ ବର୍ଷ ତଳେ ଉତ୍କଳରେ ଜୀବିତ ଥିଲେ । ଜଟଯାତ୍ରା, ରାମକୃଷ୍ଣ କେଳି କଲ୍ଲୋଳ, ରାଧାକୃଷ୍ଣ କେଳି କଲ୍ଲୋଳ ଓ କେରଳ ଗୀତ ଏହାଙ୍କ ଲିଖିତ ।

**କବିସୂର୍ଯ୍ୟ**-ଏହାଙ୍କର ନାମ ବଳଦେବରଥ—ଜନ୍ମ ୧୬୮୧ ମୃତ୍ୟୁ ୧୮୪୫ ଏହାଙ୍କ ଗୃହ ପ୍ରଥମେ ବୋଦଲା ଅଠଗଡ଼ ଓ ପରେ ଖାଲ୍ଲିକୋଟ ଥିଲା । କିଶୋର ଚନ୍ଦ୍ରାନନଚମ୍ପୂ, ଆନନ୍ଦ ଦାମୋଦର ଚମ୍ପୂ, କଳାକର ଚମ୍ପୂ, ସଙ୍ଗୀତ, ଭୃଙ୍ଗାଗୀତ, ଚନ୍ଦ୍ରପଦ ଓ ହାସ୍ୟାର୍ଣ୍ଣବ ଏହାଙ୍କର ରଚନା ।

**ସଦାନନ୍ଦ କବିସୂର୍ଯ୍ୟ ବ୍ରହ୍ମା**—ଏହାଙ୍କ ଚିନ୍ତାମଣି ନାମ ଚିନ୍ତାମଣି, ପ୍ରେମ ରସାମୃତ, ଯୁଗଳ ରସାମୃତ ଲହରୀ, ପ୍ରେମ ତରଙ୍ଗିଣୀ, ପ୍ରେମଲହରୀ, ପ୍ରେମଭଉଁରୀ, ଯୁଗଳ ରସାମୃତ ଭଉଁରୀ, ପ୍ରେମ କଳ୍ପଲତା ଏହାଙ୍କର ରଚନା । ପ୍ରାୟ ୬୦ ବର୍ଷ ପୂର୍ବେ ଏ ମହାଶୟ ଜୀବିତ ଥିଲେ ।

**ମାଧବ ଦାସ**—ପ୍ରାୟ ୬୧୦ ବର୍ଷ ପୂର୍ବେ ଏ ମହାଶୟ ଜୀବିତ ଥାଇ ରାମାୟଣକୁ ସଂସ୍କୃତରୁ ଅନୁବାଦ କରିଥିଲେ । ମାଘ ମାହାତ୍ମ୍ୟ, କାର୍ତ୍ତିକ ମାହାତ୍ମ୍ୟ, ବୈଶାଖ ମାହାତ୍ମ୍ୟ, ମାର୍କଣ୍ଡପୁରାଣ ଏବଂ ପଦ୍ମପୁରାଣ ଏହାଙ୍କ ରଚିତ ।

**ଲକ୍ଷ୍ମୀଧର ମିଶ୍ର**—ପ୍ରାୟ ୬୧୦ ବର୍ଷ ତଳେ ଏ ମହାଶୟ ଭୁବନେଶ୍ୱରରେ ଜନ୍ମ ଗ୍ରହଣ କରିଥିଲେ । ଶିବକଳ୍ପଦ୍ରୁମ ଏହାଙ୍କର ରଚନା ।

**କବୀନ୍ଦ୍ର ନାରାୟଣ ଶର୍ମା**—ପ୍ରାୟ ୧୬୧୦ବର୍ଷତଳେ ଲଲାଟେନ୍ଦୁ କେଶରୀଙ୍କ ସମୟରେ ଏ ମହାଶୟ ଭୁବନେଶ୍ୱରରେ ଜାତ ହୋଇ ସଂସ୍କୃତରେ ଏକାମ୍ରଚନ୍ଦ୍ରିକା ଓ ବିରଜା ମାହାତ୍ମ୍ୟ ଲେଖିଥିଲେ ।

**କବିଚନ୍ଦ୍ର ରଘୁନାଥ ପରୀକ୍ଷା**— ସଂସ୍କୃତରେ ଗୋପୀନାଥ ବଲ୍ଲଭ ନାଟକ ଏହାଙ୍କର ରଚନା । ଏ

ଅସୂର୍ଯ୍ୟ ଯାଏ ଭଜେ ଯେତେ ଗଡ଼ । ଲୁମ୍ବ ମାୟା ଯାଏ ଛାୟା ସବୁ ବଢ଼ି ॥

ମହାଶୟ୍ଙ୍କ ଲାଙ୍ଗୁଳା ନରସିଂହ ଦେବଙ୍କ ସମୟରେ ଜୀବିତ ଥିଲେ ।

**ବୃଦ୍ଧ ଚମ୍ପତି ରାୟ୍**—(୧୪୬୧-୧୫୩୨) ଏ ମହାଶୟ୍ ପ୍ରତାପ ରୁଦ୍ରଦେବଙ୍କ ସଭାକବି ଥିଲେ । ହରିବିଳାସ ପ୍ରବନ୍ଧ ଏହାଙ୍କ ରଚନା ।

**କାର୍ତ୍ତିକ ଦାସ**—( ୧୬୦୦-୧୬୫୦ ) ଶତାବ୍ଦୀରେ ଏ ମହାଶୟ୍ ଜୀବିତ ଥାଇ ରୁକ୍ମିଣୀବିଭା ଲେଖିଥିଲେ ।

**କୃଷ୍ଣସିଂହ**—ପ୍ରାୟ୍ ୨୧୦ବର୍ଷତଳେ ଏ ~~ଖୁରୁଦା~~ ଗଡ଼ର ରାଜା ଥିଲେ । ଓଡ଼ିଆରେ ମହାଭାରତ କରାଇଥିଲେ ।

**ପଦ୍ମନାଭ ପରୀକ୍ଷା**—ଏ ମହାଶୟ୍ ୧୬୦ ବର୍ଷ ତଳେ ଗୀତ ତାଳ ପ୍ରବନ୍ଧ ନାମକ ଏକ ପୁସ୍ତକ ରଚନା କରିଥିଲେ ।

**ନରସିଂହ ବାଜପେୟୀ**—ପୁରୀରେ ୩୧୦ ବର୍ଷତଳେ ଏ ମହାଶୟ୍ ଜୀବିତ ଥାଇ ସଂସ୍କୃତରେ ଆଗ୍ନିର ପ୍ରଦୀପ, ବ୍ୟବସ୍ଥା ପ୍ରଦୀପ, ପ୍ରାୟଶ୍ଚିତ୍ତ ପ୍ରଦୀପ, ବାଜପେୟୀସ୍ମୃତି ଓ ଦାନସାଗର ରଚନା କରିଥିଲେ ।

**ଶ୍ରୀପତି ଦାସ**—ପ୍ରାୟ୍ ୬୦୦ ବର୍ଷ ତଳେ ଶ୍ରୀପତି ନାମକ ଜ୍ୟୋତିଷ ଗ୍ରନ୍ଥ ଲେଖିଥିଲେ ।

**ପୁରୁଷୋତ୍ତମଦେବ**—ତ୍ରିକାଣ୍ଡ ଶେଷ ନାମକ ଏକ ସଂସ୍କୃତ ଅଭିଧାନ ପ୍ରଣୟନ କରିଥିଲେ ।

**ସାରଳାଦାସ**—କଟକ ଜିଲା ତେନ୍ତୁଳିପଦାରେ ୩୧୦ ବର୍ଷ ହେଲା ଜୀବନଲୀଳା ଶେଷ କଲେ । ସେ କୃଷକ ଓ ତାଙ୍କ ପିତାଙ୍କ ନାମ ସିଦ୍ଧେଶ୍ୱର ପରିଡ଼ା । ସେ ଦାଣ୍ଡି ବୃତ୍ତରେ (୧୪୩୬-୧୪୬୯ ରେ) ମହାଭାରତ ରଚନା କରିଥିଲେ ।

**ଜଗନ୍ନାଥ ଦାସ**—ପୂର୍ବେ ଏ ମହାତ୍ମା ଯାଜପୁରରେ ଥିଲେ, ପରେ ପୁରୀକୁ ଗଲେ । ୧୪୯୦ ଖ୍ରୀଷ୍ଟାବ୍ଦରେ ଏ ମହାତ୍ମାଙ୍କ ଜନ୍ମ । ଶ୍ରୀମଦ୍ଭାଗବତ, ଜଗନ୍ନାଥ-କାରିକା, ମନଃଶିକ୍ଷା ଓ ପାଷାଣ୍ଡ ଦଳନ ଏହାଙ୍କ ଲିଖିତ ।

**ବଳରାମ ଦାସ**—ଏ ମହାଶୟ୍ ଜଣେ କରଣ ବୈଷ୍ଣବ । ୩୧୦ ବର୍ଷ ପୂର୍ବରେ ଜୀବିତ ଥିଲେ । ପୁରୁଷୋତ୍ତମ ଏହାଙ୍କର ବାସସ୍ଥାନ ଥିଲା । ଭୂତକେଳି, ବଟଅବକାଶ, ବ୍ରହ୍ମାଣ୍ଡଗୀତା ଅର୍ଜୁନଗୀତା, ଭାବସମୁଦ୍ର, ବେଢ଼ା ପରିକ୍ରମା, ଭଗବଦ୍‌ଗୀତା, ଚଣ୍ଡୀପୁରାଣ, ଭକ୍ତି ରସାମୃତ ସିନ୍ଧୁ, ଗଜନିସ୍ତାରଣ, ଛତିଶଗୀତା, ଗଣେଶବିଭୂତି, ଗରୁଡ଼ଗୀତା, ଗୁପ୍ତଗୀତା, ଗୀତାସାର, ମହାଭାରତ, କୃଷ୍ଣ-ଲୀଳା, ମୃଗୁଣୀସ୍ତୁତି, ନାମରତ୍ନଗୀତା, ରାମାୟଣ, ରସବିନୋଦ, ରାସକେଳି, କମଳଲୋଚନ, ଲୁଳା-ଙ୍ଗଣା ଓ ଶରୀରଭୂଗୋଳ ଏ ମହାଶୟ୍ ରଚନା କରିଥିଲେ ।

**ଅଚ୍ୟୁତାନନ୍ଦ ଦାସ**—ନେମାଳରେ ଏହାଙ୍କର ଏକ ଗାଦି ଅଛି । ଏ ମହାତ୍ମା ଜଣେ ଭକ୍ତ ଓ ଅଭିମନ୍ୟୁଙ୍କ ସମସାମୟିକ । ଅଚ୍ୟୁତାନନ୍ଦ ମାଳିକା, ସପ୍ତାଭାଗବତ, ଶୂନ୍ୟ ନିଷେଧ ଗୀତା ପ୍ରଭୃତି କେତେକ ଭକ୍ତି-ରସା-ତ୍ମକ ଗ୍ରନ୍ଥ ଏହାଙ୍କ ରଚିତ ।

**ଗୋପାଳଭଞ୍ଜ**—୬୧୦ ବର୍ଷ ତଳେ ସଂସ୍କୃତରେ ଅର୍କ-ମାହାତ୍ମ୍ୟ ଲେଖିଥିଲେ । ଏହାଙ୍କର ବାସସ୍ଥାନ ହଳଦିଆ ।

**ବିଶ୍ୱନାଥ ମିଶ୍ର**—ବିଚିତ୍ର ଭାରତ ଏହାଙ୍କର ରଚିତ । ପ୍ରାୟ୍ ୨୧୦ ବର୍ଷ ପୂର୍ବେ ଏ ମହାଶୟ୍ ଜୀବିତ ଥିଲେ ।

**ପଣ୍ଡିତ ଶ୍ରୀଚନ୍ଦନ**—ପ୍ରାୟ୍ ୧୦୦ ବର୍ଷ ତଳେ ବଡ଼ଦଣ୍ଡରେ ଏ ମହାଶୟ୍ ବାସ କରୁଥିଲେ । ବସନ୍ତ-ରାସ ଏହାଙ୍କ ଲିଖିତ ।

**ଭୀମଭୋଇ**—ଏ ଅନ୍ଧକବି । ରେଢ଼ାଖୋଲ ସନ୍ନିକଟ ସୋନପୁର ଅନ୍ତଃପାତୀ ସଗ୍ରାମପୁର ଗ୍ରାମରେ ଥିଲେ ଓ ପରେ ଜୁଲୁଣ୍ଡା ନାମକ ଗ୍ରାମରେ ମଠ ସ୍ଥାପନ କଲେ । ବ୍ରହ୍ମନିରୂପଣ ଗୀତା, ସ୍ତୁତି ଚିନ୍ତାମଣି, ଭଜନମାଳା, ଏହାଙ୍କ ରଚନା ।

**କାର୍ତ୍ତିକଦାସ**—ରୁକ୍ମିଣୀ ବିଭା । (୧୬୦୦-୧୬୫୦)

ମାଣ୍ଡୁ ଚୋର କଲେ କେବଳ ଯେତେକ । ଅଳ୍ପକ ରଗଡ଼େ ଛିଙ୍କିବ ତେତେକ ॥

**ଚୈତନ୍ୟ ଦାସ**—ଖଡ଼ିଆଳ ଷ୍ଟେଟ୍ ଅନ୍ତର୍ଗତ ବଡ଼ମୂଳ ଗ୍ରାମର ଅଧିବାସୀ । ସେ ବିଷ୍ଣୁଗର୍ଭ ପୁରାଣ, ନିର୍ଗୁଣ-ମାହାତ୍ମ୍ୟ ରଚନା କରିଥିଲେ ।

**ମଧୁସୂଦନ ଦାସ**—ନଳଚରିତ ।

**ପ୍ରତାପରାୟ**—ଶଶିସେଣା । ୧୭ଶ ଶତାବ୍ଦୀର ମଧ୍ୟଭାଗର କବି

**ବୃନ୍ଦାବନଦାସ**—ରସବାରିଧି । ୧୫ଶ ,, ,,

**ଦନେଇଦାସ**—ଗୋପୀଭାଷା ।

**ବୃନ୍ଦାବତୀ ଦାସୀ**—ପ୍ରାୟ ୨୩୦ ବର୍ଷ ପୂର୍ବେ ଏ କରଣ କୁଳରେ ଜନ୍ମ ଗ୍ରହଣ କରିଥିଲେ । ଏହାଙ୍କ ସ୍ୱାମୀ ଚନ୍ଦ୍ରଶେଖର ଦାସ ପୁରୀଜିଲା ଅନ୍ତଃପାତୀ ପୁରୁଷୋ-ତ୍ତମ କ୍ଷେତ୍ରର ୮ କୋଶ ଦୂରରେ ମଳପଡ଼ାରେ ବାସ କରୁଥିଲେ । ପୂର୍ଣ୍ଣତମ ଚନ୍ଦ୍ରୋଦୟ ଏହାଙ୍କ ରଚନା । ରଚନା କାଳ ୧୭୧୧—୧୭୦୦

**ଭୂପତି ପଣ୍ଡିତ**—ପ୍ରେମପଞ୍ଚାମୃତ ( ୧୭୧୫-୧୭ ସାଲରେ ଲିଖିତ ) ସେ ପଶ୍ଚିମାଞ୍ଚଳବାସୀ ସାରସ୍ୱତ ବ୍ରାହ୍ମଣ ।

**ସୂର୍ଯ୍ୟମଣି ନ୍ୟାଉ ପଟ୍ଟନାୟକ**—
ଅଧ୍ୟାତ୍ମ ରାମାୟଣ ଲେଖିଥିଲେ ।

**କେଶବ ଚନ୍ଦ୍ର ପଟ୍ଟନାୟକ**-
କେଶବ ରାମାୟଣ ଲେଖିଥିଲେ ।

**ପୀତାମ୍ବର ଦାସ**—ନୃସିଂହପୁରାଣର ଲେଖକ ।

**କୃଷ୍ଣଚରଣ ପଟ୍ଟନାୟକ**-
ବାଲ୍ମୀକି ରାମାୟଣର ଅନୁବାଦକ ।

**ଯଶୋବନ୍ତ ଦାସ**—୧୫ଶ ଶତାବ୍ଦୀର କବି ଓ ଚୈତନ୍ୟ-ଦେବଙ୍କ ଭକ୍ତ । ସେ ଶିବସ୍ୱରୋଦୟ ଲେଖିଥିଲେ । ପିତାଙ୍କ ନାମ ଜଗନ୍ନାଥ ଓ ମାତାଙ୍କ ନାମ-ରେଖା ଦେବୀ ।

**ରାମକବି**—( ୧୫୭୦—୧୬୦୧ ) ( ସଙ୍ଗୀତ କବି )

**ରାୟ ଦାମୋଦର ଦାସ**— ,, ,,

**ଯଦୁପତି ଦାସ**—(୧୬୦୫-୧୬୩୫) (ସଙ୍ଗୀତକବି)

**ବନମାଳୀ ଦାସ**—ସୁବିଖ୍ୟାତ ସଙ୍ଗୀତ ପଦକର୍ତ୍ତା । ସେ ଜାତିରେ କରଣ ଥିଲେ । ଭୈଷ୍ଣବସ୍ଥ କର ଶ୍ରୀ ଶ୍ରୀ ରାଧାକୃଷ୍ଣ ବିଷୟକ ସଙ୍ଗୀତାବଳୀ ରଚନା କରିଥିଲେ । ବର୍ଣ୍ଣନା—ସରଳ, ପ୍ରାଞ୍ଜଳ ଓ ସେଥିରେ କବିତ୍ୱଭାବ ଜୀବନ୍ତ ଉଦ୍ଦିଷ୍ଟ ।

**ଜୟଦେବ**—୧୧ ଶ ଶତାବ୍ଦୀରେ ଭୁବନେଶ୍ୱର ଠାରୁ ପ୍ରାୟ ୧୪ ମାଇଲ ଦୂରରେ ବାଲିପାଟଣା ନିକଟସ୍ଥ କେନ୍ଦୁବିଲ୍ୱ ଗ୍ରାମରେ ବ୍ରାହ୍ମଣ କୁଳରେ ଜନ୍ମ ଗ୍ରହଣ କରିଥିଲେ । ଏହାଙ୍କ ପିତାଙ୍କ ନାମ-ଭୋଜଦେବ ଓ ମାତାଙ୍କ ନାମ ବାମାଦେବୀ । ମଧୁର କୋମଳକାନ୍ତ ପଦାବଳୀ ଗୀତଗୋବିନ୍ଦ ଏହାଙ୍କର ରଚନା ।

**ଦାଶରଥି ଦାସ**—( ୧୬୫୩ ଶକାବ୍ଦ ) ବ୍ରଜବିହାରର ଲେଖକ ।

**ଭୀମଦାସ**—( ୧୭୧୬ ) ହରିଭକ୍ତି ଚନ୍ଦ୍ରୋଦୟ ଓ ଭକ୍ତି ରତ୍ନାବଳୀ ଏହାଙ୍କର ରଚନା ।

**ଲୋକନାଥ ବିଦ୍ୟାଧର**—( ୧୭୦୦—୧୭୫୧ ) ପଦ୍ମାବତୀ ପରିଣୟର କବି ।

**ଭକ୍ତ ଜୟକୃଷ୍ଣ**—ସମ୍ବଲପୁର ଠାରୁ ୪୦ ମାଇଲ ଦୂରସ୍ଥ କଇଁଶିଆ ଗ୍ରାମରେ ଜନ୍ମ ଗ୍ରହଣ କରିଥିଲେ । ଜୟ-କୃଷ୍ଣ ଭଜନ ଏହାଙ୍କର ରଚନା ।

**ଅର୍ଜୁନ ଦାସ**—୧୭ ଶ ଶତାବ୍ଦୀର କବି । ରାମ-ବିଭା ଏହାଙ୍କର ରଚନା ।

**ଗୋପୀନାଥ କବିଭୂଷଣ**—'କବି ଚିନ୍ତାମଣି' ଓ 'ରାମଚନ୍ଦ୍ର ବିହାର' କାବ୍ୟ ଦ୍ୱୟ ଏହାଙ୍କର ରଚନା ।

**ଗୋବିନ୍ଦ ଭଞ୍ଜ**—ଷୋଡ଼ଶ ଶତାବ୍ଦୀର ଶେଷଭାଗର କବି । ଏ କେନ୍ଦୁଝର ରାଜବଂଶୀୟ ଥିଲେ, ପରେ ମଠ ସମ୍ପ୍ର-ଦାୟ ଭୁକ୍ତ ହେଲେ । 'ଚରଣ ସୁଧାନିଧି' ଏହାଙ୍କର ରଚନା ।

**କୁଳିଶୁଁ କଠୋର ପୁଣି ପୁଷ୍ପୁଁ ସୁକୁମାର । ମହାତ୍ମାଙ୍କ ମନ, ମର୍ମ କେ ବୁଝିବ ତାର ॥**

**ଯଦୁମଣି ମହାପାତ୍ର**—ପ୍ରାୟ ୧୭୭୧ ଖ୍ରୀଷ୍ଟାବ୍ଦରେ ଜନ୍ମଗ୍ରହଣ କରିଥିଲେ । ପ୍ରବନ୍ଧ ପୂର୍ଣ୍ଣଚନ୍ଦ୍ରୋଦୟ ଏହାଙ୍କର ରଚନା ।

**ଗୋପାଳକୃଷ୍ଣ ପଟ୍ଟନାୟକ**—ଏମହାଶୟଙ୍କର ଜନ୍ମ ୧୭୮୫ ଓ ମୃତ୍ୟୁ ତା ୩ାମା୧୮୬୨ ମସିହା । ଏ ମହାଶୟଙ୍କର ପିତା ବନବାସୀ ପଟ୍ଟନାୟକ ପାରଳାଖେମୁଣ୍ଡି ରାଜଧାନୀର କବି ଥିଲେ ଏବଂ ସେଥିପାଇଁ ୧୯ ଖଣ୍ଡ ଗ୍ରାମ ଭୋଗ କରୁଥିଲେ । ଏ ଭକ୍ତ କବିଙ୍କର ସଙ୍ଗୀତମାଳା ରାଧାକୃଷ୍ଣ ପ୍ରେମରସରେ ପୂର୍ଣ୍ଣ । ଭାଷା ସରଳ ଓ ପ୍ରାଞ୍ଜଳ ଏବଂ ଭାବ ମନୋମୁଗ୍ଧକର ।

**ଗୃନ୍ଦ ରାୟଗୁରୁ**—ପୂର୍ବକାଳୀ ବୀରନରସିଂହପୁର ଶାସନରେ ଏ ମହାଶୟ ଜନ୍ମ ଗ୍ରହଣ କରି ଗଜପତି ରାଜା ବୀରକିଶୋର ଦେବଙ୍କ ରାଜସଭାରେ ପ୍ରତିପତ୍ତି ଲାଭ କରିଥିଲେ । ସଂସ୍କୃତ ଭାଷାରେ "ଉଷା-ପରିଣୟ" ନାଟକ ଏହାଙ୍କର ରଚନା । ଏ ପୁଣି 'ନୈଷଧ' କାବ୍ୟର ଉତ୍କୃଷ୍ଟ ଟୀକା ଲେଖିଥିଲେ ।

**କବି ହରିକୃଷ୍ଣ**—ଏହାଙ୍କ ବାସସ୍ଥାନ ପାରଳାଖେମୁଣ୍ଡି । ଜାତିରେ ଚିତ୍ରକର । ଏକାଦଶୀ ମାହାତ୍ମ୍ୟ ଓ ଗୋପୀନାଥ ଜଣାଣ ଏହାଙ୍କ ରଚିତ ।

## ଆଧୁନିକ ସ୍ୱର୍ଗତ କବି ।

**ରାୟ ରାଧାନାଥ ରାୟ ବାହାଦୁର**—

ଏ ମହାଶୟ ବାଲେଶ୍ୱର ଜିଲ୍ଲାର କେଦାରପୁର ଗ୍ରାମରେ ୧୮୪୮ ମସିହାରେ ଜନ୍ମଗ୍ରହଣ କରି ୧୯୦୮ ମସିହା ଅପ୍ରେଲ ତା ୧ ରିଖରେ କଟକରେ ସ୍ୱର୍ଗାରୋହଣ କଲେ । ସେ କେଦାରଗୌରୀ, ଉଷା, ନନ୍ଦିକେଶ୍ୱରୀ, ଯଯାତିକେଶରୀ, ଚିଲିକା, ମହାଯାତ୍ରା, ଚନ୍ଦ୍ରଭାଗା, କବିତାବଳୀ, ପାର୍ବତୀ, ସାବିତ୍ରୀ, ଦଶରଥ ବିୟୋଗ, ରଚନା କରିଥିଲେ । ଏ ନବ୍ୟ ଉତ୍କଳ ସାହିତ୍ୟର ପଥ ପ୍ରଦର୍ଶକ । ଏହାଙ୍କ ପିତାଙ୍କ ନାମ-ସୁନ୍ଦର ନାରାୟଣ ଓ ମାତାଙ୍କ ନାମ ତାରଣୀ ଦାସୀ ।

**ରାୟ ମଧୁସୂଦନ ରାଓ ବାହାଦୁର**—

ଏ ମହାଶୟ ପୁରୀରେ ୧୮୫୩ ଖ୍ରୀଷ୍ଟାବ୍ଦ ଜାନୁୟାରୀ ୨୯ ତାରିଖ ଶ୍ରୀପଞ୍ଚମୀ ଦିନ ଜନ୍ମ ଗ୍ରହଣ କରି ୧୯୧୨ ଡିସେମ୍ବର ୨୮ ତାରିଖରେ କଟକରେ ସ୍ୱର୍ଗବାସୀ ହେଲେ । ସେ ଛନ୍ଦମାଳା, କବିତାବଳୀ, କୁସୁମାଞ୍ଜଳି, ପ୍ରବନ୍ଧମାଳା, ବସନ୍ତଗାଥା, ଉତ୍କଳଗାଥା, ହିମାଳୟେ ଉଦୟୋତ୍ସବ ପ୍ରଭୃତି ରଚନା କରିଥିଲେ । ଏହାଙ୍କ ପିତାଙ୍କ ନାମ ଭାଗୀରଥୀ ଓ ମାତାଙ୍କ ନାମ ଅମ୍ବିକା ।

**ସରସ୍ୱତୀ ଫକୀରମୋହନ ସେନାପତି**—

ବାଲେଶ୍ୱର ଜିଲା ମଲ୍ଲିକାଶପୁରରେ ଏ ମହାଶୟ ଜନ୍ମଗ୍ରହଣ କରି ବାଲ୍ୟକାଳରୁ ଭାରତୀସେବାରେ ମନୋନିବେଶ କଲେ । ଏ ମହାଶୟଙ୍କର ଭାଷା ସ୍ୱଚ୍ଛନ୍ଦ ସୋରସ ଓ ସରସ ଅଦ୍ଭୁତ । ସେ ଛମାଣ ଆଠଗୁଣ୍ଠ, ଲଛମା, ମାମୁଁ, ଗଳ୍ପସ୍ୱଳ୍ପ, ପ୍ରାୟଶ୍ଚିତ୍ତ ପ୍ରଭୃତି ଉପନ୍ୟାସ ଓ ରାମାୟଣ, ମହାଭାରତ, ଧୂଳି, ବୌଦ୍ଧାବତାର କାବ୍ୟ, ଅବସର ବାସରେ, ପୁଷ୍ପମାଳା, ପୂଜାଫୁଲ ଉପହାର ପ୍ରଭୃତି କାବ୍ୟ ଏବଂ ଖଣ୍ଡ-କବିତା ରଚନା କରିଥିଲେ । ଜନ୍ମ-୧୮୪୩ ଜାନୁୟାରୀ, ମୃତ୍ୟୁ ୧୯୧୮ ଜୁନ୍ ୧୪ ତାରିଖ । ଏହାଙ୍କର ପିତାଙ୍କ ନାମ ଲକ୍ଷ୍ମଣ ଚରଣ ସେନାପତି ଓ ମାତାଙ୍କ ନାମ ତୁଳସୀ ଦେବୀ ।

**ବାସୁଦେବ ସୁଢଳ ଦେବ ସି, ଆଇ, ଇ**—

ବାମଣ୍ଡାର ପ୍ରାତଃସ୍ମରଣୀୟ ଅଧୀଶ୍ୱର । ଅଳଙ୍କାର ବୋଧୋଦୟ, ଛନ୍ଦୋମୂଳା, ଅଳଙ୍କାର ଚନ୍ଦ୍ରିକା, ବୀରବାମା, ଚଣ୍ଡୀ ଓ କିଷ୍କିନ୍ଧ୍ୟା ପ୍ରଭୃତି ରଚନା କରିଥିଲେ । ୧୨୫୮ ସାଲ ବୈଶାଖ ଦି ୨୮ ନରେ ଜନ୍ମ । ମୃତ୍ୟୁ-୧୯୦୩ ନଭେମ୍ବର ୧୯ ତାରିଖ ।

**ସଚ୍ଚିଦାନନ୍ଦ ତ୍ରିଭୁବନ ଦେବ**—

ବାମଣ୍ଡାଧୀଶ୍ୱର ବାସୁଦେବ ସୁଢଳ ଦେବଙ୍କର ଜ୍ୟେଷ୍ଠପୁତ୍ର । ଏ ମହାଶୟ ମାଧୁରୀଶବର୍ଷ, ଅନଙ୍ଗ, କାଦମ୍ବରୀ, ଭୀଷ୍ମ ପ୍ରଭୃତି ରଚନା କରି ଯଶସ୍ୱୀ ହୋଇଥିଲେ ।

**ନନ୍ଦକିଶୋର ବଳ ରାୟସାହେବ**—

ଏ ମହାଶୟ ନିର୍ଝରଣୀ, ବସନ୍ତକୋକିଳ, ତରଙ୍ଗିଣୀ, ନାନାବାୟା ଗୀତ, ପଲ୍ଲୀଚିତ୍ର, ଶର୍ମିଷ୍ଠା, କନକଲତା, ଜନ୍ମଭୂମି ପ୍ରଭୃତି ରଚନା କରିଥିଲେ । ଏହାଙ୍କର ଜନ୍ମସ୍ଥାନ କଟକଜିଲ୍ଲା କୁଶପୁର ଗ୍ରାମରେ ।

**ଗଙ୍ଗାଧର ମେହେର**—ସମ୍ବଲପୁର ଜିଲ୍ଲା ବରପାଲିରେ ଜନ୍ମଗ୍ରହଣ କରିଥିଲେ । ତପସ୍ୱିନୀ, ପ୍ରଣୟବଲ୍ଲରୀ, ଅର୍ଘ୍ୟଥାଳୀ, ଇନ୍ଦୁମତୀ, କୀଚକବଧ, କବିତାକଲ୍ଲୋଳ, ଅଯୋଧ୍ୟାଦୃଶ୍ୟ, ଉତ୍କଳଲକ୍ଷ୍ମୀ ଏହାଙ୍କର ରଚନା ।

**ଜଗନ୍ନାଥ ପାଣି**—ପ୍ରାୟ ୩୦ ବର୍ଷ ହେଲା ଦେହତ୍ୟାଗ କଲେଣି । ଏହାଙ୍କ ବାସସ୍ଥାନ ବାଲେଶ୍ୱର ଜିଲ୍ଲା ଭଦ୍ରକ ନଳାଙ୍ଗରେ ଓ ଜନ୍ମ ବ୍ରାହ୍ମଣକୁଳରେ । ଏ ଦକ୍ଷଯଜ୍ଞ, ପାରିଜାତ ହରଣ, ଧ୍ରୁବଚରିତ, ପ୍ରହ୍ଲାଦ ଚରିତ, କପଟପାଶା ପ୍ରଭୃତି ରଚନା କରିଥିଲେ । ପଦଲାଳିତ୍ୟ ଓ ବିଭିନ୍ନରସର ଅବତାରଣା ଯୋଗୁଁ ସେ ଗୀତ ଗୁଡ଼ିକ ଚିତ୍ତାକର୍ଷକ ।

**ଗୋପବନ୍ଧୁ ଦାସ**—ପୁରୀଜିଲ୍ଲାର ସତ୍ୟବାଦୀ ଥାନାନ୍ତର୍ଗତ ସୁଆଣ୍ଡୋ-ଗ୍ରାମରେ ବ୍ରାହ୍ମଣକୁଳରେ ୧୮୭୭ ମସିହା ଅକ୍ଟୋବର ମାସରେ ଜନ୍ମଗ୍ରହଣ କରିଥିଲେ । ବନ୍ଦୀର ଆତ୍ମକଥା, ଧର୍ମପଦ, ଗୋ ମହାତ୍ମ୍ୟ, ଏ ମହାଶୟଙ୍କର ରଚନା । କଲ୍ଲଲତା କାବ୍ୟ, ଏକା ଓଡ଼ିଶା କାହିଁକି ସୁଦୂର ବିଦେଶରେ ମଧ୍ୟ ଉଚ୍ଚସ୍ଥାନ ଅଧିକାର କରିଥାନ୍ତା, ମାତ୍ର ତାହାର ପାଣ୍ଡୁଲିପି ଦୈବଦୁର୍ବିପାକରୁ ଅପହୃତ ହୋଇଅଛି । ଏହାଙ୍କ ପିତାଙ୍କ ନାମ ଦୈତ୍ୟାରି ପ୍ରସାଦ ଦାଶ ଓ ମାତାଙ୍କ ନାମ ସ୍ୱର୍ଣ୍ଣମୟୀ ଦେବୀ । ସ୍ୱର୍ଗାରୋହଣ ସମୟ—

ତା ୧୭।୬।୧୯୨୮ ମସିହା

**ରାମଚନ୍ଦ୍ର ଆଚାର୍ଯ୍ୟ**—କମଳ କୁମାରୀ, ବୀର ଓଡ଼ିଆ, ପଦ୍ମିନୀ, ପ୍ରଣୟ ପ୍ରବାହ, ବେତାଳ କଥା ଏହାଙ୍କ ରଚନା । ନିବାସ ବ୍ରହ୍ମପୁର ।

**ରାମଶଙ୍କର ରାୟ**—ବିବାସିନୀ, ଯୁଗଧର୍ମ, କଂସବଧ, କାଞ୍ଚିକାବେରୀ, କାଞ୍ଚନମାଳୀ, ଚୈତନ୍ୟଲୀଳା, ବନବାଳା, ଲୀଳାବତୀ, ବିଷଯନ୍ତ୍ର ପ୍ରଭୃତି ନାଟକ ରଚନା କରିଥିଲେ । ପିତାଙ୍କ ନାମ ସଦାଶିବପ୍ରସାଦ ରାୟ । ମାତାଙ୍କ ନାମ ଅନ୍ନପୂର୍ଣ୍ଣା ଦାସୀ । ସେ ବ ୬୫ ର୍ଷ ବୟସରେ ତା ୧୩।୮।୧୯୩୧ ଇହଲୀଳା ସାଙ୍ଗକଲେ,

**ମଣିଚରଣ ମହାପାତ୍ର**—ଏ ମହାଶୟ ବାଲେଶ୍ୱର ଜିଲ୍ଲା ସୋରଥାନା ଖିରମ୍ବରରେ ୧୮୫୭ ଅଗଷ୍ଟ ୧୮ ତାରିଖରେ ଜନ୍ମଗ୍ରହଣ କରି ୧୯୨୦ ସେପ୍ଟେମ୍ବର ୧୭ ତାରିଖରେ ଇହଧାମ ତ୍ୟାଗ କରିଥିଲେ । ବ୍ରଜବନ୍ଧୁ ହରିହର, ସୁରଲକ୍ଷ୍ମୀ ପ୍ରଭୃତି ଏହାଙ୍କର ରଚନା ।

**କାମପାଳ ମିଶ୍ର**—ଯାଜପୁରରେ ବ୍ରାହ୍ମଣ କୁଳରେ ଜାତ ହୋଇଥିଲେ । ସୀତାବିବାହ, ବସନ୍ତଲତିକା ଏହାଙ୍କର ରଚନା ।



## ଉତ୍କଳ ସମ୍ମିଳନୀ

କୀର୍ତ୍ତିଶାଳିନୀ ଓଡ଼ିଶାର ଶିଳ୍ପସାହିତ୍ୟ ଓ ଜାତୀୟତା ଏକସମୟରେ ସୁପ୍ରସିଦ୍ଧ ଥିଲା । ଗଙ୍ଗ ଓ ସୂର୍ଯ୍ୟବଂଶ ରାଜତ୍ୱ ସମୟରେ ଉତ୍କଳର ବିଜୟ ନିଶାଣ ହିମାଳୟର ପାଦଦେଶରୁ ଗାଲ୍ଲାର ଉପସାଗର ପର୍ଯ୍ୟନ୍ତ ଭାରତର ସମଗ୍ର ପୂର୍ବାଞ୍ଚଳରେ ଉଡ଼ୁଥିଲା । କଳିଙ୍ଗ ସମ୍ରାଟ୍ ଖାରବେଳ ଶ୍ରୀରଙ୍କର ସାମ୍ରାଜ୍ୟ ବିସ୍ତୃତ ଠିକ୍ ଏହିପରି ଥିଲା । ଉତ୍ତରରେ ହୁଗୁଳୀ ନଦୀଠାରୁ ଦକ୍ଷିଣରେ କୃଷ୍ଣାନଦୀ ଓ କର୍ଣ୍ଣାଟଦେଶ ଏବଂ ପୂର୍ବରେ ବଙ୍ଗୋପସାଗର କୂଳରୁ ପଶ୍ଚିମରେ ବସ୍ତର, କଳାହାଣ୍ଡି ପ୍ରଭୃତି ରାଜ୍ୟ ନେଇ ଉତ୍କଳର ପ୍ରାୟ ସାଧାରଣ ସୀମା ଥିଲା । କାଳକ୍ରମେ ଭାଗ୍ୟ ବିପର୍ଯ୍ୟୟ ହେତୁ ସ୍ୱାଧୀନତା ହରାଇ ସମ୍ବଲପୁର ଜିଲ୍ଲା ବ୍ୟତୀତ ବର୍ତ୍ତମାନ ଓଡ଼ିଶା କେବଳ ମୋଗଲ ଓଡ଼ିଶା ହେଲା । ପରେ ତାହାର ଭିନ୍ନ ଅଙ୍ଗମାନ ବଙ୍ଗ, ମାନ୍ଦ୍ରାଜ ଓ ମଧ୍ୟପ୍ରଦେଶାନ୍ତର୍ଗତ ହେବାରୁ ଓଡ଼ିଆ ଭାଷା ଓ ଓଡ଼ିଆ ଜାତିର ବଳ ଅପଚୟ ଘଟୁଅଛି ।

ଏଣୁ ବହୁଦିନରୁ ଉତ୍କଳ ଭାଷୀ ଅଞ୍ଚଳମାନଙ୍କୁ ଏକଶାସନାଧୀନ କରିବା ଲାଗି ଓଡ଼ିଆମାନେ ସରକାରଙ୍କ ଠାରେ ଆବେଦନ ନିବେଦନ କରି ଆସୁଛନ୍ତି । ଓଡ଼ିଶାର କମିସନର କୁକ୍ ସାହେବ ପ୍ରଭୃତି ଓଡ଼ିଆମାନଙ୍କ ଅସୁବିଧା ବୁଝି ତାହାର ନିରାକରଣ ପାଇଁ ପ୍ରସ୍ତାବ କରିଥିଲେ ହେଁ ସରକାର କିଛି ବିଚାର କରି ନଥିଲେ । ସେକ୍ରେଟେରୀ ରିଜଲି ସାହେବ ସମୁଦାୟ ଓଡ଼ିଆଭାଷୀ ଅଞ୍ଚଳକୁ ଭାଷା ସୂତ୍ରରେ ଏକ ଶାସନାଧୀନ କରିବା ପାଇଁ ପ୍ରସ୍ତାବ କରିଥିଲେ । ଭାରତ ସରକାର

ତାହା ସ୍ୱୀକାର କଲେ ସତ, କିନ୍ତୁ ଫଳତଃ କିଛି ହେଲା ନାହିଁ । ଏଣେ ଓଡ଼ିଆମାନଙ୍କ ଦେଶମିଶ୍ରଣ ଆକାଂକ୍ଷା ଅଧିକ ବଳବତୀ ହେଲା ଏବଂ ସେମାନେ ଯତ୍ନ କରିବାକୁ ଲାଗିଲେ । ମେଦିନୀପୁର, ଗଞ୍ଜାମ ପ୍ରଭୃତି ଓଡ଼ିଆ ଅଞ୍ଚଳମାନ ଓଡ଼ିଶାରୁ ପୃଥକ୍ ହୋଇ ବିଭିନ୍ନ ଶାସନାଧୀନ ହୋଇଥିବାରୁ ପ୍ରଥମେ ଗଞ୍ଜାମରେ ଦେଶମିଶ୍ରଣ ଭାବ ଜାଗ୍ରତ ହେଲା । ୧୯୦୨ ସାଲରେ ବ୍ରହ୍ମପୁରଠାରେ ଏକ ଜାତୀୟ ସମ୍ମିଳନୀ ବସିଲା । ସେଥିରେ ଓଡ଼ିଆଙ୍କର ଜାତୀୟ ଆକାଂକ୍ଷା "ଓଡ଼ିଆଭାଷୀ ଅଞ୍ଚଳମାନଙ୍କୁ ଏକ ଶାସନାଧୀନ କରିବା" ବୋଲି ଧାର୍ଯ୍ୟ ହେଲା । ୧୯୦୩ ଖ୍ରୀଷ୍ଟାବ୍ଦରେ ଉତ୍କଳର ବରପୁତ୍ର ସ୍ୱନାମଧନ୍ୟ ସ୍ୱର୍ଗତଃ ମଧୁସୂଦନ ଦାସ ସି. ଆଇ. ଇ. କଟକରେ ଉତ୍କଳ ସମ୍ମିଳନୀ ସ୍ଥାପନ କଲେ । ଉତ୍କଳର ରାଜାଶିରୋମଣି ମୟୂରଭଞ୍ଜର ମହାରାଜା ସ୍ୱର୍ଗୀୟ ରାମଚନ୍ଦ୍ରଭଞ୍ଜ ପ୍ରୋକ୍ତ ସମ୍ମିଳନୀର ସଭାପତି ହେଲେ । ସେଥିରେ ପୂର୍ବୋକ୍ତ ପ୍ରସ୍ତାବ ଏହି ସମ୍ମିଳନୀର ମୁଖ୍ୟ ଉଦ୍ଦେଶ୍ୟ ବୋଲି ସଭାପତି ପ୍ରକାଶ କଲେ । ଫଳତ ସେହି ସମ୍ମିଳନୀ ନାନା ପରିବର୍ତ୍ତନ ମଧ୍ୟରେ ଅଦ୍ୟାପି ଉତ୍କଳ ପ୍ରାଦେଶିକ ସମ୍ମିଳନୀ ରୂପେ ଭାରତ ମହାସଭାର ଅନ୍ତର୍ଭୁକ୍ତ ହୋଇ ଚାଲୁଅଛି ।

## ଉତ୍କଳ ସମ୍ମିଳନୀ-ଅଧିବେଶନ

| ( ଅଧିବେଶନ ) | ( ସାଲ ) | ( ସ୍ଥାନ ) | ( ସଭାପତି ) | ( ସମ୍ପାଦକ ) | ( ଅଭ୍ୟର୍ଥନା ସମିତିର ସଭାପତି ) |
|---|---|---|---|---|---|
| ୧ ମ | ୧୯୦୩ | କଟକ | ମୟୂରଭଞ୍ଜ ମହାରାଜା | ଅନରେବଲ | କନିକା ରାଜା |
| ୨ ୟ | ୧୯୦୪ | ,, | ଧର୍ମକୋଟ ରାଜା | ମଧୁସୂଦନ ଦାସ | କେନ୍ଦୁଝର ମହାରାଜା |
| ୩ ୟ | ୧୯୦୫ | ବାଲେଶ୍ୱର | ତାଳଚେର ରାଜା | ବାବୁ ଦୈତାରିପ୍ରସାଦ ଦାସ | ରାଜା ବୈକୁଣ୍ଠନାଥ ଦେ ବାଃ |
| ୪ ର୍ଥ | ୧୯୦୬ | ଚନ୍ଦ୍ରପୁର | କନିକା ରାଜା | ବାବୁ ନରସିଂହ ଦାସ | ବଡ଼ଖେମଣ୍ଡି ରାଜା |
| ୫ ମ (ଅପ୍ରେଲ) | ୧୯୦୮ | ପୁରୀ | ସୁରଙ୍ଗୀ ରାଜା | ବାବୁ ଜଗବନ୍ଧୁ ସିଂହ | ପାରିକୁଦ ରାଜା |
| ୬ ଷ୍ଠ (ଡିସେମ୍ବର) | ୧୯୦୮ | କଟକ | ଆଠଗଡ଼ ରାଜା | | |
| ୭ ମ | ୧୯୧୦ | ,, | ରାଜା ବୈକୁଣ୍ଠନାଥ ଦେ ବାଃ | ବାବୁ ଗୋକୁଳାନନ୍ଦ ଚୌଧୁରୀ | ମଧୁପୁର ରାଜା |
| ୮ ମ (ଅପ୍ରେଲ) | ୧୯୧୨ | ବରହମପୁର | ସୁରଙ୍ଗୀ ରାଜା | ଢେଙ୍କାନାଳ ରାଜା | ମଞ୍ଜୁଷା ଯୁବରାଜ |
| ୯ ମ | ୧୯୧୩ | ପୁରୀ | ଏମ୍ ଏସ୍ ଦାସ | ବାବୁ ଜଗବନ୍ଧୁ ସିଂହ | ମହନ୍ତ ଗଦାଧର ରାମାନୁଜ ଦାସ |
| ୧୦ ମ | ୧୯୧୪ | ପାରଳାଖେମଣ୍ଡି | ବିକ୍ରମଦେବ ବର୍ମା | ବାବୁ ନିତ୍ୟାନନ୍ଦପଟ୍ଟନାୟକ | ମହନ୍ତ ରାଧାକୃଷ୍ଣ ଦାସ ଗୋସ୍ୱାମୀ |
| ୧୧ ଶ | ୧୯୧୫ | ସମ୍ବଲପୁର | କେରା ରାଜା | | ବାବୁ ବାଲୁକେଶ୍ୱର ମିଶ୍ର |
| ୧୨ ଶ | ୧୯୧୬ | ବାଲେଶ୍ୱର | ମଞ୍ଜୁଷା ରାଜା | | ବାବୁ ରାଧାଗୋବିନ୍ଦ ଦାସ |
| ୧୩ ଶ | ୧୯୧୭ | କଟକ | ସରସ୍ୱତୀ ଫକୀରମୋହନ ସେନାପତି | | କନିକା ରାଜା |
| ବିଶେଷ ଅଧିବେଶନ | ୧୯୧୮ | କଟକ | ଅନରେବଲ ମଧୁସୂଦନ ଦାସ | ଅନରେବଲ ବ୍ରଜସୁନ୍ଦର ଦାସ | |
| ୧୪ ଶ | ୧୯୧୯ | କଟକ | ଶ୍ରୀ ଗୋପବନ୍ଧୁ ଦାଶ | | ଶ୍ରୀ ଜଗତ୍ ବଲ୍ଲଭ ଘୋଷ |
| ୧୫ ଶ | ୧୯୨୦ | ଚକ୍ରଧର ପୁର | ଶ୍ରୀ କଳ୍ପତରୁ ଦାସ | | |



ଦେହ-ମନ-ଧନ-ଜୀବନ ଯୌବନ । ବିଧାତାର ପାଦେ କର ସମର୍ପଣ ॥



ମହାରାଜା ଶ୍ରୀ ଶ୍ରୀ ଶ୍ରୀ ରାମଚନ୍ଦ୍ର ଭଞ୍ଜ ଦେବ—ମୟୂରଭଞ୍ଜ,
ସଭାପତି, ଉ: ସ: ସମ୍ମିଳନୀ ୧ମ ଅଧିବେଶନ—କଟକ ୧୯୦୩



ରାଜାସାହେବ, ତାଳଚେର—ସଭାପତି, ଉ: ସ: ସମ୍ମିଳନୀ ୨ୟ
ଅଧିବେଶନ ବାଲେଶ୍ୱର ୧୯୦୪



ନାଟ୍ୟରଥୀ ଶ୍ରୀ ଅଶ୍ୱିନୀକୁମାର ଘୋଷ, ଏମ୍. ଏ. କଟକ



ସାହିତ୍ୟିକ ଶ୍ରୀଯୁକ୍ତ ଶଶିଭୂଷଣ ରାୟ, କଟକ

# ସମ୍ମିଳନୀର ବିଶିଷ୍ଟ ପ୍ରସ୍ତାବ

୧ମ ଅଧିବେଶନ—ଓଡ଼ିଆଭାଷୀ ଅଞ୍ଚଳମାନଙ୍କର ସମ୍ମିଶ୍ରଣ, ସମ୍ବଲପୁରର ଅଦାଲତରେ ଓଡ଼ିଆ ଭାଷା ପ୍ରଚଳନ । ସାହିତ୍ୟ, କୃଷି ଓ ଶିଳ୍ପର ଉନ୍ନତି ବିଧାନ ନିମିତ୍ତ କମିଟି ଗଠନ ।

୨ୟ ଅ: ବେ:—ଦେଶମିଶ୍ରଣ, କୃଷି ଓ ଶିଳ୍ପ ନିମିତ୍ତ ଯତ୍ନ, ଗଞ୍ଜାମରେ ଲର୍ଡ଼କର୍ଜନ ବୃତ୍ତି, ବସ୍ତ୍ରବୟନ, ଗୃହଜାତ ବୟନ, କଟକରେ ବାଳିକାସ୍କୁଲ ସ୍ଥାପନ, ଚନ୍ଦ୍ରଶେଖରସିଂହ ସାମନ୍ତଙ୍କ ସ୍ମୃତି ରକ୍ଷା ନିମନ୍ତେ ବୃତ୍ତି ଇତ୍ୟାଦି । ଇୟଂ ଉତ୍କଳ ଆସୋସିଏସନକୁ ସମ୍ମିଳନୀର ଅଙ୍ଗସ୍ୱରୂପ ଗ୍ରହଣ ।

୩ୟ ଅ: ବେ:—ସମ୍ବଲପୁର ମିଶ୍ରଣ, କୃଷକ ସନ୍ତାନମାନଙ୍କର କୃଷିଶିକ୍ଷାପାଇଁ ସାହାଯ୍ୟ, ଟେକ୍ନିକାଲ୍ ସ୍କୁଲ ସ୍ଥାପନ । କଟକରେ କଳ ତନ୍ତରେ ତନ୍ତୀମାନଙ୍କୁ ବିନା ବେତନରେ ଶିକ୍ଷାଦେବା ବ୍ୟବସ୍ଥା—ଇଞ୍ଜିନିୟରିଂ ସ୍କୁଲ ସ୍ଥାପନର ଉଦ୍ୟମ ।

୪ର୍ଥ ଅ: ବେ:—ଦେଶ ମିଶ୍ରଣ ପ୍ରଚାର ନିମନ୍ତେ ପାଣ୍ଠି ସଂସ୍ଥାନ, ମାନ୍ଦ୍ରାଜରେ ଓଡ଼ିଆ ଶିକ୍ଷା ପ୍ରଚାର ।

୫ମ ଅ: ବେ:—ବାବୁ ଶ୍ରୀବତ୍ସ ପଣ୍ଡା ଓ ବଡ଼ଖେମଣ୍ଡି ରାଜାଙ୍କର ସ୍ତ୍ରୀ ଶିକ୍ଷା ନିମନ୍ତେ ଟ ୧୭୦୦୦ଙ୍କା ଦାନ । କଟକରେ ବି. ଏଲ୍ କ୍ଲାସ ପୁଣି ସ୍ଥାପନ ନିମନ୍ତେ ଆବେଦନ । ବିଲାତରେ ଓଡ଼ିଶା ସମ୍ବନ୍ଧୀୟ କାର୍ଯ୍ୟ ନିମନ୍ତେ ମି; ଦାସଙ୍କୁ ଧନ୍ୟବାଦ । ରୁର୍କୀ ଓ ଶିବପୁର, କଲେଜରେ ଓଡ଼ିଆଙ୍କ ନିମନ୍ତେ ବୃତ୍ତିର ସଂସ୍ଥାନ ।

୬ଷ୍ଠ ଅ: ବେ: ଜାପାନରେ ଶ୍ରୀ ସାରଙ୍ଗଧର ଦାସ ଓ ଆମେରିକାରେ ଶ୍ରୀ ବ୍ରଜମୋହନ ସେନାପତିଙ୍କ ଶିକ୍ଷା ନିମନ୍ତେ ସାହାଯ୍ୟଦାନ । ଚନ୍ଦ୍ରଶେଖର ବୃତ୍ତିର ସ୍ଥାୟୀ ସଂସ୍ଥାନ ।

୭ମ ଅ: ବେ:—ରେଭେନ୍‌ସା ସାହେବଙ୍କୁ ଓଡ଼ିଆଛାତ୍ରଙ୍କ ଶିକ୍ଷା ନିମନ୍ତେ ଟ ୧୦୦୦୦ଙ୍କା ଦାନପାଇଁ ଧନ୍ୟବାଦ, ଶ୍ରୀ ବ୍ରଜମୋହନ ସେନାପତିଙ୍କର କୃଷିଶିକ୍ଷାର ବୃତ୍ତିକୁ ଚନ୍ଦ୍ରଶେଖର ବୃତ୍ତିରେ ପରିଣତ ।

୮ମ ଅ: ବେ:—ଦେଶ ମିଶ୍ରଣ ପ୍ରସ୍ତାବ, ବ୍ରହ୍ମପୁରରେ ଓଡ଼ିଆ ଟ୍ରେନିଂ ସ୍କୁଲରେ ତେଲୁଗୁଭାଷାର ପରିବର୍ତ୍ତେ ବରୁଦ୍ଧରେ ଆବେଦନ । ମାନ୍ଦ୍ରାଜ, ବମ୍ବେ ବିଶ୍ୱବିଦ୍ୟାଳୟରେ ବର୍ନାକୁଲାର ପରୀକ୍ଷାରେ ଓଡ଼ିଆ ଭାଷା ଗ୍ରହଣ ନିମନ୍ତେ ଆବେଦନ ଓ ମୟୂରଭଞ୍ଜରେ ଏକ ଇଂରାଜୀ ସ୍କୁଲ ସ୍ଥାପନ ନିମନ୍ତେ ପ୍ରାର୍ଥନା । ଶିବପୁର ଇଞ୍ଜିନିୟରିଂ କଲେଜରେ ଅଧ୍ୟୟନ ପାଇଁ ଶ୍ରୀ ଲକ୍ଷ୍ମୀନାରାୟଣ ସିଂହଙ୍କୁ ବୃତ୍ତିଦାନ ।

୯ମ ଅ:ବେ:— ସତ୍ୟବାଦୀ ସ୍କୁଲର ଉଦ୍‌ଯୋକ୍ତାମାନଙ୍କୁ ଧନ୍ୟବାଦ, ଲର୍ଡ଼ ହାର୍ଡ଼ିଞ୍ଜଙ୍କୁ ୨ୟ ଥର ଓଡ଼ିଶା ଆସିବାକୁ ଅନୁରୋଧ । ଦେଶ ମିଶ୍ରଣ, ଇଞ୍ଜିନିୟରିଂ ସ୍କୁଲ ସ୍ଥାପନ, ସିଂହଭୂମରେ ଓଡ଼ିଆଭାଷା ପ୍ରଚଳନ, କଟକରେ ଏମ୍. ଏ. ଓ ବି. ଏଲ୍ କ୍ଲାସ ଖୋଲିବା ନିମନ୍ତେ ଆବେଦନ ।

୧୦ମ ଅ: ବେ:—ଯୁଦ୍ଧରେ ସରକାରଙ୍କର ସଫଳତା ନିମନ୍ତେ ପ୍ରାର୍ଥନା-ସିଂହଭୂମ, ଜୟପୁର, ଫୁଲଝର, ଚନ୍ଦ୍ରପୁର, ପଦ୍ମପୁରରେ ଓଡ଼ିଆ ଅଦାଲତମାନଙ୍କରେ ଓଡ଼ିଆଭାଷା ପ୍ରଚଳନ ନିମିତ୍ତ ଆବେଦନ । ସ୍ୱତନ୍ତ୍ର ବିଶ୍ୱବିଦ୍ୟାଳୟ ନିମନ୍ତେ ଦାବୀ, ଓଡ଼ିଆ ଶିକ୍ଷକ ଓ ପରିଦର୍ଶକ କର୍ମଚାରୀ ବିଶେଷଭାବେ ନିଯୁକ୍ତ ପାଇଁ ପ୍ରାର୍ଥନା । ଖୋର୍ଦ୍ଧାରୁ ସମ୍ବଲପୁରକୁ ରେଲ ଲାଇନ ଆଣିବାକୁ ପ୍ରସ୍ତାବ । ଜୟପୁର ଏଜେନ୍ସିକୁ ସ୍ୱତନ୍ତ୍ର ଜିଲ୍ଲା କରିବାର ପ୍ରସ୍ତାବ ।

୧୧ଶ ଅ:ବେ:—ଖୋର୍ଦ୍ଧା-ସମ୍ବଲପୁର ରେଲଓ୍ୱେ, ଓଡ଼ିଶା ନିମନ୍ତେ ସ୍ୱତନ୍ତ୍ର ବିଶ୍ୱବିଦ୍ୟାଳୟ, ସିଂହଭୂମ, ଫୁଲଝର, ଚନ୍ଦ୍ରପୁରରେ ଓଡ଼ିଆ ଶିକ୍ଷା ଓ ଅଦାଲତମାନଙ୍କରେ ଓଡ଼ିଆଭାଷା ପ୍ରଚଳନ, ଇମ୍ପିରିଏଲ କାଉନସିଲରେ ଓଡ଼ିଆ ପ୍ରତିନିଧିଙ୍କୁ ଗ୍ରହଣ, Engineering School ସ୍ଥାପନ, ବି.ଏଲ୍ କ୍ଲାସ ଆଣିବାର ପ୍ରସ୍ତାବ ।

୧୨ଶ ଅ: ବେ:—ଲବଣଶିଳ୍ପର ପୁନରୁତ୍ଥାନ, Engineering School ଦେଶମିଶ୍ରଣ ଏବଂ ଇମ୍ପିରିଏଲ ସଭାରେ ଓଡ଼ିଆ ପ୍ରତିନିଧି ଗ୍ରହଣ, ସ୍ୱତନ୍ତ୍ର ବିଶ୍ୱବିଦ୍ୟାଳୟ ସ୍ଥାପନ, ସିଂହଭୂମ ପ୍ରଭୃତିରେ ଓଡ଼ିଆଭାଷା ପ୍ରଚାର—ଭିଜାଗାପଟ୍ଟମ କରଣମାନଙ୍କୁ ଓଡ଼ିଆ ବୋଲି ଗ୍ରହଣ ପ୍ରଭୃତି ପ୍ରସ୍ତାବ ।

୧୩ଶ ଅ: ବେ:—ଲବଣ ଶିଳ୍ପର ଉନ୍ନତି, ପୁରୀ ଓ ଅନ୍ୟାନ୍ୟ ମନ୍ଦିରମାନଙ୍କ ସଂସ୍କାରନିମନ୍ତେ ଚାନ୍ଦା ସଂଗ୍ରହର ଚେଷ୍ଟା,

ଇମ୍ପେରିଏଲ କାଉନ୍ସିଲରେ ଜ ୨ ଣ ଓ ପ୍ରୋଭିନ୍‌ସିଏଲ Executive କାଉନସିଲରେ ଓଡ଼ିଆ ମେମ୍ବର ଗ୍ରହଣ-ସଂରକ୍ଷଣ ପ୍ରଭୃତିର ଅଦାଲତ-ମାନଙ୍କରେ ଓଡ଼ିଆଭାଷା ପ୍ରଚଳନର ଚେଷ୍ଟା-ଆଠଗଡ଼ ରାଜାଙ୍କର ବ୍ୟୟନ ବଦ୍ୟାର ଉନ୍ନତି ସାଧନ ନିମନ୍ତେ ଟ ୧୦୦୦ ଙ୍କା ଦାନ ।

ବିଶେଷ ଅଧିବେଶନ—Mantague Chemsford ରିପୋର୍ଟ ଆଲୋଚନା ।

୧୪ଶ ଅ: ବେ:—ଦେଶନିବେଶ, ଓଡ଼ିଆ ଖବର,କାଗଜ ପ୍ରଷ୍ଠା-କୋମ୍ପାନୀ ଦ୍ୱାରା ପରିଚାଳନର ବ୍ୟବସ୍ଥା ସମ୍ମିଳନୀର ନୀତି ପରିବର୍ତ୍ତନ । ମେସୋପଟେମିଆ ମେଡ଼ିକେଲ ରିଲିଫ୍ ଫଣ୍ଡ ନିମନ୍ତେ ଟ୧୩୦୦୧ ଙ୍କା ସଭାମଣ୍ଡପରେ ଅଦାୟ ।

## ପ୍ରାକୃତିକ ଓଡ଼ିଶା ବାହାରେ ଓଡ଼ିଆ ଅଞ୍ଚଳ

( ୧ ) ଗଞ୍ଜାମ ଜିଲ୍ଲା ( ଚିକାକୋଲ ତାଲୁକ ଛଡ଼ା ) ଏବଂ ଜୟପୁର ଅଞ୍ଚଳ ।

( ୨ ) ମଧ୍ୟପ୍ରଦେଶରେ (କ) ଖଡ଼ିଆଳ, (ଖ) ଚନ୍ଦ୍ରପୁର ଓ ଚନ୍ଦ୍ରପୁର, (ଗ) ଫୁଲଝର, (ଘ) ବସ୍ତର, ସାରଙ୍ଗଗଡ଼, ରାୟଗଡ଼, ଉଦୟପୁର ଓ ଯଶପୁର ।

( ୩ ) ସିଂହଭୂମ ।

( ୪ ) ବଙ୍ଗର ମେଦିନୀପୁରରେ ଦାନ୍ତନ୍, ଗୋପୀବଲ୍ଲଭ ପୁର, ଏଗ୍ରା, ରାମନଗର, କନ୍ଥାଇ, ପଟାସପୁର, ଝାଡ଼ଗାଁ, ଓ ନାରାୟଣଗଡ଼ ।



## ପ୍ରାକୃତିକ ଓଡ଼ିଶାର ଦ୍ରଷ୍ଟବ୍ୟସ୍ଥାନ
## ମଧ୍ୟପ୍ରଦେଶ ଗଡ଼ଜାତ

( ବସ୍ତର, ସାରଙ୍ଗଗଡ଼, ଉଦୟପୁର ଓ ଯଶପୁର )

ବାରସୁର (Barsur)—ବସ୍ତର ଷ୍ଟେଟରେ ଗୋଟିଏ ପୁରାତନ ଗ୍ରାମ । ଏହା ଜଗଦଲପୁରର ପଶ୍ଚିମରେ ୫୫ ମାଇଲ ଦୂରରେ ଅବସ୍ଥିତ । ପୂର୍ବେ ଏହା ନାଗବଂଶୀ ରାଜାମାନଙ୍କର ରାଜଧାନୀ ଥିଲା ।

ବଟଇକେଲା (Bataikela)—ଏହା ଯଶପୁରରେ । ଏହା ସ୍ୱର୍ଣ୍ଣ ସଂଗ୍ରହର କେନ୍ଦ୍ରସ୍ଥଳୀ ମଧ୍ୟରୁ ଗୋଟିଏ ।

ବେନେ (Bene)—କେମନ୍ତ ସମୟରେ ଏହା ଯଶପୁରର ପ୍ରାଚୀନ ରାଜଧାନୀ । ଏଠାରେ ଇବ ନଦୀର ସୁନ୍ଦର ଜଳ ପ୍ରପାତ ଅଛି ।

ଭୈରମଗଡ଼ ( Bairamgarh )—ଏହା ବସ୍ତରରେ । ଏଠାରେ ତନୋଟି ଖୋଦିତ ଲିପି ମିଳିଥିଲା ।

ବିଜାପୁର ( Bijapur )—ଏହା ବସ୍ତରରେ । ଏଠାରେ ପୁରାତନ ଦୁର୍ଗର ଭଗ୍ନାବଶେଷ ଅଛି ।

ବୁଲ୍‌ଗା (Bulga)—ଏହା ରାୟଗଡ଼ର ସୀମାସ୍ଥିତ ବଡ଼ଗ୍ରାମ । ପ୍ରଥମେ ଏହା ସେ ଷ୍ଟେଟ୍‌ର ରାଜଧାନୀ ଥିଲା । ଏଠାରେ ଏହି ରାଜବଂଶର ଅଧିଷ୍ଠାତ୍ରୀ ଦେବୀ ଅଛନ୍ତି । ତେଣୁ ରାଜା ପୂର୍ବ ପ୍ରଥା ଅନୁସାରେ ଏ ଗ୍ରାମରେ ପଦାର୍ପଣ କରନ୍ତି ନାହିଁ ।

ଛାଲ (Chhal)—ଉଦୟପୁରରେ ଗୋଟିଏ ଗ୍ରାମ । ଏଠାରେ ଯଥେଷ୍ଟ ପଥର କୋଇଲା ମିଳେ । ଏକ କୋମ୍ପାନୀ ଏହାକୁ ପଟ୍ଟା ନେଇଅଛି ।

ଚିତ୍ରକୋଟ (Chitrakot) ବସ୍ତର ରାଜ୍ୟରେ ଇନ୍ଦ୍ରାବତୀ କୂଳରେ ଗୋଟିଏ ଗ୍ରାମ । ଏଠାରେ ସୁନ୍ଦର ଜଳ-ପ୍ରପାତ ଅଛି ।

ଧନୋରା (Dhanora)—ବସ୍ତରରେ । ପ୍ରବାଦ ଅଛି ରାଜା କର୍ଣ୍ଣ (ସମ୍ଭବତଃ କଙ୍କର ବଂଶର) ସିଂହଦ୍ୱାରରେ ୭ଟି ମନ୍ଦିର ନିର୍ମାଣ କରାଇ ସେଠାରେ ରାଜତ୍ୱ କରୁଥିଲେ ।

ଦୋକ୍ରା (Dokra) ଗୋଟିଏ ବଡ଼ ଗ୍ରାମ । ଯଶପୁରରେ ସ୍ୱର୍ଣ୍ଣ ଧୌତର କେନ୍ଦ୍ରସ୍ଥଳୀ ମଧ୍ୟରୁ ଗୋଟିଏ ।

କୁଟେଶ୍ୱର (Kuteswar)—ବସ୍ତରରେ ଗୋଟିଏ ଗ୍ରାମ । ଏଠାରେ ଅନେକ ଗୁମ୍ଫା ଅଛି ।

ନରେନପାଳ (Narainpal)—ଏକ ସଂସ୍କୃତ ଖୋଦିତ ଲିପିରୁ ଜଣାଯାଏ ବାରକଲର ଦେଓଙ୍କ ପିତାମହଙ୍କର କେହି ଅଥବା ସ୍ତ୍ରୀ ଏହାକୁ ନିର୍ମାଣ କରାଇଥିଲେ ।

ନରେନପୁର (Narainpur)—ଯଶପୁର ସ୍ଥାପନକର୍ତ୍ତା ସୁଜନ ରାୟ ଏହା ନିକଟସ୍ଥ ଏକ ପାହାଡ଼ରେ ବାସ କରୁ -

ଥିଲେ । ଅଦ୍ୟାବଧି ରାଜାମାନଙ୍କ ଗାଦିରେ ବସିବା ସମୟରେ ସେ ପୂଜା ପାଉଛନ୍ତି ।

ରଣିଝୁଲା (Kanijhula)—ଯଶପୁରର ଉଚ୍ଚତମ ଗିରିଶୃଙ୍ଗ । ଏହାର ଉଚ୍ଚତା ୩,୫୨୭ ଫୁଟ । ଏଠାରୁ ଇବନଦୀର ଉତ୍ପତ୍ତି ।

ସଙ୍କ୍ରା (Sankra)—ସାରଙ୍ଗଗଡ଼ରେ । ଏଠାର ସମଗ୍ର ଅଧିବାସୀ ଓଡ଼ିଆ । ଏଠାରେ ଓଡ଼ିଆ ବାଳକମାନଙ୍କ ପାଇଁ ଗୋଟିଏ ସ୍କୁଲ ଅଛି ।

ସାରଙ୍ଗଗଡ଼ ( Saranggarh )—ଏଠାରେ ସମଲେଶ୍ୱରୀ ଦେବୀଙ୍କ ମନ୍ଦିର ଅଛି । ଏଠାରେ କୋଠା ନିର୍ମାଣର ପଥରର ଖଣି ଅଛି ଏବଂ ସେଥିରୁ ଉତ୍ତମ ପତଳା-ଖଣ୍ଡମାନ ମିଳେ । ଷ୍ଟେସନର ରାଜଧାନୀ ଠାରୁ ଏହା ୨ ମାଇଲ ଦୂର ।

ସାରିଆ (Saria)—ସାରଙ୍ଗଗଡ଼ରେ । ଏଠା ଅଧିବାସୀଙ୍କ ମଧ୍ୟରୁ ଅଧିକାଂଶ ଓଡ଼ିଆ । ଏଠାରେ ଗୋଟିଏ ଓଡ଼ିଆ ବାଳକମାନଙ୍କ ପାଇଁ ସ୍କୁଲ ଅଛି ।

## ରାୟପୁର ଜିଲ୍ଲା ଗଡ଼ଜାତ

ଖଡ଼ିଆଳ—ଏହା ଗୋଟିଏ ବଡ଼ ଜମିଦାରୀ । କ୍ଷେତ୍ରଫଳ ୧,୪୮୯ ବର୍ଗମାଇଲ । କଥିତ ଅଛି, ପୂର୍ବେ ବୋଲଗଡ଼, ଗୁରଗଡ଼, କୁମ୍ଭାଗଡ଼ ଏହି ତିନି ଗଡ଼ ମିଶି ଏହା ହୋଇଥିଲା । ଜୟପୁର ରାଜା, ପାଟନା ମହାରାଜ ପ୍ରତାପ ଦେଓଙ୍କ ମଧ୍ୟମ ପୁତ୍ର ଗୋପାଳରାଓ ଦେଓଙ୍କ ସହିତ ନିଜ କନ୍ୟାଙ୍କ ବିବାହ ସମୟରେ ଏହା ଯୌତୁକ ଦେଇଥିଲେ । ପାଟନାର ଅଧୀନସ୍ଥ ଗଡ଼ଜାତ ଏହା ମଧ୍ୟରୁ ଗୋଟିଏ ।

ଫୁଲଝର—କ୍ଷେତ୍ରଫଳ ୮୪୨ ବର୍ଗମାଇଲ । ଏହା ମଧ୍ୟ ଖଡ଼ିଆଳ ପରି ପାଟନାର ଅଧୀନ ଥିଲା । ଏଠା ରାଜା ଚନ୍ଦ୍ରର ଗଣ୍ଡ ରାଜବଂଶୀୟ । ଛତିଶଗଡ଼ର ଗଣ୍ଡରାଜା ଓ ଜମିଦାର ମାନଙ୍କ ମଧ୍ୟରୁ ଅନେକେ ଫୁଲଝର ଜମିଦାର ବଂଶୀୟ ଅଟନ୍ତି ଏବଂ ଅଦ୍ୟାବଧି ସେମାନେ ଫୁଲଝର ବଂଶକୁ ସମ୍ମାନ କରନ୍ତି ।

ସହାର—କଙ୍କର ରାଜା ତାଙ୍କ କନ୍ୟାଙ୍କୁ ଚୂଡ଼ାପାଇଁ ନଗରୀ, ଶୀରଗୁର, ସମ୍ବା, ଅମଗାଁ, ଚୂହ୍ନଥସା ଓ ସଖାର ଏହି ଗ୍ରାମମାନ ଦେଇଥିଲେ । ସେ ବସ୍ତର ରାଜାଙ୍କୁ ବିବାହ କରିଥିବାରୁ ବସ୍ତର ରାଜା ସେମାନ ଶାସନ କରୁଅଛନ୍ତି । ଏମାନଙ୍କର ରାଜସ୍ୱ ନାହିଁ । ନଗରୀରେ ପୁରାତନ ଦୁର୍ଗର ଭଗ୍ନାବଶେଷ ଅଛି । ପ୍ରବାଦ ଅଛି ଯେତେବେଳେ କଙ୍କର ବଂଶ ପୁରୀରୁ ଆସିଥିଲେ ପ୍ରଥମେ ଏହାକୁ ଅଧିକାର କରିଥିଲେ ।

## ମେଦିନୀପୁର ଜିଲ୍ଲା

( ଏଠାରେ ଓଡ଼ିଆଭାଷୀ ଅଞ୍ଚଳ ପ୍ରାୟ ୨୫୦୦ ବର୍ଗମାଇଲ )

ବୀରକୁଳ (Birkul)—କଣ୍ଟାଇ ସ. ଡି. ର ଦ. ପ. ରେ ଗୋଟିଏ ଗ୍ରାମ । ୧୮ଶ ଶତାବ୍ଦୀରେ ଏହା ଇଉରୋପୀୟ ମାନଙ୍କରେ ସମୁଦ୍ରକୂଳବର୍ତ୍ତୀ ବିଶ୍ରାମାଗାର ଥିଲା ।

କଣ୍ଟେଇ (Kantai)—ସ. ଡି. ର ଅଧିକ୍ଷଙ୍କର ନିବାସସ୍ଥଳ । ପୂର୍ବେ ଏହା ଲବଣ (Agency) ର ପ୍ରଧାନ ନଗର ଥିଲା । ଇଉରୋପୀୟ ଜାହାଜମାନ ଯେତେବେଳେ ନିକଟବର୍ତ୍ତୀ ବନ୍ଦରମାନଙ୍କୁ ଆସୁଥିଲା ତେତେବେଳେ କଣ୍ଟେଇର ପ୍ରାଧାନ୍ୟ ଥିଲା । ମେଦିନୀପୁର ଜିଲ୍ଲାରେ ଏହା ଉନ୍ନତତର ଅଂଶ । ଶୀଘ୍ର ଏଠାରେ ଦ୍ୱିତୀୟ-ଶ୍ରେଣୀ କଲେଜ ହେବ । ଏହି ସ. ଡି. ରେ ବନ୍ଧ ଦ୍ରଷ୍ଟବ୍ୟ । ଏହା ଝଡ଼ ତୋଫାନ ସମୟରେ ସମୁଦ୍ରର ଜଳପ୍ଲାବନରୁ ଏହାକୁ ରକ୍ଷା କରୁଅଛି ।

ଦାନ୍ତନ୍ (Dantan)—ମେଦିନୀପୁର ସ. ଡି. ର ଦକ୍ଷିଣରେ ଗ୍ରାମଟିଏ । ଏଠାରେ ଦୁଇଟି ବଡ଼ ପୋଖରୀ ଅଛି । ଗୋଟିକର ନାମ ବିଦ୍ୟାଧର ଓ ଅପରଟିର ନାମ ସାରଶଙ୍କ । ପ୍ରବାଦ ଅନୁସାରେ ପ୍ରଥମଟି ଓଡ଼ିଶାର ଶେଷ ହିନ୍ଦୁରାଜା ମୁକୁନ୍ଦଦେବଙ୍କ ମନ୍ତ୍ରୀ ବିଦ୍ୟାଧରଙ୍କ ଆଦେଶରେ ଖୋଳା ଯାଇଥିଲା ।

ଗୋପୀବଲ୍ଲଭପୁର ( Gopiballabhpur )—ମେଦିନୀପୁର ସ. ଡି. ର ପଶ୍ଚିମରେ ଗୋଟିଏ ଗ୍ରାମ—ସମଗ୍ର ଓଡ଼ିଶାର ଗୌଡ଼ୀୟ ବୈଷ୍ଣବ ସମ୍ପ୍ରଦାୟର ଗୁରୁବଂଶଙ୍କ ଆବାସସ୍ଥଳ । ଏହି ଗ୍ରାମ ମୟୂରଭଞ୍ଜର ଅନ୍ତର୍ଗତ ।

ତମଲୁକ (Tamluk)—ଏହା ସମୟରେ ପୂର୍ବ ସମୁଦ୍ରମାନଙ୍କର ବନ୍ଦର ଥିଲା । ଏଠାରୁ ଜନ ଓ ଲଙ୍କାକୁ ସମ୍ବାଦ ପ୍ରେରିତ ହେଉଥିଲା ।

ମୋଗଲମାରି (Moghulmari)—ଦାନ୍ତୁଣର ପ୍ରାୟ ଦୁଇ ମାଇଲ ଉତ୍ତରରେ । ଏଠାରେ ୧୫୭୫ ଖ୍ରୀ: ରେ ଦାଉଦ ଖାଁ ଓ ତୋଡ଼ରମଲଙ୍କ ଭୀଷଣ ସଂଗ୍ରାମ ହୋଇଥିଲା, ମୋଗଲମାନେ ପରାଜିତ ହୋଇଥିଲେ ।

ମେଦନୀପୁର (Midnapur)—ଆଇନ ଅକବରୀ ଅନୁସାରେ ଏହା ଜଲେଶ୍ୱର ସରକାରରେ ବୃହତ୍ ନଗର ଥିଲା । ୧୬୫୮ ଖ୍ରୀଷ୍ଟାବ୍ଦରେ ଓଡ଼ିଶା ସୁବାର ନୂତନ ଗୋଲପଡ଼ା ସରକାରର ଏକଅଂଶ ହୋଇଥିଲା ।

ଗମିରାପାଲ (Gamirapal)—ଗୋଟିଏ କ୍ଷୁଦ୍ର ତାଲୁକ । ବ୍ରିଟିଶ ଶାସନାଧୀନ ପୂର୍ବରୁ ନୟାଗ୍ରାମ ଓ ଗମିରାପାଲ ଜମିଦାରୀ ଦୁଇ ଭିନ୍ନ ଥିଲେ ଏବଂ ସେମାନଙ୍କ ଜମିଦାରମାନେ ମୟୂରଭଞ୍ଜ ରାଜାଙ୍କର ସାହାଯ୍ୟକାରୀ ଥିଲେ । ମୟୂରଭଞ୍ଜ ମହାରାଜା ସେମାନଙ୍କୁ ମଙ୍ଗରାଜଭୂମି ଓ ପାଇକରାଭୂମି ଉପାଧି ପ୍ରଦାନ କରଥିଲେ ।

ହିଜଲି (Hijili)—କଣ୍ଟାଇ ସ: ଡ: ର ଗୋଟିଏ ଗ୍ରାମ । ସୁଜା ଏହାକୁ ଓଡ଼ିଶାରୁ କାଢ଼ି ନେଇ ମାଲଝିଟା ସରକାର ନାମ ଦେଇ ବଙ୍ଗ ସହିତ ଯୋଗ କରିଥିଲେ । ଏହା ଗୋଟିଏ ପ୍ରଧାନ ବନ୍ଦର ଥିଲା ।

## ଓଡ଼ିଶା

ନବମୁନି, ହାତୀଗୁମ୍ଫା, ଅକାଶଗଙ୍ଗା, ଦେବସଭା (ଜୈନ ମନ୍ଦିର), ଅନନ୍ତ ଖଣ୍ଡଗିରିରେ-ରାଣୀ, ସ୍ୱର୍ଗପୁରୀ, ଜୟବିଜୟ, ବୈକୁଣ୍ଠପୁରୀ, ମଞ୍ଚପୁରୀ, ଗଣେଶ, ହାତୀ, ସର୍ପ ଓ ବ୍ୟାଘ୍ର ଉଦୟଗିରିରେ ପ୍ରଧାନ ଗୁମ୍ଫା ଅଛି ।

ସାରଙ୍ଗଗଡ଼—କଳାପାହାଡ଼ ଏଠାରେ ଓଡ଼ିଶା ପ୍ରଧାନଙ୍କ ସହିତ ଶେଷ ଯୁଦ୍ଧ କରିଥିଲେ ।

ତେଲୁଙ୍ଗଆ ପୋଲ—ଏହା ଯାଜପୁରରେ । ପ୍ରାଚୀନ ଓଡ଼ିଶା ରାଜାଙ୍କ ସମୟରେ ନିର୍ମିତ ହିନ୍ଦୁଶିଳ୍ପର ପରାକାଷ୍ଠା ଦେଖାଉଅଛି ।

ଧଉଳି—ଦୟାର ଦକ୍ଷିଣ କୂଳରେ ଭୁବନେଶ୍ୱରର ଦକ୍ଷିଣ ପଶ୍ଚିମରେ ପ୍ରାୟ ୫ମାଇଲ ଦୂରରେ ଅବସ୍ଥିତ । ଏଠାରେ ଅଶୋକଙ୍କର ଅନେକ ପ୍ରଧାନ ଖୋଦିତ ଅନୁଶାସନ ଅଛି ।

ବାଲେଶ୍ୱର—ଏଠାରେ ପୁରାତନ ଇଉରୋପୀୟଙ୍କର ବାସସ୍ଥାନ ଥିଲା । ୧୬୩୩ ଖ୍ରୀଷ୍ଟାବ୍ଦରେ ଏଠାରେ ପ୍ରଥମ ଇଂରାଜୀ ଫ୍ୟାକ୍ଟରୀ ସ୍ଥାପିତ ହୋଇଥିଲା—ଜାହାଜ ତିଆର ହେଉଥିଲା । ଏହା ଗୋଟିଏ ବଡ଼ ସମୁଦ୍ରକୂଳ-ଷ୍ଟାଉନ ସରକାରଙ୍କର ଲବଣ ବ୍ୟବସାୟର ଏକଚାଟିଆ ଅଧିକାର ହେତୁ ଏ ଜିଲାର ସମୃଦ୍ଧି ମୂଳରେ କୁଠାରାଘାତ ହେଲା ।

ଜଲେଶ୍ୱର—ଏହା ଗୋଟିଏ ଗ୍ରାମ । ଓଡ଼ିଶାର ମୋଗଲ ସରକାର ମଧ୍ୟରୁ ଗୋଟିଏ । ସମୟରେ ଏଠାରେ ଗୋଟିଏ ସୀମାନ୍ତ ଦୁର୍ଗ ଥିଲା ।

ପିପିଲି—ସୁବର୍ଣ୍ଣରେଖା ମୁହାଣରେ ଏହା ଓଡ଼ିଶାର ପ୍ରଧାନ ବନ୍ଦର ଥିଲା ।

ଝାଡ଼ସୁଗୁଡ଼ା—ଗୋଟିଏ ପ୍ରଧାନ ରେଲ ଷ୍ଟେସନ ।

ନରସିଂହନାଥ—ଓଡ଼ିଶା ରାଜା ବଜଳ ଦେଓ ଗଙ୍ଗାବାଡ଼ ନିର୍ମିତ ଗୋଟିଏ ମନ୍ଦିର । ଏଠା ଶିଳାଲିପି ଓଡ଼ିଆ ଅକ୍ଷରରେ ଖୋଦିତ ।

(ପୂର୍ବରୁ ଅନ୍ୟସ୍ଥାନମାନଙ୍କ ନାମ ପ୍ରଦତ୍ତ ହୋଇଅଛି ।)

## ସିଂହଭୂମ (ଛୋଟନାଗପୁର ଡିଭିଜନ)

ଗୁଇଁବସା—ଏହି ସହରର ପ୍ରାକୃତିକ ଜଳ ନିଃସାରଣ ଉତ୍ତମ ।

ଚକ୍ରଧରପୁର—ପୋରହାଟ ଇଷ୍ଟେଟରେ ଗୋଟିଏ ଗ୍ରାମ ।

ଧଲଭୂମ—୧୮୩୩ ସାଲ ପର୍ଯ୍ୟନ୍ତ ଏହା ମେଦିନୀପୁର ଜିଲାରେ ଥାଇ ମାନଭୂମ୍ ଜିଲାକୁ ଅସି ୧୮୪୬ ରେ ସିଂହଭୂମର ଅନ୍ତର୍ଗତ ହେଲା ।

କାଲିମାଟି—ବର୍ତ୍ତମାନ ଟାଟାନଗର । ଏହା ଧଲଭୂମରେ ଗୋଟିଏ ଗ୍ରାମ । ଏଠାରୁ ଗୋରୁ ମହିଷାଣୀକୁ ରେଲ ଲାଇନ ଅଛି ।

କୋଲ୍ହାନ—ଏହା ସିଂହଭୂମର ଡେପୁଟୀ କମିସନରଙ୍କ ଅଧୀନରେ ସରକାରଙ୍କ ଜମିଦାରୀ ।

ପୋରହାଟ—ଆନନ୍ଦପୁର, କେରା, ଭୁଣ୍ଡୁଗାଁ, ଗୁଇଁପୁର ଜମିଦାରୀମାନଙ୍କ ସମ୍ମିଳିତ ଷ୍ଟେଟ୍ ଅଛି ।



ସାହିତ୍ୟ ସମ୍ରାଟ୍ କଳ୍ପପ୍ରଭାର୍ଦ୍ଧୀନ୍ଦ୍ର ଶ୍ରୀ ଶ୍ରୀ ଶ୍ରୀ ବଳମଦେବ ବର୍ମା,
ଡି. ଲିଟ୍, ସଭାପତି ଉ. ସ. ସମ୍ମିଳନୀ, ଦଶମ ଅଧିବେଶନ ।



ରାଜା ବୈକୁଣ୍ଠ ନାଥ ଦେ, ବାହାଦୁର ସଭାପତି ଉ. ସ.
ସମ୍ମିଳନୀ, ପ୍ରଥମ ଅଧିବେଶନ ।



ଶ୍ରୀଯୁକ୍ତ ଶଶିଭୂଷଣ ରଥ, ସମ୍ପାଦକ 'ଦୈନିକ ଆଶା ଓ ନିଉ ଓଡ଼ିଶା'



ସ୍ୱର୍ଗତ ବ୍ୟାସ କବି ଫକୀରମୋହନ ସେନାପତି ସଭାପତି ଉ. ସ.
ସମ୍ମିଳନୀ, [illegible] ।



ଶ୍ରୀ ଶ୍ରୀ ଶ୍ରୀ କୃଷ୍ଣଚନ୍ଦ୍ର ଗଜପତି ନାରାୟଣ ଦେବ, ରାଜାସାହେବ, ପାରଳା ଖେମଣ୍ଡି



ଚିକିଟି ଅଧୀଶ୍ୱର
ଶ୍ରୀ ଶ୍ରୀ ରାଧାମୋହନ ରାଜେନ୍ଦ୍ର ଦେବ



ଶ୍ରୀ ଶ୍ରୀ ଶ୍ରୀ ରାମଚନ୍ଦ୍ର ମର୍ଦ୍ଦରାଜ ଦେବ ରାଜାସାହେବ, ଖଲ୍ଲିକୋଟ ଓ ଅଠଗଡ଼



ଶ୍ରୀ ଶ୍ରୀ ଶ୍ରୀ ରାମଚନ୍ଦ୍ର ଦେବ, ରାଜାସାହେବ, ବଡ଼ ଖେମଣ୍ଡି

## ମାନ୍ଦ୍ରାଜ

୧ ଖଲ୍ଲିକୋଟ ଓ ଅଠଗଡ଼ । ୨ ପାଲୁର । ୩ ବଡ଼ଖେମୁଣ୍ଡି । ୪ ଦୁମା । ୫ ଧରାକୋଟ । ୬ ବଡ଼ଗଡ଼ା । ୭ କଟିଙ୍ଗିଆ । ୮ ସେରଗଡ଼ । ୯ ସାନଖେମିଡ଼ି । ୧୦ ବଡ଼ଖେମିଡ଼ି । ୧୧ ଶେରକୋଟ । ୧୨ ସୁରଙ୍ଗୀ । ୧୩ ଜରଡ଼ା । ୧୪ ଜଲନ୍ତ । ୧୫ ବୁଦାରସିଙ୍ଗି । ୧୬ ମଣ୍ଡାସା । ୧୭ ତରଳା । ୧୮ ପାରଳା-ଖେମିଡ଼ି । ୧୯ ଅସ୍କା ଇଷ୍ଟେଟ୍, କୁର୍ଲା ଇଷ୍ଟେଟ, ଦେବଭୂମି ଇଷ୍ଟେଟ, (ଅସ୍କା ମାଲୁକାଦାର ଅନ୍ତର୍ଗତ) ୨୦ ବରୁଭ ଇଷ୍ଟେଟ । ୨୧ ଉର୍ଲାମ । ୨୨ ରଘୁନାଥପୁର (ଟେକାଲି) । ୨୩ ପୁରୁଣା ଟେକାଲି । ୨୪ ନନ୍ଦ ଗାଁ—ଏମାନ ମାନ୍ଦ୍ରାଜର ଜମିଦାରୀ । ୨, ୩, ୪, ୧୪, ୧୯, ୨୦ ଓ ୨୧ ସର୍ବସ୍ୱ ଜମିଦାର ବ୍ୟତୀତ ଅନ୍ୟମାନ ପ୍ରଧାନ । ପାରଳାଖେମୁଣ୍ଡି ଓ ଖଲ୍ଲିକୋଟର ଅନ୍ତର୍ଗତ ଜମିଦାରମାନଙ୍କର ଜିଲ୍ଲାମଧ୍ୟରେ ସୁବୃହତ୍ ଜମିଦାରୀ ଅଛି ଏବଂ ପ୍ରତ୍ୟେକେ ପଚିଶ ହଜାର ଟଙ୍କାରୁ ଅଧିକ ପେସକସ୍ ଦିଅନ୍ତି ଜମିଦାରମାନଙ୍କ ମଧ୍ୟରୁ ଅଧିକାଂଶ ଚିରସ୍ଥାୟୀ ବନ୍ଦୋବସ୍ତ ପାଇଅଛନ୍ତି ।

## ଓଡ଼ିଶା ଗଡ଼ଜାତ

ବାଦାମଗଡ଼—ବଣେଇ ଷ୍ଟେଟ୍‌ର ଗିରିଶୃଙ୍ଗ ।

ବାମଡ଼ା—ଏଠା ଷ୍ଟେଟ୍ ଜଙ୍ଗଲରୁ ପ୍ରଚୁର ( Sleeper ) ରପ୍ତାନି ହୁଏ ।

ବୌଦ—ଏଠାରେ ୯ମ ଶତାବ୍ଦୀର ନବଗ୍ରହର ପୁରାତନ ପ୍ରସିଦ୍ଧ ମନ୍ଦିର ଅଛି । ଏହା ଲାଲ ବାଲିଆ ପ୍ରସ୍ତରରେ ନିର୍ମିତ । ଏଠାରେ ଅନ୍ୟୂନ ୩ ଟି ଶିବମନ୍ଦିର ଅଛି । ଏହାର ଭିତର ସୁନ୍ଦର ଭାବରେ ବନ୍ଧା ।

ଚନ୍ଦକା—ଏ ଗ୍ରାମଟି ତସର ଲୁଗା ପାଇଁ ପ୍ରସିଦ୍ଧ ।

ଦସ୍ପଲ୍ଲା—ଏଠାରୁ କଲିକତାକୁ ଚୂନକାମ ରପ୍ତାନି ହୁଏ ।

ଛଅଗାଁ (ଆଠଗଡ଼ରେ)—କଟକର ବାପଟିଷ୍ଟ ମିସନ ଅଧୀନରେ ଖ୍ରୀଷ୍ଟିଆନ ଉପନିବେଶ ଅଛି ।

ଗାଙ୍ଗପୁର—ବ୍ୟାସଙ୍କ ପିତା ପରାଶରଙ୍କ ପ୍ରଣୟ ଘଟିତ ସ୍ଥାନ ବୋଲି କହାଏଲ ଓ ଶଙ୍ଖର ପ୍ରବାହ ଏକାଠି ହୋଇଅଛି ।

ଖିଚିଂ—ମୟୂରଭଞ୍ଜର ଗୋଟିଏ ଗ୍ରାମ । ଏଠାରେ କେତେକ ଇଟା ପଥରର ମନ୍ଦିର ମାନଙ୍କର ଅଂଶ ଦେଖା ଯାଇ-ଅଛି । ଗୋଟିଏ ମନ୍ଦିର ମାନସିଂହଙ୍କ ସମୟରେ ଜୀର୍ଣ୍ଣସଂସ୍କାର ହୋଇଥିଲା । ତାହାର ଅନ୍ୟ ଏକ ଅବଡ଼ା ଖାବଡ଼ା ମନ୍ଦିର ମଧ୍ୟ ଅଛି ।

ପଦ୍ମାବତୀ—ମହାନଦୀକୂଳସ୍ଥ ଖଣ୍ଡପଡ଼ାରେ ଗୋଟିଏ ବାଣିଜ୍ୟ ସ୍ଥାନ ।

ପାନପୋଷ—ଗାଙ୍ଗପୁରରେ ଏହା ସୁନ୍ଦର ସ୍ଥାନ । ଶଙ୍ଖ ଓ ଦକ୍ଷିଣ କୋଏଲ ଏଠାରେ ମିଳିତ ହୋଇ ବ୍ରାହ୍ମଣୀ ନାମ ଧାରଣ କରି ବହୁଅଛି । ଏହା ମହାନଦୀର ଦକ୍ଷିଣକୂଳରେ ।

ସୋନପୁର—ଏଠାରେ ବହୁସମ୍ଭ୍ରାନ୍ତଲୋକ ଓ ମହାଜନ-ମାନଙ୍କର ଦ୍ୱିତଳ ପ୍ରାସାଦ ଅଛି । ସହରର ମଧ୍ୟ ଭାଗରେ ସୁବର୍ଣ୍ଣମେରୁ ନାମକ ବିଖ୍ୟାତ ମହାଦେବ-ଙ୍କର ମନ୍ଦିର ଅଛି ।

ତାଳଚେର—ଏଠାରେ ବିଭବଶାଳୀ ବ୍ୟବସାୟୀ ମାନଙ୍କର କେତେକ କୋଠା ଅଛି । ଏଠାରୁ ଅନେକ ଦ୍ରବ୍ୟ ରପ୍ତାନି ହୁଏ ।

ମେଘାସନ—ମୟୂରଭଞ୍ଜର ପ୍ରଧାନ ପର୍ବତ । ଏହାର ଉଚ୍ଚତମ ଶୃଙ୍ଗର ଉଚ୍ଚତା ୩,୮୨୪ ଫୁଟ ।

ମଳୟଗିରି—ପାଲଲହଡ଼ାରେ । ଏହାର ଉଚ୍ଚତମ ଶୃଙ୍ଗର ଉଚ୍ଚତା ୨୮୯୫ ଫୁଟ ।

( ପୂର୍ବରୁ ଅନ୍ୟ ସ୍ଥାନମାନଙ୍କ ନାମ ପ୍ରଦତ୍ତ ହୋଇଅଛି )



## ଗଞ୍ଜାମ ( ମାନ୍ଦ୍ରାଜ )

ଗୋପାଳପୁର—ଜିଲ୍ଲାର ପ୍ରଧାନ ବନ୍ଦର ।

ଗଞ୍ଜାମ—ଜିଲ୍ଲାର ପ୍ରଧାନ ସହର ଓ ବନ୍ଦର । ଏହାର ଧ୍ୱଂସାବଶେଷ ପଠନର ବିଷୟ ।

ସୋନାପୁର—ସମୟରେ ବନ୍ଦର ଥିଲା । ଏହା ଗ୍ରୀଷ୍ମାବାସ-ଯୋଗ୍ୟ ।

ବ୍ରହ୍ମପୁର—ବର୍ତ୍ତମାନ ଜିଲ୍ଲାର ପ୍ରଧାନ ସହର । ରେସମ ପାଇଁ ବିଖ୍ୟାତ । ଏହା ମନ୍ଦସା ଜମିଦାରୀର ଅଂଶ ଥିଲା ।

ଛତ୍ରପୁର—ଜିଲ୍ଲାର ପ୍ରଧାନ ଓ ସ୍ୱାସ୍ଥ୍ୟ ପରିବର୍ତ୍ତନ ପାଇଁ ଉତ୍ତମ ସ୍ଥାନ ।

ଉଦ୍ଧାପୁର—ପ୍ରଧାନ ସ୍ଥାନ ।

ମହେନ୍ଦ୍ରଗିରି—ପ୍ରାକୃତିକ ଓଡ଼ିଶାର ପ୍ରଧାନ ପର୍ବତ । ଏ । ଦୃଶ୍ୟ ମନୋମୁଗ୍ଧକର ।

ଅସ୍କା—ଷ୍ଟେଟ୍, କଳୁ ପ୍ରଧାନ ସହର ।

ରମ୍ଭଲକୁଣ୍ଡା—ଏହା ଗୃହୁ ଚନ୍ଦ୍ରଗାଳା ନଗର ମଧ୍ୟରୁ ଗୋଟିଏ ।

ପାରଲାଖେମୁଣ୍ଡି—ଏଠାରେ ରାଜାଙ୍କର ୧ମ ଶ୍ରେଣୀ କଲେଜ ଅଛି ।

ଜଉଗଡ଼—ଅଶୋକଙ୍କ ଅନୁଶାସନ ପାଇଁ ପ୍ରସିଦ୍ଧ ।

ତପ୍ତପାଣି—ବୈଜ୍ଞାନିକ ତନ୍ତ୍ରର ସ୍ଥାନ ।

( ଉପରୋକ୍ତ ଜିଲ୍ଲାରେ ଚାଉଳ, ଅଖୁ, ରାଶି, ଡାଲି ପ୍ରଭୃତି ମିଳେ । ସିଲ୍କ ଓ ତସର ଲୁଗା ବ୍ରହ୍ମପୁରରେ ମିଳେ । କରକରୁ ଲୁଣ ହୁଏ । ଅସ୍କାରେ ଚିନି ଓ (Rum) ମଦ କାରଖାନା ଅଛି ।



## ଭିଜାଗାପଟମ ଏଜେନ୍ସି

ବିଷମ କଟକ—ଏଠାରେ ଆଶ୍ଚର୍ଯ୍ୟଜନକ ତମାଖୁ ମିଳେ । ଜୟପୁରର ରାଜା ଏଠାରେ ବାସ କରନ୍ତି । ପୂର୍ବେ ଏଠାରେ ମେରିଆ ବଳି ଦିଆ ଯାଉଥିଲା ।

ବୋଡ଼ା ଗୁହା—ଶିବରାତ୍ରିଦିନ ଏଠାରେ ମେଳା ହୁଏ । ପ୍ରାକୃତିକ ଦୃଶ୍ୟ ସୁନ୍ଦର ।

ଗୁଡାରି—ସାଲକାଠର କେନ୍ଦ୍ର ।

ଗୁଣୁପୁର—ବଂଶଧାରା କୂଳରେ ଅବସ୍ଥିତ । ଏଠା ଲୋକେ ପରିଶ୍ରମୀ ।

ଗୁପ୍ତେଶ୍ୱର ଗୁହା—କେତେକ ରମଣୀୟ କଥାର ଦୃଶ୍ୟ ପାଇଁ ପ୍ରସିଦ୍ଧ ।

ଜୟପୁର—ଏଠାରେ ଭାରି ମେଲେରିଆ ହୁଏ । ଏହାକୁ ଓଡ଼ିଶାର ରାଜା ପୁରୁଷୋତ୍ତମ ଦେବ ଅଧିକାର କରିଥିଲେ । ଏଠାରେ କନକଦୁର୍ଗା ଅଛନ୍ତି । ଏଠା ରାଜାଙ୍କ ଉପାଧି ମହାରାଜା ଅଟେ । ଏହି ଜମିଦାରୀ ଜୟପୁର ଓ ପାର୍ବତୀପୁର ଦୁଇଭାଗରେ ବିଭକ୍ତ । ଆୟ ୭ ଲକ୍ଷରୁ ଅଧିକ

ମଲକାନ ଗିରି—ପ୍ରାୟ ସମୁଦାୟ ତାଲୁକ ପ୍ରକାଣ୍ଡ ଜଙ୍ଗଲରେ ପୂର୍ଣ୍ଣ । ୫୦ ବର୍ଷ ପୂର୍ବେ ଏଠାରେ ମେରିଆ ବଳି ଦିଆ ଯାଉଥିଲା ।

ମଣ୍ଡୁଗୁଣ୍ଡ—ଶିବରାତ୍ରିରେ ଏଠାରେ ମେଳା ହୁଏ । ଏଠାରେ ଗୋଟିଏ କ୍ଷୁଦ୍ର ଜଳପ୍ରବାହ ଗୋଟିଏ ବୃହତ୍ ଗର୍ତ୍ତରେ ପ୍ରବାହିତ ହୋଇ ୧୦୦ ଗଜ ପରେ ପୁନର୍ବାର ଦେଖା ଯାଉଅଛି । ସେଥିରେ ମାଛ ଅଛନ୍ତି ।

ନନ୍ଦପୁର—ପୁରାତନ ରାଜଧାନୀର ନିଦର୍ଶନ ମିଳେ । ପୂର୍ବେ ଏହା ନନ୍ଦପୁର ରାଜାଙ୍କର ସମ୍ପତ୍ତି ଥିଲା । ଏଠାରେ ପୁରାତନ ରାଜଧାନୀର ଧ୍ୱଂସାବଶେଷ ଅଛି ।

ନୌରଙ୍ଗପୁର—ପ୍ରେସିଡେନ୍ସିର ୧ମ ବଡ଼ ତାଲୁକ । କଳାହାଣ୍ଡିର କର ଉତ୍ପୀଡ଼ନ ଯୋଗୁଁ ସେଠାରୁ ଅନେକ ଲୋକ ଚାଲିଆସି ଏଠାରେ ବାସ କରି ଅଛନ୍ତି ।

ପାଇକପାଡ଼ୁ—ଜୟପୁର ମହାରାଜ ଭୁବନେଶ୍ୱର ପ୍ରହରାଜ ନାମକ ଜଣେ ଓଡ଼ିଆ ବ୍ରାହ୍ମଣଙ୍କୁ ଏହି ଶାସନ ଦେଇଥିଲେ ।

ରାଓଗଡ଼—ସମୃଦ୍ଧିଶାଳୀ ବ୍ୟବସାୟର କେନ୍ଦ୍ର ।

## ପ୍ରାକୃତିକ ଓଡ଼ିଶାର ଶିଳ୍ପ ଓ ଖନିଜ ଦ୍ରବ୍ୟ

ଅଭ୍ର (Mica)—ଅନୁଗୁଳ, ସମ୍ବଲପୁର, ସିଂହଭୂମ, ମୟୂରଭଞ୍ଜ ଓ ଦାମୋଦର ନଦୀରେ ଅଭ୍ର ମିଳେ ।

ହୀରା—ପୂର୍ବେ ଝରମାନେ ସମ୍ବଲପୁରରେ ହୀରା ସଂଗ୍ରହ କରୁଥିଲେ । ମହାନଦୀରେ ହୀରାକୁଦ ନାମକ ଦ୍ୱୀପରୁ ତାହା ମିଳୁଥିଲା ।

ଲବଣ—କଟକ, ପୁରୀରେ ପାରିକୁଦ, ଗଞ୍ଜାମ ଓ ବାଲେଶ୍ୱର ।

ମାଛ—ପ୍ରଧାନ ବ୍ୟବସାୟ । ଚିଲିକା, ପୁରୀରେ ନୋଳିଆମାନେ ମାଛ ଧରନ୍ତି—ସୁବର୍ଣ୍ଣରେଖା ମୁହାଣରୁ ୨୦୦ ମାଇଲ ସମୁଦ୍ରକୂଳେ୍ ମାନ୍ଦ୍ରାଜର ଚିଲିକା ଉପକୂଳ ପର୍ଯ୍ୟନ୍ତ, ବାଲେଶ୍ୱର, ଚାନ୍ଦବାଲି, ଫଲ୍ସପଏଣ୍ଟ ଓ ପୁରୀ ।

ଚମଡ଼ା (Hides & Leather)—ଓଡ଼ିଶାର ଜଙ୍ଗଲ ମାନଙ୍କରେ ।

ଲୁଗା ଓ ଜାଲ—କଟକ ପୁରୀରେ ପୂର୍ବେ ପ୍ରସିଦ୍ଧ ଥିଲା । ସିଂହଭୂମରେ ପୁନରୁତ୍ଥାନ ହୋଇଅଛି ।

କାଗଜ—କେନ୍ଦ୍ରାପଡ଼ା, ଅସୁରେଶ୍ୱର, ହରିହରପୁର, ଓ ପଦ୍ମପୁରରେ ମୁସଲମାନ ରାଜତ୍ୱ ସମୟରେ ଛଣଘାସରୁ ତିଆରି ହେଉଥିଲା । ବର୍ତ୍ତମାନ ଧ୍ୱଂସ ହୋଇଅଛି ।

ଦାନ ସ୍ୱରୂପ ଭୂଷଣ କରେ ଶିକ୍ଷିଥାଇ । ଜଡ ସ୍ୱର୍ଣ୍ଣ ଭୂଷଣରେ ତାର ଲୋଡ଼ା ନାହିଁ ॥

କୋଠା ତଯ୍ଯାର ଉପକରଣ ( Building materials. Laterite sandstone & rubble—ଓଡ଼ିଶାରେ ପ୍ରାୟ ସର୍ବତ୍ର ମିଳେ ।

ସୁନା ରୂପାର କାମ—ସିଂହଭୂମ ଓ ସମ୍ବଲପୁର ଏବଂ ଷ୍ଟେଟମାନଙ୍କରେ ମିଳେ । କଟକ ।

ଜଙ୍ଗଲ—ପ୍ରାକୃତିକ ଓଡ଼ିଶାରେ ପ୍ରଚୁର ଜଙ୍ଗଲ ଅଛି । ଅନୁଗୁଳ, ସମ୍ବଲପୁର, ଗଞ୍ଜାମ, ଜୟପୁର, ସିଂହଭୂମ, ପୁରୀ ଓ ଗଡ଼ଜାତମାନ ।

କୋଇଲା—ଅନୁଗୁଳ, ସମ୍ବଲପୁର, ଗାଙ୍ଗପୁର, ଅଠମଲ୍ଲିକ, ତାଲଚେର, ଢେଙ୍କାନାଳ, ରେଢ଼ାଖୋଲ, କଳାହାଣ୍ଡି ପ୍ରଭୃତି ।

କେନ୍ଦୁଝର ସୁନାଖଣି—କୁନ୍ଦୁରୁକୁଗୁ ( ସିଂହଭୂମ )

ଲୁହା—କଟକର ଜୋବ୍ରାରେ ଲୁହା କାମ ହୁଏ । ଅନୁଗୁଳର ଛଣ୍ଡିପଦାରେ ଅନାର୍ଯ୍ୟମାନେ ଲୁହାକାମ କରନ୍ତି । ସମ୍ବଲପୁରର ବୁଢ଼ାସମ୍ବର, କୋଲବୀରା, ଲେଇସିଂ, ପଦ୍ମକିଶୋରପୁର ଏବଂ ରାମପୁର ଜମିଦାରୀରେ ଭଲ ଲୁହା ମିଳେ । ମୟୂରଭଞ୍ଜ, ସିଂହଭୂମ, କୋଲ୍ହାନ (Tract) ଧଳଭୂମରେ ୪ଗୋଟି ଖଣି ଅଛି । ଏମାନଙ୍କରୁ ଟାଟା (The Tata Iron & Steel Co. at Sakchi) ଯଥେଷ୍ଟ ଲାଭ କରୁଛନ୍ତି । ଗୁରୁମହିଷାଣିରେ ଗୋରୁମହିଷାଣିରେ ଏବଂ ସିଂହଭୂମରେ ଖଣି ପାଇଁ କାଳିମାଟିରେ ଟାଟାନଗର ଅଛି । ଦାମୋଦର ନଦୀ ଶଯ୍ୟାରୁ ଲୁହା ମିଳୁଛି । ବାମଡ଼ା, ଗାଙ୍ଗପୁର, ବଣେଇ, ଅଠମଲ୍ଲିକ, ଢେଙ୍କାନାଳ ଓ ରେଢ଼ାଖୋଲ ।

ଗେଙ୍ଗୁଟି—(Lime stone) ଗଞ୍ଜାମ, ଅନୁଗୁଳ, ସମ୍ବଲପୁର, ଗାଙ୍ଗପୁର, ଢେଙ୍କାନାଳ, ମୟୂରଭଞ୍ଜ, ବରଗଡ଼ ତହସିଲ, ପଦ୍ମପୁର ନିକଟରେ ମହାନଦୀ-ଶଯ୍ୟା, ଗୁଇଁବସା ନିକଟରେ ସିଂହଭୂମ ।

ତମ୍ବା—ସିଂହଭୂମରେ (ଗାଲେଡ଼) ପ୍ରଚୁର ପରିମାଣରେ ମିଳେ । ଧଳଭୂମ, ସରେଇକଳା, ଖରସୁଆଁ ।

ମାଙ୍ଗାନିଜ—(Manganese ) ସିଂହଭୂମରେ କୋଲ୍ହାନ ଷ୍ଟେଟ, ଗୁଇଁବସା, ଗାଙ୍ଗପୁର ।

ତୈଳବୀଜ—କଟକ, ପୁରୀ, ବାଲେଶ୍ୱର, ଗଞ୍ଜାମ ଓ ଦେଶର ଅନ୍ୟାନ୍ୟ କେତେକ ଅଂଶ । କଟକରେ ତେଲ କଳ ଅଛି । ଅଷ୍ଟା ନିକଟରେ ଖୁଲ୍‌—ଛଡ଼ି ଯାଉଅଛି ।

ଜାହାଜତଯ୍ଯାର—ବାଲେଶ୍ୱର, ପୁରୀ, ଚାନ୍ଦବାଲି ଓ ଗୋପାଳପୁର ।

## କୃଷି

ଧାନ—ସର୍ବତ୍ର ।

ଆଖୁ—ପୁରୀ, ବାଲେଶ୍ୱର, ସମ୍ବଲପୁର ଓ ଗଞ୍ଜାମ ।

ଝୋଟ—କଟକ, ବାଲେଶ୍ୱର, ଗଞ୍ଜାମ ଓ ଓଡ଼ିଶାର ଅନ୍ୟାନ୍ୟ କେତେକ ସ୍ଥାନ ।

ତୂଳା—ସିଂହଭୂମ, ଅନୁଗୁଳ, ସମ୍ବଲପୁର, ଓ ଅନ୍ୟାନ୍ୟସ୍ଥାନ ।

ରେଶମ (Silk)—ଓଡ଼ିଶାର ପାର୍ବତ୍ୟଅଂଶ ଓ ଗଡ଼ଜାତମାନ. କେନ୍ଦୁଝର ଓ ମୟୁରଭଞ୍ଜର ସାନ୍ତାଳ ଓ ଭୂୟାଁମାନେ ଏହି ବ୍ୟବସାୟ କରନ୍ତି । ସିଂହଭୂମରେ ପୋକ ପୋଷନ୍ତି ଓ ସମ୍ବଲପୁରରେ ବୁଣାଯାଏ । ବ୍ରହ୍ମପୁରରେ ମଧ ହେଉଅଛି ।

ଅଖୁ—ପ୍ରାୟ ସର୍ବତ୍ର ।

## ଉତ୍କଳର ପତ୍ର ପତ୍ରିକା

( ଦୈନିକ )

(୧) ସମାଜ (୨) ଧର୍ମଦୂତ (୩) ଉତ୍କଳଦୀପିକା (୪) ଆଶା (୫) ନବ ଓଡ଼ିଶା (ଇଂରାଜୀ) ।

## ସାପ୍ତାହିକ

(୧) ସମାଜ (୨) ଉତ୍କଳଦୀପିକା (୩) ସତ୍ୟସମାଚାର (୪) ଦେଶକଥା (୫) ସ୍ୱର୍ଣ୍ଣଉତ୍କଳ (ଇଂରାଜୀ) (୬) ଆଶା (୭) ନବୀନ (୮) ପ୍ରଜାବନ୍ଧୁ (୯) ପଲ୍ଲୀବାସୀ (୧୦) ଶକ୍ତି (୧୧) ଉତ୍କଳ ସେବକ (୧୨) ଗଡ଼ଜାତ ବାସିନୀ (୧୩)ସାଧନା (୧୪) ପ୍ରଜାବନ୍ଧୁ (୧୫) ପ୍ରଭାତ (୧୬) ସାରଥି ।

## ପାକ୍ଷିକ

(୧) ପରମାର୍ଥୀ ।

## ମାସିକ

(୧) ଉତ୍କଳ ସାହିତ୍ୟ (୨) ସହକାର (୩) ଜନ୍ମଭୂମି (୪) ଭାରତୀ (୫) ଯୁଗବାଣୀ (୬) ରସଚକ୍ର (୭) ପଲ୍ଲୀମଙ୍ଗଳ (୮) ଶବରୀ (୯) ବୈତରଣୀ (ଇଂରାଜୀ) (୧୦) ଅର୍ଘ୍ୟ

(୧୧) ଶିଶିର (୧୨) ସ୍ୱାସ୍ଥ୍ୟ (୧୩) ସମବାୟ (୧୪) ପ୍ରସାର (୧୫) ଜାଗ୍ରତ (୧୬) ଆଲୋକ (ବାଲେଶ୍ୱର) (୧୭) ପଲ୍ଲୀ (ସମ୍ବଲପୁର) (୧୮) ଜ୍ଞାନପ୍ରଚାର (୧୯) ଜନ୍ମଭୂମି (୨୦) ନବଭାରତ । (୨୧) ପଞ୍ଚାମୃତ

## ତ୍ରୈମାସିକ

(୧) ପ୍ରାଚୀ (୨) ମୟୂରଭଞ୍ଜ କଲେଜ (୩) ରେଭେନ୍‌ସା-ଭିଏନ୍ (୪) କବିତାକୁଞ୍ଜ (୫) ସାହିତ୍ୟସୋପାନ (୬) ମଧୁବାଣୀ (୭) ଉଷା (୮) ସାହିତ୍ୟଦର୍ପଣ (୯) ବନଫୁଲ (୧୦) ଛାତ୍ରବନ୍ଧୁ

## ଶିଳ୍ପ ଶିକ୍ଷା ମନ୍ଦିର

୧—ଭଏଜ୍ ଇଣ୍ଡଷ୍ଟ୍ରିଆଲ ସ୍କୁଲ ବାଲେଶ୍ୱର
୨—ଫୁଲବାଣୀ ,, ,, କନ୍ଧମାଳ
୩—ପୂର୍ଣ୍ଣଚନ୍ଦ୍ର ,, ଇନ୍‌ଷ୍ଟିଚ୍ୟୁଟ୍ ବାରିପଦା
୪—ଟେଲଷ୍ଟାର ,, ସ୍କୁଲ କଟକ
୫—ଚୌଦ୍ୱାର ,, ଇନ୍‌ଷ୍ଟିଚ୍ୟୁଟ୍ ଚୌଦ୍ୱାର

## ସାହିତ୍ୟ ଅନୁଷ୍ଠାନ

୧—ଉତ୍କଳ ସାହିତ୍ୟ—ସମାଜ, କଟକ
୨—ସବୁଜ ସାହିତ୍ୟ—ସମିତି, କଟକ
୩—ଗୋପବନ୍ଧୁ ସାହିତ୍ୟ—ମନ୍ଦିର କଟକ
୪—ପଲ୍ଲୀବନ୍ଧୁ ସାହିତ୍ୟ—ସମିତି ଏରସମା
୫—ତରୁଣ ସାହିତ୍ୟ—ସମିତି ପୁରୀ
୬—ଗଙ୍ଗାଧର ସାହିତ୍ୟ—ପରିଷଦ ସମ୍ବଲପୁର
୭—ଲୋକହିତ ସାହିତ୍ୟ—ମନ୍ଦିର ସମ୍ବଲପୁର
୮—କଳିଙ୍ଗ ସାହିତ୍ୟ—ସମିତି ବଲାଙ୍ଗୀର
୯—ସାହିତ୍ୟ ପ୍ରଚାରସଙ୍ଘ ତୁଳସୀପୁର, କଟକ
୧୦—ନିଖିଳ—ଉତ୍କଳକବି—ସମ୍ମିଳନୀ ଗଞ୍ଜାମ
୧୧—ଇଚ୍ଛାପୁର ସାହିତ୍ୟ—ସମ୍ମିଳନୀ ଗଞ୍ଜାମ
୧୨—ଖୋରଧା ସାହିତ୍ୟ—ସମ୍ମିଳନୀ ଖୋରଧା
୧୩—ସିଂହଭୂମ ସାହିତ୍ୟ—ସମ୍ମିଳନୀ ଜମସେଦ୍‌ପୁର
୧୪—ଗଞ୍ଜାମ ସାହିତ୍ୟ—ସମ୍ମିଳନୀ ଚିକିଟି
୧୫—ଚନ୍ଦ୍ରୋଦୟ ସାହିତ୍ୟ—ସମିତି ସମ୍ବଲପୁର
୧୬—ସୁବର୍ଣ୍ଣରେଖା ,, ଲିଙ୍ଗରାଜେଶ୍ୱର, ବାଲେଶ୍ୱର
୧୭—ଶିଶୁସାହିତ୍ୟ ପ୍ରଚାର ସଙ୍ଘ କଟକ

## ଉଚ୍ଚ ଇଂରାଜୀ ବିଦ୍ୟାଳୟ

୧—ଅନୁଗୁଳ ହାଇ ଇଂଲିଶ ସ୍କୁଲ ଅନୁଗୁଳ
୨—ବାଙ୍କି ଡମପଡ଼ା ,, ,, ବାଙ୍କି
୩—ବନବିହାରୀ ,, ,, କୁଜଙ୍ଗ

୪—ବାଲେଶ୍ୱର ଜିଲ୍ଲା ସ୍କୁଲ
୫—ଭଦ୍ରକ ହାଇ ଇଂଲିଶ ସ୍କୁଲ
୬—ବାଲେଶ୍ୱର ମିଶନ ,,
୭—ବାରିପଦା ,, ,,
୮—ଲକ୍ଷ୍ମଣନାଥ ,, ,,
} ବାଲେଶ୍ୱର

୯—ରେଭେନ୍ସା କଲେଜିଏଟ ସ୍କୁଲ
୧୦— ,, ବାଳିକା ସ୍କୁଲ
୧୧—ପ୍ୟାରିମୋହନ ଏକାଡେମି
୧୨—ମୋସଲେମ ସେମିନେରୀ
୧୩—ଷ୍ଟୁଆର୍ଟ ଭିକ୍ଟୋରିଆ ହାଇ ଇଂଲିଶ ସ୍କୁଲ
୧୪—ମିଶନ ,, ,,
୧୫—କେନ୍ଦ୍ରାପଡ଼ା ,, ,,
୧୬—ଜାଜପୁର ,, ,,
} କଟକ

୧୭—ସମ୍ବଲପୁର ଜିଲ୍ଲାସ୍କୁଲ
୧୮—ବରଗଡ଼ ଜଜ ହାଇ ଇଂଲିଶ ସ୍କୁଲ
} ସମ୍ବଲପୁର

୧୯—ପୁରୀ ଜିଲ୍ଲା ସ୍କୁଲ
୨୦—ଖୋରଧା ହାଇ ଇଂଲିଶ ସ୍କୁଲ
୨୧—ଦାଣ୍ଡରଥି ,, ,,
} ପୁରୀ

୨୨—ଭବାନୀ ପାଟଣା ହାଇ ଇଂଲିଶ ସ୍କୁଲ. କଳାହାଣ୍ଡି
୨୩—ବାମଣ୍ଡା ,, ,, ବାମଣ୍ଡା
୨୪—ଢେଙ୍କାନାଳ ,, ,, ଢେଙ୍କାନାଳ
୨୫—ସୋନପୁର ,, ,, ସୋନପୁର
୨୬—ତାଳଚେରଯୁବରାଜ ,, ,, ତାଳଚେର
୨୭—ଗାଙ୍ଗପୁର ,, ,, ଗାଙ୍ଗପୁର
୨୮—ପୃଥ୍ୱୀରାଜ ,, ,, ବଲାଙ୍ଗୀର
୨୯—ସାଲେପୁର ,, ,, କଟକ
୩୦—ବାଣପୁର ,, ,, ବାଣପୁର
୩୧—ନିମାପଡ଼ା ,, ,, ନିମାପଡ଼ା

ଭଲ ମନ୍ଦ ବସ୍ତୁରେ ଯା ଅଛି ନାହିଁ ଜ୍ଞାନ । ଜନ୍ତୁପ୍ରାୟ ଅଟଇ ମୂଢ ସେହି ନରାଧମ ।

## କଲେଜ

୧—ରେଭେନ୍ସା କଲେଜ
୨—ରେଭେନ୍ସା ଗାର୍ଲ୍ସ କଲେଜ
୩—କଟକ ଟ୍ରେନିଂ କଲେଜ
୪—ଉତ୍କଳ ହୋମିଓପ୍ୟାଥିକ ମେଡ଼ିକେଲ କଲେଜ
୫—କୋ-ଅପରେଟିଭ ଟ୍ରେନିଂ କଲେଜ

## ମେଡ଼ିକେଲ ସ୍କୁଲ

ଓଡ଼ିଶା ମେଡିକେଲ ସ୍କୁଲ, କଟକ

## ଇନ୍‌ଜିନିୟରିଂ ସ୍କୁଲ

ଓଡ଼ିଶା ସ୍କୁଲ ଅଫ୍ ଇନ୍‌ଜିନିୟରିଂ, କଟକ

## ପ୍ରଥମ ଉତ୍କଳୀୟ

ଗ୍ରାଜୁଏଟ୍—ମଧୁସୂଦନ ଦାସ—Calcutta
ଗ୍ରାଜୁଏଟ୍—ଚତୁର୍ଭୁଜ ପଟ୍ଟନାୟକ R. College (ଭଦ୍ରକ)
କେ, ସି, ଅଇ, ଇ—ପ୍ୟାରି ବାସୁଦେବ ସୁଢ଼ଳଦେବ ।
ସି, ଅଇ, ଇ—ମଧୁସୂଦନ ଦାସ ।
ରାୟ ବାହାଦୂର—ନନ୍ଦକିଶୋର ଦାସ ।
ଇନସ୍ପେକ୍ଟର—ରାଧାନାଥ ରାୟ ।
ସାହିତ୍ୟର ଯୁଗପରିବର୍ତ୍ତକ—ରାଧାନାଥ ରାୟ ।
ବଡ଼ଲାଟ ସଭାର ସଭ୍ୟ } ମଧୁସୂଦନ ଦାସ ।
ପ୍ରାଦେଶିକ ମନ୍ତ୍ରୀ }
ଫାଇନାନ୍ସ ମେମ୍ବର—ଶ୍ରୀଯୁକ୍ତ ରାଜା ରାଜେନ୍ଦ୍ର ନାରାୟଣ ଭଞ୍ଜ ବାହାଦୁର
ଜନନେତା—ମଧୁସୂଦନ ଦାଶ ।
ସ୍ୱରାଜନୀତିର ପ୍ରବର୍ତ୍ତକ—ଗୋପବନ୍ଧୁ ଦାସ ।
କଳିଯୁଗ ଭୀମ—କାଶୀରାମ ପାଢ଼ି । ଏ ମହାଶୟ ଶୂନ୍ୟରେ ୮୦ ଫୁଟରୁ ଊର୍ଦ୍ଧ୍ୱକୁ ମଟର ଚଳାଇ ଜଗତରେ ଅକ୍ଷୟ କୀର୍ତ୍ତି ରଖି ଯାଇଅଛନ୍ତି ।
ସମ୍ମାନେ ଅଇ, ସି, ଏସ
ପଦତ୍ୟାଗ କରନ୍ତି—ଶ୍ରୀଯୁକ୍ତ ସୁଭାଷଚନ୍ଦ୍ର ବସୁ ।
ଜଜ—ଶ୍ରୀଯୁକ୍ତ ରାଧାକାନ୍ତ ଘୋଷ ।
କଲେକ୍ଟର—ନନ୍ଦକିଶୋର ଦାସ ।
ପୁଲିସ ସୁପରିଣ୍ଟେଣ୍ଡେଣ୍ଟ—ଶ୍ରୀଯୁକ୍ତ ଶ୍ରୀକୃଷ୍ଣ ମହାପାତ୍ର ।
ଡେପୁଟି କଲେକ୍ଟର—ଜଗମୋହନ ରାୟ
ଗଡ଼ଜାତ ମାହାଲର ଅ: ସୁ:—ରାସବିହାରୀ ନାୟକ ।
ନାଇଟ—ରାଜା ବାସୁଦେବ ସୁଢ଼ଳଦେବ
,, ରାଜା ରାଜେନ୍ଦ୍ର ନାରାୟଣ ଭଞ୍ଜ (ମୋଗଲବନ୍ଦି)
,, ସୋନପୁର ମହାରାଜ (ଗଡ଼ଜାତ)
ଯୁଦ୍ଧ ଶିକ୍ଷାରେ କୃତିତ୍ୱଲାଭ କରିଛନ୍ତି (ଭାରତରେ ବିରଳ)
Lieut-col—ଶ୍ରୀଯୁକ୍ତ ସଂଗ୍ରାମ କେଶରୀ ରାୟ ।
ଫିଲଜଫିଲେକଚରର—ହରିଚରଣ ମିଶ୍ର ।
,, ପ୍ରଫେସର—ହରିଶ୍ଚନ୍ଦ୍ର ଦତ୍ତ
ଦକ୍ଷିଣ ଆମେରିକାରେ ବାସିନ୍ଦା—ନୀଳମଣି ବେଦେହିବ ।
ପ୍ରଥମ ଇଞ୍ଜିନିୟର—ଅର୍ଜୁନ ଭୂୟାଁ ।
ଅଇ, ସି, ଏସ୍—ଶ୍ରୀଯୁକ୍ତ ନୀଳମଣି ସେନାପତି ।
ପ୍ରଫେସର—ରଘୁନାଥ ପତି ଶ୍ରୀଯୁକ୍ତ । କାଶୀନାଥ ଦାଶ ।
ଡେପୁଟୀ କମିସନର—ନୀଳମଣି ସେନାପତି ।
ଶିକ୍ଷାବିଭାଗର ଅ: ଡାଇରେକ୍ଟର—ଶ୍ରୀଯୁକ୍ତ ଶ୍ୟାମସୁନ୍ଦର ଜଗାଁଠୀ ।
ପୃଥିବୀରେ ବଡ଼ ଜ୍ୟୋତିର୍ବୀ—ମହାମହୋପାଧ୍ୟାୟ ସାମନ୍ତ ଚନ୍ଦ୍ରଶେଖର ସିଂହ ।
ସିଭିଲ ସର୍ଜ୍ଜନ—ଆନନ୍ଦଲାଲ ବୋଷ ।
ଉତ୍କଳ ସମ୍ମିଳନୀର ପ୍ରତିଷ୍ଠାତା—ମଧୁସୂଦନ ଦାସ ।
କୁଟୀର ଶିଳ୍ପର ଉଦ୍ଧାରକ—ଶ୍ରୀଯୁକ୍ତ ରାୟସାହେବ ଭିକାରୀଚରଣ ପଟ୍ଟନାୟକ ।
ଏମ୍. ଏ. —ଗୋପାଳବଲ୍ଲଭ ଦାସ ।
ପ୍ରତ୍ନତତ୍ତ୍ୱବିଦ୍—ମୃତ୍ୟୁଞ୍ଜୟ ରଥ ।
ଐତିହାସିକ—ପ୍ୟାରିମୋହନ ଆଚାର୍ଯ୍ୟ ।
ଉପନ୍ୟାସ ଓ ନାଟକଲେଖକ—ରାମଶଙ୍କର ରାୟ ।
ନାୟିକବି—କୁଳକ୍ଷଣା ଦେବୀ ।
ସମ୍ମାନରେ ଡେ: କ: ପଦତ୍ୟାଗ କରନ୍ତି—ଶ୍ରୀଯୁକ୍ତ ଗୋପବନ୍ଧୁ ଚୌଧୁରୀ ।
ସଂସ୍କୃତ କାବ୍ୟଲେଖକ—ଭୁବନେଶ୍ୱର ମିଶ୍ର ଓ ଶରତ୍‌ଚନ୍ଦ୍ର ବାନୁର୍ଯ୍ୟା ।
୧ମ ବିଲାତ ଫେରନ୍ତା ଇନ୍‌ଜିନିୟର—ମାର୍କଣ୍ଡେୟ ମହାନ୍ତି ।

ବୈଦ୍ୟୁତିକ ଇଞ୍ଜିନିୟର—ଶ୍ରୀଯୁକ୍ତ ଭୁବନାନନ୍ଦ ଦାସ ।
ବ୍ୟବସ୍ଥାପକ ସଭାର ଡିପୋଟି ପ୍ରେସିଡେଣ୍ଟ ଶ୍ରୀଯୁକ୍ତ ଭାଗବତ-
ପ୍ରସାଦ ସାମନ୍ତରାୟ ମହାପାତ୍ର
ବାରିଷ୍ଟର—ବିଶ୍ୱନାଥ ମିଶ୍ର । ଅବଦୁଲ ମଜାନ ।
ଅଧିବସାୟ ବଳରେ ଧନୀ—ଶ୍ରୀଯୁକ୍ତ ଭୁୟାଁ ଭାସ୍କରଚନ୍ଦ୍ର ମହା-
ପାତ୍ର ରାୟବାହାଦୁର
ଶ୍ରୀଯୁକ୍ତ ଘନଶ୍ୟାମବେହେରା
ନିଃସ୍ୱାର୍ଥପର ଦାତା—ରାଧାଶ୍ୟାମ ନରେନ୍ଦ୍ର ।
ତିରନ୍ଦାଜ ଖ୍ୟାତ—ଶାରଦା ପ୍ରସାଦ ମହାପାତ୍ର ।
କୃଷି-ଭକ୍ତ—କୃଷ୍ଣଚନ୍ଦ୍ର ଦାସ ।
ଡାକ ବିଭାଗୀୟ ଇନସ୍ପେକ୍ଟର—ଗୁରୁ-ପ୍ରସାଦ ଦାସ ।
ସ୍କୁଲ ବିଭାଗୀୟ ଡେପୁଟି ଇନସ୍ପେକ୍ଟର—ବିଚ୍ଛନ୍ଦ ପଟ୍ଟନାୟକ
ରାଜା ବାହାଦୁର—ବୈକୁଣ୍ଠ ନାଥ ଦେ ।
ଅସିଷ୍ଟେଣ୍ଟ କମିଶନର—ବୈକୁଣ୍ଠ ପୂଜାରି ।
ପ୍ରଥମ ଘୋଡ଼ାଗାଡ଼ି କଟକକୁ ଆଣିଥିଲେ—ଫକିରମୋହନ ଲାଲ ।
ସୁଦୂର ବ୍ରହ୍ମଦେଶରେ ପ୍ରଥମ ଓଡ଼ିଆ—ଘନଶ୍ୟାମ ବେହେରା ।
ଭକ୍ତକବି—ମଧୁସୂଦନରାଓ ।
ବକ୍ତା—ଶ୍ରୀଯୁକ୍ତ ବିଶ୍ୱନାଥ କର ।
ଉଦ୍ଭିଦ ବିଦ୍ୟାବିଶାରଦ—ଶ୍ରୀଯୁକ୍ତ ପ୍ରାଣକୃଷ୍ଣ ପରିଜା ।
ଦେଓ୍ୟାନ ବାହାଦୁର—ଶ୍ରୀଯୁକ୍ତ ଶ୍ରୀକୃଷ୍ଣ ମହାପାତ୍ର ।
ଆଇନ ବ୍ୟବସାୟୀ ନାରୀ—ଶ୍ରୀଯୁକ୍ତ ସୁଧାଂଶୁ ହାଜରା ।
ଆଃ ସର୍କିନ—ଜଟେଶ୍ୱର ମୋହନ ଦାସ ।
ଖାଁ ବାହାଦୁର—ଅବ୍ଦୁଲ ମଜିଦ୍
ବିଲାତ ଗମନ କରନ୍ତି—ମଧୁସୂଦନ ଦାସ ସି, ଆଇ, ଇ ।
ଇଂରାଜୀ, ଓଡ଼ିଆ ଓ ଅର୍ଥନୀତି ଏହି ତିନି ବିଷୟରେ ଏମ୍ ଏ
—ଶ୍ରୀଯୁକ୍ତ ଲକ୍ଷ୍ମୀନାରାୟଣ ସାହୁ ।
ସାମ୍ବାଦିକ—ଗୌରୀଶଙ୍କର ରାୟ ।
ସର୍ବଶ୍ରେଷ୍ଠ ତ୍ୟାଗୀ ଓ ସେବାକାରୀ—
ଶ୍ରୀଯୁକ୍ତ ଆଚାର୍ଯ୍ୟ ହରିହର ଦାସ
ନାରୀ ଆନ୍ଦୋଳନ ନେତ୍ରୀ—ଶ୍ରୀମତୀ ସରଳା ଦେବୀ ।
ବ୍ୟାୟାମ ମନ୍ଦିର ସ୍ଥାପକ—ଉତ୍କଳ ଭୀମ ଶ୍ରୀ ପଦ୍ମଚରଣ ମହାନ୍ତି
ସ୍ୱାସ୍ଥ୍ୟ ଅନୁସନ୍ଧାୟୀ—ଶ୍ରୀଯୁକ୍ତ ରାଧାଶ୍ୟାମ ଦାସ ।
,, ବନବିହାରୀ ପଟ୍ଟନାୟକ ।
ଶ୍ରମିକ ନେତା—ଶ୍ରୀଯୁକ୍ତ ପୂର୍ଣ୍ଣଚନ୍ଦ୍ର ବୋଷ ।

ବିଲାତ ଫେରନ୍ତା ନାରୀ—ଶୈଳବାଳା ଦାସ ।
ପ୍ରଥମ ଉଚ୍ଚ ବାଳିକା ବିଦ୍ୟାଳୟ ସ୍ଥାପନ କରନ୍ତି } ଶ୍ରୀମତୀ ରେବା ଦେବୀ ।
ବିଶିଷ୍ଟ ନାରୀକର୍ମୀ—ଶ୍ରୀମତୀ ରମା ଦେବୀ ।

## ଆଧୁନିକ ସାହିତ୍ୟିକ

୧ ଶ୍ରୀଯୁକ୍ତ ଚିନ୍ତାମଣି ମହାନ୍ତି । ୨ ଶ୍ରୀଯୁକ୍ତ ଶଶୀଭୂଷଣ ରାୟ । ୩ ,, ଗୋପାଳଚନ୍ଦ୍ର ପ୍ରହରାଜ । ୪ ଶ୍ରୀଯୁକ୍ତ ଆର୍ତ୍ତବଲ୍ଲଭ ମହାନ୍ତି । ୫ ଶ୍ରୀଯୁକ୍ତ ବିଶ୍ୱନାଥକର । ୬ ଶ୍ରୀଯୁକ୍ତ ଜଳନ୍ଧର ଦେବ ୭ ଶ୍ରୀଯୁକ୍ତ ମୋହିନୀମୋହନ ସେନାପତି । ୮ ଶ୍ରୀଯୁକ୍ତ ନୀଳକଣ୍ଠ ଦାଶ । ୯ ଶ୍ରୀଯୁକ୍ତ ଗୋଦାବରୀଶ ମିଶ୍ର । ୧୦ ଶ୍ରୀଯୁକ୍ତ ନାରାୟଣ ମୋହନ ଦେ । ୧୧ ଶ୍ରୀଯୁକ୍ତ ଲକ୍ଷ୍ମୀନାରାୟଣ ସାହୁ । ୧୨ ଶ୍ରୀଯୁକ୍ତ ମଧୁସୂଦନ ଦାସ । ୧୩ ଶ୍ରୀଯୁକ୍ତ ଲିଙ୍ଗରାଜ ମିଶ୍ର । ୧୪ ଶ୍ରୀଯୁକ୍ତ କୁଳମଣି ଦାସ । ୧୫ ଶ୍ରୀଯୁକ୍ତ ଅଶ୍ୱିନୀକୁମାର ଘୋଷ । ୧୬ ଶ୍ରୀଯୁକ୍ତ କାଳନ୍ଦୀଚରଣ ପାଣିଗ୍ରାହୀ । ୧୭ ଶ୍ରୀଯୁକ୍ତ ହରିଶ୍ଚନ୍ଦ୍ର ବଡ଼ାଲ । ୧୮ ଶ୍ରୀଯୁକ୍ତ ଲକ୍ଷ୍ମୀକାନ୍ତ ମହାପାତ୍ର । ୧୯ ଶ୍ରୀଯୁକ୍ତ ଆର୍ତ୍ତତ୍ରାଣ ଶତପଥୀ । ୨୦ ଶ୍ରୀଯୁକ୍ତ ଜଗବନ୍ଧୁ ସିଂହ । ୨୧ ଶ୍ରୀଯୁକ୍ତ ପଦ୍ମଚରଣ ପଟ୍ଟନାୟକ । ୨୨ ଶ୍ରୀଯୁକ୍ତ ବୈକୁଣ୍ଠନାଥ ପଟ୍ଟନାୟକ । ୨୩ ଶ୍ରୀଯୁକ୍ତ ଉପେନ୍ଦ୍ର ପ୍ରସାଦ ମହାନ୍ତି । ୨୪ ଶ୍ରୀଯୁକ୍ତ ବାଳକୃଷ୍ଣ କର । ୨୫ ଶ୍ରୀଯୁକ୍ତ କୃଷ୍ଣଚନ୍ଦ୍ର ସେନଗୁପ୍ତ । ୨୬ ଶ୍ରୀମତୀ କୁନ୍ତଳାକୁମାରୀ ଦେବୀ । ୨୭ ଶ୍ରୀଯୁକ୍ତ ବାସୁଦେବ ମହାପାତ୍ର । ୨୮ ଶ୍ରୀଯୁକ୍ତ ଦୟାନିଧି ମିଶ୍ର । ୨୯ ଶ୍ରୀଯୁକ୍ତ ଗୋଦାବରୀଶ ମହାପାତ୍ର । ୩୦ ଶ୍ରୀଯୁକ୍ତ ବ୍ରଜବିହାରୀ ମହାନ୍ତି । ୩୧ ଶ୍ରୀଯୁକ୍ତ ପରୀକ୍ଷିତ ଖଣ୍ଡୁଆଳ । ୩୨ ଶ୍ରୀଯୁକ୍ତ ନିତ୍ୟାନନ୍ଦ ବହିଦାର । ୩୩ ଶ୍ରୀଯୁକ୍ତ ଶିବ ପ୍ରସାଦ ଦାସ । ୩୪ ଶ୍ରୀଯୁକ୍ତ ଶରୀନ୍ଦ୍ର ନାଥ ଦାସ । ୩୫ ଶ୍ରୀଯୁକ୍ତ ବିକ୍ରମଦେବ ବର୍ମା । ୩୬ ଶ୍ରୀଯୁକ୍ତ ବଳଦେବ ବଜ୍ରକୁମାର ୩୭ ଶ୍ରୀଯୁକ୍ତ ବିଚ୍ଛନ୍ଦ ଚରଣ ପଟ୍ଟନାୟକ । ୩୮ ଶ୍ରୀଯୁକ୍ତ ଅନ୍ନଦାଶଙ୍କର ରାୟ । ୩୯ ଶ୍ରୀଯୁକ୍ତ କରୁଣାକର କର । ୪୦ ଶ୍ରୀଯୁକ୍ତ ରତ୍ନାକର ପତି । ୪୧ ଶ୍ରୀଯୁକ୍ତ ବିଶ୍ୱନାଥ ରଥ । ୪୨ ଶ୍ରୀମତୀ ସରଳା ଦେବୀ । ୪୩ ଶ୍ରୀମତୀ ଅପର୍ଣ୍ଣା ଦେବୀ । ୪୪ ଶ୍ରୀମତୀ ଅନ୍ନପୂର୍ଣ୍ଣା ଦେବୀ । ୪୫ ଶ୍ରୀମତୀ ରେବା ଦେବୀ । ୪୬ ଶ୍ରୀଯୁକ୍ତ ସଚ୍ଚିଦାନନ୍ଦ ରାଉତରାୟ । ୪୭ ଶ୍ରୀଯୁକ୍ତ ଭଗୀରଥି ମହାପାତ୍ର । ୪୮ ଶ୍ରୀଯୁକ୍ତ ଶରଚ୍ଚନ୍ଦ୍ର ମୁଖାର୍ଜି । ୪୯ ଶ୍ରୀଯୁକ୍ତ କାହ୍ନୁଚରଣ



ଢଷାବର୍ ସ୍ୱର୍ଗତ ପଣ୍ଡିତ ଗୋପୀନାଥ ନନ୍ଦ, ପାରଳାଖେମୁଣ୍ଡି,



ବଣବର ଶ୍ରୀଯୁକ୍ତ ଚନ୍ଦ୍ରମଣି ମହାନ୍ତି, କଟକ



ପଣ୍ଡିତ ଗୋଦାବରୀଶ ମିଶ୍ର, ଏମ, ଏ., ବି. ଇ., ଏମ. ଏଲ. ସି.
ବାଣପୁର



ସ୍ୱର୍ଗତ ରାମଶଙ୍କର ରାୟ, କଟକ

ମହାନ୍ତି । ୫୦ ଶ୍ରୀଯୁକ୍ତ ଈଶ୍ୱର ସାହୁ । ୫୧ ଶ୍ରୀଯୁକ୍ତ ଭଗବାନ ପତି । ୫୨ ଶ୍ରୀଯୁକ୍ତ ଲକ୍ଷ୍ମୀଧର ନାୟକ । ୫୩ ଶ୍ରୀଯୁକ୍ତ ରାମ-ପ୍ରସାଦ ସିଂହ । ୫୪ ଶ୍ରୀଯୁକ୍ତ ମଦନମୋହନ ପଟ୍ଟନାୟକ ।



## ନାଟକ ଲେଖକ

୰ ରାମଶଙ୍କର ରାୟ । ୰ କାମପାଳ ମିଶ୍ର ।
ଶ୍ରୀଯୁକ୍ତ ଅଶ୍ୱିନୀକୁମାର ଘୋଷ । ଶ୍ରୀଯୁକ୍ତ ଗୋଦାବରୀଶ ମିଶ୍ର ।
,, ରାଜା ରାଧାମୋହନ ରାଜେନ୍ଦ୍ର ଦେବ ।
,, କୃଷ୍ଣପ୍ରସାଦ ବସୁ । ଶ୍ରୀଯୁକ୍ତ ଲକ୍ଷ୍ମୀକାନ୍ତ ମହାପାତ୍ର ।
,, ରାମଚନ୍ଦ୍ର ମହାପାତ୍ର । ,, ବାଳକୃଷ୍ଣ କର ।
,, ରାୟସାହେବ ଭିକାରୀଚରଣ ପଟ୍ଟନାୟକ ।
,, କୃପାସିନ୍ଧୁ ପଟ୍ଟଦେବ । ଶ୍ରୀଯୁକ୍ତ ବଜ୍ରପ୍ରତାପ ସିଂହଦେବ
,, ଭଗୀରଥି ମହାପାତ୍ର । ,, ଲକ୍ଷ୍ମୀନାରାୟଣ ସାହୁ ।
,, ରମାରଞ୍ଜନ ମହାନ୍ତି । ,, ମହେଶଚନ୍ଦ୍ର ରାୟ ।
,, ବୃନ୍ଦାବନବିହାରୀ ଦାସ । ,, ଯତୀନ୍ଦ୍ରମୋହନ ମୁଖାର୍ଜି

## ବ୍ୟଙ୍ଗ କବିତା ଲେଖକ

୧—ଶ୍ରୀଯୁକ୍ତ ଲକ୍ଷ୍ମୀକାନ୍ତ ମହାପାତ୍ର
୨— ,, ରାୟସାହେବ ଭିକାରୀଚରଣ ପଟ୍ଟନାୟକ

## ଐତିହାସିକ

୧ ଶ୍ରୀଯୁକ୍ତ ବିନାୟକ ମିଶ୍ର । ୨ ଶ୍ରୀଯୁକ୍ତ ଜଳନ୍ଧର ଦେବ ।
୩ ,, ଶିବ ପ୍ରସାଦ ଦାସ । ୪ ,, ବ୍ରଜବନ୍ଧୁ ଦାସ ।
୫ ,, କୃପାସିନ୍ଧୁ ମିଶ୍ର । ୬ ,, ଚିନ୍ତାମଣି ଆଚାର୍ଯ୍ୟ

## ପ୍ରତ୍ନତତ୍ତ୍ୱ ବିଦ୍

୧ ୰ ମୃତ୍ୟୁଞ୍ଜୟ ରଥ । ୨ ଶ୍ରୀଯୁକ୍ତ ଜଗବନ୍ଧୁ ସିଂହ ।
୩ ଶ୍ରୀଯୁକ୍ତ ବିରୂପାକ୍ଷ କର । ୪ ,, ସତ୍ୟନାରାୟଣ ରାଜଗୁରୁ ।
୫ ,, ଲକ୍ଷ୍ମୀନାରାୟଣ ହରିଚନ୍ଦନ ଜଗଦେବ ।
୬ ,, ପଣ୍ଡିତ ବିନାୟକ ମିଶ୍ର । ୭ ଶ୍ରୀଯୁକ୍ତ ନୀଳକଣ୍ଠ ଦାସ
୮ ୰ କୃପାସିନ୍ଧୁ ମିଶ୍ର । ୯ ,, ରାଧାଚରଣ ପଣ୍ଡା ।
୧୦ ଶ୍ରୀଯୁକ୍ତ ପରମାନନ୍ଦ ଆଚାର୍ଯ୍ୟ । ୧୧ ଶ୍ରୀଯୁକ୍ତ ପ୍ରାଣନାଥ ମହାନ୍ତି

## ସଂଗୀତଜ୍ଞ

୧ ଶ୍ରୀଯୁକ୍ତ ଅପର୍ଣ୍ଣା ପରିଡ଼ା । ୨ ଶ୍ରୀଯୁକ୍ତ ଗୋକୁଳଚନ୍ଦ୍ର ହରିଚନ୍ଦନ ।
୩ ,, କୃଷ୍ଣପ୍ରସାଦ ବସୁ । ୪ ,, କୃଷ୍ଣମୋହନ ପଟ୍ଟନାୟକ ।
୫ ,, ମନୋମୋହନ ଘୋଷ ।
୬ ,, କାଳୀଚରଣ ପଟ୍ଟନାୟକ ।
୭ ,, ଲକ୍ଷ୍ମୀକାନ୍ତ ମହାପାତ୍ର ।
୮ ,, ମୋହନସୁନ୍ଦରଦେବ ଗୋସ୍ୱାମୀ ।
୯ ,, ବୃନ୍ଦାବନ ବିହାରୀ ଦାସ ।
୧୦ ,, ରାୟ ବାହାଦୁର ବୈଦ୍ୟନାଥ ମିଶ୍ର ।
୧୧ ,, କିଶୋରୀମୋହନ ଦାସ ।

## ଦାର୍ଶନିକ

୧ ୰ ପଣ୍ଡିତ ଜଗନ୍ନାଥ ମହାମହୋପାଧ୍ୟାୟ ।
୨ ଶ୍ରୀଯୁକ୍ତ ମୋହିନୀ ମୋହନ ସେନାପତି ।
୩ ,, ବିପିନ ବିହାରୀ ରାୟ । ୪ ଶ୍ରୀଯୁକ୍ତ ଦିବାକର ପତି ।
୫ ,, ଡକ୍ଟର ଜଗନ୍ନାଥ ଦାସ ଚୌଧୁରୀ (ଜର୍ମାନୀ)

## ତାନ୍ତ୍ରିକ

ଶ୍ରୀଯୁକ୍ତ ପଣ୍ଡିତ ରାମଚନ୍ଦ୍ର ଶାସ୍ତ୍ରୀ । ଚୌଧୁରୀ ଶ୍ରୀ ମାନଗୋବିନ୍ଦ ମିଶ୍ର

## ଜାତିର ସୁଦକ୍ଷ ବିଶିଷ୍ଟ କର୍ମ୍ମୀ

ଶ୍ରୀଯୁକ୍ତ ଆଚାର୍ଯ୍ୟ ହରିହର ଦାଶ । ଶ୍ରୀଯୁକ୍ତ ଗୋପବନ୍ଧୁ ଚୌଧୁରୀ
,, ହରେକୃଷ୍ଣ ମହତାବ । ,, ଲକ୍ଷ୍ମୀନାରାୟଣ ସାହୁ ।

## ଶିଶୁ ସାହିତ୍ୟ ଲେଖକ

ଶ୍ରୀଯୁକ୍ତ ନୀଳକଣ୍ଠ ଦାସ । ଶ୍ରୀଯୁକ୍ତ ଚକ୍ରଧର ମହାପାତ୍ର (ସୋର)
,, ଚକ୍ରଧର ମହାପାତ୍ର ( ନରସିଂହପୁର )
,, ଜଗବନ୍ଧୁ ସିଂହ । ଶ୍ରୀଯୁକ୍ତ ଭଗୀରଥି ମହାପାତ୍ର ।
,, କୃଷ୍ଣଚନ୍ଦ୍ର କର । ଶ୍ରୀଯୁକ୍ତ ଗୋପାଳ ଚନ୍ଦ୍ର ପ୍ରହରାଜ ।
,, କୃଷ୍ଣଚନ୍ଦ୍ର ସେନ ଗୁପ୍ତ । ଶ୍ରୀଯୁକ୍ତ ବାସୁଦେବ ମହାପାତ୍ର ।
,, ବାଳକୃଷ୍ଣ କର । ଶ୍ରୀଯୁକ୍ତ ଗୋଦାବରୀଶ ମହାପାତ୍ର ।

## ସଂସ୍କାରକ

ଶ୍ରୀଯୁକ୍ତ ଶ୍ରୀବତ୍ସ ପଣ୍ଡା । ଶ୍ରୀଯୁକ୍ତ ଜୟମଙ୍ଗଳ ରଥ ।
ଶ୍ରୀଯୁକ୍ତ ବୈରାଗୀଚରଣ ମିଶ୍ର ।

**ଯେଉଁ ଜନ ଅର୍ଥବ୍ୟକ୍ତି ଅର୍ଥ ଉଦାରଣେ । ଆପଣାର ଜୀବନକୁ ତୃଣ ସମ ମଣେ ॥**
୩୩ ରତ୍ନକୋଷ

୨୪ ହରିଶ୍ଚନ୍ଦ୍ର ଘୋଷ ... (ପୁରୀ)
୨୫ ଗୋବିନ୍ଦ ରଥ ... (ବାଙ୍କି)
୨୬ ରଜା ବୈକୁଣ୍ଠନାଥ ଦେ ବାହାଦୁର (ବାଲେଶ୍ୱର)
୨୭ ସାମନ୍ତ ରାଧାଚରଣ ଦାସ (ବାଲେଶ୍ୱର)
୨୮ ଗୌରୀଶଙ୍କର ରାୟ ରାୟବାହାଦୁର (କଟକ)
୨୯ ରମାଶଙ୍କର ରାୟ ,, ,,
୩୦ ନନ୍ଦକିଶୋର ବଳ ରାୟସାହେବ ,,
୩୧ ବିଛନ୍ଦ ପଟ୍ଟନାୟକ (ଯାଜପୁର)
୩୨ ହରେକୃଷ୍ଣ ଦାସ ,,
୩୩ ପ୍ରଭାକର ବିଦ୍ୟାରତ୍ନ (କଟକ)
୩୪ ଗୋପାଳବଲ୍ଲଭ ଦାସ ,,
୩୫ ସଚ୍ଚିଦାନନ୍ଦ ଦାସ ,,
୩୬ ନିମାଇବଲ୍ଲଭ ଭଟ୍ଟାଚାର୍ଯ୍ୟ ,,
୩୭ ଦ୍ୱାରକାନାଥ ଚକ୍ରବର୍ତ୍ତୀ ,,
୩୮ ସରସ୍ୱତୀ ଫକୀରମୋହନ ସେନାପତି (ବାଲେଶ୍ୱର)
୩୯ କାଶୀନାଥ ଦାସ (ଭିଙ୍ଗାରପୁର)
୪୦ କଳ୍ପତରୁ ଦାସ (ଯାଜପୁର)
୪୧ ହରିହର ସଦସ୍ୟ (ଗଞ୍ଜାମ)
୪୨ ନରସିଂହ ଦାସ ,,
୪୩ ବୈକୁଣ୍ଠନାଥ ପୂଜାରୀ (ସମ୍ବଲପୁର)

## ଓଡ଼ିଶାର ପ୍ରଥମ ଯୌଥ ବ୍ୟବସାୟ

କଟକ ପ୍ରିଣ୍ଟିଂକୋମ୍ପାନୀ ଲିମିଟେଡ଼ -- ପ୍ରତିଷ୍ଠାତା କର୍ମଯୋଗୀ ଗୌରୀଶଙ୍କର ରାୟ ( ରାୟ ବାହାଦୁର ) ପ୍ରତିଷ୍ଠିତ—୧୮୬୪

ପ୍ରଥମ ବ୍ୟବସାୟୀ ନାଟକ ପ୍ରତିଷ୍ଠାନ ।

ରାଧାକୃଷ୍ଣ ଥିଏଟର ପରେ କଟକ ଆର୍ଟ ଥିଏଟର, ପ୍ରତିଷ୍ଠାତା — ବନମାଳୀ ପତି ଓ ଶ୍ରୀଯୁକ୍ତ ଅଶ୍ୱିନୀକୁମାର ଘୋଷ—ଏମ୍. ଏ. ( ପ୍ରତିଷ୍ଠିତ—୧୯୧୦ )

ପଞ୍ଜିକାକାର ।

ଶ୍ରୀଯୁକ୍ତ ଗଦାଧର ସିଂହ ସାମନ୍ତ ଓ ଶ୍ରୀଯୁକ୍ତ ହରିହର ଖଡ଼ିରତ୍ନ ।

## ଭାଷାତତ୍ତ୍ୱବିଦ୍ ଓ ଓଡ଼ିଆ ଭାଷା ସଂଗ୍ରାହକ

ପଣ୍ଡିତ ଗୋପୀନାଥ ନନ୍ଦ, ଚନ୍ଦ୍ରମୋହନ ମହାରଣା, ମଧୁସୂଦନ ରାଓ । ମୃତ୍ୟୁଞ୍ଜୟ ରଥ । ଜଗନ୍ନାଥ ରାଓ ।
ଶ୍ରୀଯୁକ୍ତ ଗୋପାଳ ଚନ୍ଦ୍ର ପ୍ରହରାଜ

## ନୂତନ ବସ୍ତୁ ଓ ବିଷୟ ପ୍ରଚଳନର କାଳ

| | | |
|---|---|---|
| ଓକାଲତି ପରୀକ୍ଷା | ୧୮୫୬ | ଖ୍ରୀଷ୍ଟାବ୍ଦ |
| କଳଘଣ୍ଟା | ୧୮୦୪ | ,, |
| କୋର୍ଟ | ୧୮୧୦ | ଖ୍ରୀଷ୍ଟାବ୍ଦ |
| କିରାସିନି ତେଲ | ୧୮୬୦ | ,, |
| ଛାପାଖାନା | ୧୮୩୮ | ,, |
| ଘୋଡ଼ାଗାଡ଼ି | ୧୮୫୦ | ,, |
| ଚାନ୍ଦବାଲିରୁ କଲିକତା ଜାହାଜ | ୧୮୬୭ | , |
| କଚେରୀରେ ଓଡ଼ିଆ ଭାଷା | ୧୮୩୩ | ,, |
| ମୁକ୍ତାର ପରୀକ୍ଷା | ୧୮୬୫ | ,, |
| ହସ୍ପିଟାଲ | ୧୮୬୦ | ,, |
| ବିଲାତି ଅଙ୍କ | ୧୮୧୦ | ,, |
| ତାର ଡାକ | ୧୮୫୭ | ,, |
| ବିଲାତି ଲୁଗା ଓ କଳା ଛତା | ୧୮୭୦ | ,, |
| ତେଲ କଳ ( କଟକରେ ) | ୧୯୦୦ | ,, |
| ସିଲାଇ କଳ | ୧୮୮୪ | ,, |
| ଡାକ ଘର | ୧୮୧୦ | ,, |
| ନଅଙ୍କ ଅନ୍ନକଷ୍ଟ | ୧୮୬୬ | ,, |
| ଯୋବରା ଅନ୍ନକଷ୍ଟ | ୧୮୬୮ | ,, |
| ପଥକର | ୧୮୭୫ | ,, |
| କଟକରୁ ଚାନ୍ଦବାଲି ବୋଟ | ୧୮୭୪ | ,, |
| କାଠଯୋଡ଼ି କୂଳରେ କଲେକ୍ଟରୀ କଚେରୀ ସ୍ଥାପନ— | ୧୮୨୮ | ,, |
| ବଙ୍ଗ ବିଦ୍ୟାଳୟ | ୧୯୧୪ | |
| ପାଠଶାଳା ପ୍ରଣାଳୀ | ୧୮୭୧ | ,, |
| ଯୋବରା କଳଘର | ୧୮୬୯ | ,, |
| ବିହାର ଓଡ଼ିଶା ପ୍ରଦେଶ ଗଠନ | ୧୯୧୧ | ,, |
| ଉତ୍କଳ ସମ୍ମିଳନୀ | ୧୯୦୩ | ,, |
| ଖ୍ରୀଷ୍ଟିଆନ ପାଦ୍ରୀଙ୍କ ଆଗମନ | ୧୮୨୨ | ,, |
| ଜମିଦାରୀ ନିଲାମ ପ୍ରଥା ସୃଷ୍ଟି | ୧୮୦୬ | ,, |
| ଥିଏଟର ( ବଙ୍ଗଳା ) | ୧୮୬୮ | ,, |
| ,, ( ଓଡ଼ିଆ ) | ୧୮୮୧ | ,, |

ଦୁଃଖୀଜନ ଦୁଃଖ ହରିପାରେ ଯେଉଁଜନ । ପରମ ସୁକୃତଶାଳୀ ବୋଲି ତାଙ୍କୁ ଜାଣ ॥

ରେଲ — ୧୯୦୧ ଖ୍ରୀଷ୍ଟାବ୍ଦ
ଉଡ଼ାଜାହାଜ — ୧୯୨୭ ,,
ନୂତନ ଆଇନ ଅନୁସାରେ ବୋର୍ଡ଼ ମେମ୍ବରଙ୍କଦ୍ୱାରା ଚେୟାର୍‌ମ୍ୟାନ୍ ନିର୍ବାଚନ } ୧୯୨୪ ,,

## ଜାତୀୟ ସଙ୍ଗୀତ ଲେଖକ

୧ ରାଧାନାଥ ରାୟ । ୨ ମଧୁସୂଦନ ରାଓ । ୩ ଗୋପବନ୍ଧୁ ଦାଶ ୪ ନନ୍ଦକିଶୋର ବଳ । ୫ମଧୁସୂଦନ ଦାସ । ୬ ରାମଶଙ୍କର ରାୟ । ୭ ଶ୍ରୀଯୁକ୍ତ ଲକ୍ଷ୍ମୀକାନ୍ତ ମହାପାତ୍ର । ୮ ଶ୍ରୀଯୁକ୍ତ କୃଷ୍ଣମୋହନ ପଟ୍ଟନାୟକ । ୯ ଶ୍ରୀଯୁକ୍ତ ବାଞ୍ଛାନିଧି ମହାନ୍ତି । ୧୦ ଶ୍ରୀଯୁକ୍ତ ଗୀତକିଶୋର ଦାସ । ୧୧ ଶ୍ରୀଯୁକ୍ତ ଗୋଦାବରୀଶ ମିଶ୍ର ।

### M. B. E.

ଶ୍ରୀଯୁକ୍ତ ଲକ୍ଷ୍ମୀନାରାୟଣ ପଟ୍ଟନାୟକ ।

### O. B. E.

ସର୍ ରାଜା ରାଜେନ୍ଦ୍ରନାରାୟଣ ଭଞ୍ଜ ଦେଓ ନାଇଟ୍ ଅଫ୍ କନିକା

## କୈଶର-ଇ-ହିନ୍ଦ୍ ପଦକଧାରୀ

( Kaisar-I-Hind medal )

(ସ୍ୱର୍ଣ୍ଣ ପଦକ, ୧ମ ଶ୍ରେଣୀ)

୧ । ମହନ୍ତ ଗଦାଧର ରାମାନୁଜ ଦାସ, ପୁରୀ (୧୯୨୧)
୨ । ମହାରାଣୀ ପାର୍ବତୀ ଦେବୀ, ସୋନପୁର (୧୯୨୪)

(ରୌପ୍ୟ ପଦକ—୨ୟ ଶ୍ରେଣୀ)

୧ । ଶ୍ରୀଯୁକ୍ତ ଶ୍ରୀକୃଷ୍ଣ ମହାପାତ୍ର, କଟକ (୧୯୧୧)
୨ । ଶ୍ରୀଯୁକ୍ତ ବାଞ୍ଛାନିଧି ନାୟକ, ହାବିଲଦାର (୧୯୨୩)
୩ । ଶ୍ରୀଯୁକ୍ତ ଗୋପାଳଚନ୍ଦ୍ର ପ୍ରହରାଜ, ଆଡ଼ଭୋକେଟ (୧୯୩୩)

## କିଙ୍ଗସ ପୋଲିଶ ପଦକଧାରୀ

(King's Police Medal)

ଶ୍ରୀଯୁକ୍ତ ହରେକୃଷ୍ଣ ଦାସ, ବାଲେଶ୍ବର (୧୯୨୪)

## ରଏଲ ଭିକ୍‌ଟୋରିଏନ ପଦକଧାରୀ

(Royal Victorian Medal)

ଶ୍ରୀଯୁକ୍ତ ଶ୍ରୀକୃଷ୍ଣ ମହାପାତ୍ର, କଟକ (୧୯୧୨)

## ପୁରୁଷାନୁକ୍ରମିକ 'ରାଜା' ପଦ

ଶ୍ରୀଯୁକ୍ତ କୃଷ୍ଣଚନ୍ଦ୍ର ମାନସିଂହ ହରିଚନ୍ଦନ ମର୍ଦ୍ଦରାଜ ଭ୍ରମରବର ରାୟ, ପାରଳୁଦ । ( ୧୮୭୨ )

## ବୈଦ୍ୟରତ୍ନ

ମାଗୁଣୀ ବ୍ରହ୍ମା, ପୁରୀ (୧୯୨୧)

## ରାଜା (Personal)

ଶ୍ରୀଯୁକ୍ତ ରାମଚନ୍ଦ୍ର ଦେବ, ପୁରୀ (୧୯୨୭)

## ଖାଁ ବାହାଦୁର

ସେଖ୍ ଅବଦୁଲ ମଜିଦ, କଟକ

## ଖାଁ ସାହେବ

ସଫିଲୁଦ୍ଦିନ ମହମ୍ମଦ, କଟକ

ରେଶମ ଶିଳ୍ପରେ ଦକ୍ଷ ( Silk expert ) } ଶ୍ରୀଯୁକ୍ତ ମହେଶ୍ବର ରାୟ ( ଜାପାନ )
ଚିନି ପ୍ରସ୍ତୁତ ପ୍ରଣାଳୀରେ ଦକ୍ଷ ( Sugar expert ) } ଶ୍ରୀଯୁକ୍ତ ଶାରଙ୍ଗଧର ଦାସ ( ଆମେରିକା )
କାଗଜ ପ୍ରସ୍ତୁତ ପ୍ରଣାଳୀରେ ଦକ୍ଷ ( paper exPert ) } ଶ୍ରୀଯୁକ୍ତ ପ୍ରାଣକୃଷ୍ଣ ନନ୍ଦ ।

ଓଡ଼ିଶାରେ ହୋମିଓପ୍ୟାଥିକ୍ ଔଷଧର ପ୍ରଚାରକ— ପ୍ରଭାତଚନ୍ଦ୍ର ରାୟ ।

## ଚିଲିକା

ଚିଲିକା ଓଡ଼ିଶାର ପ୍ରଧାନ ହ୍ରଦ । ଏହା ଓଡ଼ିଶା ଓ ଗଞ୍ଜାମର ମଧ୍ୟରେ ଅବସ୍ଥିତ । ଏହାର ଆୟତନ ପୂର୍ବ ପଶ୍ଚିମରେ ୨୦ ମାଇଲ ଓ ଉତ୍ତର ଦକ୍ଷିଣରେ ୮୪ ମାଇଲ । ପୂର୍ବେ ଏହାର ଆକୃତ ଅପେକ୍ଷା ବଡ଼ ଥିଲା ଏବଂ ଗଭୀରତା ଆଜିକାଲି ଠାରୁ ଅଧିକ ଥିଲା । କାଳକ୍ରମେ ନଦୀ ପଙ୍କ ଓ ସମୁଦ୍ର ବାଲିଦ୍ୱାରା ଏହା ପୋତି ହୋଇ ଯାଇଅଛି । ଏବେ ବର୍ଷାଋତୁରେ ଏହାର ଆୟତନ ଯେତେ ବର୍ଗମାଇଲ ଓ ଅନ୍ୟାନ୍ୟ ଋତୁ ପ୍ରାୟ ତାହାଠାରୁ ବହୁତ କମ୍ ହୁଏ । ପାରିକୁଦ, ମାଳୁଦ, ବଜ୍ରକୋଟ ଓ ଗୁରୁବାଇ ଦ୍ୱୀପମାନ ଏହା ମଧ୍ୟରେ ଅଛି । ସେମାନଙ୍କ ମଧ୍ୟରୁ ଅଧିକାଂଶ ପୋତି ହୋଇଯାଇ ଉପଦ୍ୱୀପ ହୋଇ ଗଲାଣି । ବଙ୍ଗୋପସାଗର ସହିତ ଏହାର ମୁହାଣ ସଂଯୁକ୍ତ,



ସର୍ ରାଜେନ୍ଦ୍ରନାରାୟଣ ଭଞ୍ଜଦେଓ୍ୱ ଓ. ବ. ଇ.
ରାଜାସାହେବ, କନିକା



ଦେବାନ ବାହାଦୁର ଶ୍ରୀ ଶ୍ରୀକୃଷ୍ଣ ମହାପାତ୍ର

ଏଣୁ କ୍ରମେ ପୋତି ହୋଇ ଯାଉଛି । ପୂର୍ବେ ଏହା ନୌବାଣିଜ୍ୟର କେନ୍ଦ୍ର ଥିଲା । ଏଠାରୁ ଓଡ଼ିଆ ନାବିକମାନେ ବିଦେଶକୁ ଯାଇ ବାଣିଜ୍ୟ କରୁଥିଲେ । ଏହାର ପ୍ରାଚୀନ ଗୌରବ ବିଷୟ ଚିନ୍ତା କଲେ ସ୍ତବ୍ଧ ହେବାକୁ ହୁଏ । ୪ର୍ଥ ଶତାବ୍ଦୀରେ ଗ୍ରୀକ ଐତିହାସିକ ଟଲେମୀ ଏହାକୁ ଓଡ଼ିଶାର ପ୍ରଧାନ ବନ୍ଦର ବୋଲି ଉଲ୍ଲେଖ କରିଅଛନ୍ତି । ପୂର୍ବେ ଏହାର ଉପକୂଳବାସୀମାନେ ଲବଣ ପ୍ରସ୍ତୁତ କରି ଜୀବିକା ନିର୍ବାହ କରୁଥିଲେ । ଇଷ୍ଟ-ଇଣ୍ଡିଆ କୋମ୍ପାନୀ ଲୁଣମରର ଏକଚାଟିଆ ଜାତ ଧରି ନିଜେ କାରବାର ଚଳାଇଲେ । ପୁଣି ୧୮୭୧ ଖ୍ରୀଷ୍ଟାବ୍ଦରେ କେବଳ କେତେକଙ୍କୁ ପଟ୍ଟା ଦେଇ ଲବଣ ପ୍ରୋକ୍ତାନର ଅଧିକାର ଦେଲେ । ବଙ୍ଗ ଆଇନ ଅନୁସାରେ ଏହାର ଉତ୍ତର ପାଖରେ ଲବଣ କର ଟ୩। ଥିବା ସ୍ଥଳେ ଦକ୍ଷିଣ କୂଳରେ ମାନ୍ଦ୍ରାଜ ଆଇନ ଅନୁସାରେ ତାହା ଟ ୧୲ ମାତ୍ର ଥିଲା, ଏଣୁ ରମ୍ଭାର ବେପାରୀମାନେ ଲୁଣ ମହଣ ଟ ୨୲ ବିକି ଟ ୦ ୲ ଲାଭ କରୁଥିଲେ, ମାତ୍ର ଓଡ଼ିଶାର ବେପାରୀମାନେ ଟ ୩୲ ରେ ବିକି ଟ ୦ । ମାତ୍ର ଲାଭ ପାଉଥିଲେ । ମାନ୍ଦ୍ରାଜ ଲୁଣ ମୂଲ୍ୟ ଅଳ୍ପତା ହେତୁ ଚୋରା-ଭାବରେ ଓଡ଼ିଶା ବଜାରରେ ପଶିଲା । ପୁଣି ଲିଭରପୁଲ ଲୁଣ ଆସି ଅଳ୍ପ ମୂଲ୍ୟରେ ବିକ୍ରୟ ହେଲା । ଏଣୁ ଲୁଣ ବ୍ୟବସାୟ କ୍ରମେ ଲୋପ ପାଇ ୧୯୦୦ ସାଲରେ ସମ୍ପୂର୍ଣ୍ଣରୂପେ ବନ୍ଦ ହୋଇଗଲା । ୧୮୯୭ ରେ କେବଳ ଏହି ଚିଲିକା କୂଳରେ ୧୧୫୦୦୦ ମହଣ ଲୁଣ ମରି ଯାଇଥିଲା । ଲବଣ ପ୍ରୋକ୍ତାନ ବନ୍ଦ ସଙ୍ଗେ ସଙ୍ଗେ ଓଡ଼ିଶାର ଅବସ୍ଥା ହୀନରୁ ହୀନତର ହେବାକୁ ଲାଗିଲା ।

ଚିଲିକାର ଦୃଶ୍ୟ ଅତୀବ ରମଣୀୟ । କବିବର ରାଧାନାଥ ଏହାକୁ 'ଶୋକପାସୋରି ଅପୂର୍ବ ଭୁବନ' ଓ 'ଉତ୍କଳ-କମଳା-ବିଳାସ-ଦୀର୍ଘିକା' ବୋଲି ବର୍ଣ୍ଣନା କରିଅଛନ୍ତି । ବାସ୍ତବିକ୍ ଏହା ଶୋଭାର ଭଣ୍ଡାର ଅଟେ । ବିଭିନ୍ନ ଋତୁରେ ବିଭିନ୍ନ ମନୋରମ ଦୃଶ୍ୟ ଦର୍ଶକର ନୟନମନ ବିମୋହିତ କରିଦିଏ ।

ଏହି ହ୍ରଦ ମଧ୍ୟରେ ଅନେକଗୁଡ଼ିଏ ଛୋଟ ବଡ଼ ଖଣ୍ଡ ଶୈଳ ବିଦ୍ୟମାନ । କାଳିଜାଇ ପାହାଡ଼ରେ କାଳିଜାଇ ଦେବୀ ଅଛନ୍ତି । ଚଢ଼ାଇଗୁହା ଶ୍ୱେତବର୍ଣ୍ଣ ଶୈଳ ଅଟେ । ଭାଲେରି, ଜଟିଆ, କାଙ୍କଣ ଶିଖରୀର ଦୃଶ୍ୟ ମନୋହର । ଶୋଲରୀ ପର୍ବତ ନୀଳ-କାନ୍ତ ମଣି ଗଠିତ ବିମାନ ପରି ଦିଶେ । ପ୍ରତ୍ୟେକ ଶୈଳ ଗାତ୍ର ପତ୍ର-ପୁଷ୍ପରେ ଏପରି ସୁଶୋଭିତ ଯେ ଦୂରରୁ ଦେଖିଲେ ପ୍ରାକୃତିକ ସୌନ୍ଦର୍ଯ୍ୟର ଲୀଳା ନିକେତନ ବୋଲି ବୋଧ ହୁଏ ।

ଏଠାରୁ ମାଛ, ମାଛ ଚିଙ୍ଗୁଡ଼ି, ଶୁଖୁଆ ଓ ଚୂନ ପାଇଁ ସିପ ଆମଦାନୀ ହୋଇ କଲିକତା ପ୍ରଭୃତିକୁ ଯାଏ । ଗ୍ରୀଷ୍ମ ଓ ଶୀତ କାଳରେ ଅନେକେ ଏଠାରେ ଶିକାର କରନ୍ତି ।

ଚିଲିକାରେ ଭେକଟ, କଙ୍କଡ଼ା, ଶିଶୁମାର, ସାଂକୁଚ, ମଗର ପ୍ରଭୃତି ଜଳଚର ପ୍ରାଣୀ ଅଛନ୍ତି । ଏହାର ତୀରରେ ନାରିକେଳ ପୂଗ, ପଣସ, ରସାଳ, ଚମ୍ପା, ଅଶୋକ, କଦମ୍ବ, ପିପ୍ପଳ ପ୍ରଭୃତି ବଡ଼ ବଡ଼ ବୃକ୍ଷମାନ ରହି ମୂ-ଶୋଭାର ଦିଶେ ।



## ଯାଜପୁର ବା ଯଜ୍ଞପୁର

ଭାରତବର୍ଷରେ ଉତ୍କଳ ପବିତ୍ର ଭୂମି । ଏଥିରେ ଚାରିଗୋଟି କ୍ଷେତ୍ର ଅଛି, ଯଥା:—(୧) ବିରଜାକ୍ଷେତ୍ର ବା ଯାଜପୁର (୨) ଏକାମ୍ର କ୍ଷେତ୍ର ବା ଭୁବନେଶ୍ୱର (୩) ଶ୍ରୀକ୍ଷେତ୍ର ବା ପୁରୀ ଏବଂ (୪) ଅର୍କକ୍ଷେତ୍ର ବା କୋଣାର୍କ । ଯଯାତିକେଶରୀ ଯାଜପୁର ନଗର ସଂସ୍ଥାପନ କରିଥିଲେ । ଏଠାରେ ପୁଣ୍ୟସଲିଳା ବୈତରଣୀ ପ୍ରବାହିତା । ମହାରାଜ ଯଯାତିକେଶରୀ ଏହି ନଦୀକୂଳରେ ଦଶଟି ଅଶ୍ୱମେଧ ଯଜ୍ଞ କରିଥିଲେ ଏବଂ ଯେଉଁଠାରେ ଏହା ହୋଇଥିଲା ତାହା ଦଶାଶ୍ୱମେଧଘାଟ ନାମରେ ପରିଚିତ । ଏକ ସମୟରେ ଶତ ଶତ ଶିବମନ୍ଦିର ବୈତରଣୀ ନଦୀର ଉଭୟ କୂଳରେ ବିଦ୍ୟମାନ ଥିଲା । ବିରଜା ଯାଜପୁରର ଅଧିଷ୍ଠାତ୍ରୀ ଦେବୀ । ତାହାଙ୍କ ଦର୍ଶନ ପାଇଁ ବହୁଦୂରରୁ ଅସଂଖ୍ୟ ଯାତ୍ରୀ ଏଠାକୁ ଆଗମନ କରନ୍ତି । ଏହି ଦେବୀଙ୍କର ମନ୍ଦିର ଅତି ପ୍ରାଚୀନ ଓ କାରୁକାର୍ଯ୍ୟଖଚିତ । ଇନ୍ଦ୍ରାଣୀ, ବାରାହୀ, ବୈଷ୍ଣବୀ, କୁମାରୀ, ଯମମାତୃକା, କାଳୀ ଓ ରୁଦ୍ରାଣୀ ଏହି ସପ୍ତମାତୃକାଙ୍କର ସୁନ୍ଦର ପ୍ରସ୍ତରମୂର୍ତ୍ତି ଯାଜପୁରରେ ଅଛି । ବାରୁଣୀ ଗଙ୍ଗାସ୍ନାନ ଦିନ ବୈତରଣୀ ସ୍ନାନ ଉପଲକ୍ଷେ ଏଠାରେ ଏକ ମେଳା ହୁଏ । ସାଧାରଣଙ୍କର ବିଶ୍ୱାସ ଯେ ବିରଜା ଦର୍ଶନ କରି ବୈତରଣୀ ପାର ହେଲେ ଯମାଳୟ ପଥରେ ତପ୍ତ ବୈତରଣୀ ପାର ସହଜ-ସାଧ୍ୟ ହୁଏ । ବିରଜା ମନ୍ଦିରକୁ ଯିବା ବାଟରେ ଏକ ପ୍ରସ୍ତର ସ୍ତମ୍ଭ ଅଛି । ଏହାକୁ ଶୁଭସ୍ତମ୍ଭ କହନ୍ତି । ବର୍ତ୍ତମାନ ଏହାର ଶୀର୍ଷଭାଗରେ ସନ୍ନିବେଶିତ ପଥର ଖଣ୍ଡ ସ୍ଥାନଚ୍ୟୁତ ହୋଇଅଛି ଓ ଉପରିସ୍ଥିତ ଗରୁଡ଼ମୂର୍ତ୍ତି କାଳଦୂରେ ପତିତ ହୋଇଅଛି । ସ୍ତମ୍ଭର ନିମ୍ନଭାଗରେ ଦୁଇଟି ବୃହତ୍ ଛିଦ୍ର ମଧ୍ୟ ଦେଖା ଯାଉଅଛି । ହିନ୍ଦୁଧର୍ମଦ୍ୱେଷୀ କଳାପାହାଡ଼ ଏହାକୁ ସମୋ-

ପରେ ହସ୍ତୀ ଦ୍ୱାରା ସ୍ତମ୍ଭକୁ ଭୂପାତିତ କରିବାକୁ ଚେଷ୍ଟା କରି ଅକୃତକାର୍ଯ୍ୟ ହୋଇଥିଲେ କିନ୍ତୁ ଗରୁଡ଼ ମୂର୍ତ୍ତି ସ୍ଥାନଭ୍ରଷ୍ଟ ହୋଇ ଦୂରରେ ନିକ୍ଷିପ୍ତ ହୋଇଅଛି । ପୁଣି ଯାଜପୁରରେ ବରାହନାଥଙ୍କ ମନ୍ଦିର ପ୍ରତାପରୁଦ୍ରଙ୍କର ପ୍ରଧାନ କୀର୍ତ୍ତି ।

ବିରଜାଦେବୀ ଯଜ୍ଞାନଳରୁ ବାହାରିଥିଲେ ବୋଲି ପ୍ରବାଦ ଅଛି । ପ୍ରତିବର୍ଷ ମାଘ ଅମାବାସ୍ୟାରେ ତାଙ୍କର ଜନ୍ମଦିନ ଉତ୍ସବ ଅନୁଷ୍ଠିତ ହୁଏ । ସେଦିନ ସେ ସାବିତ୍ରୀ ପରି ବିଭୂଷିତା ହୋଇ ସାବିତ୍ରୀମନ୍ଦିରରେ ପୂଜା ପାଆନ୍ତି-ଅନ୍ୟଦିନ ଦୁର୍ଗାମନ୍ଦିରରେ ପୂଜା ହୁଏ । ଏହି ଅମାବାସ୍ୟାକୁ ଯାଜପୁରରେ ସାବିତ୍ରୀ ଅମାବାସ୍ୟା ବୋଲି କହନ୍ତି । ଓଡ଼ିଶାର ଅନ୍ୟାନ୍ୟ ଅଞ୍ଚଳରେ ସାବିତ୍ରୀବ୍ରତ ଜ୍ୟେଷ୍ଠ ଦି ୧୫ ପରେ ପଡ଼େ । ପୁଣି ପ୍ରତିବର୍ଷ ଦଶହରାଦିନ ଏ ଦେବୀଙ୍କର ରଥଯାତ୍ରା ହୁଏ । ସେଥିରେ ସେ ଅଶ୍ୱାରୋହଣକରି ଦୈତ୍ୟଦଳନ ପାଇଁ ଯାତ୍ରା କରନ୍ତି । ଜଗତଯାକ ଯେ ଦେବୀଙ୍କୁ ଦୁର୍ଗା ବୋଲି ଜାଣନ୍ତି ।

କେଶରୀ ବଂଶୀୟ ରାଜାମାନେ ଶୈବ ଥିବାରୁ ପ୍ରତ୍ୟେକ ଗ୍ରାମରେ ଶିବଲିଙ୍ଗ ସ୍ଥାପନ କରି ଯାଇଥିଲେ । ଖୋରଧାର ଅଟ୍ଟିଲ ଗ୍ରାମରେ ହାଟକେଶ୍ୱର, ଚଟେଯାଡ଼ୁଲା ନଦୀକୂଳରେ ବଟେଶ୍ୱର, ଭୁବନେଶ୍ୱରରେ ଲିଙ୍ଗରାଜ, ସତ୍ୟବାଦୀ ନିକ-ଟରେ ବରାଳ ବାଲୁଙ୍କେଶ୍ୱର, କୋଠଦେଶରେ ଭୁବନେଶ୍ୱର, ପୁରୀରେ ଲୋକେଶ୍ୱର ଏବଂ ଭୁବନେଶ୍ୱରରେ କପିଳେଶ୍ୱର ଏହି ବଂଶୀୟ ରାଜାମାନଙ୍କର କୀର୍ତ୍ତି ।

ଅଯୋଧ୍ୟା ପ୍ରଦେଶରୁ ଯେଉଁ ଦଶସହସ୍ର ବ୍ରାହ୍ମଣ ଏଠାକୁ ଅଣା ଯାଇଥିଲେ ସେମାନଙ୍କ ବଂଶଧରଙ୍କ ମଧ୍ୟରେ ବିଦ୍ୟା ଓ ସଦାଚାରର ପ୍ରଭାବ ଅଦ୍ୟାପି ଯଥାକଥିତ ବିଦ୍ୟମାନ ଅଛି ଏବଂ ସେମାନଙ୍କ ପୂର୍ବ ପୁରୁଷମାନେ ଯେଉଁ ଅଗ୍ନିକୁଣ୍ଡରେ ଯାଗ ଯଜ୍ଞ କରୁଥିଲେ, ଏ ପର୍ଯ୍ୟନ୍ତ ତାହା ନିର୍ବାପିତ ହୋଇ-ନାହିଁ । ମାତ୍ର ଘୋର ଅକ୍ଷେପର ବିଷୟ, ବର୍ତ୍ତମାନ ତାହାର ପୂର୍ବ ଗୌରବ ନାହିଁ ।

## ସ୍ୱାସ୍ଥ୍ୟକର ସ୍ଥାନ

ଭୁବନେଶ୍ୱର—ଏ ସ୍ଥାନର ଜଳ-ବାୟୁ ଅତି ଉତ୍ତମ । କେଦାର କୁଣ୍ଡର ଜଳ ସ୍ୱଚ୍ଛ ଓ ନିର୍ମଳ । ଏହା ସେବନରେ ନାନା ଦୁଃସାଧ୍ୟ ରୋଗ ଆରୋଗ୍ୟ ହୁଏ ।

କପିଳାସ—ଏହି ପର୍ବତ ଶ୍ରେଣୀ କଟକ ଠାରୁ ପ୍ରାୟ ୨୫ ମାଇଲ ଦୂରରେ । କଟକର ଉତ୍ତର ପଶ୍ଚିମରେ ଢେଙ୍କାନାଳରେ ଅବସ୍ଥିତ । ଏହାର ସର୍ବୋଚ୍ଚ ଶୃଙ୍ଗର ଉଚ୍ଚତା ସମୁଦ୍ରର ସାଧାରଣ ଉଚ୍ଚତା ଠାରୁ ୨୨୩୯ ଫୁଟ ଉଚ୍ଚ । ସେ ପର୍ବତର ଶିଖର ଦେଶ ଅର୍ଦ୍ଧମାଇଲ ଲମ୍ବା ଓ ୨୫୦ ଫୁଟ ଚଉଡ଼ା । ଏଠାରେ ଯେଉଁ ଝର ଅଛି ତାହାର ଜଳ ଯେପରି ସୁସ୍ୱାଦୁ ସେହିପରି ସ୍ୱାସ୍ଥ୍ୟକର ।

ଖଣ୍ଡଗିରି—ଭୁବନେଶ୍ୱରର ପଶ୍ଚିମରେ ଅବସ୍ଥିତ । ଏଠାକାର ମନୋମୋହକର ଓ ଚକ୍ଷୁଃପ୍ରୀତିକର ରମଣୀୟ କୀର୍ତ୍ତି-ମାଳା ଦର୍ଶକ ଓ ଭାବୁକଙ୍କ ମନକୁ ଆକର୍ଷଣ କରେ ।

ମହାନଦୀ କୂଳସ୍ଥ ଭଟ୍ଟାରିକା ଠାକୁରାଣୀଙ୍କ ଆବାସସ୍ଥାନ ଶଙ୍ଖାଙ୍ଗ, କଣ୍ଟିଲୋ, କାନପୁର ପ୍ରଭୃତି ଓ ମହାନଦୀ ମଧ୍ୟରେ ସିଦ୍ଧନାଥ ଏବଂ ଧବଳେଶ୍ୱର ସ୍ଥାନମାନ ସ୍ୱାସ୍ଥ୍ୟର ଅନୁକୂଳ ।

ପୁରୀ—ବଙ୍ଗୋପସାଗର କୂଳରେ । ଏଠାରେ ଖରାଦିନେ ଗରମ ହୁଏ ନାହିଁ କି ଶୀତଦିନେ ଥଣ୍ଡା ହୁଏ ନାହିଁ । ଏଣୁ ଖରାଦିନେ ଅନେକ ଲୋକ ରହିବାପାଇଁ ଏଠାକୁ ଆସନ୍ତି ।



## ଓଡ଼ିଆ ଭାଷା

ଓଡ଼ିଆଭାଷା ଭାରତର ପ୍ରାଚୀନତମ ଭାଷା । ୬୪ ପ୍ରକାର ଭାଷାମଧ୍ୟରେ ଏହାର ସ୍ୱତନ୍ତ୍ର ଲିଖିତ ଅକ୍ଷର ଥିଲା ଓ ଏହାକୁ ଗୌତମ ବୁଦ୍ଧ ଶିକ୍ଷା କରିଥିଲେ ବୋଲି ବୌଦ୍ଧଗ୍ରନ୍ଥ 'ସମବାୟ ସୂତ୍ର'ରୁ ପ୍ରମାଣ ମିଳେ । କେତେ କବି ଯେ ଏ ଦେଶରେ ଜନ୍ମଗ୍ରହଣ କରିଥିଲେ ତାହା ଜାଣିବାର ଉପାୟ ନାହିଁ । ୭ମ ଓ ୯ମ ଶତାବ୍ଦୀର କେତେକ କବିଙ୍କର ଲେଖା ନେପାଳ ଓ ତିବ୍ବତରୁ ସଂପ୍ରତି ଆବିଷ୍କୃତ ହୋଇଅଛି ।

ଭାରତର ଶେଷ ସ୍ୱାଧୀନଦେଶ ଓଡ଼ିଶା ୧୮୦୩ ଖ୍ରୀଷ୍ଟାବ୍ଦରେ ଇଂରାଜମାନଙ୍କ ଅଧିକାରଭୁକ୍ତ ହେଲା । ଓଡ଼ିଶାର ସ୍ୱାଧୀନ ନରପତିମାନଙ୍କ ରାଜତ୍ୱ କାଳରେ ଉତ୍କଳ ଭାଷା ଓ ସାହିତ୍ୟର ବହୁତ ଉନ୍ନତି ହୋଇଥିଲା । ପ୍ରତାପରୁଦ୍ରଦେବଙ୍କ ରାଜତ୍ୱକାଳ ଓଡ଼ିଶା ଇତିହାସରେ ଅତି ଗୌରବର ସମୟ । ସେ ସମୟରେ ଭାଷାର ସରଳତା ଓ କବିତାର ହୃଦୟସ୍ପର୍ଶିତା

ଅଦ୍ୟାପି ସାହିତ୍ୟସେବୀମାନଙ୍କର ଆଦର୍ଶ ହୋଇ ରହିଛି । ଉତ୍କଳୀୟ ପଣ୍ଡିତମାନେ ରାଜାମାନଙ୍କ ଆନୁକୂଲ୍ୟରେ ସଂସ୍କୃତ ସାହିତ୍ୟରେ ଯେପରି କାବ୍ୟ, ବ୍ୟାକରଣ, ଦର୍ଶନ, ବିଜ୍ଞାନ, ଅଳଙ୍କାର, ଅଭିଧାନ, ଗଣିତ, ଜ୍ୟୋତିଷ, ଆୟୁର୍ବେଦ ଏବଂ ଯୁଦ୍ଧ ବିଦ୍ୟାରେ ଉତ୍କୃଷ୍ଟ ଓ ଆଦରଣୀୟ ଗ୍ରନ୍ଥମାନ ପ୍ରଣୟନ କରିଥିଲେ, ଉତ୍କଳ ଭାଷାରେ ସେହିପରି କାବ୍ୟ, ଗଣିତ, ଜ୍ୟୋତିଷ, ଅଭିଧାନ, ବୈଦ୍ୟଶାସ୍ତ୍ର, ଭକ୍ତିସାହିତ୍ୟ ପ୍ରଭୃତି ସୃଷ୍ଟି କରିଥିଲେ । ରାଜାମାନେ ମଧ୍ୟ ସାହିତ୍ୟ ସେବାରେ ମନ ପ୍ରାଣ ଢାଳି ଦେଇ ନିଜକୁ ଗୌରବାନ୍ୱିତ ମନେ କରୁଥିଲେ । ମରହଟ୍ଟା ରାଜତ୍ୱରେ ନାନାପ୍ରକାର ଅତ୍ୟାଚାର ଓ ଅନାଚାର ମଧ୍ୟରେ ଉତ୍କଳ ସାହିତ୍ୟର ଗତି ସମାନ ଭାବରେ ଚାଲିଥିଲା । ଇଂରାଜ ଶାସନରେ ଦେଶରେ ଶାନ୍ତି ସ୍ଥାପିତ ହେବାରୁ ଶିକ୍ଷା-ବିସ୍ତାର ସଙ୍ଗେ ସଙ୍ଗେ ଦେଶବାସୀଙ୍କ ମନରେ ଭାଷା ଓ ସାହିତ୍ୟର ଉନ୍ନତି ନିମନ୍ତେ ଚେଷ୍ଟା ଜାଗ୍ରତ ହେଲା । ୧୮୪୮ ମସିହାରେ 'ଜ୍ଞାନାରୁଣ' ଓ 'ପ୍ରବୋଧ ଚନ୍ଦ୍ରିକା' ଏବଂ ୧୮୬୬ ରେ 'ଉତ୍କଳ-ଦୀପିକା' ପତ୍ରିକାମାନ ପ୍ରକାଶିତ ହେଲା । ପୁଣି ଏହା ସହିତ ନୂତନ ଓ ପୁରାତନ ପୁସ୍ତକମାନ ମୁଦ୍ରିତ ହୋଇ ସର୍ବ ସାଧାରଣଙ୍କର ଜ୍ଞାନ-ପିପାସା ବୃଦ୍ଧି କଲା । ୧୮୭୦-୭୧ ଖ୍ରୀଷ୍ଟାବ୍ଦରେ ବ୍ରିଟିଶ ଗଭର୍ଣ୍ଣମେଣ୍ଟ ଉତ୍କଳ ଦେଶରେ ବଙ୍ଗ ଭାଷା ଚଳାଇବା-ପାଇଁ ଦୃଢ଼ପ୍ରତିଜ୍ଞ ହେଲେ । ସେପର୍ଯ୍ୟନ୍ତ ଓଡ଼ିଆର ପ୍ରାଚୀନ ସାହିତ୍ୟରେ ଯେଉଁ ଅମୂଲ୍ୟ ନିଧିମାନ ଅଛି, ସେଥିର ସନ୍ଧାନ ସେ ପାଇ ନ ଥିଲେ । କେହି ଉତ୍କଳ ଶତ୍ରୁ ରିପୋର୍ଟ କରିଥିଲେ ଯେ, ଉତ୍କଳ ସାହିତ୍ୟ ଭଣ୍ଡାର ଶୂନ୍ୟ ଓ ପ୍ରାଚୀନ କବିତା ଅଶ୍ଳୀଳ ଭିନ୍ନ ଅନ୍ୟ କିଛି ନୁହେଁ । ପୁଣ ଉତ୍କଳ ଭାଷାର ସ୍ୱାତନ୍ତ୍ର୍ୟ ନାହିଁ ବରଂ ତାହା-ବଙ୍ଗଭାଷାର ରୂପାନ୍ତର ମାତ୍ର । ଏହି ହେତୁରୁ ସରକାର ସ୍କୁଲ ଓ କଚେରୀରେ ବଙ୍ଗଭାଷା ଚଳାଇବା ପାଇଁ କୃତସଂକଳ୍ପ ହେଲେ । ସେ ସମୟରେ ଦେଶରେ ଉଚ୍ଚ ଶିକ୍ଷାର ପ୍ରଚଳନ ହୋଇ ନ ଥିଲା କି ଯୁକ୍ତି ତର୍କରେ ସରକାରଙ୍କ ମତ ଖଣ୍ଡନ କରିବାକୁ କେହି ନ ଥିଲେ । ସ୍ୱର୍ଗତ ଫକୀର ମୋହନ ସେନାପତି, ଗଙ୍ଗାଧର ପଟ୍ଟନାୟକ, ନନ୍ଦ-କିଶୋର ଦାସ, ପ୍ୟାରୀମୋହନ ଆଚାର୍ଯ୍ୟ, ଗୌରୀଶଙ୍କର ରାୟ ଓ ଜନ୍ ବିମ୍ସ୍, ମିଲର ପ୍ରଭୃତି ସରକାରଙ୍କର ଏହି ଅବସ୍ଥାର ତୀବ୍ର ପ୍ରତିବାଦ କଲେ ଏବଂ ଜାତି ଓ ଭାଷାର ଟେକ ରକ୍ଷା କରି ଇତିହାସରେ ଅମରାକ୍ଷରରେ ନିଜ ନିଜର ନାମ ଲିପିବଦ୍ଧ କରିଗଲେ । ଉତ୍କଳର ଶାସନକର୍ତ୍ତା ରେଭେନ୍ସା ସାହେବଙ୍କ ସହିତ ଷ୍ଟର୍ଲିଂ ସାହେବ ଏହାର ପୃଷ୍ଠପୋଷକ ଥିଲେ । 'ଉତ୍କଳ ଦୀପିକା' 'ସମ୍ବାଦ ବାହିକା' 'ଓଡ଼ିଆ ଓ ନବସମ୍ବାଦ' ପ୍ରଭୃତିରେ ଗଦ୍ୟ ପ୍ରବନ୍ଧର ଅନୁଶୀଳନ ଓ ସାଧାରଣ ପ୍ରଭୃତିର ଆଲୋଚନା ହୋଇ ଭାଷାର ଗୌରବ ବଢ଼ାଇବାକୁ ଲାଗିଲା । ପରେ ଗୋପ-ବନ୍ଧୁଙ୍କ ସମ୍ପାଦିତ 'ସତ୍ୟବାଦୀ' ଓ 'ସମାଜର' ଭାଷା ସାହିତ୍ୟ-ସେବୀମାନଙ୍କର ସମ୍ମୁଖରେ ନୂତନ ପଥ ଦେଖାଇ ଦେଲା ।

କବିବର ରାଧାନାଥ, ମଧୁସୂଦନ, ଫକୀରମୋହନ, ଗୋବିନ୍ଦ, ଗଙ୍ଗାଧର, ସୀତାନାଥ ପ୍ରଭୃତି କାବ୍ୟ, କବିତା ଓ ଅନୁବାଦ ପ୍ରଭୃତିରେ ଉତ୍କଳ ଭାଷାର ପ୍ରାଣ ପ୍ରତିଷ୍ଠା କଲେ । ଏହି ସମୟରେ ପ୍ରାଚୀନ ଓ ନବୀନ ଦୁଇ କାବ୍ୟର ଭାଷା ଏବଂ ରୁଚି ବିଷୟରେ ଦେଶର ଦୁଇଦଳ ଲେଖକ ବାହାର 'ଇନ୍ଦ୍ରଧନୁ' ଓ 'ବିଜୁଳି' ପତ୍ରି-କାରେ ଲେଖନୀ ଚାଳନା କଲେ । ଫଳତଃ ଅନେକ ପ୍ରାଚୀନ କାବ୍ୟ ତଥା ପାଠ୍ୟ ପୁସ୍ତକମାନ ମୁଦ୍ରିତ ହୋଇ ସାହିତ୍ୟର ପୁଷ୍ଟି ଓ କଳେବର ବୃଦ୍ଧି କଲା ।

ଗୋପାଳବଲ୍ଲଭ ଦାସ, ନନ୍ଦକିଶୋର ଦାସ, ଦାମୋଦର ପଟ୍ଟନାୟକ, ଗୌରୀଶଙ୍କର ରାୟ ଓ ଗୋବିନ୍ଦ ରଥ ପ୍ରାଚୀନ ସାହିତ୍ୟ ସପକ୍ଷରେ ଏବଂ ରାଧାନାଥ, ମଧୁସୂଦନ ପ୍ରଭୃତି ଲେଖ-କଗଣ ଆଧୁନିକ ସାହିତ୍ୟ ସପକ୍ଷରେ ଥିଲେ । ରାଧାନାଥ ଏ ପକ୍ଷରେ ଥାଇ ମଧ୍ୟ ପ୍ରାଚୀନ ସାହିତ୍ୟକୁ ଅତ୍ୟୁତ୍ତମରୂପେ ଆଲୋଚନା କରି ତତ୍କାଳୀନ ଶିକ୍ଷାବିଭାଗୀୟ ଇନ୍‌ସ୍ପେକ୍ଟର ଭୂଦେବ ବାବୁଙ୍କ ନିକଟରେ ତାହାର ଯଥେଷ୍ଟ ପ୍ରଶଂସା କରି-ଥିଲେ ଏବଂ ନିଜ କାବ୍ୟରେ ପ୍ରାଚୀନ କବିମାନଙ୍କୁ ଉଚ୍ଚାସନ ପ୍ରଦାନ କରିଅଛନ୍ତି ।



## ମହାପୁରୁଷଗଣ

| | |
|---|---|
| ୧ ଶ୍ରୀ ଜଗନ୍ନାଥ ଦାସ | ୨ ଶ୍ରୀ ବଳରାମ ଦାସ |
| ୩ ଶ୍ରୀ ଅଚ୍ୟୁତାନନ୍ଦ ଦାସ | ୪ ଶ୍ରୀ ଯଶୋବନ୍ତ ଦାସ |
| ୫ ଶ୍ରୀ ଅନନ୍ତ ଦାସ | ୬ ଶ୍ରୀ ଅରକ୍ଷିତ ଦାସ (ଖେମଟ) |
| ୭ ଶ୍ରୀ ଅଲେଖ ସ୍ୱାମୀ | ୮ ଶ୍ରୀଚୈତନ୍ୟ ଦାସ (ଖଡଅଳ) |

## ଓଡ଼ିଆ ଭାଷା ସଙ୍ଗେ ଅନ୍ୟଭାଷାର ମିଶ୍ରଣ (ଦଲିଲ ଓ କଚେରୀମାନଙ୍କରେ ବ୍ୟବହୃତ ହେଉଥିବା ପାରସିକ ଶବ୍ଦମାନ )

| ( ପାରସି ) | ( ଇଂରାଜୀ ) | (ଓଡ଼ିଆ ଅର୍ଥକରଣ) |
|---|---|---|
| ସର୍କାର୍— | Government— | ରାଜତ୍ୱଶାସନ । |
| ନାଏବ— | Representative | ପ୍ରତିନିଧି । |
| ଜମିଦାର୍— | Land-lord | ଭୂମ୍ୟଧିକାରୀ । |
| ଲାଖରାଜଦାର୍— | Rent-free owner | ଖଜଣାଶୂନ୍ୟଜମିମାଲିକ । |
| ମାଲଗୁଜାର୍— | Rent payer | ଖଜଣାଦାତା । |
| ଅମଲ— | Reign | ରାଜତ୍ୱ । |
| ହାକିମ— | Officer | ବିଚାରପତି । |
| କୋତୱାଲ— | Police | ପୁଲିସ । |
| କଚେରୀ— | Office | କାର୍ଯ୍ୟସ୍ଥାନ । |
| ଅଦାଲତ— | Civil or Criminal Court | ବିଚାରାଳୟ । |
| ମହକୁମା— | Department | ବିଭାଗ । |
| ନାଲିଶ— | Complaint | ଗୁହାରି, ନିବେଦନ । |
| ଦରଖାସ୍ତ— | Petition | ନିବେଦନ ପତ୍ର । |
| ଅରଜି— | Plaint | ନିବେଦନ ପତ୍ର । |
| ଇସ୍ତାହାର— | Plaint | ନିବେଦନ ପତ୍ର । |
| ମୋକଦମା— | Case | ମୋକଦ୍ଦମା । |
| ସରେଜମୋ ମୋକଦମା | Original suit | ଅସଲ ମୋକଦ୍ଦମା । |
| ଫରିଆଦି— | Complainant | ଯେ ଦାବୀ କରେ । |
| ମୁଦେଇ— | Do | ଯେ ନାଲିଶ କରେ, ବାଦୀ । |
| ମୁଦାଲା— | Accused | ପ୍ରତିବାଦୀ । |
| ମଜହର— | Informant | ଏତଲାଦେବାବାଲା |
| ଗୱା— | Witness | ସାକ୍ଷୀ । |
| ସାକିନ— | Residence | ନିବାସ । |
| ମୌଜେ— | Village | ଗ୍ରାମ । |
| ଆସାମୀ— | Accused | ଦୋଷୀ । |
| କତଲ— | Murder | ହତ୍ୟା । |
| ଖୁନ୍— | Murder | ନରହତ୍ୟା । |
| ଯନାକାରୀ | Adultery | ଲମ୍ପଟତା । |
| ରହଜନି— | Way robbery | ଡ଼କାଇତି । |
| ଡକାଇତି— | House robbery | ସିନ୍ଧିକାଟିବା । |
| ଖାନାସୋଜ— | House burning | ଘରପୋଡ଼ । |
| ଜାଲସାଜି— | Fraudulence | ପ୍ରବଞ୍ଚନା । |
| ଗିରଫ୍ତାର— | Arrest | ଧରିବା । |
| ଦଉରା— | Sessions | ଉପବେଶନ । ( ବିଚାରକର ) |
| ସପୁର୍ଦ— | Committed to | ପଠାଯିବା, କାରାରୁଦ୍ଧ କରିବା । |
| ଚାଲାନ— | To Send up | ପଠାଇବା । |
| ସରଜମିନ— | Locality | ବିଶେଷ ସ୍ଥାନ । |
| ଯବାନବନ୍ଦୀ— | Written slatement | ଲିଖିତ ବିବରଣ । |
| ତଦାରକ— | Enquiry | ତଦନ୍ତ । |
| ରାଏ— | Judgment | ବିଚାର, ନିଷ୍ପତ୍ତି । |
| ତାରିଖ— | Date | ନିର୍ଦ୍ଧାରିତ ଦିନ । |
| ମାହେ— | Month | ମାସ । |
| ସନ— | Year | ବର୍ଷ । |
| ଖଲାସ— | Release | ମୁକ୍ତିପ୍ରାପ୍ତ । |
| ହାଜତ— | Undertrial | କାରାରୁଦ୍ଧ,ବିଚାରାଧୀନ । |
| ଯାମିନ— | Bail | ପ୍ରତିଭୂ, ଯାମିନ । |
| କଏଦ— | Imprisonment | କାରାରୁଦ୍ଧ କରିବା । |
| ଦଲିଲ— | Document | ନିଦର୍ଶନ ପତ୍ର । |
| ଦସ୍ତାବିଜ— | Do | ,, |
| ବାୟା— | Vendor | ବିକ୍ରେତା । |
| ମୁସ୍ତରି— | Vendee | କ୍ରେତା । |
| ମହାଜନ— | Moneylender | ଋଣଦାତା । |
| ଖାତକ— | Debtor | ଦେଣଦାର । |
| ଜରସମନ— | Consideration money | ନିର୍ଦ୍ଧାରିତ ମୂଲ୍ୟ । |
| ଖରିଦ— | Purchase | କ୍ରୟ । |
| ଫରୋକ୍ତ— | Sale | ବିକ୍ରୟ । |

ଯେ ପ୍ରାଣୀ ପରେ ହିଂସା କରେ । ଜୀବନ ଥାଉଁ ଥାଉଁ ମରେ ॥

| | | |
|---|---|---|
| ଦାଖଲ— | To record | ନିର୍ଦ୍ଦେଶନ ରଖିବା । |
| ଖାରଜ— | To strike off | କର୍ତ୍ତନ କରିବା । |
| ଦାଖଲ ଖାରଜ— | Mutation | ନାମଯାଏ । |
| ଅମଲ ଦଖଲ— | To caltivate & possess | |
| ଖଜଣା | Rent | ରାଜସ୍ୱ, କର |
| ସନ ବରସନ | Year to year | ବର୍ଷକୁ ବର୍ଷ । |
| ଅଦାଏ | Payment | ପରିଶୋଧ, ନିକାଶ । |
| ଖୁଶକ ମରୁଡ଼ି | Dry | କାଳ । |
| ସଏଲାବ | Flood | ନଦୀବଢ଼ି, ବନ୍ୟା । |
| ଜଟିସ୍ନୁଯିବ | Accordingly | ତଦନୁସାରେ । |
| ରେଆଅତ | Relief | ଉପଶମ |
| କୋବାଲା | Sale deed | ବିକ୍ରୟ ଦଲିଲ । |
| ବନ୍ଧକନାମା | Mortgage deed | ବନ୍ଧକୀ ପତ୍ର । |
| ତମସୁକ | Bond | କର୍ଜପତ୍ର । |
| ଏକରାରନାମା | Agreement | ଚୁକ୍ତିପତ୍ର । |
| ବଣ୍ଟଓ୍ୟାରାନାମା | Partition deed | ବଣ୍ଟନ ପତ୍ର । |
| ପଟ୍ଟା | Lease | ଇଜାରା । |
| କବୁଲିୟତ | Counterpart of a lease | ପ୍ରତିଲିପି |
| ଚୌହଦ୍ଦି | Boundary four sided | ସରହଦ ଚତୁଃସୀମା । |
| ଦୋହଦ୍ଦି | Boundary two sided | ସରହଦ, ଦ୍ୱିସୀମା । |
| ହାଲ | Present | ବର୍ତ୍ତମାନ, ଉପସ୍ଥିତ । |
| ଜରିବ | Survey | ପରିମାପ । |
| ବନ୍ଦୋବସ୍ତ | Settlement | ବନ୍ଦୋବସ୍ତ । |
| ରକବା | Area | କ୍ଷେତ୍ରଫଳ । |
| ମିଆଦ | Time | ସମୟ, କାଳ । |
| ଦସ୍ତଖତ୍ | Signature | ସ୍ୱାକ୍ଷର । |
| ବକଲମ ଦସ୍ତଖତ | Signature for | ଅପର ଲୋକ ନିମନ୍ତେ ସ୍ୱାକ୍ଷର । |
| ସଫା | Page | ପୃଷ୍ଠା । |
| ନବସିନ୍ଦା | Writer | ଲେଖକ । |
| ହାସିଆଗଭା | Marginal witness | କରଲିଖିତ ସାକ୍ଷୀ । |
| ସାମିଲ | Jointly | ସଂଯୁକ୍ତ । |
| ଇବାରତ | Composition | ରଚନା । |
| ବାଲ୍ୟସତର | Interlineation | ଦୁଇ ଧାଡ଼ି ମଧ୍ୟରେ ଲେଖିବା । |
| ଦସ୍ତବଦସ୍ତ | Hand to band | ହାତାହାତି । |
| ଫାରଖତ | Final Settlement | ଶେଷ ମୀମାଂସା । |
| ହାସଲ | Obtain | ପ୍ରାପ୍ତ ହେବା । |
| ରୁସୁମ | Fees | ପାରିତୋଷିକ, ଦର୍ଶନୀ । |
| ପଞ୍ଚାଏତ | Arbitrators | ମଧ୍ୟସ୍ଥ । |
| ଫଏସଲା | Decision | ନିଷ୍ପତ୍ତି । |
| ଫାଲସନାମା | Decision | ନିଷ୍ପତ୍ତି । |
| ହୁକୁମନାମା | Order | ଆଜ୍ଞାପତ୍ର । |
| ନିଲାମ | Anction sale | ନିଲାମ । |
| ବଏନାମା | Sale certificate | ବିକ୍ରୟ ଦଲିଲ । |
| ଜାରି | Execution | ନିର୍ବାହ । |
| ରସିଦ | Receipt | ପାଉତି, ସ୍ୱୀକାରପତ୍ର |
| ଏଖେତମାମ | Final | ଶେଷ । |
| ମୁବଲଗ | Total | ମୋଟ, ଗାଏ । |
| ମଜକୁର | Aforesaid | ପୂର୍ବୋକ୍ତ । |
| ମଉସୁଫ | ,, | ,, |
| ମୁକାମ | Residence | ନିବାସ, ସ୍ଥାନ । |
| ଓଗଏର | Etcetera | ଇତ୍ୟାଦି । |
| ମାତବର | Guarantee or security | ଜାମିନ । |
| ନିଶାନଦିହି | Identification | ଚିହ୍ନିତ କରିବା । |
| ଓରଫ | Alias | ଅର୍ଥାତ୍, ଅଥବା । |
| ପାଏବନ୍ଦ | Bound | ବନ୍ଧା, ଆବଦ୍ଧ । |
| ପାଏତକ୍ତ | Jurisdiction | ଅଧିକାରର ସୀମା । |
| ହିସା | Share | ଅଂଶ । |
| ତଲସି | Search | ଅନୁସନ୍ଧାନ । |
| ନକଲ | Copy | ପ୍ରତିଲିପି । |
| ମଞ୍ଜୁର | Granted | ଗ୍ରାହ୍ୟ । |

ଯାର ମରଣ ପ୍ରାଣୀହିତେ । ସେ ପ୍ରାଣୀ ଅମର ଜଗତେ ॥

| | | |
|---|---|---|
| ନାମଞ୍ଜୁର | Refused | ଅଗ୍ରାହ୍ୟ । |
| ମାସୁଲ | Fees | ପାରିତୋଷିକ, ଖର୍ଚ୍ଚା |
| ୱାଲିଦ | Father | ପିତା । |
| ୱାଲେଦା | Mother | ମାତା । |
| ୱାଲେଜଏନ | Parents | ପିତା ମାତା । |
| ଅବଯେଦ | Father and grand-father | ପିତା ଓ ପିତାମହ । |
| ଓଲଦେ | Son | ପୁତ୍ର । |
| ଇବନେ | Son | ପୁତ୍ର । |
| ଦୁକ୍ତ | Daughter | କନ୍ୟା । |
| ବାଲଗ | Major | ବୟୋପ୍ରାପ୍ତ । |
| ନାବାଲଗ | Minor | ବୟୋପ୍ରାପ୍ତ ନୁହେ । |
| ମରହୁମ | Deceased | ମୃତ । |
| ହେବା | Gift | ଦାନ । |
| ହେବାବିଲ ସର୍ତ୍ତ | Gift on condition | କୌଣସି ଅଙ୍ଗୀକାର ଦାନରେ । |
| ହେବା ବିଲ ଏଓଜ | Gift | ଦାନ ପରିବର୍ତ୍ତନରେ |
| ଦଏନ | Debt | ଋଣ । |
| ଦଏନମହେର | Dower money | ଯୌତୁକ ଟଙ୍କା । |
| ତଲବ | Demand | ଗୁହିଁବା । |
| ମଓଜଲ | Prompt payment | ତତ୍‌କ୍ଷଣାତ୍ ଅଦାଏ । |
| ମୋଓଜଲ | Deferred payment | ପଛେ ଅଦାଏ । |
| ଓସିୟତନାମା | Will | ଇଚ୍ଛାପତ୍ର । |
| ମୁତଓଲି | Trustee | ଭାରପ୍ରାପ୍ତ ବ୍ୟକ୍ତି । |
| ତଓଲିୟତନାମା | Trust-deed | ଭାରପ୍ରାପ୍ତି ନ୍ୟାସପତ୍ର |
| ଓକଫ | Endowment | ନ୍ୟାସ । |
| ୱାକଫ | Grantor | ଦାତା । |
| ଶଏ | Property | ସମ୍ପତ୍ତି । |
| କାବିନନାମା | Dowery deed | ଯୌତୁକପତ୍ର । |
| ଓକାଲତନାମା | Power of attorney | ଓକିଲଙ୍କୁ ଯେଉଁ କ୍ଷମତାପତ୍ର ଦିଆଯାଏ |
| ଅମମୁକ୍ତାରନାମା | General power | ସାଧାରଣ କ୍ଷମତାପତ୍ର |
| ଖାସମୁକ୍ତାରନାମା | Special power | ବିଶେଷ କ୍ଷମତାପତ୍ର । |
| ଜାମିନନାମା | Securiry bond | ଜାମିନନାମା । |
| ବୟାନା | Earnest money | ଅଗ୍ରୀମ ଦାଦନ । |
| ବଦଲନାମା | Encharge of property | ସମ୍ପତ୍ତି ପରିବର୍ତ୍ତନ |
| ଶରିକତନାମା | Partnership | ଅଂଶପତ୍ର । |
| ତଲାକନାମା | Divorce deed | ଛାଡ଼ପତ୍ର । |

# ସମ୍ବଲପୁରିଆ ଭାଷା

| ( ଶବ୍ଦ ) | ( ଅର୍ଥ ) | ( ଶବ୍ଦ ) | ( ଅର୍ଥ ) |
|---|---|---|---|
| ଅଲ୍‌ଖାଇବା- | ଅଟକାଇବା | ଅବସର | ଅନୁକ୍ଷଣ |
| ଅଧ୍ ରୁ | ଅଢ଼ୁଆଳ | ଅଲାହିଦା | ପୃଥକ୍ |
| ଅଗ୍ରବରତା | ଅଗୁଆ | ଅଣ୍ଠକୁଣ୍ଡି | ଅଣ୍ଠକୁଳୀ |
| ଅଜମାଇସ୍ | ନିର୍ଦ୍ଧାରଣକରିବା | ଅଯାଯୂନ | ଦହଲ |
| ଅରଛିତିଆ | ଦୁଷ୍ଟ | ଅରଞ୍ଜାଳ | ଜଞ୍ଜାଳ |
| ଅଗତୁଣ୍ଡ | ଅଗ | ଅର | ଅଡ |
| ଅସ୍‌କଟ | ମଇଲା | ଅର୍‌କେଇଲା | କଷ୍ଟଦେଲା |
| ଅନ୍‌ମୁନସିଆ | ଅମନୁଷ୍ୟ | ଅଗୁନକ୍ | ଅକସ୍ମାତ୍ |
| ଅଗଲା | ଅଧିକ | ଅଧରେ ଅଧରେ | ଛପି ଛପି |
| ଅଘଲ୍ | ଅଗ | ଅଧିର୍ଯ୍ୟା | ଅଧୀର |
| ଅଙ୍ଗିର | ପାଳନକରିବା | ଅଲ୍ଟିନା | ଝୁଣ୍ଟି |
| ଉର୍‌ଲାଇଲା | ଛେଲ ଛଡ଼ାଇବା | ଇଜତ୍ | ମହତ୍ |
| ଦାଗର୍ | ଘର | ମଶାଲ | ମଧ୍ୟ |
| ଫୁନ୍ | ପୁଣି | ଭି | ମଧ୍ୟ |
| ପିଡ଼ୀ | ପୀଠ ଘୃତ | ଘାଏ | ଥରେ |
| ବଡ଼ାଗୁଡରେ | ବହୁତ | ମିତାର | ଘର |
| ମକେ | ମତେ | ତରେ | ତଳାରେ |
| ବାର୍, | ବାଡ | ମସକୁଲ | କଷ୍ଟପ୍ରଦ |
| ପେଟକାଟ | ବିରକ୍ତ | ବେଲ୍‌ପୁଁ | ପ୍ରଥମରୁ |
| ଗୁନହା | ଦୋଷ | ଉଖୁଲା | ହାସ୍ୟାସ୍ପଦ |
| ବୁଇ | ଟୋକୀ, ବାଳିକା | ମୁର୍‌ସୀ | ମୁଢ଼ୀ |
| ଛେଲି | ଛାଗଳ | ଗର୍ବା | ମେଣ୍ଢା |

ସର୍ବାର୍ଥେ ଉଦ୍ୟମ ଯାହାର । ତା ଲାଗି ରହିଛି ସଂସାର ॥

| ( ଶବ୍ଦ ) | ( ଅର୍ଥ ) | ( ଶବ୍ଦ ) | ( ଅର୍ଥ ) |
|---|---|---|---|
| ଚପାଢ଼ | ମନ୍ମଥ | ବଗର | ବ୍ୟତୀତ |
| ବନ୍ଧୁରେ | ବନ୍ଧୁରଣେ | ବକ୍ ୨ | ଦୌରାତ୍ମ୍ୟ |
| ଭୂନ | ଭୂନ | ପେଲ୍ଲାଇଲା | ଠେଲିଲା |
| ଗୁଟେ | ଗୋଟାଏ | ଲାଗା | ଲାଳନଯୋଗ୍ୟ |
| ବେହବ } ନେଉବ } | ଅନ୍ୟପ୍ରକାର | ବଷ୍ଟକସେ | ବଡ଼କଷ୍ଟରେ |
| | | ରଷା | ତୃଷ୍ଣା |
| ପାଟନ | ପାଟୁଣୀ | ଫସ୍କଲା | ନିଷ୍ଫଳହେଲା |
| ସରଫା | ଲାଭ | ଭେକ୍‌ଲା | ଚକିତ |
| ଟାକଡ଼ା | ଜନ୍ତ୍ରାଶବ୍ଦ | ହିଁତା | ପୁଣି |
| ଉସନାକ୍ | ଗର୍ବୀ, ଉତ୍ସାହିତ ପେମ | | ଛଳନା |
| ସାଉଣ୍ଠି | ଜମାକର | ଫହ୍‌ଫହ୍ | କଷ୍ଟ |
| ବଜର ୨ | ବାକ୍‌ବିତଣ୍ଡା | ବଜର | ଶକ୍ତ |
| ସମା | ବୃଦ୍ଧ | ବସେଇର | ବସି |
| ଏତୋଇ | ଏକାକୀ | କହ୍‌ମହ୍ | ଘଷିବା |
| କଟ୍‌କଟୀ | ଲୋଭଣୀ | କାଜେ | ଲାଗି |
| କୁଚବୁଷଇଲା | ମନରେକ୍ରୋଧକଲା | କାଞ୍ଚି | କାହିଁକି |
| କର୍ଣ୍ଣି | କରେ | କଡ଼୍‌ମଡ଼୍ | ବଚକ୍ତ |
| କଟ୍‌କଟ୍ | ଅତଶୟ କ୍ରୁଷ୍ଟ | କେଷ୍ଟବା | ଠେସବା |
| କଚ୍‌ରକଚ୍‌ର | ପୁନଃପୁନଃକହିବା | କର୍‌ବର୍ | ଗୋଳମାଳ |
| କସ୍‌କସାଇବା | ରୁଷ୍ଟହେବା | କାନଧୁଆ | କାନଗୁହ |
| ଇଲମ | ଯାଦୁ, ଆଇନ | କାପିଲ | ଶ୍ଲେଷ୍ମା |
| ଡହର | ବୁଲ୍‌ବୁଲ୍ | କେନ୍ତା | କେମନ୍ତ |
| କାଁସୁ | କଅଣ | କଣ୍ଠୀ | କତୁରୀ |
| ଖୁରି | କଂସା | ଖୁଖର | କାମୋଡ଼ିବା |
| ଗର୍‌ଗର୍ | କୋପ | ବଢ଼ାତାର | ବଦ୍ଧତର |
| ଘରେ | ମଧ | ତେଲ | ମଧ, ପର୍ଯ୍ୟନ୍ତ |
| ପହ୍‌କ | ପକାଇ | ଦେଶୁ | ଦେଉ |
| ବାଢ଼ି | ଯଷ୍ଟି | ପଖାଳ | ପାଣିଭାତ |
| ମସ୍ତି | ଢୋଲଦାଣ୍ଡି | ହିସାବ | ହିସାବ |
| ଗୁନ୍ଦୁଆ } ବୁନ୍ଦୁଆ } | କାଁଶପ୍ରସୂତରସ | ରୂପ | ଶୁଆ |
| | | ଧୂରୁଳା | ଧୂଳି |
| ପବନ୍ | ପ୍ରାଣ | ବୁଅ } ବାବୁ } ବାପା } | ପିତା |

| ( ଶବ୍ଦ ) | ( ଅର୍ଥ ) | ( ଶବ୍ଦ ) | ( ଅର୍ଥ ) |
|---|---|---|---|
| ପିଗଳ ବଗିଲ | ଏକଦ ଜମା | ସତ୍ରାବନ୍ଧା | ଅପବାଦ |
| ପିରକ୍‌ଷାଇ | ଶେଷେ | ଚଲକୁଳ | ଚଳ |
| ବର୍ଚ୍ଚି | ବଚକ୍ତି | ବର୍ଚ୍ଚ | ବଚକ୍ତି |
| ପତ୍ଲା | ପତଳା | ଦାଦଳ | ମୋଟ |
| ଖମୁରମୁରୁ | ହଟିଯିବା | ବୈଗୁଣ | ଅବଗୁଣ |
| ହାଲ୍ତା | ସେହିପରି | ଲଟା | ଲତା |
| ଠେଲଯାଇ | ଠେଲି | ପେଣ୍ଡପଡ଼ିଛ | ତଥାପିଦେଖୁଛ |
| ମୁଷ୍କିଲ-ଦେଲନାହିଁ,ଠକେଇଲା | | ଗୁଜରିଲା | ମଲା |
| ମୁରଲାଇବା | ପଶାଇବା | ଗୁଲଗୁଲା | କଷ୍ଟୀ, ଦୁଃଖୀ |
| ବସ୍ତି | ମଳ | ଉଜୁର୍ | ଆପତ୍ତି |
| ଧସ୍କ | ବଚନ୍ତି ହୋଇ | ଟିରକ | ରଷ୍ଟି କରିବା |
| ଖଣ୍ଡିସେ | ଶ୍ଳୋକଖଣ୍ଡ | ସେଲହାପେଲହା | ଯିମନ୍ତିବିମିତ୍ତ |
| ଗୁଜ୍‌ଗୁଜାଇବା | ବଚକ୍ତକଢ଼ିବା | ଘବଉବା | ଡରିବା |
| ଖବର | କ୍ଲାନ୍ତହେବା | କୁମ୍ଭାଣ୍ଡ | ପଚ |
| ଲୁଥଲୁଥା | ବଢ଼ିଳ | ଛନାଛକା | ଏକାକୀ |
| ଫୁଇ | ପ୍ରାଣ | ଦଳକି | କମ୍ପନ |
| ଲଫଙ୍ଗା | ମିଥ୍ୟାବାଦୀ | ତତ୍‌କାଲ୍ | ସେହିକ୍ଷଣି |
| ଅଗେଲବଗେଲ୍ | ମିଶାମିଶିକଷ୍ଟଦାୟକ ଭାଷା | ପୁଟପୁଟିଆ | ବାରମ୍ବାର କଥନକାରୀ |
| ଲୁଗ୍ଗୁ | ନମ୍ରକୁଯିବା | ଲହିଁକ | ଅଗ୍ରହୋଇ ଲହିଁବା |
| ଫାର | ଦୂର | } ଟସ୍ଲିଲା | ଖସିଲା |
| ଟେଙ୍ଗ୍‌ଟା | ଲାଲମୁଣ୍ଡିଆ ଏଣ୍ଡୁଅ | } କୁନ୍‌ହାନ | କୋସଲ୍‌ହଣୀ |
| ହଦରବା | କ୍ଲାନ୍ତହେବା | ଚପଲା | ଚଷୁମଳ |
| ଗୁବର | ଗୋମୟ | ନଙ୍ଗଳ | ଲାଙ୍ଗଳ |
| ବଚଗିଲା | ନିଯୁକ୍ତକଲା | ସମ୍ଭଳିଲା | ସମାଳିଲା |
| ଭକୁଆ | ବୋକା | ପଟେନପଟେଁ | ମାରନମାର |
| ଢଲବଲ | ଗୋଳମାଳ | ଠୁରୁଠୁରୁଇବା | କମ୍ପିତ |
| ଦନ୍ତିଚ | ଆକର୍ଷିତ | ଦହିଁସି | ଦୁଃଖିତ |
| କେତସ | ଅଳଆ | ସାଲ୍‌ଯାଲ୍ | କୁଣ୍ଡାଇବା |
| ବାଉଣ୍ଡି | ଛଞ୍ଚୁଣି | କୁଥଲା | ଗଦା |
| ଟୁପାଟୁପା | ବହୁତ | ମାଝିକ | ଶପଥ |

ପରସ୍ୱାର୍ଥ ସଦା ଯତ୍ନ ଯାର । ସେ ବସ୍ତୁ ବଶେ ଅବତାର ॥

| ( ଶବ୍ଦ ) | ( ଅର୍ଥ ) | ( ଶବ୍ଦ ) | ( ଅର୍ଥ ) |
|---|---|---|---|
| ସିବାୟ | ବ୍ୟତୀତ | ବଖର | କୋଣ |
| ଟଙ୍ଖାରିଲା | ପୁନଃପୁନଃକହିଲା | ପୁଆଲ | ପାଳ, କୁଟା |
| ହାଲକଲା | ଅକର୍ଷିତହେଲା | ଛଟଛଟିଆ | କଷ୍ଟଦାୟକ |
| ନଦ୍‌ଛୁ | ଦୌହିତ୍ର | ଗୁଦା | ବଧା |
| ପକ୍କା | ଲିପ୍ତ | ତଗାନା | ଶଯ୍ୟା |
| ବେସୋର | ବ୍ୟୂରଣ | ପୁହ୍‌ପାଠ | ଶେଷ |
| ଠେରଚ୍ଛାରବ ତଳକୁ । | | | |
| ଦବର | ଧଦ୍ଦୁଥାଇ | ତୁଛ | ମିଥ୍ୟା, ତୁଚ୍ଛା |
| ମାହାଲ୍‌ସ୍ଥ | ମିଥ୍ୟା | ଯାବତା | ସାବଧାନ |
| ଜକର | ପୁନଃକରିବା | ବେଉଲାଇବା | ବଳାତ୍କଲେଇବା |
| ସୁଲ୍ଗାଇ | ଦଡ | ବଟକୀ | ଗିନା, ତାଟିଆ |
| ପସନ୍ | ସୁନ୍ଦର | ଋଦରର | ସୁନ୍ଦର |
| ଦରଦର | ସୁନ୍ଦର | ଟନ୍‌ଠନ୍ | ପୁଷ୍ଟି |
| ଟୁପ୍‌ଟପ୍ | ବୃଷ୍ଟି | ଖଣ୍ଡଖଣ୍ଡ | ଅତିଶୟ |
| ବଜର ବଜର | ପୁନଃପୁନଃ ବକ ଲେପନ | | ରପୁଣ |
| ମସ୍ଥ | ପିଚ୍ଛିଳ | କର୍ଚ୍ଚା | ପ୍ରତିଜ୍ଞାବଦ୍ଧ |
| ଫନ୍‌ଫନ୍ | ବିଶେଷପକ୍ୱ | ଖଟ୍‌ଖଟ୍ | ବିରକ୍ତ |
| ପରପଞ୍ଚ | ବିରକ୍ତ | ଟୂପଲ | ଟେକୋଇ |
| ଭୁଲା | ସୁର୍ପ | ମୂଟର / କୁଚୁକା | ବେକଟୁ |
| ମୁର୍ଗ | ମୁଣ୍ଡିଆ | ଚଣ୍ଡିଆ | ଅକାମୀ |
| ବେଧଫୁଲ | ଚର୍ଭି | ଥୁକ୍ | ଛେପ |
| କୁଣ୍ଡା | ଚଣ୍ଡୁଗୁଣ୍ଡ | ଗୁଜା | ଦୂଷ |
| ପତ୍‌ଲା | ଶୋଧହେଲା | ନଯଲା | ନଷ୍ଟହେଲା |
| ଥିର | ଭିତରସ, ପେଜ । | | |

## ଇଂରାଜୀ ପ୍ରଭୃତି ଭାଷା

**ଓରଫ**—ଅନ୍ୟତଃ, କଚେରୀ ସମ୍ପର୍କୀୟ ଲେଖା ପଢ଼ିଲେ ଅନ୍ୟ ପ୍ରକାର ନାମ ବା ମିଛ ନାମକୁ ବୁଝାଏ । ଉପନାମ ।

**ଅପରେଶନ**—(କଟାକଟି) ଅସ୍ତ୍ର ଚିକିତ୍ସା (Operation)

**ଅଡର**—ହୁକୁମ ବା ଆଦେଶ । ( Order )

**ଆଲପାକା**—ଏକପ୍ରକାର କୋଟ କନା । ଦକ୍ଷିଣ ଆମେରିକାର ଓଟଜାତୀୟ ଏକପ୍ରକାର ରୋମନ୍ଥ ଜୀବଙ୍କର ନାମ ଆଲପକା । ସେମାନଙ୍କ ଲୋମରୁ ଏ କନା ପ୍ରସ୍ତୁତ ହୁଏ ବୋଲି ଏହାର ନାମ ଆଲପକା ହୋଇଅଛି । ( The alpaca soap )

**ଆଲେକମ୍**—ମୁସଲମାନମାନଙ୍କର ସଲାମ ।

**ଆଲ୍ୟୁମିନିୟମ**—ସାଧାରଣତଃ ମଫସଲ ଲୋକେ ଟିଣ ବାସନ ବୋଲି ଏହାକୁ କହନ୍ତି । ଏହା ଆଲୁମ ନାମକ ଧାତୁରୁ ତିଆର ହୁଏ ବୋଲି ଏହାର ନାମ ଆଲ୍ୟୁମିନିୟମ୍ ।

**ଅମିର**—ଭାରତର ଉଚ୍ଚବଂଶୀୟ ଲୋକଙ୍କ ମଧ୍ୟରେ ଅତି-ମହତ୍ତ୍ୱ ( ରାଜା, ମହାରାଜା, ଜମିଦାର ) ବ୍ୟକ୍ତିଙ୍କର ଉପାଧି । ହାଇଦ୍ରାବାଦ ପ୍ରଭୃତି ବଡ଼ ବଡ଼ ରାଜ୍ୟର ମାଲିକମାନଙ୍କର ଆଗେ ଅମୀର ଉପାଧି ଥିଲା । ଅଫ୍‌ଗାନିସ୍ଥାନର ରାଜାଙ୍କର ଅଦ୍ୟାପି ଏହି ଉପାଧି ଅଛି । ( a noble person )

**ଆରାରୁଟ୍** (ଆରୋରୁଟ୍)-ଦୁର୍ବଳ ଲୋକଙ୍କ ପାଇଁ ଗୋଟିଏ ପୁଷ୍ଟିକର ଖାଦ୍ୟ । ଏହା ଗୁଳ୍ମର ମୂଳ ଓ କାଣ୍ଡ ଭିତରର ଶସରୁ ପ୍ରସ୍ତୁତ ପାଉଁଆ ।

**ଅତର**—( ଅଟ୍ଟୋ, ଗୋଲାପ ପ୍ରଭୃତି ସୁଗନ୍ଧଯୁକ୍ତ ଫୁଲର ନିର୍ଯ୍ୟାସ ) ପ୍ରଧାନତଃ ବୁଲଗେରିଆରେ ତିଆର ହୁଏ । ୫ ମହଣ ଗୋଲାପରୁ ଏକଛଟାଙ୍କ ଅତର ହୁଏ । ଏହାର ଅତର ଆମ୍ଭେମାନେ ପାଉନାହୁଁ । ଏହାର ଦାମ୍ ଯୁଦ୍ଧବେଳେ ଛଟାଙ୍କି ପ୍ରତି ଟ ୧୫୦୧ ହୋଇଥିଲା ।

**ଆଲପିନ୍**—ପିନ୍‌କଣ୍ଟା ।

**ଅଟର୍ନି**—ମାଲି ମକଦ୍ଦମାରେ ଯେଉଁମାନେ ଲୋକଙ୍କ ପାଇଁ କାମ କରନ୍ତି । କଲିକତା ପରି ବଡ଼ ବଡ଼ ହାଇ-କୋଟ ଥିବା ସ୍ଥାନରେ ଏମାନେ ଥାନ୍ତି । ଏମାନେ ବାରିଷ୍ଟରଙ୍କ ଠାରୁ ପୃଥକ୍ ଶ୍ରେଣୀଭୁକ୍ତ ।

**ବାର୍ଲି**—ଏହାକୁ ସାଧାରଣତଃ 'ବାଲି' ବୋଲି କହନ୍ତି ।

ଉଗଟେ କାହି କାହିଁ ନିର୍ମଳ ସୁଖ । ନିର୍ମଳ ହାସ୍ୟ କାର ରଞ୍ଜିଛି ମୁଖ ॥

ବାର୍ଲି ନାମକ ଏକ ପ୍ରକାର ଶସ୍ୟରୁ ଏହା ତିଆର ହୋଇ ଥିବାରୁ ଏହା ନାମ ବାର୍ଲି ଅଟେ ଲଘୁପଥ୍ୟ ।

**ବାରୋମିଟର**—( ଯନ୍ତ୍ର ) ବାୟୁର ଓଜନ ବା ଗୁରୁ ପରୀକ୍ଷା କରିବା ଯନ୍ତ୍ର । ତିନିଫୁଟିଆ ଗୋଟିଏ କାଚ ନଳରେ ପାରା ଭର୍ତ୍ତି ହୋଇ ତାହାକୁ ଆଉ ଗୋଟିଏ ପାରାଥିବା କାଚ ପାତ୍ରରେ ଓଲଟା ମୁହଁ କରି ରଖାଯାଏ । ଏପରି କରିବା ଦ୍ୱାରା କାଚନଳରୁ ପାରା ଟିକିଏ ଓହ୍ଲାଇ ଯାଇ କେତେକ ଇଞ୍ଚ ଫମ୍ପା ସ୍ଥାନକୁ ରଖିଦିଏ । ବାୟୁ ଭାରି ହେଲେ ପାରା ଉପରକୁ ଉଠେ ଏବଂ ନିଶ୍ୱାସ ହେଲେ ପାରା ତଳକୁ ଖସେ । ଏ ଯନ୍ତ୍ରକୁ ( ଜଗତ୍ ବିଖ୍ୟାତ ଗାଲିଲିଓଙ୍କ ଶିଷ୍ୟ ) ଟୋରିସେଲି ନାମକ ଜଣେ ପଣ୍ଡିତ ୧୬୪୪ ରେ ଆବିଷ୍କାର କରିଥିଲେ । ଆଜି କାଲି ( ଡାଲକ ) ଭାଙ୍ଗରେ ଓ ଅନ୍ୟପ୍ରକାର ବାରୋମିଟର୍ ତିଆରି ହେଲାଣି ।

**ବାରିଷ୍ଟର**—ଇଂଲଣ୍ଡ ବା ଆୟାରଲାଣ୍ଡର ( ଆଇନ୍ ବ୍ୟବସାୟ କ୍ଷେତ୍ର ) ରେ ବାରବାର କରିବାର ଦକ୍ଷତା ଥିବା ବ୍ୟକ୍ତିଙ୍କୁ ବାରିଷ୍ଟର କୁହାଯାଏ । କେତେକ ପରୀକ୍ଷାରେ ପାସ୍ ଓ କେତେକ ଫିସ୍ ଦାଖଲ କରି ଏମାନେ ଦକ୍ଷତା ଲାଭ କରନ୍ତି ।

**ଆର୍ଟିଷ୍ଟ** ( Artist ) —ଚିତ୍ରକାର ।

**ଆମିନ** ( Ameen )—ଭୂମିମାପକରିବା ଅଧସ୍ତନକର୍ମଚାରୀ

**ଇଡେନ**—(ଇହୁଦୀଭାଷା) ମୁସଲମାନ ଓ ଖ୍ରୀଷ୍ଟାନମାନଙ୍କର ଧର୍ମଶାସ୍ତ୍ର ଅନୁସାରେ ଈଶ୍ୱର ପ୍ରଥମସୃଷ୍ଟ ଦମ୍ପତିଙ୍କୁ ଯେଉଁ ବଗିଚାରେ ରଖିଥିଲେ ।

**ବେଗମ**—ତୁର୍କି ସ୍ଥାନର ରାଣୀ ଶ୍ରେଣୀସ୍ଥ ସ୍ତ୍ରୀଲୋକ । ଭାରତର ରାଜା ମହାରାଜାଙ୍କ ସମ୍ପର୍କୀୟା ସ୍ତ୍ରୀଙ୍କୁ ମଧ୍ୟ ବେଗମ୍ କୁହାଯାଏ ।

**ବାଇବଲ**—ଖ୍ରୀଷ୍ଟଧର୍ମାବଲମ୍ବୀମାନଙ୍କର ଧର୍ମ ପୁସ୍ତକ ।

**ବିଶପ୍**—ଖ୍ରୀଷ୍ଟଧର୍ମୀମାନଙ୍କର ଧର୍ମ ସମ୍ବନ୍ଧୀୟ ମାଲିକ ( ପୁରୋହିତ, ବ୍ୟବସ୍ଥାପକ ) । ଏମାନେ ସମ୍ରାଟଙ୍କ ଦ୍ୱାରା ମନୋନୀତ ହୁଅନ୍ତି । ଏମାନଙ୍କ ମଧ୍ୟରୁ ଜଣେ ଜଣେ ଲକ୍ଷ ଲକ୍ଷ ଟଙ୍କା ଦରମା ପାଆନ୍ତି ।

**ବୋଗ**—ଠଗା ବା ନାହା ।

**ବ୍ୟାଙ୍କ**—ଟଙ୍କା ଯେଉଁଠାରେ ଜମା ଦିଆଯାଏ ।

**ବଲସେଭିକ୍**—ପ୍ରଜାତନ୍ତ୍ର ଶାସନର ଗୋଟିଏ ପ୍ରଣାଳୀ (ରୁଷ) । ଏମାନଙ୍କ ମତରେ ବଡ଼ ସାନ ଭେଦ ନାହିଁ । ଦେଶର ସମସ୍ତ ଅଧିବାସୀ ସମାନ ଅବସ୍ଥାରେ ରହନ୍ତୁ ଏବଂ ଧନୀ ଗରିବ ସମସ୍ତଙ୍କର ସମ୍ପତ୍ତି ମିଶି ସମାନ ଭାବରେ ଦେଶର ସବୁ ଅଧିବାସୀଙ୍କ ମଧ୍ୟରେ ବଣ୍ଟା-ଯାଉ-ଏହାହିଁ ଏମାନଙ୍କର ଉଦ୍ଦେଶ୍ୟ । ଲେନିନ୍ ଓ ଟ୍ରଟସ୍କି ଏମାନଙ୍କର ପ୍ରଧାନ ନେତା ।

**ବମ**—ଲୁହା ବା ଅନ୍ୟ ଧାତୁର ଫମ୍ପା ଗୋଲା । ଏଥିରେ ବାରୁଦ ଖୁନ୍ଦା ହୋଇଥାଏ ଏବଂ ଦରକାର ବେଳେ ଫୁଟାଯାଏ ।

**କାବିନେଟ**—ଇଂଲଣ୍ଡର ପ୍ରଧାନ ଶାସକଗଣଙ୍କର ସମଷ୍ଟି ବା ସଭା । ପ୍ରଧାନ ମନ୍ତ୍ରୀ ଏହାର ନାୟକ ଏବଂ ଅନ୍ୟାନ୍ୟ ମନ୍ତ୍ରୀ ଓ ଲର୍ଡମାନଙ୍କ ମଧ୍ୟରୁ କେତେକ ବିଶିଷ୍ଟ ବ୍ୟକ୍ତି ଏହି କାବିନେଟ୍‌ର ସଭ୍ୟ ।

**କ୍ୟାଲେଣ୍ଡାର**—ସାରା ବର୍ଷକର ମାସମାନଙ୍କର ନାମ, ଦିନ ଓ ତାରିଖ ଯହିଁରୁ ଜଣାଯାଏ ।

**କ୍ୟାମ୍ପ**—ପୂର୍ବେ ସୈନ୍ୟମାନଙ୍କୁ ରଖାଯାଉଥିବା ସ୍ଥାନକୁ କ୍ୟାମ୍ପ କୁହାଯାଉ ଥିଲା । ଆଜିକାଲି ପ୍ରାୟ ସବୁଠାରେ ଏ ଶବ୍ଦ ବ୍ୟବହୃତ ହୁଏ, ଯେପରି କି ବନ୍ଦୋବସ୍ତ କ୍ୟାମ୍ପ । ଯେଉଁଠି ତମ୍ବୁ ପକାଇ କିଛିଦିନ ପାଇଁ କାର୍ଯ୍ୟ ଉଦ୍ଦେଶ୍ୟରେ ରହନ୍ତି ସେହି ସ୍ଥାନକୁ କ୍ୟାମ୍ପ କୁହାଯାଏ ।

**କାର୍ଡ଼**—ତାସ ଗୁଡାର ନାମ କାର୍ଡ । ପୋଷ୍ଟ କାର୍ଡକୁ ସାଧାରଣ ଲୋକେ କାର୍ଡ କହନ୍ତି ।

**କାର୍ପେଟ**—ଘର ଚଟାଣ ବା ଛାତ ଆଦିରେ ବିଛାଇବାର ମୋଟା ସୂତୁଲି ବୁଣା ଲୁଗା ଦରି, ସତରଞ୍ଜି ଇତ୍ୟାଦି ।

**ଇଣ୍ଟରମିଡ଼ିଏ**—ଦୁଇଶ୍ରେଣୀର ମଧ୍ୟବର୍ତ୍ତୀ ।

**ଚେଞ୍ଜ**—ସ୍ୱାସ୍ଥ୍ୟଲାଭ କରିବାଲାଗି ଜଳବାୟୁ ପରିବର୍ତ୍ତନପାଇଁ କିଛିଦିନ ସ୍ଥାନାନ୍ତର ଗମନ ।

**ସିମେଣ୍ଟ**—ଶିଲିଷ ଅଠା, ମଞ୍ଜୁସି ମା ଇତ୍ୟାଦି ନାନାପ୍ରକାର ଫୁଟୁଣି ରୂପେ ଥାଏ । ବିଶେଷତଃ ପଥର ବସାଇବା ଯୋଡ଼ିବା ପାଇଁ ଯେଉଁ ଫୁଟୁଣି ବ୍ୟବହୃତ ହୁଏ ତାହାକୁ ସିମେଣ୍ଟ ( ସିମେଣ୍ଟ ) କୁହାଯାଏ ।

**ସେନ୍‌ସେସ୍**—ରୋମନଦେଶରେ ଦେଶବାସୀଙ୍କ ନାମ (ପରିବାରରେ ଲୋକସଂଖ୍ୟା ଓ ତନ୍ମଧ୍ୟରେ କ୍ରୀତ ଦାସଙ୍କ ସଂଖ୍ୟା ) ଲେଖିବା ବ୍ୟକ୍ତିର ଏହି ଉପାଧି ଥିଲା । ଏବେ ବିଲାତ, ଭାରତ ଏବଂ ଇଂରାଜ ଅଧିକୃତ ଦେଶମାନଙ୍କରେ ପ୍ରତି ଦଶବର୍ଷରେ ଯେଉଁ ଲୋକ ସଂଖ୍ୟା ( ଗଣନାଦ୍ୱାରା ) କରାଯାଏ ତାହାକୁ ସେନ୍‌ସେସ୍ କୁହାଯାଏ ।

**ଚକ୍**—ଗୋଟିଏ ଚକ୍କଣ ଧଳା ଚୂନମିଶା ଖନିଜ ପଦାର୍ଥ, ଏହାକୁ ପୋଡ଼ ଚୂନରେ ପରିଣତ କରାଯାଏ ଏବଂ ପେଷ୍ଟିତ କଲେ ଧଳା ହୋଇଯାଏ । ଇଂଲଣ୍ଡର ଦକ୍ଷିଣ ଭାଗରେ ଏହା ଖୁବ୍ ମିଳେ ଏବଂ ସମୁଦ୍ର ସମୀପରେ ୧୦୦୦ ଫୁଟ ମୋଟାର ଚକ୍ ଏହି ସ୍ଥାନୀୟ ଖଣିରୁ ବାହାରେ ।

**ଚେକ୍**—ବ୍ୟାଙ୍କକୁ ଟଙ୍କା ଦେବା ଲାଗି ଅର୍ଡର ( ବରାଦ ) ଯେଉଁ ଲୋକର ନାମ ସେ ବରାଦରେ ଲେଖାଥାଏ ବା ଯେ ଯେଉଁ ଲୋକକୁ ଟଙ୍କା ଆଣିବାର ବରାଦ କରେ ତାଙ୍କୁ ଟଙ୍କା ଦିଆଯିବାର ବିଷୟ ଏହି ଚେକରେ ଥାଏ ।

**କଫି**—ଏକପ୍ରକାର ଫଳବୀଜ । ଏହାର ଗୁଣ୍ଡକୁ ଗରମପାଣି ପକାଇ ଗୃହାପର ଖାଇବାକୁ ହୁଏ । ବ୍ରିଟିଶ ଭାରତ ଓ ସିଂହଳରେ କଫିର ଚାଷ ହେଉଅଛି ।

**କମ୍ପାସ କମ୍ପାସ**—ଛବି, ଚିତ୍ର, ନକ୍ସା ଆଦି ମାପିବାର ଦ୍ୱିବାହୁ ବିଶିଷ୍ଟ ଗାଣିତିକ ଯନ୍ତ୍ର ।

**କଂଗ୍ରେସ**—ଭାରତର ଜାତୀୟ ମହାସଭା ।

**କନେଷ୍ଟବଲ୍**—କନଷ୍ଟବଲ, ପୁଲିଶ ସିପାହୀ ।

**କର୍କ**—ବୋତଲ ମୁହଁର ଠିପି । ଏହା ଏକଜାତୀୟ ଗଛର ଛେଲିରୁ ତିଆରି ହୁଏ ।

**କ୍ରିକେଟ**—ପୁରୁଣା କାଳର ବିଲାତି ଖେଳ ।

**କିରୋସିନି**—ଗନ୍ଧଯୁକ୍ତ ଜାଳିବା ତେଲ ।

**ଖ୍ରୀଷ୍ଟମସ**— ଖ୍ରୀଷ୍ଟିୟାନମାନଙ୍କର ବର୍ଷର ଡିସେମ୍ବରମାସ ୨୫ ତାରିଖରେ ହେବା ଉତ୍ସବ । ଏଦିନ ଯୀଶୁଖ୍ରୀଷ୍ଟ ଜାତ ହୋଇଥିଲେ ।

**ଖ୍ରୀଷ୍ଟମସ୍‌କାର୍ଡ**— ବନ୍ଧୁମାନଙ୍କର ପରସ୍ପର ନିକଟକୁ ପଠାଇବା ମଙ୍ଗଳ କାମନା ସୂଚକ ପତ୍ର । ୧୮୪୫ ସାଲରେ ଇଂଲଣ୍ଡବାସୀ ସାର୍‌ହେନେରି କୋଲ ପ୍ରଥମେ ପ୍ରବର୍ତ୍ତାଇ ଥିଲେ ।

**ଡେକଏଟ୍**—ଡ଼କାୟତ ( ଖଣ୍ଡ ) ।

**ଡିକ୍ରି**—ଡିଗ୍ରି ( ମକଦ୍ଦମାରେ ଜୟ ) ।

**ଡିଟେକଟିଭ୍**—ଗୋଏନ୍ଦା ( ଗୁପ୍ତ ପୁଲିଶ କର୍ମଚାରୀ )

**ଡିକସନାରି**—ଡେକ୍‌ସେନାର । ଅଭିଧାନ ।

**ଡକଟର୍**—ଡାକ୍ତର ।

**ଇଅର ରିଙ୍ଗ**—ଯୁବତୀ ସ୍ତ୍ରୀ ମାନଙ୍କର କାନରେ ପିନ୍ଧିବା ଗହଣା ।

**ଫାର୍ସ**—ହାସ୍ୟ ଜନକ ନୃତ୍ୟ, ସାଧାରଣତଃ ଥିଏଟର ସଙ୍ଗେ ହୋଇଥାଏ ।

**ଫ୍ଲାନେଲ୍**—ପଶମ ଜାତୀୟ ଲୁଗା ।

**ଫୁଟବଲ୍**—ବିଲାତି ଖେଳ ।

**ଗ୍ୟାସ**—କରସିନ ବା କାଠବାଇଟି ଆଦିର ଧୂଆଁ ବା ବାମ୍ପ ।

**ଗ୍ରାମଫୋନ**—କଳ ଗାଉଣାର ଯନ୍ତ୍ର ।

**ଗାଡ଼ିଆନ**—ଗାର୍ଜିନ, ସମ୍ପତ୍ତି ବା କୌଣସି ବ୍ୟକ୍ତି ଯାହା ଜିମାରେ ଥାଏ । ( Guardian )

ପ୍ରାଣସହ ହୁଏ ସିନା ପ୍ରାଣ ବଳି ମସ୍ତ, ମଧୁମସ୍ତ ଗୋପନ ରହସ୍ୟ ॥

ଗାର୍ଡ—ରେଲଗାଡ଼ିର ଗାର୍ଡ, ଜଗୁଆଳି ସଶସ୍ତ୍ର ପ୍ରହରୀ ।

ଉଡ଼ନପେନ୍‌ସିଲ—ଓଡ଼ନ୍ ପେନ୍‌ସିଲ । ଓଡ଼ନ ପେନ୍‌ସିଲ । କାଗଜ ଉପରେ ଲେଖିବା ନିମନ୍ତେ ପେନ୍‌ସିଲ ।

ଜୁରି—କୋର୍ଟ ମକଦ୍ଦମା ବିଚାର ନିମନ୍ତେ ଜଜ୍‌ସାହେବଙ୍କ ସଙ୍ଗେ ବସିବା ବ୍ୟକ୍ତିମାନେ ।

କିଣ୍ଡରଗାର୍ଟନ୍—ପୁତୁଳା, ଖେଳନା ଆଦିର ସାହାଯ୍ୟରେ ଶିଶୁ ବାଳକ ବାଳିକାମାନଙ୍କୁ ପାଠ ପଢ଼ାଇବାର ପ୍ରଣାଳୀ ।

କୋରାନ୍—ମୁସଲମାନ ମାନଙ୍କର ଧର୍ମଶାସ୍ତ୍ର ।

ଲ୍ୟାମ୍ପ—ଲେମ୍ପ—ଆଲୋକ ଜଳିବାର ପାତ୍ର । କାନ୍ଥ ( ୱାଲ୍ ) ଲ୍ୟାମ୍ପ, ଟେବୁଲ ଲ୍ୟାମ୍ପ, ଇତ୍ୟାଦି ।

ଲାଣ୍ଟନ—ଲଣ୍ଠନ ।

କମ୍ପାନୀ—ବାଣିଜ୍ୟାର୍ଥ ଗଠିତ ସଙ୍ଘ ।

ଗେଜେଟ୍—ସମ୍ବାଦପତ୍ର ।

ଗେଜେଟିଅର—ଭୌଗଳିକ ଓ ଐତିହାସିକ ବିବରଣ ସମ୍ବଳିତ ଅଭିଧାନ ବିଶେଷ ।

ପ୍ଲାଟ୍‌ଫର୍ମ—ଉନ୍ନତ ମଞ୍ଚ ।

ନଭେଲ—ଉପନ୍ୟାସ ।

ଆଲମିରା—(ପର୍ତ୍ତୁଗିଜ ଆଲମାରୟୋ ) ଠିଆ ସିନ୍ଦୁକ ।

ଲାଇବ୍ରେରୀ—ଲାଇବ୍ରେରି, ନାନାବିଧ ପୁସ୍ତକ ଆଦି ସଂଗ୍ରହ କରି ରଖା ଯାଇଥିବା ସ୍ଥାନ ।

ଲାଇଟ୍—ଆଲୋକ, ମସାଲ, ଦୀପ, ଡିବିରି ଆଦି ।

ଲଜିକ୍—ତର୍କ ବିଜ୍ଞାନ ।

ଲଣ୍ଡନ୍—ଇଂଲଣ୍ଡର ରାଜଧାନୀ ।

ଲରୀ—ବଡ଼ ମଟରଗାଡ଼ୀ । ଦେଖିବାକୁ ଠିକ ରେଲ ଡବା ପରି ।

ମ୍ୟାଜିକ୍—ମେଜିକ୍, କୁହୁକ ବିଦ୍ୟା ।

ମ୍ୟାଜିକ୍ ଲାଣ୍ଟନ୍—ମେଜିକ୍ ଲଣ୍ଠନ । ଗୋଟିଏ ପରଦା ଉପରେ ଜୀବଜନ୍ତୁ, ଗଛ, ଘରଘର ଆଦିର ଛବି ପକାଇ ଦୃଶ୍ୟ ଦେଖାଇବାର କଳ ।

ମ୍ୟାଜିଷ୍ଟ୍ରେଟ୍—ମେଜେଷ୍ଟର । ଜିଲ୍ଲାର କଲେକ୍ଟର ସାହେବଙ୍କର ଅନ୍ୟ ନାମ ।

ମର୍ଡ଼ର—ମଡ଼ର, ନରହତ୍ୟା, ମଡ଼ର କେସ୍ ।

ନିଗ୍ରୋ—ଆଫ୍ରିକା ମହାଦେଶର ଆଦିମ୍ ଅଧିବାସୀ, ଏମାନଙ୍କର ଦେହର ବର୍ଣ୍ଣ ଗାଢ଼ କୃଷ୍ଣବର୍ଣ୍ଣ, ମୁଣ୍ଡର କେଶ କୁଞ୍ଚିତ, ଓଠ ଚେପ୍‌ଟା ଓ ମୋଟ ।

ଓପିଅମ୍—ଅଫିମ । (Opium)

ପାର୍ସେଲ୍—ପାର୍ଶଲ, ଡାକ ଯୋଗେ ପଠାଯିବା ଜିନିଷ । ପୁଳିନ୍ଦା ।

ପାର୍ଲିଆମେଣ୍ଟ—ବିଲାତର ରାଜସଭା । ରାଜ୍ୟ ଶାସନ ସମ୍ବନ୍ଧୀୟ ସଭା ।

ପାସ୍‌ପୋର୍ଟ—ବିଦେଶ (ବିଲାତ ଆଦି ଦେଶକୁ) ଯାତ୍ରା କରିବାର ଅନୁମତି ପତ୍ର ବା ଛାଡ଼ପତ୍ର ।

ପେଟ୍ରୋଲିଅମ୍—ମଟରଗାଡ଼ି ଆଦି ଚଳାଇବା ପାଇଁ ବ୍ୟବହୃତ ତେଲ । (Petrolium)

ଫଟୋଗ୍ରାଫ୍—ଫଟ । ଜୀବ, ଜନ୍ତୁ ଠାରୁ ଆରମ୍ଭ କରି ନିର୍ଜୀବ ପଦାର୍ଥ ପର୍ଯ୍ୟନ୍ତର ପ୍ରତିକୃତି ବା ଛବି । ଏହା ଯନ୍ତ୍ର ସାହାଯ୍ୟରେ ନିଆଯାଏ ।

ପିନ୍—ପିନ୍‌କଣ୍ଟା । (Pin)

ପିଷ୍ଟଲ୍—ପିସ୍ତଲ୍, ଛୋଟ ବନ୍ଧୁକ ।

ପେନ୍—କଲମ । (Pen)

ପେନ୍‌ସିଲ୍—ପେନ୍‌ସିଲ, ଯଥା:—ସେଡ଼ ପେନ୍‌ସିଲ୍, ଓଡ଼ନ୍ ପେନ୍‌ସିଲ । (Pencil)

ପ୍ଲାନ୍--କୌଣସି ଘରର ତଳର ନକ୍ସା ।

ପୋପ୍--ଖ୍ରୀଷ୍ଟିଅନ୍ ଧର୍ମର ଏକବଡ଼ଦଳର ନାମ ରୋମାନ୍-କାଥଲିକ୍, ଏମାନଙ୍କର ପ୍ରଧାନ ଅଧ୍ୟକ୍ଷଙ୍କୁ ପୋପ୍ କୁହାଯାଏ । ଏହାଙ୍କ ଅଧିଷ୍ଠାନ ରୋମ ନଗରରେ । (Pope)

ପୋର୍ଟ—ବନ୍ଦର । ସମୁଦ୍ର ଉପକୂଳସ୍ଥ ବାଣିଜ୍ୟର କେନ୍ଦ୍ର ସ୍ଥଳ (Port)

ପାର୍ଚ୍ଚମେଣ୍ଟ—ଚମଡ଼ାର ଅଂଶମିଶ୍ରିତ ବହୁଦିନ ସ୍ଥାୟୀ ଏକ ପ୍ରକାର କାଗଜ । (Parchment)

ପାର୍ଟି—କୌଣସି ବିଶେଷ ଉଦ୍ଦେଶ୍ୟରେ ଗଠିତ ହୋଇଥିବା ଦଳ । (Party)

କମ୍ଫର୍ଟ—ପଶମର ମସ୍ତକ ବା ଗଳାବେଷ୍ଟନୀ ।( A comforter )

ଟ୍ରେଜରୀ—ଖଜଣାଖାନା ।

ଟ୍ରଙ୍କ—ଲୁହା ବା ମୋଟା ଟିଣ ପାତିଆର ସାନ ସିନ୍ଦୁକ ବା ବାକସ ।

ବେରିଂ—ବିଯୁକ୍ତଙ୍କୁ ବେରିଂ ହୋଇଅଛି । ଯେଉଁ ପତ୍ରରେ ଷ୍ଟାମ୍ପ ନ ଥାଏ । ପତ୍ରଗ୍ରହୀତା ଠାରୁ ଦୁଇଗୁଣ ମାସୁଲ ଆଦାୟ ହୁଏ ।

ପୋଷ୍ଟଅଫିସ—ପୋଷ୍ଟାଫିସ୍, ଡାକଘର ।

ପ୍ରିଭିକାଉନ୍‌ସିଲ୍—ସମ୍ରାଟଙ୍କ ପରାମର୍ଶ ଦାତାମାନଙ୍କୁ ନେଇ ଗଠିତ ସଭା ।

କୁଇନାଇନ୍—କୁଇନାଇନ୍, ଜ୍ୱରର ଔଷଧ । ସିନ୍‌କୋନା ଗଛ ବକ୍କଳରୁ ପ୍ରସ୍ତୁତ ଏକପ୍ରକାର ଅତି ପିତା ଗନ୍ଧହୀନ ଧଳା ଗୁଣ୍ଡ । (Quinine)

ରେଲ୍—ରେଳ, ରେଲ୍‌ଗାଡ଼ି ।

ରିଭଲଭର୍—ପିସ୍ତଲ, ଏଥିରେ ଏକାବେଳେକେ ( ଗୋଟିକ ପରେ ଅନ୍ୟ ଗୋଟିଏ ) ୬ଟା ବା ବେଶି ଗୁଳି ଫାଏର ହୁଏ ।

ଟ୍ରିବ୍ୟୁଟାରୀଚିଫ—ଯେଉଁ ରଜା ସମ୍ରାଟଙ୍କୁ ପେଷକସ ଦିଅନ୍ତି ।

ସିପାଏ—ସିପାହୀ ।

ଶାଲ - ଶାଲ ।

ସିଲ୍‌କ—ରେଶମ ।

ସ୍ଲେଟ୍—ସିଲଟ, ପିଲାମାନଙ୍କ ପଢ଼ିବା ସିଲେଟ୍ ।

ସୋପ୍—ସାବୁନ୍ ବା ସାବନ ।

ସଭରେନ୍—ବ୍ରିଟନ୍ ଦେଶର ୨୦ ଶିଲିଙ୍ଗ ମୂଲ୍ୟର ସ୍ୱର୍ଣ୍ଣମୁଦ୍ରା

ସ୍ପଞ୍ଜ—ସ୍ପଞ୍ଜ, ଜାଲଜାଲୁଆ କୋମଳ ମେଞ୍ଚାପରି ପଦାର୍ଥ । ଏହା ପାଣି ଶୋଷି ପାରେ ।

ଷ୍ଟାମ୍ପ—ସିଟାମ୍ ।

ସୁଲତାନ୍—ତୁର୍କି ରଜାଙ୍କ ଉପାଧି ।

ଟି—ଚୁହା, ଚ ।

ଟିଉଟର—ଶିକ୍ଷକ ।

ଟେଲିଗ୍ରାଫ୍—ଟେଲଗ୍ରାଫ୍, ଟେଲଗ୍ରାମ୍, ତାର ସଂବାଦ

ଟେଲିଫୋନ୍—ଟେଲଗ୍ରାଫ୍ ପରି ଯନ୍ତ୍ର । ଏହା ସାହାଯ୍ୟରେ ବହୁଦୂରରେ ଥାଇ କଥାଭାଷା କରାଯାଏ ।

ଟେଲିସ୍‌କୋପ୍—ଦୂରବୀକ୍ଷଣ ଯନ୍ତ୍ର । ଏହାଦ୍ୱାରା ବହୁଦୂରରୁ ପଦାର୍ଥମାନ ଦେଖାଯାଏ ।(Telescope)

ଥିଏଟର—ଥିଏଟର, ନାଟକ ଘର ରଙ୍ଗମଞ୍ଚ, ନାଟକାଭିନୟ

ଥର୍ମୋମିଟର୍—ଜ୍ୱରର ତାପ ଦେଖିବାର ଯନ୍ତ୍ର । ଗୋଟିଏ କାଚର ଫମ୍ପା ଗୋଲାର ମୁଣ୍ଡରେ ଗୋଟିଏ ଲମ୍ବ ନଳ ଲାଗିଥାଏ । ଗୋଲା ମଧ୍ୟରେ ପାରଦ ଭର୍ତ୍ତି କରାଯାଏ ଓ ନଳର କେତେକ ଅଂଶ ଖାଲିଥାଏ । ଖାଲିଥିବା ନଳର ଅଂଶକୁ ବାୟୁଶୂନ୍ୟ କରାଯାଏ । ଉକ୍ତ ଯନ୍ତ୍ରକୁ ମନୁଷ୍ୟ ବା ଅନ୍ୟ ବସ୍ତୁରେ ଲଗାଇଲେ ଦେହର ବା ଅନ୍ୟ

ଦ୍ରବ୍ୟର ଉଷ୍ଣତା ବା ଶୀତଳତା ଅନୁସାରେ ଗୋଳା ମଧ୍ୟରେ ଥିବା ପାରଦର ଆକାର ବଢ଼େ ବା କମେ ।

**ଟାଇମ୍ସ**—ବିଲାତର ଗୋଟିଏ ବଡ଼ ଖବର କାଗଜ । ଟାଇମ୍-ସମୟ ।

**ଟ୍ରାନ୍ସଫର**—ବଦଳି ।

**ଟ୍ରାମ୍**—ରେଲଗାଡ଼ି । ଏହା ବିଦ୍ୟୁତ ସାହାଯ୍ୟରେ ଚଳେ । କଲିକତା, ବୋମ୍ବାଇ ପ୍ରଭୃତି ବଡ଼ ବଡ଼ ସହର-ମାନଙ୍କରେ ଅଛି । Tram-car l

**ଭକିଲ୍**—ବି, ଏ, ବି, ଏଲ୍ ପାଶ କରି ୨ ବର୍ଷ ଓକାଲତି କଲେ ଏବଂ ପୁଣି ନାମତଃ ଗୋଟିଏ ପରୀକ୍ଷାରେ ପାସ୍ କଲେ ଭକିଲ ହେବା ଯାଏ ।

**ଭଲେଣ୍ଟିଅର**—ଭଲୁଣ୍ଟର । ସ୍ୱେଚ୍ଛାସେବକ ।

**ହ୍ୱିସ୍କି**—ମଦ । ୱାଇନ୍—ଦେଶୀ ମଦ ।

**ଡିଡ଼୍**—ସମ୍ପତ୍ତି ହସ୍ତାନ୍ତରର ମୁଦ୍ରିତ ତମସୁକ ।

**କପିରାଇଟ୍**—ପୁସ୍ତକର ସ୍ୱତ୍ୱ—ଲେଖକ ଜୀବିତ ଥିବା-ପର୍ଯ୍ୟନ୍ତ କେହି ତାହା ନେଇ ପାରିବେ ନାହିଁ, ତାଙ୍କର ମୃତ୍ୟୁ ପରେ ତାଙ୍କର ଉତ୍ତରାଧିକାରୀମାନେ ୩୦ ବର୍ଷ ପର୍ଯ୍ୟନ୍ତ ତାହାର ଉପସ୍ୱତ୍ୱ ଭୋଗ କରିବେ । ତତ୍ପରେ ତାହା ସର୍ବ ସାଧାରଣଙ୍କର ସମ୍ପତ୍ତି ହେବ ।



## ଉର୍ଦ୍ଦୁ ଓ ହିନ୍ଦୀ ମୂଳକ ଶବ୍ଦମାଳା

ଅଚ୍ଛା, ଅଚ୍ଛାତରେ, ଅଡ୍ଡା, ଅସବାବ, ଅପୋସ, କଞ୍ଜୁସ୍, କୁଡ଼, ଖଡ଼ା, ଖଜଞ୍ଚିନ, ଖାତା, ଖାଣ୍ଟି, ଖାଦ, ଖାତକ ଗମାର, ଖୁବ, ଚଟି, ଚୁଟକି, ଛୁଟି, ଜଲଦି, ଜାଗା, ଜୋତା ଝାଡ଼ାକର, ଝାଡ଼ଜଙ୍ଗଲ, ଟକ୍କର, ଠଉର, ଠିକଣା, ଠୋକର, ଡକାଏତ, ଢେର, ଢଙ୍ଗ, ଢିଲା, ଢେର, ତକଥ, ତକ୍ତା, ତେଲିବାଜ, ତୋଡ଼, ଦାବି, ଦେଣା, ଧକ୍କା, ଧୋକା, ନହବତ, ପଇସା, ପଏଠ, ପହୁଲା, ପଙ୍ଖା, ପଟୁ, ପାଉଣା, ପାଉଡ଼, ପତଅସ, ପରଗ୍, ନଗଦ, ବେକଡ଼, ଲୁଠ, ବକ୍ସି, ବାହାବା, ବଲବୁଲ, ମୁନିଆ, ହତିଆର, ହାଲୁଆ ॥

## ପର୍ତ୍ତୁଗୀଜ ଶବ୍ଦମୂଳକ ଶବ୍ଦମାଳା ।

ପାଦ୍ରି, ବେହେଲା, ବୋତଲ, ଅଲକାତରା, ବୋତାମ ବାଲ୍ତି, ପିସ୍ତଲ, ଗଣ୍ଡା, ବୋମ୍ବାଟିଆ, ମାସ୍ତୁଲ, ଅଲମାରି, ବରଗା, କସଣି, ନିଲାମ ।



## ବିଭିନ୍ନ ଭାଷାର ଶବ୍ଦ

ଇସ୍କୁଲ—School, ୱିଲ—Will, ଟିକସ—Tax, ଫାରମ—Firm, ନୋଟିସ—Notice, ପିଅନ—Peon, ଫୁଟ—Foot, ଇଞ୍ଚ—Inch, ଗାର୍ଡ—Guard, ଟିକଟ—Ticket, ମିନିଟ—Minute, କୋର୍ଟ—Court, ମାଷ୍ଟର—Master, ପୁଲିସ—Police, ଜେଲ୍—Jail, ୱାରଣ୍ଟ—Warrant, ବାକସ—Box, ରିପୋର୍ଟ—Report, ବୋର୍ଡିଙ୍ଗ—Boarding, ଟେବୁଲ—Table, ଡିଗ୍ରୀ—Degree, ଡିସମିସ—Dismiss, ଅଫିସ—Office, ଫୁଟବଲ—Foot ball, କଲେଜ—College, ଇନ୍ସପେକ୍ଟର—Inspector, ମାର୍କ—Mark, ରେଜିଷ୍ଟର—Register, କମ୍ପାନୀ—Company, ବିଲ—Bill, ଡାଇରି—Diary, କ୍ଲାସ—Class, ହାଣ୍ଡେଲ—Handle, ଲାଇନ—Line, ଲାଇସେନ—Licence, ରେଟ—Rate, ଡାକ୍ତର—Doctor, ଡବଲ—Double, ସମନ—Summon, ବଣ୍ଡିଲ—Bundle, ଟାଉନହଲ—Town-hall, ମ୍ୟୁନିସିପାଲିଟି—Municipality, ଡିପୋଜିଟ—Deposit, କେନାଲ—Canal, ଏକର—Acre, ସର୍କଲ—Circle, ଏରିଆ—Area, ଲେମ୍ପ—Lamp, ଇଷ୍ଟେସନ—Station, କୋଚମାନ—Coachman, କଣ୍ଟ୍ରାକ୍ଟର—Contractor, ଓଭରସିଅର—Overseer, ମେଜିଷ୍ଟ୍ରେଟ—Magistrate, କଲେକ୍ଟର—Collector, ସବ୍‌ରେଜିଷ୍ଟ୍ରାର—Sub-Register, ଡେପୁଟି—

Deputy, ବେରଙ୍ଗ-Bearing, ସୁପ୍ରେଣ୍ଟ—Superintendent, କଞ୍ଜିହାଉସ—Kine-house, ପରେଡ୍—Parade, ଷ୍ଟାମ୍ପ—Stamp, ଅର୍ଦ୍ଦଲି—Orderly, ହାସ୍‌ପାତାଲ—Hospital.



## ମୁକ୍ତେଶ୍ୱର

ଏହି ମନ୍ଦିରଟି ଭୁବନେଶ୍ୱର ମନ୍ଦିରର ଉତ୍ତରପୂର୍ବରେ ଅର୍ଦ୍ଧମାଇଲ ଦୂରରେ ଅବସ୍ଥିତ । ସ୍ଥାନଟି ପରମ ରମଣୀୟ । ସେଠାକୁ ଗଲେ ଫେରିଆସିବାକୁ ମନ ବଳେ ନାହିଁ । ଏହା ଶିବ ମନ୍ଦିର, ଓ ତାହା ଉପରେ ଏକଫୁଟ ଉଚ୍ଚର ଏକ ତ୍ରିଶୂଳ ଅଛି । ମନ୍ଦିରର ପ୍ରାଚୀର ଗାତ୍ରରେ ମର୍କଟ, ହସ୍ତୀ, ସିଂହ, କୁମ୍ଭୀର, ଅପ୍ସରା ପ୍ରଭୃତି ଖୋଦିତ । ଏମାନଙ୍କ କାରୁକାର୍ଯ୍ୟ ସୂକ୍ଷ୍ମ ଓ ସୁନ୍ଦର, ଦେଖିଲେ ଅଭିଶାପ ପାଇ ପଥର ପାଲଟି ଗଲା ପରି ଜଣା ପଡ଼େ । ମାନସାର ନିୟମାନୁସାରେ ମନ୍ଦିରଟି ନିର୍ମିତ । ମନ୍ଦିରର ଉପର ଭାଗରେ ଦୁଇଟି ରମଣୀ ଦିବ୍ୟ ବେଶରେ ବାଦ୍ୟଯନ୍ତ୍ର ବଜାଉଛନ୍ତି ଓ ସେମାନଙ୍କ ନିକଟରେ ତୋତା ପକ୍ଷୀମାନେ ବସିଛନ୍ତି । ସେମାନଙ୍କୁ ଦେଖିଲେ ଜଣାଯାଏ, ଯେବେ ବଜାଇ ଦିଅନ୍ତା ତେବେ ସେମାନେ ଦର୍ଶକଙ୍କୁ ସୁମଧୁର ସ୍ୱରରେ ମୋହିତ କରି ଦିଅନ୍ତେ । ମନ୍ଦିରର ଦକ୍ଷିଣରେ ଛାତ ଉପରେ ବଉଳଗଛର ମୂଳପାଖରେ ସପ୍ତର୍ଷିଙ୍କର ଛୋଟୋଟି ମୂର୍ତ୍ତି ଅଛି । ଏଠାରେ ଉତ୍କଳର ଶିଳ୍ପୀକୁଳ ଶିଳ୍ପ ଗୌରବର ଚରମୋତ୍କର୍ଷ ପ୍ରଦର୍ଶନ କରି ଯାଇଅଛନ୍ତି ।



## ଖିଚିଙ୍ଗ

'ଖିଚିଙ୍ଗ' ନାମ କାହାକୁ ଜଣା ନ ଥିଲା । ମୟୂରଭଞ୍ଜର ମହାରାଜାମାନେ ଉତ୍କଳର ଏହି ପ୍ରାଚୀନ ଗୌରବରତ୍ନକୁ ଉଦ୍ଧାର କରିଅଛନ୍ତି । ଏହା ମୟୂରଭଞ୍ଜରାଜ୍ୟର ପଶ୍ଚିମ ସୀମାରେ ବଇତରଣୀ ଓ କଣ୍ଟକଗ ନଦୀର ସଙ୍ଗମ ନିକଟରେ ଅବସ୍ଥିତ ଗୋଟିଏ କ୍ଷୁଦ୍ର ପଲ୍ଲୀ । ଜନଶ୍ରୁତି ଅଛି ଯେ, ଏଠାରେ ବିରାଟ ରାଜାଙ୍କର ଗଡ଼ ଥିଲା । ତାଙ୍କର ଶ୍ୟାଳକ ଓ ସେନାପତି କୀଚକର ବାହୁବଳ ଯୋଗୁ ସେ ନିଷ୍କଣ୍ଟକରେ ରାଜ୍ୟଭୋଗ କରୁଥିଲେ । 'କୀଚକ ବାହୁବଳେ ବିରାଟର ରାଜ୍ୟ' ଏ ପ୍ରବାଦ ଅଦ୍ୟାପି ପ୍ରଚଳିତ ଅଛି । ସେ ଯେଉଁଠାରେ ବାସ କରୁଥିଲେ ତାଙ୍କ ନାମାନୁସାରେ ସେ ସ୍ଥାନର ନାମ 'କୀଚକ ଗଡ଼' ହୋଇଥିଲା । କାଳକ୍ରମେ ସେହି 'କୀଚକ ଗଡ଼' 'ଖିଚିଙ୍ଗ' ରେ ପରିଣତ ହୋଇଥିବାର ଅନୁମିତ ହୁଏ । ଏଠାରେ ଦୁଇଟି ଗଡ଼ର ଓ ଅନେକ ମନ୍ଦିରର ଭଗ୍ନାବଶେଷ ରହିଅଛି । ଏ ଗ୍ରାମର ପ୍ରତିଷ୍ଠିତ ଦେବତା "ଖିଚିଙ୍ଗେଶ୍ୱରୀ" ( କୀଚକେଶ୍ୱରୀ ) ମୟୂରଭଞ୍ଜର ଅଧିଷ୍ଠାତ୍ରୀ ଦେବୀ ଅଟନ୍ତି । ଭୁବନେଶ୍ୱରର ସ୍ଥାପତ୍ୟ ଶିଳ୍ପ ଓ ଖିଚିଙ୍ଗର ସ୍ଥାପତ୍ୟ ଶିଳ୍ପ ମଧ୍ୟରେ ବିଶେଷ କିଛି ପ୍ରଭେଦ ନାହିଁ ସମ୍ଭବତଃ ଏଠା ମନ୍ଦିରମାନ ଦ୍ୱାଦଶ ଶତାବ୍ଦୀରେ ନିର୍ମିତ । ମନ୍ଦିର ଅଙ୍ଗର ଚିତ୍ରାବଳୀ ପ୍ରାଚୀନ ଉତ୍କଳୀୟମାନଙ୍କର ଅଳଙ୍କାର ବ୍ୟବହାରର ମୂକସାକ୍ଷୀ ଓ ଭୁବନେଶ୍ୱର ମନ୍ଦିରର ମୂର୍ତ୍ତିମାନଙ୍କ ସହିତ ପ୍ରାୟ ସମାନ । ପ୍ରଭେଦ ମଧ୍ୟରେ ଖିଚିଙ୍ଗ ମନ୍ଦିରମାନଙ୍କର ମୂର୍ତ୍ତିମାନ ଗଠନରେ ବରଂ ସୁନ୍ଦର ଓ ଜୀବନ୍ତ । ବଡ଼ମନ୍ଦିରର ପ୍ରଧାନ (niches) ଖୋପମାନଙ୍କରେ ଜୀବନ୍ତ ଶିବମୂର୍ତ୍ତି ଅଛନ୍ତି । ତାଙ୍କ ମୁଖ ଦେଖିଲେ ଜଣାଯାଏ ଯେପରି ସେ ହସୁଛନ୍ତି । ଏହାଙ୍କର ଉପର ଭାଗ ସୁଗଠିତ ଓ ନିମ୍ନାଂଶ ଅଯତ୍ନନିର୍ମିତ । ଭୁବନେଶ୍ୱରର କାର୍ତ୍ତିକ ମୂର୍ତ୍ତିର କାରୁକାର୍ଯ୍ୟ ଉତ୍କଳ ଶିଳ୍ପୀଙ୍କର ଶିଳ୍ପ ଗୁରୁତ୍ୱର ଜ୍ୱଳନ୍ତ ନିଦର୍ଶନ । ଖିଚିଙ୍ଗର ଶିବମୂର୍ତ୍ତିର ଶିଳ୍ପକୁଶଳତା ତାଠାରୁ ଅଧିକ ଜୀବନ୍ତ । ରଙ୍ଗଡ଼ାଳେମ୍ ଓ ଅକର୍ମିଶିଳା ଏହି ଦୁଇ ପ୍ରକାର ପ୍ରସ୍ତର ଭୁବନେଶ୍ୱର ମନ୍ଦିର ନିର୍ମାଣରେ ଯେପରି ବ୍ୟବହୃତ ହୋଇଅଛି, ଏଠା ମନ୍ଦିରରେ ମଧ୍ୟ ସେହିପରି, ମାତ୍ର ଉଭୟର ମୂର୍ତ୍ତିଗୁଡ଼ିକ ପ୍ରାୟ ମୁଗୁନି ପଥରରେ ନିର୍ମିତ । ଉଭୟ ମନ୍ଦିରର ନିର୍ମାଣ ସୌଷ୍ଠବ ନୟନମନପ୍ରୀତିକର ହେଲେହେଁ ବିଶାଳତାରେ ଭୁବନେଶ୍ୱର ମନ୍ଦିର ଏହାକୁ ପରାଜୟ କରିଅଛି । କାଳର ସର୍ବଧ୍ୱଂସୀ ପ୍ରଭାବରେ ଏହାର ଅଧୋଗତି ଘଟିଥିଲେହେଁ ଶିଳ୍ପନୈପୁଣ୍ୟ ଏକାବେଳକେ ବିଲୁପ୍ତ ହୋଇନାହିଁ ।



## ଉତ୍କଳ ସାହିତ୍ୟ ସମାଜ

୧୯୦୩ ଖ୍ରୀଷ୍ଟାବ୍ଦରେ ଉତ୍କଳ ସାହିତ୍ୟ ସମାଜ ପ୍ରଥମ ପ୍ରତିଷ୍ଠିତ ହେଲା । ମାନନୀୟ ସ୍ୱର୍ଗତ ମଧୁସୂଦନ ରାଓ ରାୟ ବାହାଦୁର ଏହାର ପ୍ରଧାନ ଉଦ୍‌ଯୋକ୍ତା ଥିଲେ । ପ୍ରଥମ ପ୍ରଥମ କଟକ ଟ୍ରେନିଂ ସ୍କୁଲରେହିଁ ଉତ୍କଳ ସାହିତ୍ୟ ସମାଜର ଅଧିବେଶନ ବସୁଥିଲା । ପରେ କାଳକ୍ରମେ ରାଜା ମହାରାଜାମାନଙ୍କ ସାହାଯ୍ୟରେ ଏବଂ ଶ୍ରୀଯୁକ୍ତ ଶଶିଭୂଷଣ ରାୟଙ୍କ ପ୍ରଚେଷ୍ଟାରେ ଉତ୍କଳ ସାହିତ୍ୟ ସମାଜର ସ୍ୱତନ୍ତ୍ର ଗୃହ ନିର୍ମିତ ହେଲା । ଏହା ବର୍ତ୍ତମାନ କଟକ ଟାଉନ ହଲ ନିକଟରେ ଅବସ୍ଥିତ । ଏହି ଦ୍ୱିତଳ ପ୍ରାସାଦରେ ଗୋଟିଏ ବକ୍ତୃତା ହଲ ଓ ଗୋଟିଏ ରଙ୍ଗମଞ୍ଚ ଅଛି । ଉପରେ ଗୋଟିଏ ପୁସ୍ତକାଗାର ଏବଂ ଗୋଟିଏ ପାଠାଗାର ଅଛି । ୧୯୩୪ ସାଲ ଜାନୁଆରୀ ମାସରୁ ସେଠାରେ ଉତ୍କଳ ସଙ୍ଗୀତ ସମାଜ ମଧ୍ୟ ଅନୁଷ୍ଠିତ ହୋଇଅଛି । ସେଥିରେ ଯନ୍ତ୍ର ଏବଂ ସ୍ୱର ସଙ୍ଗୀତ ଉଭୟ ଶିକ୍ଷା ଦିଆଯାଏ । ଏହାର ସମ୍ପାଦକ ଅଧ୍ୟାପକ ଶ୍ରୀଯୁକ୍ତ ଲକ୍ଷ୍ମୀକାନ୍ତ ଚୌଧୁରୀ ଏମ୍. ଏ, ବି. ଏଲ୍ ଏବଂ ସଭାପତି ଶ୍ରୀଯୁକ୍ତ ବ୍ରଜସୁନ୍ଦର ଦାସ ବି. ଏ. ଜମିଦାର । ଯେ କୌଣସି ବ୍ୟକ୍ତି ପାଞ୍ଚଟଙ୍କା ଦେଲେ ଏବଂ ଏହିପରି ଅନ୍ୟ କୌଣସି ଅନୁଷ୍ଠାନରେ ଯୋଗ ନ ଦେଲେ ଏହାର ଆଜୀବନ ସଭ୍ୟ ହୋଇ ପାରନ୍ତି ।

ଉତ୍କଳ ସାହିତ୍ୟ ସମାଜର ବର୍ତ୍ତମାନ ସଭ୍ୟ ସଂଖ୍ୟା ପ୍ରାୟ ୨୦୦ ଜଣ । ୨୧ ଜଣ ସଭ୍ୟଙ୍କ ଦ୍ୱାରା କାର୍ଯ୍ୟ ନିର୍ବାହକ ସମିତି ଗଠିତ ହୋଇଅଛି । ୧୯୩୪ ସାଲର ସଭାପତି ଅଧ୍ୟାପକ ଶ୍ରୀଯୁକ୍ତ ପ୍ରାଣକୃଷ୍ଣ ପରିଜା ଏମ୍. ଏ. ଆଇ. ଇ. ଏସ୍. ଏବଂ ସମ୍ପାଦକ ଶ୍ରୀଯୁକ୍ତ ଲକ୍ଷ୍ମୀନାରାୟଣ ସାହୁ ଏମ୍. ଏ. । ଉତ୍କଳ ସାହିତ୍ୟ ସମାଜର ଆଜୀବନ ସଭ୍ୟ ହେବାକୁ ହେଲେ ଏକକାଳୀନ ଅନ୍ୟୂନ ଟ ୪୦୲ ଙ୍କା ଦେବାକୁ ହୁଏ । ଏଥିରେ ସାହିତ୍ୟିକ ବିଷୟମାନ ଆଲୋଚିତ ହୋଇଥାଏ । ସାହିତ୍ୟର ଉନ୍ନତି ନିମନ୍ତେ ନାଟକ ଅଭିନୟର ସୁବିଧା ମଧ୍ୟ ମଧ୍ୟେ ମଧ୍ୟେ କରା ହୁଏ । ଏହି ଅନୁଷ୍ଠାନ ବିଂଶବର୍ଷ ଅତିକ୍ରମ କରି ଏକବିଂଶ ବର୍ଷରେ ପଦାର୍ପଣ କରିଅଛି । ଉତ୍କଳର ସ୍ଥାନେ ସ୍ଥାନେ ଏହାର ଶାଖାମାନ ପ୍ରତିଷ୍ଠିତ ହେବା ବାଞ୍ଛନୀୟ ।



## ଉତ୍କଳ ସାହିତ୍ୟ ସମାଜ ଗୃହର ବିବରଣ

ଗୃହର ଲମ୍ବ ( ପୂର୍ବ ପଶ୍ଚିମରେ ) ୬୫ ଫୁଟ, ଚଉଡ଼ା ( ଉତ୍ତର ଦକ୍ଷିଣରେ ) ୫୫ ଫୁଟ, ଉଚ୍ଚତା (ଚନ୍ଦ୍ରଶାଳା ସହିତ) ୩୧ ଫୁଟ । "ଶ୍ରୀ ରାମଚନ୍ଦ୍ର ଭବନ" ବା Hall ଲମ୍ବ ୫୧ ଫୁଟ ଚଉଡ଼ା ୨୪ ଫୁଟ । ଏହି ପ୍ରକୋଷ୍ଠର ପଶ୍ଚିମ ପଟରେ ୧୨ ଫୁଟ ଚଉଡ଼ାର ଗୋଟିଏ ମଞ୍ଚ ରହିଅଛି । ତଳ ମହଲାରେ ଥିବା ଦକ୍ଷିଣ ଓ ଉତ୍ତର ଦିଗରେ ଦିଓଟି କୋଠରୀ ପ୍ରତ୍ୟେକ ୧୨ଫୁଟ ୩ ଇଞ୍ଚ ଦୀର୍ଘ ୧୦ ଫୁଟ ୩ ଇଞ୍ଚ ପ୍ରସ୍ଥ; ଉପରେ ମଧ୍ୟ ଏହିପରି ଦିଓଟି କୋଠରୀ ଅଛି । ଉପର ମହଲାରେ ପୂର୍ବ ଦିଗରେ ଖୋଲା ଘର ଲମ୍ବ ୨୬ ଫୁଟ; ପ୍ରସ୍ଥ ୧୪ ଫୁଟ ୬ ଇଞ୍ଚ । ଉପର ମହଲାରେ ଦକ୍ଷିଣ ଓ ଉତ୍ତର ଦିଗରେ ଥିବା ଭିତର ବାରନ୍ଦାର ଲମ୍ବ ୩୫ ଫୁଟ ପ୍ରସ୍ଥ ୪ ଫୁଟ ୮ ଇଞ୍ଚ । ଉପର ମହଲାରେ ଦୁଇ କୋଠରୀର ମଧ୍ୟବର୍ତ୍ତୀ ଖୋଲାସ୍ଥାନ ଲମ୍ବ ୨୪ ଫୁଟ ପ୍ରସ୍ଥ ୧୨ ଫୁଟ, ଗୃହର ତଳ ମହଲାରେ "ଶ୍ରୀ ରାମଚନ୍ଦ୍ର ଭବନ"ର ପୂର୍ବ, ଦକ୍ଷିଣ, ଉତ୍ତର ତିନି ଦିଗରେ ପ୍ରଶସ୍ତ ବାରନ୍ଦାମାନ ରହିଅଛି ।

## ଆୟର ତଫସିଲ

| | |
|---|---|
| ଶ୍ରୀ ଶ୍ରୀ ରାଜାସାହେବ, ଅଳି | ଟ ୩୦୦୦୲ |
| ଶ୍ରୀ ଶ୍ରୀ ମହାରାଜା ସାହେବ, ମୟୂରଭଞ୍ଜ ( ଦୁଇଦଫାରେ ) | ଟ ୧୩୦୦୦୲ |
| ଶ୍ରୀ ଶ୍ରୀ ମହେନ୍ଦ୍ର ମହାରାଜ ଏମାରମଠ, ପୁରୀ | ଟ ୫୦୦୲ |
| ଶ୍ରୀ ଶ୍ରୀ ରାଜାସାହେବ, ସୁକିନ୍ଦା | ଟ ୧୫୦୲ |
| ଉତ୍କଳ ସାହିତ୍ୟ ସମାଜର ବିଶେଷ ପାଣ୍ଠିରୁ ଧାର | ଟ ୬୨୭୮୷୩ |
| ,, ,, ସାଧାରଣ ,, ,, | ଟ ୩୮୫୭୪୫ |
| ମୋଟ | ଟ ୨୩୮୦୮୷୬୫ |

## ବ୍ୟୟର ତଫସିଲ

| | |
|---|---|
| ୧—ଇଟା ଟାଇଲ | ଟ ୨୮୨୮୭୷୩ |
| ୨—ଚୂନ, ଗୋଡ଼, ସିମେଣ୍ଟ | ଟ ୩୮୦୬୫ |
| ୩—କବାଟ, ଚଉକାଠ, ବରଗା ଓ ଅନ୍ୟାନ୍ୟ ଲୁହାରକାମ | ଟ ୨୩୩୨୫୬ |
| ୪—ରଙ୍ଗ, କଲିଚୂନ | ଟ ୬୦୪।୯ |

| | |
|---|---|
| ୫—ଲୁହାକାଠ, ଛାଲ ଓ ଅନ୍ୟାନ୍ୟ ଲୁହାରକାମ | ଟ ୨୧୬୭ ୳ |
| ୬—ସମସ୍ତ ପ୍ରକାର ମଞ୍ଜୁସ | ଟ ୧୦୮୦୨ ୳୷/୨୳ |
| ୭—ଛବି ବା ଫଟୋଗ୍ରାଫ୍ | ଟ ୨୦୦ ୧ |
| ୮—ବିବିଧ | ଟ ୧୫୮୲/ ୭ |

## ସତ୍ୟବାଦୀ ଉଚ୍ଚ ଇଂରାଜୀସ୍କୁଲ

ଶ୍ରୀକ୍ଷେତ୍ରର ଦକ୍ଷିଣପୂର୍ବ କୋଣ ଦୂରରେ ସତ୍ୟବାଦୀ ଅବସ୍ଥିତ । ଏ ସ୍ଥାନଟି ନାରିକେଳ, ବକୁଳ, କୁରଅଳା, ଆମ୍ର ଏବଂ ତମାଳ ପାଦପରେ ପରିପୂର୍ଣ୍ଣ । ଏଠାକାର ଦୃଶ୍ୟ ଯେପରି ମନମୁଗ୍ଧକର ଜଳବାୟୁ ତଦ୍ରୂପ ସ୍ୱାସ୍ଥ୍ୟକର ।

ସ୍ୱର୍ଗତ ପଣ୍ଡିତ ଗୋପବନ୍ଧୁଦାସ ଓ ଅନ୍ୟ କେତେକ କର୍ମିଙ୍କ ଉଦ୍‌ଯୋଗରେ ଏହି ମନୋରମ ସ୍ଥାନରେ ତା ୧୨।୮।୧୯୧୧ ମସିହାରେ ୧୯ ଜଣ ଛାତ୍ରଙ୍କୁ ନେଇ ଏକ ମଧ୍ୟ ଇଂରାଜୀ ବିଦ୍ୟାଳୟ ସ୍ଥାପିତ ହୋଇଥିଲା । ଶ୍ରୀଯୁକ୍ତ ନୀଳକଣ୍ଠ ଦାସ, ଶ୍ରୀଯୁକ୍ତ ଗୋଦାବରୀଶ ମିଶ୍ର, ଶ୍ରୀଯୁକ୍ତ ଆଚାର୍ଯ୍ୟ ହରିହର ଦାସ, ଶ୍ରୀଯୁକ୍ତ ବାସୁଦେବ ମହାପାତ୍ର, ଶ୍ରୀଯୁକ୍ତ ନନ୍ଦକିଶୋର ଦାସ ଓ ସ୍ୱର୍ଗତ କୃପାସିନ୍ଧୁ ମିଶ୍ର କ୍ରମେ କ୍ରମେ ଏ ସ୍କୁଲର ଶିକ୍ଷକତା କରିଥିଲେ । ସମସ୍ତ ଶ୍ରେଣୀ ଖୋଲା ଯିବାପରେ ତା୨୫।୧୧।୧୪ ରେ ଏହି ବିଦ୍ୟାଳୟ କଲିକତା ବିଶ୍ୱ ବିଦ୍ୟାଳୟର ଅଧୀନରେ ରହିଲା । ମୁକ୍ତ ଆକାଶତଳେ ଶିକ୍ଷାଦାନ କରାଯିବାର ଅଭିଳାଷ ଥିଲେହେଁ ପ୍ରଚଣ୍ଡ ରୌଦ୍ର ଓ ବୃଷ୍ଟିପାତରୁ ରକ୍ଷାପାଇଁ ପ୍ରଥମେ ଏକ ଚାଳଘର ନିର୍ମିତ ହୋଇଥିଲା । କେତେକ ହିଂସକ ତାହାକୁ ପୋଡ଼ିଦେବାରୁ ପୁଣି ଏକ ପକ୍କାଘର ତିଆରି କରାଗଲା । ସେତେବେଳକୁ ସ୍କୁଲର ସୁଖ୍ୟାତି ଚାରିଆଡ଼େ ବ୍ୟାପି ଯାଇଥିଲା ଏବଂ ଛାତ୍ରସଂଖ୍ୟା କ୍ରମେ ବହୁତ ବଢ଼ି ଯାଇଥିଲା ।

ଅନନ୍ତ ନୀଳିମାମୟ ଗଗନତଳେ ସୁବାସିତ ମନୋହର ବକୁଳ ଉଦ୍ୟାନରେ ଶାନ୍ତିଦାୟିନୀ ଛାୟାରେ ଛାତ୍ରମାନଙ୍କୁ ଶିକ୍ଷା ଦିଆଗଲା । ଲୋକେ ଘରର ଯେପରି ମଫିଣାରେ ବସନ୍ତି ଛାତ୍ରମାନେ ଏଠାରେ ସେହିପରି ମଫିଣାରେ ବସି ଅଧ୍ୟୟନ କଲେ । ବହିପତ୍ର ରଖିବାପାଇଁ ସେମାନଙ୍କ ସମ୍ମୁଖରେ ଡେ଼ସ୍କ ଦିଆ ଯାଇଥିଲା । ଗ୍ରୀଷ୍ମକାଳରେ ଦୁଇବେଳ ଓ ଅନ୍ୟାନ୍ୟ ଋତୁରେ ପ୍ରଚଳିତ ସ୍କୁଲ ନିୟମରେ କାର୍ଯ୍ୟ ନିର୍ବାହିତ ହେଉଥିଲା । ବିଦ୍ୟାଧ୍ୟୟନ ସହିତ ବ୍ୟାୟାମ ଓ ଅନ୍ୟାନ୍ୟ ଜୀବନୋପଯୋଗୀ କାର୍ଯ୍ୟମାନ ଯଥା—ବଢ଼େଇକାମ, ମାଳୀକାମ, ଗୃହୀକାମ, ତନ୍ତକାମ ଆଦି ଶିକ୍ଷା ଦିଆଯାଉଥିଲା । ତା ୨୭।୪।୧୭ ରେ ଲାଟ୍‌ସାହେବ Sir Edward Gait ମହୋଦୟଙ୍କୁ ଯେଉଁ ଚନ୍ଦନକାଷ୍ଠ ନିର୍ମିତ ସରୁଆଟି ଉପହାର ସ୍ୱରୂପ ପ୍ରଦତ୍ତ ହୋଇଥିଲା ତାହା ଛାତ୍ରମାନଙ୍କ ନିର୍ମିତ । ଏତଦ୍‌ବ୍ୟତୀତ ସ୍କୁଲର ଯାବତୀୟ ଉପକରଣ ଯଥା—ଚୌକି, ବେଞ୍ଚ, ଟେବୁଲ ପ୍ରଭୃତି ଛାତ୍ରମାନେ ନିର୍ମାଣ କରିଥିଲେ । ସ୍କୁଲ କାର୍ଯ୍ୟ ମଧ୍ୟରେ ଲୋକସେବା ପ୍ରଧାନ କାର୍ଯ୍ୟ ଥିଲା । ଏ ପବିତ୍ର କାର୍ଯ୍ୟରେ ଶିକ୍ଷକମାନେ ଆଦର୍ଶ ହୋଇ ଛାତ୍ରମାନଙ୍କୁ ଶିକ୍ଷା ଦେଉଥିଲେ । ଏଣୁ ଛାତ୍ରମାନଙ୍କର ପରୋପକାର କରିବାକୁ ମନ ସ୍ୱତଃ ଧାବିତ ହେଉଥିଲା । ଛାତ୍ରମାନେ ନିଜ ନିଜର କୋଠରୀ ନିଜେ ନିଜେ ପରିଷ୍କାର କରୁଥିଲେ । ଛାତ୍ରାବାସରେ ଅନେକ ଛାତ୍ର ଥିଲେ । ୧୯୧୮ ମସିହାରେ ମୋଟ ଛାତ୍ର ସଂଖ୍ୟା ୩୬୦ ମଧ୍ୟରୁ ୨୪୧ ଜଣ ଛାତ୍ରାବାସରେ ରହିଥିଲେ । ତଥାପି ଖାଦ୍ୟାଦିରେ କାହାର କିଛି ଅସୁବିଧା ହେଉ ନ ଥିଲା । ଛାତ୍ରମାନଙ୍କ ମଧ୍ୟରୁ କେହି ବେମାର ପଡ଼ିଲେ ଛାତ୍ରମାନେ ପାଳିକରି ତାଙ୍କର ସେବା ଶୁଶ୍ରୂଷା କରୁଥିଲେ । ୧୯୧୭।୧୮ ସାଲରେ ସ୍କୁଲରେ ଗୋଟିଏ ବ୍ୟାଙ୍କ ଖୋଲି ଶିକ୍ଷକ, ଛାତ୍ର ଏବଂ ଅନ୍ୟାନ୍ୟ ବିଶିଷ୍ଟ ଭଦ୍ରଲୋକମାନେ ତହିଁରେ ଟଙ୍କା ଜମା ଦେଇ ସେଥିର ମେମ୍ବର ହେଲେ । ସେହି ପାଣ୍ଠିରେ ଗୋଟିଏ ବଡ଼ ଦୋକାନ ଚଳିଲା । ସେଥିରୁ ଯାହା ଲାଭ ମିଳୁଥିଲା ତାହା ଅଂଶୀଦାରମାନେ ପାଉଥିଲେ ଏବଂ କେତେକ ଭଲ ଭଲ କାର୍ଯ୍ୟରେ ଖରଚ ହେଉଥିଲା । ସ୍କୁଲ ପକ୍ଷରୁ 'ସତ୍ୟବାଦୀ' ଓ 'ବାଣୀ' ନାମରେ ଦୁଇଟି ପତ୍ରିକା ବାହାରି ସାହିତ୍ୟର ବିଶେଷ ଉନ୍ନତି କରିଥିଲା । ବାଳକମାନେ ପ୍ରବନ୍ଧ ଓ ପଦ୍ୟ ଲେଖିବାପାଇଁ ସମର୍ଥ ହୋଇ ପାରୁଥିଲେ । ସେମାନଙ୍କ ମଧ୍ୟରେ ଶ୍ଳୋକାନ୍ତ ହେଉଥିବାରୁ ସେମାନଙ୍କର ଉତ୍ସାହ ବଢ଼ୁଥିଲା ଓ ବହୁତ ଶ୍ଳୋକ ମୁଖସ୍ଥ କରୁଥିଲେ । ସ୍କୁଲରେ (୧) The young men's association (୨) The Historical Society and (୩) The Kulasammilani ନାମରେ ତିନୋଟି ସଭା ଥିଲା । ସେଥିରେ ଶିକ୍ଷକ ତଥା ଛାତ୍ରମାନେ ନାନାବିଷୟ ଆଲୋଚନା କରୁଥିଲେ । ଏଥିରେ ବକ୍ତୃତା ଦେବାର ଶକ୍ତି ବଢ଼ୁଥିଲା ।

ଛାତ୍ରମାନେ ପ୍ରଦର୍ଶିତ ନିର୍ଦ୍ଦିଷ୍ଟ ପନ୍ଥାନୁସାରେ କାର୍ଯ୍ୟ କରି-ବାରେ ଅଭ୍ୟସ୍ତ ହୋଇ ସମ୍ପୂର୍ଣ୍ଣ ସଦ୍ ବ୍ୟବହାର କରୁଥିଲେ । ପୁଣି ମନପରିବର୍ତ୍ତନ ଓ ପ୍ରକୃତ ଶାସ୍ତ୍ର ଆଲୋଚନା ନିମିତ୍ତ ଶିକ୍ଷକ ମାନେ ଛାତ୍ରମାନଙ୍କୁ ଖଣ୍ଡଗିରି, କୋଣାର୍କ, ଭୁବନେଶ୍ୱର ପ୍ରଭୃତି ରମଣୀୟ ସ୍ଥାନମାନଙ୍କୁ ନେଇଯାଉଥିଲେ । ସେଥିରେ ଓଡ଼ିଶାର ଅତୀତ ଛବି ସହିତ ବର୍ତ୍ତମାନ ଛବିର ତୁଳନା ଓ ପ୍ରକୃତିରୁ ଅବସ୍ଥାର ସହିତ ଅବାଧରେ ଭ୍ରମଣ କରି ଛାତ୍ର-ମାନଙ୍କ ଶାରୀରିକ ତଥା ମାନସିକ ଶକ୍ତି ପୁଷ୍ଟ ହେଉଥିଲା ।

ତା ୨୨।୩।୧୨ ଘରପୋଡ଼ିରେ ସ୍କୁଲର ପୁସ୍ତକାଳୟ ପୋଡ଼ି-ଯାଇ ସ୍କୁଲର ଟ ୫୦୦୦ ନଷ୍ଟ ହୋଇଥିଲା । ପରେ ଯେଉଁ ଲାଇବ୍ରେରୀ ହେଲା ସେଥିରେ ୨୩୮ ଖଣ୍ଡ ପୁସ୍ତକ ସଂଗୃହୀତ ହୋଇଥିଲା । ସେଥିର ଅନୁମାନିକ ମୂଲ୍ୟ ଟ ୨୦୦୦ ରୁ ନ୍ୟୂନ ନୁହେ ।

୧୯୨୦ ମସିହାରେ ଏହି ବିଦ୍ୟାଳୟ ଜାତୀୟ ବିଦ୍ୟା-ଳୟରେ ପରିଣତ ହେଲା । ତେତେବେଳେ କୃପାସିନ୍ଧୁ ବାବୁ ହେଡ଼ମାଷ୍ଟରଥିଲେ ଓ ପାଟନା ବିଶ୍ୱବିଦ୍ୟାଳୟ ସହିତ ଏହାର କୌଣସି ସମ୍ବନ୍ଧ ରହିଲା ନାହିଁ । ୨।୩ ବର୍ଷ ପରେ ଛାତ୍ରମାନେ କ୍ରମେ ସ୍କୁଲ ପରିତ୍ୟାଗ କଲେ । ଏହା ଦେଖି ନୀଳକଣ୍ଠବାବୁ ପ୍ରଭୃତି ତାହାକୁ ପୁଣି ସରକାରୀସ୍କୁଲ କରିବାକୁ ଇଚ୍ଛା ପ୍ରକାଶ କରିବାରୁ ଗୋପବନ୍ଧୁବାବୁ ସ୍କୁଲର ସମ୍ପାଦକତ୍ୱ ତ୍ୟାଗ କଲେ । ୧୯୨୨ ମସିହାରେ ନୀଳକଣ୍ଠ ବାବୁଙ୍କ ଯତ୍ନରେ ତାହା ମାଇନର ସ୍କୁଲରୂପେ ମଞ୍ଜୁର ହୋଇଅଛି । ଏବେ ଏହି ବିଦ୍ୟାଳୟର କର୍ମକର୍ତ୍ତାମାନେ ଏହାକୁ କଲେଜରେ ପରିଣତ କରିବା ପାଇଁ ବହୁ ଅର୍ଥ ସଞ୍ଚୟ କରିଥିଲେ, ମାତ୍ର ଭାରତର ଜାତୀୟ ଆନ୍ଦୋଳନର ସୂତ୍ରପାତ ହେବାରୁ ସେହି ପ୍ରସ୍ତାବ କାର୍ଯ୍ୟରେ ପରିଣତ ହୋଇ ପାରିଲା ନାହିଁ ।

ଯେଉଁ ବିଦ୍ୟାଳୟର ଶିକ୍ଷା ଓ ପରିଚାଳନା ପ୍ରଣାଳୀ ଦେଖି ସାର ଆଶୁତୋଷ ଓ Sir Edward Gait ଅଶାତିରିକ୍ତ ପ୍ରଶଂସା କରିଥିଲେ ଏବଂ ଉତ୍କଳବାସୀ ଆଶା କରିଥିଲେ ଯେ ଦିନେ ଏହା ଭାରତର ମୁଖ ଉଜ୍ଜ୍ୱଳ କରିବ, ତାହାର ବର୍ତ୍ତମାନ ଅବସ୍ଥା ଦେଖିଲେ କାହାର ହୃଦୟ ନ କାନ୍ଦିବ । ବିଶ୍ୱନିୟନ୍ତା କି ଉଦ୍ଦେଶ୍ୟରେ ଏ ପବିତ୍ର ଅନୁଷ୍ଠାନଟିକୁ ଉତ୍କଳଠାରୁ ଛଡ଼ାଇ ନେଇଛନ୍ତି, ତାହା ସେ ଜାଣନ୍ତି । ତାଙ୍କର ଏ ଭଙ୍ଗା ଗଢ଼ା ଗୀତ ବୁଝିବା ମନୁଷ୍ୟର ଅସାଧ୍ୟ । ସତ୍ୟବାଦୀ ସ୍କୁଲ ଓଡ଼ିଶାର କାହିଁ କି ଭାରତରେ ଆଦର୍ଶ ସ୍କୁଲ । ଏହା ଉତ୍କଳକୁ ନବ ଜାଗରଣ ଆଣି ଦେଇଛି । ଉତ୍କଳବାସୀ ତାହା ନିକଟରେ ଚିର ଋଣୀ ।

## କଳିଙ୍ଗ ବ୍ୟାୟାମ ବିଦ୍ୟାଳୟ

ଓଡ଼ିଶାରେ ବ୍ୟାୟାମଚର୍ଚ୍ଚାପାଇଁ ଏହା ଏକମାତ୍ର ଅନୁଷ୍ଠାନ । ୧୯୩୨ ଖ୍ରୀଷ୍ଟାବ୍ଦରେ ଏହା କଟକ ନଗରସ୍ଥ ନିମଚଉଡ଼ି ଟଲରେ ସ୍ଥାପିତ ହୋଇ ଅଦ୍ୟ ପର୍ଯ୍ୟନ୍ତ ଚଳିଆସୁଅଛି । ଉତ୍କଳ-ଭୀମ ଶ୍ରୀଯୁକ୍ତ ପଦ୍ମଚରଣ ରାୟ ଏହାର ପ୍ରତିଷ୍ଠାତା । ପ୍ରଥମରୁ ଶ୍ରୀଯୁକ୍ତ ଭୂସ୍ୱାମୀ ଭୁବନେଶ୍ୱର ଚନ୍ଦ୍ର ମହାପାତ୍ର ରାୟବାହାଦୁର ଏହି ଅନୁଷ୍ଠାନପାଇଁ ଜିନିଷ କିଣିବାକୁ ଟ ୧୦୦୦୲ ଙ୍କା ଦାନ କରିଛନ୍ତି । ବର୍ତ୍ତମାନ ଅନୁଷ୍ଠାନରେ ୨୫୦ ଜଣ ଛାତ୍ର ବ୍ୟାୟାମ କରନ୍ତି । ମାଂସପେଶୀ ଗ୍ଳନ ସ୍ୱଦେଶ ଓ ଯୌଗିକ ଆସନ ପଟୁ ଶ୍ରୀମାନ୍ ବଳରାମ ମହାନ୍ତି ପଦ୍ମଚରଣ ବାବୁଙ୍କ ଅନୁପସ୍ଥିତିରେ କାମ ଚଳାନ୍ତି । ସେ ଏହାର କପ୍ତାନ (Captan) । ସେଠାରେ ନିମ୍ନଲିଖିତ ବ୍ୟାୟାମ କରାଯାଏ ।

୧—ବାହୁଦଣ୍ଡ—(ଓଡ଼ିଶାର ପ୍ରାଚୀନ ବ୍ୟାୟାମ)

୨—ଲଠିଖେଳ—(୧୦୦ ପ୍ରକାର) ଉତ୍କଳ ଭୀମ ଶ୍ରୀଯୁକ୍ତ ପଦ୍ମଚରଣଙ୍କ ନୂତନ ଆବିଷ୍କୃତ ।

୩—୮୪ ପ୍ରକାର ଯୌଗିକ ଆସନ ପ୍ରଣାଳୀ ।

୪—ମୁଦ୍ଗର ଘୂର୍ଣ୍ଣନ (୨୦ ସେର, ୧୫ ସେର, ୧୦ ସେର, ୫ ସେର, ୨½ ସେର ।)

୫—କୁସ୍ତି, ବକ୍ସିଙ୍ଗ ।

୬—୨୦ ପ୍ରକାର ଦଣ୍ଡ, ୧୫ ପ୍ରକାର ବୈଠକ, ଶରୀର ବଙ୍କା (Body bending) ଦୌଡ଼ (Running)

୭—ଡମ୍ବେଲ (ସ୍ୟାଣ୍ଡୋଙ୍କ ଆବିଷ୍କୃତ ପ୍ରଣାଳୀ) ।

୮—ବରବେଲ (,, ,, ,,)

୯—(Chest expander, Developer.)

୧୦—ମାଲିସ୍ (massaging) ହୋଇବାରୁ ପକ୍ଷାଘାତ କୋଷ୍ଠ ବଦ୍ଧତା, ବହୁ ମୂତ୍ର, ଅମାଶୟ ଇତ୍ୟାଦି ରୋଗ ଆରୋଗ୍ୟ ହୁଏ ।

୧୧—ବାର (Parallel bar) ପ୍ରଭୃତି ।

# ଗଡ଼ଜାତ ରାଜାଙ୍କ ନାମ, ଜନସଂଖ୍ୟା ଓ ଆୟ ପ୍ରଭୃତି ।

| ମିଶ୍ରର ନାମ | ରାଜା ଓ ରାଜାଙ୍କ ବଂଶଙ୍କ ନାମ | ସିଂହାସନ ଆରୋହଣ କାଳ | ଲୋକସଂଖ୍ୟା | ଆୟ |
|---|---|---|---|---|
| ଆଠଗଡ଼ | ଶ୍ରୀ ଶ୍ରୀ ରାଜା ଶ୍ରୀକରଣ— ରାଧାନାଥ ବେବର୍ତ୍ତା ପଟ୍ଟନାୟକ | ୧୯୧୮ | ୫୦୧୪୮ | ଟ ୧,୭୧,୦୦୦ |
| ତାଳଚେର | ଶ୍ରୀ ଶ୍ରୀ ରାଜା କିଶୋରଚନ୍ଦ୍ର ବୀରବର ହରିଚନ୍ଦନ | ୧୮୯୧ | ୬୧୭୦୨ | ଟ ୨,୭୮,୦୦୦ |
| ମୟୂରଭଞ୍ଜ | ଶ୍ରୀ ଶ୍ରୀ ମହାରାଜା ପ୍ରତାପଚନ୍ଦ୍ର ଭଞ୍ଜ ଦେଓ | ୧୯୨୩ | ୮୮୯୬୦୩ | ଟ ୨୬,୩୨,୦୦୦ |
| ନୀଳଗିରି | ଶ୍ରୀ ଶ୍ରୀ ରାଜା କିଶୋରଚନ୍ଦ୍ର ମର୍ଦ୍ଦରାଜ ହରିଚନ୍ଦନ | ୧୯୧୩ | ୬୮୫୯୪ | ଟ ୩,୫୪,୦୦୦ |
| କେନ୍ଦୁଝର | ଶ୍ରୀ ଶ୍ରୀ ମହାରାଜା ବଳଭଦ୍ର ନାରାୟଣ ଭଞ୍ଜ ଦେଓ | ୧୯୨୬ | ୪୬୦୬୦୯ | ଟ ୯,୪୨,୦୦୦ |
| ପାଲଲହଡ଼ା | ଶ୍ରୀ ଶ୍ରୀ ରାଜା ମୁନିପାଲ | ୧୯୧୨ | ୨୨୯୭ | ଟ ୮୦,୦୦୦ |
| ଢେଙ୍କାନାଳ | ଶ୍ରୀ ଶ୍ରୀ ଶଙ୍କର ପ୍ରତାପ ମହେନ୍ଦ୍ର ବାହାଦୁର | ୧୯୧୮ | ୨୮୪୩୨୬ | ଟ ୫,୦୦,୦୦୦ |
| ଆଠମଲ୍ଲିକ | ଶ୍ରୀ ଶ୍ରୀ ରାଜା କିଶୋରଚନ୍ଦ୍ର ଦେଓ ସାମନ୍ତ | ୧୯୧୮ | ୬୪୨୨୨ | ଟ ୨,୦୦,୦୦୦ |
| ହିନ୍ଦୋଳ | ଶ୍ରୀ ଶ୍ରୀ ରାଜା ବାହାଦୁର ନବକିଶୋର ଚନ୍ଦ୍ର ମର୍ଦ୍ଦରାଜ ଜଗଦେବ | ୧୯୦୬ | ୪୮୮୯୬ | ଟ ୧,୨୨,୦୦୦ |
| ନରସିଂହପୁର | ଶ୍ରୀ ଶ୍ରୀ ରାଜା ଅନନ୍ତ ନାରାୟଣ ମାନସିଂହ ହରିଚନ୍ଦନ ମହାପାତ୍ର | ୧୯୨୧ | ୪୦୮୭୮ | ଟ ୧,୧୬,୦୦୦ |
| ବଡ଼ମ୍ବା | ଶ୍ରୀ ଶ୍ରୀ ରାଜା ନାରାୟଣଚନ୍ଦ୍ର ବୀରବର ମଙ୍ଗରାଜ ମହାପାତ୍ର | ୧୯୨୨ | ୪୬୬୮୮ | ଟ ୧,୦୮,୦୦୦ |
| ତିଗିରିଆ | ଶ୍ରୀ ଶ୍ରୀ ରାଜା ବନମାଳୀ କ୍ଷତ୍ରିୟ ବୀରବର ଚମ୍ପତିସିଂହ ମହାପାତ୍ର | ୧୮୮୬ | ୨୪୮୮୨୨ | ଟ ୩୨,୦୦୦ |
| ଖଣ୍ଡପଡ଼ା | ଶ୍ରୀ ଶ୍ରୀ ରାଜା ହରିହର ସିଂହ ମର୍ଦ୍ଦରାଜ ଭ୍ରମରବର ରାୟ | ୧୯୨୨ | ୬୬୯୨୯ | ଟ ୧,୩୫,୦୦୦ |
| ନୟାଗଡ଼ | ଶ୍ରୀ ଶ୍ରୀ ରାଜା କିଶୋରଚନ୍ଦ୍ର ସିଂହ ମାନଧାତା | ୧୯୧୮ | ୧୪୨୪୦୬ | ଟ ୩,୫୪, ୦୦ |
| ରଣପୁର | ଶ୍ରୀ ଶ୍ରୀ ରାଜା ବୀରବର କୃଷ୍ଣଚନ୍ଦ୍ର ସିଂହ ବଜ୍ରଧର ନରେନ୍ଦ୍ର ମହାପାତ୍ର | ୧୮୯୯ | ୪୭୬୧୧ | ଟ ୬୬,୦୦୦ |
| ଦଶପଲ୍ଲା | ଶ୍ରୀ ଶ୍ରୀ ରାଜା କିଶୋରଚନ୍ଦ୍ର ଦେବ ଭଞ୍ଜ | ୧୯୧୩ | ୪୩୪୦୨ | ଟ ୧,୫୮,୧୦୯ |
| ବୌଦ୍ଧ | ଶ୍ରୀ ଶ୍ରୀ ରାଜା ନାରାୟଣ ପ୍ରସାଦ ଦେଓ | ୧୯୧୩ | ୧୩୫୨୪୮ | ଟ ୨,୮୨,୦୦୦ |
| ବାମଣ୍ଡା | ଶ୍ରୀ ଶ୍ରୀ ରାଜା ଭାନୁଗଙ୍ଗ ତ୍ରିଭୁବନ ଦେବ | ୧୯୨୦ | ୧୫୧୦୪୭ | ଟ ୫,୯୧,୦୦୦ |
| ରେଢ଼ାଖୋଲ | ଶ୍ରୀ ଶ୍ରୀ ରାଜା ବୀରଚନ୍ଦ୍ର ଯଦୁମଣି ଦେଓ | ୧୯୦୬ | ୩୫୬୧୦ | ଟ ୮୬,୦୦୦ |
| ସୋନପୁର | ଶ୍ରୀ ଶ୍ରୀ ମହାରାଜା ସାର୍ ବୀରମିତ୍ର ସିଂହ ଦେଓ K. C. I. E. | ୧୯୦୨ | ୨୩୭୯୨୦ | ଟ ୩,୭୫,୦୦୦ |
| ପାଟନା | ଶ୍ରୀ ଶ୍ରୀ ମହାରାଜା ରାଜେନ୍ଦ୍ର ନାରାୟଣ ସିଂହଦେଓ | ୧୯୨୪ | ୫୬୭୧୨୪ | ଟ ୮,୫୫,୦୦୦ |
| କଳାହାଣ୍ଡି | ଶ୍ରୀ ଶ୍ରୀ ମହାରାଜା ବ୍ରଜମୋହନ ଦେଓ O. B. E | ୧୮୯୭ | ୫୧୩୭୧୭ | ଟ ୭,୩୨,୦୦୦ |
| ଗାଙ୍ଗପୁର | ଶ୍ରୀ ଶ୍ରୀ ରାଜା ବୀରମିତ୍ର ପ୍ରତାପ ଶେଖର ଦେଓ | ୧୯୩୦ | ୩୫୬୭୨୪ | ଟ ୫,୧୧,୦୦୦ |
| ବଣାଇ | ଶ୍ରୀ ଶ୍ରୀ ରାଜା ଚନ୍ଦ୍ର ଦେଓ | ୧୯୦୨ | ୮୦୧୮୬ | ଟ ୨,୩୬,୦୦୦ |
| ଖରସୂଆଁ | ଶ୍ରୀ ଶ୍ରୀ ରାଜା ରାମଚନ୍ଦ୍ର ସିଂହ ଦେଓ | ୧୯୦୨ | ୪୩୦୯୬ | ଟ ୧,୧୮,୧୫୯ |
| ସରାଇକଳା | ଶ୍ରୀ ଶ୍ରୀ ରାଜା ଆଦିତ୍ୟପ୍ରତାପ ସିଂହ ଦେଓ | ୧୮୮୩ | ୧୪୩୫୨୫ | ଟ ୩,୮୫,୦୩୧ |

**ବିପଦ ଏକାକୀ ନ ଆସେ କେବେ । ସଙ୍ଗେ ଘେନି ଆସେ ବନ୍ଧୁବାନ୍ଧବେ ।**

ସମସ୍ତ ଓଡ଼ିଶା ଓ ଗଡ଼ଜାତମାନଙ୍କ କ୍ଷେତ୍ରଫଳ ଅଠେଇଶ ହଜାର ବସ୍ତିଶ ବର୍ଗମାଇଲ । ଏଥିରେ ୧୮୨୦୭ ଗୋଟି ଗ୍ରାମ ଅବସ୍ଥିତ । ଏହି ଗଡ଼ଜାତମାନଙ୍କ ଗୃହସଂଖ୍ୟା ୧୧୬୭୦୨ । ସେଥିମଧ୍ୟରୁ ୧୦୨୨୨ ଗୋଟି ସହରରେ ଏବଂ ୧୦୩୮୮୦ ଗୋଟି ଗ୍ରାମରେ ଅବସ୍ଥିତ । ସମସ୍ତ ଗଡ଼ଜାତର ଲୋକସଂଖ୍ୟା ୪୪୨୬୩୮୫ । ସେଥି ମଧ୍ୟରୁ ସହରରେ ୪୫୨୧୫ ଏବଂ ଗ୍ରାମମାନଙ୍କରେ ୪୩୧୬୭୦ ଜଣ ବାସ କରନ୍ତି ।



# ପୁରୀ ମଠ

ସାମ୍ୟ ମହିମାର ଲୀଳାସ୍ଥଳ ପୁରୁଷୋତ୍ତମ କ୍ଷେତ୍ର ଆର୍ଯ୍ୟାବର୍ତ୍ତ ଖଣ୍ଡର ସମସ୍ତ ତୀର୍ଥର ମୁକୁଟ ସ୍ୱରୂପ ଅଟେ । ଉକ୍ତ ଅଛି :—"ସକଳ ତୀର୍ଥ ତୋ ଚରଣେ । ବନ୍ଦିବା ଯିବ କି କାରଣେ ।" ଏହିପରି ଧର୍ମସ୍ଥଳରେ ମଠମାନଙ୍କ ଉତ୍ପତ୍ତି ବହୁ କାଳରୁ ହୋଇଅଛି । ବୌଦ୍ଧ ଯୁଗର "ବିହାର" ମାନଙ୍କ ଅନୁକରଣରେ ପୁରୀରେ ନାନା ସମ୍ପ୍ରଦାୟର ମଠ ସ୍ଥାପିତ ହୋଇଥିଲା । ଶ୍ରୀ ଶ୍ରୀ ଜଗନ୍ନାଥ ମନ୍ଦିର ପ୍ରତିଷ୍ଠାର ବହୁଦିନ ପୂର୍ବରୁ ମଧ୍ୟ କେତେକ ମଠ ପୁରୀରେ ଥିବାର ଜଣାଯାଏ । ପ୍ରଥମେ ଆଚାର୍ଯ୍ୟମାନେ ବିଭିନ୍ନ ସମ୍ପ୍ରଦାୟ ବା Section ସୃଷ୍ଟିକରି ତାହାର କେନ୍ଦ୍ର ସ୍ୱରୂପ ନାନା ତୀର୍ଥରେ ବିଶେଷତଃ ପୁରୀରେ ସ୍ଥାପନ କରିଥିଲେ । ରାମାନୁଜାଚାର୍ଯ୍ୟ ରାମାନୁଜ ସମ୍ପ୍ରଦାୟର ସର୍ଜନା କରି ରାମାନୁଜ କୋଟ ପ୍ରଭୃତି ଏବଂ ତଦୀୟ ଶିଷ୍ୟବୃନ୍ଦ ତହିଁ ସମ୍ପ୍ରଦାୟର ମଠ ସବୁ ସ୍ଥାପନ କଲେ । ଶ୍ରୀ ଶଙ୍କରାଚାର୍ଯ୍ୟ ଗୋବର୍ଦ୍ଧନ ପୀଠ ନାମକରଣ କରି ନିଜର ଗୋଟିଏ ମଠ ସ୍ଥାପନ କଲେ । ସେହିପରି ଶ୍ରୀ ରାମାନନ୍ଦାଚାର୍ଯ୍ୟ, କବିର, ନାନକ ଓ ଚୈତନ୍ୟ ପ୍ରଭୃତି ସେମାନଙ୍କର ଶିଷ୍ୟ ଓ ଉପଶିଷ୍ୟମାନେ ନାନା ମଠ ସ୍ଥାପନ କଲେ । ଏହିପରି ସବୁ ସମ୍ପ୍ରଦାୟର ମଠ ପୂର୍ଣ୍ଣ ବ୍ରହ୍ମଚର୍ଯ୍ୟ ପାଳନ କରି ଦେବସେବା ଲୋକସେବା, ଧର୍ମ ରକ୍ଷା ଓ ଧର୍ମ ସମ୍ବନ୍ଧୀୟ ଆଲୋଚନାରେ ରତ ହେଲା । ଏହିପରି ଦେଖିବାକୁ ଗଲେ ପୁରୀରେ ଯେତେ ମଠ ଅଛି ସେତେ ମଠ ଭାରତର କୌଣସି ଧର୍ମ ସ୍ଥାନରେ ନାହିଁ ।

କିଂବଦନ୍ତୀ ଅଛି ଯେ ପୁରୀରେ "ସାତ ଶ ବାଉନ ମଠ" କିନ୍ତୁ ଏ ଉକ୍ତି ନିତାନ୍ତ ଅମୂଳକ । ପ୍ରକୃତରେ କହିବାକୁ ଗଲେ ମଠ ବହୁଳତା ହେତୁରୁ ଲୋକେ ସାତସାଠି ଏବଂ ବାଉନ ମଠକୁ ଉପର୍ଯ୍ୟୁକ୍ତ ଉକ୍ତିରେ ପରିଣତ କରିଅଛନ୍ତି । ପ୍ରକୃତରେ ବାଉନ ମଠରୁ ଆଉ ଅଧିକ ମଠ ନାହିଁ । ଯାହା ବା ଅଛି ସେ ସବୁ ଅଳ୍ପ ଧନର ଏବଂ ନଗଣ୍ୟ ।

ଆଜି କାଲି ଲୋକେ ଚଟା କାଟି ମାଟି ରଖି ଠାକୁର ମୂର୍ତ୍ତିଏ ରଖି ଯଦି ଗୋଟିଏ ମଠର ଉତ୍ପତ୍ତି କରନ୍ତି ତେବେ ଆମ୍ଭେମାନେ କହିବାକୁ ନାଚାର ଯେ ପୁରୀରେ ଏଭଳି ମଠ ପ୍ରାୟ ଦୁଇ ତିନି ଶତ ହେବ ।

ନିମ୍ନରେ ସେହି ବାଉନ ମଠ ବିଭିନ୍ନ ସମ୍ପ୍ରଦାୟ ଅନୁସାରେ ବିଭକ୍ତ ହୋଇ ସେମାନଙ୍କର ସଂକ୍ଷିପ୍ତ ଇତିହାସ ଓ କିଂବଦନ୍ତୀ ବର୍ଣ୍ଣିତ ହେଲା ।—

## ୧—ରାମାନୁଜ ସଂପ୍ରଦାୟ

### ୧—ରାଜଗୋପାଳ ମଠ—( ଏମାର )

ଆଜି ଏ ମଠ ଧନରେ, ଦାନରେ, କୀର୍ତ୍ତିରେ ଭାରତର ବିଶିଷ୍ଟ ମଠ ମଧ୍ୟରୁ ଅନ୍ୟତମ । ପ୍ରଥମେ ରାମାନୁଜାଚାର୍ଯ୍ୟଙ୍କ ସମୟରେ ସମୁଦ୍ର ତୀରରେ ରାମାନୁଜ କୋଟ ସ୍ଥାପିତ ହୁଏ । ତତ୍ପରେ ଶ୍ରୀନିବାସାଚାର୍ଯ୍ୟ ଜଗନ୍ନାଥ ମନ୍ଦିର ନିକଟରେ ଶ୍ରୀନିବାସ କୋଟ ସ୍ଥାପନ କରନ୍ତି । କାଳକ୍ରମେ ସେହି ମଠର ମହନ୍ତ ଶ୍ରୀରାଜଗୋପାଳାଚାର୍ଯ୍ୟଙ୍କ ନାମାନୁସାରେ ଏମାରମଠ ସ୍ଥାପିତ ହୁଏ । ଏହାର ଆୟ ବାର୍ଷିକ ଅଢ଼େଇ ଲକ୍ଷ । ପ୍ରତିଦିନ ତିନିଶତ ପରଦେଶୀ, ବ୍ରାହ୍ମଣ ଓ କାଙ୍ଗାଳଙ୍କୁ ଯଥାକ୍ରମେ ଅର୍ଥ, ତଣ୍ଡୁଳ ଓ ମହାପ୍ରସାଦ ବିତରିତ ହୁଏ । ମହନ୍ତ ଗଦାଧର ରାମାନୁଜ ଦାସ ବର୍ତ୍ତମାନ ମଠର ମାଲିକ । ସେ କାଉନ୍‌ସିଲର ମେମ୍ବର ଏବଂ କଇଜର-ଇ-ହିନ୍ଦ ଉପାଧି ଭୂଷିତ । ସାଧାରଣ ପୁସ୍ତକାଗାର, ବିଦ୍ୟାଳୟ, ଦାତବ୍ୟ ଚିକିତ୍ସାଳୟ ପ୍ରଭୃତି ମଠ ଗୁରୁସଂଶ୍ଲିଷ୍ଟ ମଠ ଅର୍ଥରେ ଶୋଭା ପାଏ ।

### ୨—ଶ୍ରୀ ରାମଦାସ ମଠ ।

ଏହା ଶ୍ରୀମନ୍ଦିରର ଦକ୍ଷିଣ ପାର୍ଶ୍ୱରେ ଥିବାରୁ ଏହାକୁ ଦକ୍ଷିଣପାର୍ଶ୍ୱ ମଠ କହନ୍ତି । ମଠର ଆୟ ଖୁବ୍ ବେଶି । ମଠରେ

ଛୁଇଁଯୋଡ଼ା ହାତ ଥିବାର କିଂବଦନ୍ତୀ ଅଛି । ରାମାନୁଜଙ୍କର ଶିଷ୍ୟ ଶ୍ରୀ ରାମଦାସ ମଠର ସ୍ଥାପନକର୍ତ୍ତା । ଏହା ଏ ସମ୍ପ୍ରଦାୟର ବଡ଼ ମଠ ବୋଲି ବିଖ୍ୟାତ । ମହନ୍ତ ପୁରାତନ ରକ୍ଷଣଶୀଳ । ଏ ପର୍ଯ୍ୟନ୍ତ ମଠରେ କନା ଛତା ଏବଂ କିରାସିନ ତେଲ ପଶିବା ପଶି ନାହିଁ ।

### ୩—ଉତ୍ତରପାର୍ଶ୍ୱ ମଠ ।

ଶ୍ରୀ ଜଗନ୍ନାଥ ମନ୍ଦିରର ଉତ୍ତର ପାର୍ଶ୍ୱରେ ଅବସ୍ଥିତ । ଜଣେ ଜୋବ୍ରପୁରୀ ବ୍ରାହ୍ମଣ ବୈଷ୍ଣବ ହୋଇ ଏ ମଠ ସ୍ଥାପନ କରିଥିଲେ ।

### ୪—ପଞ୍ଜାବୀ ମଠ ।

ଏହା ଜଣେ ପଞ୍ଜାବୀଙ୍କ ଦ୍ୱାରା ସ୍ଥାପିତ । ପଞ୍ଜାବୀ ବୈଷ୍ଣବମାନଙ୍କର ଧର୍ମସ୍ଥାନ ଅଟେ ।

### ୫—ସମାଧି ମଠ ।

ମଠର ଆୟ ବେଶି କିନ୍ତୁ ମଠ ବିଖ୍ୟାତ ନୁହେଁ ।

### ୬—ଶ୍ରୀ ରାଘବଦାସ ମଠ ।

ଧନରେ ଏମାର ଏବଂ ଶ୍ରୀ ରାମଦାସ ମଠର ତଳକୁ । ମହନ୍ତ ଶ୍ରୀ ରାଘବଦାସ ମଠର ସ୍ଥାପୟିତା । ବର୍ତ୍ତମାନ ମହନ୍ତ ନାବାଳକ, ମଠ ପଞ୍ଚାୟତଙ୍କ ଅଧୀନରେ ।

### ୭—କୌଶଲ୍ୟାଦାସ ମଠ ।

ଝିବାହ କରି ଜଣେ ବାବାଜି ପୁତ୍ର—କନ୍ୟା ନ ହେବାରୁ ପ୍ରତିଜ୍ଞା କରିଥିଲେ ଯେ 'ମୋର ପୁଅ ହେଲେ ମୁଁ ତାକୁ ବାବାଜୀ କରାଇବି' । ସେହି ଅନୁସାରେ ପୁଅ ହେବା ପରେ ସେ ବହୁ ଧନ ସମ୍ପତ୍ତି ଓ ଜମି ବାଡ଼ି ଖଞ୍ଜି ପୁଅକୁ ମଠର ମାଲିକ କରିଥିଲେ । ଏହାହିଁ କିଂବଦନ୍ତୀ ।

### ୮—ନରସିଂହ ଆଚାରୀ ମଠ ।

ଏ ଜଣେ ମାନ୍ଦ୍ରାଜୀ ବୈଷ୍ଣବ । ଶୁଦ୍ଧ ବୈଷ୍ଣବ ମଧ୍ୟରୁ ଏକତମ । ତାହାଙ୍କର ନାମାନୁସାରେ ମଠର ଉତ୍ପତ୍ତି । କାଳିକାଦେବୀ ସାହିରେ ମଠ ଅବସ୍ଥିତ । ମହନ୍ତ ସଂସ୍କୃତଜ୍ଞ ।

### ୯—ଭେଙ୍କଟ ଆଚାରୀ ମଠ ।

ଦ୍ରାବିଡ଼ ଦେଶୀୟ ରାମତୀର୍ଥ ନାମକ ସ୍ଥାନର ମହନ୍ତ ଶ୍ରୀ ବେଙ୍କଟ ସ୍ୱାମୀ ଏହି ମଠ ସ୍ଥାପନ କରିଥିଲେ । ଏହା ଶୁଦ୍ଧ ମଠ । ଦୁର୍ଭିକ୍ଷ ପାଇଁ ପ୍ରସିଦ୍ଧ "ତହର ମୌଜା" ଏ ମଠର ଜମିଦାରୀ । ମହନ୍ତ ମାନ୍ଦ୍ରାଜରେ ଥାଆନ୍ତି ।

### ୧୦—ସାନ ଝାଡ଼ୁ ମଠ । ୧୧—ବଡ଼ ଝାଡ଼ୁ ମଠ ।

ଏ ମଠ ଦ୍ୱୟ ପୁରୀ ମହାରାଜାଙ୍କ ଦ୍ୱାରା ସ୍ଥାପିତ । ଏ ମଠର ଶ୍ରୀ ଜଗନ୍ନାଥ ମନ୍ଦିରରେ ପ୍ରତିଦିନ ଝାଡ଼ୁ ସେବା ଅଛି ।

### ୧୨—ହରିମାଳୀ ମଠ ।

### ୧୩—ଗିରିସ୍ୱାମୀ ମଠ ।



## ୨—ରାମାନନ୍ଦ ସଂପ୍ରଦାୟ ।

### ୧—ବଡ଼ ଆଖଡ଼ା ମଠ । ୨—ସାନ ଆଖଡ଼ା ମଠ ।

୩—ନେବଲ ଦାସ ମଠ । ଅଗ୍ରୁର୍ଯ୍ୟ ନେବଲ ଦାସଙ୍କ ସ୍ଥାପିତ । ଲୋକେ ଆଜକାଲି ତାହାକୁ ନେଉଳ ଦାସ ମଠ ବୋଲି କହନ୍ତି ।

### ୪—ସିଦ୍ଧ ମଠ । ୫—ମଲ୍ଲିକ ଚୌରା ମଠ ।

### ୬—ପାପଡ଼ିଆ ମଠ ।

ପାପଡ଼ିଆ ମଠରେ ଭାରତ ବିଖ୍ୟାତ ନାଗା ସମ୍ପ୍ରଦାୟୀ ଜଗନ୍ନାଥ ଦାସ ମହନ୍ତ ଥିଲେ । ଏ ମହାତ୍ମା ଜାତିରେ ଓଡ଼ିଆ ବ୍ରାହ୍ମଣ । ନାଗା ସମ୍ପ୍ରଦାୟ ତାଙ୍କୁ ନେତା ବୋଲି ମାନି ନେଇଥିଲେ । ୪ ହଜାର ପର୍ଯ୍ୟନ୍ତ ନାଗା ତାହାଙ୍କର ଶିଷ୍ୟ ହୋଇଥିଲେ । ସେ ତ୍ୟାଗୀ ବୀର ଥିଲେ । ବୋମ୍ବାଇ ସରକାର ତାଙ୍କ ପ୍ରତି ଲୋକଙ୍କର ବିଶେଷତଃ ଉଦ୍ଧତ ନାଗା ସମ୍ପ୍ରଦାୟର ପ୍ରଗାଢ଼ ଭକ୍ତି ଦେଖି ଭୀତ ହୋଇ ବୋମ୍ବାଇ—ପ୍ରବେଶ—ନିଷେଧାଜ୍ଞା ଜାରି କରିଥିଲେ । ଏ ମହାତ୍ମା ମୃତ ।

### ୭—ବଡ଼ ଛତା ମଠ । ୮—ସାନ ଛତା ମଠ ।

### ୯—ଲବଣ ଖିଆ ମଠ ।

ଏ ମଠ ଜଗନ୍ନାଥ ଦେବଙ୍କ ସେବା ପାଇଁ ଲବଣ ଯୋଗାଏ ।

### ୧୦—ବ୍ରଜମଣି ମଠ ।

ଖଣ୍ଡପୁର ରାଜବଂଶଙ୍କ ଦ୍ୱାରା ସ୍ଥାପିତ ।



ବଡ଼ଗଣ ନୁହେ ଘର ଶାସନ । କ୍ଷମାଦାନ ଏକା ଅଟଇ ସେ ଧନ ॥

## ୩—ନାନକପନ୍ଥୀ ।

### ୧—ବାଉଲି ମଠ ।

ପଞ୍ଜାବୀ ଶିଖମାନଙ୍କର ଧର୍ମ ସ୍ଥାନ । ପ୍ରତିଦିନ ଶତ୨ ଶିଖ ଏଠାକୁ ଆସିଥାଆନ୍ତି ।

### ୧—କବିରଦାସ ମଠ ।

ଯାତ୍ରୀମାନେ ଏଠାରେ କାଞ୍ଜିପାଣି ଖାଇ ଥାଆନ୍ତି । ଏହା ବୈଷ୍ଣବୀ ମଠ ଅଟେ ।

## ୪—ଶ୍ରୀ ଶଙ୍କର ସଂପ୍ରଦାୟ ।

### ବ୍ରହ୍ମଚାରୀ, ଦଣ୍ଡୀ ଓ ସନ୍ନ୍ୟାସୀ ମଠ ।

୧—ହିନ୍ଦୁ ଧର୍ମର ରକ୍ଷକ ଶଙ୍କରାଚାର୍ଯ୍ୟଙ୍କ ଗୁରୁପୀଠ ମଧ୍ୟରୁ ଗୋବର୍ଦ୍ଧନ ପୀଠ ଏବଂ ତାହାଙ୍କ ଶିଷ୍ୟ ବର୍ଗଙ୍କର ମଠ ସବୁ ଅବସ୍ଥିତ ।

(୧)—ଶଙ୍କରାଚାର୍ଯ୍ୟ ମଠ । (୨)—ଶଙ୍କରାନନ୍ଦ ମଠ ।
(୩)—ଶିବ ତୀର୍ଥ ମଠ । (୪)—ଗୋପାଳ ତୀର୍ଥ ମଠ ।
(୫)—ମସ୍କ ପ୍ରକାଶ ମଠ ।

## ୬—ଗାଣପତ୍ୟ ଓ ନଗଲୀ ସଂପ୍ରଦାୟ ।

ଏ ସମ୍ପ୍ରଦାୟର ୩ ଗୋଟି ମଠ ଅଛି । ଏମାନେ ଶୈବ କିମ୍ବା ଶାକ୍ତ ନୁହନ୍ତି—ଜାତିଭେଦ ନାହିଁ—ଗଣପତି ଉପାସନା କରନ୍ତି ।

### ୧—ନଙ୍ଗୁଳି ମଠ । ୨—ମଙ୍ଗୁ ମଠ ।

ଏହିପରି ମୋଟରେ ୬ ଗୋଟି ସମ୍ପ୍ରଦାୟର ୩୨ ଗୋଟି ମଠ ହେଲା । ବାକୀ ଚୈତନ୍ୟ ସମ୍ପ୍ରଦାୟର ୨୦ ଗୋଟି ମଠ ବିଦ୍ୟମାନ । ଏମାନେ ଗୌଡ଼ୀୟ ବୈଷ୍ଣବ—ରାଧାକୃଷ୍ଣ ଯୁଗଳ ଉପାସକ । ଏ ସବୁ ମଧ୍ୟରୁ ଅନେକ ମଠ ରାଜାମାନଙ୍କ ସ୍ଥାପିତ ଓ ଅବଶିଷ୍ଟ କେତେକ ବୈଷ୍ଣବମାନଙ୍କ ସ୍ଥାପିତ ।

## ୧—ରାଜାମାନଙ୍କ ସ୍ଥାପିତ ।

### ୧—ଜୟପୁର ମଠ ।

ଜୟପୁର ମହାରାଜାଙ୍କ ସ୍ଥାପିତ ବାଲିସାହିରେ ଅବସ୍ଥିତ । ( ବୈଷ୍ଣବ ମଠ ) ।

### ୨—ଚିକିଟି ମଠ ।

ଗଞ୍ଜାମର ଚିକିଟିରାଜାଙ୍କ ସ୍ଥାପିତ । ମହନ୍ତ ସୁଶିକ୍ଷିତ ନୁହନ୍ତି ।

### (୩) ବଡ଼ ତଳେଲା ମଠ । (୪) ସାନ ତଳେଲା ମଠ ।

ଏ ଦୁଇମଠ ତଳେଲା ରାଜାଙ୍କ ସ୍ଥାପିତ ।

### ୪—ଚନ୍ଦ୍ରଜ୍ୟୋତି ମଠ ।

କେଉଁଝର ମହାରାଜାଙ୍କ ସ୍ଥାପିତ ଓ ବଡ଼ଦାଣ୍ଡରେ ଅବସ୍ଥିତ ।

### ୫—ନୂଆ ଚୌଧୁରୀ ମଠ ।

ବଙ୍ଗଳାର ଜନୈକ ଜମିଦାର ଶ୍ରୀଯୁକ୍ତ ନନେ ଚୌଧୁରୀଙ୍କ ସ୍ଥାପିତ ।

### ୬—ଦେଉଳା ମଠ ।

କେନ୍ଦ୍ରାପଡ଼ାର ସ୍ୱନାମଧନ୍ୟ ଜମିଦାର ସ୍ୱର୍ଗତ ରାଧାଶ୍ୟାମ ନରେନ୍ଦ୍ରଙ୍କ ସ୍ଥାପିତ । ବର୍ତ୍ତମାନ ଜେଲ୍ ବୋର୍ଡ଼ଙ୍କର କର୍ତ୍ତୃ ମଠର ଶୃଙ୍ଖଳା ପର୍ଯ୍ୟବେକ୍ଷଣ କରନ୍ତି ।

### ୭—ଓଡ଼ିଆ ମଠ ।

ଅତିବଡ଼, ଓଡ଼ିଆ ଭାଗବତ ରଚୟିତା ପରମପଦ ଶ୍ରୀ ଜଗନ୍ନାଥ ଦାସଙ୍କ ସ୍ଥାପିତ ମଠ । ଓଡ଼ିଶାର ସାମନ୍ତମାନଙ୍କ ସ୍ୱକୀୟ ସମ୍ପତ୍ତିର ଆୟରୁ ଏ ମଠ ସାହାଯ୍ୟ ପ୍ରାପ୍ତ ହୁଏ ।

### ୮—ରାଧାବଲ୍ଲଭ ମଠ ।

ମହନ୍ତ ରାଧାବଲ୍ଲଭ ଦାସଙ୍କ ସ୍ଥାପିତ ଓ ଶ୍ରୀ ଶ୍ରୀ ଜଗନ୍ନାଥ ମନ୍ଦିର ସମ୍ମୁଖରେ ଅବସ୍ଥିତ ।

### ୯—ହରିଦାସ ସମାଧି ।

ହରିଦାସଙ୍କ ସମାଧି ସ୍ଥଳ ।

### ୧୦—ଜଟିଆ ବାବାଙ୍କ ମଠ ।

ବଙ୍ଗଳାର ମହାତ୍ମା ଶ୍ରୀ ବିଜୟକୃଷ୍ଣ ଗୋସ୍ୱାମୀଙ୍କ ସମାଧି-ସ୍ଥଳ । ପ୍ରସିଦ୍ଧ ନରେନ୍ଦ୍ର ସରୋବରର ଈଶାନକୋଣରେ ଅବସ୍ଥିତ । ବିଜୟକୃଷ୍ଣ ଗୋସ୍ୱାମୀ କେତେକ ଦିନ ପାଇଁ ବ୍ରାହ୍ମଧର୍ମ ଗ୍ରହଣ କରିଥିଲେ । ତେଣୁ ବ୍ରାହ୍ମମାନେ ମଧ୍ୟ ଏ ମଠକୁ ଭକ୍ତି କରନ୍ତି ।

### ୧୧—ସାତଲହରୀ ମଠ ।

ଓଡ଼ିଆ ଭାଗବତ ରଚୟିତା ଭକ୍ତକବି ଜଗନ୍ନାଥ ଦାସଙ୍କ ସମାଧି ସ୍ଥଳ । ସମୁଦ୍ରତୀରରେ ଅବସ୍ଥିତ ।

୧୨—ସାନ ଓଡ଼ିଆ ମଠ ।

୯ ଜଣ ମଠର ଜଣେକ ବୈଷ୍ଣବଙ୍କ ସ୍ଥାପିତ ବୈଷ୍ଣବ ମଠ ।

୧୩—ଜଗନ୍ନାଥ ବଲ୍ଲଭ ମଠ ।

ଏ ମଠ ଶ୍ରୀ ଜଗନ୍ନାଥ ଦେବଙ୍କ ସେବାପାଇଁ ବସ୍ତ୍ର ଯୋଗାଏ । ମଠ ବର୍ତ୍ତମାନ ରାଜସାହେବଙ୍କ ଅଧୀନସ୍ଥ କମିଟି ପରିଚାଳନାରେ ଅଛି ।

୧୪—ଇନ୍ଦ୍ରଦ୍ୟୁମ୍ନ ମଠ । ୧୫—ନାଗା ମଠ ।

ହରଚଣ୍ଡୀ ସାହିରେ ଅବସ୍ଥିତ ।

୧୬—ନୂଆମଠ । ଗୁନ୍ଦିମଠ ।

୧୭—ଗଙ୍ଗାମାତା ମଠ ।

ବାଲିସାହିରେ ଅବସ୍ଥିତ । ଅଜନ୍ମ ବ୍ରହ୍ମଚାରିଣୀ ଗଙ୍ଗାମ ନିବାସିନୀ ଗଙ୍ଗାନାମ୍ନୀ ମାତାଙ୍କର ସ୍ଥାପିତ ମଠ । ଗଙ୍ଗା ସ୍ୱର୍ଗ ବଳରେ ଓ ଯୋଗଦ୍ୱାରା ଶ୍ୱେତ ଗଙ୍ଗାରେ ବୁଡ଼ି ଗଙ୍ଗାରେ ସ୍ନାନକରି ଏକଦିନ ମଧ୍ୟରେ ଫେରିବାର କିଂବଦନ୍ତୀ ଅଛି ।

୧୮—ସିଦ୍ଧବକୁଳ ମଠ ।

ଏହାର ଇତିହାସ ଭାରତ ପ୍ରସିଦ୍ଧ ବକୁଳ ବୃକ୍ଷପାଇଁ ବିଖ୍ୟାତ । ଯବନଭକ୍ତ ହରିଦାସ ଠାକୁର ପ୍ରତିଦିନ ୩ ଲକ୍ଷ ନାମ ବର୍ତ୍ତମାନ ମଠାବସ୍ଥିତ କଣ୍ଟକମୟ ବାଲୁକାରେ ଜପ କରୁଥିଲେ । ଦିନେ ଶ୍ରୀ ଚୈତନ୍ୟଦେବ ହରିଦାସଙ୍କୁ ପ୍ରଚଣ୍ଡ ରୌଦ୍ରରେ ତପସ୍ୟା କରୁଥିବାର ଦେଖି କହିଲେ "ହରିଦାସ, ମୁଁ ତୁମ୍ଭଙ୍କୁ ଛାୟାଦାନ କରିବି," । ହରିଦାସ ଉତ୍ତର କଲେ, "ପ୍ରଭୁ, ଅଣେକ ପଦଛାୟାହିଁ ଏକମାତ୍ର ଛାୟା" । ତଦ୍ଧରେ ଚୈତନ୍ୟ ଦେବ ଦନ୍ତ ମାର୍ଜନ କରି ଦାନ୍ତକାଠିର ଏକ ଖଣ୍ଡ ପୋତି ଦେଲେ । ସେହି ବକୁଳ ଦାନ୍ତକାଠି ଅଳ୍ପ ଦିନ ମଧ୍ୟରେ ମହାବୃକ୍ଷରେ ପରିଣତ ହେଲା ଏବଂ କେତେକ ଦିନ ପରେ ହରିଦାସଠାକୁର ସେହି ବୃକ୍ଷ ମୂଳରେହିଁ ନିଜର ଇହଲୀଳା ସାଙ୍ଗ କଲେ । କାଳକ୍ରମେ ମହନ୍ତ ଭଗବାନଦାସଙ୍କ ସମୟରେ ରଥଯାତ୍ରା ବେଳେ ଥରେ ରଥର ଚକ ବଡ଼ ଦାଣ୍ଡରେ ଭାଙ୍ଗି-ପଡ଼ିଲା । ଅକ୍ଷ ପାଇଁ ରାଜାଙ୍କ ଲୋକେ ରାଜାଙ୍କ ଅନୁମତି ଅନୁସାରେ ଏହି ଗଛ କାଟି ଆଣିବା ପାଇଁ ଗଲେ । କିନ୍ତୁ ସନ୍ଧ୍ୟାରେ ଗଛ କାଟିବାକୁ ନିଷେଧ କରି ମହନ୍ତ ତହିଁ ଆରଦିନ କାଟିନେବାକୁ କହିଲେ । ସେ ଦିନ ସନ୍ଧ୍ୟାରେ ଆରତି ସମୟରେ ମହନ୍ତ ଗଛଙ୍କୁ ପୂଜାକରି କହିଲେ "ହେ ବୃକ୍ଷରାଜ, ତୋର ମହିମା ତୁ ରଖ" । ତହିଁ ଆରଦିନ ସନ୍ଧ୍ୟାରେ ରାଜ-କର୍ମଚାରୀବୃନ୍ଦ ଯାଇ ଦେଖନ୍ତି ଯେ ବାଇଶହାତ ପରିମିତ ପ୍ରକାଣ୍ଡ ବୃକ୍ଷ ମଧ୍ୟରେ ଶୂନ୍ୟନାହିଁ, ବଲ୍କଳରେ ବୃକ୍ଷ ଅବସ୍ଥିତ ଏବଂ ବୃକ୍ଷଟି ନାନାଭାବରେ ବକ୍ର ହୋଇ ଅକର୍ମଣ୍ୟ ହୋଇଅଛି । ସେହି ଦିନରୁ ଏ ବୃକ୍ଷର ନାମ 'ସିଦ୍ଧବକୁଳ' ହେଲା ।

୧୯—ରାଧାକାନ୍ତ ମଠ ।

ରାଜଗୁରୁ ଶ୍ରୀଯୁକ୍ତ କାଶୀମିଶ୍ରଙ୍କର ଗୃହ । ବର୍ତ୍ତମାନ ତାଙ୍କର ବଂଶଧର ଜୟକୃଷ୍ଣ ରାଜଗୁରୁ ମଠ ନିକଟରେ ରହି ଅଛନ୍ତି । ଚୈତନ୍ୟ ଦେବ ଏହି ମଠରେ ନିଜର ଜୀବନ-ଲୀଳା ଦେଖାଇଥିଲେ । ବର୍ତ୍ତମାନ ସୁଦ୍ଧା ଏ ମଠରେ ଚୈତନ୍ୟଦେବଙ୍କ କନ୍ଥା କମଣ୍ଡଳୁ ସବୁ ସୁରକ୍ଷିତ ଅଛି ।

---

## ଛଉ ନାଚ ( Dumb dance )

ଛଉନାଚ ଓଡ଼ିଶାର ଗର୍ବ ଓ ଗୌରବର ଶଣ୍ଡିଧନ । ଏପରି ସୁକୁମାର କାନ୍ତକଳା ପ୍ରାୟ ଅନ୍ୟତ୍ର ନାହିଁ । ଶୁଣାଯାଏ, ଜାଭାଦ୍ୱୀପରେ ଏହି ନୃତ୍ୟ ଅଛି । ଯେତେବେଳେ ଉତ୍କଳ ସ୍ୱାଧୀନ ଥିଲା, ଏଠା ବଣିକମାନେ ସେଠାରେ ଉପନିବେଶ ସ୍ଥାପନ କରିଥିଲେ । ସ୍ମାରକ-ଚିହ୍ନ ସ୍ୱରୂପ ତାହା ସେଠାରେ ଅଛି । ଦକ୍ଷିଣରେ ଏହିପ୍ରକାର ନୃତ୍ୟ ଅଛି । ମାତ୍ର ଉତ୍କଳର ଛଉନାଚଠାରୁ ତାହା ଉତ୍କୃଷ୍ଟତର । ସମ୍ଭବତଃ ଯେତେବେଳେ ଓଡ଼ିଶାର ସୀମା ହିମାଳୟ ପାଦଦେଶରୁ ପାନ୍ଥାର ଉପସାଗର ପର୍ଯ୍ୟନ୍ତ ବିସ୍ତୃତ ଥିଲା, ତେତେବେଳେ ଉତ୍କଳବାସୀ ସେ ପ୍ରଦେଶରେ ଥାଇ ତାହାକୁ ରଖିଛନ୍ତି । ନିୟମିତ ଅନୁଶୀଳନ ହେତୁ ତାହାର ଉତ୍ତରୋତ୍ତର ଉନ୍ନତି ହୋଇଅଛି ବା ସେହି-ପରି ରହିଅଛି । କିନ୍ତୁ, ଓଡ଼ିଶା ଦୁର୍ଭାଗ୍ୟର କଶାଘାତରେ ଜର୍ଜରିତ ହୋଇ ତାହା ବିସ୍ମୃତ ହୋଇଅଛି । ପଶ୍ଚିମରେ ବମ୍ବେ, ଗୁଜରାଟରେ ଗରବାଠାରୁ ଏହାର ସ୍ଥାନ ବହୁତ ଉଚ୍ଚରେ । ଆଫ୍ରିକାନ୍ ଡାନ୍ସ ( African dance ) ଓ ଇଟାଲିଏନ୍ ଡାନ୍ସ ( Italian dance ) ସହିତ ଏହାକୁ ତୁଳନା କଲେ ଆକାଶ ପାତାଳ ପ୍ରଭେଦ ଦେଖାଯାଏ । ଶାନ୍ତାଲୀ ନାଚର କଥା ପଚାରେ କିଏ ?

ଯେତେଦୂର ସମ୍ଭବ ଛାଉଣିନାଟରୁ ଛଉନାଟର ଉତ୍ପତ୍ତି । ଓଡ଼ିଆମାନେ ରଣପ୍ରିୟ ଜାତି । ଯେତେବେଳେ ସଂଗ୍ରାମର ବିରାମ ଘଟୁଥିଲା ତେତେବେଳେ ଯୋଦ୍ଧାମାନେ ଛାଉଣିରେ ଥାଇ ଏ ପ୍ରକାର ସାମରିକ ଆମୋଦରେ କାଳ କଟାଉଥିଲେ । ଛାଉଣିରୁ ଛାଉ ହୋଇ କ୍ରମେ ଛଉ ହୋଇଥିବାର ଅନୁମିତ ହୁଏ ।

ସମ୍ପ୍ରତି ଛଉନାଟ ତାଣ୍ଡବ ଓ ଲାସ୍ୟ ଭେଦରେ ଦୁଇ ପ୍ରକାର ଦେଖା ଯାଉଥିଲେହେଁ ପ୍ରଥମେ ତାଣ୍ଡବର ଉତ୍ପତ୍ତି । କ୍ରମେ ସେଥିରେ ଲାସ୍ୟର ସଂଯୋଗ ଘଟିଛି । ଏହା ଏକପ୍ରକାର ସଂଗୀତ । ସଂଗୀତରେ ନୃତ୍ୟ, ସ୍ୱର ଓ ବାଦ୍ୟ ଥାଏ । ଏଥିରେ ତାହା ଅଛି । କିନ୍ତୁ ବାକ୍ୟହୀନତା ଯୋଗୁଁ ଏହାର ନାମ ଛଉ ସଂଗୀତ ନ ହୋଇ ଛଉନାଟ ହୋଇଅଛି ବୋଲି ଜଣାଯାଏ । ରଙ୍ଗଢ଼ୋଲ, ମହୁରୀ, ଝାଂ ଓ ଧୁମ୍ସା ଏହାର ବାଦ୍ୟଥିଲା । ଏବେ ନୂତନ ବାଦ୍ୟ କ୍ଲାରିଓନେଟ୍ ପ୍ରଭୃତି ଯୋଗ କରାଯାଇ ଅଛି—ବୋଧହୁଏ ସୁଶ୍ରାବ୍ୟ ନିମିତ୍ତ । ମାତ୍ର ପୂର୍ବବାଦ୍ୟ ଉନ୍ମାଦକର ହେତୁ ଯୋଦ୍ଧାମାନଙ୍କ ହୃଦୟରେ ନବ ବଳ ଆଣି ଦେଉଥିଲା ଓ ଶୀଘ୍ର ପ୍ରତିଶୋଧରେ ତପ୍ତ କରୁଥିଲା । ଏବେ ମଧ୍ୟ ଦର୍ଶକମାନଙ୍କର ସେହିପରି ଅବସ୍ଥା ଘଟେ । ଏହାର ନୃତ୍ୟ ଠିକ୍ ଗୋଟିପୁଅ ନାଚ ପରି । ଚରଣଚାଳନର ଦ୍ରୁତତା, କୁଶଳତା ଓ ପାରିପାଟ୍ୟରେ ଏହା ଓରିଏଣ୍ଟାଲ ଡ୍ୟାନ୍ସଠାରୁ ଶ୍ରେଷ୍ଠ । ଏହି ନୃତ୍ୟରେ ନର୍ତ୍ତକମାନେ ଯେଉଁ ନାନାକ ଭଙ୍ଗୀ ଓ ଅବୟବ ସଞ୍ଚାଳନର ଚତୁରତା ଦେଖାଇ ଭାବ ପ୍ରକାଶ କରନ୍ତି ତାହା ମନୋମୁଗ୍ଧକର ଓ ହୃଦୟଗ୍ରାହୀ । ତାଣ୍ଡବ ନୃତ୍ୟରେ ତରବାରୀ, ତୀର ବା ଜମ୍ବୁରନେତ୍ରା ଲାଗିଥିବା ଛଡ ବ୍ୟବହୃତ ହୁଏ । ଲାସ୍ୟରେ ସେମାନଙ୍କର ଆବଶ୍ୟକତା ନ ଥାଏ । ଏହା କୌଣସି ଏକ ଆଖ୍ୟାୟିକା ଅବଲମ୍ବନରେ ହୋଇଥାଏ । ହର-ଧନୁର୍ଭଙ୍ଗ ଓ ସୀତା ବିବାହ, ରାମ ରାବଣ ଯୁଦ୍ଧ, ତ୍ରିପୁରାସୁରବଧ ପ୍ରଭୃତି ବୀରରସାତ୍ମକ କାବ୍ୟର ଅଭିନୟ ତାଣ୍ଡବ ନୃତ୍ୟର ଏବଂ ବସ୍ତ୍ରହରଣ, ବ୍ରଜବିହାର, ମାନଭଞ୍ଜନ ପ୍ରଭୃତି ଲାସ୍ୟ ନୃତ୍ୟର ଅନ୍ତର୍ଗତ ।

ସମ୍ପ୍ରତି ମୟୂରଭଞ୍ଜ, ନୀଳଗିରି ଓ ସିଂହଭୂମରେ ଏହା ଦେଖାଯାଏ । ଏହି ଲଳିତ କଳାର ଉତ୍କର୍ଷର ଉନ୍ନତି ବିଧାନ ପାଇଁ କାହାର ଦୃଷ୍ଟି ନାହିଁ । ପୁରୀ, ଭୁବନେଶ୍ୱର, କୋଣାର୍କ, ଯାଜପୁର, ଖିଚିଙ୍ଗ, ପାଳଅ ( ଭଦ୍ରଖ ) ପ୍ରଭୃତି ସ୍ଥାନର ଶିଳାମୂର୍ତ୍ତିମାନଙ୍କରେ ପ୍ରକଟିତ ମାନବ ମନର ବିଭିନ୍ନ ଭାବଭଙ୍ଗୀ ଅନୁକରଣକରି ଅଧୁନିକ ଛଉନାଟକୁ ଉନ୍ନତ କଲେ ଏହି କଳା ଯେ ଜଗଦ୍‌ବିଖ୍ୟାତ ହୁଅନ୍ତା ଏଥିରେ ତିଳେମାତ୍ର ସନ୍ଦେହ ନାହିଁ ।

ପୂର୍ବେ ନାୟକ ନାୟିକାମାନଙ୍କର ସାଜସଜ୍ଜା ଦେଶ, କାଳ ପାତ୍ରର ଉପଯୋଗୀ ଥିଲା । ବର୍ତ୍ତମାନ ସାଜସଜ୍ଜାରେ ମୌଳିକତା ରକ୍ଷା କରାଯାଉନାହିଁ—ସେଥିରେ ଅନେକ ପରି-ବର୍ତ୍ତନ ଘଟିଛି ।

ଅତୀତ ଛଉନାଟରେ ଓଡ଼ିଶୀ ସ୍ୱର, ରାଗିଣୀ, ସୁର, ତାଳ, ମାନ ପ୍ରଭୃତିର ଆଧିକ୍ୟ ଥିଲା, ତେଣୁ ମୌଳିକତା ବେଶ୍ ଅକ୍ଷୁଣ୍ଣ ହେଉଥିଲା—ବର୍ତ୍ତମାନ ବିଦେଶୀ ତଥା ବଙ୍ଗ ପ୍ରଭାବ ଏ ଦିଗରେ ପଡ଼ିଥିବାର ଅନୁମିତ ହୁଏ ।

ଏହାକୁ ବନ୍ୟଜାତୀୟ ଲୋକଙ୍କର ନୃତ୍ୟ କହି କେହି, ନାସିକା କୁଞ୍ଚନ କରିପାରନ୍ତି । ମାତ୍ର ଏଥିରେ ଯେଉଁ ଲଳିତ କଳା ପରିଦୃଷ୍ଟ ହୁଏ ତାହା ଅତ୍ୟନ୍ତ ଦୁର୍ଲଭ । କେହି କେହି ଏହାକୁ ବାଇସ୍କୋପ ଆଖ୍ୟା ଦେଉଛନ୍ତି । ଯଦି ତାହାହିଁ ହୁଏ, ତେବେ ଏହାର ସ୍ଥାନ ବାଇସ୍କୋପର ବହୁ ଉଚ୍ଚରେ ।

କିଛିଦିନ ତଳେ ମୟୂରଭଞ୍ଜର ସ୍ୱର୍ଗତ—ମହାରାଣୀ ଓ ନୀଳଗିରିର ସ୍ୱର୍ଗତ ରାଜା ସାହେବ—ଦୁହିଙ୍କର ଦୁଇଟି ଦଳ ମୟୂରଭଞ୍ଜରେ ଥିଲା । ସେମାନଙ୍କ ଅନୁଗ୍ରହରୁ ପ୍ରୋକ୍ତ ଦୁଇ-ଦଳ ପ୍ରତିଯୋଗିତା ଦେଖାଇ ଏ ନାଟର ବହୁତ ଉତ୍କର୍ଷ ସାଧନ କରିଥିଲେ । ଏବେ ମଧ୍ୟ ସେହିପରି ପ୍ରତିଯୋଗିତା ଅଛି, ମାତ୍ର ପୂର୍ବପରି ଆଦର ନାହିଁ କହିଲେ ଚଳେ ।



## ଓଡ଼ିଶାର ପ୍ରାଚୀନ ଅବସ୍ଥା

କଳିଙ୍ଗ ଅତି ପ୍ରାଚୀନ । କଳିଙ୍ଗରାଜ ମହାଭାରତର କୁରୁ-କ୍ଷେତ୍ର ଯୁଦ୍ଧରେ ଯୋଗ ଦେଇଥିଲେ । ଏ ଦେଶର ସୈନ୍ୟ-ମାନଙ୍କର ଯୁଦ୍ଧ କୌଶଳ ପ୍ରଶଂସନୀୟ ଥିଲା । ହାତୀ ଧରିବା, ହାତୀ ବ୍ୟବସାୟ କରିବା ଏବଂ ହାତୀଦାନ୍ତର ଶିଳ୍ପ କାର୍ଯ୍ୟ କଳିଙ୍ଗ ଲୋକଙ୍କୁ ଜଣାଥିଲା । ଏମାନେ ଜଳ ସ୍ଥଳ ଉଭୟ ବାଣିଜ୍ୟରେ ପାରଦର୍ଶୀ, ଧାର୍ମିକ, ସାହସୀ, କର୍ମକୁଶଳ ଓ

ବିବିଧ କଳାବିଦ୍ୟାରେ ନିପୁଣ ଥିଲେ ବୋଲି ଶିଳାଲିପି, କିମ୍ବଦନ୍ତୀ, ବୈଦେଶିକ ଲେଖକମାନଙ୍କ ବର୍ଣ୍ଣନା ଓ ପ୍ରାଚୀନ ଗ୍ରନ୍ଥମାନଙ୍କରୁ ଜଣାଯାଏ । କଳିଙ୍ଗ ଲୋକେ ବାଣିଜ୍ୟର ସୁବିଧାପାଇଁ ସମୁଦ୍ରର ପରପାରରେ ଉପନିବେଶ ସ୍ଥାପନ କରିବାର ପ୍ରମାଣ ମିଳେ । ନଗଲିପଟ୍ଟମ୍, କୋଣାର୍କ, କଳିଙ୍ଗପତ୍ତନ, ଚିଲିକା, ପୁରୀ, ଚନ୍ଦ୍ରାଭାଗା, ପିପିଲି, ହିଜଳି ଓ ତାମ୍ରଲିପ୍ତି ଉତ୍କଳ ଉପକୂଳର ପ୍ରସିଦ୍ଧ ବନ୍ଦର ଥିଲା । ପ୍ରଜାମାନେ ରାଜଭକ୍ତ ଥିଲେ । ରାଜାଙ୍କର ବ୍ୟକ୍ତିଗତ ଚରିତ୍ର, ବଳ, ସାହସ ଓ କାର୍ଯ୍ୟଦକ୍ଷତା ଉପରେ ଶାସନଯନ୍ତ୍ରର କୁଶଳତା ସମ୍ପୂର୍ଣ୍ଣରୂପେ ନିର୍ଭର କରୁଥିଲା । ବ୍ରାହ୍ମଣ, ଜୈନ ଓ ବୌଦ୍ଧଧର୍ମ ଦେଶରେ ପ୍ରଚଳିତ ଥିଲେହେଁ ଲୋକମାନଙ୍କ ମଧ୍ୟରେ ଧର୍ମଗତ ସ୍ୱାଧୀନ ଚିନ୍ତା ଓ ସ୍ୱାଧୀନ ଧର୍ମ ପ୍ରଚାରରେ କୌଣସି ବିରୋଧ ନ ଥିଲା । ପ୍ରଜାମାନଙ୍କ କଷ୍ଟ ଦୂର କରିବାପାଇଁ ରାଜାମାନେ ରାଜ୍ୟ ମଧ୍ୟରେ ଅନେକ ସ୍ଥଳରେ ଦୀର୍ଘୀ, କୂଅ ଓ ପୁଷ୍କରିଣୀମାନ ଖୋଳାଇ ଦେଇଥିଲେ । ତନ୍ତୀମାନେ ଯେଉଁ ସୂକ୍ଷ୍ମ ଲୁଗା ଓ ଛିଟ ଲୁଗାମାନ ବୁଣୁଥିଲେ ଅନ୍ୟ ଦେଶରେ ତହିଁର ମୂଲ୍ୟ ଅଧିକ ହେଉଥିଲା । ଧର୍ମରକ୍ଷା ଓ ଧ୍ୟାନ ଉପାସନା କରିବା ପାଇଁ ରାଜାମାନେ ରାଜ୍ୟରେ ଅନେକ ସ୍ଥଳରେ ଭଜନ ଘରମାନ ନିର୍ମାଣ କରାଇଥିଲେ । ସେମାନେ ପ୍ରଜାମାନଙ୍କ ଚରିତ୍ର ସତ୍ ରଖିବାପାଇଁ ପ୍ରଜାମାନଙ୍କ ଆଚାର ବ୍ୟବହାର ଗୁପ୍ତଭାବରେ ଦେଖିବା ନିମିତ୍ତ ଚର ନିଯୁକ୍ତ କରୁଥିଲେ । ଏଥିପାଇଁ ଲୋକେ ନୀତିବିରୁଦ୍ଧ କାର୍ଯ୍ୟ କରିବାକୁ ସାହସୀ ହେଉ ନ ଥିଲେ । ଏହା କେଶରୀବଂଶ ରାଜତ୍ୱର ପୂର୍ବ ଅବସ୍ଥା ।

ପ୍ରଜାମାନେ ଗ୍ରାମ୍ୟ ପଞ୍ଚାୟତ ଅଧୀନରେ ଥିଲେ । ପଞ୍ଚାୟତ ଗ୍ରାମର ଶିକ୍ଷା, ସ୍ୱାସ୍ଥ୍ୟ, ଶାନ୍ତିରକ୍ଷା, ରାଜସ୍ୱ ଆଦାୟ ପ୍ରଭୃତି କାର୍ଯ୍ୟ କରୁଥିଲେ । ଦେଶରେ ଜମିଦାର ପ୍ରଭୃତି ନ ଥିଲେ । ରାଜା ୧୨ ଜଣ ମନ୍ତ୍ରୀ କରନ୍ତି । ସେମାନେ ଯୋଗ୍ୟ, ଧାର୍ମିକ ଓ ପରୋପକାରୀ ଥିଲେ । ପ୍ରଜା ହିତକର କାର୍ଯ୍ୟ ସେମାନଙ୍କର ପ୍ରଧାନ ବ୍ରତ ଥିଲା । ଦେଶର ଅବସ୍ଥା ସ୍ୱଚ୍ଛ ଥିଲା ଓ ଲୋକେ ସୁଖ ଶାନ୍ତିରେ କାଳ କଟାଉଥିଲେ । ସୂକ୍ଷ୍ମ ଛିଟ ଲୁଗା ପାଇଁ ଉତ୍କଳ ବିଖ୍ୟାତ ଥିଲା । ସ୍ତ୍ରୀ ପୁରୁଷମାନେ ଦେହର ନାନାସ୍ଥାନରେ ସୁନା ରୁପାର ଅଳଙ୍କାର ପିନ୍ଧୁଥିଲେ । ପଲଙ୍କ, ଚୌକି, କଠାଉ ପାଲିଙ୍କି, ସବାରି, ଚୌଦୋଳ ପ୍ରଭୃତି ଯାନ, କଂସା, ପିତ୍ତଳ, ପଥରର ବାସନ; ସୁନା ରୁପାର ଅଳଙ୍କାର: ନାନାପ୍ରକାର ସୂଚୀକର୍ମ ଓ ସଙ୍ଗୀତ ବିଦ୍ୟାର ଆଦର ଥିଲା । ହସ୍ତୀ, ଅଶ୍ୱ, ରଥ, ନୌକା, ଶଗଡ଼ ପ୍ରଧାନ ଯାନ ଥିଲା । କଉଡ଼ି ମୁଦ୍ରା ରୂପରେ ବ୍ୟବହୃତ ହେଉଥିଲା । ଲୌହ ଶିଳ୍ପ, କାଷ୍ଠ ଶିଳ୍ପ, ଓ ଶିଳାଶିଳ୍ପର ଯଥେଷ୍ଟ ଉନ୍ନତି ସାଧିତ ହୋଇଥିଲା । ଯୋଗ୍ୟତା ଦେଖି ରାଜାମାନେ ନୀଚ ଜାତିକୁ ଉଚ୍ଚ ଜାତିର ସମକକ୍ଷ କରି ଦେଉଥିଲେ । ରାଜଦରବାରରେ ରାଜମନ୍ତ୍ରୀ ବା ବେବର୍ତ୍ତାଙ୍କ ଉପରେ ରାଜକାର୍ଯ୍ୟର ଭାର ଥିଲା । ତାଙ୍କ ତଳେ ସେନାପତିଙ୍କ ସ୍ଥାନ । ରାଜା ମନ୍ତ୍ରୀ ସହିତ ପରାମର୍ଶ କରି କାର୍ଯ୍ୟ କରୁଥିଲେ । ଦେଶ ସଭ୍ୟତାର ଚରମ ଉତ୍କର୍ଷ ଲାଭ କରିଥିଲା । ଏହା କେଶରୀ ବଂଶ ରାଜତ୍ୱ ସମୟର ଅବସ୍ଥା ।

ଗଙ୍ଗବଂଶ ଓ ସୂର୍ଯ୍ୟବଂଶ ରାଜତ୍ୱରେ ଉତ୍କଳର ସୀମା ବହୁତ ବଢ଼ିଗଲା । ବୈଦେଶିକ ପଠାଣମାନଙ୍କ ଆକ୍ରମଣରୁ ଦେଶରକ୍ଷା, ବିଦେଶୀ ଶତ୍ରୁ ସହ ଯୁଦ୍ଧ ଅଭିଯାନ ଓ ରାଜ୍ୟ ବିସ୍ତୃତି ହେତୁ ଜାତୀୟ ଚରିତ୍ର ଦୃଢ଼ୀଭୂତ ହୋଇଥିଲା । ରାଜ୍ୟ ଶାସନର ସମସ୍ତ ପ୍ରକାର ଦାୟିତ୍ୱ ପାତ୍ରମନ୍ତ୍ରୀଙ୍କ ହସ୍ତରେ ଥିଲା । ଏହାଙ୍କ ଅଧୀନରେ ୧୬ ଜଣ ସାମନ୍ତ ରାଜା ଥିଲେ । ସେମାନଙ୍କୁ ପାର୍ବତ୍ୟ ଅଞ୍ଚଳ ଏବଂ ସମୁଦ୍ର ଉପକୂଳ ଛାଡ଼ି ଦିଆ ଯାଇଥିଲା । ଅବଶିଷ୍ଟ ରାଜ୍ୟ ୩୬ ବିଭାଗ ହୋଇ ୧୬ଜଣ ମନ୍ତ୍ରୀ ଓ ୭୨ଜଣ ସହକାରୀ ମନ୍ତ୍ରୀଙ୍କ ଦ୍ୱାରା ସୁଚାରୁରୂପେ ଚାଳିତ ହେଉଥିଲା । ଶାସନ ଯନ୍ତ୍ରର ସକଳ କର୍ମଚାରୀମାନେ କେବଳ ଜାଗିର ଭୋଗ କରୁଥିଲେ । ପ୍ରତି ଗ୍ରାମରେ ସୈନ୍ୟମାନେ ଯୁଦ୍ଧ ଶିକ୍ଷା କରୁଥିଲେ । ଦେଶରେ ବହୁ ସଂଖ୍ୟକ ଦୁର୍ଗ ଥିଲା । ଶାସନ ବ୍ୟୟ ସଙ୍କୋଚ ହେତୁ ଦେଶବାସିଙ୍କ ଅବସ୍ଥା ସଚ୍ଛଳ ଥିଲା । ଗ୍ରାମ ଜୀବନର ଯାବତୀୟ ଅଭାବ ଗ୍ରାମବାସିଙ୍କ ଉତ୍ପନ୍ନ ଦ୍ରବ୍ୟରେ ପୂରଣ ହେଉଥିଲା । ଖାଦ୍ୟ ଦ୍ରବ୍ୟ ପ୍ରଚୁର ଥିଲା । ସେତେବେଳେ କଟକୀ ସେ ୧ ର ଘିଅର ମୂଲ୍ୟ ୧୦ କଡ଼ା କଉଡ଼ି ଓ ତୁଳା ୧ ସେରର ଦାମ ପଣେ ଦଶଗଣ୍ଡା ଥିଲା । ଗାଈ ଗୋରୁ କେହି ଦାମ ଦେଇ କିଣୁ ନ ଥିଲେ । ଆବଶ୍ୟକୀୟ ଜିନିଷ ବଦଳରେ ମିଳୁଥିଲା । ଲୁହା ଓ ପଥରର କାରଖାନାମାନ ଦେଶର ନାନା ସ୍ଥାନରେ ଥିଲା । ଲୁଗା ପ୍ରଚୁର ପରିମାଣରେ ବିଦେଶକୁ ରପ୍ତାନି ହେଉଥିଲା । ଇଂରେଜ, ଫରାଶୀ, ଡଚ୍, ଦିନାମାର ପ୍ରଭୃତି ଇଉରୋପୀୟ ବଣିକମାନେ ଉତ୍କଳ ବସ୍ତ୍ର ବାଣିଜ୍ୟ ପାଇଁ ପ୍ରଥମେ ଉତ୍କଳରେ କୋଠି ସ୍ଥାପନ କରିଥିଲେ । ନଡ଼ିଆ, ଲୁଣ, ତୂଳା, ଲୁଗା, ମସଲା, ପିତ୍ତଳ, କଂସା, ପଥର-ବାସନ ଏବଂ

ନଶ୍ୱର ବିଶ୍ୱରେ ସବୁ ନଶ୍ୱର । ଏକା ଯଶଃ କୀର୍ତ୍ତି ରହିବ ଚିର ॥

କାଠ ଓ ଲୁହାର ସୂକ୍ଷ୍ମ କାର୍ଯ୍ୟମାନ ସ୍ଥାନାନ୍ତରିତ ହୋଇ ଗହମ ବୁଟ, ଲାଖ, ଚୂନା, ଓ କ୍ଷୀର ମଧ୍ୟ ପ୍ରଦେଶରୁ ଆସୁଥିଲା । ଶିଳ୍ପ ବାଣିଜ୍ୟରେ ଉତ୍କଳବାସୀ ଧନବାନ୍ ହୋଇ ସୁଖସ୍ୱାଚ୍ଛନ୍ଦ୍ୟ ଭୋଗ କରୁଥିଲେ । ସ୍ୱାଧୀନ ଜୀବନ ଯାପନ କରି ନାନା ଧର୍ମ କାର୍ଯ୍ୟ ଓ ସାହିତ୍ୟର ଉତ୍ତରୋତ୍ତର ଉନ୍ନତି ସାଧନ କରୁଥିଲେ । ସ୍ତ୍ରୀମାନେ ପୁରୁଷମାନଙ୍କ ସହିତ ଏକ ଆସନରେ ବସି ଶିକ୍ଷା ଲାଭ କରୁଥିଲେ । ରାଜସୈନ୍ୟର ସହାୟତା ପାଇଁ ଉତ୍ପନ୍ନର ଏକ-ଷଷ୍ଠାଂଶ କର ଗ୍ରାମବାସିଗଣ ଦେଉଥିଲେ । ରାଜଦରବାରରେ ରାଜଗୁରୁଙ୍କର ପ୍ରଭାବ ଅପ୍ରତିହତ ଥିଲା । ଜୀବନ ଯାତ୍ରା ପାଇଁ କେହି କାହାର ମୁଖାପେକ୍ଷୀ ହୋଇ ରହୁ ନ ଥିଲେ । ବିଳାସ ସାମଗ୍ରୀର ଆଡ଼ମ୍ବର ନ ଥିଲା । ପ୍ରତ୍ୟେକ ଗ୍ରାମରେ ସ୍ୱାୟତ୍ତ-ଶାସନ ପ୍ରତିଷ୍ଠିତ ଥିଲା ।

ଓଡ଼ିଶାର ସ୍ୱାଧୀନତା ଅବସାନ ପରେ ନାନାପ୍ରକାର ବିପ୍ଳବ, ଲୁଣ୍ଠନ, ଅତ୍ୟାଚାର ଓ ରକ୍ତପାତ ଯୋଗୁଁ ଶାସନଯନ୍ତ୍ର ବିଶୃଙ୍ଖଳ ହୋଇ ପଡ଼ିଲା ଏବଂ ଉତ୍କଳବାସୀ ଆପଣାର ସ୍ୱାତନ୍ତ୍ର୍ୟ ଓ ସ୍ୱାଧୀନତା ହରାଇ ବସିଲେ । ମୋଗଲ ଶାସନ ପ୍ରଣାଳୀ ଓ ଗଜପତି ଶାସନ ପ୍ରଣାଳୀ ପ୍ରାୟ ଏକପ୍ରକାର ଥିଲା, କେବଳ ସରକାରଙ୍କ ସୁବିଧା ପାଇଁ ପାରସିକ ନାମ ବ୍ୟବହୃତ ହୋଇଥିଲା । ବିପ୍ଳବ, ବିଭ୍ରାଟ, ବ୍ୟଭିଚାର ଯୋଗୁ ଲୋକେ ଅଶାନ୍ତିରେ ଥିଲେ ସୁଦ୍ଧା ସ୍ୱାତନ୍ତ୍ର୍ୟ ରକ୍ଷା କରି ପାରୁଥିଲେ । କ୍ଷେତରେ ଫସଲର ଅବସ୍ଥା ଦେଖି ରାଜସ୍ୱ ଆଦାୟ କରି ଯାଉଥିଲା । ରାଜସ୍ୱ ପାଇଁ ଆଦାୟ ଧାନ ମଧ୍ୟରୁ କେତେକ ଓଡ଼ିଶାରେ ରଖାଯାଇ ଅବଶିଷ୍ଟ ବଙ୍ଗଦେଶକୁ ଯାଉଥିଲା । ଆଉରଙ୍ଗଜେବ୍ ନିଷ୍ଠୁର ପ୍ରକୃତି ଥିଲେ ମଧ୍ୟ ତାଙ୍କ ସମୟରେ ନାନାପ୍ରକାର କର ଆଦାୟ କରି ଯାଉଥିଲେହେଁ ସେ ସମୟ-ସମୟରେ ପ୍ରଜାମାନଙ୍କୁ ନାନା ଉପାୟରେ ଆଶ୍ୱାସନା ଦେଉ-ଥିଲେ । କର ଆଦାୟ ପ୍ରଜାଙ୍କ ସୁଖ ଦୁଃଖ ଉପରେ ବହୁତ ନିର୍ଭର କରୁଥିଲା । ପୂର୍ବପରି ଗ୍ରାମେ ଗ୍ରାମେ ଦେଶବାସୀ ଦୈହିକ ଓ ମାନସିକ ବଳ ସଞ୍ଚୟ ଓ ଯୁଦ୍ଧ ଶିକ୍ଷା କରୁଥିଲେ । ସାମାଜିକ ନିୟମମାନ କ୍ରମେ ଜଟିଳ ହୋଇ ଉଠିଥିଲା । ଏହି ରାଜତ୍ୱରେ ଉତ୍କଳର ସର୍ବବିଧ ବ୍ୟବସାୟ ଥିଲା । ଲୁଣମରା, ମାଛଧରା, ଲୁଗା, ତେଲ, କଂସା ପ୍ରଭୃତି ବାସନ, ପାଟ, ଲୁହା, ସୁନା-ରୁପା କାମ, ହାତକାମ ପ୍ରଭୃତି ବାଣିଜ୍ୟ ଉପରେ ବହୁତ ଶୁଳ୍କ ଧାର୍ଯ୍ୟ ହୋଇଥିଲା । କେବଳ କୃଷିରେ ଶୁଳ୍କ ନ ଥିଲା । ତଥାପି ବାଣିଜ୍ୟ ଲାଭଜନକ ବ୍ୟବସାୟ ଥିଲା । କଟକରେ ଗୋଟିଏ ମୁଦ୍ରାଶାଳ ଥିଲା । ବାଲେଶ୍ୱର ବନ୍ଦର ଜାହାଜ ନିର୍ମାଣର ପ୍ରଧାନ କେନ୍ଦ୍ର-ସ୍ଥଳୀ ଥିଲା । ହିଜଳି, ପିପିଲି, ବାଲେଶ୍ୱର, ଧାମରା, କଣିକା, ହରିଶପୁର, ଜମ୍ବୁ ଓ ଚିଲିକା ପ୍ରଭୃତି ବନ୍ଦରମାନ ସାମୁଦ୍ରିକ ବାଣିଜ୍ୟର ପ୍ରଧାନ ସ୍ଥାନ ଥିଲା । ଏ ସମୟରେ ନାନାପ୍ରକାର ଗ୍ରନ୍ଥ ଲେଖା ଯାଇ ସଂସ୍କୃତ ସାହିତ୍ୟ ତଥା ଉତ୍କଳ-ସାହିତ୍ୟର ଶ୍ରୀବୃଦ୍ଧି ସାଧନ କରିଥିଲା । ବିଦ୍ୟା-ଶିକ୍ଷା ଶିକ୍ଷାଭିଳାଷୀଙ୍କ ହାତରେ ଥିଲା—ସରକାର ସାହାଯ୍ୟ କରୁଥିଲେ ମାତ୍ର । ଆଉ-ରଙ୍ଗଜେବଙ୍କ ସମୟରେ ମୁସଲମାନ ଧର୍ମାନୁସାରେ ମକଦ୍ଦମା ବିଚାର କରାଯାଉ ଥିଲା । ଦେବୋତ୍ତର ଓ ବ୍ରହ୍ମୋତ୍ତର ବୃତ୍ତି-ପରି ମୁସଲମାନ ଶାସନକର୍ତ୍ତାମାନେ ଧର୍ମଯାଜକ ଓ ପଣ୍ଡିତ-ମାନଙ୍କୁ ଲାଖରାଜ-ବାହେଲ ଜମି ବୃତ୍ତି ସ୍ୱରୂପ ଦାନ କରୁଥିଲେ । ହିନ୍ଦୁମାନଙ୍କ ପୁରାତନ ମନ୍ଦିରର ଜୀର୍ଣ୍ଣସଂସ୍କାର କରିବାକୁ ନିଷେଧ କରାଯାଇ ଥିଲା ଏବଂ ଅନେକ ଦେବମନ୍ଦିର ଭାଙ୍ଗି ଦିଆ ଯାଇ-ଥିଲା । ହିନ୍ଦୁ ଓ ମୁସଲମାନମାନଙ୍କ ମଧ୍ୟରେ ଧର୍ମଗତ ବିଦ୍ୱେଷ ପ୍ରାୟ ନ ଥିଲା । ଏହି ସମୟରେ ସ୍ତ୍ରୀ ସ୍ୱାଧୀନତା ଲୁପ୍ତ ହେଲା । ଏହା ମୁସଲମାନ ଓ ମୋଗଲ ଶାସନରେ ଦେଶର ଅବସ୍ଥା ।

ମରହଟ୍ଟା ଶାସନରେ ଓଡ଼ିଶାର ସୀମା ସଂକୁଚିତ ହୋଇ ୫ ଚକଲାରେ ବିଭକ୍ତ ହୋଇଥିଲା; ଯଥା:—ପିପିଲି, କଟକ, ଭଦ୍ରକ, ସୋର ଓ ବାଲେଶ୍ୱର । ପ୍ରତ୍ୟେକ ଚକଲା ୧୫୦ ପ୍ରଗନାରେ ବିଭକ୍ତ ହୋଇ ୩୨ ଜଣ ଆମିଲଙ୍କ ଦ୍ୱାରା ଶାସିତ ହେଉଥିଲା । ଶାସନ, ଶାନ୍ତିରକ୍ଷା ଓ ରାଜସ୍ୱ ଆଦାୟ ଆଦି ସକଳ କାର୍ଯ୍ୟ ପାଇଁ ସେମାନେ ଦାୟୀ ଥିଲେ । ପଞ୍ଚାୟତ ସଭା ଉପରେ ଗ୍ରାମ ଶାସନ ଭାର ଥିଲା । ସୁବାଦାର ଓ ପ୍ରଜାଙ୍କ ମଧ୍ୟରେ ଆମିଲମାନେ କେବଳ ବ୍ୟବଧାନ ଥିଲେ । ଏହି ସମ-ୟରେ ଜମିଦାରମାନେ ରାଜା ଓ ଜାୟଗିରଦାରମାନେ ସ୍ଥାୟୀ ସ୍ୱତ୍ୱବାନ୍ ହେଲେ । ନ୍ୟାୟ ବିଚାର ଅର୍ଥର ଅଧୀନ ଥିଲା । ରାଜସ୍ୱ ଆଦାୟକାରୀମାନେ ବହୁତ କଷ୍ଟ ଦେଇ ରାଜସ୍ୱ ଆଦାୟ କରୁଥିଲେ । ମରହଟ୍ଟା ସୈନ୍ୟମାନେ ବଡ଼ ଅତ୍ୟାଚାରୀ ଥିଲେ । ଏହି ସମୟରେ ଶିଳ୍ପ ବ୍ୟବସାୟ କ୍ରମେ ଲୋପ ପାଇଲା । ପୁରୀ-ଯାତ୍ରୀମାନଙ୍କ ନିକଟରୁ କର ଆଦାୟ କରାଯାଉ ଥିଲା । ଜମି-ଦାରମାନେ ନିର୍ଦ୍ଦିଷ୍ଟ ସମୟରେ ରାଜସ୍ୱ ଦେଇ ନ ପାରିଲେ ସେମାନଙ୍କୁ ଯାବଜ୍ଜୀବନ ଲୌହ ପିଞ୍ଜରରେ ରଖାଯାଇ ସେଠାରେ ସେମାନଙ୍କୁ ଧାନ ଓ ଜଳ ଖାଇବାକୁ ଦିଆ ଯାଉଥିଲା । ପୁଣି

ସେମାନଙ୍କ ସ୍ଥାବରାସ୍ଥାବର ସମସ୍ତ ସମ୍ପତ୍ତି ବାଜ୍ୟାପ୍ତ ହୋଇ ଅନ୍ୟଙ୍କୁ ଦଅ ଯାଉଥିଲା । ଲୁଣ୍ଠନ ଓ ପୀଡ଼ନ ଫଳରେ ଗ୍ରାମ ଅରଣ୍ୟରେ ପରିଣତ ହୋଇଥିଲା । ତଥାପି ଉଦାରତା, ଧର୍ମ-ପ୍ରିୟତା ଓ ଦାନଶୀଳତାର ଦୃଷ୍ଟାନ୍ତ ବିରଳ ନୁହେଁ । ଅନେକ ମଠ, ଦେବାଳୟ ଓ ପ୍ରତିଷ୍ଠିତ ଦେବ ବିଗ୍ରହର ସେବା ପୂଜା-ପାଇଁ ମରହଟ୍ଟା ଶାସନକର୍ତ୍ତାଙ୍କ ପ୍ରଦତ୍ତ ଜାଗିରର ଓ ବୃତ୍ତି ଅଦ୍ୟାପି ବିଦ୍ୟମାନ ଅଛି । ଏହି ଯୁଗରେ ଅରାଜକତାର ଘୋର ଅବନତ ଅଣି ଦେଲେହେଁ ଓଡ଼ିଶାବାସୀଙ୍କ ଦୈନିକ ଜୀବନରେ ସତ୍ସାହସ, ସାଧୁତା, ଭକ୍ତି ଓ ପ୍ରୀତି ପ୍ରଭୃତିର ନିଦର୍ଶନ ମିଳେ । ଏହି ସମୟରେ ଶୌର୍ଯ୍ୟ-ବୀର୍ଯ୍ୟଶାଳୀ ଓଡ଼ିଆମାନେ ଦୁର୍ବଳ ଓ ଭୀରୁ-ସ୍ୱଭାବ ହୋଇ ପଡ଼ିଲେ । ବର୍ଗୀମାନେ ଶାସନ କର୍ତ୍ତାଙ୍କର ଦକ୍ଷିଣ ହସ୍ତ ସ୍ୱରୂପ ଥାଇ ପ୍ରଜାଙ୍କର ସର୍ବସ୍ୱ ଅପହରଣ କରୁଥିଲେ । ଏଣୁ ଲୋକେ ନିଜ ନିଜର ମୂଲ୍ୟବାନ ଦ୍ରବ୍ୟମାନଙ୍କୁ ମାଟିତଳେ ପୋତି ରଖୁଥିଲେ । ଧନିଷ୍ଠ ଲୋକମାନେ ଗୋଟିଏ ଗୋଟିଏ ଗଡ଼ କରି ଆତ୍ମରକ୍ଷା କରିବାକୁ ସମର୍ଥ ହେଉଥିଲେ । ମରହଟ୍ଟା ଶାସନରେ ଉତ୍କଳର ଗୌରବରବି ଅସ୍ତମିତ ହୋଇ-ଥିଲା କହିଲେ ଅତ୍ୟୁକ୍ତି ହେବ ନାହିଁ ।

---

## ବଙ୍ଗ ଭାଷାରେ ବୈଷ୍ଣବ ସାହିତ୍ୟର

### ଲେଖିକା ଓ ଲେଖକ

ମାଧବୀ ଦାସୀ । ରାୟ ରାମାନନ୍ଦ

ପ୍ରାଚୀନ ଉତ୍କଳର ନାରୀ କବି ।

୧ । ମାଧବୀ ଦାସୀ । ୨ । ବୃନ୍ଦାବତୀ ଦାସୀ । ୩ ରାଣୀ ନୀଳଙ୍କ ରାୟ ।

ବୀରାଙ୍ଗନା ।

(୧) ରାଣୀ ଶୁକଦେଈ ସାମନ୍ତାଣୀ । ଏହାଙ୍କ ନିବାସ ବାଙ୍କିରେ । ଏ ଗଜପତି ଶକ୍ତି ସହିତ ଯୁଦ୍ଧକରି ସଫଳତା ଲାଭକରିଥିଲେ ।

(୨) ଶ୍ରୀମତୀ ପ୍ରଭାବତୀ ଦେବୀ, ଧଳଭୂମ ରାଜଜେମା ।

ଉତ୍କଳ ବରିଷ୍ଠ ସମ୍ରାଟଗଣ ।

୧ । ଖାରବେଳ, ୨ । ଚୋଡ଼ଗଙ୍ଗଦେବ, ୩ । ଅନଙ୍ଗ ଭୀମଦେବ, ୪ । ନରସିଂହଦେବ, ୫ । କପିଳେନ୍ଦ୍ରଦେବ, ୬ । ପୁରୁଷୋତ୍ତମ ଦେବ, ୭ । ମୁକୁନ୍ଦଦେବ ।

ପ୍ରାଚୀନ ଲୁପ୍ତ ସାହିତ୍ୟର ଉଦ୍ଧାରକ ଓ ସମାଲୋଚକ ।

ରାୟସାହେବ ଶ୍ରୀଯୁକ୍ତ ଆର୍ତ୍ତବଲ୍ଲଭ ମହାନ୍ତି, ଶ୍ରୀଯୁକ୍ତ ଲକ୍ଷ୍ମୀକାନ୍ତ ଚୌଧୁରୀ, ବିଚ୍ଛନ୍ଦ ଚରଣ ପଟ୍ଟନାୟକ ।

ଚିତ୍ରକର ।

ଶ୍ରୀଯୁକ୍ତ ବସନ୍ତକୁମାର ପଣ୍ଡା, ଶ୍ରୀଯୁକ୍ତ ଅନାଦି ମହାନ୍ତି, ଶ୍ରୀଯୁକ୍ତ ଉପେନ୍ଦ୍ର ମହାରଣା, ଶ୍ରୀଯୁକ୍ତ ଗୋପାଳ କାନୁନଗୋ, ଶ୍ରୀଯୁକ୍ତ ଉପେନ୍ଦ୍ର କିଶୋର ଦାସ, ଶ୍ରୀଯୁକ୍ତ କମଳାକାନ୍ତ ଦାସ, ଶ୍ରୀଯୁକ୍ତ ପୂର୍ଣ୍ଣଚନ୍ଦ୍ର ସିଂହ ।

ଗାୟକ—

ଶ୍ରୀଯୁକ୍ତ ନିମାଇ ଚରଣ ହରିଚନ୍ଦନ, ଶ୍ରୀଯୁକ୍ତ ମୋହନ ସୁନ୍ଦର ଦେବ ଗୋସ୍ୱାମୀ, ଶ୍ରୀଯୁକ୍ତ ଗୌରାଙ୍ଗ ଚରଣ ଦାସ ।

ଗାୟିକା—

୧ । ଶ୍ରୀମତୀ ମାଳତୀ ଦେବୀ, ୨ । ଶ୍ରୀମତୀ କୁମୁଦିନୀ ଦେବୀ । ୩ । ଶ୍ରୀମତୀ କୁନ୍ତଳାକୁମାରୀ ଦେବୀ ।

## କାଷ୍ଠ ଶିଳ୍ପୀ

୧ ଶ୍ରୀଯୁକ୍ତ ବୈଷ୍ଣବ ମହାରଣା, ଜାଜପୁର

୨ ,, ଗୋବିନ୍ଦ ମହାରଣା, ଦରିଡ଼ା ( ଭଦ୍ରକ )

୩ ,, ବନ୍ଧୁ ମହାରଣା, ଶ୍ରୀ ଗଙ୍ଗ ପଟ୍ଟଣା (ଧର୍ମନଗର)

## ପ୍ରସ୍ତର ଶିଳ୍ପୀ

ଶ୍ରୀଯୁକ୍ତ ବୈରାଗୀ ମହାରଣା ।

ଶ୍ରୀଯୁକ୍ତ ନବୀନ ମହାରଣା ।

## ସଂସ୍କୃତ ପୁରାଣ, କାବ୍ୟ ପ୍ରଭୃତି ପ୍ରଣେତା

ବ୍ୟାସଦେବ—ଏ ବିଶ୍ୱବିଖ୍ୟାତ ମହାତ୍ମା ଦ୍ୱାପରଯୁଗରେ ପରାଶର ମୁନିଙ୍କ ଔରସରେ ସତ୍ୟବତୀଙ୍କ ଗର୍ଭରୁ ଜନ୍ମଗ୍ରହଣ କରିଥିଲେ । ଏ ଅଷ୍ଟାଦଶ ମହାପୁରାଣ, ମହାଭାରତ ପ୍ରଭୃତି ରଚନା କରି ନଶ୍ୱର ଜଗତରେ ଅମରତା ଲାଭ କରିଅଛନ୍ତି ।

ଜୟଦେବ—୧୧ଶ ଶତାବ୍ଦୀର ଉତ୍କଳ ରାଜାଙ୍କ ସଭା କବି । ଏ ପୁରୀବାସୀ ଥିଲେ । କେନ୍ଦୁଲୀ ଶାସନରେ ଏହାଙ୍କର ଜନ୍ମ । ଏହାଙ୍କ ରଚିତ 'ଗୀତଗୋବିନ୍ଦ' ଶ୍ରୀ ଶ୍ରୀ ଜଗନ୍ନାଥ ମହାପ୍ରଭୁଙ୍କ ସମ୍ମୁଖରେ ପ୍ରତିଦିନ ବୋଲାଯାଏ ।

ଶ୍ରୀଧର ସ୍ୱାମୀ, ବିଶ୍ୱନାଥ କବିରାଜ, 'ଏକାବଳୀ' ପ୍ରଣେତା ବିଦ୍ୟାଧର, 'ଗୋବିନ୍ଦ ଭାଷ୍ୟ' ପ୍ରଣେତା ବଳଦେବ ବିଦ୍ୟାଭୂଷଣ, 'ଗଦାଧର ପଦ୍ଧତି' ପ୍ରଣେତା ଗଦାଧର ରାଜଗୁରୁ 'ଅଳଙ୍କାର କୌସ୍ତୁଭ' ପ୍ରଣେତା ବିଶ୍ୱେଶ୍ୱର ପଣ୍ଡିତ, ମାଧବ କର, ଶମ୍ଭୁ କର, 'ଶୁଦ୍ଧିଚନ୍ଦ୍ରିକା' ପ୍ରଣେତା ଚୈନି କାଳିଦାସ, ପ୍ରସିଦ୍ଧ ଗାଣିତିକ ସତାନନ୍ଦ, 'ସିଦ୍ଧାନ୍ତ ଦର୍ପଣ' ପ୍ରଣେତା ଚନ୍ଦ୍ରଶେଖର ସାମନ୍ତ ।

## ନେପାଳ ଓ ତିବ୍ବତରେ ସଂରକ୍ଷିତ ଓଡ଼ିଆ ଗ୍ରନ୍ଥାବଳୀର ପ୍ରଣେତାଗଣ

( ଏମାନେ ୭ମ ଓ ୯ମ ଶତାବ୍ଦୀ ମଧ୍ୟବର୍ତ୍ତୀକାଳର କବି ବୋଲି ବଙ୍ଗର ସ୍ୱର୍ଗତ ମହାମହୋପାଧ୍ୟାୟ ହରପ୍ରସାଦ ଶାସ୍ତ୍ରୀ ଅବିଷ୍କାର କରିଅଛନ୍ତି । )

୧ । ଲୁଇ ( Lui ) ୨ । କାଳୀପଦ ( Kalipada ) ୩ । କୃଷ୍ଣାଚାର୍ଯ୍ୟ ( Krushnacharjya ) ୪ । ସାର (Sarah) ୫ । ଧର୍ମପଦ (Dharmapada) ୬ । ଧେତନ (Dhetan) ୭ । ମହୀପାଳ ( Mahipal ) ୮ । ଶବରପାଳ (Savarpal) ୯ । ତେଲିପା (Telipa) ୧୦ । ଇନ୍ଦ୍ରାହୁତି (Indrahuti) ୧୧ । ଗମ୍ଭୀରବଜ୍ର (Gambhirabajra) ୧୨ । ଜ୍ଞାନବଜ୍ର (Jnyanavajra) ୧୩ । ତଥାଗତ ରକ୍ଷିତ ( Tathagata Rakhita ) ୧୪ । ଦୀପଙ୍କର ଶ୍ରୀଜ୍ଞାନ (D i p a n k a r Srijnyana ) ୧୫ । ଧର୍ମ ଶ୍ରୀମିତ୍ର (Dharma Sreemitra) ୧୬ । ସ୍ଥାଗଲ ( Sthagal ) ୧୭ । ଗୋରକ୍ଷନାଥ (Gorakhanath) ୧୮ । ମତ୍ସ୍ୟେନ୍ଦ୍ରନାଥ (Matsyendranath)

## ପାଳିଆ ବିରିଞ୍ଚିନାରାୟଣ ମନ୍ଦିର

ଭଦ୍ରକ ସହରର ମା ୮ ଭଲ ପୂର୍ବକୁ ପାଳିଅ ଗ୍ରାମରେ ଅବସ୍ଥିତ । ଏହା ପ୍ରକୃତରେ ସୂର୍ଯ୍ୟମନ୍ଦିର ଓ କୋଣାର୍କ ଦେଉଳ ଛାଞ୍ଚରେ ରଥାକାରରେ ଗଢ଼ା । କମ୍ବଦନ୍ତୀ ଅଛି, ସେ କାଳରେ ପାଳିଅ ସମୁଦ୍ର କୂଳରେ ଥିଲା । ଏବକୁ ସମୁଦ୍ର ବହୁଦୂରକୁ ଘୁଞ୍ଚି ଯାଇଛି । ଏ ପର୍ଯ୍ୟନ୍ତ ସେଠାରେ ବାରୁଣୀ ସ୍ନାନ ହୁଏ । ଓଡ଼ିଶାରେ ଏହା ଦ୍ୱିତୀୟ ସୂର୍ଯ୍ୟ ମନ୍ଦିର । ଗଞ୍ଜାମ ଜିଲ୍ଲାରେ ଆଉ ଗୋଟିଏ ସୂର୍ଯ୍ୟମନ୍ଦିର ଅଛି । ଏ ମନ୍ଦିରଟି କାଳକ୍ରମରେ ଭଙ୍ଗି ଯିବାରୁ, ପରବର୍ତ୍ତୀ କାଳରେ, ମନ୍ଦିର ମଧ୍ୟରେ ଗୋଟିଏ ସ୍ତମ୍ଭ ଥୋଇ ଲୋକେ ବ୍ରହ୍ମା ବୋଲି ପୂଜା କରୁଛନ୍ତି । ମକର ସଂକ୍ରାନ୍ତି ଓ ଅଗସ୍ତ ପୂର୍ଣ୍ଣମୀରେ ଏଠାରେ ଜନାକୀର୍ଣ୍ଣ ମେଳା ହୁଏ । ଅଧୁନା ଧନକୁବେର ରାୟବାହାଦୁର ଭୂୟାଁ ଈଶ୍ୱରଚନ୍ଦ୍ର ମହାପାତ୍ର ଏହି ପ୍ରାଚୀନ କୀର୍ତ୍ତିଟି ରକ୍ଷା କରିବା ନିମନ୍ତେ ବହୁଧନ ବ୍ୟୟକରି ମରାମତି କରି ଅଛନ୍ତି । ଏହା ପ୍ରତ୍ନତାତ୍ତ୍ୱିକ ମାନଙ୍କର ଗୋଟିଏ ଦ୍ରଷ୍ଟବ୍ୟସ୍ଥାନ ।



## ଭଦ୍ରକାଳୀ

ଭଦ୍ରକ ନଗରର ମା ୪ ଭଲ ପୂର୍ବ ଦକ୍ଷିଣକୁ ସାଳନ୍ଦୀନଦୀ କୂଳରେ ଭଦ୍ରକାଳୀ ମନ୍ଦିର ବିରାଜିତ । ଭଦ୍ରକର ଏ ଅଧିଷ୍ଠାତ୍ରୀ ଦେବତା ବୋଲି ପ୍ରଖ୍ୟାତ । ରଜ ସଂକ୍ରାନ୍ତିରେ ଏଠାରେ ବୃହତ୍ ମେଳା ହୁଏ ।

ଭଦ୍ରକାଳୀ ଭଦ୍ରକ ଭୂୟାଁ ବଂଶର କୁଳଦେବୀ । ଏ ବିଷୟରେ ଗୋଟିଏ କମ୍ବଦନ୍ତୀ ଅଛି ।

ଏକ କାଳରେ ଚୌହାନ କ୍ଷତ୍ରିୟ ବଂଶଜ ଦୁଇଭାଇ ଜଗନ୍ନାଥ ଯାତ୍ରା କରିବା କାଳରେ, ଘଟନାକ୍ରମେ ଭଦ୍ରକଠାରେ ରୋଗଗ୍ରସ୍ତ ହୋଇ ପଡ଼ନ୍ତେ ସେମାନେ ଭଦ୍ରନାଥ ନାମକ ଜଣେ ଯୋଗୀ ଗୃହରେ ଆଶ୍ରୟ ନେଲେ । ସେତେବେଳେ ଏ ଅଞ୍ଚଳ ଦୁର୍ଭେଦ୍ୟ ବନାକୀର୍ଣ୍ଣ ଥିଲା । ଅରଣ୍ୟ ମଧ୍ୟରେ ଥିବା ଭଦ୍ରକାଳୀଙ୍କୁ ଏହି ଯୋଗୀ ପୂଜା କରୁଥିଲେ । ଏକଥା ଭଦ୍ରନାଥ ଓ ତାଙ୍କ ଦୁହିତାଙ୍କ ଛଡ଼ା ଆଉ କେହି ଜାଣି ନ ଥିଲେ । ରୁଗ୍ନ ଅତିଥିର ସେବା ଭାର ପଡ଼ିଥିଲା ଯୋଗୀକନ୍ୟା ଉପରେ । କ୍ରମେ ସେମାନଙ୍କ ମଧ୍ୟରେ ପ୍ରେମ ଜାତ ହେଲା । ପିତାଙ୍କ ଅନୁମତିରେ ବିବାହ ମଧ୍ୟ ହୋଇଗଲା । ତହୁଁ ଭାଇଙ୍କର ନିଜ ସ୍ତ୍ରୀର ସହାୟତାରେ ଦେବୀଙ୍କର ସନ୍ଧାନ ପାଇ, ଗୋପନ ପୂଜାଦ୍ୱାରା ତାଙ୍କୁ ସନ୍ତୁଷ୍ଟ କଲେ । ଦେବୀ ପ୍ରସନ୍ନା ହୋଇ ବର ଦେଲେ କି "ତୁ ମୋ ହାତର ଖଣ୍ଡା ନେଇ ସବୁ ଭିତରେ

ଯେତେଦୂର ଖେଳି ଯାଇ ପାରିବୁ, ସେ ରାଜ୍ୟ ତୋର ହେବ । ମାତ୍ର ତୁ ପଛକୁ ଫେରିବୁ ନାହିଁ—କାରଣ ମୁଁ ତୋ ପଛେ ପଛେ ଖେଳୁଥିବି । ସାନଭାଇ ଏକାକୀ ଘୋଡ଼ାରେ ଯାଇ ତାହା କଲେ । ଯାଉଁ ଯାଉଁ ସାଲନ୍ଦୀ ନଦୀ ବାଲିରେ ଦେବୀଙ୍କର ପାଦ ପୋତି ହୋଇ ଯିବାରୁ ନୂପୁର ଶବ୍ଦ ଶୁଭିଲା ନାହିଁ । ତହୁଁ ସେ ସନ୍ଦେହାନ ହୋଇ ପଛକୁ ଚାହିଁଦେଲେ । ସେହିଠାରେ ଦେବୀ ପ୍ରସ୍ତରାକାରରେ ରହିଲେ ।

ଭୁୟାଁ ବଂଶର ଆଦିପୁରୁଷ ଏହି ବ୍ୟକ୍ତି । ବର୍ତ୍ତମାନ ଭଦ୍ରକ ସବ୍‌ଡିଭିଜନ ଅନ୍ତର୍ଗତ ପ୍ରାୟ ସମସ୍ତ ସ୍ଥାନ ଏକକାଳରେ ଭୁୟାଁବଂଶର ଅଧୀନ ଥିଲା ଓ ଏହାଙ୍କର ରାଜଧାନୀ ଥିଲା ଭଦ୍ରକ ନିକଟବର୍ତ୍ତୀ 'ଭୁୟାଁ—ମହଲା' ନାମକ ଗ୍ରାମରେ । ପରେ ଏମାନେ ଲୁଦେଇରେ ଉଆସ ସ୍ଥାପନ କଲେ ଓ ବର୍ତ୍ତମାନ ସାମାନ୍ୟ ଭୂ-ସମ୍ପତ୍ତିର ଅଧିକାରୀ ହେଲେ ମଧ୍ୟ ପ୍ରାଚୀନ ରାଜବଂଶଜ ବୋଲି ସମ୍ମାନିତ । ଯୁଦ୍ଧ ବିଦ୍ୟାରେ ପାରଦର୍ଶିତା ଦେଖାଇ ଭୁୟାଁ ଓଡ଼ିଶା ରାଜାଙ୍କଠାରୁ ସନନ୍ଦ ପାଇଥିଲେ । କଥିତ ଅଛି, କାଇପୁରର ମହାଶୟ ବଂଶ ମରହଟ୍ଟା ଅମଳରେ ଭୁୟାଁଙ୍କର ଅଧେ ସମ୍ପତ୍ତି କାଢ଼ିନେଲେ । ଉକ୍ତ ତମ୍ବାପଟ୍ଟା ସନନ୍ଦ କାଇଁଟିଏ ଆଣି ମହାଶୟଙ୍କ ଘରେ ପକାଇ ଦେବାରୁ ଲୁଆଡ଼େ ଏହା ଘଟିଲା ଏବଂ ସେ ଗ୍ରାମର ନାମ 'କାଇପୁର' ହେଲା । ଏ ବଂଶର ଶାଖା ତାଳପଦାର ସାମନ୍ତ ରାୟ ବଂଶ, ନଗାଁର କାନୁନଗୋଇ ବଂଶ ପ୍ରଭୃତି । ଏମାନେ ଏପର୍ଯ୍ୟନ୍ତ ବ୍ରତ ଧରୁଅଛନ୍ତି ଓ ନିଜକୁ କ୍ଷତ୍ରିୟ ବୋଲି କହନ୍ତି, ମାତ୍ର କରଣମାନଙ୍କ ସହିତ କୁଟୁମ୍ବିତା କରନ୍ତି ।



## ସଂକ୍ଷିପ୍ତ ଜୀବନୀ

( କବିବର ଶ୍ରୀଯୁକ୍ତ ଚିନ୍ତାମଣି ମହାନ୍ତି )

କବିବର ଶ୍ରୀଯୁକ୍ତ ଚିନ୍ତାମଣି ମହାନ୍ତି ୧୮୬୮ ଖ୍ରୀଷ୍ଟାବ୍ଦରେ ଭଦ୍ରକ ଥାନାନ୍ତର୍ଗତ ନରପୁର ଗ୍ରାମରେ ଜନ୍ମଗ୍ରହଣ କରିଥିଲେ । ନିମ୍ନପ୍ରାଇମେରୀ, ଅପରପ୍ରାଇମେରୀ ଏବଂ ଭର୍ଣ୍ଣାକ୍ୟୁଲାର ପାସ କରି ଅର୍ଥାଭାବରୁ ଅଳ୍ପ ତାଙ୍କର ପଢ଼ିବାର ସୁବିଧା ହେଲାନାହିଁ । ଶିକ୍ଷାବିଭାଗରେ ସେ ପ୍ରାୟ ୨୦ ବର୍ଷ କାର୍ଯ୍ୟକରି ପରେ ପରେ ପାଞ୍ଚଖଣ୍ଡ ମାସିକ ଏବଂ ସାପ୍ତାହିକ ପତ୍ରିକାର ସମ୍ପାଦକ ହୋଇଥିଲେ । ଶୈଶବାବସ୍ଥାରୁ ତାଙ୍କର ସାହିତ୍ୟ ପ୍ରତିଭାର ସୂଚନା ଦେଖା ଯାଇଥିଲା । ୧୬ ବର୍ଷ ବୟସ ସମୟରେ ସେ ସାହିତ୍ୟକ୍ଷେତ୍ରରେ ପ୍ରବେଶ କରି କାବ୍ୟ, କବିତା ଗଳ୍ପ, ଉପନ୍ୟାସ ଏବଂ ବିବିଧ ସନ୍ଦର୍ଭ ବିଷୟକ ଅନେକ ପୁସ୍ତକ ଲେଖିଅଛନ୍ତି । ତାଙ୍କର ପ୍ରାୟ ଶ୍ରେଷ୍ଠ ବଡ଼ ସବୁ ଶହେଖଣ୍ଡ ପୁସ୍ତକ ମୁଦ୍ରିତ ହୋଇଅଛି, ଅବଶିଷ୍ଟ ପାଣ୍ଡୁଲିପି ଅବସ୍ଥାରେ ଅଛି । ତାଙ୍କର କେତେକ ପୁସ୍ତକ ମାନ୍ଦ୍ରାଜ ଏବଂ ବିହାର ଓଡ଼ିଶାର ମେଟ୍ରିକ୍ୟୁଲେସନ, ଆଇ. ଏ ଏବଂ ବି, ଏ, କ୍ଲାସର ପାଠ୍ୟ ନିର୍ବାଚିତ ହୋଇଅଛି । ଆଉ ଅନେକ ପୁସ୍ତକ ପ୍ରାଇଜ୍ ଓ ଲାଇବ୍ରେରୀ ପୁସ୍ତକରୂପେ ମନୋନୀତ ହୋଇଅଛି । ବର୍ତ୍ତମାନ ତାଙ୍କର ବୟସ ୬୭ ବର୍ଷ । ଅଦ୍ୟାପି ସେ ସାହିତ୍ୟ ସେବାରୁ ବିରତ ହୋଇନାହାନ୍ତି । ଅର୍ଦ୍ଧଶତାବ୍ଦୀରୁ ଅଧିକକାଳ ହେଲା ସେ ସାହିତ୍ୟ ସେବା କରି ଆସୁଅଛନ୍ତି । ତାଙ୍କ ପରି ଏକନିଷ୍ଠ ସାହିତ୍ୟ ସେବୀ ଉତ୍କଳରେ ବିରଳ । ବର୍ତ୍ତମାନ ସେ ଧର୍ମଚର୍ଚ୍ଚାରେ ଅଧିକ ମନୋଯୋଗ କରି ଧର୍ମବିଷୟକ କେତେଖଣ୍ଡ ପୁସ୍ତକ ଲେଖିଅଛନ୍ତି । ଉତ୍କଳ ସାହିତ୍ୟରେ ତାଙ୍କର ସ୍ୱତନ୍ତ୍ର ବିଶିଷ୍ଟ ଆସନ ଅତି ଉଚ୍ଚରେ ନିର୍ଦ୍ଦିଷ୍ଟ । ତାଙ୍କର ଉତ୍ସାହ, ଅଧ୍ୟବସାୟ ଏବଂ ପରିଶ୍ରମ ଦେଖିଲେ ଯୁବକମାନେ ସୁଦ୍ଧା ଆଶ୍ଚର୍ଯ୍ୟ ହେବେ । ସେ ସାମାନ୍ୟ ପରିମାଣରେ ଇଂରାଜୀ ଏବଂ ସଂସ୍କୃତ ନିଜ ଚେଷ୍ଟାରେ ଆୟତ୍ତ କରିଅଛନ୍ତି । ଭଞ୍ଜ ସାହିତ୍ୟରେ ତାଙ୍କର ଦକ୍ଷତା ଅସାଧାରଣ କହିଲେ ଅତ୍ୟୁକ୍ତି ହେବନାହିଁ । ନବୀନ ଲେଖକମାନଙ୍କୁ ଉତ୍ସାହିତ କରିବା ତାଙ୍କର ଅନ୍ୟତମ ବିଶେଷତ୍ୱ । ଅନ୍ୟାନ୍ୟ ଲେଖକମାନଙ୍କର ଅନେକ ପାଣ୍ଡୁଲିପି ସଂଶୋଧନ କରି ମନ୍ତବ୍ୟ ପ୍ରକାଶ କରିଅଛନ୍ତି । ପ୍ରାୟ ଶତାଧିକ ପୁସ୍ତକରେ ତାଙ୍କର ମନ୍ତବ୍ୟ ଅଛି । ନିଖିଳ ଉତ୍କଳ ସାହିତ୍ୟ ସମାଜରେ ୨୧ ଶ ବାର୍ଷିକ ଅଧିବେଶନରେ ସେ ଦକ୍ଷତାର ସହିତ ସଭାପତି କାର୍ଯ୍ୟ ନିର୍ବାହ କରିଥିଲେ । ଦେଶର ଅନେକ ସାହିତ୍ୟ ଅନୁଷ୍ଠାନ ପକ୍ଷରୁ ତାଙ୍କୁ ଅଭିନନ୍ଦନ ଏବଂ ମାନପତ୍ର ପ୍ରଦତ୍ତ ହୋଇଅଛି ।



କବିବରଙ୍କ କତିପୟ କାବ୍ୟାବଳୀ ।

| | | |
|---|---|---|
| ୧—ବିକ୍ରମାଦିତ୍ୟ | ୨—ସୁଭଦ୍ରା | ୩—ମୁକୁନ୍ଦଦେବ |
| ୪—ଢ଼ୋଗଛ | ୫—ତ୍ରିବେଣୀ | ୬—ମହୋଦଧି |
| ୭—ସୁରଙ୍ଗୀ | ୮—ଚିଲିକା | ୯—ରୂପାଚୂଡ଼ |

## ଶ୍ରୀଯୁକ୍ତ ଜଗବନ୍ଧୁ ସିଂହ

ଶ୍ରୀଯୁକ୍ତ ଜଗବନ୍ଧୁ ସିଂହ ପିତା ୰ ଗୌରହରି ବଧାର, ମାତା ୰ ଚନ୍ଦ୍ରମଣି ଦେବୀ । ପ୍ର । କୋଠଦେଶ, ଗ୍ରାମ ଭୁବନପୁର, ପୋ. ନିମାପଡ଼ା, ଜି. ପୁରୀ—ଜନ୍ମ ବିଦ୍ୟାସିଂହ ଦେବଙ୍କ ୨୧ ଅଙ୍କ ଫାଲ୍ଗୁନ କୃଷ୍ଣଷଷ୍ଠୀ ମଙ୍ଗଳବାର ଖ୍ରୀ. ୧୮୭୭ ମସିହା ଫେବୃୟାରି ମାସ ୧୫ ତାରିଖ । ପ୍ରଥମେ ଗୃହଶାଳୀରେ ଦେଶୀୟ ଅବଧାନଙ୍କ ନିକଟରେ ଶିକ୍ଷା, ନିମାପଡ଼ା ମାଇନର ସ୍କୁଲରୁ ମାଇନର ପାଶ, ପୁରୀଜିଲ୍ଲା ସ୍କୁଲରୁ ଏଣ୍ଟ୍ରାନ୍ସ ପାଶ-ରେଭେନ୍ସା କଲେଜରୁ ଏଫ. ଏ. ପାଶ—ବି. ଏ. ଶ୍ରେଣୀରେ ପିତୃବିୟୋଗ, ଶିକ୍ଷାବନ୍ଦ । ଓକାଲତି ପାଶ, ୧୯୦୧ ପୁରୀ ମ୍ୟୁନିସିପାଲିଟି ଭାଇସ୍‌ଚେୟାରମ୍ୟାନ, ପୁରୀଜିଲ୍ଲାବୋର୍ଡ ଭାଇସ୍‌ଚେୟାରମ୍ୟାନ ଏ ଦୁଇବୋର୍ଡରେ ପ୍ରାୟ ୨୦ବର୍ଷ ସଭ୍ୟ, ସଦର ଲୋକାଲ ବୋର୍ଡ ଚେୟାରମ୍ୟାନ, ଉତ୍କଳ ସମ୍ମିଳନୀର ସମ୍ପାଦକ, ପୁରୀ ବାଳିକା ବିଦ୍ୟାଳୟ ସମ୍ପାଦକ, ଭାଇସ୍‌ପ୍ରେସିଡେଣ୍ଟ—ପୁରୀ ଅନାଥାଶ୍ରମ ସମ୍ପାଦକ, ସତ୍ୟବାଦୀ ଉଚ୍ଚଇଂରାଜୀ ବିଦ୍ୟାଳୟ ମ୍ୟାନେଜିଙ୍ଗ କମିଟି ସଭ୍ୟ, ବିହାର ଓଡ଼ିଶା ବ୍ୟବସ୍ଥାପକ ସଭାର ୨ଥର ସଭ୍ୟ, ସଂସ୍କୃତ ଏଡୁକେଶନ କମିଟିର ସଭ୍ୟ, ଉତ୍କଳ ସମ୍ମିଳନୀର ଚକ୍ରଧରପୁରର ଅଧିବେଶନରେ ସଭାପତି—ଉତ୍କଳ ସାହିତ୍ୟସମାଜର ବାର୍ଷିକ ଅଧିବେଶନରେ ସଭାପତି, ଉତ୍କଳ ସାହିତ୍ୟସମାଜର ସଭ୍ୟ, ଓଡ଼ିଶା ଦୁର୍ଭିକ୍ଷସାହାଯ୍ୟ କମିଟିର (୧୯୨୧-୨୨) ସମ୍ପାଦକ, ଉତ୍କଳ ପ୍ରାଦେଶିକ କଂଗ୍ରେସ କମିଟିର ଭାଇସ୍‌ପ୍ରେସିଡେଣ୍ଟ (୧୯୨୧-୨୨) ନିଖିଳ ଭାରତ କଂଗ୍ରେସକମିଟିର ସଭ୍ୟ(୧୯୨୧), କଂଗ୍ରେସ ଆଦେଶରେ ବର୍ଷେ ଓକାଲତି ସ୍ଥଗିତ, ପୁରୀ ସେବାସମିତି ପ୍ରେସିଡେଣ୍ଟ । ଲେଖକ- (୧) ପ୍ରାଚୀନଉତ୍କଳ (୨) ଶ୍ରୀମଦ୍‌ଭଗବଦ୍‌ଗୀତା ନବାକ୍ଷରୀ ଅନୁବାଦ (୩) ଗୀତାଯୋଗତତ୍ତ୍ୱ ଅନୁବାଦ ନବାକ୍ଷରୀ (୪) ତିଳକ ଗୀତା ରହସ୍ୟ ଅନୁବାଦ ୧ମ ୨ୟ (୫) ଗୃହଲକ୍ଷ୍ମୀ ୧ମ ଓ ୨ୟ ଭାଗ (୬) ଶ୍ରୀକୃଷ୍ଣ (୭) ପ୍ରବନ୍ଧସାର (୮) କୀର୍ତ୍ତନସାମୃତ (୯)ଜ୍ୟୋତିଷାର୍ଣ୍ଣବ ୧ମ ୨ୟ, ୩ୟଭାଗ(୧୦)ବୁକରଓ୍ୟାସିଂଟନ (୧୧) ସୁବର୍ଣ୍ଣଦୃଷ୍ଟାନ୍ତ (୧୨)ଗୋପବନ୍ଧୁ କୋଇଲି(୧୩)ପଞ୍ଚାୟୁ ଦର୍ପଣ (୧୪) ଅରଣ୍ୟମାହାତ୍ମ୍ୟ (୧୫) କଥା (୧୬) ପଞ୍ଚାମୃତ ଇତ୍ୟାଦି ( ଗଞ୍ଜାମଜିଲ୍ଲା ଜଳନ୍ତର ରାଜବଂଶ ସମ୍ଭୂତ ଭଗୀରଥି ପରିଚ୍ଛାଙ୍କ ପ୍ରପୌତ୍ର । ଭଗୀରଥୀ ଜଳନ୍ତରରୁ ବାହାରି ଆସି ବର୍ତ୍ତମାନ ବାସସ୍ଥାନରେ ବସତି କରିଥିଲେ ) ଏହାଙ୍କରେ ନିଷ୍ଠାପର କର୍ମୀ ସଦସଦ ବିବେକ କେତେ । ୧୯୩୦ ରେ ନିଖିଳ ଉତ୍କଳ ଯାଦବମହାସଭାର ସଭାପତି ହୋଇଥିଲେ ।

## ଶ୍ରୀଯୁକ୍ତ ପଣ୍ଡିତ ନୀଳକଣ୍ଠ ଦାଶ

ଶ୍ରୀଯୁକ୍ତ ନୀଳକଣ୍ଠ ଦାଶ ପୁରୀଜିଲ୍ଲା ସାକ୍ଷିଗୋପାଳରେ ୧୮୮୪ ଅବ୍ଦରେ ବୈଦିକ ବ୍ରାହ୍ମଣକୁଳରେ ଜନ୍ମଗ୍ରହଣ କରିଥିଲେ । ଏହାଙ୍କ ପିତାଙ୍କ ନାମ ଅନନ୍ତ ଦାଶ । ଗ୍ରାମ୍ୟ ବିଦ୍ୟାଳୟରେ ଏହାଙ୍କର ବୁଦ୍ଧି ଓ ସ୍ମରଣଶକ୍ତିର ପ୍ରଖରତା ଦେଖି ଗ୍ରାମବାସୀ ମୁଗ୍ଧ ହୋଇ ଏହାଙ୍କ ଭବିଷ୍ୟତ ସମୁଜ୍ଜ୍ୱଳ ହେବ ବୋଲି ଆଶା କରିଥିଲେ । ତତ୍ପରେ ସେ ପୁରୀଜିଲ୍ଲା ସ୍କୁଲରୁ ଦକ୍ଷତାସହ ଉତ୍ତୀର୍ଣ୍ଣ ହୋଇ କଟକ ରେଭେନ୍ସା କଲେଜ ଓ କଲିକତା ସ୍କଟିସ୍‌ଚର୍ଚ୍ଚସ୍ କଲେଜରେ ଅଧ୍ୟୟନ କରି ଏମ୍.ଏ. ପାସ କଲେ । ସାରସ୍ୱତ ମନ୍ଦିରରୁ ମେଲାଣି ନେଇ ସେ ସ୍ୱର୍ଗତ ପଣ୍ଡିତ ଗୋପବନ୍ଧୁ ଦାଶ ପ୍ରଭୃତିଙ୍କ ସହିତ ସତ୍ୟବାଦୀରେ ରେସିଡେନ୍ସିଏଲ ହାଇସ୍କୁଲ ସ୍ଥାପନ କଲେ ଏବଂ ୧୯୧୧ ରେ ନିଜେ ପ୍ରଧାନ ଶିକ୍ଷକ ପଦ ଗ୍ରହଣ କରି ୮ବର୍ଷ ପର୍ଯ୍ୟନ୍ତ ସୁଖ୍ୟାତି ସହ କାର୍ଯ୍ୟ ନିର୍ବାହ କଲେ । ୧୯୧୯ ରେ ପୁରୀ ଦୁର୍ଭିକ୍ଷ ପ୍ରପୀଡ଼ିତ ଲୋକଙ୍କୁ ସାହାଯ୍ୟ ଦାନ କରି ୧୯୨୦ ରେ କଲିକତା ବିଶ୍ୱବିଦ୍ୟାଳୟରେ ପୋଷ୍ଟଗ୍ରାଜୁଏଟ ଅଧ୍ୟାପକ ହେଲେ ଓ ୧୯୨୧ ରେ ସତ୍ୟାଗ୍ରହ ଆନ୍ଦୋଳନରେ ଯୋଗଦାନ କରି ସମ୍ବଲପୁରରେ ଏକ ଜାତୀୟ ବିଦ୍ୟାଳୟ ସ୍ଥାପନ କଲେ ଏବଂ 'ସେବା'ର ସମ୍ପାଦକ ହେଲେ । ସେ ପୁରୀ କଂଗ୍ରେସର ସେକ୍ରେଟେରୀ ଓ ୧୯୨୨ ରେ ଉତ୍କଳ ପ୍ରାଦେଶିକ କଂଗ୍ରେସର ସଭାପତି ହୋଇଥିଲେ ୧୯୨୪ ରେ ଏସେମ୍ବ୍ଲିର ସଦସ୍ୟରୂପେ ନିର୍ବାଚିତ ହୋଇଥିଲେ ସମ୍ପ୍ରତି ଏସେମ୍ବ୍ଲିର ସଦସ୍ୟରୂପେ ନିର୍ବାଚିତ ହୋଇଅଛନ୍ତି । ସେ ବାଣୀ ସେବା ମନ୍ଦିରରେ ପ୍ରବେଶ କରି ନୂତନ ଧରଣରେ ଖାରବେଳ କବିତା, ପ୍ରେମର କବିତା, କଥା ସାହିତ୍ୟ ପ୍ରଭୃତି ସୃଷ୍ଟି କଲେ । ତାଙ୍କର କଥା ସାହିତ୍ୟ ଓ କାବ୍ୟ ସାହିତ୍ୟ ସୌନ୍ଦର୍ଯ୍ୟରେ ସମୃଦ୍ଧ । ସୂକ୍ଷ୍ମ ଚରିତ୍ର ଚିତ୍ରଣ ଓ ମନୋବିଶ୍ଳେଷଣ ଯୋଗୁଁ ତାଙ୍କ ଲେଖାବଳୀରେ ପ୍ରତିଭାର ଯଥେଷ୍ଟ ପରିଚୟ ମିଳେ । ନିମ୍ନରେ ତାଙ୍କର କେତେକ କାବ୍ୟର ନାମ ପ୍ରଦତ୍ତ ହେଲା ।

(୧) ପ୍ରଣୟିନୀ (୨) କୋଣାର୍କ (୩) ମସ୍ୟଦେବୀ
(୪) ଖାରବେଳ (୫) ଦାସନାଏକ (୬) ଆର୍ଯ୍ୟଜୀବନ
(୭) ବାଳରାମାୟଣ (୮) ବାଳ ମହାଭାରତ

ସମ୍ପ୍ରତି ସେ 'ନବଭାରତ' ନାମକ ମାସିକ ପତ୍ରିକାର ସମ୍ପାଦକ । ଉତ୍କଳ ସାହିତ୍ୟ କ୍ଷେତ୍ରରେ ତାଙ୍କର ସ୍ଥାନ ଖୁବ୍ ଉଚ୍ଚରେ ।

**ଆଳସ୍ୟ ଅଙ୍କକୁ ଥରେ ଯେ ଚଳେ । ହେଲେ ମଲେ ତାର କୁହୁକ ବଳେ ।**

## ଭାଷାତତ୍ତ୍ୱବିତ୍—
## ଶ୍ରୀଯୁକ୍ତ ଗୋପାଳଚନ୍ଦ୍ର ପ୍ରହରାଜ

**Kaiser-I-Hind medalist**

ଭାଷାତତ୍ତ୍ୱବିତ୍ ଶ୍ରୀଯୁକ୍ତ ଗୋପାଳଚନ୍ଦ୍ର ପ୍ରହରାଜ ୧୨୮୨ ସାଲ କନ୍ୟା ( ଆଶ୍ୱିନ୍ୟ ) ମାସ ୧୨ ଦିନରେ କଟକଜିଲ୍ଲା ଅନ୍ତର୍ଗତ ସିଦ୍ଧେଶ୍ୱର ପୁର ଗ୍ରାମରେ ଜନ୍ମ ଗ୍ରହଣ କରିଥିଲେ । ଏହାଙ୍କ ପିତାଙ୍କ ନାମ ନରସିଂହ ପ୍ରହରାଜ ଓ ମାତାଙ୍କ ନାମ ସୂର୍ଯ୍ୟମଣି ଦେବୀ । ଏ ମହାଶୟ ୧୮୯୧ ମସିହାରେ ରେଭେନ୍ସା କଲେଜିଏଟ ସ୍କୁଲରୁ ଏଣ୍ଟ୍ରାନ୍ସ ପରୀକ୍ଷୋତ୍ତୀର୍ଣ୍ଣ ହୋଇ ୧୮୯୫ ମସିହାରେ ଏଫ୍. ଏ. ପାସକଲେ । ତତ୍ପରେ ଏକବର୍ଷ ଶିବପୁର ଇଞ୍ଜିନିୟରିଂ ସ୍କୁଲରେ ଅଧ୍ୟୟନ କରି ନାନାକାରଣରୁ ସେ ବିଦ୍ୟାଳୟ ଛାଡ଼ି ଆସିଲେ । ୧୮୯୮ ମସିହାରେ ବି. ଏ. ପାସକରି ୧୯୦୧ ମସିହାରେ ରେଭେନ୍ସା କଲେଜରେ ଦେଢ଼-ମାସ ସଂସ୍କୃତ ଅଧ୍ୟାପକ ହୋଇ ୧୯୦୨ ରେ ଓକିଲାତି ପରୀକ୍ଷାରେ ଉତ୍ତୀର୍ଣ୍ଣ ହେଲେ । ତା ପରେ ଏମ୍. ଏ. ପରୀକ୍ଷା ଦେଇ ଅକୃତକାର୍ଯ୍ୟ ହୋଇ ଓକିଲାତି କାର୍ଯ୍ୟରେ ଯୋଗଦାନ କଲେ । ସେ ୧୯୧୨ ରୁ ୧୫ ଯାଏଁ ପୁରୀର ସରକାରୀ ଓକିଲ ହୋଇ ସୁଖ୍ୟାତି ଅର୍ଜନ କରିଥିଲେ । ଓକିଲାତି ସମୟରେ ବଡ଼ ବଡ଼ ମୋକଦ୍ଦମାରେ ବିଭିନ୍ନ ଗଡ଼ଜାତ ପ୍ରଭୃତିକୁ ଯାଇ ସ୍ୱୀୟ ପ୍ରତିଭା ବଳରେ ସେ ସ୍ଥାନମାନଙ୍କରେ ବିଜୟବାନା ଉଡ଼ାଇ ଆସିଥିଲେ । ଏ ମହାଶୟ ୧୮୯୮ ରେ ସାହିତ୍ୟ କ୍ଷେତ୍ରରେ ପ୍ରବେଶ କରି ଭାଷାର ଯୁଗାନ୍ତର ଆଣିଥିଲେ । ତାଙ୍କପ୍ରଣୀତ ଉତ୍କଳକାହାଣୀ, ଭାଗବତ ଟୁଙ୍ଗିରେ ସନ୍ଧ୍ୟା, ବାଇମହାନ୍ତି ପାଞ୍ଜି, ନନାଙ୍କ ବସ୍ତାନି, ଦୋରେ ବାୟା ଦୋ, ପ୍ରଭୃତିର ଭାଷା ଓ ଭାବ ସମ୍ପୂର୍ଣ୍ଣ ନୂତନ । ଏତଦ୍‌ବ୍ୟତୀତ ବାଳକ ବାଳିକାମାନଙ୍କପାଇଁ 'ସୁକୁମାର ଶିକ୍ଷା' ନାମକ ପାଠ୍ୟ ପୁସ୍ତକ ଲେଖିଥିଲେ । ୧୯୧୨ ରେ ଏ ମହାଶୟ "ପୂର୍ଣ୍ଣଚନ୍ଦ୍ର ଓଡ଼ିଆ ଭାଷାକୋଷ" ନାମକ ଏକ ପ୍ରକାଣ୍ଡ ପୁସ୍ତକ ଲେଖିବାକୁ ଆରମ୍ଭ କଲେ । ଭାଷାକୋଷର ୪ର୍ଥ ଖଣ୍ଡ ମୁଦ୍ରିତ ହୋଇସାରିଛି । ସେଥିରେ ୯୨ ସହସ୍ର ଶବ୍ଦ ଅଛି । ଅବଶିଷ୍ଟ ୨।୩ ଖଣ୍ଡ ଶୀଘ୍ର ପ୍ରକାଶିତ ହେବାର ସମ୍ଭାବନା । ସେଥିରେ ପ୍ରାୟ ୭୦ ହଜାର ଶବ୍ଦ ରହିବ । 'ଉତ୍କଳସାହିତ୍ୟ' ପ୍ରଭୃତି ବିଭିନ୍ନ ପତ୍ରିକାରେ ତାଙ୍କର ଲେଖାବଳୀର ସ୍ୱାତନ୍ତ୍ର୍ୟ ଗୁଣାଧିକ୍ୟରେ ସମସ୍ତେ ଅନୁଭବ କରିଅଛନ୍ତି । ଉତ୍କଳ ସାହିତ୍ୟ ସମାଜ ୧୯୩୨ ରେ ତାହାଙ୍କୁ ସଭାପତି ରୂପେ ବରଣ କରି ଆତ୍ମପ୍ରସାଦ ଲାଭ କରିଥିଲା । ପୁଣି ସେ ଶ୍ରୀମତୀ ପୀତାମ୍ବରୀ ଦେବୀଙ୍କ ସହିତ ମିଶି "ଆମ ଜେଜେବାପାଙ୍କ କାହାଣୀ" "ଢଗଢ଼ମାଳି ବଚନ" "ଉତ୍କଳକାହାଣୀ" ( ୨ୟ ଭାଗ ) ଓ "ବାଇଦାସଙ୍କ ଭଜନ" ଲେଖିଅଛନ୍ତି । ତାଙ୍କ ପରି ପ୍ରବୀଣ ଏକନିଷ୍ଠ ସାହିତ୍ୟସେବୀ ଉତ୍କଳରେ ବିରଳ କହିଲେ ଅତ୍ୟୁକ୍ତି ହେବନାହିଁ । ଯେଉଁମାନେ ତାଙ୍କ ତୁଣ୍ଡରୁ ପଦେ କଥା ଶୁଣିଛନ୍ତି ସେମାନେ ତାଙ୍କ ହୃଦୟର ସରସତା ଅନୁଭବ କରିଛନ୍ତି । ୧୯୩୩ ରେ ସରକାର ବାହାଦୁର ତାଙ୍କ ଯୋଗ୍ୟତାର ପୁରସ୍କାର ସ୍ୱରୂପ ତାଙ୍କୁ ( Kaiser I-Hind ) ପଦକ ପ୍ରଦାନ କରିଥିଲେ ।



## ଶ୍ରୀଯୁକ୍ତ ଲକ୍ଷ୍ମୀକାନ୍ତ ମହାପାତ୍ର

ଭଦ୍ରକ ଥାନା ତାଳପଦା ଗ୍ରାମର ବିଖ୍ୟାତ ସାମନ୍ତସିଂହାର ବଂଶରେ ଜନ୍ମ । ଏହାଙ୍କ ପିତା ଶ୍ରୀଯୁକ୍ତ ଚୌଧୁରୀ ଭାଗବତ ପ୍ରସାଦ ସାମନ୍ତରାୟ ମହାପାତ୍ର ଜଣେ ସ୍ୱନାମଧନ୍ୟ ପୁରୁଷ । ୧୮୮୮ ଖ୍ରୀଷ୍ଟାବ୍ଦରେ କଟକ ସହରରେ ଜନ୍ମଗ୍ରହଣ କରିଥିଲେ । ସେ ୧୪ ବର୍ଷ ବୟଃକ୍ରମରେ କବିତା ଲେଖିବାକୁ ଆରମ୍ଭ କଲେ । ବାଲେଶ୍ୱର ଜିଲ୍ଲାସ୍କୁଲରୁ ଏନ୍‌ଟ୍ରାନ୍ସ ପାଶକରି ରେଭେନ୍‌ସା କଲେଜରୁ ବି. ଏ. ପାଶ କଲେ । ପାଠଦଶାରେ ଏ ସଙ୍ଗୀତ, ନୃତ୍ୟ ଓ କ୍ରୀଡ଼ାପ୍ରିୟ ଥିଲେ ଓ ସ୍ୱର୍ଗୀୟ ପଣ୍ଡିତ ଗୋପବନ୍ଧୁଙ୍କ ପ୍ରଭାବରେ ଦେଶର କାମ କରିଥିଲେ । ମୁକୁର, ଉତ୍କଳସାହିତ୍ୟ ପ୍ରଭୃତି ବିବିଧ ପତ୍ରପତ୍ରିକା ମାନଙ୍କରେ ଗଳ୍ପ ଓ କବିତା ଲେଖି ଅଳ୍ପକାଳ ମଧ୍ୟରେ ଜଣେ ସୁଲେଖକ ବୋଲି ଜନ ସମାଜରେ ଆଦୃତ ହେଲେ । ଯୌବନରେ ଦୁଃସାଧ୍ୟ ବ୍ୟାଧିଗ୍ରସ୍ତ ହୋଇ ଅଚଳ ହୋଇ ପଡ଼ି ମଧ୍ୟ ସାହିତ୍ୟ ସେବା ଛାଡ଼ି ନାହାନ୍ତି ଏହାଙ୍କ ଲେଖାର ଲଳିତ ଭଙ୍ଗୀ ଓ ମଧୁର ଭାଷା ସକାଶେ ଏହାଙ୍କୁ ଉତ୍କଳର "କାନ୍ତକବି" ବୋଲି ଲୋକେ ଶ୍ରଦ୍ଧା କରନ୍ତି । ବିଶେଷତଃ ସଙ୍ଗୀତ ଓ ବ୍ୟଙ୍ଗ ସାହିତ୍ୟ ରଚନାରେ -



ଶ୍ରୀଯୁକ୍ତ ଗୋପାଳଚନ୍ଦ୍ର ପ୍ରହରାଜ ବି. ଏଲ୍. (କାଇଜର-ଇ-ହିନ୍ଦ୍)
ଆଡ୍‌ଭୋକେଟ୍ ଓ ପୂର୍ଣ୍ଣଚନ୍ଦ୍ର ଓଡ଼ିଆ ଭାଷାକୋଷର ପ୍ରଣେତା



ସ୍ୱର୍ଗୀୟ ରାୟବାହାଦୂର ନନ୍ଦକିଶୋର ଦାସ

ଏ ସିଦ୍ଧହସ୍ତ । ଏହାଙ୍କ ରଚିତ ଗ୍ରନ୍ଥମାନଙ୍କରୁ ପ୍ରଧାନ ପ୍ରଧାନ କେତେଖଣ୍ଡ ନିମ୍ନରେ ଦିଆଗଲା :—

| | |
|---|---|
| ଜୀବନ ସଙ୍ଗୀତ— | ଭାବାତ୍ମକ ସଙ୍ଗୀତ |
| ଦୁନ୍ଦୁଭି— | ଜାତୀୟ ସଙ୍ଗୀତ |
| କର୍ଣ୍ଣ— | ନାଟକ |
| କାଳୀୟ ଦଳନ— | ,, |
| କୌତୁକ ଚନ୍ଦ୍ରହାସ ଚମ୍ପୂ— | ନାଟିକା |
| କୁମାରୀ— | ଶିଶୁ ସାହିତ୍ୟ |
| କଙ୍କାଳ— | କବିତା |



## ଶ୍ରୀଯୁକ୍ତ ଲକ୍ଷ୍ମୀନାରାୟଣ ସାହୁ, ତତ୍ତ୍ୱନିଧି

ଶ୍ରୀଯୁକ୍ତ ଲକ୍ଷ୍ମୀନାରାୟଣ ସାହୁ ବାଲେଶ୍ୱର ସହରରେ ୧୮୯୦ ଅକ୍ଟୋବର ୩ ତାରିଖରେ ଜନ୍ମଗ୍ରହଣ କରିଥିଲେ । ୧୯୦୮ ରେ ବାଲେଶ୍ୱର ଜିଲ୍ଲାସ୍କୁଲରୁ ଏଣ୍ଟ୍ରାନ୍ସ ପରୀକ୍ଷା ଦେଇ ୧ମ ଶ୍ରେଣୀରେ ପାସ୍‌କଲେ ଓ ଫଷ୍ଟ୍‌ରେ ପଦକ ପାଇଥିଲେ । ୧୯୧୧ ରେ ରେଭେନ୍ସାକଲେଜରୁ I. sc. ୧ମଶ୍ରେଣୀରେ ଉତ୍ତୀର୍ଣ୍ଣହୋଇ ଉତ୍କଳ ସମ୍ମିଳନୀରୁ ସାହାଯ୍ୟ ପାଇ ଇଞ୍ଜିନିୟରିଂ କଲେଜରେ ପ୍ରାୟ ୧୨ ବର୍ଷ ଅଧ୍ୟୟନ କଲେ । ତତ୍ପରେ କଟକ ମିସନସ୍କୁଲରେ ୪ ବର୍ଷ ଶିକ୍ଷକତା କଲେ । ୧୯୧୬ ରେ ଭାରତ—ସେବକସମିତିର ମେମ୍ବର ହେଲେ । ସେହି ସମୟରେ ସେ ପୁନା, ଏଲାହାବାଦ, ହିମାଳୟ, ଜାମସେଦପୁର, ପୂର୍ବବଙ୍ଗ, ପୁରୀ ପ୍ରଭୃତି ସ୍ଥାନରେ ଦୁର୍ଭିକ୍ଷ ପ୍ରଭୃତିର କାର୍ଯ୍ୟ କଲେ । ଅଧ୍ୟବସାୟବଳରେ ଘରେ ଘରେ ପଢ଼ି ସେ ୧୯୧୪ ରେ ଆଇ. ଏ. ଓ କାବ୍ୟତୀର୍ଥ ଏବଂ ୧୯୧୬ରେ ବି. ଏ. ପାସ୍ କଲେ । ଗୀତା ପରୀକ୍ଷାରେ ଉତ୍ତୀର୍ଣ୍ଣ ହୋଇ 'ତତ୍ତ୍ୱନିଧି' ଓ ବଙ୍ଗ ସାହିତ୍ୟରେ ପାରଦର୍ଶିତାପାଇଁ "ବିଦ୍ୟାରତ୍ନ" ଉପାଧି ପାଇଲେ । ତଦନନ୍ତର ଭାରତୀୟ ଭଣ୍ଡାର୍କ୍ୟୁଲର, ଅର୍ଥନୀତି ଓ ଇଂରାଜୀ ଏହି ତିନି ବିଷୟରେ ପରେ ପରେ ଏମ୍, ଏ, ପାସ କଲେ । ୧୯୩୪ ରେ ହିନ୍ଦୀପରୀକ୍ଷାରେ ଉତ୍ତୀର୍ଣ୍ଣ ହୋଇ 'ହିନ୍ଦୀ ବିଶାରଦ' ଉପାଧି ପାଇଲେ । ସେ ଅଦ୍ୟାପି ତାଙ୍କର ଛାତ୍ର ଜୀବନରୁ ବିରତ ହୋଇ ନାହାନ୍ତି । ସେ ସହଯୋଗ ସମାଚାର, ସହକାର, Star of Utkal ଓ ବୈତରଣୀ ପତ୍ରିକାର ସମ୍ପାଦକ ହୋଇ ବିଶେଷ ଦକ୍ଷତା ସହିତ କାର୍ଯ୍ୟକରି ଅଛନ୍ତି । ସେ ଡେକାନ ସଭା (ପୁନା), World crippled Association ( New York ) America ର ମେମ୍ବର ଅଟନ୍ତି । ଗୌଡ଼ଦ୍ୱାରରେ କେନ୍ଦ୍ର କରି ଗ୍ରାମସଂଗଠନ କାର୍ଯ୍ୟକରୁଅଛନ୍ତି । କଟକ ସେଣ୍ଟ୍ରାଲ ବ୍ୟାଙ୍କର ଡିରେକ୍ଟର ଥିଲେ । ସମ୍ପ୍ରତି ଉତ୍କଳସାହିତ୍ୟ ସମାଜର ସମ୍ପାଦକ ହୋଇ ଦକ୍ଷତାର ସହିତ ସୁଚାରୁ ରୂପେ କାର୍ଯ୍ୟ ନିର୍ବାହ କରୁ ଅଛନ୍ତି ଏବଂ ତାଙ୍କ ଯୋଗୁ ସାହିତ୍ୟ ସମାଜର ଉତ୍ତରୋତ୍ତର ଉନ୍ନତି ହେଉଅଛି । ନାନା କାର୍ଯ୍ୟରେ ବ୍ୟାପୃତ ଥାଇ ମଧ୍ୟ ସେ ଦେବୀ ବାଣୀ ଅର୍ଚ୍ଚନାରେ ନିଯୁକ୍ତ । ତାଙ୍କର ପ୍ରକାଶିତ ପୁସ୍ତକର ନାମ ନିମ୍ନରେ ପ୍ରଦତ୍ତ ହେଲା ।

| | | |
|---|---|---|
| ଗାନ୍ଧି<br>ଗୋଖଲେ<br>ତିଲକ<br>ଶାସ୍ତ୍ରୀ | ( ଜୀବନୀ ) | ନାଗରିକର ମାଧୁରୀ<br>ସାନ୍ତ୍ୱନା<br>ଜୀବନ ଓ ଜୀବନୀ<br>ପ୍ରଭୃତି |



## ଶ୍ରୀଯୁକ୍ତ ଅଶ୍ୱିନୀକୁମାର ଘୋଷ

ଏ ମହାଶୟ ସନ ୧୮୯୬ ରେ ଜନ୍ମ । ଜନ୍ମସ୍ଥାନ କଟକ । ପିତା—ଅକ୍ଷୟକୁମାର ଘୋଷ, ମାତା—ସୁନ୍ଦରମଣି ଦେବୀ, କର୍ମବୀର ଗୌରୀଶଙ୍କରଙ୍କ ଜ୍ୟେଷ୍ଠାକନ୍ୟା—ତିନିବର୍ଷରୁ ସାହା, ସଙ୍ଗୀତ ପ୍ରିୟ—ରେଭେନ୍ସା କଲେଜିଏଟରୁ ଏଣ୍ଟ୍ରାନ୍ସ ପାସ୍ କରି ରେଭେନ୍ସା କଲେଜରେ ଅଧ୍ୟୟନ କରି ବି. ଏ. ପାସ୍ କରିଥିଲେ, ଗଣିତରେ ଅନର୍ସ ସହିତ । ଗଣିତରେ ପ୍ରାଇଭେଟ୍ ଭାବେ ଏମ୍, ଏ, ପାଶ୍ କରିଥିଲେ । ପିତୃ ବିୟୋଗ ଘଟିବାରୁ ଅକାଳେ, ମାତାମହ ଗୌରୀଶଙ୍କରଙ୍କ ତତ୍ତ୍ୱାବଧାନରେ, ତାଙ୍କର କର୍ମକ୍ଷେତ୍ର ପ୍ରିଣ୍ଟିଂକୋମ୍ପାନୀରେ ୨ ବର୍ଷକାଳ ବ୍ୟବସାୟ ଶିକ୍ଷା କରିଥିଲେ । ସେହି ସମୟରେ ପି. ଏମ୍. ଏକାଡେମିରେ ଗଣିତ ଶିକ୍ଷକ କାର୍ଯ୍ୟ ଖାଲି ହେବାରୁ କର୍ତ୍ତୃପକ୍ଷ ତାଙ୍କୁ ଡାକି ନେଇ ଉକ୍ତ କାର୍ଯ୍ୟଟି ଦେଇଥିଲେ । ସେହି କାର୍ଯ୍ୟରେ ରହି ଅବଶେଷେ ସେଠାରେ ପ୍ରଧାନ ଶିକ୍ଷକ ହୋଇଥିଲେ । ସମ୍ପାଦକଙ୍କ ସଙ୍ଗେ ମନୋମାଳିନ୍ୟ ଘଟିବାରୁ ଉକ୍ତ କାର୍ଯ୍ୟ ଇସ୍ତଫା

ଦେଇଥିଲେ । ତାଙ୍କର ନାଟକ ଲେଖା ପ୍ରବୃତ୍ତି ଜାଗରିତ କରିବାର ପ୍ରଧାନ କାରଣ, 'ବନମାଳୀ ପଣ୍ଡିତ ପ୍ରତିଷ୍ଠିତ ଶ୍ରୀରାଧାକୃଷ୍ଣ ଥିଏଟର, ଯାହାକି ତାଙ୍କ ଅନ୍ତେ 'ଅର୍ଯ୍ୟ ଥିଏଟର' ନାମରେ ଯେ ଏବେ ଚଳାଉ ଅଛନ୍ତି । ସେ ଅନ୍ୟୂନ ଗୋ୨୫ଟି ନାଟକ ଲେଖି ଅଛନ୍ତି । ତାଙ୍କର ଲେଖିତ ନାଟକ 'କୋଣାର୍କ' ପୁସ୍ତକର ଅଭିନୟ ।



## ଲେଫ୍‌ଟନେଣ୍ଟ—

## ଶ୍ରୀଯୁକ୍ତ ସଂଗ୍ରାମକେଶରୀ ରାୟ

### ( R. C. S. )

ଭାରତର ସେନାବିଭାଗରେ ଓଡ଼ିଶାରୁ ପ୍ରଥମେ ଶ୍ରୀଯୁକ୍ତ ସଂଗ୍ରାମକେଶରୀ ପ୍ରବେଶ କରିଥିଲେ । ସେ ପ୍ରସିଦ୍ଧ ଡାକ୍ତର କାପ୍ତାନ ରାୟଙ୍କର ଚତୁର୍ଥ ସନ୍ତାନ । ଓଡ଼ିଶା ବଙ୍ଗ ପ୍ରଦେଶର ଅନ୍ତର୍ଭୁକ୍ତ ଥିବାକାଳରେ କାପ୍ତାନ ରାୟ ରାଜସାହିରେ ଡାକ୍ତରଥିଲେ । ସେତେବେଳେ ୧୯୧୧ ନଭେମ୍ବରରେ ସେ ସେଠାରେ ଭୂମିଷ୍ଠ ହୋଇଥିଲେ । ସେତେବେଳେ ଇଉରୋପରେ ମହାସମର ଉପସ୍ଥିତ ହେବାରୁ କାପ୍ତାନ ରାୟ ମେସୋପୋଟେମିଆକୁ ଗମନକଲେ । ତାଙ୍କର ପରିବାରବର୍ଗ ସତ୍ୟବାଦୀରେ ଅବସ୍ଥାନକଲେ । ସଂଗ୍ରାମକେଶରୀଙ୍କର ପ୍ରାଥମିକ ଶିକ୍ଷା ସତ୍ୟବାଦୀରେ ହୋଇଥିଲା । ତାଙ୍କର ପିତା ବାଗ୍‌ଦାଦ୍ ଓ ପାରସ୍ୟର ଯୁଦ୍ଧଭୂମିରେ ପ୍ରତିମୁହୂର୍ତ୍ତରେ ଜୀବନର ସଙ୍କଟାପନ୍ନ ଅବସ୍ଥାରେ କି ଭଳି ସାହସର ସହିତ କାର୍ଯ୍ୟ କରୁଥିଲେ—ଯୁଦ୍ଧଭୂମିରେ ଲୋମହର୍ଷଣକାରୀ ଘଟଣା ଓ ସୈନିକ ଜୀବନର ମହତ୍ତ୍ୱ ଓ ଆନନ୍ଦ ବର୍ଣ୍ଣନାକରି, ତାହା ପତ୍ର ଦ୍ୱାରା ତାଙ୍କର ସ୍ତ୍ରୀ ଓ ପିଲାମାନଙ୍କୁ ଲେଖି ଅନୁପ୍ରାଣିତ କରିଥିଲେ । ତାପରେ ସଂଗ୍ରାମକେଶରୀ ଭିକ୍ଟୋରିଆ ସ୍କୁଲରୁ ୧୯୨୭ରେ ୧ମଶ୍ରେଣୀରେ ପାସ କରି ବୃତ୍ତି ପାଇଲେ । ୧୯୨୮ରେ ଆଇ. ଏସ୍. ସି ପାସ କରି ଏଲାହାବାଦ ବିଶ୍ୱବିଦ୍ୟାଳୟରେ ଅନର୍ସ ସହ ବି. ଏସ୍. ସି ଶିକ୍ଷାକରି ସୈନ୍ୟବିଭାଗ ପ୍ରବେଶିକା ପ୍ରତିଯୋଗିତା ପରୀକ୍ଷାରେ ପାସ୍‌କରି ୨ୟସ୍ଥାନ ପାଇଲେ । ୧୯ ବର୍ଷ ବୟସରେ ବିଲାତ ଉଲଉଇଚ ରୟାଲ ମିଲିଟାରୀ ଏକାଡେମିରେ ପାସ କରି ୧୯୩୨ରେ ରାଜ କମିସନ ବା ରାଜାଙ୍କ ଅନୁମତି ପତ୍ର ପାଇଲେ । ୧୯୩୩ରେ ଯୁଦ୍ଧବିଭାଗ ସିଗ୍‌ନାଲିଂରେ ପାସ କଲେ । ପୁଣି ୧୯୩୪ ନଭେମ୍ବର ମାସରେ ମେକାନିକାଲ ଟ୍ରାନସ୍‌ପୋର୍ଟ ପରୀକ୍ଷାରେ କୃତକାର୍ଯ୍ୟ ହୋଇ ବର୍ତ୍ତମାନ ସେକେଣ୍ଡ ଲେଫ୍‌ଟେନାଣ୍ଟ ଭୂପେନ ରାୟଙ୍କ ଠାରେ ଅବସ୍ଥାପିତ ହୋଇଅଛନ୍ତି । ଯୁଦ୍ଧ ବିଭାଗର ସିଗ୍ନାଲିଙ୍ଗ ଶାଖାରେ ସେ ପ୍ରଥମ ଭାରତୀୟ ।



## କୁମାରୀ ଶ୍ରୀମତୀ ଜ୍ୟୋତ୍ସ୍ନାମୟୀ ଦେଈ

### ଏମ୍. ବି, ବି, ଏସ୍

କୁମାରୀ ଶ୍ରୀମତୀ ଜ୍ୟୋତ୍ସ୍ନାମୟୀ କାପ୍ତାନ ଷେନମୋହନ ରାୟଙ୍କ କନ୍ୟା ଓ ଲେଫ୍‌ଟନାଣ୍ଟ ସଂଗ୍ରାମକେଶରୀଙ୍କ ମଧ୍ୟମା ଭଗିନୀ । ତାଙ୍କର ଜନ୍ମ ୧୯୦୮ ରେ । ସେ ଘରେ ଘରେ ପାଠ ପଢ଼ି ୧୯୨୪ ରେ ମାଟ୍ରିକ୍ୟୁଲେସନ ଓ ୧୯୨୬ ରେ ଆଇ. ଏ. ପାସ କଲେ । ୧୯୩୪ ଅପ୍ରେଲରେ ପଞ୍ଜାବ ବିଶ୍ୱବିଦ୍ୟାଳୟରେ ମେଡିକାଲ କଲେଜର ଶେଷ ପରୀକ୍ଷାରେ ଏମ୍. ବି, ବି, ଏସ୍ ପାସ କଲେ । ଅସ୍ତ୍ର ଚିକିତ୍ସାରେ ପ୍ରଥମ ସ୍ଥାନ ଓ ଭେଷଜ ବିଦ୍ୟାରେ ୨ୟ ସ୍ଥାନ ପାଇଥିଲେ । ବର୍ତ୍ତମାନ ଲାହୋରର ଲେଡି ଏଚିସନ୍ ହାସପାତାଲରେ ହାଉସ ସର୍ଜନ କାର୍ଯ୍ୟରେ ନିଯୁକ୍ତ ହୋଇଅଛନ୍ତି । କୁମାରୀ ଜ୍ୟୋତ୍ସ୍ନାମୟୀ ଓଡ଼ିଶାର ନାରୀ ମହଲରେ ଏକମାତ୍ର ନକ୍ଷତ୍ର ସ୍ୱରୂପା । ବିଶେଷତଃ ଓଡ଼ିଶାର ବାହାରେ ଓଡ଼ିଆଘରର ଝିଅ ଏପରି କୃତିତ୍ୱ ଏ ପର୍ଯ୍ୟନ୍ତ କେହି ଦେଖାଇ ନାହାନ୍ତି ।



## ଶ୍ରୀଯୁକ୍ତ ବ୍ରଜସୁନ୍ଦର ଦାସ ।

ଶ୍ରୀଯୁକ୍ତ ବ୍ରଜସୁନ୍ଦର ଦାସ କଟକ ଚୌଧୁରୀ ବଜାରରେ ୧୮୮୦ ମସିହା ଜୁଲାଇ ୧ ତାରିଖରେ ଜନ୍ମ ଗ୍ରହଣ କରିଥିଲେ । ଏହାଙ୍କ ପିତାଙ୍କ ନାମ ଶ୍ୟାମସୁନ୍ଦର ଦାସ ଓ ମାତାଙ୍କ ନାମ ସୁନାଦେଈ । ଏହାଙ୍କ ଗୃହ କଣ୍ଟାବଣିଆ ହରେକୃଷ୍ଣପୁର ଗ୍ରାମରେ । ବାଲ୍ୟ ଶିକ୍ଷା ହରେକୃଷ୍ଣ ପୁରରେ ଘରେ ଓ ୧୮୯୪ ରେ ପ୍ରଥମେ ପି, ଏମ୍, ଏକାଡେମି ତତ୍ପରେ କଲେଜିଏଟରେ ଅଧ୍ୟୟନ । ୧୮୯୮ ରେ ଏଣ୍ଟ୍ରାନ୍ସ, ୧୯୦୦ ରେ ଏଫ୍, ଏ, ୧୯୦୨ ରେ ବି, ଏ. ପାଶକରି ବି, ଏଲ ଓ ଏମ୍. ଏ ର ପାଠ୍ୟ ସାଙ୍ଗକଲେ, ମାତ୍ର ପରୀକ୍ଷାରେ ଯୋଗଦାନ କଲେ ନାହିଁ । ପଣ୍ଡିତ ଗୋପବନ୍ଧୁ ଦାସଙ୍କ ସହିତ ଯୋଗଦେଇ Central Young Utkal Association

କରିଥାଅ ଯେବେ ଅତଳର ଆଶ । ଅନୁତପ୍ତ ହେଲେ ହେବ ଉଲ୍ଲାସ ॥



ଲେଫ୍‌ଟେନେଣ୍ଟ ସଂଗ୍ରାମକେଶରୀ ରାୟ୍

ସ୍ଥାପନ କଲେ ଓ ୧୯୦୫ ରେ ମୁକୁର ନାମକ ମାସିକ ପତ୍ରିକାର ସମ୍ପାଦକ ହୋଇ ସାହିତ୍ୟର ଉନ୍ନତି ପ୍ରୟାସୀ ହେଲେ । ଏ ମହାଶୟ ଓ ପଣ୍ଡିତ ଗୋପବନ୍ଧୁଙ୍କ ଯତ୍ନଯୋଗୁଁ କଲିକତା ବିଶ୍ୱବିଦ୍ୟାଳୟରେ ଭର୍ଣ୍ଣାକ୍ୟୁଲର ପରୀକ୍ଷା ସ୍ୱୀକୃତ ହେଲା । ୧୯୧୬-୨୦ ପର୍ଯ୍ୟନ୍ତ ଲେଜିସ୍ଲେଟିଭ୍ କାଉନ୍ସିଲ ଓ ୧୯୨୦ ୨୪ ପର୍ଯ୍ୟନ୍ତ ଏସେମ୍ବ୍ଲିର ମେମ୍ବର ଥାଇ ଉତ୍କଳର ବିଭିନ୍ନ ବିଗରେ ଉନ୍ନତିପାଇଁ ଯଥାସାଧ୍ୟ ଯତ୍ନକରିଥିଲେ । ପିନ୍ଧ ଭୂମରେ ଓଡ଼ିଆଶିକ୍ଷା ପ୍ରଚଳନ ପାଇଁ ଏହାଙ୍କର ଯତ୍ନ ସାମାନ୍ୟ ନୁହେ । ଉତ୍କଳ ସମ୍ମିଳନୀର ଆରମ୍ଭଠାରୁ ଅଦ୍ୟାବଧି ବିଭିନ୍ନ ବିଭାଗରେ କାର୍ଯ୍ୟକରି ଯଶସ୍ୱୀ ହୋଇଅଛନ୍ତି । ଅନୁଗୁଳରେ ଶିକ୍ଷାବିସ୍ତାର ପାଇଁ ଚେଷ୍ଟା ଓ ସେଠାରେ ଉଚ୍ଚ ଇଂରାଜୀ ବିଦ୍ୟାଳୟ ସ୍ଥାପନ, ଓଡ଼ିଶାରେ ଇଞ୍ଜିନିଅରିଂ ସ୍କୁଲ ସ୍ଥାପନ ମୂଳରେ ଏ ମହାଶୟଙ୍କର ଅଦମ୍ୟ ଉଦ୍ୟମ ଓ ଅକ୍ଳାନ୍ତ ଶ୍ରମ ବିଦ୍ୟମାନ । ୧୯୦୮ ରେ ଦୁର୍ଭିକ୍ଷ ଶାନ୍ତିପାଇଁ ଅଶାତୀତ ଯତ୍ନ କରିଥିଲେ । କଟକ ପ୍ରିଣ୍ଟିଂକୋମ୍ପାନୀର ଡିରେକ୍ଟର, ଓଡ଼ିଆ ଏଥେଲେଟିକ ଏସୋସିଏସନର ସେକ୍ରେଟରୀ କାର୍ଯ୍ୟ ସୁଚାରୁରୂପେ ନିର୍ବାହ କରିଥିଲେ । ସମ୍ପ୍ରତି ଉତ୍କଳ ସଙ୍ଗୀତ ସମାଜର ପ୍ରେସିଡେଣ୍ଟ ଓ ଦେଶ ଏବଂ ସାହିତ୍ୟର ଉନ୍ନତି କଳ୍ପେ ଯଥାସାଧ୍ୟ ଯତ୍ନ କରୁଅଛନ୍ତି । ଏହାଙ୍କର ସାହାଯ୍ୟରେ ଅନେକ ଦରିଦ୍ର ଛାତ୍ର ସ୍କୁଲ ଓ କଲେଜରେ ଅଧ୍ୟୟନ କରି ଯଶସ୍ୱୀ ହୋଇଅଛନ୍ତି । ଉତ୍କଳର ବିଭିନ୍ନ ବିଗରେ ଉନ୍ନତି ପ୍ରୟାସୀ ହୋଇଥିଲେହେଁ ଦେଶସେବା ପାଇଁ ଏହାଙ୍କର ଅଦମ୍ୟ ଉତ୍ସାହ, ଅକ୍ଳାନ୍ତ ଶ୍ରମ, ଅକାତରେ ଅର୍ଥ ବ୍ୟୟ ପ୍ରଭୃତି ସର୍ବଥା ପ୍ରଶଂସନୀୟ । ଏହିପରି ଉତ୍କଳର ମୁଷ୍ଟିମେୟ କୃତୀ ସନ୍ତାନଙ୍କ ଯୋଗୁଁ ଆଜ ଉତ୍କଳବାସୀଙ୍କ ବହୁଦିନ ପୋଷିତ ଆଶା କେତେକାଂଶରେ ଫଳବତୀ ହୋଇଅଛି । ସେ ସର୍ବେଣ୍ଟସ୍ ସେବକ ସମାଜ ଓ ଉତ୍କଳ ସାହିତ୍ୟ ସମାଜର ସହକାରୀ ସଭାପତି, ଓଡ଼ିଶା ପିପଲସ୍ ଏସୋସିଏସନର ସଭାପତି, ପାଟନା ବିଶ୍ୱବିଦ୍ୟାଳୟର ସଦସ୍ୟ (Fellow) ଓ ବିଶ୍ୱବିଦ୍ୟାଳୟର ଅଧ୍ୟକ୍ଷସଭା ( Syndicate ) ର ମେମ୍ବର, Chamber of Commerce ର ଭାଇସ ପ୍ରେସିଡେଣ୍ଟ, ପି. ଏମ୍. ଏକାଡେମିର ମ୍ୟାନେଜିଂ କମିଟିରମେମ୍ବର ଓ ( The Oriya ) ନାମକ ସାପ୍ତାହିକ ଇଂରାଜୀ ପତ୍ରିକାର ସମ୍ପାଦକ ଥିଲେ ।

# ଓଡ଼ିଶାର ବନ୍ୟା

ବନ୍ୟା ଉତ୍କଳର ଚିରରୋଗ । ଏଥିଯୋଗୁଁ ଲକ୍ଷ ଲକ୍ଷ ମାଣ ଉର୍ବରଭୂମି ବାଲିଚର ହୋଇ ଯାଉଛି । ସହସ୍ର ଲୋକ ନିରନ୍ନ, ବସ୍ତ୍ରହୀନ ଓ ଅସ୍ଥିକଙ୍କାଳସାର ହୋଇ ଅକଥନୀୟ ଯନ୍ତ୍ରଣା ଭୋଗ କରୁଛନ୍ତି ।

କେପ୍ଟେନ ହେରିସ୍ ଓ ମି: ଜୋସେଫ୍ ମିଲ୍ସଙ୍କ ପ୍ରଦତ୍ତ ୧୯ଶ ଶତାବ୍ଦିରେ ବନ୍ୟାର ବିବରଣ:—

୧୮୩୧-୩୨—ପିପ୍ଳିମୁଣ୍ଡେଇ ଅଞ୍ଚଳରେ ଭୀଷଣ ବନ୍ୟା । ସମୁଦ୍ରରୁ ଝଡ଼ ତୋଫାନ ଆସି ପିପ୍ଳିମୁଣ୍ଡେଇ ପର୍ଯ୍ୟନ୍ତ ମାଡ଼ି ଯାଇଥିଲା । ଅନେକ ଅଞ୍ଚଳ ଭାସି ଯାଇଥିଲା ।

୧୮୫୬-୫୭—ଏ ବର୍ଷ ୧୫ । ୨୦ ଦିନ ବ୍ୟାପି ବନ୍ୟା ରହି ଯଥେଷ୍ଟ କ୍ଷତି କରିଥିଲା ।

୧୮୫୭-୫୮—ପୂର୍ବ ବର୍ଷର ବନ୍ୟା ଅପେକ୍ଷା ଏହା ଅଧିକ ଭୟଙ୍କର ଥିଲା ଓ ଅନେକ କ୍ଷତି କରିଥିଲା ।

୧୮୬୬-୬୭—୧୮,୪୨,୫୦୧ ଏକର ଶସ୍ୟରୁ ପ୍ରାୟ ⅔ ଧୋଇ ଯାଇଥିଲା ।

୧୮୮୫-୮୬—ପ୍ରଚୁର ବୃଷ୍ଟି ହେତୁ ସମୁଦ୍ରରୁ ପାଣି ମାଡ଼ି ଆସି ବହୁତ କ୍ଷତି କରିଥିଲା ।

୧୮୯୫-୯୬—ଏ ବର୍ଷ ବନ୍ୟା ପୂର୍ବପରି ସେତେ କ୍ଷତି କରି ନ ଥିଲା ।

୨୦ଶ ଶତାବ୍ଦିରେ ୧୯୨୭ ର ବୈତରଣୀ ବନ୍ୟା ଓ ୧୯୩୩ ର କାଠଯୋଡ଼ି ବନ୍ୟା ବିଶେଷ ଭୟଙ୍କର । ଏପରି ବନ୍ୟା କେବେ ଦେଖାଯାଇ ନ ଥିଲା । ଓଡ଼ିଶାର ପ୍ରତ୍ୟେକ ଅଞ୍ଚଳ ଏହି ବନ୍ୟାର ଦାଉ ଭୋଗ କରିଛି । କେବଳ କଟକ ଓ ପୁରୀରେ ୩୪ ଲକ୍ଷ ଏକର ଜମିର ଫସଲର ପତ୍ତା ମିଳି ନ ଥିଲା । କେତେ ଗୋରୁ ଗାଈ ଜଳରେ ଭାସିଗଲେ । କେତେ ସୁନା, ରୂପା, ଧାନ ନଷ୍ଟ ହେଲା ତାହାର ଇୟତ୍ତା ନାହିଁ । ଏତଦ୍‌ବ୍ୟତୀତ ୨ ଜଣ ମନୁଷ୍ୟ ଭାସି ଯାଇଥିଲେ ବୋଲି ସରକାର ଜଣାଇ ଥିଲେ । ଧୋଇଥିବା ଅଞ୍ଚଳମାନଙ୍କର ଦୃଶ୍ୟ ଯେ ସ୍ୱଚକ୍ଷୁରେ ଦେଖିଛି ତାର ଚକ୍ଷୁରୁ ଅଶ୍ରୁ ଧାର ବହୁଛି ।

ସ୍ନେହବଳେ ଦମି ଶତ୍ରୁ ନିକର । ଶାନ୍ତି ଆଧିପତ୍ୟ କର ବିସ୍ତାର ।

## ଭୂମିକର

ପୂର୍ବେ ରାଜାମାନେ ପ୍ରଜାଙ୍କଠାରୁ କରଗ୍ରହଣ କରି ତାହା ଧନସମ୍ପ ପ୍ରଜାଙ୍କ ହିତ କାର୍ଯ୍ୟରେ ବ୍ୟୟ କରୁଥିଲେ । ମହାଭାରତ ଯୁଗରେ ଜମିର ଉତ୍ପନ୍ନ ଦ୍ରବ୍ୟ ବ୍ୟୟ ପରେ ଲବ୍ଧବସ୍ତୁର ଅଂଶର ⅙ କେବଳ ରାଜସ୍ୱ ରୂପେ ନିଆ ଯାଉଥିଲା । ୨୨୭-୨୩୮ ( ବ୍ରଜକେଶରୀ )ରେ ବାଟି ପ୍ରତି କର ୫ କାହାଣ କଉଡ଼ି ଥିଲା ଅର୍ଥାତ୍ ଟ ୧ । ବା ମାଣ ପ୍ରତି ଟ ୦ ⁄ ।୨୫୩-୨୮ ( ବସନ୍ତକେଶରୀ ) ରେ ମାଣ ପ୍ରତି ଟ ୦ । ଓ ସୁଜନ କେଶରୀଙ୍କ ଅମଳରେ ମାଣ ପ୍ରତି ଟ ୦ ⁄ । କିନ୍ତୁ ଆଜିକାଲି ମାଣ ପ୍ରତି ହାରାହାରି ଟ ୨ ୫ ଆଦାୟ ହେଉଛି । ଏତଦ୍‌ବ୍ୟତୀତ ପ୍ରତ୍ୟେକ ସହରବାସୀଙ୍କ ହାରାହାରି କର ଟ ୮।୶୭ ଓ ପ୍ରତ୍ୟେକ ମଫସଲବାସୀଙ୍କ ହାରାହାରି କର ଟ ୪ ୩୶ । ହାରାହାରି ବାର୍ଷିକ ଆୟ ପ୍ରତ୍ୟେକ ଲୋକର ଟ ୪୦-୫୦ ମଧ୍ୟରେ, ମାତ୍ର କର ଆୟର ୧୨ ଭାଗରୁ ଭାଗେ । ଓଡ଼ିଶାର ମୋଟ ଆୟ ୧୩ ୭ ଲକ୍ଷ ଟଙ୍କା ମଧ୍ୟରୁ ପ୍ରାୟ ୧୫ଲକ୍ଷ ଟଙ୍କା ଲାଭଜନକ ଉଦ୍ୟୋଗରେ ବ୍ୟୟିତ ହୋଇ ଜାତିର ଉନ୍ନତି ଓ ସଭ୍ୟତା ବୃଦ୍ଧି ଦିଗରେ ଯାହା ବ୍ୟୟ ହେଉଛି ତାହା ସ୍ୱଳ୍ପ ।

ବିଭିନ୍ନ ଦେଶର ଭୂମିକର ହିସାବ ନିମ୍ନରେ ପ୍ରଦତ୍ତ ହେଲା ।

ଦେଶ—ସରକାରଙ୍କର ସମୁଦାୟ ଆୟ ଭୂକର କେତେ ଅଂଶ ।

| | | |
|---|---|---|
| ଇଂଲଣ୍ଡ | ୦·୩୦ | ଶତକଡ଼ା |
| ଇଟାଲି | ୨୦·୪୨ | ,, |
| ଜାପାନ | ୫·୦୮ | ,, |
| ଅଷ୍ଟ୍ରେଲିଆ | ୪·୭୭ | ,, |
| ଭାରତବର୍ଷ | ୨·୭୫ | ,, |
| ଓଡ଼ିଶା | ୪୦·୪ | ,, |

## ଉତ୍କଳର ବାଣିଜ୍ୟ ।

ପ୍ରାଚୀନକାଳରେ ଉତ୍କଳ ବାଣିଜ୍ୟ ହେତୁ ଖୁବ୍ ସମୃଦ୍ଧିଶାଳୀ ଥିଲା । ସେତେବେଳେ ଏହାର ସନ୍ତାନମାନେ ସିଂହଳ, ସୁମାତ୍ରା, ଯାଭା, ବାଲିଦ୍ୱୀପ, ବ୍ରହ୍ମଦେଶ, ମଲକସ୍, ପେଗୁ କାମ୍ବୋଡ଼ିଆ, ଶ୍ୟାମ, ଚୀନ ଓ ଆଫ୍ରିକା ମହାଦେଶର ପୂର୍ବ ଉପକୂଳବର୍ତ୍ତୀ ରାଜ୍ୟମାନଙ୍କରେ ଓ ମାଡ଼ାଗାସ୍କାର ଦ୍ୱୀପରେ ବାଣିଜ୍ୟ ଚଳାଇଥିଲେ ବୋଲି ପ୍ରାଚୀନ ଇତିହାସ, ସ୍ଥାପତ୍ୟ, ସାହିତ୍ୟ ଓ ଉପନିବେଶ ପ୍ରଭୃତିରୁ ପ୍ରମାଣ ମିଳେ । ସେ ସମୟରେ ବସ୍ତ୍ର ବ୍ୟବସାୟ କଳିଙ୍ଗର ପ୍ରଧାନ ବ୍ୟବସାୟ ଥିଲା । କେତେ ଯେ ବଣିଜ ପଦାର୍ଥ ଏ ଦେଶରେ ପ୍ରସ୍ତୁତ ହୋଇ ସୁଦୂରକୁ ପ୍ରେରିତ ହେଉଥିଲା ତାହା ଅନୁମାନ କରାଯାଇ ନ ପାରେ । ଖ୍ରୀଷ୍ଟପୂର୍ବ ବ ୮୦୦ ର୍ଷ ପୂର୍ବରୁ ୧୬୦୦ ଶତାବ୍ଦୀର ମଧ୍ୟଭାଗ ପର୍ଯ୍ୟନ୍ତ ଏହାର ପ୍ରଭାବ ନ୍ୟୂନ ହୋଇ ନ ଥିଲା । ୧୭ଶ ଶତାବ୍ଦୀରେ ଓଡ଼ିଶାର ବାଣିଜ୍ୟ ପ୍ରତି ଆକୃଷ୍ଟ ହୋଇ ଫରାସୀ, ଦିନାମାର, ପର୍ତ୍ତୁଗୀଜ, ଓଲନ୍ଦାଜ ଓ ଇଂରେଜମାନେ ବାଲେଶ୍ୱର ଠାରେ କୁଣ୍ଠି ହୋଇଥିଲେ । ମୁସଲମାନ ଓ ମରହଟ୍ଟାଙ୍କ ରାଜତ୍ୱ ସମୟରେ ଦେଶରେ ଅଶାନ୍ତି, ଉପଦ୍ରବହେତୁ ଏହି ସମୃଦ୍ଧିଶାଳୀ ବାଣିଜ୍ୟପ୍ରତି କାହାରି ଦୃଷ୍ଟି ପଡ଼ିଲା ନାହିଁ । ତେଣୁ ତାହା କ୍ରମଶଃ ଲୋପ ପାଇବାକୁ ବସିଲା । ପୁଣି ବିଦେଶୀୟମାନେ ବଙ୍ଗୋପସାଗରରେ ବାଣିଜ୍ୟ ଆରମ୍ଭ କରିବା ସମୟରେ ସେମାନଙ୍କ ମଧ୍ୟରୁ ଅନେକେ ଜଳଦସ୍ୟୁ ବୃତ୍ତି କରିଥିଲେ । ସେମାନଙ୍କ ଦାଉରେ ବ୍ୟବସାୟୀମାନେ ଆଉ ବୋଇତ ଚଳାଇବାକୁ ସାହସୀ ହେଲେ ନାହିଁ । ଏହା ଛଡ଼ା ପ୍ରାଚୀ, ଚନ୍ଦ୍ରଭାଗା, ସୁବର୍ଣ୍ଣରେଖା ପ୍ରଭୃତି ନଦୀମୁହାଣମାନ ପୋତି ହୋଇଗଲା ଓ ବନ୍ଦରରେ ବୋଇତ ରହିବାର ଅନୁପଯୁକ୍ତ ହେଲା । ହୁଗୁଳୀ ବାଟ ଖୋଲା ଯିବାରୁ ବାଲେଶ୍ୱର ବାଟ ବନ୍ଦ ହୋଇଗଲା । ଏଣୁ ବାଣିଜ୍ୟ ଏକାବେଳକେ ନଷ୍ଟ ହେଲା । ଅନେକ ଐତିହାସିକମାନେ କହନ୍ତି ଇଂରେଜମାନେ ଓଡ଼ିଶାର ବସ୍ତ୍ରଶିଳ୍ପ, ଲବଣଶିଳ୍ପର ଧ୍ୱଂସପାଇଁ ନିମ୍ନଲିଖିତ ଉପାୟମାନ ଅବଲମ୍ବନ କରିଥିଲେ ।

"(୧) ବିଲାତର ମୁକ୍ତ ବାଣିଜ୍ୟକୁ ଭାରତରେ ବଳାତ୍କାରରେ ଚଳାଇବା ।

(୨) ବିଲାତରେ ଭାରତୀୟ ମାଲଉପରେ ଅଧିକ ଶୁଳ୍କ ବସାଇବା ।

(୩) ଭାରତର ଅନ୍ତର୍ବାଣିଜ୍ୟ ଉପରେ ଯାଉାକର ଓ ଅନ୍ୟ କରମାନ ବସାଇବା ।

(୪) ଭାରତର କଞ୍ଚାମାଲ ଅନାକରରେ ବିଲାତକୁ ରପ୍ତାନି ହେବାପାଇଁ ପ୍ରୋତ୍ସାହ ଦେବା ।

ଇତର ପ୍ରଶଂସା ନ କର ଦାଣ୍ଡେ । ସେ କଥା ସୁନ୍ଦର ଅନ୍ୟର ତୁଣ୍ଡେ ॥

(୫) ଭାରତୀୟ କାରିଗରମାନଙ୍କ ଉପରେ ନାନାପ୍ରକାର ବାଧା ଓ ପ୍ରତିବନ୍ଧକ ଦେଇ ସେମାନଙ୍କ ଦବାଇ ଦେବା ।

(୬) କୋମ୍ପାନୀର ମୂଳଧନକୁ ପୂର୍ଣ୍ଣରୂପେ କାର୍ଯ୍ୟରେ ଲଗାଇବା ।

(୭) ଭାରତୀୟ ଶିଳ୍ପୀମାନଙ୍କୁ ଆପଣା ଆପଣା ଶିଳ୍ପ କୌଶଳ ଓ ଭେଦ ବତାଇବାକୁ ବାଧ୍ୟ କରାଇବା ।"

( Hand Spinning and Hand Weaving )

ଇଷ୍ଟଇଣ୍ଡିଆ କମ୍ପାନୀର କର୍ମଚାରୀମାନେ ନିମ୍ନଲିଖିତ ଉପାୟମାନ ଅବଲମ୍ବନ କରି ଦେଶୀୟ ବାଣିଜ୍ୟର ମୂଳଦେଶକୁ ହାଣିବାକୁ ଚେଷ୍ଟା କରୁଥିଲେ ।

" (୧) ଯେଉଁଠାରେ କମ୍ପାନୀର ଗୁମାସ୍ତାମାନେ ପ୍ରବେଶ କରି ସୀମାତୀତ ଅତ୍ୟାଚାର କରୁଥିଲେ ସେଠାରେ ଅନ୍ୟ ବେପାରୀମାନଙ୍କ ନିମନ୍ତେ କଡ଼ା ନିୟମ ଥିଲା ଯେ ଗଭର୍ଣ୍ଣରଙ୍କ ବିନାନୁମତିରେ ସେମାନେ ମାଲ କିଣା ବିକା କରିବାପାଇଁ ନିଜ ନିଜର ଗୁମାସ୍ତା ପଠାଇ ପାରିବେ ନାହିଁ ।

(୨) ତନ୍ତୀମାନଙ୍କଠାରୁ ବଳାତ୍କାର ପୂର୍ବକ ଲେଖି ନେଇଥିବା ମୁଚୁଲିକା ଫଳରେ ସେମାନଙ୍କ ଲୁଗା ନେଇ ଗୁମାସ୍ତାମାନେ ମନଇଚ୍ଛା ମୂଲ୍ୟ ଦେଉଥିଲେ । ତନ୍ତୀମାନଙ୍କର ଆପତ୍ତି ଶୁଣିବାକୁ ଆଉ କେହି ନ ଥିଲେ ।

(୩) ତନ୍ତୀମାନଙ୍କୁ ମାଡ଼ ଓ ଜରିମାନା ପ୍ରଭୃତି ନାନାପ୍ରକାର ଦଣ୍ଡ ଦିଆଯାଉଥିଲା ।

(୪) ନିଜେ ବେପାର କରୁଥିବା ସୌଦାଗର ଓ ତନ୍ତୀମାନଙ୍କଠାରୁ ଜବରଦସ୍ତି ମାଲ ଛଡ଼ାଇ ନିଆଯାଉଥିଲା ।

(୫) ଦେଶର ଅଭ୍ୟନ୍ତରିଣ ବେପାର ଉପରେ ଖୁବ୍ ଉଚ୍ଚ ବାଧକ କର ବସା ହୋଇଥିଲା ।"

ଉପରୋକ୍ତ କାରଣ ମାନଙ୍କରୁ ବସ୍ତ୍ରଶିଳ୍ପର ଅବନତି ଘଟିଲା ଓ ସେହି ସଙ୍ଗେ ମା କମଳା ଉତ୍କଳ ଭୂମି ପରିତ୍ୟାଗ କଲେ ଏବଂ ଦେଶ ପରମୁଖାପେକ୍ଷୀ ହେଲା ।

ମାନନୀୟା ଜନନୀ ମହାରାଣୀ ଭିକ୍ଟୋରିଆଙ୍କ ଘୋଷଣା ଫଳରୁ ଦେଶ ଦିନକୁଦିନ ଉନ୍ନତି ମାର୍ଗରେ ଅଗ୍ରସରହେଉଛି ଓ ମାନନୀୟ ଲର୍ଡ଼ କର୍ଜନଙ୍କ ନଷ୍ଟଶିଳ୍ପର ପୁନରୁଦ୍ଧାର ଆଇନ ଭାରତର ପ୍ରଭୂତ ଉନ୍ନତିର ସାଧନ କରୁଅଛି ।



## ଓଡ଼ିଆ ଭାଷାରେ କେତେକ ଦେଶଜ ଶବ୍ଦ

| ଦେଶଜଶବ୍ଦ | ଅର୍ଥ | ଦେଶଜଶବ୍ଦ | ଅର୍ଥ |
|---|---|---|---|
| ଅକଳ | କଠିନ ଅବସ୍ଥା | ଅଖରା | ଅନ୍ଧାରା |
| ଅଖାଡ଼ୁଆ | ବିବେଚନାଶୂନ୍ୟ | ଅଟକଳ | ଅନୁମାନ |
| ଅଟକାଳି | ଯାଉ | ଅଟପା | ବିଶୃଙ୍ଖଳ |
| ଅଡ଼ପା | ଅସୁନ୍ଦର | ଅଣକାଳୀ | ଗାଡ଼ିରେ ଅଟକାଇବାର ଖିଲ |
| ଅଧାମ | ସବୁଠି | ଅନାଡ଼ି | ନିର୍ବୋଧ |
| ଅପସର | ବଡ଼ତକିଆ | ଅରମା | ଅବଜ୍ଞା |
| ଅଲଅର | ସ୍ନେହାସ୍ପଦ | ଅସନା | ଘୃଣିତ |
| ଅହଳ୍ୟା | ଶତ୍ରୁତା | ଅଉଣ୍ଡି | ଦଉଡ଼ି |
| ଥକଚ | କଚକଣା | ଅଡ଼ଚିଅ | ଢ଼ଗର |
| ଅଣ୍ଡୁଆ | ଅଖାଡ଼ୁଆ | ଅତାଗମ | ଅଗାଧ |
| ଅପସରା | ଅଭିମାନ | ଅସପତ | ସ୍ନେହ |
| ଉଥଲ | ଶସ୍ତା | ଉଖୁଡ଼ା | ନିଷ୍ଟଦ୍ରବ୍ୟ |
| ଉଙ୍ଗେଇବା | ଢ଼ୁଲାଇବା | ଉଚ୍ଛୁଣିକା | ଏହିକ୍ଷଣି |
| ଉପରଣ | ଓଢ଼ଣ ବସ୍ତ୍ର | ଉଲୁରି | ଅଜ୍ଞାପକ |
| ଓକର | ଗୃହଛିଦ୍ର | ଓଡ଼ିଆଣୀ | କଟିମେଖଳା |
| ଓର | ସୁବିଧା | ଓଲଡ଼ | ଡ଼ହର |
| କତି | ପାଖ | କାଉଲି | କଲବଲ |
| କାଠିଲଗି | ରଜାଙ୍କଦନ୍ତଧାବନ | କାବା | ଚମତ୍କୃତ |
| କୋଡ଼ମେଇ | ଧାନ ରକ୍ଷାସ୍ଥାନ | କୋହ | ଦୁଃଖ |
| ଖଇଚ୍ଛ | ଦରପନ୍ଦିଆ | ଖମା | ଶାଲ |
| ଖରଡ଼ | ଗାଲିଗୁଲ | ଖଳକାର | ସାପୁଆକେଳା |
| ଖାଣ | ଯଥାର୍ଥ | ଖୁଣ୍ଟା | ଅପବାଦ |
| ଖେପ | ଥର | ଖୋଇ | ଅଭ୍ୟାସ |
| ଗତରକୋଢ଼ୀ | ଗଣ୍ଠିଛଡ଼ା | ଗାଲଭୁର | ପିଠି |
| ଗୁଇଁ ଗୁଇଁ | ଅସ୍ପଷ୍ଟସ୍ୱରକ୍ରନ୍ଦପ୍ରକାଶ | ଗେଟମା | ବାଙ୍ଗର |
| ଗୋଟିକା | ଖୁଅଲଡ଼ୁ | ଗୋଳଅ | କପଟ |
| ଘତ | କୌଶଳ | ଘମାଘୋଟ | ସମାରୋହ |

| | |
|---|---|
| ଖାନ୍ଦୁ—ଖଳ | ଘାବର—ଗ୍ଲାନଅ |
| ଚହଟନା—ଚୁମ୍ବାଲ | ଚଳ—ବଳକ୍ |
| ଚୁର୍ଲପଖାଳ—ସଜପଖାଳ | ଘୁଣ୍ଠି—ବାଲୁଙ୍ଗି |
| ଚେଙ୍ଗ—ଦାନ | ଛନକା—ଭସ୍ମ |
| ଚୌପଦ—ଯେ ବୋଲକରେ | ଜନ୍ତାଳ—ଦେବାଙ୍କ ନିକଟରେ ଅନୁଷ୍ଠିତ ଭୋଜ |
| ଝଁଟରବା—ବଙ୍କାବା | ଟକଳା—ଓଲଅ |
| ଟାକର—ପଗାଭଙ୍ଗ | ଟିଣା—ରଗୁଅ |
| ଟୋହବା—ଉଦ୍ବେଇବା | ଠଣା—ତାକ |
| ଡ଼ବଡ଼ବା—ଡ଼ମ୍ବା | ଡ଼ଙ୍ଗର—ଦାସ |
| ଢେଲଙ୍ଗଯିବା—ନୋଇଁହେବା, ଢାଳେ—ଥରେ | |
| ଢୋକ—ଗିଳବା | ତଡ଼ପ—ସାଦାପୋତ |
| ତେଲାଉଣି—ଗଳମ | ଥାଙ୍କ୍ୟା—ସଞ୍ଚିତ ଧନ |
| ଦକ୍ଷତ—ମଶାଲ | ଧଡ଼ସି—ଶୀଘ୍ର |
| ଧମୁସା—କୁସି ତପୁକୁଷ | ଧୋକଡ଼ା—ଚଟ |
| ନକଟେ—କଷ୍ଟ | ନଟଖଟ-ଅଡ଼ୁଅ |
| ନହସ—ଛଳ | ନଥଁ ଗିଲା—ନପଟ ଚିହ୍ନୁଅ |
| ନେଉର-ଅଳଅ | ପଇଠ—ଭର |
| ପନୀର—ସୁବାସିତ ଜଳ | ପଟ୍ଟୈଛା—ସରଦାର |
| ପରାମୁଣ୍ଡା—ଅତସ୍ନେହରେ ଅନ୍ୟର ଅନଷ୍ଟକୁ ନିଜେ ମୁଣ୍ଡାଇନେବା; | ପାଖର—ଦୁଷ୍ଟ<br>ପୋକର—ଦୁଣ୍ଟିଅ |
| ଫଲଣା—ଅମୁକ | ଫଧର ଫାଟି—ସନ୍ଧୁର ମାରବା |
| ଫୁରୁଣା—ଆନନ୍ଦ | ଫେଟା—ବସ୍ତ୍ର |
| ବଖେଡ଼—କଳହ | ବାଇବଛ—ଅତବ୍ୟସ୍ତ |
| ବାଇସ—ଠିକଣା | ବାସୁର—ଫଗୁଅ |
| ବଣାକାଠି—ଏକପ୍ରକାର ତରକୁ, ବଣଲପାଡଅ—ଦୁଷ୍ଟ | |
| ବେଣ୍ଟକାର—ବ୍ୟାଧ | ବୋକ—ଚୁମ୍ବନ |
| ଭୁରୁକୁଣ୍ଡା—ହୁଣ୍ଡା | ମଗର—ଅବାଧ |
| ମଢ଼ୁଅଳ—ବସ୍ତ୍ରବିଶେଷ | ମୋଗଡ଼ା—ମଣୋହ |
| ମୋଟ—ଠମାଟ | ଲଟଲୁଗା—ପାଲଟବେସ |
| ଷୋଡ଼ୁଅ—ଷେତେକୁ ପାଣି-ବହିବାର ପାଇ | ସନ୍ତ୍ରାନ—ସଞ୍ଚାଳ<br>ସଲ—ମନ୍ଦ |
| ସିହାର—ଭୂଷଣ | ସେରନ୍ତା—ଅଲଅର |

| | |
|---|---|
| ହମହମ—ଉଚ୍ଛନ୍ନ | ହଲକ—ଧୈର୍ଯ୍ୟ |
| ହାଇଁପାଇଁ—ଆକୁଳ | ହାଳକ—ଅପେକ୍ଷା |
| ହାଲୋଳ—କୋଳାହଳ | ହେଟ—ନମ୍ର |
| ହେଣ୍ଟି—କଷବାଦ୍ୟ | ହେରକା—ପ୍ରଭୃତ |

## ଚାଞ୍ଚଲ୍ୟ

୧—୧୪୫୦ ଖ୍ରୀଷ୍ଟାବ୍ଦରେ ଜର୍ମାନୀର ଗୁଟେନ୍‌ବର୍ଗ ନଗରରୁ ପ୍ରେସଦ୍ୱାରା ସର୍ବପ୍ରଥମେ ପୁସ୍ତକ ମୁଦ୍ରିତ ହୋଇଥିଲା ।

୨—ପୃଥିବୀର ସର୍ବପ୍ରଥମ ଦୈନିକ ସମ୍ବାଦପତ୍ର ୧୬୧୫ ଖ୍ରୀଷ୍ଟାବ୍ଦରେ ଜର୍ମାନୀରୁ ପ୍ରକାଶିତ ହୋଇଥିଲା ।

୩—ପୃଥିବୀର ସର୍ବପ୍ରଥମ ଖବର କାଗଜ ୧୪୫୭ ଖ୍ରୀଷ୍ଟାବ୍ଦରେ ଜର୍ମାନୀରୁ ପ୍ରକାଶିତ ହୋଇଥିଲା । ସେହି ପ୍ରଥମ ପ୍ରକାଶିତ ସମ୍ବାଦ ପତ୍ରର ନାମ "ନୁରେମ୍ବର୍ଗ ଗେଜେଟ" ଅଟେ ।

୪—ଜର୍ମାନ ଦେଶରେ ଅଫିମ ମଞ୍ଜିରୁ ଏକପ୍ରକାର ଦୁଧ ବାହାର କରିଯାଇ ମାତୃସ୍ତନ ଅଭାବ ଶିଶୁଙ୍କୁ ଦିଆ ଯାଉ ଅଛି । ସେଥିରେ ଅଫିମର କୌଣସି ଗନ୍ଧ ନାହିଁ । ପିଲା ମାନେ ସେହି ଦୁଧ ପିଇ ଜୀବନ ଧାରଣ କରୁଛନ୍ତି ।

୫—ଲସ ଏଞ୍ଜେଲସ୍ ନାମକ ସ୍ଥାନରେ ହୈଷ୍ୱ ନାମକ ଜଣେ ଲୋକର ବୟସ ୨୩ ବର୍ଷ, ଉଚ୍ଚତା ୭ ଫୁଟ ୧ ଇଞ୍ଚ ଓ ଓଜନ ୬୮୭ ପାଉଣ୍ଡ ବା ମ ୧ ହଣ ୩୩ ସେର । ରିଙ୍ଗଲିଙ୍ଗ ସର୍କସର ମିସ୍ ଇମା ବେଲଙ୍କର ଓଜନ ପୌନେ ୮ ମହଣ ବା ୭ ମହଣ ୩୦ ସେର ।

୬—ସୁଇଜାରଲ୍ୟାଣ୍ଡରେ ରେଲପଥବାଲା ସେତୁଟି ଏପରି ଭାବରେ ନିର୍ମିତ ଯେ, ଆବଶ୍ୟକ ସମୟରେ ଭାଙ୍ଗି ରଖାଯାଏ । ଦାରୁଣ ଶୀତରେ ବରଫ ପଡ଼ି ସେହି ସେତୁ ଧ୍ୱଂସ ହୋଇଯାଏ ବୋଲି ତାହାକୁ ଭାଙ୍ଗି ବରଫର ଦାଉରୁ ରକ୍ଷା କରି ହୋଇଥାଏ ।

୭—କଲୋରାଡୋ ନଦର ୫ଶତ ଫିଟ ଉପର ଦେଇ ଶୂନ୍ୟ ପଥରେ ନଦୀ ପାର ହେବାର ବ୍ୟବସ୍ଥା ଅଛି । ଗୋଟିଏ ଏକ ତାରବାହିତ ଯାନ ଏ ପାରରୁ ସେ ପାରକୁ ପ୍ରତ୍ୟହ ବହୁସଂଖ୍ୟକ ଶ୍ରମିକଙ୍କୁ ପାରାପାର କରିଥାଏ ।

ପ୍ରାଣୀ ମନେ କଷ୍ଟ ନ ଦିଅ କେବେ । ମହାପାପ ତାହା କେବଳ ହେବେ ॥

୮—ଆମେରିକା ନଦୀରେ ଯେ ଜଳଜ ନଳିନୀର ଜନ୍ମ ହୁଏ, ତାହାର ନାମ ପ୍ରସିଦ୍ଧ—ଭିକ୍ଟୋରିଆ ରେଜିଆ । ଏହା ସ୍ୱାଭାବିକ ଆଲୋକ, ବତାସ ଓ ପାରିପାର୍ଶ୍ୱିକ ଅବସ୍ଥାରୁ ବିଚ୍ୟୁତ ହେଲେ ସ୍ୱଳ୍ପରେ ଅତୁଳନୀୟ ସୌନ୍ଦର୍ଯ୍ୟଧର୍ମା ହରାଇ ଦିଏ । ଏଥିପାଇଁ ଏହାର ସୂର୍ଯ୍ୟାଲୋକ ପରିବର୍ତ୍ତେ ଆଣିତ ଓ ଉଷ୍ଣ ଶକ୍ତିବିଶିଷ୍ଟ ବିଦ୍ୟୁଦାଲୋକ ସାହାଯ୍ୟରେ ସୂର୍ଯ୍ୟୋଦୟର ଅଭାବ ଦୂରୀଭୂତ ହୋଇଥାଏ ।

୯—ସ୍କଟଲଣ୍ଡ ରାଜଧାନୀ ଗ୍ଲାସଗୋ ସହର ନିବାସୀ ସାର୍ ଥମାସ୍ ଲିପଟନ୍ ଖାଇବା ଚା'ର ପ୍ରଥମ ପ୍ରଚାରକ ଅଟନ୍ତି ।

୧୦—ଚରିତ୍ର ସୁଗଠିତ ହୋଇଥିଲେ ଜୀବନ ସଂଗ୍ରାମରେ ମନୁଷ୍ୟ କଦାପି ହାରେ ନାହିଁ ।

୧୧—Sir Francis Galton ଅଙ୍ଗୁଳିର ଚିହ୍ନମାନଙ୍କ ଦ୍ୱାରା ମନୁଷ୍ୟଙ୍କୁ ଯେ ( identify ) ଚିହ୍ନି ପାରିଯାଏ, ତାହା ଜଗତର ନିକଟ ଘୋଷଣା କରନ୍ତି ।

୧୨—୧୪ଶ ଓ ୧୫ଶ ଶତାବ୍ଦୀରେ ଏ ଦେଶର ପୁରୁଷ ଓ ନାରୀଗଣ ଛତାଧରି ଆତପତାପ ଓ ବର୍ଷାର ଧାରରୁ ମସ୍ତକ ରକ୍ଷା କରୁଥିଲେ ।

୧୩—ରାଜାମାନେ ମଥାରେ ରଣଟୋପି, ଦେହରେ ଭଲ ଲୁଗା ଓ ଗୋଡ଼ରେ ମଖମଲର ଜୋତା ପିନ୍ଧୁଥିଲେ ।

୧୪—ଏକେଶ୍ୱରବାଦ କୋରାନର ମୂଳମନ୍ତ୍ର । ଈଶ୍ୱରଙ୍କର ସମକକ୍ଷ ବା ଦୋସର କଳ୍ପନା ବା "ଶିର୍କ" ଅପେକ୍ଷା ଗୁରୁତର ପାପ ଇସ୍‌ଲାମର ଚକ୍ଷୁରେ ଆଉ କିଛି ନାହିଁ ।

୧୫—ଇହୁଦୀମାନଙ୍କ ପରି ମୂର୍ତ୍ତି ଓ ଚିତ୍ରଦ୍ୱେଷୀ ଜାତି ଅଳ୍ପ ଦେଖାଯାନ୍ତି ।

୧୬—ଆମେରିକାରେ ବିଜୁଳି ସାହାଯ୍ୟରେ ଏକପ୍ରକାର ଚଳନ୍ତି ରାସ୍ତାର ଆବିଷ୍କାର ହୋଇଅଛି । ସେ ରାସ୍ତାରେ ଯିବା ଆସିବାରେ କୌଣସି ପ୍ରକାର କଷ୍ଟ ହୁଏ ନାହିଁ କିମ୍ବା କୌଣସି ଭୟଭୀତି ହୁଏ ନାହିଁ । ସାଧାରଣତଃ ଘରପାଖ ଦେଇ ଚାରୋଟି ରାସ୍ତା ଯାଇଥାଏ । ପ୍ରଥମଟି ଅଚଳନ୍ତି, ଦ୍ୱିତୀୟଟି ଘଣ୍ଟାରେ ୩ ମାଇଲ, ୩ୟଟି ୬ ମାଇଲ ଓ ୪ର୍ଥ ଟି ୯ ମାଇଲ ହିସାବରେ ଚାଲେ । ଯାହାର କୌଣସି ସ୍ଥାନକୁ ଯିବାର ଥିବ, ସେ ପ୍ରଥମେ ଅଚଳନ୍ତି ରାସ୍ତା ଉପରେ ଯାଇ ଠିଆହେବ । ତତ୍ପରେ ଧୀରେ ୨ ୩ ମାଇଲ ହିସାବରେ ଚାଲୁଥିବା ଚଳନ୍ତି ରାସ୍ତା ଉପରକୁ ଯିବାକୁ ହେବ । ଏହାଠାରୁ ଯଦି ଶୀଘ୍ର ଯିବାର ଥାଏ ତେବେ ୩ୟ ରାସ୍ତାକୁ ଓ ତାଠାରୁ ଆହୁରି ଅଧିକ ଶୀଘ୍ର ଯିବାର ଥିଲେ ୪ର୍ଥ ରାସ୍ତା ଉପରକୁ ଯିବ । ଏହି ରାସ୍ତା ଗୁଡ଼ିକ ଉପରେ ବସିବା ପାଇଁ ଚୌକି ଅଛି ପଡ଼ିଥାଏ ।

୧୭—ସାଧାରଣତଃ ଜଣେ ମନୁଷ୍ୟ ବର୍ଷକରେ ଏକକୋଟି ୧୮ ଲକ୍ଷ ଶବ୍ଦ ଉଚ୍ଚାରଣ କରିଥାଏ । ପୁଣି ୧ କୋଟି ୪୬ ଲକ୍ଷ ଥର ଆଖିପତା ବନ୍ଦକରେ ।

୧୮—ସାପଙ୍କର କଷ୍ଟବୋଧ କରିବାର ଶକ୍ତିନାହିଁ ।

୧୯—କଲିକତା ମ୍ୟୁନିସିପାଲିଟିର କାମ ଦାମ କରିବାକୁ ୧୪ ହଜାର ମେହେନ୍ତର ନିଯୁକ୍ତ ଅଛନ୍ତି (୧୯୩୪)

୨୦—ଇଂଲଣ୍ଡର ବ୍ରିଟାନିଆ ନାମକ ଜାହାଜର ଲମ୍ବ ୧୦୧୮ ଫୁଟ, ଚଉଡ଼ା ୧୧୫ ଫୁଟ ଏବଂ ଉଚ୍ଚତା ୧୫୦ ଫୁଟ । ସେଥିରେ ୫ ହଜାର ଆରୋହୀ ଓ ୧୨୫୦ ଜଣ ନାବିକ ଯିବେ । ଏଥିରେ ୨୮ ଖଣ୍ଡ ମଟର ଲଞ୍ଚ ଅଛି ଓ ପ୍ରତ୍ୟେକ ଲଞ୍ଚରେ ୨୦୦ ଲୋକ ବସିବେ । ଏହା ପୃଥିବୀରେ ସବୁଠାରୁ ବଡ଼ ଜାହାଜ । ଏଥିରେ ପ୍ରତିଦିନ ୬ଶ ଟନ ତେଲ ଖରଚ ହେବ ଓ ୨ ଲକ୍ଷ ଅଶ୍ୱ ଶକ୍ତିରେ ଏହା ଚାଲିବ ।

୨୧—ପାନରସ ବାଳରେ ବୋଳିଲେ ଉକୁଣି ମରିଯାନ୍ତି ।

୨୨—ଭାଙ୍ଗ ଖାଇ ନିଶାହେଲେ ପଣସପତ୍ରର ଡେମ୍ଫ ଚୋବାଇ ତାହାର ରସ ଢୋକିଲେ ନିଶା ଛାଡ଼ିଯାଏ ।

୨୩—ଟୋପାଏ ପାନରସ ଆଖିରେ ପକାଇଲେ ଅନ୍ଧାର କଣା ଭଲ ହୁଏ ।

୨୪—ମାଲାୟ ଉପଦ୍ୱୀପରେ ବହୁତ ରବର ଉତ୍ପନ୍ନ ହୁଏ ।

୨୫—ପୃଥିବୀର ତୁଇ ତୃତୀୟାଂଶ କଫି ବ୍ରାଜିଲ୍‌ରୁ ଆସେ ।

୨୬—ଜିଲ୍ନ ( Ziln ) ହଙ୍ଗେରିରେ ପୃଥିବୀର ବୃହତ୍ତମ ବୁଟ କାରଖାନା ଅଛି ।

୨୭—ସୁଇଜରଲେଣ୍ଡ ୟୁରୋପର ପ୍ରାଚୀନତମ ପ୍ରଜାତନ୍ତ୍ର ଦେଶ ।

୨୮—ରେଡ଼ିଅମ୍ ( ଜ୍ୱଳନ୍ତ ଧାତୁ— Radium ) ପୃଥିବୀର ଦୁର୍ଲ୍ଲଭ ବସ୍ତୁ ।

ହିଂସା ଈର୍ଷା ହୃଦେ ନ ପୋଷ କ୍ଷଣେ । ଶତ୍ରୁ ଶୂନ୍ୟ ହେବ ଯେବେ ଭୁବନେ ॥

୨୯—ଜର୍ମାନ ଷ୍ଟେଟ ରେଲବେଜ୍ ଇଉରୋପର ବ୍ୟବସାୟ ପୂର୍ଣ୍ଣ ସ୍ଥାନ।

୩୦—ଫିଲାଡେଲଫିଆ ପୃଥିବୀର ସର୍ବଶ୍ରେଷ୍ଠ ପୋତ-ନିର୍ମାଣର ସ୍ଥାନ।

୩୧—ଆମେରିକା ଯୁକ୍ତ ରାଜ୍ୟରେ ପୃଥିବୀର ଏକ ତୃତୀୟାଂଶ ତମାଖୁ ହୁଏ।

୩୨—ଯୁକ୍ତରାଜ୍ୟ ( ଆମେରିକା ) ରେ ପୃଥିବୀର ୩ ଚତୁର୍ଥାଂଶ ପେଟ୍ରୋଲିଅମ୍ ମିଳେ।

୩୩—ଆମେରିକାର ଯୁକ୍ତରାଜ୍ୟରୁ ପୃଥିବୀର ପ୍ରାୟ ଅର୍ଦ୍ଧେକ ତୁଳା ମିଳେ।

୩୪—ଆମେରିକାର ଯୁକ୍ତରାଜ୍ୟରୁ ପୃଥିବୀର ପ୍ରାୟ ଅର୍ଦ୍ଧେକ ଲୁହା ଓ ଏକ ତୃତୀୟାଂଶରୁ ଅଧିକ କୋଇଲା ଆସେ।

୩୫—ଭାରତବର୍ଷରୁ ପୃଥିବୀର ଅର୍ଦ୍ଧେକ ଚା ଆସେ।

୩୬—ଆଫ୍ରିକାର ଗୋଲ୍ଡ କୋଷ୍ଟରୁ ପୃଥିବୀର ଅର୍ଦ୍ଧେକ କକୋଆ ଆସେ।

୩୭—ଏକ ମିନିଟରେ ମନୁଷ୍ୟର ହୃତ୍‌ପିଣ୍ଡ ୭୨ ଥର ଧକ୍ ଧକ୍ ହୁଏ।

୩୮—ମୂଷାମାନେ ଏକ ମିନିଟରେ ସାରା ପୃଥିବୀ ଭିତରୁ ପ୍ରାୟ ଦେଢ଼ହଜାର ଟଙ୍କାର ଜିନିଷ ନଷ୍ଟ କରନ୍ତି।

୩୯—ମିନିଟକରେ ୭୨ଟା ଲେଖାଏଁ ମୂଷା ଗଣିଲେ ବ୍ରିଟିଶ ଦ୍ୱୀପପୁଞ୍ଜ ଭିତରେ ଯେତେ ମୂଷା ଅଛନ୍ତି ସେମାନଙ୍କୁ ଗଣିବାପାଇଁ ବର୍ଷେକରୁ ଅଧିକ ଲାଗିବ।

୪୦—ପ୍ରତିମିନିଟରେ ବିଲାତର କୋଇଲା ବନ୍ଦରରେ ୧୬ଟନ ଲେଖାଏଁ କୋଇଲା ପୃଥିବୀର ଚାରିଆଡ଼କୁ ରପ୍ତାନି ହୁଏ।

୪୧—ଅର୍କିଡ଼ ଫୁଲ ଅଠତିରିଶ ବର୍ଷଯାଏ ସତେଜ ରହେ। ସେଥିରୁ ଗୋଟିଏ ଫୁଲ ୮୦ ହଜାର ଟଙ୍କାରେ ବିକା ଯାଇଥିଲା।

୪୨—ଏକମିନିଟ୍‌ରେ ବିଲାତରେ ୭୦ ହଜାର ବିଲାତିଅଣ୍ଡା ଖାଆନ୍ତି ଓ ୮୩୩୩୩ ପିଆଲା କଫି ସରେ।

୪୩—ମିନିଟକରେ ସାରା ପୃଥିବୀରେ ୯୦ ପିଲା ଜନ୍ମ ହୁଅନ୍ତି ଓ ୭୬ଟି ମରନ୍ତି।

୪୪—ରେନାଲ୍ଡ୍ ସ୍ମିଥ ଯେଉଁ ବନ୍ଧୁକ ବାହାର କରିଅଛନ୍ତି ତାହା ମିନିଟକରେ ୭ଶହ ଥର ଫୁଟେ।

୪୫—ଭାରତରେ ୧୯୩୧-୩୨ ରେ ୩୩୭୪୯୦୦୦ ଏକର ଭୂଇଁରେ ଗହମ ଓ ୮୪୩୫୩୦୦୦ ଏକର ଜମିରେ ଧାନ ହୋଇଥିଲା।

୪୬—ପୃଥିବୀରେ ଭାରତବର୍ଷ ତୁଳା ଆମଦାନୀରେ ୨ୟ ସ୍ଥାନ ପାଇଅଛି।

୪୭—ଦକ୍ଷିଣ ଆଫ୍ରିକାରୁ ଅଧିକ ହୀରକ ଆସେ।

୪୮—କଲିକତା ପୃଥିବୀର ପ୍ରଧାନ ଝୋଟ ରପ୍ତାନି କରୁଥିବା ବନ୍ଦର।

## ( ଭାରତର ଜ୍ଞାତବ୍ୟ କଥା )

୪୯—ବର୍ମାର କ୍ଷେତ୍ରଫଳ ୨୩୩୪୨୯ ବର୍ଗମାଇଲ, ଏହା ବୃହତ୍ତମ ପ୍ରଦେଶ।

୫୦—ବଙ୍ଗ ଭାରତବର୍ଷରେ ସର୍ବଶ୍ରେଷ୍ଠ ଜନାକୀର୍ଣ୍ଣ ପ୍ରଦେଶ। ଏହାର ଲୋକସଂଖ୍ୟା ୫୦,୧୧୪,୦୦୨।

୫୧—ମଧ୍ୟପ୍ରଦେଶରେ ଅଧିକ ଲୋକ ମରନ୍ତି, ମୃତ୍ୟୁହାର ୩୩·୫

୫୨—ଆସାମରେ କମ ଲୋକ ମରନ୍ତି, ମୃତ୍ୟୁହାର ୨୩·୮।

୫୩—ମାନ୍ଦ୍ରାଜରେ ସ୍ତ୍ରୀସଂଖ୍ୟା ଖୁବ୍ ବେଶୀ, ୧୦୦୦ ପୁରୁଷରେ ୧୦୨୫ ସ୍ତ୍ରୀ।

୫୪—ପଞ୍ଜାବରେ ସ୍ତ୍ରୀସଂଖ୍ୟା ଖୁବ୍ କମ, ୧୦୦୦ ପୁରୁଷରେ ୮୩୧ ସ୍ତ୍ରୀ।

୫୫—ବର୍ମାରେ ବୃଦ୍ଧଙ୍କ ସଂଖ୍ୟା ବେଶୀ।

୫୬—ବର୍ମାରେ ଶିଶୁମୃତ୍ୟୁହାର ସବୁଠାରୁ କମ୍, ଶତକଡ଼ା ୨୩

୫୭—ହିନ୍ଦୁମାନଙ୍କର ବହୁତ ପିଲା ହୁଅନ୍ତି। ଗୋଟିଏ ପରିବାରରେ ହାରାହାରି ପିଲା ସଂଖ୍ୟା ୫·୯।

୫୮—ଭାରତରେ ହିନ୍ଦୁଧର୍ମ ଅଧିକାଂଶଙ୍କର ଧର୍ମ। ୧୦୦୦୦ରେ ୬୮୨୪ ଜଣ ହିନ୍ଦୁ।

୫୯—ଭାରତରେ ଖ୍ରୀଷ୍ଟଧର୍ମାବଲମ୍ବୀ ପରିବାର ଖୁବ୍‌ବେଶୀ। ପ୍ରତି ପରିବାରରେ ହାରାହାରି ୫ ଜଣ।

୬୦—ବଙ୍ଗରେ ବିଧବା ସଂଖ୍ୟା ଖୁବ୍ ବେଶୀ। ୧୦୦୦ ସ୍ତ୍ରୀରେ ୨୨୭ ଜଣ ବିଧବା।

୬୧—ବର୍ମାରେ ପାଗଳଙ୍କ ସଂଖ୍ୟା ବେଶୀ, ହାରାହାରି ୧୦୦୦୦ ରେ ୮୮ ଜଣ ପାଗଳ।

୬୨—ଅଜମେର ଓ ମାଲବାରରେ ଅନ୍ଧଙ୍କ ସଂଖ୍ୟା ଖୁବ୍‌ବେଶୀ। ୧୦୦,୦୦୦ ରେ ୩୮୩ ଜଣ ଅନ୍ଧ।

୬୩—ବର୍ମାରେ ଶିକ୍ଷିତ ସଂଖ୍ୟା କୁବେଶୀ । ପ୍ରତ୍ୟେକ ମାଇଲରେ ୩୬୮ ଜଣ ।

୬୪—ଭାରତୀୟ ଷ୍ଟେଟମାନଙ୍କ ମଧ୍ୟରେ ଜାମ୍ମୁ ଓ କାଶ୍ମୀରର କ୍ଷେତ୍ରଫଳ ସବୁଠାରୁ ବେଶୀ ଏବଂ ହାଇଦ୍ରାବାଦର ଲୋକସଂଖ୍ୟା ବେଶୀ ।

୬୫—ବେଲୁଚିସ୍ଥାନର ଲୋକସଂଖ୍ୟା ନ୍ୟୂନତମ ।

୬୬—୧୭୦୧ ଖ୍ରୀଷ୍ଟାବ୍ଦରେ ଫ୍ଲୋରେନ୍ସରେ ଖ୍ରୀଷ୍ଟୋଫୋରୀ ( Christofori ) ନାମକ ଜଣେ ଇଟାଲୀବାସୀ ପ୍ରଥମେ ପିଆନୋ (Piano) ଆବିଷ୍କାର କରିଥିଲେ, ତାଙ୍କର ଅନେକ ପିଆନୋ ମଧ୍ୟରୁ ସମ୍ପ୍ରତି ୨ଟି ମେଟ୍ରୋପୋଲିଟେନ ମିଉଜିଅମରେ ସଂରକ୍ଷିତ ।

୬୭—କୌଣସି କାରଣରୁ ଯେବେ ଅନ୍ତଃକରଣ ମସ୍ତିଷ୍କକୁ ଯଥେଷ୍ଟ ରକ୍ତ ନ ପଠାଏ ତେବେ ମସ୍ତିଷ୍କ କିଛି କାର୍ଯ୍ୟ କରେ ନାହିଁ, ତେଣୁ ମନୁଷ୍ୟ ମୂର୍ଚ୍ଛିତ ହୁଏ ।

୬୮—ଦୌଡ଼ିବା ସମୟରେ ଲୋକେ ପ୍ରଚୁର ବାୟୁ ଗ୍ରହଣ କରନ୍ତି, ତେଣୁ ରକ୍ତ ଫୁସ୍ ଫୁସ୍ ମଧ୍ୟରେ ପ୍ରବଳ ବେଗରେ ପ୍ରବାହିତ ହୁଏ । ଆମ୍ଭେମାନେ ଯେଉଁ ଅମ୍ଳଜାନ ବାୟୁ ଗ୍ରହଣ କରୁ ତାହାକୁ ସାହାଯ୍ୟ କରେ ତେଣୁ ଅନ୍ତଃକରଣ ବେଶି କମ୍ପମାନ ହୁଏ ଏବଂ ଅବଶେଷରେ ଏହା ମସ୍ତିଷ୍କକୁ ଖବର ପଠାଏ ଓ ସତର୍କ କରିଦେବାପାଇଁ ଆମ୍ଭମାନଙ୍କୁ ଧଇଁସଇଁ କରିଦିଏ । ଯେବେ ଆମ୍ଭେମାନେ ତାହା ବୁଝି ନ ପାରି ପୁନର୍ବାର ଧାବମାନ ହେଉଁ ତେବେ ମୂର୍ଚ୍ଛିତ ହେଉଁ ।

୬୯—ହସ୍ତରେ ରେଖାମାନ ଅଛି ବୋଲି ଆମ୍ଭେମାନେ ଯେ କୌଣସି ଦ୍ରବ୍ୟକୁ ସ୍ପର୍ଶକରି ଜ୍ଞାନ ଅର୍ଜନ କରୁଁ ।

୭୦—ବୃକ୍ଷମାନେ ସବରେ କିଛି ନ ଖାଇ ନିଦ୍ରିତ ହୁଅନ୍ତି ଓ ବଢ଼ନ୍ତି ଏବଂ ଅମ୍ଳଜାନ ବାୟୁ ପରିତ୍ୟାଗ କରନ୍ତି ।

୭୧—ତୋତାପକ୍ଷୀର ଝିବଣେନ୍ଦ୍ରିୟ ପ୍ରବଳ ବୋଲି ସେ କଥା କହିପାରେ ।

୭୨—ଦେହର ଅନ୍ୟାନ୍ୟ ଅଂଶ ଅପେକ୍ଷା ମସ୍ତିଷ୍କର ଅଧିକ ଖାଦ୍ୟ ପ୍ରୟୋଜନ ।

୭୩—୧୩୦୦ ଖ୍ରୀଷ୍ଟାବ୍ଦରେ ପାଶ୍ଚାତ୍ୟଦେଶରେ ପ୍ରଥମେ ବାରୁଦ ପ୍ରସ୍ତୁତ ହୋଇଥିଲା ।

୭୪—ଶରତ୍‌କାଳରେ ବୃକ୍ଷମାନେ ଆଗାମୀ ଶୀତପାଇଁ ବିଶ୍ରାମ ନିଅନ୍ତି, କାରଣ ସେ ସମୟରେ ପବନ ଶୀତଳ ଓ ଘନ ହୋଇଥାଏ, ଏଣୁ ପବନ ବହି ସେ ସମୟରେ ସଂବର୍ଦ୍ଧିତ ହୁଏ ।

୭୫—ଓଡ଼ିଆ ଭାଷାକୋଷରେ ଲକ୍ଷାଧିକ ଶବ୍ଦ ଅଛି । ଇଂରାଜୀ ଓ ହିନ୍ଦୀ ଅଭିଧାନରେ ଏତେ ଶବ୍ଦ ନାହିଁ ।

୭୬—୧୭୦୦ ଖ୍ରୀଷ୍ଟାବ୍ଦରେ ପ୍ରବାଳ ଏକ ପ୍ରକାର ପ୍ରାଣୀ କଦାପି ଉଦ୍ଭିଦ ନୁହେ ବୋଲି ମାର୍ସେଲିସ ନଗର ନିବାସୀ ପେରେନେଲ୍ ନାମକ ଜଣେ ପଣ୍ଡିତ ସ୍ଥିର ସିଦ୍ଧାନ୍ତ କରିଥିଲେ । ସଂସ୍କୃତ ଗ୍ରନ୍ଥରେ ପ୍ରବାଳକୁ 'ଲତାମଣି' ଓ 'ରତ୍ନବୃକ୍ଷ' ବୋଲି ଲେଖାଅଛି ।

୭୭—ସାପକାମୁଡ଼ାରେ ପ୍ରତିବର୍ଷ ଭାରତରେ ୨୦ ହଜାର ଲୋକ ମରନ୍ତି । ଗତ ୨୦ ବର୍ଷରେ ପ୍ରାୟ ୪ ଲକ୍ଷ ଲୋକଙ୍କର ମୃତ୍ୟୁ ଘଟିଅଛି ।

୭୮—ପୃଥିବୀରେ ମିଷ୍ଟର ଇଉଜେନ୍ ଗ୍ରେସ୍ ସବୁଠାରୁ ଅଧିକ ବେତନ ପାଆନ୍ତି । ଏହାଙ୍କର ବାର୍ଷିକ ବେତନ ୪୫ ଲକ୍ଷ । ଏ ମହାଶୟ ବେଥଲହେମ ଷ୍ଟିଲ କର୍ପୋରେ-ସନର ପ୍ରେସିଡେଣ୍ଟ ।

୭୯—ସୁବର୍ଣ୍ଣ ଓ ବହୁମୂଲ୍ୟ ପ୍ରସ୍ତର ପ୍ରଭୃତ କ୍ୟାରେଟ୍ ହିସାବରେ ବିକ୍ରିତ ହୁଏ । ଖାଣ୍ଟି ସୁନାକୁ ୨୪ ଭାଗ ଧରାଯାଏ ।

୮୦—ଏକ ଘଣ୍ଟାରେ ପୃଥିବୀରେ ୧୫ଟି ନରହତ୍ୟା ହୁଏ ।

୮୧—ଏକ ଘଣ୍ଟାରେ ପୃଥିବୀରେ ୧୧୪୦୦୦ ଖଣ୍ଡ ଟେଲିଗ୍ରାମ୍ ପ୍ରେରିତ ହୁଏ ଓ ଏକ ଘଣ୍ଟାରେ ୭୨ କୋଟି ଟଙ୍କାର ଡାକ ଟିକଟ ଖର୍ଚ୍ଚ ହୁଏ ।

୮୨—ସମୁଦ୍ର ମଧ୍ୟରେ ପ୍ରାୟ ଅଧଘଣ୍ଟାରେ ଗୋଟିଏ ଜାହାଜ ବୁଡ଼ିଯାଏ ।

୮୩—ପୃଥିବୀ ଉପରେ ପ୍ରତ୍ୟହ ପ୍ରାୟ ଦୁଇକୋଟି ଉଲ୍କାପାତ ହୁଏ ।

୮୪—ପୃଥିବୀରେ ବର୍ଷ ମଧ୍ୟରେ ପ୍ରାୟ ଅଠହଜାର ଥର ଭୂମିକମ୍ପ ହୋଇଥାଏ, ଅର୍ଥାତ୍ ଦିନକରେ ୧୨୫ଥର ଭୂମିକମ୍ପ ହୁଏ ।

୮୫—ପୃଥିବୀରେ ସବୁ ପ୍ରାଣୀ ଅପେକ୍ଷା ଶାମୁକା ବେଶୀକାଳ

ଜୁପିଟର ଗ୍ରହପାରେ । ଏହା ଏକାଦଶମେ ୫ ବର୍ଷ ନ ଖାଇ ବଞ୍ଚେ ।

୮୬—ପୃଥିବୀ ୭ ଭାଗରୁ ୫ ଭାଗ ଜଳ ଓ ୨ ଭାଗ ସ୍ଥଳ ବୋଲି ଏବେ ବୈଜ୍ଞାନିକମାନେ ସ୍ଥିର କରିଅଛନ୍ତି ।

୮୭—ଭିଟାମିନ ଖାଦ୍ୟ ଅଭାବରୁ ଅନ୍ଧତା ଘଟେ ।

୮୮—ଅଷ୍ଟ୍ରେଲିଆ ଓ ନିଉଜିଲାଣ୍ଡରେ ସାପ ନାହିଁ ।

୮୯—ପୃଥିବୀରେ ଗଳ୍ପ ଓ ଉପନ୍ୟାସ ଲେଖି ଏଡ୍‌ଗାର ଓ୍ୟାଲେସ୍ ସବୁଠାରୁ ଅଧିକ ଅର୍ଥ ଅର୍ଜନ କରିଅଛନ୍ତି । ତାଙ୍କ ସମସ୍ତ ଜୀବନର ରୋଜଗାର ଟଙ୍କା ତାଙ୍କର ଲେଖାଦ୍ୱାରା ଭାଗ କଲେ ପ୍ରତ୍ୟେକ ଶବ୍ଦର ମୂଲ୍ୟ ପ୍ରାୟ ଟ ୭୧ ହେବ । ମୃତ୍ୟୁ ସମୟରେ ସେ ୧କୋଟି ୪୦ ଲକ୍ଷ ଟଙ୍କା ଜମା କରିଥିଲେ ।

୯୦—ସୂର୍ଯ୍ୟ ପୃଥିବୀଠାରୁ ୯୨.୯ ନିୟୁତ ମାଇଲ ଦୂରରେ ଅବସ୍ଥିତ ଏବଂ ଏହାର ବ୍ୟାସ ୮୬୪,୧୦୧ ମାଇଲ । ପୃଥିବୀଠାରୁ ଏହା ୩୩୩,୪୩୨ ଗୁଣ ବଡ଼ ଏବଂ ହାରାହାରି ଦୂରତା ୯୨,୮୯୭,୪୦୦ ମାଇଲ । ଯେଉଁ ରେଲ ଘଣ୍ଟାରେ ୬୦ ମାଇଲ ବେଗରେ ତାହା ୧୭୫ ବର୍ଷରେ ସେଠାରେ ପହଞ୍ଚିବ ଏବଂ ଯେଉଁ ଏରୋପ୍ଲେନ ଘଣ୍ଟାରେ ୨୫୦ ମାଇଲ ଗତିରେ ତାହାକୁ ୭୦ ବର୍ଷ ଲାଗିବ । ସୂର୍ଯ୍ୟଙ୍କର ଆଲୋକ ୪୯୯ ସେକେଣ୍ଡରେ ପୃଥିବୀକୁ ଆସେ ।

୯୧—ପୃଥିବୀର ବାହ୍ୟ କ୍ଷେତ୍ରଫଳ ୧୯୬, ୫୫୦,୦୦୦ ବର୍ଗ ମାଇଲ । ଏଥିରେ ୫୫, ୦୦୦, ୦୦୦ ବର୍ଗ ମାଇଲ ସ୍ଥଳ ଓ ୧୪୧,୦୫୦,୦୦୦ ବର୍ଗ ମାଇଲ ଜଳ ଅଛି । ଏହା ସୂର୍ଯ୍ୟର ଚତୁର୍ଦ୍ଦିଗରେ ପ୍ରତି ସେକେଣ୍ଡରେ ୧୮½ ମାଇଲ ଗତିରେ ।

୯୨—ଆମେରିକାର ପ୍ରେସିଡେଣ୍ଟ ବର୍ଷକୁ ୨୦,୦୦୦ ପାଉଣ୍ଡ
ଜାପାନର ପ୍ରଧାନ ମନ୍ତ୍ରୀ ,, ୧୨୦୦୦ ୟେନ୍
ଇଂଲଣ୍ଡର ପ୍ରଧାନ ମନ୍ତ୍ରୀ ,, ୫୦୦୦ ପାଉଣ୍ଡ
ଇଂଲଣ୍ଡର ଲର୍ଡଚାନ୍ସେଲର ,, ୧୦୦୦୦ ପାଉଣ୍ଡ
ଭାରତର ବଡ଼ଲାଟ ମାସକୁ ଟ ୨୦,୦୦୦୧
ବେତନ ପାଆନ୍ତି ।

୯୩—ଶ୍ରୀଯୁକ୍ତ ଏସ୍, ରାମାନୁଜମ୍, ଶ୍ରୀଯୁକ୍ତ ଡାକ୍ତର ମେଘନାଦ ସାହା, ଶ୍ରୀଯୁକ୍ତ ସାର୍ ଜେ. ସି. ବୋଷ ଓ ଶ୍ରୀଯୁକ୍ତ ସାର୍ ସି. ଭି. ରମନ୍ ଏମାନେ ରଏଲ ସୋସାଇଟିରେ ଭାରତୀୟ ସଭ୍ୟ ।

୯୪—ମେଲେରିଆ କମ୍ପଜ୍ୱର ଯେତେବେଳେ ଉପସ୍ଥିତ ହେବ ସେତେବେଳେ ରୋଗୀର ହାତ ଗୋଡ଼ର ସମସ୍ତ ଅଙ୍ଗୁଳିର ନଖମାନ କାଟି ରୁଟିଭିତରେ ପୂରାଇ ଗୋଟିଏ କୁକ୍କୁରକୁ ଖୁଆଇ ଦେବ । ଏଥିରେ କମ୍ପଜ୍ୱର ଭଲ ହୁଏ । ଶୁକ୍ରବାରରେ ନଖକାଟିଲେ ଦାନ୍ତର ଅସୁଖ ରହେ ନାହିଁ ( The Theosophist, Vol, II, Bombay, October, 1840, No. 1. Page 13.)

୯୫—ଭାରତରେ ୧୬୮, ୧୩୪ ଇଉରୋପୀୟ ମଧ୍ୟରୁ ୧୧୭, ୩୩୬ ପୁରୁଷ ଓ ୫୦, ୭୯୮ ନାରୀ ଅଛନ୍ତି । ପୁଣି ଏଙ୍ଗଲୋ ଇଣ୍ଡିଆନ ୧୩୮, ୩୯୫ ମଧ୍ୟରୁ ୭୧, ୨୪୭ ପୁରୁଷ ଓ ୬୭, ୧୪୮ ନାରୀ ଅଛନ୍ତି । ସମୁଦାୟ ଜନସଂଖ୍ୟାରେ ଇଉରୋପୀୟମାନେ ଶତକରା ୦୫ ଅଛନ୍ତି

୯୬—କୁସ୍ତିରେ ଗାମା ପୃଥିବୀରେ ଓ ଇମାମବକ୍ସ ଭାରତରେ ସୁପ୍ରସିଦ୍ଧ ଅଛନ୍ତି ।

୯୭—କଲିକତା ସହରର କ୍ଷେତ୍ରଫଳ ୪୦, ୬୫୫ ଏକର ଓ ଜନସଂଖ୍ୟା ୧, ୪୪୫, ୫୮୨ । ପ୍ରତିଏକରରେ ୩୨ଜଣ ବାସ କରନ୍ତି । ଏଠାକୁ ବାହାରୁ ପ୍ରତିଦିନ ୨୭,୦୦୦ ଲୋକ ଦିନରେ କାମ କରିବାକୁ ଆସନ୍ତି ଓ ରାତିରେ ଘରକୁ ଫେରି ଯାଆନ୍ତି । କଲିକତା ମ୍ୟୁନିସିପାଲିଟିର ପ୍ରତିବର୍ଗମାଇଲରେ ୩୬, ୧୨୦ ଓ ହାବଡ଼ାରେ ପ୍ରତି ବର୍ଗମାଇଲରେ ୩୨, ୪୦୦ ଲୋକ ଅଛନ୍ତି । କଲିକତାରେ ୬୭, ୬୮୮ ଭିକ୍ଷାଦାତା ଅଛନ୍ତି ।

୯୮—ଭାରତରେ ଲକ୍ଷାଧିକ ଜନସଂଖ୍ୟା ବିଶିଷ୍ଟ ୩୫ଟି ସହର ଅଛି

୯୯—ବ୍ରିଟିଶ ଅଧୀନରେ ଭାରତୀୟ ରାଜାମାନଙ୍କର ୬୦୦ ଟି ଷ୍ଟେଟ ଅଛି । ତାହାର କ୍ଷେତ୍ରଫଳ ୭୦୦,୦୦୦ ବର୍ଗମାଇଲ ଓ ଜନସଂଖ୍ୟା ୮୦, ୮୩୯, ୫୭୭ ଅଟେ । ଏହା ଭାରତର କ୍ଷେତ୍ରଫଳର ତିନିଭାଗରୁ ଭାଗେ ।

୧୦୦—ଭାରତରେ ୬୦,୦୦୦ ବ୍ରିଟିଶ ସୈନ୍ୟ ଅଛନ୍ତି । ୫ ଅଶ୍ୱାରୋହୀ ଦଳ, ୪୫ ପଦାତିକ ଦଳ ପ୍ରତ୍ୟେକରେ ଭାରତୀୟ ସୈନ୍ୟ, ୬୦ ଦଳ ରାଜକୀୟ କମାଣଦାଗିବା ଦଳ (5. Cavalry regiments,

45 infantry battalions each with an Indian Platoon, 60 batteries Royal Artillery. ) ରାଜକୀୟ ଏୟାର ଫୋର୍ସ—୮ ଅଶ୍ୱାରୋହୀ ସୈନ୍ୟଦଳ, ୯୬ ମେସିନ (Royal Air Force—8 Squadrons, 96 Machines) ଭାରତୀୟ ଆର୍ମି-୧୫୦,୦୦୦ ( Indian Army 150,000 ) ( ୨୧ ଅଶ୍ୱାରୋହୀ ସୈନ୍ୟଦଳ (21 Cavelry regiments),୧୪୩ଇନ୍‌ଫେଣ୍ଟ୍ରି ବେଟାଲିଅନ ପଦାତିକ ସୈନ୍ୟଦଳ ( 143 battalions with 34,000 Indian reservists )

୧୦୧—ପ୍ରତ୍ୟେକ ବ୍ରିଟିଶ ସୈନ୍ୟ ପାଇଁ ଯୁଦ୍ଧପୂର୍ବରୁ ବର୍ଷକୁ ଟ ୮୦୨ ଓ ପ୍ରତ୍ୟେକ ଭାରତୀୟ ସୈନ୍ୟ ପାଇଁ ଟ ୨୯୧ ଖର୍ଚ୍ଚ ହେଉଥିଲା । ସମ୍ପ୍ରତି ପ୍ରତ୍ୟେକ ବ୍ରିଟିଶ ସୈନ୍ୟ ପାଇଁ ଟ ୧୬୭୨ ଓ ଭାରତୀୟ ସୈନ୍ୟ ପାଇ ଟ ୪୩୩ ଖର୍ଚ୍ଚ ହେଉଅଛି ।

୧୦୨—ଆମେରିକାରେ ଉଟା କୃଷି କଲେଜର ଛାତ୍ରଗଣ ସମ୍ପ୍ରତି ଗୋଟିଏ ୨୦ ଫିଟ ପରିଧିବିଶିଷ୍ଟ ବୃକ୍ଷ ଆବିଷ୍କାର କରିଅଛନ୍ତି । ବିଖ୍ୟାତ ବୈଜ୍ଞାନିକ ଡାକ୍ତର ହେନ୍‌ରି ସି କାଉଲିସ୍ ନାନାପ୍ରକାର ପରୀକ୍ଷା କରି କହିଛନ୍ତି ଯେ ଏହି ବୃକ୍ଷଟିର ବୟସ ୬୦୦୦ ବର୍ଷ । ତାଙ୍କ ମତରେ ଏହି ବୃକ୍ଷ ପୃଥିବୀର ପ୍ରାଣବାନ୍ ବୃକ୍ଷାଦିଙ୍କ ମଧ୍ୟରେ ସର୍ବାପେକ୍ଷା ବୃଦ୍ଧ ।

୧୦୩—କ୍ରୋମିୟମ ଧାତୁ ୩୦୦୦ ଡିଗ୍ରୀତାପରେ ଦ୍ରବୀଭୂତ ହୁଏ ଏହା କାଚ କାଟିପାରେ । କୌଣସି ଇସ୍ପାତ ଅପେକ୍ଷା ମଧ୍ୟ ଏହା କଠିନତର । ଏହାର ରଙ୍ଗ ପ୍ଲାଟିନାମ ପରି ଏଥିରେ କୌଣସି ପ୍ରକାର ଦାଗ ଲାଗେ ନାହିଁ ।

୧୦୪ ପ୍ରାଚୀନ କଲିକତା

( ସରକାରୀ ଭବନ, ଅନୁଷ୍ଠାନ, ପ୍ରତିଷ୍ଠାନ, ସମିତି ପ୍ରଭୃତି )

(କ) ରାଇଡିଂ ସ୍କୁଲ—ଚୌରଙ୍ଗୀରେ ଏସିଏଟିକ୍ ସୋସାଇଟି ଅଛି, ସେଠାରେ ଗୋଟିଏ ଅଶ୍ୱପରିଚାଳନା ଶିକ୍ଷାର ବିଦ୍ୟାଳୟ ଥିଲା । ସେଠାରେ ମଧ୍ୟାହ୍ନରେ ବୁଧବାର ଅର୍ଥାତ୍ ବୁଧ ଓ ଶୁକ୍ରବାରରେ ପ୍ରକାଶ୍ୟ ନିଲାମରେ ଘୋଡ଼ା ଗାଡ଼ି, କୁକୁର ପ୍ରଭୃତି ବିକ୍ରୟ ହେଉଥିଲା । ଏଲଙ୍ଗ (L. Elang) ସାହେବଙ୍କ ଦ୍ୱାରା ତାହା ପ୍ରତିଷ୍ଠିତ ହୋଇଥିଲା ।

( ଖ ) କଲିକତା ମେକାନିକ ଇନ୍‌ଷ୍ଟିଚ୍ୟୁଟ—୧୮୩୯ ଖ୍ରୀଷ୍ଟାବ୍ଦରେ ଫେବୃୟାରୀ ୨୫ ତାରିଖରେ ଶିଳ୍ପ ଓ ବିଜ୍ଞାନ ପ୍ରୟୋଜନୀୟ ବିଦ୍ୟାଶିକ୍ଷା ଦେବା ନିମିତ୍ତ ଏହା ପ୍ରତିଷ୍ଠିତ ହୋଇଥିଲା । ପରେ ତାହାର ନାମ ପରିବର୍ତ୍ତିତ ହୋଇ କଲିକତା ଲିସିୟମ୍ ( Calcutta Lyceum ) ହୋଇଅଛି ।

( ଗ ) କଲିକତା ସ୍କୁଲ ବୁକ୍ ସୋସାଇଟି—୧୮୧୭ ଖ୍ରୀଷ୍ଟାବ୍ଦରେ ବିଦ୍ୟାଳୟର ପାଠ୍ୟ ପୁସ୍ତକାଦି ପ୍ରକାଶାର୍ଥେ ଏହା ପ୍ରତିଷ୍ଠିତ ହୋଇଥିଲା ।

( ଘ ) ଲୋରେଟୋ ହାଉସ—୧୮୪୨ ଖ୍ରୀଷ୍ଟାବ୍ଦରେ ମିଡ଼ଲଟନ ରୋଡ଼ରେ ସାହେବମାନଙ୍କ କନ୍ୟାବୃନ୍ଦଙ୍କର ଶିକ୍ଷା ନିମିତ୍ତ ଏହା ସ୍ଥାପିତ ହୋଇଥିଲା । 'ଲୋରେଟୋ ସିଷ୍ଟର୍ସ' ଏହାର ପ୍ରଧାନ ଅଭିଭାବିକା ଥିଲେ । ସହରର ଭିନ୍ନ ସ୍ଥାନରେ ଏହାର ଶାଖା ଅଛି ।

( ଙ ) କେଥିଡ୍ରାଲ୍ ଅର୍‌ଫ୍ୟାନେଜ—୧୮୪୪ ଖ୍ରୀଷ୍ଟାବ୍ଦରେ ଗୃହହୀନ ପିତୃମାତୃହୀନ ଛାତ୍ରମାନଙ୍କ ନିମନ୍ତେ ଖ୍ରିଷ୍ଟିୟାନ ମାନଙ୍କ ଚେଷ୍ଟାରେ ଏହା ସ୍ଥାପିତ । ଅବୈତନିକ ଛାତ୍ରମାନଙ୍କ ନିମିତ୍ତ ଗଭର୍ଣ୍ଣମେଣ୍ଟ ବେତନ ଦିଅନ୍ତି ।

( ଚ ) ଇଟାଲୀ ଅର୍‌ଫ୍ୟାନେଜ—୧୮୮୯ ଖ୍ରୀଷ୍ଟାବ୍ଦରେ ଏହି ସ୍କୁଲଟି ସ୍ଥାପିତ ।

( ଛ ) ବେଲଭେଡ଼ିୟାର—ଲର୍ଡ଼ଡ଼େଲହାଉସିଙ୍କ ସମୟର ରବାର୍ଟ ପ୍ରିନ୍ସେପଙ୍କ ନିକଟରୁ ଗଭର୍ଣ୍ଣମେଣ୍ଟ ଏହି ସମ୍ପତ୍ତି କ୍ରୟ କରଅଛନ୍ତି ।

( ଜ ) ସୁପ୍ରିମକୋର୍ଟ—୧୭୭୪ ଖ୍ରୀ: ରେ ଏହି ଅଦାଲତ ପ୍ରତିଷ୍ଠିତ ହୋଇଥିଲା । ୧୮୭୨ ଖ୍ରୀ: ରେ ଏହି ଗୃହକୁ ଭାଙ୍ଗି ହାଇକୋର୍ଟ ନିର୍ମିତ ହେଲା ।

( ଝ ) ସଦର ଦେୱାନୀ ଅଦାଲତ—ପୀଡ଼ିତ ସୈନ୍ୟଙ୍କ ହସପାତାଲ ପାଇଁ ଯେଉଁ ଗୃହ ନିର୍ମିତ ହୋଇଥିଲା ଲର୍ଡ ଡ଼ଲହୌସି ବେଣ୍ଟିକ ତାହାକୁ ଅଦାଲତରୂପେ ବ୍ୟବହାର କଲେ । ପରେ ତାହା ମିଲିଟାରୀ ହସପାତାଲରୂପେ ବ୍ୟବହୃତ ହେଲା ।

(ଞ) ଗୃନ୍ଥାସ ବିଲ୍‌ଡିଂ—ଲର୍ଡ ୱେଲ୍ସେଲେଶଲି ଯେତେବେଳେ ଗଭର୍ଣ୍ଣର ଥିଲେ, ସେ ତେତେବେଳେ ସିଭିଲିଏନ ଯୁବକମାନଙ୍କର ପ୍ରଥମେ ଏ ଦେଶକୁ ଆସିବା ପରେ ଏକବର୍ଷର ଫୋର୍ଟ ଉଇଲିୟମ୍ସ କଲେଜରେ ଉପଯୁକ୍ତ ପଣ୍ଡିତ ଓ ମୁନସିଙ୍କ ନିକଟରୁ ଭାରତୀୟ ଭାଷା ଶିକ୍ଷାର ବ୍ୟବସ୍ଥା କରିଥିଲେ । ସେମାନଙ୍କ ଥିଷ ଓ ପଢ଼ିବାପାଇଁ ଏହି ଗୃହମାନ ନିର୍ମିତ ହୋଇଥିଲା । ଏହା ବର୍ତ୍ତମାନ ସାଧାରଣଙ୍କର ପ୍ରଯୋଜନ ଓ ଗୋଦାମରୂପେ ବ୍ୟବହାର ପାଇଁ ଭଡ଼ା ଦିଆଯାଏ ।

(ଟ) ଟାଉନହଲ—୧୮୧୪ ଖ୍ରୀ: ରେ କଲିକତା ଅଧିବାସୀଙ୍କ ଅର୍ଥରେ ୭ ଲକ୍ଷ ଟଙ୍କା ବ୍ୟୟରେ ଏହା ନିର୍ମିତ ହୋଇଥିଲା ।

(ଠ) ପ୍ରେସିଡେନ୍ସି ହସପାତାଳ—୧୭୭୧ ଖ୍ରୀ: ରେ ନିର୍ମିତ । ୧୭୬୮ ଖ୍ରୀ: ରେ ସରକାର ଜେନାରେଲ ହସପାତାଳ ପାଇଁ ଅନେକ ଜମି କ୍ରୟ କରିଥିଲେ । ଉକ୍ତ ହସପାତାଳ ସାହେବମାନଙ୍କ ବ୍ୟବହାର ପାଇଁ ପ୍ରତିଷ୍ଠିତ ।

(ଡ) ମେୟୋ ହସପାତାଳ—୧୭୯୨ ଖ୍ରୀଷ୍ଟାବ୍ଦର ରେଭରେଣ୍ଡ ଜନ ଓଏନଙ୍କ ଚେଷ୍ଟାରେ ଏହା ସ୍ଥାପିତ । ୧୮୭୧ ଖ୍ରୀ: ରେ ଏହା ଷ୍ଟ୍ରାଣ୍ଡ ରୋଡ଼ର ବର୍ତ୍ତମାନ ଭବନକୁ ଉଠି ଆସିଲା ଏବଂ ୧୮୭୪ ଖ୍ରୀଷ୍ଟାବ୍ଦରୁ ସାଧାରଣଙ୍କ ବ୍ୟବହାରରେ ଲାଗିଅଛି ।

(ଢ) ଏସିୟାଟିକ ସୋସାଇଟି—୧୭୮୪ ଖ୍ରୀ: ରେ ଜାନୁୟାରୀ ୧୫ ତାରିଖରେ ସ୍ୟାର୍ ଉଇଲିୟମ୍ ଜୋନ୍ସଙ୍କ ଦ୍ୱାରା ଏହା ପ୍ରତିଷ୍ଠିତ । ବର୍ତ୍ତମାନ ଗୃହଟି ୧୮୦୭ ଖ୍ରୀଷ୍ଟାବ୍ଦରେ ନିର୍ମିତ ।

(ଣ) ମଦ୍ରାସା—୧୭୮୦ ବା ୮୧ ଖ୍ରୀ: ରେ ଆରବି ଓ ପାରସ୍ୟ ଭାଷା ଏବଂ ମୁସଲମାନ ଆଇନ ଶିକ୍ଷାପାଇଁ ଓ୍ୱାରେନ୍ ହେଷ୍ଟିଂସଙ୍କ ଚେଷ୍ଟାରେ ଏହା ପ୍ରତିଷ୍ଠିତ ହୋଇଥିଲା । ୧୮୨୯ ଖ୍ରୀ: ରେ ଏହାର ଇଂରାଜୀ ବିଭାଗ ଖୋଲା ଯାଇଥିଲା ।

(ତ) ଫ୍ରି ସ୍କୁଲ—୧୭୮୯ ଖ୍ରୀ: ରେ ଖ୍ରୀଷ୍ଟିୟାନ ବାଳକ ବାଳିକାମାନଙ୍କ ପାଇଁ ଏହା ପ୍ରଥମ ପ୍ରତିଷ୍ଠିତ ହୋଇଥିଲା ।

(ଥ) ଫୋର୍ଟ ଉଇଲିୟମ୍ କଲେଜ—ଇଂରାଜୀ କର୍ମଚାରୀଙ୍କୁ ବଙ୍ଗଳା ଶିକ୍ଷାର ସୁବିଧାପାଇଁ ୧୮୦୦ ଖ୍ରୀ: ରେ ଲର୍ଡ ୱେଲ୍ସେଲେସ୍‌ଲିଙ୍କ ଦ୍ୱାରା ଏହା ପ୍ରତିଷ୍ଠିତ ।

(ଦ) ବେଙ୍ଗଲ ବ୍ୟାଙ୍କ—୧୮୦୬ ଖ୍ରୀ: ରେ ଏହି ପ୍ରତିଷ୍ଠିତ । ୧୮୦୯ ଖ୍ରୀ: ରେ ଏହାର ଏହି ନାମ ହୋଇଅଛି । ଏହାର ପ୍ରଥମେ ମୂଳଧନ ଥିଲା ୫୦ ଲକ୍ଷ ଟଙ୍କା । ଗଭର୍ଣ୍ଣମେଣ୍ଟ ୧୦ ଲକ୍ଷ ଟଙ୍କା ଦେଇଥିଲେ ।

(ଧ) ହିନ୍ଦୁ କଲେଜ—୧୮୧୭ ଖ୍ରୀ: ରେ ପ୍ରତିଷ୍ଠିତ । ୧୮୨୬ଖ୍ରୀ: ରେ ଟ ୧୨୦୦୦୦୯ ରେ ଗୃହ ନିର୍ମିତ । ୧୮୫୫ ଖ୍ରୀ: ରେ ପ୍ରେସିଡେନ୍ସି କଲେଜ ଖୋଲା ହେବାରୁ ଏହି ବିଦ୍ୟାଳୟଟି ତାହାର ଅନ୍ତର୍ଭୁକ୍ତ କରାଗଲା ।

(ନ) ବୋଟାନିକ୍ୟାଲ୍ ଗାର୍ଡେନ—୧୭୮୭ ଖ୍ରୀ: ରେ ଭାରତର ଏହି ଅଦ୍ୱିତୀୟ ଗାର୍ଡେନ ପ୍ରତିଷ୍ଠିତ । ଏହିଠାରେ ମୋଗଲମାନଙ୍କର ଥାନା ଓ ମୃତ୍ତିଦୁର୍ଗ ଥିଲା । ଚା ଓ ସିନ୍‌କୋନା ବୃକ୍ଷ ସମ୍ବନ୍ଧରେ ପ୍ରଥମେ ଏହିଠାରେ ପରୀକ୍ଷା ହୋଇଥିଲା ବୋଲି କଥିତ ଅଛି । ଦାରୁଚିନି, ଲବଙ୍ଗ, ଅଳାଇଚ ପ୍ରଭୃତି ଗଛ ମଧ୍ୟ ବଙ୍ଗଦେଶରେ ପ୍ରଥମେ ଏହିଠାରେ ରୋପିତ ହୋଇଥିଲା । ଏଠାରେ ଇଷ୍ଟଇଣ୍ଡିଆ କୋମ୍ପାନୀଙ୍କର ପ୍ରସିଦ୍ଧ ଇଞ୍ଜିନିୟାର କର୍ଣ୍ଣେଲ କିଡ୍‌ଙ୍କର ଗୋଟିଏ ପ୍ରସ୍ତର ମୟ ସ୍ମୃତିସ୍ତମ୍ଭ ଅଛି । ଏହାଙ୍କନାମରୁ ଖିଦିରପୁର ହୋଇଅଛି ।

(ପ) ସଂସ୍କୃତ କଲେଜ—୧୮୨୪ଖ୍ରୀ: ରେ ଲର୍ଡ଼ ଆମହାର୍ଷ୍ଟଙ୍କ ସମୟରେ ସ୍ଥାପିତ ।

(ଫ) ବିଶପ୍ କଲେଜ—୧୮୨୦ ଖ୍ରୀ: ରେ ବିଶପ୍ ମିଡ଼ଲ୍‌ଟନଙ୍କ ଦ୍ୱାରା ଏହାର ଭିତ୍ତିସ୍ଥାପନ କରାଯାଇଥିଲା । ଫଳତ ତାହା ଶିବପୁର ଇଞ୍ଜିନିୟାରିଂ କଲେଜ ଯେଉଁଠାରେ ଅଛି ସେଠାରୁ ୨୨୭ନମ୍ବର ସାର୍କୁଲର ରୋଡ଼କୁ ଏବଂ ପରେ ୨୨୪ ନମ୍ବର ଲୋୟାର ସାର୍କୁଲର ରୋଡ଼କୁ ଉଠି ଆସିଲା ।

(ବ) ଲା ମାର୍ଟିନିୟାର କଲେଜ—କ୍ଲଡ୍ ମାର୍ଟିନଙ୍କ (General Claude Martin) ଦାନପତ୍ରର ସର୍ତ୍ତାନୁସାରେ ୭୨ ଲକ୍ଷ ଟଙ୍କା ବ୍ୟୟରେ ୧୮୩୬ ଖ୍ରୀ: ମାର୍ଚ୍ଚ ୧ ତାରିଖରେ ଏହି ବିଦ୍ୟାଳୟ ପ୍ରତିଷ୍ଠିତ । ଏଠାରେ ଛାତ୍ରମାନଙ୍କର ଆହାର ଓ ଶିକ୍ଷାର ବ୍ୟୟ ଲାଗେ ନାହିଁ ।

(ଭ) ଜେନେରେଲ 'ଏସେମ୍ବ୍ଲିଜ ଇନଷ୍ଟିଚିଉସନ—୧୮୩୦ ଖ୍ରୀ: ଜୁଲାଇ ୧୩ ତାରିଖରେ ଏହା ସ୍ଥାପିତ । ପରେ ଏହାର ନାମ Scottish Church College ହୋଇଅଛି ।

ଅଳ୍ପ କଥା ପୁଣି କାର୍ଯ୍ୟ ଅନ୍ତର । କାଳ-ପାରବାର ବଡ଼ ଦୁସ୍ତର ॥

(ମ) ଫ୍ରି ଚର୍ଚ୍ଚ ଇନଷ୍ଟିଟିଉଶନ୍—୧୮୪୩ ଖ୍ରୀ: ରେ ଡାକ୍ତର ଡଫଙ୍କ ଚେଷ୍ଟାରେ ସ୍ଥାପିତ । ୧୮୫୭ ଖ୍ରୀ: ରେ ନୂତନ ଗୃହ ନିର୍ମିତ ।

(ଯ) ଡଷ୍ଟ୍ରିକ୍ଟ ଖ୍ୟାରିଟେବଲ୍ ସୋସାଇଟି—୧୮୦୦ ଖ୍ରୀ: ରେ ସ୍ଥାପିତ ।

(ର) ମେଡିକ୍ୟାଲ କଲେଜ—୧୮୩୪ ଖ୍ରୀ, ରେ ଆରମ୍ଭ ହୋଇ ପରବର୍ଷର ନିର୍ମାଣ କାର୍ଯ୍ୟ ଶେଷ ହେଲା । ହାସପାତାଲ ପରେ ନିର୍ମିତ । ୧୮୫୨ଖ୍ରୀ: ଡିସେମ୍ବର ୧ତାରିଖଠାରୁ ରୋଗୀମାନଙ୍କୁ ନିଆଗଲା । ସେଠାରେ ୫୦୦ ରୋଗୀଙ୍କର ରହିବାର ସ୍ଥାନ ନିର୍ମାଣ କରାଯାଇଥିଲା ।

(ଲ) କଲିକତା ପବଲିକ୍ ଲାଇବ୍ରେରୀ—୧୮୩୫ ଖ୍ରୀ:ରେ ସ୍ଥାପିତ ।

(ବ) ସେଣ୍ଟଜେଭିୟର କଲେଜ—୧୮୩୪ ଖ୍ରୀ: ରେ ସ୍ଥାପିତ । ପରେ ଏହାର ନାମ ସେଣ୍ଟଜନ୍ କଲେଜ । ୧୮୪୪ ଖ୍ରୀ: ରେ ରେଭରେଣ୍ଡ ଡାକ୍ତର କାରୁ ଏହି ଗୃହକୁ କ୍ରୟ କରିଥିଲେ ।

(ଶ) ବେଥୁନ୍ କଲେଜ—୧୮୫୦ ଖ୍ରୀ: ରେ ନଭେମ୍ବର ମାସରେ ବେଥୁନ୍ ସାହେବଙ୍କ ଦ୍ୱାରା ଏହା ପ୍ରତିଷ୍ଠିତ ।

(ଷ) ଆର୍ଟସ୍କୁଲ—୧୮୫୪ ଖ୍ରୀ: ରେ ପ୍ରତିଷ୍ଠିତ । ୧୮୬୪ ଖ୍ରୀ: ରେ ସରକାର ଏହାର ଭାର ଗ୍ରହଣ କଲେ ।

(ସ) କାଷ୍ଟମ ହାଉସ୍—୧୬୭୭ ଖ୍ରୀ: ମେ ୫ ତାରିଖରେ ପ୍ରସ୍ତାବିତ ହୋଇ ୧୮୧୯ ଖ୍ରୀ: ଫେବୃୟାରୀ ୧୨ ତାରିଖରେ ନୂତନ ଗୃହର ଭିତ୍ତି ସ୍ଥାପିତ ।

(ହ) ଫୋର୍ଟ ଉଇଲିୟମଦୁର୍ଗ—୧୬୭୬ ଖ୍ରୀ: ରେ ଇଂଲଣ୍ଡର ଚତୁର୍ଥ ଉଇଲିୟମଙ୍କ ନାମାନୁସାରେ ଏହା ନିର୍ମିତ । ଏହା ନିର୍ମାଣରେ ମୋଟ ବ୍ୟୟ ଦୁଇ ମିଲିୟନ୍ ଷ୍ଟର୍ଲିଂ । ସେଥିମଧ୍ୟରୁ ଗଙ୍ଗାରଧାର ବାନ୍ଧିବାକୁ ୫ଲକ୍ଷଟଙ୍କା ଖର୍ଚ୍ଚ ହୋଇଥିଲା ।

(କ୍ଷ) ଟଙ୍କାଶାଳ—୧୭୬୮ ଖ୍ରୀ: ରେ ପ୍ରଥମ ମୁଦ୍ରା ପ୍ରସ୍ତୁତ ହେଲା । ବର୍ତ୍ତମାନ ଟଙ୍କାଶାଳ ନିର୍ମାଣ ୧୮୨୪ ଖ୍ରୀ: ମାର୍ଚ୍ଚରେ ଆରମ୍ଭ ହେଲା । ଏହାର ନିର୍ମାଣ କାର୍ଯ୍ୟରେ ୧ଲକ୍ଷ ୭୦ ହଜାର ପାଉଣ୍ଡ ଏବଂ କଳକାରଖାନା ବସାଇବାରେ ୧୦ ହଜାର ପାଉଣ୍ଡ ବ୍ୟୟ ହୋଇଥିଲା । କଥିତ ଅଛି, ଏହା ପୃଥିବୀ ମଧ୍ୟରେ ସର୍ବାପେକ୍ଷା ବୃହତ୍ ଟଙ୍କାଶାଳ ।

(କ-୧) ଜୁଲଜିକ୍ୟାଲ ଗାର୍ଡେନ—ଡାକ୍ତର ଫେୟରର (Dr. Faarer C. S. I) ସର୍ବପ୍ରଥମେ ୧୮୬୭ ଖ୍ରୀ:ରେ ଏହାର କଳ୍ପନା କଲେ । ୧୮୭୬ ଖ୍ରୀ: ଜାନୁୟାରୀ ୧ ତାରିଖରେ ସମ୍ରାଟ ୭ମ ଏଡୱାର୍ଡ ପ୍ରିନ୍ସ ଅବ ୱେଲ୍ସ ରୂପେ ଯେତେବେଳେ ଭାରତବର୍ଷକୁ ଆଗମନ କରିଥିଲେ ସେତେବେଳେ ଏହାର ଉଦବୋଧନ କଲେ ।

(କ-୨) ପଶୁକ୍ଲେଶ ନିବାରଣୀ ସଭା—୧୮୬୧ ଖ୍ରୀ: ରେ ଲର୍ଡ ଏଲ୍‌ଗୀନଙ୍କ ଦ୍ୱାରା ପ୍ରତିଷ୍ଠିତ ।

(କ-୩)ରେସକୋର୍ସ—୧୮୦୮ ଖ୍ରୀ: ରେ ଜନକଙ୍କ ଦ୍ୱାରା ଏହା ଆରମ୍ଭ ହୋଇଥିଲା । ବର୍ତ୍ତମାନ ରେସକୋର୍ସ ୧୮୧୧ ଖ୍ରୀ: ରେ ପ୍ରସ୍ତୁତ ।

(କ-୪) ପବ୍ଲିକ ଇନ୍‌ଷ୍ଟ୍ରାକଶନ୍ କମିଟି—୧୮୨୩ ଖ୍ରୀ:ରେ ସ୍ଥାପିତ ।

(କ-୫)ଲଣ୍ଡନ ମିଶନାରିସୋସାଇଟି-୧୭୯୮ ରେ ସ୍ଥାପିତ ଓ ୧୮୫୪ ଖ୍ରୀ:ରେ ଭବାନୀପୁରକୁ ସ୍ଥାନାନ୍ତରିତ ।

(କ-୬) କ୍ୟାମ୍ବେଲ ହସପାତାଳ—ଏହାର ପୂର୍ବନାମ ଥିଲା ପସାର ହସପାତାଳ ।

(କ-୭) ବିଜ୍ଞାନ ସଭା—୧୮୭୬ଖ୍ରୀ:ରେ ବହୁବଜାରରେ ଡାକ୍ତର ମହେନ୍ଦ୍ରଲାଲ ସରକାର ସି. ଆଇ. ଇ. ଙ୍କ ଦ୍ୱାରା ପ୍ରତିଷ୍ଠିତ । ପ୍ରତ୍ୟେକ ଗଭର୍ଣ୍ଣରଜେନେରେଲ୍ ଏହାର ପୃଷ୍ଠପୋଷକ ହୋଇଅଛନ୍ତି ।

(କ-୮)ଶୋଭାବଜାର ବେନେଭୋଲ୍ୟାଣ୍ଟ ସୋସାଇଟି—ଦୁସ୍ଥଲୋକ ଓ ଦରିଦ୍ର ବିଧବାମାନଙ୍କ ସାହାଯ୍ୟ ପାଇଁ ୧୮୩୩।୩୪ ରେ ମହାରାଜା କମଲକୃଷ୍ଣଦେବ ବାହାଦୁରଙ୍କ ପୃଷ୍ଠପୋଷକତାରେ ଏହା ପ୍ରତିଷ୍ଠିତ ।

(କ-୯) ମୁସଲମାନ ସାହିତ୍ୟ ସଭା—ନବାବ ଅବଦୁଲ ଲତିଫ ସି. ଆଇ. ଇ. ବାହାଦୁରଙ୍କ ଚେଷ୍ଟାରେ ୧୮୬୩ ଖ୍ରୀ: ରେ ଏହା ପ୍ରତିଷ୍ଠିତ ।

(କ-୧୦)ଇଡେନଗାର୍ଡେନ—ଲର୍ଡ ଅକଲ୍ୟାଣ୍ଡଙ୍କ ଶାସନକାଳରେ ତାଙ୍କର ଭଗିନୀଦ୍ୱୟ ମିସେସ୍ ଇଡେନ୍ ଦ୍ୱାରା ୧୮୪୦ ଖ୍ରୀ:ରେ ଏହି ଉଦ୍ୟାନର ପ୍ରତିଷ୍ଠା ହୋଇଥିଲା ।

(କ-୧୧) ଫିମେଲ୍ ଅରଫେନ୍ ଏସାଇଲମ୍—୧୮୧୫ ଖ୍ରୀ: ରେ ଏହା ପ୍ରତିଷ୍ଠିତ ।

(କ-୧୨) ସେଲୋନ୍ ହାଉସ୍—୧୮୭୩ ଖ୍ରୀ:ରେ ଏହ ବୃହ ନିର୍ମିତ ଏହା ଉତ୍ତରମହଲାଷ୍ଟିର ଲମ୍ବା ପ୍ରାୟ ୬୦୦ ଫିଟ୍ ଓ ପ୍ରସ୍ଥ ୬୦ ଫିଟ୍। ଏଠାରେ ବହୁ ମହାତ୍ମାଙ୍କର ଅର୍ଦ୍ଧାବୟବ ପ୍ରସ୍ତର ମୂର୍ତ୍ତି ଓ ପଟଚିତ୍ରମାନ ସଜ୍ଜିତ ହୋଇ ରହିଅଛି।

(କ-୧୩) ଭାରତୀୟ ଜାତୀୟ ମିଉଜିୟମ୍—ଏସିଆଟିକ ସୋସାଇଟି ଦ୍ୱାରା ଏହାର ପ୍ରଥମକାର୍ଯ୍ୟ ହୁଏ। ୧୮୬୬ ଖ୍ରୀ:ରେ ଏହା ସରକାରଙ୍କ ସମ୍ପତ୍ତି ହେଲା। ବର୍ତ୍ତମାନ ଗୃହଟି ୧୮୭୫ଖ୍ରୀ:ରେ ସାଧାରଣଙ୍କ ପାଇଁ ଖୋଲାଗଲା। ୨୧ଜଣ ଟ୍ରଷ୍ଟିଙ୍କ ଦ୍ୱାରା ଏହାର କାର୍ଯ୍ୟ ପରିଚାଳିତ। ଅତୀତ ଯୁଗର ପ୍ରତ୍ନତତ୍ତ୍ୱବିତ୍ ପଣ୍ଡିତମାନଙ୍କର ଏହା ଏକ ଗବେଷଣା ମନ୍ଦିର।

(କ-୧୪) ଜେନାରେଲ୍ ପୋଷ୍ଟଅଫିସ—୧୮୬୮ ଖ୍ରୀ: ରେ ଏହି ଗୃହ ନିର୍ମିତ।

(କ-୧୫) ଗଭର୍ଣ୍ଣମେଣ୍ଟ ଟେଲିଗ୍ରାମ୍ ଅଫିସ। ୧୮୭୩ ଖ୍ରୀ: ରେ ନିର୍ମିତ। ଏହାର ଉଚ୍ଚତା ୬୬ଫିଟ୍ ଓ ଟାଉଆରର ଉଚ୍ଚତା ୧୨୦ ଫିଟ୍।

(କ-୧୬)ଇଉନାଇଟେଡ୍ ସର୍ଭିସ କ୍ଲବ- ୧୮୪୫ଖ୍ରୀ: ରେ ସ୍ଥାପିତ। ତେତେବେଳେ ଏହାର ନାମ ଥିଲା ବେଙ୍ଗଲମିଲିଟାରୀ କ୍ଲବ। ୧୮୫୩ ମାର୍ଚ୍ଚ ୧୫ ତାରିଖରେ ଏ ନାମ ହୋଇଅଛି।

(କ-୧୭) ଗାଲ୍‌ଟନ୍ ଟ୍ରି କଲେଜ—ଉଚ୍ଚଶିକ୍ଷା ପାଇଁ ଏହା ଏକମାତ୍ର ଅବୈତନିକ ବିଦ୍ୟାଳୟ। ଏହା ସୁପ୍ରସିଦ୍ଧ ମତିଲାଲ ଶୀଲଙ୍କ ଦ୍ୱାରା ସ୍ଥାପିତ।

## ୧୦୫— ପୃଥିବୀର ବୃହତ୍ତମ, ମହତ୍ତମ, ଦୀର୍ଘତମ ଓ ଉଚ୍ଚତମ।

ଉଚ୍ଚତମ ପର୍ବତ—ଗୌରୀଶଙ୍କର ୨୯୧୪୧ ଫୁଟ୍।

ବୃହତ୍ତମ ପୁସ୍ତକାଗାର—ବିବଲିଓଥେକ ନେସନାଲ (ଫ୍ରାନ୍ସ) ପ୍ରାୟ ୧,୦୦୦,୦୦୦,୦୦୦ ପୁସ୍ତକ। Bibiliotheque Nationale

ବୃହତ୍ତମ ମରୁଭୂମି—ସାହାରା (ଅଫ୍ରିକା)

ଉଚ୍ଚତମ ଅଟ୍ଟାଳିକା—ଏମ୍ପାୟାର ଷ୍ଟେଟ ବିଲ୍ଡିଙ୍ଗ (ଅମେରିକାର ଯୁକ୍ତରାଜ୍ୟ) ୧୨୫୦ ଫୁଟ୍। Empire State Building (U.S.A.)

ବୃହତ୍ତମ ପ୍ରାସାଦ—ଭେଟିକେନ (ରୋମ) Vatican (Rome)

ବୃହତ୍ତମ ବାଷ୍ପୀୟପୋତ—ନରମେଣ୍ଡି (୭୬,୯୦୦ ଟନ) Normandie (76,900 tons)

ବୃହତ୍ତମ ନଗର—ଲଣ୍ଡନ (London) ଲୋକସଂଖ୍ୟା—୮,୨୪,୨୧,୪୩

ଉଚ୍ଚତମ ପ୍ରତିମୂର୍ତ୍ତି—ଲିବାର୍ଟିର ପ୍ରତିମୂର୍ତ୍ତି (ନିଉୟର୍କ) ୧୫୧ ଫୁଟ୍ ଉଚ୍ଚ। Statue of Liberty (New York) 151 ft. high.

ଉଚ୍ଚତମ ଗିର୍ଜା—ଅଲ୍ମ କେଥେଡ୍ରେଲ (ଜର୍ମାନି) ୫୩୨ ଫୁଟ୍ ଉଚ୍ଚ। Ulm Cathedral (Germany) 532 ft high.

ବୃହତ୍ତମ ହୀରକ—ଦି କଲିନେନ। The Cullinan

ଅଧିକ ବୃଷ୍ଟିପ୍ରାପ୍ତ ସ୍ଥାନ—ଚେରାପୁଞ୍ଜି (ଆସାମ) Cherrapunci (Assam)

ବୃହତ୍ତମ ଓ ଗଭୀରତମ ମହାସାଗର—ପ୍ରଶାନ୍ତ ମହାସାଗର Pacific ocean.

ଦୀର୍ଘତମ ଗିର୍ଜା—ସେଣ୍ଟପିଟରଙ୍କ ଗିର୍ଜା (ରୋମ) Church of St Peters

ଦୀର୍ଘତମ Corridor—ଭିତରକୁ ଯିବା ଆସିବା ସାଧାରଣପଥ, ରାମେଶ୍ୱର ମନ୍ଦିର କୋରିଡର୍। (ଦ: ଭାରତ, ପ୍ରାୟ ୪୦୦୦ ଫୁଟ୍ ଲମ୍ବ) Ramaswaram Temple Corridor

ଦୀର୍ଘତମ ରେଲୱେ ପ୍ଲାଟଫର୍ମ—ସୋନପୁର ଷ୍ଟେସନ (ବିହାର)

ବୃହତ୍ତମ ମୁକ୍ତା—ବେରେସ୍‌ଫୋର୍ଡ ହୋପ ମୁକ୍ତା। ଓଜନ ୧୮୦୦ ଗ୍ରାମ Beresford-Hope pearl, Weighing 1800 Grams.

ଦୀର୍ଘତମ ରେଲରାସ୍ତା—ରିଗାଠାରୁ ଭ୍ଲାଡିଭୋଷ୍ଟକ (୬୦୦୦ ମାଇଲ) Riga to vladivostock.

ବୃହତ୍ତମ ଦୂରବୀକ୍ଷଣ ଯନ୍ତ୍ର—ମାଉଣ୍ଟ ଉଇଲସନ ଅବଜାରଭେଟରୀ ଠାରେ—(ଅମେରିକାର ଯୁକ୍ତରାଜ୍ୟ) At mount Wilson Observatory

(U. S. A) having 200 inch Reflector.

ବୃହତ୍ତମ ଯାଦୁଘର—ବ୍ରିଟେନର ଯାଦୁଘର । ( ଲଣ୍ଡନ ) British museum. ( London )

ସର୍ବତ୍ତମ ନଦୀ—ମିସିସିପି ( Mississipi )

ବୃହତ୍ତମ ନଦୀ—ଅମେଜନ ( Amazon )

ବୃହତ୍ତମ ରେଲଷ୍ଟେସନ—ଗ୍ରେଣ୍ଡ ସେଣ୍ଟ୍ରାଲ ଟରମିନାଲ । ( ନିଉୟର୍କ, ୪୭ ପ୍ଲାଟଫର୍ମ ) Grand Central Terminal (New york) with 47 platforms.

ସର୍ବତମ ଡୁମ—ଗୋଲ ଗମ୍ବାଜ (ବିଜାପୁର) ୧୪୪ ଫୁଟବ୍ୟାସ (Dome), Gol Gumbaj ( Bijapur ) 144 ft. in actual diameter.

ସର୍ବତମ କେନାଲ—ଷ୍ଟାଲିନର ହ୍ୱାଇଟ ସି ବାଲ୍ଟିକ୍ କେନାଲ Stalin's white Sea-Baltic Canal

ସର୍ବତମ ପ୍ରାଚୀର—ଚୀନର ଭିତ୍ତି । ୧୦୦୦ ମାଇଲ ଲମ୍ବ ଖ୍ରୀ: ପୂ: ୨୧୪ ରେ ନିର୍ମିତ । The great wall of China, over 1000 miles long and was built in 214 B. C.

ବୃହତ୍ତମ ଯୁଦ୍ଧଜାହାଜ—ଏଇଚ. ଏମ୍. ଏସ୍ ହୁଡ଼ H. M. S Hood.

ବୃହତ୍ତମ ଉପଦ୍ୱୀପ—ଭାରତବର୍ଷ ।

ବୃହତ୍ତମ ମହାଦେଶ—ଅସିଆ ।

" ଦ୍ୱୀପ—ଗ୍ରୀନଲେଣ୍ଡ ( ୮୨୭୩୦୦ ବର୍ଗମାଇଲ )

ଜନାକୀର୍ଣ୍ଣ ଦେଶ—ଭାରତବର୍ଷ ।

ପୃଥିବୀର ସର୍ବଶ୍ରେଷ୍ଠ ମାନବ ଅହିଂସାନୀତି ପ୍ରଚାରକ ଭଗବଦ୍ ପ୍ରେରିତ ଦୂତ ମହାତ୍ମା ଗାନ୍ଧି ଅଟନ୍ତି ।

ପୃଥିବୀର ସୁନ୍ଦର ସମାଧି—ଅଗ୍ରାର ତାଜମହଲ । ଏହା ନିର୍ମାଣ କରିବାରେ ତୁଇ ମିଲିଅନ ପାଉଣ୍ଡ ଖର୍ଚ୍ଚ ହୋଇଥିଲା ।

ବୃହତ୍ତମ ଘଣ୍ଟା—ମସ୍କୋର ଘଣ୍ଟା, ଓଜନ ୪୩୨୦୦୦ ପାଉଣ୍ଡ, ବ୍ୟାସ ୨୧ ଫୁଟ ।

" ଗ୍ରହ—ବୃହସ୍ପତି । Jupiter.

" ଅବଲଟ—ଋସିଅର ନିପରଷ୍ଟ୍ରଇ ଠାରେ At Dnieperstroi ( Russia ) ବର୍ତ୍ତମାନ ମିରଟ ଡ୍ୟାମ ( ଢାଡେସ )

" ରେଲରାସ୍ତା—ଟ୍ରାନ୍ସସାଇବେରିଏନ ରେଲରାସ୍ତା ।

" ସୁଡ଼ଙ୍ଗପଥ—ପିରେନିଜ ତଳେ ( ୨୫ ମା, ଲମ୍ବ ) Under the Pyreneese ( 25 miles long )

" ବାୟୁପୋତ—ମେକନ (ଅମେରିକାର ଯୁକ୍ତରାଜ୍ୟ) ( Dirigible ) Macon (U S. A )

" ପାର୍କ (ବିହାରଭୂମି)—ୟେଲୋଷ୍ଟୋନ ନେସନାଲ ପାର୍କ, ( ଅମେରିକାର ଯୁକ୍ତରାଜ୍ୟ, ୩୩୫୦ ବର୍ଗମାଇଲ) Yellowstone National Park ( U. S. A )

ବୃହତ୍ତମ ସିଁଗଲଷ୍ଟେଟ—ଇଉ. ଏସ୍. ଏସ୍. ଅର୍ ( ଋସିଅ ) W. S. S. R. ( Russia )

" ଅଚବେ (ଖିଲାଣ)—ସିଡ଼ନି ହାରବାର ବ୍ରିଜ୍ ( Archway ) ( ଅଷ୍ଟ୍ରେଲିଅ ) Sydney Harbour Bridge ( Australia )

" ସୈନ୍ୟବାହିନୀ—ରେଡ୍ ଅର୍ମି ( ଋସିଅ ) Red Army ( Russia )

" ଚଳଚିତ୍ର ଗୃହ—ରକ୍ସି ( ନିଉୟର୍କ ) Roxy ( New York ) ୬୦୦୦ ଲୋକ ଧରିପାରେ ।

## ୧୦୭— ବୃହତ୍ ପୁସ୍ତକାଗାର

୧ । ଲେନିନଗ୍ରେଡ଼ର ସାଧାରଣ ପୁସ୍ତକାଗାର—ପ୍ରାୟ ୪,୮୩୨ ୧୪୮ ବହି ୩୩୧, ୦୦୦ ପୁସ୍ତିକା ।

୨ । ବିବ୍ଲିଓଥେକ୍ ନେସନାଲ୍, ପାରିସ୍ ( Bibliotheque Nationale. Paris) ପ୍ରାୟ ୪,୦୦୦,୦୦୦ ମୁଦ୍ରିତ ପୁସ୍ତକ, ୨୦,୦୦୦ ହସ୍ତାକ୍ଷରରେ ବହି, ୧୨୫,୦୦୦ ପାଣ୍ଡୁଲିପି, ୨୦୫,୦୦୦ ମୁଦ୍ରା ଏବଂ ପଦକ, ଓ ପ୍ରାୟ ୩,୦୦୦,୦୦୦ ମୁଦ୍ରିତ ପ୍ରତିରୂପ ।

ଶାସ୍ତ୍ରେ ଔଷଧ ଅଛି ସ୍ୱମସ୍ତୁଙ୍କର । ସ୍ନେହ ଔଷଧ ଏକା ନାହିଁ—ମୂର୍ଖର ।

୩ । ବ୍ରିଟିଶ୍ ମ୍ୟୁଜିଅମ୍, ଲଣ୍ଡନ—ପ୍ରାୟ ୩,୨୦୦,୦୦୦ ମୁଦ୍ରିତ ପୁସ୍ତକ, ପାଣ୍ଡୁଲିପି ୫୩,୬୫୦, ସନନ୍ଦ ଏବଂ ଚାଲିକା ୮୫୦୦୦, ମୋହର ଓ ଛାପ ୧୮୦୦୦, ପ୍ରାଚ୍ୟ ଭୂଖଣ୍ଡ ମୁଦ୍ରିତ ପୁସ୍ତକ, ୧୨୦,୦୦୦ ପ୍ରାଚ୍ୟର ପାଣ୍ଡୁଲିପି ୧୬୪୦୦ ଏବଂ 2850 Papyri. ପାପାଇରସ ଉପରେ ଲିଖିତ ହସ୍ତଲିପି

୪ । ପ୍ରିଉସିସ୍ ଷ୍ଟାଟସ୍ ବିବ୍ଲିଓଥେକ୍, ବର୍ଲିନ (Preussische Staats bibliothek, Berlin ) ପ୍ରାୟ ୨,୨୮୭,୨୮୧ ବହି । ୫୧୧୪୭ ପାଣ୍ଡୁଲିପି, ୪୧୬.୪୧୫ ହସ୍ତଲିପି । ୩୭୧,୮୨୧ ମାନଚିତ୍ର । ୨୧୦,୦୦୦ ମୁଦ୍ରିତ ପ୍ରତିରୂପ ଏବଂ ଛବି ଇତ୍ୟାଦି ।

୫ । ନେସନାଲ ବିବ୍ଲିଓଥେକ (ଭିଏନା) National Bibliothek Vienna—ପ୍ରାୟ ୧,୨୫୦,୦୦୦ ବହି । ୧୦୦,୦୦୦ ପୁସ୍ତିକା: ୩୫,୦୦୦ ପାଣ୍ଡୁଲିପି, ୯,୦୦୦ ପ୍ରାଥମିକ ମୁଦ୍ରଣ ପୁସ୍ତକ Incunabula. ୬୦,୦୦୦ ହସ୍ତଲିପି, ୧୧୦,୦୦୦ ମାନଚିତ୍ର । ୨୦୦,୦୦୦ ଛବି । 96,000 Papyri.

୬ । ବଡ୍‌ଲିଏନ୍ ପୁସ୍ତକାଗାର ( ଅକ୍ସଫୋର୍ଡ ) Badleian Library Oxford. ୧,୨୫୦,୦୦୦ ବହି । ୨,୫୦୦,୦୦୦ ରୁ ଅଧିକ ସାହିତ୍ୟ । ୪୦,୦୦୦ ପାଣ୍ଡୁଲିପି ।

୭ । ବିବ୍ଲିଓଟେକା ନେସ୍‌ନାଲ, ମାଡ୍ରିଡ୍—Biblioteca National, Madrid—୧,୨୧୦,୨୨୦ ବହି । ୨୪୧୨ ପ୍ରାଥମିକ ମୁଦ୍ରଣ ପୁସ୍ତକ Incunabula. ପାଣ୍ଡୁଲିପି ୩୦,୧୬୨, ଦଲିଲ୍ ୨୦୪୭୦, ଛବି ୩୦, ମୁଦ୍ରିତ ପ୍ରତିରୂପ ୧୦୧,୨୦୦

୮ । କଙ୍ଗେଲିଜ୍ ବିବ୍ଲିଓଥେକ୍, କୋପେନହେଗେନ୍ ।—Kongelize Bibliothek, Copenhagen--ପ୍ରାୟ ୮୫୦,୦୦୦ ବହି, ୩୦,୦୦୦ ପାଣ୍ଡୁଲିପି, 4000 incunabula. [ପ୍ରାଥମିକ ମୁଦ୍ରଣ ପୁସ୍ତକ]

୯ । ୟୁନିଭର୍ସିଟେଟ୍ସ୍, ବିବ୍ଲିଓଥେକ୍, ଅମଷ୍ଟର୍‌ଡମ । Universiteits Bubliothek, Amsterdam. ୮୦୦,୦୦୦ ବହି, ୪୦୦,୦୦୦ ପୁସ୍ତିକା, ୬୦,୦୦୦ ପାଣ୍ଡୁଲିପି, 200 incunabula. ( ପ୍ରାଥମିକ ମୁଦ୍ରଣ ପୁସ୍ତକ)

୧୦ । ବିବ୍ଲିଓଥେକ୍ ରୟେଲ ବେଲଜିକ୍—ବ୍ରସେଲ୍ସ । Bibliotheque Royale of Belgique, Brussels ପ୍ରାୟ ୮୦୦,୦୦୦ ବହି, ୩୪,୬୦୦, ପାଣ୍ଡୁଲିପି ଓ ନକ୍ସା, ୩୧,୬୦୦୦ ପାଣ୍ଡୁଲିପି, ୨୭୭,୦୦୭ ମୁଦ୍ରିତ ପ୍ରତିରୂପ, ୫୪,୦୦୦ ପଦକ ଏବଂ ମୁଦ୍ରା ।



## ୧୦୬—ନୂତନ ଆବିଷ୍କାର ଓ ଆବିଷ୍କାରକ

୧ । କୋଲ୍ଟ ( ଅମେରିକା )— Revolver. (୧୮୩୫)

୨ । ରାଇଟ ବ୍ରଦରସ (ଅମେରିକା)—ଉଡ଼ାଜାହାଜ (୧୯୦୩) Wright Brothers

୩ । ଥିମନିଅର ( ଫ୍ରାନ୍ସ )— ସିଲାଇକଳ (୧୮୩୦) Thimonnier

୪ । ନୋବେଲ (ସୁଇଡ଼େନ)—ଡ଼ାଇନାମାଇଟ୍ Dynamite ( 1867 )

୫ । ମେଡ଼େମ କୁରି ( ଫ୍ରାନ୍ସ )—ରେଡିଅମ୍ (Radium) Madame Currie

୬ । ଇଷ୍ଟମେନ ( ଅମେରିକା )— Photo Film. Eastman (୧୮୮୮)

୭ । ରେଣ୍ଟଜେନ୍ (ଜର୍ମାନ)--X-Ray machine (1895) Roentgen

୮ । ମେରଗେନ୍‌ଥେଲର ( ଅମେରିକା )— Mergenthaler Linotype (1885)

୯ । ଲିଷ୍ଟର ( ଇଂଲଣ୍ଡ )— Antiseptic Surgery (1867)

୧୦ । କଚ (Koch) (ଜର୍ମାନ)— Cholera bacillus. (1884)

୧୧ । ଲେଭେରେନ (Laveran) (ଜର୍ମାନ)—Moleria parasites. ( 1880 )

୧୨ । ଇବର୍ଥ (Eberth)-Typhoid bacillus (1880 )

୧୩ । ଡ଼ାକ୍ତର ଜେନାର— ବସନ୍ତ ଟୀକା ୧୮୯୬

୧୪ । ଡେଭି (Davy) ଇଂଲଣ୍ଡ—Miner's Safety Lamp.

୧୫ । ଫେରେନ୍‌ହିଟ୍ (Fahrenlet) ତାପମାନଯନ୍ତ୍ର (୧୭୨୧)
ୟ୍ୟାର୍ ସେଖର ନେକ୍‌ଟ' ଉମନ । ଅଲୋକ ତତ୍ତ୍ୱ
ପ୍ରିନ୍‌ସ ଗେଲ୍‌ଟଜନ୍ ଭୂମିକମ୍ପ ମାନଯନ୍ତ୍ର
ଫିନ୍‌ସେନ୍ ( Finsen ) { କୃତ୍ରିମ ସୂର୍ଯ୍ୟାଲୋକଦ୍ୱାରା ରୋଗ ଅପନୟନର ଆବିଷ୍କାରକ
ଆଇନ୍ ଷ୍ଟାଇନ୍ { ବୈଜ୍ଞାନିକ ଦାର୍ଶନିକତାର ଯୁଗାନ୍ତରକାରୀ ଅପେକ୍ଷିକ ତତ୍ତ୍ୱର ଜନକ

## ୧୦୮— ମଧ୍ୟଯୁଗର ସପ୍ତାଶ୍ଚର୍ଯ୍ୟ

୧ । ରୋମର କଲୋସିଅମ୍—Colosseum at Rome.
୨ । ଆଲେକଜାଣ୍ଡ୍ରିଆର କେଟେକୋମ୍ବସ୍—Catacombs of Alexandria.
୩ । ଚୀନର ପ୍ରାଚୀର— Great wall of China.
୪ । ଇଂଲଣ୍ଡର ଷ୍ଟୋନହେଞ୍ଜ—Stonehenge of England.
୫ । ପିସାର ଲାଇନିଂ ଗୁମ୍ବଜ—Lining Tower of Pisa.
୬ । ନେନକିଂର ସହରର ପୋର୍ସିଲେନ୍ ଅଟ୍ଟାଳିକା—Porcelain Tower of Nanking
୭ । କନଷ୍ଟାଣ୍ଟିନୋପଲ୍‌ରେ ସେଣ୍ଟ ସୋଫିଆଙ୍କ ମସ୍‌ଜିଦ୍—Mosque of St. Sophia at Constantinople.

## ୧୦୯—ଆଧୁନିକ ଯୁଗର ସପ୍ତାଶ୍ଚର୍ଯ୍ୟ

୧ । ବେତାର ଯନ୍ତ୍ର ଓ ଟେଲିଫୋନ—Wireless Telegraphy & Telephony.
୨ । ମୋଟର ଓ ଇଞ୍ଜିନ—Automobile & Locomotive.
୩ । ବ୍ୟୋମଯାନ—Aeroplane.
୪ । ରେଡ଼ିଅମ୍ ଆବିଷ୍କାର—Discovery of Radium.
୫ । ଏନେସ୍‌ଥେଟିକ୍ସ ଓ ଏଣ୍ଟିଟକ୍ସିନ୍ସ—Discovery of Anesthetics & Antitoxins.
୬ । ଆଲୋକ ରଙ୍ଗର ବିଶ୍ଳେଷଣ—Spectrum Analysis.
୭ । ଏକ୍ସରେ ଓ ଅଲଟ୍ରା'ଭାଓଲେଟ୍ କିରଣର ଆବିଷ୍କାର—Discovery of of X'Ray & ultra-violet Rays.

## ୧୧୦—ଭୌଗଳିକ ନାମ ପରିବର୍ତ୍ତନ

| ( ପୁରାତନ ) | ( ନୂତନ ) |
|---|---|
| ପେକିନ ( Pekin ) | ପେଇପିଙ୍ଗ (Peiping) |
| କ୍ରିଷ୍ଟିଅନା ( Christiana ) | ଓସ୍ଲୋ ( Oslo ) |
| କନଷ୍ଟାଣ୍ଟିନୋପ୍ଲ ( Constantinople ) | ଇଷ୍ଟାନବୁଲ ( Istanbul ) |
| କୁଇନ୍‌ସ୍ ଟାଉନ (Qweenstown) | କୋଭ ( Cobh ) |
| ମେସୋପୋଟାମିଆ ( Mesopotamia ) | ଷ୍ଟେଟ୍ ଅବ୍ ଇରକ (State of Irak) |
| ରୁଷିଆ ( Russia ) | ଇଉନିଅନ ଅବ୍ ସୋଭିଏଟ୍ ସୋସିଏଲିଷ୍ଟ ରିପବ୍ଲିକସ ( Union of Soviet Socialist Republics ) ( U. S. S. R ) |
| ସେଣ୍ଟପିଟର୍ସବର୍ଗ ( St. Pitersburgh ) | ପେଟ୍ରୋଗ୍ରାଡ଼ ( Petrograd ) |
| ମସ୍କୋ ( Moscow ) | ଲେନିନ୍‌ଗ୍ରାଡ଼ (Leningrad ) |
| ନିଜନି ନୋଭ୍‌ଗୋରଡ଼ ( Nijni Novgorod ) | ଗର୍କି ( Gorky ) |
| ମାନଚୁରିଆ (Manchuria) | ମାନଚୁକୁଓ (Manchukuo) |

## ୧୧୧— ( ସୁବୃହତ୍ ବନ୍ଦରସ୍ଥାନ )

| | |
|---|---|
| ଆଲେକଜେଣ୍ଡ୍ରିଆ | ଇଜିପ୍ଟ |
| ଆମଷ୍ଟରଡ଼ାମ | ନେଦରଲେଣ୍ଡସ୍ |
| ଆଣ୍ଟୱେର୍ପ | ,, |
| ବୋମ୍ବାଇ | ଭାରତ |
| ବ୍ରିଷ୍ଟଲ | ଇଂଲଣ୍ଡ |

| | |
|---|---|
| ଡବ୍ଲିନ୍ ଏଅର୍ସ୍ | ଆର୍ଜେଣ୍ଟିନା |
| କଲିକତା | ଭାରତ |
| କାର୍ଡିଫ | ଇଂଲଣ୍ଡ |
| କଲମ୍ବୋ | ସିଂହଳ |
| ଜେନୋଆ | ଇଟାଲି |
| ଗ୍ଲାସ୍‌ଗୋ | ସ୍କଟଲଣ୍ଡ |
| ହାମ୍‌ବର୍ଗ | ଜର୍ମାନୀ |
| ହଂକଂ | ଚୀନ୍ |
| ହଲ | ଇଂଲଣ୍ଡ |
| କୋବେ | ଜାପାନ |
| ଲେଇଥ | ସ୍କଟଲଣ୍ଡ |
| ଲିଭରପୁଲ | ଇଂଲଣ୍ଡ |
| ଲଣ୍ଡନ | ,, |
| ମେଞ୍ଚେଷ୍ଟର | ଇଂଲଣ୍ଡ |
| ମାର୍ସେଲ୍ସ | ଫ୍ରାନ୍ସ |
| ମିଡଲ୍ସବରୋ | ହଙ୍ଗେରି |
| ମଣ୍ଟ୍ରିଏଲ | କାନାଡ଼ା |
| ନିଉକେଷ୍ଟଲ | ଇଂଲଣ୍ଡ |
| ନିଉ ଅର୍ଲିଅନ୍ସ | ଯୁକ୍ତରାଜ୍ୟ ( ଆମେରିକା ) |
| ନିଉୟର୍କ | ,, |
| ଫିଲାଡେଲଫିଆ | ,, |
| ରେଙ୍ଗୁନ | ବର୍ମା |
| ରିଓଡ଼ି ଜେନେରୋ, | ବ୍ରାଜିଲ |
| ରଟରଡାମ | ନେଦରଲେଣ୍ଡ୍ସ |
| ସାନ୍ ଫ୍ରାନ୍ସିସ୍କୋ | ଯୁକ୍ତରାଜ୍ୟ, ଆମେରିକା |
| ସଂଘାଇ | ଚୀନ୍ |
| ସିଙ୍ଗାପୁର | ଏଫ୍. ଏମ୍. ଏସ୍ |
| ସାଉଥ୍‌ଏମ୍ପଟନ୍ | ଇଂଲଣ୍ଡ |
| ସିଡ୍‌ନି N. S. W. | ଅଷ୍ଟ୍ରେଲିଆ |
| ୱେଲିଙ୍ଗଟନ୍ N. Z | ନିଉଜିଲଣ୍ଡ |
| ୟୋକୋହମା | ଜାପାନ |

୧୧୨— ( ରାଜ୍ୟହୀନ ରାଜା )

( ୧ ) ଜର୍ମାନୀର ୨ୟ ଉଇଲିଅମ୍
( ୨ ) ଗ୍ରୀସ୍‌ର କନ୍‌ଷ୍ଟାଣ୍ଟାଇନ୍
( ୩ ) ବୁଲଗେରିଆର ଫର୍ଡିନେଣ୍ଡ
( ୪ ) ମକ୍କାର ହୁସେନ
( ୫ ) ଇଜିପ୍ଟର ଅବ୍ବାସ ହେମି
( ୬ ) ଅଫଗାନିସ୍ଥାନର ଅମାନୁଲ୍ଲା
( ୭ ) ସ୍ପେନର ଅଲ୍‌ଫୋନ୍‌ସେ ।
( ୮ ) ଚୀନର ସମ୍ରାଟ୍
( ୯ ) ହଙ୍ଗେରିର ରାଜା ଚାର୍ଲସ୍
( ୧୦ ) ତୁର୍କି ସୁଲତାନ୍
( ୧୧ ) ପର୍ତ୍ତୁଗାଲର ରାଜା ମେନୁଏଲ
( ୧୨ ) ଗ୍ରୀସର, ରାଜା ଜର୍ଜ ୨ୟ

## ୧୧୩-ପୃଥିବୀରେ ପାର୍ଲିଅମେଣ୍ଟମାନଙ୍କ ନାମ

| | | |
|---|---|---|
| ଜାପାନ | ଡାଏଟ୍ | ( Diet ) |
| ଅମେରିକା ଯୁକ୍ତରାଜ୍ୟ (U, S A,) | କଂଗ୍ରେସ୍ | ( Congress) |
| ଇଂଲଣ୍ଡ | ପାର୍ଲିଅମେଣ୍ଟ | |
| ତୁର୍କି | ଗ୍ରେଣ୍ଡ ନେସନେଲ ଏସେମ୍ବ୍ଲି | |
| ଜର୍ମାନୀ | ରେକସ୍‌ଟାଗ | ( Reichstag ) |
| ପୋଲଣ୍ଡ | ସେଜମ୍ | ( Sejm ) |
| ପାରସ୍ୟ | ମାଜିଲିସ୍ | ( Majilis ) |
| ଫ୍ରାନ୍ସ | ଚେମ୍ବର | ( Chamber ) |
| ଆଇସ୍‌ଲେଣ୍ଡ | ଅଲ୍‌ଥିଙ୍ଗ | ( Althing ) |
| ନେଦରଲେଣ୍ଡ୍ସ | ଷ୍ଟେଟ୍ସ ଜେନେରେଲ | ( States-General) |
| ଆଇରିସ ଫ୍ରିଷ୍ଟେଟ | ଡେଲ ଇରିୟନ୍ | ( Dail Eireann ) |
| ଜୁଗୋସ୍ଲେଭିଆ | ସ୍କୁପ୍‌ଚିନା | ( Skuptchina ) |
| ନରୱେ | ସର୍ଟିଙ୍ଗ | ( Shorting ) |
| ସୁଇଜରଲେଣ୍ଡ | ଫେଡ୍‌ରାଲଏସେମ୍ବ୍ଲି | ( Federal Assembly |
| ଇଟାଲି | ସିନେଟ୍ | ( Senate ) |
| ସ୍ପେନ୍ | କୋର୍ଟିସ | ( Cortes ) |
| ଭାରତ | ଲେଜିସ୍ଲେଟିଭ ଏସେମ୍ବ୍ଲି ( Legislative Assembly ) | |

ଜଳ ମଧ୍ୟେ ତୈଳ ଦୁଗ୍ଧ ମଧ୍ୟେ ଘୃତ ଉତ୍ପ୍ଳଥିଲ ପର ହୁଏ ।

## ୧୧୪-ଇଉରୋପୀୟପ୍ରଜାତନ୍ତ୍ର ଶାସନଦେଶ

ଏସ୍ଥୋନିଆ—ପୂର୍ବେ ରୁଷସାମ୍ରାଜ୍ୟର ଏକ ପ୍ରଦେଶ ଥିଲା । (Estonia) ସ୍ୱାଧୀନତା ଘୋଷଣା କରି ୧୯୧୭ ରେ ସାଧାରଣତନ୍ତ୍ର ରାଜ୍ୟ ହେଲା ।

ଲିଥୁଆନିଆ—୧୯୧୮ ରେ ରୁଷିଆର ସାହାଯ୍ୟରେ ସାଧାରଣ-( Lithuania ) ତନ୍ତ୍ର ରାଜ୍ୟ ହେଲା ।

ୟୁନିଅନ ଅବ ସୋସିଏଲିଷ୍ଟ ସୋଭିଏଟ ରିପବ୍ଲିକ (ରୁଷିଆ) -୧୯୧୮ରେ ସ୍ଥାପିତ ହୋଇ ସାଧାରଣ ତନ୍ତ୍ର ହେଲା ।
Union of Socialist-
Soviet Republics ( Russia )

ଜର୍ମାନ ( Germany )—ସମ୍ରାଟ୍ ଉଇଲିଅମ ୨ୟ ( William II ) ସ୍ୱେଚ୍ଛାପ୍ରଣୋଦିତ ହୋଇ ପଦ ତ୍ୟାଗ କରିବାରୁ ୧୯୧୮ ନଭେମ୍ବର ୯ ତାରିଖରେ ପ୍ରଜାତନ୍ତ୍ର ରାଜ୍ୟ ହେଲା ।

ପୋଲାଣ୍ଡ ( Poland )—ରୁଷିଆର ପୋଲାଣ୍ଡର ସ୍ୱାଧୀନତା ଘୋଷଣା କରାଯାଇ ୧୯୧୮ ନଭେମ୍ବର ୯ ତାରିଖରେ ପ୍ରଜାତନ୍ତ୍ର ଶାସନ ଗଠିତ ହେଲା ।

ଅଷ୍ଟ୍ରିଅନ ରିପବ୍ଲିକ୍—୧୯୧୮ ନଭେମ୍ବର ୧୨ ତାରିଖରେ (Austrian Republic) ଘୋଷଣା କରାଯାଇଥିଲା ।

ଜେକୋସ୍ଲୋଭାକିଆ—୧୯୧୮ ନଭେମ୍ବର ୧୪ ତାରିଖରେ ( Czechcslovakia ) ପ୍ରଜାତନ୍ତ୍ର ଶାସନ ଘୋଷଣା କରିଥିଲା ।

ଲାଟ୍‌ଭିଆ—୧୯୧୮ ନଭେମ୍ବର ୧୮ ତାରିଖରେ ଅନ୍ୟା-(Latvia ) କାରରେ ରୁଷିଅ ପ୍ରଦେଶ ସ୍ୱାଧୀନ ହୋଇଥିଲା ।

ଫିନ୍‌ଲେଣ୍ଡ—୧୯୧୭ ଡିସେମ୍ବର ୧୭ ତାରିଖରେ ଏହା ( Finland ) ରୁଷିଆରୁ ବିଚ୍ଛିନ୍ନ ହୋଇ ୧୯୧୯ ଜୁଲାଇ ୧୭ ତାରିଖରେ ସାଧାରଣ ତନ୍ତ୍ର ରାଜ୍ୟ ହେଲା ।

ତୁର୍କି—୧୯୨୨ ନଭେମ୍ବର ୧ ତାରିଖରେ ଗ୍ରେଣ୍ଡ ନେସ-( Turkey ) ନେଲ ଏସେମ୍ବ୍ଲି ଭୋଟ ଦେଲା ଯେ ସୁଲତାନ୍ ରହିବା ଆବଶ୍ୟକ ନୁହେ । ୧୯୨୩ ନଭେମ୍ବର ୨୯ ତାରିଖରେ ପ୍ରଥମ ପ୍ରେସିଡେଣ୍ଟ ନିର୍ବାଚିତ ହେଲେ ।

ଗ୍ରୀସ—୧୯୨୪ ଅପ୍ରେଲ ୨୩ ତାରିଖରେ ଗ୍ରୀସର ପ୍ରଜାତନ୍ତ୍ର ଶାସନ ସ୍ଥାପିତ ହେଲା ।

ସ୍ପେନ—୧୯୩୧ ଅପ୍ରେଲ ୧୪ ତାରିଖରେ ଏ ପ୍ରଜାତନ୍ତ୍ର ରାଜ୍ୟବୋଲି ଘୋଷିତ ହେଲା ।

## ୧୧୫—(ପୃଥିବୀରେ ମୁସଲମାନଙ୍କ ସଂଖ୍ୟା)

| | | | |
|---|---|---|---|
| ବ୍ରିଟେନ | ୯, ୭୭, ୬୧, ୦୦୦ | ପାରସ୍ୟ | ୮୩, ୦୦, ୦୦୦ |
| ହଲଣ୍ଡ— | ୫, ୦୦, ୦୦, ୦୦୦ | ଅଫଗାନସ୍ଥାନ | ୮୦, ୦୦, ୦୦୦ |
| ଫ୍ରାନ୍ସ— | ୨, ୦୪, ୦୫, ୦୦୦ | ଆରବିଆ | ୩୦, ୦୦, ୦୦୦ |
| ଚୀନ୍— | ୨, ୦୦, ୦୦, ୦୦୦ | ଇରାକ୍ | ୨୭, ୪୦, ୦୦୦ |
| ରୁଷିଆ— | ୧, ୮୫, ୬୧, ୦୦୦ | ଇଟାଲି | ୧୪, ୮୨, ୦୦୦ |
| ତୁର୍କି— | ୧, ୩୨, ୭୧, ୦୦୦ | ଯୁଗୋସ୍ଲାଭିଆ | ୧୩, ୬୩, ୦୦୦ |
| ଇଜିପ୍ଟ— | ୧, ୩୦, ୦୦, ୦୦୦ | ଅନ୍ୟାନ୍ୟ— | ୨୬, ୧୭, ୦୦୦ |

ସର୍ବମୋଟ ୨୫, ୯୩, ୨୩, ୦୦୦

## ୧୧୬— ଯେଉଁ ଯେଉଁ ପ୍ରଦେଶରେ ଅଧିକ ମୁସଲମାନ ଅଛନ୍ତି ।

| | ( ମୁସଲମାନ ) | ( ହିନ୍ଦୁ ) |
|---|---|---|
| ବେଲୁଚିସ୍ଥାନ— | ୪୦୫, ୩୦୯ | ୪୧, ୪୩୨ |
| ବଙ୍ଗ— | ୨୭, ୫୩୦, ୩୨୧ | ୨୧, ୫୩୭, ୯୨୧ |
| ଉତ୍ତର ପଶ୍ଚିମ ସୀମାନ୍ତ ପ୍ରଦେଶ | ୨, ୨୨୭, ୩୦୩-୧୪୨ | ୯୭୭ |
| ପଞ୍ଜାବ— | ୧୩, ୩୩୨, ୪୬୦-୭ | ୩୨୮, ୫୦୮ |

## ୧୧୭— ଯେଉଁ ୨ ପ୍ରଦେଶ ମାନଙ୍କରେ ଅଧିକ ହିନ୍ଦୁ ଅଛନ୍ତି

| | ( ହିନ୍ଦୁ ) | ( ମୁସଲମାନ ) |
|---|---|---|
| ବିହାର ଓ ଓଡ଼ିଶା— | ୩୧, ୦୧୦, ୬୬୦ | ୪, ୨୭୪, ୭୭୭ |
| ଆସାମ— | ୪, ୯୩୧, ୬୬୦ | ୨, ୭୫୫, ୯୧୪ |
| ବୋମ୍ବେ— | ୧୭, ୬୧୯, ୮୬୭ | ୪, ୪୫୭, ୧୩୩ |
| ମଧ୍ୟପ୍ରଦେଶ— | ୧୩, ୪୬୦, ୧୦୫ | ୭୮୨, ୮୫୪ |
| ଦିଲ୍ଲୀ— | ୩୯୯, ୮୭୩ | ୨୦୭, ୯୬୦ |
| ମାନ୍ଦ୍ରାଜ— | ୪୦, ୩୯୨, ୯୦୦ | ୩, ୩୧୭, ୦୮୩ |
| ଯୁକ୍ତପ୍ରଦେଶ— | ୪୦, ୯୦୫, ୫୩୨ | ୭, ୧୮୧, ୯୨୭ |

## ୧୧୮— ଭାରତ ବାହାରେ ଭାରତୀୟ ।

ଭାରତ ବାହାରେ ବ୍ରିଟିଶ ସାମ୍ରାଜ୍ୟ ମଧ୍ୟରେ ୨,୨୯୪, ୭୨୪ ଜଣ ଓ ଅପର ଦେଶମାନଙ୍କରେ ୧୦୦, ୫୨୫ ଜଣ ମୋଟ ୨, ୩୯୫, ୨୪୯ ଜଣ ଭାରତୀୟ ଅଛନ୍ତି

## ୧୧୯—ଭାରତରେ ଭିନ୍ନ ଜନସୁମାରୀରେ ଜନସଂଖ୍ୟା ମୂଳଠାରୁ ବୃଦ୍ଧି ।

| | | |
|---|---|---|
| ୧୮୭୨—୨୦୬,୧୬୨,୩୬୦ | | |
| ୧୮୮୧—୨୫୩,୮୯୬,୩୩୦ | + | ୨୩.୨ |
| ୧୮୯୧—୨୮୭,୩୧୪,୬୭୧ | + | ୧୩.୨ |
| ୧୯୦୧—୨୯୪,୩୬୧,୦୫୬ | + | ୨.୫ |
| ୧୯୧୧—୩୧୫,୧୫୬,୩୯୬ | + | ୭.୧ |
| ୧୯୨୧—୩୧୮,୯୪୨,୪୮୦ | + | ୧.୨ |
| ୧୯୩୧—୩୫୨,୮୩୭,୭୭୮ | + | ୧୦.୬ |

## ୧୨୦--ଭାରତର କ୍ଷୁଦ୍ରତମ ପ୍ରଦେଶମାନ

ଦିଲ୍ଲୀ—୫୯୫ ବର୍ଗମାଇଲ
କୁର୍ଗ—୧୫୮୨ ”
ଅଜମିର—୨୭୧୧ ”

## ୧୨୧— ଭାରତର ପ୍ରଧାନ ଭାଷା

| | |
|---|---|
| ବଙ୍ଗଭାଷା— | ୫୩, ୪୬୮, ୦୦୦ |
| ଆସାମୀଭାଷା— | ୧, ୯୯୯, ୦୦୦ |
| ମହାରାଷ୍ଟ୍ରୀୟଭାଷା— | ୨୦, ୮୯୦, ୦୦୦ |
| ତାମିଲ— | ୨୦, ୪୧୨, ୦୦୦ |
| ତେଲଗୁ— | ୨୬, ୩୭୯, ୦୦୦ |
| * ପଶ୍ଚିମାଞ୍ଚଳ ହିନ୍ଦି- | ୭୧, ୫୪୭, ୦୦୦ |
| * ପୂର୍ବାଞ୍ଚଳ ହିନ୍ଦି— | ୭, ୮୭୭, ୦୦୦ |
| ଗୁଜରାଟୀ— | ୧୦, ୮୫୦, ୦୦୦ |
| ପଞ୍ଜାବୀ— | ୧୫, ୮୩୯, ୦୦୦ |
| ବେହାରୀ— | ୨୭, ୯୨୯, ୦୦୦ |
| କାନାଡ଼ି— | ୧୧, ୨୦୬, ୦୦୦ |
| ଓଡ଼ିଆ— | ୧୧, ୧୯୪, ୦୦୦ |
| ରାଜସ୍ଥାନୀ— | ୧୩, ୮୯୮, ୦୦୦ |
| ଇଂରାଜୀ— | ୨୧୯, ୦୦୦ |

* ଉର୍ଦ୍ଦୁ ଓ ହିନ୍ଦି ଦୁଇଟି କଥିତ ଭାଷାକୁ ସେନ୍‌ସସ୍ ପାଇଁ ମିଶାଇ ଦିଆଯାଇ ଅଛି ।

## ୧୨୨- ଭାରତର ରାଜନୈତିକ ବିଭାଗ

ଭାରତ ସାମ୍ରାଜ୍ୟ ଚାରିଭାଗରେ ବିଭକ୍ତ :—

(୧) ଇଂରେଜ ଶାସନାଧୀନ ପ୍ରଦେଶ
(୨) କରଦରାଜ୍ୟ
(୩) ସ୍ୱାଧୀନ ଓ ମିତ୍ରରାଜ୍ୟ
(୪) ବୈଦେଶିକ ଶାସନାଧୀନ ରାଜ୍ୟ

| ଇଂରେଜ ଶାସନାଧୀନ ପ୍ରଦେଶ | ରାଜଧାନୀ | ଶାସନକର୍ତ୍ତା |
|---|---|---|
| (୧) ବ୍ରହ୍ମଦେଶ | ରେଙ୍ଗୁନ | ଗଭର୍ଣ୍ଣର |
| (୨) ବଙ୍ଗ ପ୍ରେସିଡେନ୍ସି | କଲିକତା | ,, |
| (୩) ବମ୍ବେ ,, | ବମ୍ବେ | ,, |
| (୪) ମାନ୍ଦ୍ରାଜ ,, | ମାନ୍ଦ୍ରାଜ | ,, |
| (୫) ଆସାମ | ସିଲେଟ | ,, |
| (୬) ବିହାର ଓଡ଼ିଶା | ପାଟନା | ,, |
| (୭) ଯୁକ୍ତପ୍ରଦେଶ ଆଗ୍ରା ଅଯୋଧ୍ୟା | ଏଲାହାବାଦ | ,, |
| (୮) ପଞ୍ଜାବ | ଲାହୋର | ,, |
| (୯) ମଧ୍ୟପ୍ରଦେଶ ଓ ବେରାର | ନାଗପୁର | ,, |
| (୧୦) ଉତ୍ତରପଶ୍ଚିମ ସୀମାନ୍ତପ୍ରଦେଶ | ପେଶଵାର | ଚିଫ୍‌କମିସନର |
| (୧୧) ବ୍ରିଟିଶ୍ ବେଲୁଚିସ୍ଥାନ | କ୍ୱେଟା | ,, |
| (୧୨) ଦିଲ୍ଲୀ | ଦିଲ୍ଲୀ | ,, |
| (୧୩) ଅଜମୀର | ଅଜମୀର | ,, |
| (୧୦) କୁର୍ଗ | ମାର୍କରା | ,, |

## ୧୨୩— ୨—ପ୍ରଧାନ ପ୍ରଧାନ କରଦରାଜ୍ୟ ।

| ରାଜ୍ୟର ନାମ | ରାଜଧାନୀ | ଶାସନକର୍ତ୍ତାଙ୍କ ଉପାଧି |
|---|---|---|
| (୧) ହାଇଦ୍ରାବାଦ | ହାଇଦ୍ରାବାଦ | ନିଜାମ |
| (୨) ବରୋଦା | ବରୋଦା | ଗାଇକୋବାଡ଼ |

ଯୋଦ୍ଧା ବଡ଼ ନୁହେ ରଣ ଜିଣି ଜମ୍ପା ରଜା ରାଜ୍ୟ ବଶ କରେ ।

(୩) ମହୀଶୂର — ବାଙ୍ଗାଲୋର — ମହାରାଜା
(୪) କାଶ୍ମୀର — ଶ୍ରୀନଗର — ,,
(୫) ତ୍ରିବାଙ୍କୁର — ତ୍ରିଭେନ୍ଦ୍ରମ — ,,
(୬) କୋଚିନ — ଏର୍ଣ୍ଣାକୁଲମ୍ — ,,

ଏତଦ୍‌ବ୍ୟତୀତ ଅନ୍ୟର ଅନେକ ଛୋଟ ଛୋଟ କରଦ-ରାଜ୍ୟ ଅଛି ।

୧୨୪— ୩—ସ୍ୱାଧୀନ ଓ ମିତ୍ରରାଜ୍ୟ

(୧) ନେପାଳ — କାଠମାଣ୍ଡୁ — ମହାରାଜା
(୨) ଭୁଟାନ — ପୁନାଖ — ଦେବରାଜ

୧୨୫— ୪—ଫରାସୀ ଅଧିକୃତ ରାଜ୍ୟ

(୧) ଚନ୍ଦନନଗର
(୨) ମାହି
(୩) କାରିକଲ
(୪) ପଣ୍ଡିଚେରି
} ଚନ୍ଦନ ନଗର — ଗଭର୍ଣ୍ଣର

୧୨୬—୫—ପର୍ତ୍ତୁଗୀଜ ଅଧିକୃତ ସ୍ଥାନ

(୧) ଗୋଆ
(୨) ଡାମନ
(୩) ଡିଉ
} ଡିଉ — ଗଭର୍ଣ୍ଣର



୧୯୩୧ ମସିହାରେ

## ୧୨୭—ଭାରତରେ ଶିକ୍ଷିତ ଲୋକ ସଂଖ୍ୟା :

| | ପୁରୁଷ | ସ୍ତ୍ରୀ |
|---|---|---|
| ମନ୍ଦ୍ରାଜ | ୯·୫ | ୩·୧ |
| ବଙ୍ଗ | ୮·୫୩ | ୦·୭୨ |
| ଯୁକ୍ତପ୍ରଦେଶ | ୫·୩୦ | ୦·୬୨ |
| ବମ୍ବେ | ୯·୦୮ | ୨·୮୩ |
| ପଞ୍ଜାବ | ୮·୮୨ | ୧·୮୫ |
| ବର୍ମା | ୬·୮୧ | ୩·୦୧ |
| ବେହାର ଓଡ଼ିଶା | ୫·୧୫ | ୦·୬୭ |
| ମଧ୍ୟପ୍ରଦେଶ | ୫·୦୭ | ୦·୮୫ |
| ଆସାମ | ୬·୮୮ | ୧·୫ |
| ସୀମାନ୍ତପ୍ରଦେଶ | ୫·୭ | ୧·୨ |



## ୧୨୮— ଯୁଦ୍ଧଭୂମି

ପାନିପଥ, ମୁଲତାନ, ପଲାସୀ ।

## ୧୨୯— ସେନାନିବାସ

ପେଶୱାର, କ୍ୱେଟା, ରାଓଲପିଣ୍ଡି ।

## ୧୩୦— ସ୍ୱାସ୍ଥ୍ୟ ନିବାସ

ଦାର୍ଜିଲିଂ, ସିମଲା, କୁଶାଲି, ନୈନିତାଲ, ଓଟକାମଣ୍ଡ, ମସୌରି, ଡେରାଡୋନ ।



## ୧୩୧— ବ୍ରିଟିଶଙ୍କ ରାଜ୍ୟପ୍ରାପ୍ତି ।

| | |
|---|---|
| ମାନ୍ଦ୍ରାଜ ବନ୍ଦର | ୧୬୩୯ |
| ବୋମ୍ବାଇ | ୧୬୬୧ |
| କଲିକତା | ୧୬୯୦ |
| ବଙ୍ଗରେ ପ୍ରାଧାନ୍ୟ ସ୍ଥାପନ | ୧୭୫୭ |
| ଦେୱାନି | ୧୭୬୫ |
| ଉତ୍ତର ସରକାରମାନ | ୧୭୫୯-୬୫ |
| ସାଲସିଟ ପ୍ରଭୃତି | ୧୭୮୨ |
| କର୍ଣ୍ଣୱାଲିଶଙ୍କ ଅଧୀନରେ | |
| ମାଲବାର, ବଡ଼ମାହାଲ ପ୍ରଭୃତି | ୧୭୯୨ |
| ୱେଲେସଲିଙ୍କ ଅଧୀନରେ | |
| କର୍ଣ୍ଣାଟିକ୍ | ୧୮୦୧ |
| ତାଞ୍ଜୋର ଓ ସୁରାଟ | ୧୭୯୯ |
| ଓଡ଼ିଶା | ୧୮୦୩ |
| ଦିଲ୍ଲୀ ଓ ଆଗ୍ରା | ୧୮୦୩ |
| ମହୀଶୂର ଜିଲ୍ଲାମାନ | ୧୭୯୯ |
| ରୋହିଲଖଣ୍ଡ ଓ ଗୋରକ୍ଷପୁର | ୧୮୦୧ |
| ମଇରା ଅଧୀନରେ | |
| କମାଉଁ ଓ ଗଡ଼ବାଲ | ୧୮୧୫ |
| ବୋମ୍ବାଇ ପ୍ରେସିଡେନ୍ସିର ବୃହତ୍ ଅଂଶ | ୧୮୧୮ |
| ଆମହର୍ଷ୍ଟ ଅଧୀନରେ | |
| ଆସାମ, ଆରାକାନ ଓ ତେନାସରିମ୍ | ୧୮୨୬ |
| ବେଣ୍ଟିଙ୍କ ଅଧୀନରେ | |
| କାଛାର | ୧୮୩୦ |
| କୁର୍ଗ | ୧୮୩୪ |

ସବୁଠାରୁ ବଡ ମନ ବଶକାରୀ ହେବେ ଜେ ତା ସଙ୍ଗେ ସ୍ନେହ ।

ଏଲେନବରୋ ଅଧୀନରେ

| | |
|---|---|
| ସିନ୍ଧୁ | ୧୮୪୩ |

ଡାଲହାଉସି ଅଧୀନରେ

| | |
|---|---|
| ଜାଲନ୍ଧର ଦୋଆବ | ୧୮୪୬ |

ଡେଲହାଉସି ଅଧୀନରେ

| | |
|---|---|
| ପଞ୍ଜାବ | ୧୮୪୯ |
| ନାଗପୁର | ୧୮୫୪ |
| ସତାରା | ୧୮୪୮ |
| ଝାନ୍ସି | ୧୮୫୮ |
| ଅଯୋଧ୍ୟା | ୧୮୫୬ |
| ପେଗୁ | ୧୮୫୨ |
| ବେରାର | ୧୮୫୩ |

ଲରେନ୍ସ ଅଧୀନରେ

| | |
|---|---|
| ଡୋଆର୍ସ | ୧୮୬୫ |

ଲିଟନ୍ ଅଧୀନରେ
କ୍ୱେଟା, କୁରମ ପ୍ରଭୃତି
ଡଫରିନ ଅଧୀନରେ

| | |
|---|---|
| ଉପରବର୍ମା | ୧୮୮୬ |

## ୧୩୨—ଭାରତର ସୁବୃହତ୍ ଜିଲ୍ଲା ।

| ନାମ | ବର୍ଗମାଇଲ |
|---|---|
| ଭିଜାଗାପାଟ୍ଟାମ— | ୧୭,୧୬୮ |
| ସିନ୍ଧ— | ୭,୧୦୨ |
| ମଇମନସିଂହ— | ୬,୨୩୨ |
| ଗଢ଼ୱାଲ— | ୫,୪୧୨ |
| କଙ୍ଗ୍ରା— | ୯,୭୨୦ |
| ଥାର ପାର୍କର (ବୋମ୍ବାଇ) | ୧୩,୬୩୭ |
| ନ୍ୟପେଲ ପର୍ବତଶ୍ରେଣୀ— | ୮,୦୯୨ |
| ରାୟପୁର— | ୯,୬୭୭ |
| ଉପର ଚିନ୍ଦ୍ୱିନ୍ | ୧୬,୦୩୭ |

## ୧୩୩— ଜନାକୀର୍ଣ୍ଣ ଜିଲ୍ଲା ।

| | ଜନସଂଖ୍ୟା |
|---|---|
| ଭିଜାଗାପାଟ୍ଟାମ (ମାନ୍ଦ୍ରାଜ)— | ୩,୬୦୭,୯୪୮ |
| ଦରଭଙ୍ଗା (ବିହାର ଓଡ଼ିଶା)— | ୩,୧୬୬,୦୯୪ |
| ମଇମନସିଂହ (ବଙ୍ଗ)— | ୫,୧୩୦,[illegible] |
| ଗୋରଖପୁର (U. P.)— | ୩,୫୬୭,୫୬୧ |
| ଲାହୋର (ପଞ୍ଜାବ)— | ୧,୩୭୮,୫୬୨ |
| ଅହମଦନଗର (ବୋମ୍ବାଇ)— | ୧,୩୦୨,୫୨୭ |
| ସିଲହଟ୍ (ଆସାମ)— | ୨,୭୨୪,୩୪୨ |
| ରାୟପୁର (ମଧ୍ୟପ୍ରଦେଶ)— | ୧,୫୨୬,[illegible] |
| ଏକିଆବ (ବର୍ମା) | ୬[illegible]୭,୫୮୦ |

ଭାରତରେ ଜିଲ୍ଲାମାନଙ୍କ ମଧ୍ୟରେ ବଙ୍ଗର ମଇମନସିଂହ ଜିଲ୍ଲା ବିଶେଷ ଜନାକୀର୍ଣ୍ଣ ।

## ୧୩୪—ରାଜାଙ୍କର ଗୁପ୍ତ ମନ୍ତ୍ରଣା ସଭାରେ ଭାରତୀୟ ।

(୧) ଲର୍ଡ ସିହ (୨) ଵି. ପି. ମିତ୍ର ।

୧୯୦୭ ସାଇଠୁ ଅନରେବ୍‌ଲ ଭି, ଏସ୍, ଶ୍ରୀନିବାସ ଶାସ୍ତ୍ରୀ
୧୯୩୦ ସାଇଠୁ ଅନରେବଲ ସାର୍ ଡି, ଏଫ୍, ମୁଲା-Kt.

## ୧୩୫—ବ୍ରିଟିଶ ପାର୍ଲିଅମେଣ୍ଟରେ ବସିଥିବା ଭାରତୀୟଙ୍କ ନାମ

ସାର୍ ମୁନ୍‌ଚର୍ଜି ଭବାନଗ୍ରି
Sir Muncherjee Bhowangree ( Conservative. )
ଦାଦାଭାଇ ନଉରୋଜି
Dadabhai Naroji (Liberal)
ସାପୁରଜି ସକଲାଟବାଲା
Sapurji Saklatvala ( Communist )

## ୧୩୬-ପୃଥିବୀର ବୃହତ୍ତମ ଜଳସେଚନପ୍ରଣାଳୀ

ସୁକରଠାରେ ସିନ୍ଧୁନଦୀ ଶଯ୍ୟାରେ ଜଳ ସେଚନ ନିମିତ୍ତ ଗୋଟିଏ ବୃହତ୍ ପଥରବନ୍ଧ ନିର୍ମିତ ହୋଇଅଛି । ଏହା ପୃଥିବୀରେ ଜଳସେଚନ ପ୍ରଣାଳୀମାନଙ୍କ ମଧ୍ୟରେ ବୃହତ୍ତମ । ଏହା ଦ୍ୱାରା ୫୦ ଲକ୍ଷ ଏକର ଜମି ଆବାଦ ହୋଇପାରେ ।

## ୧୩୭—ଭାରତବର୍ଷର ଜଳସେଚନ

( Irrigation System of India )

ସାଧାରଣତଃ କେନାଲ ଦୁଇପ୍ରକାର, ଯଥା ଚିରସ୍ରୋତା ( Perennial ) ଓ ବନ୍ୟା କେନାଲ ( Inundation )

ପ୍ରଥମୋକ୍ତ କେନାଲ ବର୍ଷର ବାରମାସ ଜଳସେଚନ ନିମିତ୍ତ ଉପଯୁକ୍ତ କିନ୍ତୁ ଶେଷୋକ୍ତ କେନାଲରେ କେବଳ ବନ୍ୟା ସମୟରେ ଜଳ ଭର୍ତ୍ତି କରାହୋଇଥାଏ । ଚିର ସ୍ରୋତା ନଦୀମାନଙ୍କର ନିମ୍ନଶଯ୍ୟାରୁ ଅସଂଖ୍ୟ କେନାଲ ନାନାଦିଗରେ ଗୁଲି ଯାଇଅଛି ।

ଶତଦ୍ରୁ ନଦୀରୁ ଏକ କେନାଲ ବିକାନିର ରାଜ୍ୟକୁ ଯାଇଅଛି । ସେଥିରେ ସେ ରାଜ୍ୟର ମରୁପ୍ରାନ୍ତରର ଚତୁର୍ଦ୍ଦିଗସ୍ଥ ଭୂଭାଗ ଶସ୍ୟ-ଶ୍ୟାମଳ ହୋଇ ପ୍ରଭୂତ ଉପକାର ସାଧିତ ହେଉଅଛି । ସେଥିରେ ମହାରାଜାଙ୍କୁ ୩ କୋଟି ଟଙ୍କା ଖର୍ଚ୍ଚକରିବାକୁ ହୋଇଥିଲା । ଅତ୍ୟୁଷ୍ଣ ସୂର୍ଯ୍ୟର ତାପ ଏବଂ ବାଲିମଧ୍ୟରେ ଜଳ ନଷ୍ଟ ନ ହୋଇଯିବ ବୋଲି କେନାଲର ଶଯ୍ୟା ଓ ପାର୍ଶ୍ୱ-ଦେଶ ପ୍ରସ୍ତରରେ ଅଚ୍ଛାଦିତ ହୋଇଅଛି । ଏହାର ଦୈର୍ଘ୍ୟ ୧୪ ମାଇଲ । ଏହା ପୃଥିବୀରେ ସର୍ବତମ କେନାଲ ।

ସିନ୍ଧୁ ପ୍ରଦେଶର ବୃଷ୍ଟି ପରିମାଣ ୨ କିମ୍ବା ୩ ଇଞ୍ଚ । କିନ୍ତୁ ଏଠାରେ କେନାଲ କଟାହେଲା ଦିନୁ ଅନେ ହେଲେ ଦୁର୍ଭିକ୍ଷ ହୋଇ ନାହିଁ ।

ପେରିୟାର ନଦୀ ଗତିପଥରେ ଏକ ସୁବୃହତ୍ ଓ ସୁଦୃଢ଼ ବନ୍ଧ ପକାଇ ଏହାର ଗତିକୁ ପଶ୍ଚିମ ଘାଟସ୍ଥିତ ଏକ କୃତ୍ରିମ ସୁଡ଼ଙ୍ଗ ମଧ୍ୟରେ ପ୍ରବେଶ କରାଇ ବଙ୍ଗୋପସାଗରକୁ ଅଣା ଯାଇଅଛି । ଏଥିରେ ମଦୁରା ଜିଲ୍ଲାର ଅଧିକାଂଶ ସ୍ଥାନ କୃଷି ଯୋଗ୍ୟ ହୋଇଅଛି ।

ବୋମ୍ବାଇର ଠିକ ପଶ୍ଚାଦ୍‌ଭାଗରେ ପଶ୍ଚିମଘାଟ ପର୍ବତ ଉପରେ ବର୍ଷରେ ପ୍ରାୟ ୫୦୦ ଇଞ୍ଚ ବର୍ଷା ହୁଏ । ଏହି ଜଳକୁ କୃତ୍ରିମ ହ୍ରଦରେ ପରିଣତ କରାଯାଇଅଛି ଓ କୃତ୍ରିମ ଜଳପ୍ରପାତ ପ୍ରଣାଳୀରେ ପ୍ରପାତ ସୃଷ୍ଟି ହୋଇଅଛି ; ଏଥିରୁ ବିଦ୍ୟୁତ୍ ସଂଗ୍ରହ କରାଯାଇ ବମ୍ବେ ସହରରେ କଳକାରଖାନା ଚଳାଯାଉଅଛି ଓ ଫଳ ଏବଂ ଫୁଲ ବଗିଚାରେ ଜଳସେଚନ କରାଯାଉ ଅଛି ।

ବିହାର ଓଡ଼ିଶାର ଜଳସେଚନ—ଉତ୍ତର ଓ ଦକ୍ଷିଣ ବିହାରରେ ନଦୀମାନଙ୍କ ଉପତ୍ୟକାରେ କେନାଲ ବିଦ୍ୟମାନ । ତ୍ରିବେଣୀ କେନାଲରେ ୪୫୦ ବର୍ଗମାଇଲ ଜମି ସିକ୍ତ ହେଉଅଛି । ମଧୁବନ କେନାଲ ଚମ୍ପାରନ ଜିଲ୍ଲାରେ । ସୋନ କେନାଲ—ବିହାରର ଶାହାବାଦ, ଗୟା ଓ ପାଟନା ଜିଲ୍ଲାମାନ ଏହି କେନାଲରୁ ଜଳ ନେଇଥାନ୍ତି । ଡେହରୀ ( Debri ) ଠାରେ ଏହି ସୋନ ନଦୀରେ ଏକ ଏନିକଟ୍ ଅଛି, ତାହାର ଉଚ୍ଚତା ୧୨୫୦୦ ଫୁଟ ଦୀର୍ଘ । ଏହି କେନାଲ ପ୍ରତି ସେକଣ୍ଡରେ ୬୩୫୦ ଘନ ଫିଟ୍ ଜଳରୁ ଅଧିକ ନେଇପାରେ ନାହିଁ ଏବଂ ସେଚନର ଶତକଡ଼ା ୮୦ ଭାଗ ଶାହାବାଦ ଜିଲ୍ଲାରେ ବ୍ୟୟିତ ହୁଏ । ୧ ଭାଗ ଗୟା ଜିଲ୍ଲା ଓ ୯ ଭାଗ ପାଟଣାଜିଲ୍ଲା ପାଏ ।

ଓଡ଼ିଶା କେନାଲ—ମହାନଦୀ ଜଳଦ୍ୱାରା ଏଠାକାର ସମସ୍ତ କେନାଲ ମାନ ପୁଷ୍ଟ ହୋଇଥାନ୍ତି । ବୈତରଣୀ ଓ ବ୍ରାହ୍ମଣୀ ଅଂଶିକ ଭାବରେ ଏମାନଙ୍କୁ ସାହାଯ୍ୟ କରିଥାଏ । ମହାନଦୀରୁ (୧) ହାଇଲେଭଲ କେନାଲ (୨) କେନ୍ଦ୍ରାପଡ଼ା କେନାଲ ଓ ତାହାର ଶାଖା ଗୋବରୀ ଓ ପଟାମୁଣ୍ଡେଇ କେନାଲ (୩) ତାଳଦଣ୍ଡା କେନାଲ ଏବଂ (୪) ମାଚ୍ଚର୍ଗା କେନାଲ ବାହାରିଅଛି ।

ଉଭୟ ନୌଚାଳନ ଓ ସେଚନ ନିମିତ୍ତ ସମସ୍ତ କେନାଲର ଦୈର୍ଘ୍ୟ ୨୦୫ ମାଇଲ । କେବଳ ସେଚନ ନିମିତ୍ତ କେନାଲର ଦୈର୍ଘ୍ୟ ୯୨ ମାଇଲ । ପ୍ରଶାଖା ମାନଙ୍କର ଦୈର୍ଘ୍ୟ ୧୧୭୨ ମାଇଲ ଅଟେ ।

## ୧୩୮—ପୃଥିବୀରେ ରେଲରାସ୍ତା ।

| | ମାଇଲ |
|---|---|
| ଆମେରିକା ଯୁକ୍ତପ୍ରଦେଶ | ୨୬୧,୯୮୪ |
| ରୁଷିଆ | ୪୫,୦୪୪ |
| କାନାଡ଼ା | ୪୦,୦୪୯ |
| ଜର୍ମାନି | ୩୪,୩୧୭ |
| ଭାରତ | ୩୧,୮୧୩ |
| ଅଷ୍ଟ୍ରେଲିଆ | ୨୪,୧୮୯ |
| ଫ୍ରାନ୍ସ | ୨୫,୬୬୨ |

କର୍ଣ୍ଣ ନଷ୍ଟ ହୁଏ ଶୁଣିବାରୁ, ମାତ୍ର ମୁର୍ଖ ହସ୍ତିବାରୁ ଏକ ।

| | ମାଇଲ |
|---|---|
| ଆର୍ଜେଣ୍ଟିନା | ୨୨,୨୨୮ |
| ଗ୍ରେଟବ୍ରିଟେନ | ୨୦,୨୯୮ |
| ବ୍ରାଜିଲ | ୧୮,୭୦୪ |
| ମେକ୍ସିକୋ | ୧୦,୭୫୭ |
| ଇଟାଲି | ୧୦,୨୧୦ |
| ସ୍ପେନ | ୧୨,୦୩୪ |

## ୧୩୯—ଭାରତର ରେଳରାସ୍ତା

| | ମାଇଲ |
|---|---|
| ଏନ୍. ଡବ୍ଲୁ. ଅର | ୭,୧୫୪ |
| ଇ. ଆଇ. ଅର୍ | ୪,୨୧୯ |
| ଜି. ଆଇ. ପି. ଅର୍ | ୩,୭୧୧ |
| ବି. ବି. ସି. ଆଇ | ୩,୧୨୫ |
| ଏମ୍. ଏସ୍. ଏମ୍ | ୩,୨୩୦ |
| ବି. ଏନ୍. ଅର୍ | ୩,୩୨୬ |
| ବି. ଏଣ୍ଡ ଏନ୍. ଡବ୍ଲୁ. ଅର୍ | ୨,୧୧୪ |
| ଏସ୍. ଆଇ. ଆର | ୨,୪୫୧ |
| ବର୍ମା ରେଲ୍‌ଓ୍ୱେ | ୨,୦୫୭ |
| ଇ. ବି. ଅର୍ | ୧,୮୯୩ |
| ଏ. ବି. ଅର | ୧,୨୮୧ |
| ନିଜାମର ଜି. ଏସ୍ | ୧,୨୩୮ |

## ୧୪୦-ଭାରତ ବାହାରରେ ଭାରତୀୟ ଛାତ୍ର

| | |
|---|---|
| ଗ୍ରେଟବ୍ରିଟେନ ଓ ଆୟର୍ଲଣ୍ଡ | ୧,୮୪୧ |
| ଜର୍ମାନି | ୪୧ |
| ସୁଇଜରଲେଣ୍ଡ | ୪ |
| ଅଷ୍ଟ୍ରିଆ | ୧ |
| ଆମେରିକା ଯୁକ୍ତରାଜ୍ୟ | ୨୦୧ |
| | ୨,୧୦୭ |

## ୧୪୧—ଭାରତର ଚିତ୍ରଶାଳା

୧—କଲିକତାର ଇଣ୍ଡିଆନ୍ ମିଉଜିଅମ୍
୨—ପାଟନାର ପାଟନା ,,
୩—ସାରନାଥର ଅର୍ଚ୍ଚିଓଲଜିକେଲ ,,
୪—ଲକ୍ଷ୍ନୌର ,,
୫—ମଥୁରାର ଗଭର୍ଣ୍ଣମେଣ୍ଟ ,,
୬—ଦିଲ୍ଲୀର ଫୋର୍ଟ ,,
୭—ଲାହୋର ସେଣ୍ଟ୍ରାଲ ,,
୮—ତକ୍ଷଶିଳାର ଅର୍ଚ୍ଚିଓଲଜିକେଲ ,,
୯—ପେଶାବାରର ଗଭର୍ଣ୍ଣମେଣ୍ଟ ,,
୧୦—ଜୟପୁରର ଜୟପୁର ,,
୧୧—ଉଦୟପୁରର ଉଦୟପୁର ,,
୧୨—ବରୋଦାର ବରୋଦା ,,
୧୩—ଅଜମିରର ଅଜମିର ,,
୧୪—ହାଇଦ୍ରାବାଦର ହାଇଦ୍ରାବାଦ ,,
୧୫—ବୋମ୍ବେର ପ୍ରିନ୍ସ ଅବ୍ ଓ୍ୱେଲ୍‌ସ ,,
୧୬—ନାଗପୁରର ସେଣ୍ଟ୍ରାଲ ,,
୧୭—ମାନ୍ଦ୍ରାଜର ଗଭର୍ଣ୍ଣମେଣ୍ଟ ,,
୧୮—ବାଙ୍ଗାଲୋରର ବାଙ୍ଗାଲୋର ,,
୧୯—ତ୍ରିବେନ୍ଦ୍ରମର ତ୍ରିବେନ୍ଦ୍ରମ୍ ,,

## ୧୪୨— ଜାତୀୟ ଚିହ୍ନ

| | |
|---|---|
| ଚୀନ | Narcissus (ଡାଫୋଡ଼ିଲ ପ୍ରଭୃତି ପୁଷ୍ପବୃକ୍ଷର ବର୍ଗ) |
| ଇଂଲଣ୍ଡ | Rose (ଗୋଲାପ) |
| ଫ୍ରାନ୍ସ | Flear-de-lis |
| ଜର୍ମାନି | Cornflower |
| ଗ୍ରୀସ | Violet (ବାଇଗଣିଅବର୍ଣ୍ଣ) |
| ଭାରତ | Lotus (ପଦ୍ମ) |
| ଆୟର୍ଲଣ୍ଡ | Shamrock |
| ଇଟାଲି | White lily (ଶ୍ୱେତ ପଦ୍ମ) |
| ଜାପାନ | Chrysanthemenn |

ଯା. ଭାଗ୍ୟେ ଯେ ବେଗ ଅବଶ୍ୟ ମିଳଇ ସ୍ୱର୍ଗ୍ୟ ଉଦେ ମହାବଳୀ ।

| | |
|---|---|
| ସ୍କଟଲାଣ୍ଡ | Thistle |
| ସ୍ପେନ | Pomegranate (ଡ଼ାଳିମ୍ବ) |
| ଯୁକ୍ତପ୍ରଦେଶ ଅମେରିକା | Goldenrod |
| ପାରସ୍ୟ | Rose (ଗୋଲାପ) |

## ୧୪୩—ଭାରତର ହ୍ରଦ

(୧) ଉଲାର (୨) ସମ୍ବର (୩) ଚିଲକା (୪) କେଲେଯ୍ୟାର

ଉଲାର—କାଶ୍ମୀର ରାଜ୍ୟରେ । ଏହା ସମୁଦ୍ର ଠାରୁ ୮୪୫୪ ହାତ ଉଚ୍ଚରେ ରହିଛି । କ୍ଷେତ୍ରଫଳ ୧୨ ବର୍ଗ ମାଇଲ । ମାତ୍ର ବର୍ଷାଦିନେ ୧୦୦ ବର୍ଗ ମାଇଲ ବଢିଯାଏ ।

ସମ୍ବର—ଅଜମୀରର ୫୦ ବର୍ଗ ମାଇଲ ଉତ୍ତର ପୂର୍ବରେ । କ୍ଷେତ୍ରଫଳ ୯୦ ବର୍ଗ ମାଇଲ । ଜଳ ଲୁଣିଆ । ଏଥିରୁ ହଜାର୨ ମହଣ ଲୁଣ ଅମଦାନୀ କରାଯାଏ ।

ଚିଲକା—ପୁରୀ ସହର ନିକଟରେ । ବର୍ଷାକାଳରେ ଏହାର ଜଳ ମଧୁର ହୁଏ ।

କେଲେଯ୍ୟାର—ଗୋଦାବରୀ ଓ କୃଷ୍ଣା ନଦୀର ତ୍ରିକୋଣ ଭୂମି ଉପରେ । କ୍ଷେତ୍ରଫଳ ୧୦୦ ବର୍ଗ ମାଇଲ । ଏହା ପଙ୍କ ମାଟି ଯୋଗୁଁ ଧୀରେ୨ ପୋତି ହୋଇ ପଡ଼ୁଛି ।

## ୧୪୪—ପ୍ରଧାନ ଜଳପ୍ରପାତ

(୧) ଗଇର ସୋପା, ଏହା ବୋମ୍ବାଇ ପ୍ରଦେଶରେ ଶାରାବତୀ ନଦୀରେ ପୃଥିବୀର ଉଚ୍ଚତମ ଜଳପ୍ରପାତ । ଏହାର ଜଳ ୬୦୦ ହାତ ଉଚ୍ଚ ସ୍ଥାନରୁ ତଳକୁ ପଡ଼ୁଅଛି ।

( ୨ ) ଧୂଅ ଧାର ନର୍ମଦା ନଦୀରେ । ଜବଲପୁର ଷ୍ଟେସନଠାରୁ ୯ ମାଇଲ ଦୂରରେ ।

## ୧୪୫—ଭାରତର ପ୍ରଧାନ ବନ୍ଦର

(୧) ଇରାବତୀ ନଦୀକୂଳରେ ରେଙ୍ଗୁନ ।
(୨) ବଙ୍ଗ ପ୍ରଦେଶର ସମୁଦ୍ର କୂଳରେ ଚଟ୍ଟାଗଙ୍ଗ ।
(୩) ହୁଗୁଳୀ ନଦୀ କୂଳରେ କଲିକତା ।
(୪) ମାନ୍ଦ୍ରାଜ ଉପକୂଳରେ ହାତତିଆର ବନ୍ଦର—ମାନ୍ଦ୍ରାଜ ।
(୫) ଲଙ୍କାର ପଶ୍ଚିମରେ କଲମ୍ବୋ ।
(୬) ବମ୍ବେ ଉପକୂଳରେ ବମ୍ବେ ।
(୭) ସିନ୍ଧୁ ପ୍ରଦେଶର ସମୁଦ୍ର କୂଳରେ କରାଚି ।

## ୧୪୬—ରୋମେନମାନଙ୍କର ସଂଖ୍ୟା

| | | | |
|---|---|---|---|
| ୧ | I | ୩୦ | XXX |
| ୨ | II | ୪୦ | XL |
| ୩ | III | ୫୦ | L |
| ୪ | IV | ୬୦ | LX |
| ୫ | V | ୭୦ | LXX |
| ୬ | VI | ୮୦ | LXXX |
| ୭ | VII | ୯୦ | XC |
| ୮ | VII | ୧୦୦ | C |
| ୯ | IX | ୨୦୦ | CC |
| ୧୦ | X | ୩୦୦ | CCC |
| ୧୧ | XI | ୪୦୦ | CD |
| ୧୨ | XII | ୫୦୦ | D |
| ୧୩ | XIII | ୬୦୦ | DC |
| ୧୪ | XIV | ୭୦୦ | DCC |
| ୧୫ | XV | ୮୦୦ | DCCC |
| ୧୬ | XVI | ୯୦୦ | CM |
| ୧୭ | XVII | ୧୦୦୦ | M |
| ୧୮ | XVIII | ୨୦୦୦ | MM |
| ୧୯ | XIX | ୫୦୦୦ | V̄ |
| ୨୦ | XX | ୧୦୦୦୦ | X̄ |



## ୧୪୭—ଉପନିବେଶମାନଙ୍କରେ ଓ ଅମେରିକା ପ୍ରଭୃତିରେ ଭାରତୀୟ ।

| | |
|---|---|
| କେନେଡ଼ା | ୧,୨୦୦ |
| ଅଷ୍ଟ୍ରେଲିଆ | ୨୦୦ |
| ନିଉଜିଲେଣ୍ଡ | ୬୦୬ |
| ଦକ୍ଷିଣ ଅଫ୍ରିକା | ୧,୬୧,୩୯୯ |
| ଷ୍ଟ୍ରେଟ୍ ସେଟ୍‌ଲ୍ସ | ୧,୦୪,୬୨୮ |
| ମାଳୟ (Fr) | ୩,୦୫,୨୧୯ |
| ମାଳୟ (Br) | ୬୧,୮୧୦ |
| ସିଂହଳ | ୭,୫୦,୦୦୦ |

ପାତଣ ଥାଉ ଭେକେ ନ ମିଳେ ଶାରଙ୍ଗ ପାଏ ତା ଦୂରସ୍ଥ ଜଳ ।

| | |
|---|---|
| ସଉ୍ଥ୍ୟାକ୍ | ୧,୦୦୦ |
| ମୌରିଟଅସ୍ | ୨,୮୪,୫୨୬ |
| କେନ୍ୟା | ୨୨,୮୨୨ |
| ଝିନିଦାଦ | ୧,୨୪,୨୩୮ |
| ଫିଜି | ୬୦,୬୩୩ |
| ଜାମେକା | ୧୮,୪୦୧ |
| ଅମେରିକା | ୩,୧୭୫ |
| ଭରତ ବାହାରେ ବ୍ରିଟିଶ ସାମ୍ରାଜ୍ୟରେ | ୨,୨୯୪,୭୨୪ |
| ଅନ୍ୟାନ୍ୟ ବିଦେଶରେ | ୧୦୦,୫୨୫ |

## ୧୪୮—ପୃଥିବୀର ନିରକ୍ଷର

| | ଶତକଡ଼ା |
|---|---|
| ଇଜିପ୍ଟ | ୮୫.୭ |
| କାନାଡ଼ା | ୫.୧ |
| ଯୁକ୍ତପ୍ରଦେଶ (ଅମେରିକା) | ୬.୦ |
| ମେକ୍ସିକୋ | ୬୨.୯ |
| ଭାରତ | ୯୦.୦ |
| ଇଉ. ଏସ୍. ଏସ୍. ଡି | ୪୭.୭ |
| ବେଲଜିଅମ | ୭.୫ |
| ବୁଲଗେରିଆ | ୩୯.୭ |
| ସ୍ପେନ | ୪୩.୦ |
| ଇସ୍ଥୋନିଆ | ୧୦.୯ |
| ଫ୍ରାନ୍ସ | ୫.୮ |
| ଗ୍ରୀସ | ୪୩.୩ |
| ହଙ୍ଗେରି | ୧୩.୦ |
| ଇଟାଲି | ୨୬.୮ |
| ଲିଟଭିଆ | ୧୫.୮ |
| ଲେଥୁଅନିଆ | ୩୨.୭ |
| ପୋଲଣ୍ଡ | ୩୨.୭ |
| ପର୍ତ୍ତୁଗାଲ | ୬୫.୨ |

## ୧୪୯—ଭାରତରେ ବ୍ୟବସାୟୀଙ୍କ ସଂଖ୍ୟା

| | ମୋଟ | ପୁରୁଷ | ସ୍ତ୍ରୀ |
|---|---|---|---|
| ମାଛ ଧରିବା ଓ ଶିକାର କରିବା | ୧,୩୦୮,୨୯୨ | ୧,୧୪୫,୮୧୭ | ୧୬୨,୪୭୫ |
| * (୧) କୃଷି | ୧୦୨,୪୫୪,୧୪୭ | ୭୩,୭୬୪,୧୮୫ | ୨୮,୬୯୦,୯୬୨ |
| ଖଣି, ଲୁଣ ପ୍ରଭୃତି | ୩୪୭,୦୦୦ | ୨୫୧,୫୮୩ | ୮୬,୪୧୭ |
| * (୨) ଶ୍ରମଶିଳ୍ପ | ୧୫,୩୬୨,୯୩୩ | ୧୦,୮୦୭,୫୦୭ | ୪,୫୫୪,୪୨୬ |
| ସ୍ଥାନାନ୍ତର ପ୍ରେରଣ | ୨,୩୪୧,୪୦୬ | ୨,୦୯୯,୧୯୮ | ୨୪୨,୨୦୮ |
| * (୩) ବାଣିଜ୍ୟ | ୭,୯୧୩,୭୯୭ | ୫,୭୮୫,୮୧୬ | ୨,୧୨୭,୯୮୧ |
| ସୈନ୍ୟ ଓ ନୌସେନା | ୩୧୮,୦୩୬ | ୩୧୬,୩୦୦ | ୧,୭୩୬ |
| Air Force | ୧,୮୬୩ | ୧,୮୩୮ | ୨୫ |
| ପୋଲିସ | ୫୨୧,୭୭୫ | ୫୧୬,୪୧୫ | ୫,୨୬୦ |
| Public Administration ଶାସନବିଭାଗ | ୯୯୨,୨୮୪ | ୯୬୨,୭୪୧ | ୩୨,୫୪୩ |
| * (୪) ବ୍ୟବସାୟ ଓ ଶିଳ୍ପ ପ୍ରଭୃତି | ୨,୩୧୦,୧୩୧ | ୧,୯୮୬,୦୬୦ | ୩୨୩,୮୮୧ |
| ଗାର୍ହସ୍ଥ୍ୟ | ୧,୮୪୮,୫୫୪ | ୨,୦୯୪,୪୮୭ | ୮,୭୬୩,୭୬୭ |
| ଅନ୍ୟାନ୍ୟ | ୯,୭୫୯,୭୮୪ | ୫,୮୨୩,୩୪୭ | ୩,୮୩୬,୩୩୬ |

* (୧) ଜମିଦାର, ଜମିବାଲା, ଚାଷ କରୁଥିବା ପ୍ରଜା, କୃଷକ, ମଜୁରିଦାର ପ୍ରଭୃତି ।

(୨) ପୋଷାକ, କାଠକାମ, ଖାଦ୍ୟଦ୍ରବ୍ୟ, କୋଠା ତିଆରି, କଂସାବାସନ ତିଆରି, ଚମଡ଼ା ପ୍ରଭୃତି ।

(୩) ହୋଟେଲ ପ୍ରଭୃତି, ବ୍ୟାଙ୍କ ପ୍ରଭୃତି ।　　(୪) ଧର୍ମ, ଶିକ୍ଷା, ଔଷଧ, ଆଇନ ପ୍ରଭୃତି ।

**ମହତ ଅନ୍ତରସ୍ଥ ଅଗ୍ନିରେ ସଦା ରହଇ ମହତ୍ତ୍ୱ ଲଜ୍ଜା ।**

୧୫୦—ବିହାର ଓଡ଼ିଶା ପ୍ରଦେଶର ପ୍ରଥମଶ୍ରେଣୀ କଲେଜମାନଙ୍କରେ କର୍ମଚାରୀ ତଥା ଛାତ୍ରବର୍ଗଙ୍କର ହାରାହାରି ବାର୍ଷିକ ଖରଚ ।

| କଲେଜର ନାମ | କର୍ମଚାରୀବର୍ଗଙ୍କ ନିମିତ୍ତ ହାରାହାରି ବାର୍ଷିକ ଖରଚ | ଛାତ୍ରଙ୍କର ହାରାହାରି ବାର୍ଷିକ ଖରଚ |
|---|---|---|
| ୧ । ରେଭେନ୍ସା କଲେଜ | ଟ ୬୨୧୬.୫ | ଟ ୩୮୮.୫୩ |
| ୨ । ତେଜନାରାୟଣ | ଟ ୫୨୯୦.୩୯ | ଟ ୯୧୩.୮୪ |
| ୩ । ପାଟନା ବିଜ୍ଞାନ କଲେଜ | ଟ ୫୧୬୦ | ଟ ୫୦୭.୭ |
| ୪ । ପାଟନା କଲେଜ | ଟ ୫୧୫୦.୩୧ | ଟ ୨୬୬.୩୭ |
| ୫ । ଗ୍ରିଅର ଭୂମିହର ବ୍ରାହ୍ମଣ କଲେଜ | ଟ ୪୯୧୭.୨୭ | ଟ ୨୭୬.୨୩ |
| ୬ । ବିହାର ନେସନାଲ କଲେଜ | ଟ ୨୯୧୮.୦୨ | ଟ ୧୨୭.୬୪ |
| ୭ । ସେଣ୍ଟ କଲମ୍ବସ୍ କଲେଜ | ଟ ୨୬୧୭.୨୭ | ଟ ୧୯୧.୭୪ |

୧୫୧—ମାନନୀୟ ସମ୍ରାଟ୍ ପଞ୍ଚମଜର୍ଜ ଓ ସାମ୍ରାଜ୍ଞୀଙ୍କ ନିଜ ଖରଚପାଇଁ ପାର୍ଲିଅମେଣ୍ଟରୁ ବର୍ଷକୁ ୧୧୦୦୦୦ ପାଉଣ୍ଡ ମଞ୍ଜୁର ହୁଏ । ମହାରାଣୀ ଭିକ୍ଟୋରିଆଙ୍କ ବଂଶଧରଙ୍କ ସହିତ ସମୁଦାୟ ରାଜପରିବାରଙ୍କ ଖର୍ଚ୍ଚ ନିମିତ୍ତ ପ୍ରତ୍ୟେକ ଗ୍ରେଟବ୍ରିଟେନ ଅଧିବାସୀଙ୍କୁ ୪ ପେନ୍ସ ହିସାବରେ ଦେବାକୁ ପଡ଼େ । ପ୍ରିନ୍ସ ଅବ୍ ୱେଲସ ଡଚି ଅବ୍ କର୍ଣ୍ଣୱାଲ ନାମକ ଜମିଦାରୀ ଆୟରୁ ଚଳନ୍ତି ।

୧୫୨—ଆଧୁନିକ ବୈଜ୍ଞାନିକମାନେ ସ୍ଥିର କରିଅଛନ୍ତି ଯେ ପୃଥିବୀର ବୟସ ୧,୬୨୫,୦୦୦,୦୦୦ରୁ ଊଣା ନୁହେଁ । ପୁଣି ସୂର୍ଯ୍ୟ ଆଠ ନିୟୁତ ବର୍ଷ ହେଲା କିରଣ ଦାନ କରୁଅଛନ୍ତି ।

୧୫୩—ହାରାହାରି ୯୦ ଠାରୁ ୧୧୦ ଦିନ ମଧ୍ୟରେ ହସ୍ତର ନଖମାନ ଥରେ ନୂତନ ରୂପେ ଗଠିତ ହୁଏ ।

୧୫୪—କାସ୍ପିଆନ ହ୍ରଦ ୮୦୦ ମାଇଲ ଲମ୍ବ । ଏହା ପୃଥିବୀରେ ବୃହତ୍ତମ ହ୍ରଦ । ମାତ୍ର ଏହାର ଜଳ ଲବଣମୟ । ସୁପିରିଅର ହ୍ରଦର ଦୈର୍ଘ୍ୟ ୩୮୦ ମାଇଲ ଓ ପ୍ରସ୍ଥ ୧୬୦ ମାଇଲ । ଏହାର ଜଳ ମଧୁର ।

୧୫୫—ହାରାହାରି ପୁରୁଷ ଅପେକ୍ଷା ସ୍ତ୍ରୀ ଅଧିକ ଦିନ ବଞ୍ଚେ । ପୁରୁଷ ୫୮ ବର୍ଷ ଓ ସ୍ତ୍ରୀ ୬୧ ବର୍ଷ ଜୀବିତ ରହନ୍ତି ।

୧୫୬—ପଶୁମାନଙ୍କ ମଧ୍ୟରେ ହାତୀ ସହଜରେ ପୋଷ ମାନେ । ୬୦ ଦିନ ବନ୍ଦୀ ହେଲା ପରେ ବୟଃପ୍ରାପ୍ତ ହସ୍ତୀ ଭଲ ପୋଷମାନେ ।

୧୫୭—ପ୍ରଥମେ ୧୫୮୦ ଖ୍ରୀଷ୍ଟାବ୍ଦରେ ଉଇଲିଅମ ବୋର୍ନ William Bourne ( English ) ଓ ୧୬୨୪ ଖ୍ରୀଷ୍ଟାବ୍ଦରେ କୋର୍ନେଲିସ୍ ଭେନ ଡ୍ରେବ୍ଲ Cornehus Van, Dutch ବୁଡ଼ା ଜାହାଜରେ ଗମନ କରିଥିଲେ ।

୧୫୮—ମାକଡ଼ସାମାନେ ଶୂନ୍ୟରେ ଶହ ଶହ ମାଇଲ ନିଜ ସୂତାରେ ଯାଆନ୍ତି ।

୧୫୯—ମନୁଷ୍ୟର ଅନ୍ତଃକରଣ ପ୍ରତି ଘଣ୍ଟାରେ ୪,୩୦୦ ଥର ଧକ୍ ଧକ୍ କରେ ଏବଂ ଶିରାରେ ୧୫ ଗେଲନ ରକ୍ତ ଉଠାଏ । ହାରାହାରି ଜୀବିତ କାଳ ମଧ୍ୟରେ ୨,୫୯୨,୦୦୦,୦୦୦ ଆଘାତରେ ୯,୦୦୦,୦୦୦ ଗେଲନ ରକ୍ତ ଉଠାଇ ଥାଏ ।

୧୬୦—ପୃଥିବୀର ସାମୁଦ୍ରିକ ବାଣିଜ୍ୟପଥ ।

ଆଟଲାଣ୍ଟିକ ରାସ୍ତା— ଏହି ବାଟରେ ଉତ୍ତର ଅମେରିକା ଓ ପଶ୍ଚିମ ଇଉରୋପ ମଧ୍ୟରେ ବାଣିଜ୍ୟ ଚଳେ । ଗ୍ରୀଷ୍ମକାଳରେ ଯେଉଁ ବାଟ ଦେଇ ଜାହାଜ ଯିବା ଆସିବା କରେ ଶୀତକାଳରେ ସେ ବାଟରେ ଯିବା ଆସିବା କରେ ନାହିଁ । ଶୀତଦିନରେ ରାସ୍ତା ଦକ୍ଷିଣ ଦିଗକୁ ବିସ୍ତୃତ ।

ଅମେରିକା ଉପକୂଳରେ ମଣ୍ଟ୍ରିଲ, ହାଲିଫାକ୍ସ, ନିଉୟର୍କ, ବୋଷ୍ଟନ, ଫିଲାଡେଲଫିଆ, ଏବଂ ନିଉ-ଅର୍ଲିନ୍ସ ଓ ଇଉରୋପ ଉପକୂଳରେ ବ୍ରିଷ୍ଟଲ, ଲିଭର

ପୁଲ, ଗ୍ଲାସଗୋ, ଲଣ୍ଡନ, ହେଭର୍ ଅଣ୍ଟୱର୍ପ, ରଟବଡ୍ରାମ, ବ୍ରମେନ, ଓ ହାମବର୍ଗ ବନ୍ଦର-ମାନଙ୍କରେ କାରବାର ହୋଇଥାଏ ।

ସୁଏଜପଥ—ଲଣ୍ଡନ ଠାରୁ ଆରମ୍ଭ; ଜିବ୍ରାଲଟର ପ୍ରଣାଳୀ ବାଟେ ଭୂମଧ୍ୟସାଗରରେ ପ୍ରବେଶ କରି ସୁଏଜ କେନାଲ ଲୋହିତସାଗର ମଧ୍ୟ ଦେଇ ଆରବ-ସାଗରରେ ପ୍ରବେଶ କରିଅଛି । ଏଠାରେ ତିନ ଦିଗକୁ ଏହାର ଶାଖା ଯାଇଅଛି । ପ୍ରଥମ ଶାଖା ଭାରତବର୍ଷକୁ ଆସିଅଛି ଓ ସିଙ୍ଗାପୁର ହଂକଂ ବାଟେ ଚୀନଦେଶ ଓ ଜାପାନକୁ ଯାଇଅଛି । ଦ୍ୱିତୀୟ ଶାଖା ଅଷ୍ଟ୍ରେଲିଆ ଓ ନିଉଜିଲ୍ୟାଣ୍ଡକୁ ଆସିଅଛି ଏବଂ ତୃତୀୟ ଶାଖା ଅଫ୍ରିକା ପର୍ଯ୍ୟନ୍ତ ବିସ୍ତୃତ ।

ପ୍ରଶାନ୍ତ ମହାସାଗର ପଥ—ଉତ୍ତର ଅମେରିକା ଓ ଚୀନ ଜାପାନ ମଧ୍ୟରେ ଏହି ବାଟ ଦେଇ ବାଣିଜ୍ୟ ଚଳେ । ଅମେରିକାରୁ ଅଷ୍ଟ୍ରେଲିଆ ଓ ନିଉଜିଲ୍ୟାଣ୍ଡକୁ ଜାହାଜ ଏହି ବାଟ ଦେଇ ଯାଏ । ଅମେରିକା ଉପକୂଳରେ ଭାଙ୍କୁଭର ଓ ସାନ୍ ଫ୍ରାନସିସ୍କୋ, ଚୀନ ଓ ଜାପାନ ଉପକୂଳରେ ସାଙ୍ଘାଇ, ହଂକଂ, ୟୋକୋହାମା ବନ୍ଦର ଅବସ୍ଥିତ ।

କେପ୍‌ପଥ—ସୁଏଜ କେନାଲ ଖୋଲା ହେବା ପୂର୍ବେ ଇଉରୋପରୁ ପୂର୍ବଦିଗକୁ ଆସିବା ପାଇଁ ଏହି ବାଟ ବ୍ୟବହୃତ ହେଉଥିଲା । ଆଜିକାଲି ଅଫ୍ରିକାର ପଶ୍ଚିମାଞ୍ଚଳକୁ ଆସିଲେ ଜାହାଜ ଏହି ବାଟ ଦେଇ ଆସେ । କେପଟାଉନ ଠାରୁ ଜାହାଜ ଅଷ୍ଟ୍ରେଲିଆକୁ ମଧ୍ୟ ଯାଇଥାଏ ।

ଓ୍ୱେଷ୍ଟଇଣ୍ଡିଜ୍ ପଥ—ଓ୍ୱେଷ୍ଟଇଣ୍ଡିଜ, ମେକ୍ସିକୋ ଓ ସେଣ୍ଟ୍ରାଲ ଅମେରିକାର ବାଣିଜ୍ୟ ଏହି ପଥରେ ଚଳିଥାଏ । ପନାମା କେନାଲ ଖୋଲା ହେବା ପରେ ଏହାର ପ୍ରାଧାନ୍ୟ ବଢ଼ି ଯାଇଅଛି ।

## ୧୯୧—ପ୍ରଧାନ ପ୍ରଧାନ ଜଳପଥମାନଙ୍କର ଦୂରତା

ଲଣ୍ଡନ ଠାରୁ ନିଉୟର୍କ ଯିବାକୁ ୭ ଦିନ ଲାଗେ ।

| | | | | |
|---|---|---|---|---|
| | | | ଦୂରତା ୩୩୦୦ | ମାଇଲ |
| ,, | ବ୍ୟୁନସ୍‌ଏୟାର୍ସ ,, | ୨୪ | ,, ୬୩୪୦ | ,, |
| ,, | କେପ୍‌ଟାଉନ୍ ,, | ୨୧ | ,, ୬୨୨୦ | ,, |
| ଲଣ୍ଡନଠାରୁ | ବମ୍ବେ ଯିବାକୁ ଦିନ | ୨୧ | ଦୂରତା ୬୨୦୦ | ମାଇଲ |
| ,, | ମେଲବୋର୍ଣ୍ଣ,, | ୩୯ | ,, ୧୧୧୫୦ | ,, |
| ବମ୍ବେ ଠାରୁ | ଜାଞ୍ଜିବାର ,, | ୧୨ | ,, ୨୫୨୦ | ,, |
| ,, | କଲମ୍ବୋ ,, | ୪ | | |
| ,, | ସିଙ୍ଗାପୁର ,, | ୧୦ | | |
| ,, | ହଂକଂ ,, | ୧୪ | | |
| ,, | ୟୋକୋହାମା ,, | ୧୯ | | |
| ,, | ସାନ୍‌ଫ୍ରାନ୍ସିସ୍କୋ | ୩୨ | | |

## ୧୯୨—ପୃଥିବୀର ଯନ୍ତ୍ରଶିଳ୍ପ ।

( Manufacture )

ସଭ୍ୟ ଜଗତରେ ସାଧାରଣତଃ ନିମ୍ନଲିଖିତ ବ୍ୟବସାୟ ଗୁଡିକ ଚଳୁଅଛି ।

୧—କୃଷି ( Agriculture ) ୨—ପଶୁରକ୍ଷଣ ଓ ପାଳନ ( Pasturing or Ranching ) ୩—କାଷ୍ଠକର୍ତ୍ତନ ( Lumbering ) ୪—ଖଣିଖନନ ( Mining ) ୫—ମତ୍ସ୍ୟଧାରଣ ଓ ପ୍ରେରଣ ( Fishing ) ୬—ଯନ୍ତ୍ରଶିଳ୍ପ ( Manufacture ) ୭—ଦ୍ରବ୍ୟପ୍ରେରଣ ( Transfort ) ୮—ବଣିକ ସ୍ୱରୂପ କ୍ରୟ ବିକ୍ରୟ (Commerce & trade) ପ୍ରଥମ ୫ ଟି ଉପରେ ଶେଷ ୩ଟି ନିର୍ଭର କରେ ।

ମାର୍କିନ୍—ଜାପାନ ଓ ଇଉରୋପର ଅଧିକାଂଶ ଦେଶ ଯନ୍ତ୍ରଶିଳ୍ପରେ ନିଯୁକ୍ତ । ଏଣୁ ପୃଥିବୀର ଅନ୍ୟାନ୍ୟ ଦେଶରୁ ଏମାନେ ପ୍ରକୃତି ଲବ୍ଧ ଅସଂସ୍କୃତ ପଦାର୍ଥ ( Raw Material ) ନେଇ ସେମାନଙ୍କୁ ଯନ୍ତ୍ରଶିଳ୍ପ ସମ୍ଭୂତ ପଦାର୍ଥ କରନ୍ତି ।

ଯନ୍ତ୍ରଶିଳ୍ପ ମଧ୍ୟରେ ( ୧ ) ବସ୍ତ୍ରବୟନ, କାର୍ପାସ, ପଶମ, ରେସମ, ଶଣ ଏବଂ ଝୋଟ ( ୨ ) ଲୌହ ଏବଂ ଇସ୍ପାତଯନ୍ତ୍ର ନିର୍ମାଣ (୩) ଜାହାଜ ନିର୍ମାଣ (୪) ରସାୟନିକ ଦ୍ରବ୍ୟ ପ୍ରସ୍ତୁତ କରଣ ପ୍ରଭୃତି ବିଶେଷ ଉଲ୍ଲେଖ ଯୋଗ୍ୟ ।

ପୃଥିବୀରେ ବାର୍ଷିକ ପ୍ରାୟ ହାରାହାରି ୧୫୦୦ ମିଲିୟନ୍ ( ନିୟୁତ ) ପାଉଣ୍ଡ କପା ଉତ୍ପନ୍ନ ହୁଏ । ମାର୍କିନ ଏହାର ଶତକଡ଼ା ୬୨ ଯୋଗାଇ ଥାଏ । ସମସ୍ତ ବ୍ରିଟିଶ ସାମ୍ରାଜ୍ୟରେ ହାରାହାରି ୧୮୦୦ ମିଲିୟନ ପାଉଣ୍ଡ ଜନ୍ମେ ।

ନୀଚ ସହବାସେ ନ ପ୍ରକଟେ କେବେଁ ମହତ ଯଶ ଗୌରବ ।

କାର୍ପାସ ବସ୍ତ୍ର—ମାଞ୍ଚେଷ୍ଟର ସର୍ବପ୍ରଧାନ । ଶୀତଳ ଆର୍ଦ୍ର-ବାୟୁରେ ଭଲ ସୂତା କାଟିହୁଏ । ବାୟୁ ଶୁଷ୍କ ହେଲେ ଏହା ଛିଡ଼ିଯାଏ । ଗ୍ରେଟ୍‌ବ୍ରିଟେନ ବ୍ୟତୀତ ଫ୍ରାନ୍ସ, ବେଲଜିଅମ୍, ଜର୍ମାନୀ ମାର୍କିନ୍ ଓ ଜାପାନରେ ଅନେକ ସୁବୃହତ୍ ଲୁଗାକଳ ଅଛି । ବମ୍ବେ ଓ ନାଗପୁରରେ ପ୍ରାୟ ଏକଶତ ଲୁଗାକଳ ସ୍ଥାପିତ ହୋଇଅଛି ।

ପଶମବସ୍ତ୍ର—ସାଧାରଣତଃ ପୃଥିବୀର ସବିଶେଷ ଗୋଚାରଣ ଭୂମିମାନଙ୍କରୁ ପଶମ ଆସିଥାଏ । ଅଷ୍ଟ୍ରେଲିଆ ଓ ନିଉଜିଲ୍ୟାଣ୍ଡ ଗ୍ରେଟ୍‌ବ୍ରିଟେନକୁ ବହୁତ ପଶମ ଯୋଗାଇଥାଏ । ଗ୍ରେଟ୍‌ବ୍ରିଟେନ ଜର୍ମାନୀ, ଫ୍ରାନ୍ସ, ବେଲ୍‌ଜିଅମ ଓ ମାର୍କିନ୍‌ରେ ବଡ଼ ବଡ଼ ପଶମ କାରଖାନା ଅଛି ।

ଛଣ—( Linen ) ଏହି ଶିଳ୍ପ ନିମିତ୍ତ ଗ୍ରେଟ୍‌ବ୍ରିଟେନ୍, ବେଲ୍‌ଜିଅମ ଓ ଫ୍ରାନ୍ସ ପ୍ରଧାନ ଅଟନ୍ତି ।

ରେଶମ—( Silk ) ଭୂମଧ୍ୟ ପ୍ରାଦେଶିକ ଦେଶ, ଚୀନ ଓ ଜାପାନରେ ଉତ୍ପନ୍ନ ହୁଏ । ଫ୍ରାନ୍ସର ରୋନ୍ ଉପତ୍ୟକା ରେଶମ ବସ୍ତ୍ର ନିମିତ୍ତ ସୁପ୍ରସିଦ୍ଧ । ଜର୍ମାନୀ, ସୁଇଜରଲ୍ୟାଣ୍ଡରେ ରେଶମବସ୍ତ୍ର ପ୍ରସ୍ତୁତ ହୁଏ । ଭାରତବର୍ଷ, ଚୀନ ଓ ଜାପାନରେ ମଧ୍ୟ ରେଶମ ବୁଣା ଯାଏ ।

ଝୋଟ—ବଙ୍ଗଦେଶ ଝୋଟପାଇଁ ପୃଥିବୀ ବିଖ୍ୟାତ । ହୁଗୁଳି କୂଳରେ ଓ Dundee ନଗରରେ ବହୁତ ଝୋଟକଳ ଅଛି । ଶେଷୋକ୍ତ ନଗରର ଝୋଟକଳ ବଙ୍ଗଦେଶରୁ ରପ୍ତାନି ଉପରେ ସମ୍ପୂର୍ଣ୍ଣ ନିର୍ଭର କରେ ।

ଲୁହା ଓ ଇସ୍ପାତର କାରଖାନା—ଗ୍ରେଟବ୍ରିଟେନ୍, ଜର୍ମାନୀ, ଫ୍ରାନ୍ସ, ବେଲଜିଅମ ଓ ଇଉନାଇଟେଡ୍ ଷ୍ଟେଟ ଏଥି-ପାଇଁ ପ୍ରସିଦ୍ଧ । ଏସିଆର ସୁବୃହତ୍ ଲୌହ କାରଖାନା ଯମ୍‌ସେଦପୁର ଠାରେ ଅବସ୍ଥିତ । ଉତ୍ତରଆମେରିକାର ପିଟ୍‌ସ୍‌ବର୍ଗ ଖଣି ନିକଟରେ ବଡ଼ ବଡ଼ କାରଖାନାମାନ ଅଛି ।

ଜାହାଜ ନିର୍ମାଣ—ଗ୍ରେଟ୍‌ବ୍ରିଟେନ୍, ଜର୍ମାନୀ, ଫ୍ରାନ୍ସ, ଇଉନାଇଟେଡ୍ ଷ୍ଟେଟ୍ ଓ ଜାପାନରେ ବଡ଼ ବଡ଼ ପୋତ ନିର୍ମିତ ହୁଏ । କୋଇଲା ଓ ଲୁହା ଏହି ଦେଶମାନଙ୍କରେ ପ୍ରଚୁର ପରିମାଣରେ ମିଳେ ।

ରସାୟନିକ ଦ୍ରବ୍ୟ ପ୍ରସ୍ତୁତୀକରଣ—ଗ୍ରେଟ୍‌ବ୍ରିଟେନ୍, ଜର୍ମାନି, ଫ୍ରାନ୍ସ ଓ ଇଉନାଇଟେଡ ଷ୍ଟେଟରେ ବଡ଼ ବଡ଼ କାର-ଖାନା ଅଛି ।

ଲୁହା ଓ କୋଇଲା ଯୋଗୁଁ ବ୍ରିଟିଶଦ୍ୱୀପପୁଞ୍ଜ, ଜର୍ମାନି, ଫ୍ରାନ୍ସ, ଜାପାନ ଓ ମାର୍କିନ୍ ( U. S. A ) ଯନ୍ତ୍ରଶିଳ୍ପ ନିର୍ମା-ଣରେ ଚରମ ଉତ୍କର୍ଷ ଲାଭ କରିଅଛି । ଇଟାଲି, ନରୱେ ଓ ସୁଇଜରଲ୍ୟାଣ୍ଡରେ କୋଇଲା ମିଳେ ନାହିଁ । ଏଠାରେ ତଡ଼ିତ୍ ଶକ୍ତି ଦ୍ୱାରା ଅନେକ ଗୁଡ଼ିଏ ଯନ୍ତ୍ର ଚାଳିତ ହୁଏ ।

ପୃଥିବୀରେ ଲୁହାର ହାରାହାରି ଆମଦାନି ବର୍ଷକୁ ୧୩୪୦ ଲକ୍ଷ ଟନ୍ ଓ କୋଇଲା ହାରାହାରି ଆମଦାନୀ ୧୦,୫୦୦ ଲକ୍ଷ ଟନ୍

## ପୃଥିବୀର ଭୌଗୋଳିକ ଅଭିଧାନ
(Gazetter of the world)

**ଅବିସିନିଆ**—(Abyssinia) ଏହା ମୃଗୟାପ୍ରିୟମାନଙ୍କର ନନ୍ଦନକାନନ । ଟଙ୍କାରେ ୮ଟା ବା ୧୦ଟା କୁକୁଡ଼ା ମିଳିଯାଏ । ଗୋଟିଏ ଭଲ ଘୋଡ଼ାର ଦାମ ଟ ୩୫ରୁ ଟ ୪୦ଙ୍କା ଭିତରେ । ସେଠାରେ ମଧ୍ୟ ବହୁତ ପର୍ବତ ଓ ପାହାଡ଼ ଅଛି । ମୃତ୍ତିକା ଉର୍ବର ଓ କପା ଏବଂ ଆଖୁ ପ୍ରଚୁର ପରିମାଣରେ ଜାତ ହୁଏ । ଲୁହା, କୋଇଲା ଓ ପଟାଶ୍ ଖଣି ଅନେକ ଅଛି । ଅଳ୍ପଦିନ ହେଲା ସେଠାରୁ ବହୁତ ପ୍ଲାଟିନମ୍ ବାହାରି ନିଅୁଛି । ଆଫ୍ରିକା ମଧ୍ୟରେ ଅବିସିନିଆ କେବଳ, ଇଉରୋପୀୟମାନଙ୍କ ଶାସନ ଅନ୍ତର୍ଭୁକ୍ତ ହୋଇନାହିଁ । ହେଇଲି ସେଲେସି (Haeli Selesie) ଏ ସ୍ଥାନର ସମ୍ରାଟ ଅଟନ୍ତି । ସେ ଜାତିଦାସ ପ୍ରଥା ଉଠାଇ ଦେଇ, ପ୍ରଜାମାନଙ୍କ ପାଇଁ ବିଦ୍ୟାଳୟମାନ ଖୋଲିଅଛନ୍ତି । ଏହାର କ୍ଷେତ୍ରଫଳ ୩୫୦,୦୦୦ ବର୍ଗମାଇଲ ଅଟେ । ୧୦ ବା ୧୧ଲକ୍ଷ ଲୋକ ଏଠାରେ ବାସ କରନ୍ତି । ଅଡସ୍ ଅବାବା Addis Ababa) ଏହାର ରାଜଧାନୀ ଅଟେ ।

**ଆଡେନ୍**—( Aden )—ଏହା ଆରବ ଉପଦ୍ୱୀପର ଦକ୍ଷିଣ ଉପକୂଳରେ ଅବସ୍ଥିତ । ଏହାର କ୍ଷେତ୍ରଫଳ ପ୍ରାୟ ୮୦ ବର୍ଗମାଇଲ ହେବ । ଜନସଂଖ୍ୟା—୪୧୦୬୮ । ଏହା ଲବଣ ପ୍ରଧାନ ସ୍ଥାନ । ଜଳାଭାବ ଏଠାରେ ବହୁତ ପରିମାଣରେ ପରିଲକ୍ଷିତ ହୁଏ । ଏଠାରୁ କାଫି, ଗମ୍ ଓ ଖଜୁରୀ ବିଦେଶକୁ ରପ୍ତାନୀ ହୁଏ । ଏହା ଭାରତର ଏକ ପ୍ରଦେଶରୂପେ ଜଣେ ଚିଫ୍ କମିସନରଙ୍କ ଦ୍ୱାରା ଶାସିତ ହୁଏ ।

**ଆଫଗାନିସ୍ଥାନ**—(Afghanisthan)—ଏହି ଦେଶ ମଧ୍ୟଯୁଗଠାରୁ ଆରମ୍ଭକରି ଅନେକ ଦିନ ପର୍ଯ୍ୟନ୍ତ ସଭ୍ୟ ଜଗତ ସଙ୍ଗେ କୌଣସି ସମ୍ପର୍କ ରଖି ନ ଥିଲା । କିନ୍ତୁ ପ୍ରାଚ୍ୟର ଜାଗରଣ ସଙ୍ଗେ ସଙ୍ଗେ ଏହା ଜାଗି ଉଠିଲା । ଭୂତପୂର୍ବ ରାଜା ଅମାନୁଲ୍ଲା ଦେଶରେ ଆନ୍ଦୋଳନ ଉପୁଜାଇ ଥିଲେ ଏବଂ ସାରା ଜଗତରେ ନିଜ ଦେଶକୁ ସମ୍ମାନିତ କରାଇଥିଲେ । ସେ ବିଶେଷତଃ ପୁରୋହିତମାନଙ୍କ ମଧ୍ୟରେ ଅନେକ ବାଧା ପାଇଥିଲେ ସୁଦ୍ଧା ଦେଶରେ ନବ ଜାଗରଣ ଆଣିବା ପାଇଁ ତାଙ୍କ କାର୍ଯ୍ୟ ନିର୍ଦ୍ଦେଶ ପରିତ୍ୟାଗ କରି ନ ଥିଲେ । ବାଳିକା ବିଦ୍ୟାଳୟମାନ ସ୍ଥାନେ ସ୍ଥାନେ ନିର୍ମିତ ହୋଇଥିଲା ଏବଂ ପାପ ବିତାଡ଼ିତ ହୋଇଥିଲା । ତାଙ୍କ ସ୍ତ୍ରୀ ସୌରିଅ ଜଣେ ଶିକ୍ଷିତା ମହିଳା ଭଳି ପରଦାପ୍ରଥା ନ ମାନି ସାଧାରଣରେ ଉପସ୍ଥିତ ହୋଇଥିଲେ । ଇଉରୋପ ମଧ୍ୟଦେଇ ତାଙ୍କ ବିଜୟ ଯାତ୍ରା ଚିରସ୍ମରଣୀୟ ହୋଇଅଛି । ତାଙ୍କ ଅନୁପସ୍ଥିତିରେ, ତାଙ୍କ ଶତ୍ରୁଗଣ ନିରକ୍ଷର ପ୍ରଜାମାନଙ୍କ ମଧ୍ୟରେ ତାଙ୍କ ବିରୁଦ୍ଧରେ ନାନା କଥା ପ୍ରଚାର କରିଥିଲେ । ଅମାନୁଲ୍ଲା ଦେଶକୁ ଫେରିଆସି ଦେଶରେ ନୂତନ ସଂସ୍କାର ଆରମ୍ଭ କରିବା ସମୟରେ ବିଦ୍ରୋହ ବହ୍ନି ଜଳି ଉଠିଥିଲା । ସେ ସିଂହାସନ ତ୍ୟାଗକରି ବିଦେଶରେ ଆଶ୍ରୟ ଗ୍ରହଣ କରିଥିଲେ । ବିଦ୍ରୋହୀ ନେତା ବାଚ୍ଚାସାକା କାବୁଲ ଅବରୋଧ କରି ନିଜକୁ ରାଜା ବୋଲି ଘୋଷଣା କରିଥିଲେ । ଅମାନୁଲ୍ଲାଙ୍କ ସେନାପତି ନାଦିର ଖାଁ ଏ ସମୟରେ ପାରିସ ସହରରେ ବିଶ୍ରାମ କରୁଥିଲେ । ମାତୃଭୂମିକୁ ଜଳବାହକ (Water carrier king) କବଳରୁ ମୁକ୍ତ କରିବା ଲାଗି କାବୁଲକୁ ଆସିଥିଲେ । ସେ ୧୯୨୯ ମସିହା ଅକ୍ଟୋବର ମାସରେ କାବୁଲକୁ ପୁନରୁଦ୍ଧାର କରିଥିଲେ । ଭିସ୍ତିରାଜା ହାର ଖାଇଲେ ଏବଂ ନାଦିର ଖାଁ ରାଜା ହେଲେ । ଫଳ, ପିସ୍ତା, ପଶମ ଏବଂ ଗରମ ବସ୍ତ୍ର ଏଠାରେ ପ୍ରଚୁର ମିଳେ । ଲୁଣ, ରୁପା, ତମ୍ବା ପ୍ରଭୃତି ଖଣିଜ ଦ୍ରବ୍ୟ ମଧ୍ୟ ଆମଦାନୀ ହୁଏ । କ୍ଷେତ୍ରଫଳ ୨୪୫,୦୦୦ ବର୍ଗ ମାଇଲ । ଜନସଂଖ୍ୟା—୬୩୮୦,୫୦୦, ରାଜଧାନୀ-କାବୁଲ ।

**ଆଲବାନିଆ**—(Albania) ବଲକାନ ଦ୍ୱୀପପୁଞ୍ଜରେ ଏହା ଗୋଟିଏ କୃଷି ପ୍ରଧାନ ଦେଶ । ଏଠାରେ ଅନେକ ବନ୍ୟ ଦ୍ରବ୍ୟ ଓ ଖଣିଜ ଦ୍ରବ୍ୟ ମିଳେ । ଅନେକ ଦିନ କାଳ ଅରାଜକ ରହି ୧୯୨୫ ମସିହାରେ ସାଧାରଣ ତନ୍ତ୍ର ଦେଶ ହୋଇଥିଲା । କର୍ଣ୍ଣେଲ ଅହମଦ୍ ଜଗୁ ଏଠାକାର ସଭାପତି ରୂପେ ନିର୍ବାଚିତ ହୋଇଥିଲେ । ୩ ବର୍ଷ ପରେ ପୁଣି ରାଜଶାସନତନ୍ତ୍ର ଆରମ୍ଭ ହୋଇଥିଲା । ଶାସନ ଖସଡ଼ା ସଂଶୋଧିତ ହୋଇଥିଲା ଏବଂ ଅହମଦ୍ ଜଗୁ ଏଠାରେ ରାଜା ହୋଇଥିଲେ । କ୍ଷେତ୍ରଫଳ ୧୧୬୩୨ ବର୍ଗ ମାଇଲ, ଲୋକସଂଖ୍ୟା—୧,୦୦୩,୧୦୪ (ଏମାନଙ୍କ ମଧ୍ୟରୁ ୫୮୪,୬୭୫ ଜଣ ମୁସଲମାନ) ଟିରାନା ରାଜଧାନୀ ଅଟେ । ଶାସକ—ରାଜା ଅହମଦ୍ ଜଗୁ ।

**ଆଲଜିରିଆ**—(Algeria)—ଏହା ଏକ ଫରାସୀ ଅଧିକୃତ ସ୍ଥାନ । ଭୂମଧ୍ୟସାଗର କୂଳରେ ଅନେକ ଉର୍ବର ଓ ନିଚ ଉପତ୍ୟକା ଅଛି । କୃଷି ଲୋକମାନଙ୍କର ପ୍ରଧାନ ବ୍ୟବସାୟ । ବହୁତ ଖାଦ୍ୟଦ୍ରବ୍ୟ ଫ୍ରାନ୍ସକୁ ପଠାହୁଏ । ଗଭର୍ଣ୍ଣର ଜେନେରେଲଙ୍କ ଦ୍ୱାରା ଶାସନକାର୍ଯ୍ୟ ପରିଚାଳିତ ହୁଏ । ତାଙ୍କୁ ସାହାଯ୍ୟ କରିବା ପାଇଁ ଗୋଟିଏ କାଉନ୍ସିଲ ଅଛି । କ୍ଷେତ୍ରଫଳ ୨୨୨୨୦୦୦ ବର୍ଗମାଇଲ ଜନସଂଖ୍ୟା ୬୦୬୪୮୬୫, ରାଜଧାନୀ ଅଲଜିଅର୍ସ (Algiers) ।

**ଏଣ୍ଡୋରା**—(Andorra) ଫ୍ରାନ୍ସ ଅଧୀନରେ ପିରେନିଜ୍ ପର୍ବତମାଳା ଉପରିଭାଗରେ ଏହା ଏକ ପ୍ରଜାତନ୍ତ୍ର ଦେଶ । ଅଧିବାସୀମାନଙ୍କ ମଧ୍ୟରୁ ଅଧିକାଂଶ ରୋମାନ୍ କେଥଲିକ । ମେଷପାଳନ ପ୍ରଧାନ ବ୍ୟବସାୟ । ଛଅଟି ଜିଲ୍ଲା ମଧ୍ୟରୁ ପ୍ରତ୍ୟେକର ପରିବାର ଦ୍ୱାରା ନିର୍ବାଚିତ ୨୪ ଜଣ ସଦସ୍ୟଙ୍କ ଦ୍ୱାରା ରାଜ୍ୟ ଶାସିତ ହୁଏ । କ୍ଷେତ୍ରଫଳ ୧୭୫ ବର୍ଗମାଇଲ, ଜନସଂଖ୍ୟା ୫୫୦୦ । ଏଣ୍ଡୋରା ରାଜଧାନୀ ।

**ଆରବ**—(Arabia) ଏହା ଏକ ପ୍ରାଚୀନ କାହାଣୀ ପୂର୍ଣ୍ଣ ପୀଠ ଅଟେ । ଆରବବାସୀ ବିଚିତ୍ର ଗଳ୍ପ ଶୁଣିବାକୁ ଭଲ ପାଆନ୍ତି । ପୃଥିବୀବିଖ୍ୟାତ ଗଳ୍ପ ପୁସ୍ତକ "ଆରବ୍ୟ କାହାଣୀ" (Arabian Nights) ଏହି ଦେଶର ଗଳ୍ପରୁ ସୃଷ୍ଟିତ । ମୁସ୍‌ଲମ ଧର୍ମର ସଂସ୍ଥାପୟିତା ମହମ୍ମଦ ଏହି ସ୍ଥାନରେ ଜନ୍ମଗ୍ରହଣ କରିଥିଲେ । ଆରବର ଅଧିକାଂଶ ମରୁଭୂମି । ଏହା ନିମ୍ନଲିଖିତ ବିଭାଗରେ ବିଭକ୍ତ—ହେଜାଜ୍, ନେଜ୍ଡ କୁବେଟ୍, ଓମାନ୍, ଅସୀର ଏବଂ ୟେମେନ୍ । ଏହିସବୁ ବିଭାଗର ଏକତ୍ରୀକରଣ ପାଇଁ ଚେଷ୍ଟା ଲାଗିଛି । ଏହି ବିଷୟ ହେତୁ ସାରା ଗୃହଯୁଦ୍ଧରେ ଲୋକେ ଅଧିକେ ଆନ୍ଦୋଳିତ ହେଉଅଛି । କ୍ଷେତ୍ରଫଳ ୧,୨୦୦,୦୦୦ ବର୍ଗମାଇଲ । ଲୋକସଂଖ୍ୟା ୫,୦୦୨,୦୯୦ ।

ଜୀବନ ନୁହେଁ ବୃଥା ଖେଳା । ଯେବେ ଥରେ ଜୀବ ଆସିଛୁ ଏଠାକୁ ସାଧ ଯା ବିଧିର ଇଷ୍ଟଲୀଳା ।

**ଆର୍ଜେଣ୍ଟାଇନା**—( Argentina ) ଦକ୍ଷିଣ ଆମେରିକାରେ ପ୍ରଜାତନ୍ତ୍ର ଦେଶ । ଏଥିରେ ନାନାସ୍ଥାନରେ ଲୋକମାନେ ଗହମ ଓ ଧାନ୍ୟ ଉତ୍ପନ୍ନ କରନ୍ତି । ଗୃହପାଳିତ ପଶୁ ଚରିବାପାଇଁ ବହୁତ ପ୍ରାନ୍ତର ଅଛି । ଏହାକୁ ପମ୍ପାଜ୍ ( Pampas ) କହନ୍ତି । ଏଠାରେ ମକ୍କା ବହୁତ ପରିମାଣରେ ଉତ୍ପନ୍ନ ହୁଏ । ଏହା ମଧ୍ୟ ଅନେକ ଅନ୍ଦୋଳନ ଏବଂ ସମ୍ବାଦ-ଦାତାମାନଙ୍କ ପାଇଁ ପ୍ରସିଦ୍ଧ । କ୍ଷେତ୍ରଫଳ ୧,୧୩୨,୦୦୦ ବର୍ଗ-ମାଇଲ । ଲୋକସଂଖ୍ୟା ୧୧,୭୫୮,୨୧୨ । ରାଜଧାନୀର ନାମ ବୁଏନସ୍ ଏୟାରସ୍ ( Buenos Aires ) । ଅଗଷ୍ଟିନ୍ ପି. ଜୁଷ୍ଟୋ ( Augustin P. Justo ) ପ୍ରେସିଡେଣ୍ଟ ଅଟନ୍ତି (୧୯୩୨) ।

**ଆର୍ମେନିୟା**—( Armenia ) ଅସିଆ ମାଇନର, କକେସସ୍ ଏବଂ କାସ୍ପିୟାନ୍ ମଧ୍ୟରେ ଅବସ୍ଥିତ ଅଟେ । ଏହା ସୋଭିଏଟ୍ ରିପବ୍ଲିକ୍ । ମୃତ୍ତିକା ଉର୍ବର ଏବଂ ସେଥିରେ ଲବଣ, କପା, ଧାନ ଓ ତମାଖୁ ପ୍ରଭୃତି ଉତ୍ପନ୍ନ ହୁଏ । ଖନିଜ ଦ୍ରବ୍ୟ ପ୍ରଚୁର ପରିମାଣରେ ମିଳେ । ଏଥିରେ ଗୋଟିଏ ଷ୍ଟେଟ୍ ଇଉନିଭର୍ସିଟି ଏବଂ ଗୋଟିଏ ସଙ୍ଗୀତ ବିଦ୍ୟାଳୟ ଅଛି । କ୍ଷେତ୍ରଫଳ ୧୫,୦୭୫ ବର୍ଗମାଇଲ । ଜନସଂଖ୍ୟା ୧,୩୩୧,-୫୭୧ । ରାଜଧାନୀ-ଏରିଭାନ୍ ( Erivan ) ପ୍ରେସିଡେଣ୍ଟ ଏମ୍ ଏସ୍. ହମ୍ବାର୍ଟସୁମିଏନ୍ ( Hambartsumian) ।

**ଆସିର୍**—( Asir ) ଏହା ହେଡଜାଜ୍ ରାଜ୍ୟର ଅଧୀନ । ଏହା ମଧ୍ୟରେ ଫେରସାନ୍ ଦ୍ୱୀପପୁଞ୍ଜ ଅଛି । ଏଥିରେ ପ୍ରଚୁର ଉର୍ବରଭୂମି ଅଛି । ତେଣୁ ଗୋଚାରଣ ଏବଂ ଶସ୍ୟ ଉତ୍ପନ୍ନ ଭଲରୂପେ ହୋଇପାରେ । ରାଜଧାନୀ ସେବିଅ ( Sabia ) ।

**ଅଷ୍ଟ୍ରେଲିଆ**—( Australia ) ଏହାର ପ୍ରାକୃ-ତିକ ଦୃଶ୍ୟ ଅତ୍ୟନ୍ତ ମନୋହର । ଏହାର ମୃତ୍ତିକାର ଧନ ପ୍ରଚୁର ଅଟେ । ଇଂରାଜମାନେ ପ୍ରଥମେ ଏଠାରେ ଗୁରୁତର ଅପରାଧୀ ମାନଙ୍କୁ ଛାଡ଼ିଯାଉଥିଲେ । କିନ୍ତୁ ପରେ ସେମାନେ ଜାଣି ପାରିଲେ ଯେ ଏହା ବନ୍ଦୀର ଉପଯୁକ୍ତ ସ୍ଥାନ ନୁହେ । ଏହାର ସୁନାଖଣି ଦେଖି ସେମାନେ ପ୍ରଲୋଭନ ଫାନ୍ଦରେ ପଡ଼ିଲେ । ଲୋକେ ଏଠାରେ ବସତି ସ୍ଥାପନ କଲେ ଏବଂ ଏହାର ଗୁପ୍ତ ସୌନ୍ଦର୍ଯ୍ୟ ଫୁଟି ଉଠିଲା । ୧୯୦୧ ମସିହା ଜାନୁୟାରୀ ପହିଲାରେ ସମସ୍ତ ଉପନିବେଶମାନ ସଂଯୁକ୍ତ ହୋଇ ଅଷ୍ଟ୍ରେଲିଅର କମନ୍‌ୱେଲ୍‌ଥ ହେଲା ଏବଂ ଏହା ସ୍ୱାୟତ୍ତଶାସନ ପାଇଲା । ଏହାର ଭିତର ରାଜ୍ୟମାନଙ୍କର ନାମ ୧ ନିଉସାଉଥ୍‌ୱେଲ୍‌ସ, ୨ ଭିକ୍ଟୋରିଅ, ୩ କୁଇନ୍‌ସ୍‌ଲଣ୍ଡ, ୪ ସାଉଥ୍ ଅଷ୍ଟ୍ରେଲିଅ, ୫ ୱେଷ୍ଟାର୍ନ ଅଷ୍ଟ୍ରେଲିଅ, ଏବଂ ୬ ଟାସ୍‌ମାନିଅ । ପ୍ରତ୍ୟେକ ଷ୍ଟେଟର ନିଜ ନିଜ ପାର୍ଲିଅମେଣ୍ଟ ଅଛି । ପଶ୍ଚିମ ଅଷ୍ଟ୍ରେଲିଅ ଅନ୍ୟାନ୍ୟ ଷ୍ଟେଟ୍‌ମାନଙ୍କ ମଧ୍ୟରେ କ୍ଷେତ୍ରଫଳରେ ପ୍ରଥମ ଓ ଲୋକସଂଖ୍ୟାରେ ଦ୍ୱିତୀୟ ଅଟେ । ଏଠାରୁ ପ୍ରଚୁର ପରିମାଣରେ ସୁନା, ଗହମ, ମେଣ୍ଢା ଏବଂ ଗୃହପାଳିତ ପଶୁ ଆସନ୍ତି । ବ ୬୫ ବର୍ଷରୁ ଅଧିକ ବୟସ୍କ ପୁରୁଷ ବା ସ୍ତ୍ରୀମାନଙ୍କୁ ଅଷ୍ଟ୍ରେଲିଅ ସରକାର ୧୨ ସିଲିଂ ହିସାବରେ ସାପ୍ତା-ହିକ ପେନ୍‌ସନ୍ ଦିଅନ୍ତି । ଅନ୍ଧଲୋକ ଆଜୀବନ ପେନ୍‌ସନ୍ ପାଏ । କୃଷି ଏଠା ଲୋକମାନଙ୍କର ପ୍ରଧାନ ବ୍ୟବସାୟ । ପଶମ ଆଶାରେ ଲୋକେ ବହୁତ ମେଣ୍ଢା ପାଳନ୍ତି । ଗହମ ଓ ଅନ୍ୟାନ୍ୟ ଶସ୍ୟ, କାଠ ଏବଂ ଦୁଧ, ଦହି ଏହାର ପ୍ରଧାନ ଉତ୍ପନ୍ନ ଦ୍ରବ୍ୟ । ସୁନା, ରୁପା, ତମ୍ବା, ଲୁହା ଏବଂ ଟିଣ ଏହାର ପ୍ରଧାନ ଖନିଜ ଦ୍ରବ୍ୟ । ଅଷ୍ଟ୍ରେଲିଅର ସହରଗୁଡ଼ିକ ବେଶ ସୁନ୍ଦର । ଏଠା ମଫସଲର ସୌନ୍ଦର୍ଯ୍ୟ ଏବଂ ବୁଦାମାନଙ୍କର ମାଧୁର୍ଯ୍ୟ ଲୋକର ମନ ଆକର୍ଷଣ କରେ । କ୍ଷେତ୍ରଫଳ ୩,୦୦୦,୦୦୦ ବର୍ଗମାଇଲ । ଲୋକସଂଖ୍ୟା ୬,୦୦୦,୦୦୦ । ରାଜଧାନୀ କାନ-ବେରା । ଗଭର୍ଣ୍ଣର ଜେନେରାଲ୍ ସାର୍ ଅଇଜାକ୍ ଅଲ୍‌ଫ୍ରେଡ୍ ଅଇଜାକ୍ (Sir Issac Alfred Issac)( ୧୯୩୧ ) ।

**ଅଷ୍ଟ୍ରିଆ**—ଏହା ଅନେକ ଦୁର୍ଗ ଓ ଯୁଦ୍ଧର ସଙ୍କଟରେ ପରିପୂର୍ଣ୍ଣ । ବହୁଦିନ ପୂର୍ବେ ଏଠାରେ ପ୍ରାୟ ୫୦ ନିୟୁତ ଲୋକ ବାସ କରୁଥିଲେ । ବର୍ତ୍ତମାନ ପ୍ରାୟ ସାତନିୟୁତ ଲୋକ ବାସ କରୁଅଛନ୍ତି । ୧୯୧୮ ନଭେମ୍ବର ୧୨ ରେ (Armistice) ଅଳ୍ପଦିନ ପାଇଁ ଯୁଦ୍ଧ ବିରାମପରେ ଏହା ସାଧାରଣତନ୍ତ୍ର ଦେଶ ବୋଲି ଘୋଷିତ ହେଲା । ପ୍ରାଥମିକ ଶିକ୍ଷା ବାଧ୍ୟତା ମୂଳକ । ସମସ୍ତ ପ୍ରକାର ସ୍ୱତନ୍ତ୍ର ସୁବିଧା ଉଠାଇ ଦିଆ ଯାଇଛି । ଆଇ-ନାନୁସାରେ ଧର୍ମପାଇଁ ସ୍ୱାଧୀନତା ଅଛି । କ୍ଷେତ୍ରଫଳ ୩୨,୩୬୯ ବ: ମା:—ଜନ ସଂଖ୍ୟା—୬, ୭୩୨, ୭୧୦—ରାଜଧାନୀ ଭିଏନା ( Vienna ) ।

ତେଜସ୍ୱୀ ସମକ୍ଷେ ସର୍ବଦା ବୁଦ୍ଧ ହୁଅଇ ମୂକ ।

**ବେଲଜିଅମ**—( Belgium ) ମିତବ୍ୟୟିତା ଏଠାଲୋକଙ୍କର ମୂଳନୀତି—ପ୍ରତ୍ୟେକ ସ୍କୁଲ ଛାତ୍ରଙ୍କୁ ସେଭିଙ୍ଗ୍ସ ବେଙ୍କ ବହି ପ୍ରଦତ୍ତ ହୁଏ । ସେମାନେ ଗୋ ଖାଆନ୍ତି ନାହିଁ, କିନ୍ତୁ ସଙ୍ଗୀତର ଅତିପ୍ରିୟ । ଅଧିକାଂଶ ରୋମନ୍ କେଥଲିକ । ଏଠାରେ ୪ଟି ବିଶ୍ୱବିଦ୍ୟାଳୟ ମଧ୍ୟରୁ ୨ ଟିରେ ପାଠ ଖର୍ଚ୍ଚ ଲାଗେ ନାହିଁ । ବେଲଜିଅମ ଫିତା ଓ ସତରଞ୍ଜି ପୃଥିବୀ ପ୍ରସିଦ୍ଧ । କ୍ଷେତ୍ରଫଳ-୧୧,୭୫୦ ବ. ମା.— ଜନସଂଖ୍ୟା—୮,୦୦୦,୦୦୦ । ରାଜଧାନୀ—ବ୍ରସେଲ୍ସ—ଶାସନକର୍ତ୍ତା ରାଜା ଅଲବର୍ଟ ( King Albert )

**ବଲିଭିଆ**—( Bolivia ) ଦକ୍ଷିଣ ଆମେରିକାରେ । ପୃଥିବୀର ଅଧିକାଂଶ ଟିଣ ଏଠାରୁ ଆସେ । କୃଷିକର୍ମ, ଗୋ ଚାରଣ ଓ ଖଣିଖନନ ଏଠା ଅଧିବାସୀଙ୍କର ପ୍ରଧାନ କାର୍ଯ୍ୟ । ଏହା ଗୋଟିଏ ସାଧାରଣତନ୍ତ୍ର ରାଜ୍ୟ । ସ୍ପେନୀୟ ଏ ଦେଶର ଭାଷା । କ୍ଷେତ୍ରଫଳ ୫୦୦,୦୦୦ ବର୍ଗମାଇଲ, ଜନସଂଖ୍ୟା ୩,୦୦୦,୦୦୦ । ରାଜଧାନୀ ଲାପାଜ (La Paz) ।

**ବ୍ରାଜିଲ**— ( Brazil ) ଦକ୍ଷିଣ ଆମେରିକାରେ ବୃହତ୍ତମ ଦେଶ । ଏଠାରେ ନିଗ୍ରୋ, ଇଟାଲୀ, ଜର୍ମାନୀ, ଫ୍ରାନ୍ସ ତୁର୍କି, ଜାପାନ, ପୋଲଦେଶବାସୀ ଓ ଅନ୍ୟାନ୍ୟମାନେ ବାସ କରନ୍ତି । ଏହା ଏକ ସାଧାରଣତନ୍ତ୍ର ରାଜ୍ୟ । ସୈନ୍ୟବିଭାଗ ଆଇନ ବ୍ୟତୀତ ଏଠାରେ ପ୍ରାଣଦଣ୍ଡ ନାହିଁ । ବିନା ଖର୍ଚ୍ଚରେ ଶିକ୍ଷା ଦିଆଯାଏ । ଏଠାରେ ପ୍ରାୟ ୪୦୦ ଜଳ ପ୍ରପାତ ଅଛି । ଇଗାସୁର (Iguassu) ମହାମହିମ ପତନ ପୃଥିବୀର ପ୍ରାକୃତିକ ଆଶ୍ଚର୍ଯ୍ୟମାନଙ୍କ ମଧ୍ୟରୁ ଗୋଟିଏ । କ୍ଷେତ୍ରଫଳ ୩,୨୯୮,୮୭୦ ବ. ମା. ଜନସଂଖ୍ୟା ୩୧,୧୦୩,୮୯୭, । ରାଜଧାନୀ— ରିଓ ଡି ଜେନେରୋ ( Rio de Janeiro ) ।

**ବୁଲଗେରିଆ**—( Bulgaria ) ଏକ କ୍ଷୁଦ୍ର ରାଜ୍ୟ । ଗୋଲାପ ଅତର ପ୍ରସ୍ତୁତ ପାଇଁ ଏହା ପ୍ରସିଦ୍ଧ । ଏଠା ଫଳ ଓ ପନିପରିବା ବିଖ୍ୟାତ । କ୍ଷୁଦ୍ର ରାଜ୍ୟ ହେଲେହେଁ ଇଉରୋପର ପ୍ରତ୍ୟେକ ବିଷୟରେ ଉନ୍ନତ ହୋଇଅଛି, ଏହା ପାଇଛି । ବିନା ଖର୍ଚ୍ଚରେ ପ୍ରାଥମିକ ଶିକ୍ଷା ଦିଆଯାଏ ଓ ତାହା ବାଧ୍ୟତାମୂଳକ । କ୍ଷେତ୍ରଫଳ ୩୯,୮୧୪ ବ. ମା.—ଜନସଂଖ୍ୟା ୫,୯୮୬,୦୦୦ । ରାଜଧାନୀ ସୋଫିଆ ।

**ସିଲୋନ**—(cylon) ଏହା ବ୍ରିଟିଶ ଉପନିବେଶ ଓ ପ୍ରାଚ୍ୟର ମୁକ୍ତା । କୃଷିକାର୍ଯ୍ୟ, ନାରିକେଳ, ଚାଳ, ଗୁ ଓ ରବର ଏଠାରେ ଯଥେଷ୍ଟ ମିଳେ । ଜଳବାୟୁ ସ୍ୱାସ୍ଥ୍ୟକର ଓ ଭିତରର ଦୃଶ୍ୟ ମନୋହର । ଫିତା, ହାତୀଦାନ୍ତକାମ, କଚ୍ଛପ ଖୋଳରକାର୍ଯ୍ୟ ପ୍ଲାଗାସ୍ତୁ ଶମଷ୍ଟିଲ୍ ଅଟେ । Plumbago ) ପ୍ରଧାନ ଖନିଜ ଦ୍ରବ୍ୟ । ସିଂହଳୀ ଓ ତାମିଲ ପ୍ରଧାନ ଭାଷା । କ୍ଷେତ୍ରଫଳ ୨୫,୩୩୨ ବର୍ଗମାଇଲ । ଜନସଂଖ୍ୟା ୫,୩୧୨,୫୪୮ । ରାଜଧାନୀ କଲମ୍ବୋ ( Colombo )

**ଚୀନ**—( China ) ପ୍ରାୟ ଇଉରୋପ ପରି ଗୋଟିଏ ବୃହତ୍‌ଦେଶ । ଚୀନବାସୀ ବଡ଼ ପରିଶ୍ରମୀ । କ୍ରୀଡ଼ାପାଇଁ ସେମାନେ ଅବସର ପାଆନ୍ତି ନାହିଁ, କିନ୍ତୁ ଗୁଡ଼ି ଉଡ଼ାଇବାକୁ ଭଲପାଆନ୍ତି । ପକ୍ଷୀ ଓ ଅନ୍ୟର ଆକାରରେ ଆଶ୍ଚର୍ଯ୍ୟଜନକ ଗୁଡ଼ି ତିଆରି କରନ୍ତି ଏବଂ ସେମାନଙ୍କ ମଧ୍ୟରେ ଗୁଡ଼ି ଉଡ଼ାଇବାରେ ଯୁଦ୍ଧ ଚଳେ । ପେକିଂରେ ଗୋଟିଏ ବିଶ୍ୱବିଦ୍ୟାଳୟ ଅଛି । ଇଂରାଜୀ ଓ ଅନ୍ୟାନ୍ୟ ବିଦେଶୀ ଭାଷା ବ୍ୟତୀତ କେବଳ ଚୀନ ଭାଷାରେ ୧୨୫୦ ଖଣ୍ଡରୁ ଅଧିକ ଖବର କାଗଜ ପ୍ରକାଶିତ ହୁଏ । ଏଠାରେ ପଥରକୋଇଲା ଅପର୍ଯ୍ୟାପ୍ତ ପରିମାଣରେ ଓ ପେଟ୍ରୋଲିଅମ ପ୍ରଚୁର ପରିମାଣରେ ମିଳେ । ତୂଳା ଉତ୍ପାଦକ ଦେଶମାନଙ୍କ ମଧ୍ୟରେ ଏହା ପୃଥିବୀରେ ୩ୟ ସ୍ଥାନ ଅଧିକାର କରିଛି । କ୍ଷେତ୍ରଫଳ— ୩,୯୦୨,୩୦୦ ବ. ମା. । ଜନସଂଖ୍ୟା ୪୨୨,୦୦୨,୫୧୯ ରାଜଧାନୀ ନାନ୍‌କିଂ ( Nanking )

**କେନେଡା**— ( Canada ) ବ୍ରିଟିଶ ସାମ୍ରାଜ୍ୟ ମଧ୍ୟରେ ଏହା ନିଜେ ଶାସିତ ହୁଏ । ଆକାରରେ ବଡ଼ ହେଲେହେଁ ଏଠାରେ ଅଳ୍ପଲୋକ ବାସ କରନ୍ତି । ପୃଥିବୀରେ ଇଉନାଇଟେଡ୍ ଷ୍ଟେଟ୍ସ ବ୍ୟତୀତ ଅନ୍ୟାନ୍ୟ ଦେଶମାନଙ୍କ ଅପେକ୍ଷା ଏଠାରେ ଯଥେଷ୍ଟ ଗହମ ଉତ୍ପନ୍ନ ହୁଏ । ଫ୍ରେଞ୍ଚ ଓ ଇଂଲିଶ ଉଭୟ ରାଜଭାଷା । ଆଇନ ଓ ଘୋଷଣାପତ୍ର ଏହି ଦୁଇଭାଷାରେ ପ୍ରକାଶିତ ହୁଏ ଏବଂ ପାର୍ଲିଅମେଣ୍ଟରେ ମଧ୍ୟ ଏହି ଦୁଇ ଭାଷାରେ ଶୁଣାଣି ହୁଏ । ସ୍ୱର୍ଣ୍ଣରୌପ୍ୟରେ ଏହା ତୃତୀୟ ମାତ୍ର ନିକେଲ Asbestos and cobalt—ରେ ପ୍ରଥମ । କ୍ଷେତ୍ରଫଳ ୩,୬୯୦,୦୪୩ ବ. ମା.—ଜନସଂଖ୍ୟା— ୧୦,୩୭୭,୬୮୭—ରାଜଧାନୀ ଅଟାଓ୍ୱା ।

ଡେନମାର୍କ—( Denmark ) ଏହା କୃଷକମାନଙ୍କର ଦେଶ । ପ୍ରାୟ ଶତକଡ଼ା ୯୦ କୃଷକଙ୍କର ନିଜ ଜମି ଅଛି । ଶିକ୍ଷାପ୍ରାପ୍ତ ଏଠାରେ ଅଛୁଆ ନାହିଁ । ରେଲୱେଂ ଜାତୀୟ ସମ୍ପତ୍ତି ଅଟେ । ଲୋକମାନଙ୍କୁ ବୃଦ୍ଧବୟସରେ ଭତ୍ତା ଦିଆଯାଏ । ଲହୁଣୀ ଓ ଅଣ୍ଡା ବ୍ୟବସାୟରେ ଏଠାଲୋକେ ନିଯୁକ୍ତ ପୃଥିବୀରେ ସର୍ବୋତ୍କୃଷ୍ଟ ସ୍ୱାସ୍ଥ୍ୟକର ଦେଶ ମଧ୍ୟରେ ଏ ଦେଶ ପରିଗଣିତ । ଏଠାଲୋକେ ବହୁଧନ ବାନ୍ତି । କ୍ଷେତ୍ରଫଳ ୧୬, ୦୪୨ ବ: ମା:—ଜନସଂଖ୍ୟା—୩, ୬୦୧,୦୦୦ । ରାଜଧାନୀ କୋପେନହେଗେନ । ରାଜା Christian X ୧୯୧୨ ମେ ୧୪ ତାରିଖରେ ସିଂହାସନ ଆରୋହଣ କରିଥିଲେ ।

ଇଜିପ୍ଟ—( Egypt ) ଉତ୍ତର ପୂର୍ବ ଅଫ୍ରିକାରେ ଗୋଟିଏ ପ୍ରାଚୀନ ରାଜ୍ୟ । ସ୍ତୂପ, ପିରାମିଡ଼ ଓ ସମାଧିରେ ଏ ଦେଶ ପୂର୍ଣ୍ଣ । ୧୯୨୨ରେ ବ୍ରିଟେନ ପ୍ରତିନିଧି ସଭାଦ୍ୱାରା ଶାସନକାର୍ଯ୍ୟ ଉଠାଇ ଦେଇ ଏହା Pharoesଙ୍କ ପ୍ରାଚୀନ ରାଜ୍ୟ ହେତୁ ସ୍ୱାଧୀନବୋଲି ସ୍ୱୀକାର କଲେ, ମାତ୍ର ଇଜିପ୍ଟ ସଂରକ୍ଷଣ ବ୍ରିଟିଶ ଶାସନାଧୀନ ରହିଲା । ଏହାର କେତେକାଂଶରେ ନାଇମାନେ ପରମା ସୁନ୍ଦରୀ । ତୁଳା, ଧାନ ଓ ଚିନା ଏହାର ପ୍ରଧାନ ଶସ୍ୟ । ମୁସଲମ ଜଗତରେ Al Azhar ବିଶ୍ୱବିଦ୍ୟାଳୟ ପ୍ରଧାନ ଅଟେ । କ୍ଷେତ୍ରଫଳ ୩୮୩,୦୦୦ ବ: ମା:—ଜନସଂଖ୍ୟା—୧୪, ୧୬୮, ୭୫୬; ରାଜଧାନୀ—କାଇରୋ Kiug Fuad I ୧୯୧୭ ଅକ୍ଟୋବର ୯ ତାରିଖରେ ସୁଲତାନ ହୋଇ ଗାଦିରେ ବସିଲେ ଓ ୧୯୨୨ ମାର୍ଚ୍ଚ ୧୬ ତାରିଖରେ ରାଜା ବୋଲି ଘୋଷିତ ହେଲେ ।

ଫରମୋଜା—( Formosa ) ଏହା ଜାପାନୀମାନଙ୍କର ଉପନିବେଶ । ଏଠାରୁ ପୃଥିବୀକୁ କର୍ପୂର ପ୍ରେରିତ ହୁଏ । କ୍ଷେତ୍ରଫଳ ୧୩, ୯୪୪ ବ: ମା: ଜନସଂଖ୍ୟା ୩,୯୯୪ ୪୦୮ । ରାଜଧାନୀ ତୈହୋକୁ (Taihoku ) ।

ଫିନଲେଣ୍ଡ—ଜଳପ୍ରପାତ, ଦ୍ୱୀପପୁଞ୍ଜ, ହ୍ରଦମାଳା ଓ ବନମାନଙ୍କ ଯୋଗୁ ଏହାର ଦୃଶ୍ୟ ରମଣୀୟ । ନୌକାରେ ଦୋକାନମାନ ଖୋଲାଯାଏ ଓ ଏଠାରେ ସବୁଠୁ ଆଶ୍ଚର୍ଯ୍ୟଜନକ ଫୁଲ ଦେଖିବାକୁ ମିଳେ । ଶିକ୍ଷାପାଇଁ ଲୋକଙ୍କର ବିଶେଷ ଆଗ୍ରହ । ବୃଦ୍ଧମାନେ ମଧ୍ୟ ବୈଦେଶିକ ଅଧ୍ୟୟନ କରନ୍ତି । ପୂର୍ବେ ଏହା ରୁଷିଆର ଅଧିକାରଭୁକ୍ତ ଥିଲା । ୧୯୧୭ ରେ ସ୍ୱାଧୀନତା ଘୋଷଣା କରି ୨ବର୍ଷ ପରେ ସାଧାରଣତନ୍ତ୍ର ରାଜ୍ୟ ହେଲା । କାଠ କାଟିବା ପ୍ରଧାନ ବ୍ୟବସାୟ । ଲୋକମାନେ କାଗଜ ଓ ଦିଆସିଲି କାଠି ତିଆରି କରନ୍ତି । କ୍ଷେତ୍ରଫଳ—୧୪୦,୧୨୨ ବ: ମା:—ଜନସଂଖ୍ୟା ୩,୬୬୭, ୬୬୭-ରାଜଧାନୀ ହେଲସିଙ୍କି ( Helsinki )

ଫ୍ରାନ୍ସ—( France ) ଇଂଲଣ୍ଡରୁ ୨୨ ମାଇଲ ଦୂରରେ ଗୋଟିଏ ସାଧାରଣତନ୍ତ୍ର ଦେଶ । ଫରାସୀମାନେ ସୁନ୍ଦର ପଦାର୍ଥକୁ ଆଦରନ୍ତି ଓ ସେମାନ ପ୍ରସ୍ତୁତ କରିବାର ପ୍ରଣାଳୀ ଜାଣନ୍ତି । ଫ୍ରାନ୍ସ ଖାଦ୍ୟ ଓ ଫ୍ରାନ୍ସ ପୋଷାକ ଜଗଦ୍ବିଖ୍ୟାତ । ଲୋକେ ଚିତ୍ରକର, ସ୍ଥପତି, ଶିଳ୍ପୀ ଓ ଜ୍ଞାନୀ ହେବାପାଇଁ ଫ୍ରାନ୍ସକୁ ଯାଆନ୍ତି । ଶତକଡ଼ା ୨୫ ଜଣ ଗ୍ରାମରେ ବାସକରନ୍ତି । ଚଳଚ୍ଚିତ୍ରରେ ଶିକ୍ଷା ଦିଆଯାଏ ଓ ତାହା ବାଧ୍ୟତାମୂଳକ । ଏ ଦେଶରେ ୧୭ ଟି ବିଶ୍ୱବିଦ୍ୟାଳୟ ଅଛି । ପୃଥିବୀ ମଧ୍ୟରେ ଏହି ଦେଶ ଅତିଥିସତ୍କାର ଭଲରୂପେ ଜାଣେ । ପୀଡ଼ା, ବାର୍ଦ୍ଧକ୍ୟ ଅକ୍ଷମତା ଓ ସନ୍ତାନ ନିମିତ୍ତ ଅଇନତଃ ବୀମା କରିବାକୁ ଲୋକେ ବାଧ୍ୟ । ଫ୍ରାନ୍ସ ବିଦେଶୀଙ୍କୁ ସର୍ବଦା ଆକର୍ଷଣ କରେ । ଏ ଦେଶରେ କଳା ଧଳା ଭେଦ ନାହିଁ । କ୍ଷେତ୍ରଫଳ ୨୧୨, ୮୫୯ ବ: ମା: ଜନସଂଖ୍ୟା ପ୍ରାୟ ୪୧, ୮୩୪, ୯୨୩—ରାଜଧାନୀ ପ୍ୟାରିସ ( Paris )

ଜାରମାନୀ—ଯୁଦ୍ଧ ପୂର୍ବରୁ ଜାର୍ମାନୀ ଜଣେ ସମ୍ରାଟଙ୍କ ଦ୍ୱାରା ଶାସିତ ହେଉଥିଲା । ତାହାଙ୍କୁ କାଇଜର ବୋଲି କହୁଥିଲେ । ଅଜିକାଲି ଜାର୍ମାନୀ ଗୋଟିଏ ସାଧାରଣତନ୍ତ୍ର ଦେଶ ଜର୍ମାନୀର ପ୍ରଥମ ପ୍ରେସିଡ଼େଣ୍ଟଙ୍କ ନାମ ଏଲବାର୍ଟ । ସେ ୧୯୨୫ ମସିହାରେ ମନୋନୀତ ହୋଇଥିଲେ । ଏଠାର ପ୍ରତ୍ୟେକ ଲୋକ ଜୀବନବୀମା ( Life insurance ) କରିବାପାଇଁ ବାଧ୍ୟ । ବୃଦ୍ଧମାନଙ୍କ ନିମ୍ନା ଯେଉଁମାନେ ରୋଗରେ ବା ଅନ୍ୟ କୌଣସି କାରଣରୁ ଅନୁପଯୁକ୍ତ ହୋଇଯାନ୍ତି ସେମାନଙ୍କୁ କିଛି କିଛି ସାହାଯ୍ୟ ମିଳେ । ଜର୍ମାନର ଲୋକମାନଙ୍କର ପଢ଼ିବାପାଇଁ ଖୁବ୍ ଇଚ୍ଛା ଦେଖାଯାଏ । କ୍ଷେତ୍ରଫଳ ୧୮,୨୦୦; ଲୋକସଂଖ୍ୟା ୬,୨୫୧୨,୫୬୫ । ରାଜଧାନୀ ବର୍ଲିନ (Berlin)

ଚେକୋସ୍ଲୋଭାକିଆ (Czechoslovakia) ମଧ୍ୟଇଉରୋପୀୟ ପ୍ରଜାତନ୍ତ୍ର ଦେଶ, ପ୍ରାଚୀନ ଅଷ୍ଟ୍ରିଆ

ରାଜ୍ୟର ବୋହେମିଆ(Bohemia) ମୋରାଭିଆ (Moravia) ଏବଂ ସିଲେସିଆ (Silesia) ର କେତେକାଂଶ ସହିତ ହଙ୍ଗେରିରାଜ୍ୟର ସ୍ଲୋଭାକିଆ (Slovakia) ସବ୍ କାର୍ପେଥିଏନ ରୁଥେନିଆ (Sub-carbathian Ruthenia) ମିଶି ଏହି ରାଜ୍ୟ ଗଠିତ। ଏଠାରେ ପ୍ରାୟ ୧୪ ନିୟୁତ ଲୋକ ମଧ୍ୟରୁ ଚେକୋ ୮ ନିୟୁତ ଓ ସ୍ଲୋଭାକିଆ ୨½ ନିୟୁତ ଏବଂ ରୁଥେନିଆ ବାସୀ ୪୦,୦୦୦। ଏହି ରାଜ୍ୟ କୃଷିପ୍ରୋଧାନ। କୃଷିକାର୍ଯ୍ୟ ଯଥେଷ୍ଟ ଉନ୍ନତ ଏବଂ ପ୍ରଚୁର ଖାଦ୍ୟ ସାମଗ୍ରୀ ଏଠାରୁ ରପ୍ତାନି ହୁଏ। ପଥରକୋଇଲା, ଲୁହା, ତମ୍ବା, ସୁନା ରୁପା-ପ୍ରଚୁର ପରିମାଣରେ ଏ ଖଣିରୁ ମିଳେ। ଶିକ୍ଷା ବାଧ୍ୟତାମୂଳକ। ଚିନି ଓ କାଚ ବାସନ ଏଠାରୁ ବିଦେଶକୁ ପ୍ରେରିତ ହୁଏ। ଦୈହିକ ଉନ୍ନତିପାଇଁ ଲୋକେ ବିଶେଷ ମନୋଯୋଗୀ। କ୍ଷେତ୍ରଫଳ—୫୪,୮୭୭ ବ: ମା:—ଜନସଂଖ୍ୟା ୧୪, ୭୨୬ ୧୫୮। ରାଜଧାନୀ ପ୍ରେଗ୍ (Prague)।

**ଗ୍ରେଟ୍‌ବ୍ରିଟେନ୍**—ସନ ୧୯୩୧ ମସିହାର ଗଣନା ଅନୁସାରେ ଲୋକସଂଖ୍ୟା ୪୪୭୯୦୪୮୫। ଏଠାରେ ରାଜା ଥିଲେ ମଧ୍ୟ ପାର୍ଲିଆମେଣ୍ଟଦ୍ୱାରା ଦେଶ ଶାସିତ ହୁଏ। ରାଜାଙ୍କ ମନ୍ତ୍ରୀର କ୍ଷମତା ନ ଥାଏ, ଶିକ୍ଷା ବାଧ୍ୟତାମୂଳକ। ଏଠାରେ ୧୬ଟି ବିଶ୍ୱବିଦ୍ୟାଳୟ ମଧ୍ୟରୁ ଅକ୍ସଫୋର୍ଡ ଓ କେମ୍ବ୍ରିଜ ପ୍ରଧାନ। ବୃଦ୍ଧ ଓ ନିଷ୍କର୍ମାମାନଙ୍କୁ ଭତ୍ତା ଦିଆଯାଏ। ରାଜଧାନୀ ଲଣ୍ଡନର ଲୋକସଂଖ୍ୟା ୮,୦୦୨,୦୧୮

**ଗ୍ରୀସ**—ଇଉରୋପର ଦକ୍ଷିଣରେ ଗ୍ରୀସ ଗୋଟିଏ ସାଧାରଣତନ୍ତ୍ର ରାଜ୍ୟ। ଇଉରୋପର ଅନ୍ୟାନ୍ୟ ଲୋକମାନେ ଯେତେବେଳେ ଅସଭ୍ୟ ଓ ବର୍ବର ଥିଲେ ଗ୍ରୀସର ଲୋକେ ସେତେବେଳେ ବହି ଲେଖୁଥିଲେ ଓ ସୁନ୍ଦର ସୁନ୍ଦର କୋଠା ତିଆରି କରୁଥିଲେ। କ୍ଷେତ୍ରଫଳ ୫୦,୨୭୧ ବର୍ଗମାଇଲ। ଲୋକସଂଖ୍ୟା ୭,୨୦୪,୬୮୪। ଏହାର ଅମର ରାଜଧାନୀ ଏଥେନ୍‌ସରେ ରମଣୀୟ ମନ୍ଦିରମାନ ଅଛି।

**ଗ୍ରୀନ୍‌ଲାଣ୍ଡ**—ଆଟଲାଣ୍ଟିକ ମହାସାଗରରେ ଗୋଟିଏ ଦ୍ୱୀପ। ଡେନ୍‌ମାର୍କର ଅଧୀନ। ଲୋକସଂଖ୍ୟା ୧୪୫୦୦। ୨୪୮ ଜଣ ଇଉରୋପିୟାନ୍ ଏଠାରେ ରହନ୍ତି। ରାଜଧାନୀ ଗଡ୍‌ଥାବ (Godthab)

**ହଲାଣ୍ଡ**—ଏହା ଗୋଟିଏ ସମୃଦ୍ଧ ସ୍ଥାନ। ଲୋକେ କାଠର ଜୋତା ବ୍ୟବହାର କରନ୍ତି। ମାଛ ମାରିବା ଲୋକମାନଙ୍କର ପ୍ରଧାନ ବ୍ୟବସାୟ। ଜାହାଜ, କାଗଜ, ବସ୍ତ୍ର ଓ ସୁଗନ୍ଧଦ୍ରବ୍ୟ ଏଠାରେ ତିଆରି ହୁଏ। ଆମଷ୍ଟାର୍ଡାମ (Amsterdam) ହୀରା କାଟିବାପାଇଁ ବିଖ୍ୟାତ। କ୍ଷେତ୍ରଫଳ ୧୨୭୬୧ ବର୍ଗମାଇଲ। ଲୋକସଂଖ୍ୟା ୭,୯୩୮,-୧୧୪। ରାଜଧାନୀ ହେଗ (Hague)

**ହେଟି**—ଆମେରିକାର ଗୋଟିଏ ସାଧାରଣ ତନ୍ତ୍ର ଦେଶ। ଏଠାରେ ଅନେକ ଗୁଡ଼ିଏ ସୁନ୍ଦର ବଣ ଓ ମନୋହର ହ୍ରଦ ଅଛି। କ୍ଷେତ୍ରଫଳ ୧୦,୨୦୪ ବର୍ଗମାଇଲ ଓ ଲୋକସଂଖ୍ୟା ୨,୩୦୦,୨୦୦। ରାଜଧାନୀ ପୋର୍ଟ ଓ ପ୍ରିନ୍‌ସ (Port-au-Prince)

**ହେଡ଼ଜାଜ**—ମୁସଲମାନ ଧର୍ମପ୍ରଚାରକ ମହାତ୍ମା ମହମ୍ମଦଙ୍କର ଜନ୍ମସ୍ଥାନ। ମକ୍କା ଓ ମଦିନାର ପବିତ୍ରନଗରୀ ଏହିଠାରେ ଅବସ୍ଥିତ। କ୍ଷେତ୍ରଫଳ ୧୧୨,୦୦୦ ବର୍ଗମାଇଲ ଓ ଲୋକସଂଖ୍ୟା ୯୦୦୦୦୦।

**ହଣ୍ଡୁରାସ**—ମଧ୍ୟଆମେରିକାରେ ସାଧାରଣତନ୍ତ୍ରରାଜ୍ୟ। ଏଠାରେ ଆମ୍ବ, ସପୁରୀ ପଣସ ପ୍ରଚୁର ପରିମାଣରେ ମିଳେ।

**ଆଇସ୍‌ଲାଣ୍ଡ**—ଅଟଲାଣ୍ଟିକ ମହାସାଗରରେ ଗୋଟିଏ ଦ୍ୱୀପ। ଏଠାରେ ଅନେକ ଗୁଡ଼ିଏ ଆଗ୍ନେୟଗିରି ଅଛି। ଏହା ଡେନ୍‌ମାର୍କର ଶାସନାଧୀନ। ପ୍ରାଥମିକ ଶିକ୍ଷା ବାଧ୍ୟତାମୂଳକ; କ୍ଷେତ୍ରଫଳ ୪୦୪୧୭ ବର୍ଗମାଇଲ। ଲୋକସଂଖ୍ୟା ୧୦୦୦୦୦। ରାଜଧାନୀ ରେକ୍‌ଜାଭିକ୍ (Reykjavik)

**ଇଣ୍ଡୋଚାଇନା**—ଏହା ଗୋଟିଏ ଫରାସୀ ରାଜ୍ୟ। ଏଠାରେ ବେଶୀ ପରିମାଣରେ ଧାନ ପୃଥିବୀର ଅନ୍ୟାନ୍ୟ ଅଞ୍ଚଳକୁ ପଠାଯାଏ। କ୍ଷେତ୍ରଫଳ ୩୦୯୧୭୧ ବର୍ଗମାଇଲ ଓ ଲୋକସଂଖ୍ୟା ୨୩୧୨୭୭୪୧। ରାଜଧାନୀ ହେନୋଇ (Hanoi)।

**ଇଟାଲି**—ଏହା ଇଉରୋପ ମହାଦେଶରେ ଗୋଟିଏ ଦେଶ। ଏଠାରେ ଦୈନିକ ଖବରକାଗଜ ଚଳେ। କ୍ଷେତ୍ରଫଳ ୧୧୯୭୪୩ ବର୍ଗମାଇଲ ଓ ଲୋକସଂଖ୍ୟା ୪୨,୧୧୮,୮୧୭। ରାଜଧାନୀ-ରୋମ।

**ଆୟରଲାଣ୍ଡ**—ଏଠାର ଲୋକେ ବଡ଼ ବୁଦ୍ଧିମାନ । ସେମାନେ ବଡ଼ କଥକ । ଡବଲିନର ଲୋକମାନେ ଇଂରେଜମାନଙ୍କଠାରୁ ଭଲ ଇଂରାଜୀ କହନ୍ତି ।

**ଜାପାନ**—ଏହା ଗୋଟିଏ କ୍ଷୁଦ୍ର ଦେଶ ମାତ୍ର ପୃଥିବୀର ବଡ଼ ବଡ଼ ଶକ୍ତିଶାଳୀ ରାଜ୍ୟ ମଧ୍ୟରେ ଏହାର ସ୍ଥାନ ଅଛି । ଏହା ମାନ୍‌ଚୁରିଆରୁ କୋଇଲା ଆଣେ, ତୁଳା ଓ ପଶମ ଅନ୍ୟାନ୍ୟ ଦେଶମାନଙ୍କରୁ କିଣେ ଓ ନିଜର କଳକାରଖାନା ଉପରେ ନିର୍ଭର କରେ । ଜାପାନର ଲୋକଗୁଡ଼ିକ ପରିଶ୍ରମୀ । ଏଠାର ପ୍ରାଥମିକ ଶିକ୍ଷା ବାଧ୍ୟତାମୂଳକ । ଏଠାରେ ୩ ଗୋଟି ରାଜକୀୟ ଓ ୩୬ ଗୋଟି ଅନ୍ୟାନ୍ୟ ଶ୍ରେଣୀର ବିଶ୍ୱବିଦ୍ୟାଳୟ ଅଛି । ଜାପାନ ବହୁତ ବନ୍ଦରର ଅଧିକାରୀ । ଏଠାରେ ରାଜା ଅଛନ୍ତି ଓ ତାଙ୍କର ସବୁ ବିଷୟରେ ଯଥେଷ୍ଟ କ୍ଷମତା ଅଛି । ଏଠାରେ ପ୍ରତ୍ୟେକ ବ୍ୟକ୍ତି ସୈନ୍ୟ ବିଭାଗର କାର୍ଯ୍ୟ କରିବାକୁ ବାଧ୍ୟ । ଏମାନେ ପୃଥିବୀର ଅନ୍ୟାନ୍ୟ ଜାତିମାନଙ୍କ ସଙ୍ଗରେ ପ୍ରତିଯୋଗିତାରେ ସମକକ୍ଷ ହୋଇ ପାରନ୍ତି । ଏଠାରେ ଅନେକ ସୁନ୍ଦର ଉଷ୍ଣ ପ୍ରସ୍ରବଣ, ହ୍ରଦ ଓ ଦ୍ୱୀପ ଦେଖାଯାଏ । ସେଥିପାଇଁ ପୃଥିବୀର ଅନ୍ୟାନ୍ୟ ସ୍ଥାନରୁ ଲୋକେ ଏଠାକୁ ଆସନ୍ତି । ଏହାର କ୍ଷେତ୍ରଫଳ ୧୬୨,୧୨୮ ବର୍ଗମାଇଲ ଓ ଲୋକସଂଖ୍ୟା ୬୯,୨୫୨,୬୨୯ । ରାଜଧାନୀ ଟୋକିଓ ।

**ଜିବ୍ରାଲଟର**—ଏହା ମଧ୍ୟଦେଇ ଲୋକେ ଭୂମଧ୍ୟସାଗରକୁ ଆସନ୍ତି । ଏହା ୧୭୧୩ ଖ୍ରୀଷ୍ଟାବ୍ଦରେ ଇଂରେଜମାନଙ୍କ ଅଧୀନ ହେଲା । କ୍ଷେତ୍ରଫଳ ୨ ବର୍ଗମାଇଲ ଓ ଲୋକସଂଖ୍ୟା ୨୨୦୦୦ ।

**କେନିଆ**—ଅଫ୍ରିକାରେ ଗୋଟିଏ କ୍ଷୁଦ୍ରଦେଶ । ଏଠାରେ ଇଉରୋପୀୟମାନେ ଉଚ୍ଚସ୍ଥାନମାନଙ୍କରେ ବାସ କରନ୍ତି । ଏହାର କ୍ଷେତ୍ରଫଳ ୨୨୪୯୬୦ ବର୍ଗମାଇଲ ଓ ଲୋକସଂଖ୍ୟା ୩୦୫୦୯୪୦ । ରାଜଧାନୀ ନୈରୋବି (Nairobi)

**କୋରିଆ**—ଏହା ଗୋଟିଏ ମନୋହର ଦେଶ । ବହୁଦିନ ପର୍ଯ୍ୟନ୍ତ କୋରିଆ ନିଜର ସ୍ୱାଧୀନତା ରକ୍ଷା କରିଥିଲା ମାତ୍ର ୧୯୧୦ ମସିହାରେ ଏହା ଜାପାନର ଅଧୀନତା ସ୍ୱୀକାର କଲା । କ୍ଷେତ୍ରଫଳ ୮୫୯୦୨ ବର୍ଗମାଇଲ ଓ ଲୋକସଂଖ୍ୟା ୧୯୫୮୯୬୯୯ । ରାଜଧାନୀ ସିଉଲ (Seoul)

**ମାଲୟ**—ଏହା ଏସିଆର ଗୋଟିଏ ଉପଦ୍ୱୀପ । କ୍ଷେତ୍ରଫଳ ୫୧୦୦୦ ବର୍ଗମାଇଲ ଓ ଲୋକସଂଖ୍ୟା ୪୩୨୧୦୦୦ ।

**ମେସୋପଟେମିଆ**—ଯୁଦ୍ଧ ପୂର୍ବରୁ ତୁରସ୍କ ଅଧୀନ ଥିଲା । ବର୍ତ୍ତମାନ ବ୍ରିଟିଶ ସରକାରଙ୍କ ଅଧୀନ । ଏଠାରେ ଜଣେ ରାଜା ଅଛନ୍ତି । ଏହାର କ୍ଷେତ୍ରଫଳ ୧୧୬୦୦୦ ବର୍ଗମାଇଲ ଓ ଲୋକସଂଖ୍ୟା ୨୮୪୯୨୮୨ । ରାଜଧାନୀ ବଗଦାଦ (Baghadad)

**ମାଲଟା**—ଭୂମଧ୍ୟସାଗର ମଧ୍ୟରେ ଗୋଟିଏ ଦ୍ୱୀପ । ଏହା ଆଳୁ ଓ କମଳାଲେମ୍ବୁ ପାଇଁ ବିଖ୍ୟାତ । ଏଠାରେ ଗୋଟିଏ ବିଶ୍ୱବିଦ୍ୟାଳୟ ଅଛି । କ୍ଷେତ୍ରଫଳ ୧୧୭ ବର୍ଗମାଇଲ ଓ ଲୋକସଂଖ୍ୟା ୨୪୧,୬୨୧ । ରାଜଧାନୀ—(Valleta) ଭେଲେଟ୍ଟ ।

**ମେକ୍ସିକୋ**—ଏଠାରେ କେହି ପେଟ୍ରୋଲିୟମ ମିଳେ ଲୋକମାନଙ୍କୁ ଗୁରୁତର ଦଣ୍ଡ ଦିଆଯାଏ ନାହିଁ । ପ୍ରତ୍ୟେକ ବ୍ୟକ୍ତି ସୈନ୍ୟବିଭାଗର କାର୍ଯ୍ୟ କରିବାପାଇଁ ବାଧ୍ୟ । କ୍ଷେତ୍ରଫଳ ୭୬୭,୧୯୮ ବର୍ଗମାଇଲ ଓ ଲୋକସଂଖ୍ୟା ୧୬,୪୦୪,୦୩୦ ।

**ମରକ୍କୋ**—ଏହା ଉତ୍ତର ଆମେରିକାରେ ଗୋଟିଏ ଦେଶ । ଏହାର ଜଳବାୟୁ ସ୍ୱାସ୍ଥ୍ୟକର (Taugier) ସ୍ୱାସ୍ଥ୍ୟକରସ୍ଥାନ କ୍ଷେତ୍ରଫଳ ୨୧୮୫୨୫ ଓ ଲୋକସଂଖ୍ୟା ୫୩୦୦୦୦୦

**ନେପାଳ**—ଏଠା ପ୍ରଧାନ ମନ୍ତ୍ରୀଙ୍କୁ ମହାରାଜା କୁହାଯାଏ ଓ ତାଙ୍କ ହାତରେ ପ୍ରକୃତ କ୍ଷମତା ଅଛି । ମହାରାଜାଧିରାଜ କାଷ୍ଠପୁତ୍ତଳିପରି । ଏହା ହିମାଳୟ ପ୍ରଦେଶରେ ଗୋଟିଏ ସ୍ୱାଧୀନ ଦେଶ । ଏଠାରେ ଅନେକ ଖଣି ଅଛି । କ୍ଷେତ୍ରଫଳ ୫୪୦୦୦ ବର୍ଗମାଇଲ । ଲୋକସଂଖ୍ୟା ୫୬୦୦୦୦୦ । ରାଜଧାନୀ—କାଠମଣ୍ଡୁ ।

**ନିଉଫାଉଣ୍ଡଲାଣ୍ଡ**—ମାଛମାରି ପାଇଁ ଏହା ବିଖ୍ୟାତ । ଏହା ଗୋଟିଏ ଦ୍ୱୀପ । କ୍ଷେତ୍ରଫଳ ୧୬୨୭୦ ବର୍ଗମାଇଲ । ଲୋକସଂଖ୍ୟା ୨୮୧,୫୪୯ । ରାଜଧାନୀ—(St. John's) ।

**ନିଉଜିଲାଣ୍ଡ**—ଏହାର ମୃତ୍ତିକା ଉର୍ବର । ନିଉଜିଲାଣ୍ଡର ଜଳବାୟୁ ପୃଥିବୀ ମଧ୍ୟରେ ସ୍ୱାସ୍ଥ୍ୟକର । ଏହା ୧୮୪୦

ଖ୍ରୀଷ୍ଟାବ୍ଦରେ ବ୍ରିଟିଶ ସାମ୍ରାଜ୍ୟର ଅନ୍ତର୍ଭୁକ୍ତ ହୋଇଥିଲା । ଏଠାକାର ଜାତିମାନଙ୍କୁ ମେଓରୀ କହନ୍ତି । ମେଓରୀସ ଝିଅ ଗୁଡ଼ିକ ଦେଖିବାକୁ ସୁନ୍ଦରୀ । ସେମାନେ ଅପ୍ସରାମାନଙ୍କ ପରି ନୃତ୍ୟ କରି ପାରନ୍ତି । କ୍ଷେତ୍ରଫଳ ୧୦୩,୧୬୬ ବର୍ଗମାଇଲ । ଓ ଲୋକସଂଖ୍ୟା ୧,୪୭୭,୬୨୮ । ରାଜଧାନୀ ଓ୍ୱେଲିଂଟନ ।

ନରଓଏ—ଇଉରୋପର ଉତ୍ତର ଭାଗର ଗୋଟିଏ ମନୋହର ରାଜ୍ୟ । ଏଠାରେ ଅନେକଗୁଡ଼ିଏ ଜଳ ପ୍ରପାତ ଓ ବଣ ଅଛି । ଏ ଦେଶରେ ରାତିରେ ସୂର୍ଯ୍ୟ ଦେଖି-ବାକୁ ମିଳେ । ପ୍ରାୟ ସାରା ଗ୍ରୀଷ୍ମଋତୁରେ ଦିନ ଓ ସାରା ଶୀତଋତୁରେ ରାତ ହୁଏ । କୃଷିକରିବା, ମାଛମାରିବା, ଜାହାଜ ତିଆରି କରିବା ଏଠା ଲୋକଙ୍କର ବ୍ୟବସାୟ । କ୍ଷେତ୍ରଫଳ ୧୪,୫୫୬ ବର୍ଗମାଇଲ । ଲୋକସଂଖ୍ୟା ୨,୮୩୧,୯୫୬ । ରାଜଧାନୀ ( Oslo ) ଓସ୍‌ଲୋ ।

ପେଲେଷ୍ଟାଇନ—ଏହା ଅସିଆ ମହାଦେଶରେ ଗୋଟିଏ ପବିତ୍ର ଦେଶ । କ୍ଷେତ୍ରଫଳ ୯୦୦୦ ବର୍ଗମାଇଲ ଓ ଲୋକସଂଖ୍ୟା ୮୧୬୦୭୪ । ରାଜଧାନୀ ଜେରୁଜାଲାମ ।

ପାନାମା—ଆମେରିକାରେ ଗୋଟିଏ ଦେଶ । ଏଠାରେ କଫି, ନଡ଼ିଆ ଓ କଦଳୀ ଉତ୍ପନ୍ନ ହୁଏ । ପାନାମାରେ ସୈନ୍ୟ ନ ଥାନ୍ତି । କ୍ଷେତ୍ରଫଳ ୩୨୮୯୦ ବର୍ଗମାଇଲ । ଲୋକସଂଖ୍ୟା ୪୬୭୪୫୯ । ରାଜଧାନୀ ପାନାମା ।

ପାରସ୍ୟ—ଏହା ଅସିଆ ମହାଦେଶର ଗୋଟିଏ ପୁରାତନ ରାଜ୍ୟ । ଏଠାକାର ସତରଞ୍ଜି ଖୁବ୍ ଭଲ । ଏଗୁଡ଼ିକୁ ଲୋକେ ହାତରେ ବୁଣନ୍ତି । ପାରସ୍ୟ ସ୍ୱଦେଶୀ ଜିନିଷ ବହୁ ପରିମାଣରେ ଉତ୍ପନ୍ନ କରେ । କ୍ଷେତ୍ରଫଳ ୬୨୮,୦୦୦ ବ.ମା. ରାଜଧାନୀ ତେହେରାନ ( Tehran )

ପେରୁ—ଆମେରିକାରେ ଗୋଟିଏ ସ୍ୱାଧୀନ ରାଜ୍ୟ । ପ୍ରତ୍ୟେକ ପ୍ରକାର ଦୃଶ୍ୟ ଓ ଜଳବାୟୁ ଏଠାରେ ଦେଖାଯାଏ । ଅନେକ ପ୍ରକାର ଖଣି ଅଛି । କ୍ଷେତ୍ରଫଳ ୩୨୮,୦୦୦ ବର୍ଗ-ମାଇଲ ଓ ଲୋକସଂଖ୍ୟା ୫,୫୫୦,୦୦୦ । ରାଜଧାନୀ-ଲିମା ।

ପର୍ତ୍ତୁଗାଲ—ଇଉରୋପରେ ଗୋଟିଏ ଦେଶ । ପ୍ରାୟ ଏକତୃତୀୟାଂଶ ଜମିରେ କୃଷି କରାଯାଏ । ଅନେକ ପ୍ରକାର ଫଳ ଉତ୍ପନ୍ନ ହୁଏ । ଏଠାରେ ବର୍ତ୍ତମାନ ସୁଦ୍ଧା ଅନେକ ଲୋକ ଅଶିକ୍ଷିତ କିନ୍ତୁ ପ୍ରାୟ ପ୍ରତ୍ୟେକ ଗୋଟିଏ ଗୋଟିଏ ଧର୍ମର କଟ୍ଟର ଭକ୍ତ । ରାଜଧାନୀ ଲିସବନ । କ୍ଷେତ୍ରଫଳ ୩୪,୫୦୦ ବ.ମା. ଓ ଜନସଂଖ୍ୟା ୬,୧୯୦,୦୦୦

ପୋଲାଣ୍ଡ—( Poland ) ଏହା ଇଉରୋପରେ ଗୋଟିଏ ସାଧାରଣତନ୍ତ୍ର ଦେଶ । ୧୯୧୮ ରେ ଯେତେବେଳେ ଏହା ରିପବ୍‌ଲିକ୍ ହେଲା ଲୋକେ ଜଣେ ପିଅନୋ ବାଦ୍ୟ-କାରଙ୍କୁ ପ୍ରେସିଡେଣ୍ଟ ନିର୍ବାଚନ କଲେ । ଏ ଦେଶରେ ସମସ୍ତ ବୃଦ୍ଧ ଓ ଅକର୍ମଣ୍ୟଙ୍କ ପାଇଁ ଆଶ୍ରମ, ବାଳକ ବାଳିକା-ମାନଙ୍କ ପାଇଁ creches ବା ମାତା କାର୍ଯ୍ୟ କରୁଥିବା ସମୟରେ ପିଲାମାନଙ୍କର ରହିବାର ସ୍ଥାନ ଓ ଦରିଦ୍ରଙ୍କ ପାଇଁ ଭୋଜନାଳୟ ଅଛି । ସାତବର୍ଷରେ ଥରେ ପୋଲମାନେ ପ୍ରେସିଡେଣ୍ଟ ନିର୍ବାଚନ କରନ୍ତି । ତାଙ୍କର କ୍ଷମତା ଯଥେଷ୍ଟ । ପାର୍ଲିଅମେଣ୍ଟ ବସି ନ ଥିଲେ ସୁଦ୍ଧା ସେ ଭବିଷ୍ୟତ ଅନୁମୋଦନ ଆଶାରେ ଆଇନ ପ୍ରଣୟନ କରି ପାରନ୍ତି । କ୍ଷେତ୍ରଫଳ ୧୫୦,୦୦୦ ବର୍ଗମାଇଲ । ଜନସଂଖ୍ୟା ୩୨,୧୩୨,୯୩୬ । ରାଜଧାନୀ—ୱାରସ (Warsaw) ।

ଋଷିଆ—(U. S. S. R,)—୧୯୧୭ ଖ୍ରୀଷ୍ଟାବ୍ଦରେ ଏହି ଦେଶରେ ଭୟଙ୍କର ରକ୍ତବିପ୍ଳବ ସଂଘଟିତ ହୋଇ ଦେଶର ରାଜାଙ୍କୁ ମୂଳପୋଛ କଲା । ଦେଶର ପ୍ରତ୍ୟେକ କୃଷକ ଓ ମୂଲିଆ ରାଜଶକ୍ତି ହରଣ କଲେ । ନିୟମ ହୋଇଗଲା ଯେ ଦେଶର ପ୍ରତ୍ୟେକ ଲୋକ କାର୍ଯ୍ୟ କରିବାକୁ ବାଧ୍ୟ । ଯେ କାର୍ଯ୍ୟ କରିବ ତାହାର କେବଳ ରାଜ୍ୟଶାସନରେ ହାତ ରହିବ । ସେହି ଦିନଠାରୁ ଏହି ନୂତନ ପ୍ରକାର ରାଜ୍ୟଶାସନ ଚାଲି ଆସୁଅଛି ଏବଂ ନୂତନ ନୂତନ ପ୍ରଣାଳୀ ମଧ୍ୟ ଅବିଷ୍କୃତ ହେଉ ଅଛି । ବ୍ୟକ୍ତିଗତ ଧନ ସମ୍ପଦ କାହାର ନାହିଁ । ସମସ୍ତ ଧନ ସମ୍ପଦ, ବନଭୂମି, ଖନିଜ ପଦାର୍ଥ ସମସ୍ତ ଦେଶବାସୀଙ୍କର । ଜନ୍ମ-ନିରୋଧ ପ୍ରଥା ଆଇନରେ ଅଛି । ଏ ଦେଶରେ ବନ୍ଦୀ ଶାଳାକୁ ଲୋକେ 'ସଂଶୋଧନ-ଗୃହ' ବୋଲି କହନ୍ତି । ଏହି ସଂଶୋଧନ-ଗୃହମାନଙ୍କରେ ମଧ୍ୟ ବନ୍ଦୀମାନେ ସ୍ୱାୟତ୍ତଶାସନ ପାଇଥାନ୍ତି । ସେଠାରେ ଥିଏଟର, ସିନେମା ରେଡ଼ିଓ ପ୍ରଭୃତି ମଧ୍ୟ ଥାଏ । ଏ ଦେଶରୁ ଛଅହଜାର ସମ୍ବାଦପତ୍ରିକା ବାହାରେ । ଏହି ରାଜ୍ୟରେ କୌଣସି ଗୋଟିଏ ନିର୍ଦ୍ଦିଷ୍ଟ ଏକଜାତୀ ଜାତି

ବାସ କରନ୍ତି ନାହିଁ । କାର୍ଯ୍ୟ କଲେ ଯେ କେହି ଏ ଦେଶର ବାସିନ୍ଦା ହୋଇ ପାରନ୍ତି । ଏହି ଯୁକ୍ତରାଷ୍ଟ୍ରର ଭିତରେ ଅଧିକରେ ବୟାଅଶୀ (୮୨) ଗୋଟି ଭାଷା ବ୍ୟବହୃତ ହୁଏ । ସାତଗୋଟି ସାଧାରଣତନ୍ତ୍ର ଦ୍ୱାରା ଏହି ଯୁକ୍ତ-ରାଷ୍ଟ୍ର ଗଠିତ; ଯଥା :—

(୧) ରୁସିଅନ୍ ସୋସିଏଲିଷ୍ଟ ଫେଡେ଼ରଲ ସୋଭିଅଟ୍ ରିପବ୍ଲିକ୍—

(୨) ଅନ୍‌ସ୍‌ଇନ୍—

(୩) ହ୍ୱାଇଟ ରୁସିଅ—

(୪) ଟ୍ରାନ୍‌ସ କାକେସିଅ—

(୫) ଉଜ୍‌ବେକ୍—

(୬) ଟାର୍କମିନିସ୍ତାନ୍—

(୭) ଟାଜିକିସ୍ତାନ୍—

ଟ୍ରାନ୍ସକକେସିଅ ପୁଣି ତିନି ଭାଗରେ ବିଭକ୍ତ । ଯଥା— (୧) ଅଜରବାଇଜନ୍ (୨) ଆରମେନିଅନ ଓ (୩) ଜର୍ଜିଅନ୍ । ଶେଷୋକ୍ତ (ଜର୍ଜିଅନ୍) ସାଧାରଣତନ୍ତ୍ରର ସ୍ତ୍ରୀମାନେ ସୌନ୍ଦର୍ଯ୍ୟ ସକାଶେ ଜଗତ୍ ବିଖ୍ୟାତ ।

ଏହି ଯୁକ୍ତ-ରାଷ୍ଟ୍ର ସୋଭିଅଟ୍‌ମାନଙ୍କର କଂଗ୍ରେସ ଦ୍ୱାରା ଶାସିତ ହୁଏ । ଏହାର ଅନୁପସ୍ଥିତିରେ କେନ୍ଦ୍ରିକ କାର୍ଯ୍ୟକାରିଣୀ ସମିତି ରାଜ୍ୟଶାସନ କାର୍ଯ୍ୟ ଚଳାଏ । ଏହି ସଭାକୁ ସିକ୍ (Tsik) କହନ୍ତି । ଏହି ସିକ୍ (Tsik) ବର୍ଷକ ମଧ୍ୟରେ ତିନିଥର ବସେ । ଏହି ସଭାର ଅନୁପସ୍ଥିତିରେ, ସେହି ସଭାର ଜ ୨୧ ଣ ସଭାପତି ରାଜ୍ୟ ଶାସନକାର୍ଯ୍ୟ ଚଳାନ୍ତି । କ୍ଷେତ୍ରଫଳ ବୟାଅଶୀ ଲକ୍ଷ ଏକଷଠିଏ ହଜାର ଛଅଶତ ତେସ୍ତରି ବର୍ଗମାଇଲ । ଲୋକସଂଖ୍ୟା ଷୋଳ କୋଟି ଏକୋଇଶି ଲକ୍ଷ ତେୟାଳିଶି ହଜାର । ଶତକଡ଼ା ୮୦ ଜଣ ଲୋକ ମଫସଲରେ ବାସ କରନ୍ତି । ପୂର୍ବେ ପେଟ୍ରୋଗ୍ରାର୍ଡ ରାଜଧାନୀ ଥିଲା ବର୍ତ୍ତମାନ ମସ୍କୋ ହୋଇଅଛି ।

**ଶ୍ୟାମ**—( Siam ) ଏହା ବର୍ମା ଓ ଫ୍ରେଞ୍ଚ ଇଣ୍ଡୋଚାଇନା ଦୁଇ ବିରୋଧୀ ଦେଶ ମଧ୍ୟସ୍ଥିତ ନିରପେକ୍ଷ ରାଜ୍ୟ । କେତେକ ବର୍ଷ ତଳେ ଶ୍ୟାମର ରାଜା ନିଜ ଇଚ୍ଛାନୁସାରେ ରାଜକାର୍ଯ୍ୟ ନିର୍ବାହ କରୁଥିଲେ । ତାଙ୍କର କ୍ଷମତା ନିରଙ୍କୁଶ ଥିଲା । ୧୯୩୨ ଜୁନ ତା ୨୪ ରିଖରେ ଏଠାରେ ରାଷ୍ଟ୍ରବିପ୍ଳବ ଘଟିଲା କିନ୍ତୁ ବିନ୍ଦୁମାତ୍ର ରକ୍ତପାତ ହେଲା ନାହିଁ । ରାଜକୁମାର ଦୁହିଙ୍କୁ ବିପ୍ଳବକାରୀମାନେ ପ୍ରତିଭୂ ସ୍ୱରୂପ ଦାୟୀ କଲେ ମାତ୍ର ପୀଡ଼ା ଦେଲେ ନାହିଁ । ରାଜା ସେତେବେଳେ ରାଜଧାନୀରୁ ଦୂରରେ ଥିଲେ । ବିପ୍ଳବ ସଂବାଦ ପ୍ରାପ୍ତି ମାତ୍ରକେ ବେତାରରେ ଜଣାଇଦେଲେ ଯେ ଲୋକଙ୍କର ଦାବି ତାଙ୍କୁ ଦେବାକୁ ତାଙ୍କର ଏକାନ୍ତ ଇଚ୍ଛା । ନଅରକୁ ଫେରିଆସି ସେ ବିପ୍ଳବକାରୀମାନଙ୍କୁ ଘେନି ଏକ ସଭା କଲେ । ସେହି ସଭାରେ ରାଜା ଠିଆହୋଇ କହିଲେ "ମୁଁ ପ୍ରଜାମାନଙ୍କ ପକ୍ଷରେ ଦଣ୍ଡାୟମାନ ହେଲି ।" ଦୁଇଦିନ ପରେ ରାଜା ବ୍ୟବସ୍ଥା ସଙ୍ଗତ ରାଜକତା (consti-tutional monarchy ) ଘୋଷଣା କଲେ । ରାଜା ରାଜ୍ୟର ପ୍ରଧାନ ରହିଲେ । ମାତ୍ର ତାଙ୍କର କ୍ଷମତା ବହୁତ କମିଗଲା । ଲୋକ ସାଧାରଣତଃ ୧୫ ଜଣ ପ୍ରତିନିଧି ହାତରେ ରାଜ୍ୟପରିଚାଳନର ଭାର ରହିଲା । ଏ ଦେଶରେ ବହୁତ ବଣ ଅଛି । ଏଠାରୁ ଟିକକାଠ ରପ୍ତାନି ହୁଏ । ଏଠାଲୋକେ ବୌଦ୍ଧଧର୍ମାବଲମ୍ବୀ ଏ ଦେଶରେ ୧୬୦୦ରୁ ଅଧିକ ମନ୍ଦିରଅଛି । କ୍ଷେତ୍ରଫଳ ୧୯୫,୦୦୦ ବର୍ଗମାଇଲ । ଜନସଂଖ୍ୟା—୧୧,୫୦୬,୨୦୭ ଓ ରାଜଧାନୀ ବଙ୍ଗକକ୍ (Bongkak) ।

**ସାଙ୍ଘାଇ**—( Shanghai ) ଚୀନରେ ଗୋଟିଏ ଅନ୍ତର୍ଜାତିକ ଉପନିବେଶ । ଏଠାରେ ୧୪ଟି ଶକ୍ତିର ସମାନ ଅଧିକାର । ମୁନିସପାଲ କାଉନ୍‌ସିଲ ବା ମନ୍ତ୍ରଣା ସଭାଦ୍ୱାରା ଶାସନକାର୍ଯ୍ୟ ଚଳେ । ଏଠାରେ ୫୦୦୦୦ ପୋଲିସ, ଗୋରା, ଶିଖ ଓ ଜାପାନୀ ସେନା ଅଛନ୍ତି । ବିଦେଶୀ ୫୦,୦୦୦ ମଧ୍ୟରୁ ୨୦,୦୦୦ ଜାପାନୀ, ୮୦୦୦ ବ୍ରିଟିଶ ଓ ଏକଲକ୍ଷରୁ ଅଧିକ ଚୀନବାସୀ ଅଛନ୍ତି ।

**ସ୍ପେନ୍**—ଏଠାରେ ପ୍ରାଚ୍ୟକ ସ୍ଥାପତ୍ୟର ଗୋଟିଏ ଲେଖାଏଁ ବଗିଚା ଅଛି । ଏହି ଦେଶର ମୃତ୍ତିକା ଖୁବ୍ ଉର୍ବର । ସବୁଠାରେ ଅଙ୍ଗୁର ପ୍ରଚୁର ପରିମାଣରେ ଜନ୍ମେ । ଲୋକେ ନାଚକୁ ଭାରି ଭଲ ପାଆନ୍ତି । ସେମାନେ ପ୍ରତ୍ୟେକ ସ୍ଥାନରେ ନାଚନ୍ତି । ଏହାର କ୍ଷେତ୍ରଫଳ ୧୯୬,୭୦୦ ବର୍ଗମାଇଲ ଓ ଲୋକସଂଖ୍ୟା ୨୨,୧୫୦,୧୫୨ । ରାଜଧାନୀ—ମାଦ୍ରିଦ୍

**ସୁଇଡେ଼ନ**—ଇଉରୋପ ମହାଦେଶର ଉତ୍ତର ପ୍ରାନ୍ତରେ ଅବସ୍ଥିତ । ଏଠାରେ ଅନେକ ଗୁଡ଼ିଏ ନଦୀ ଓ ହ୍ରଦ ଦେଖାଯାଏ । ପ୍ରାୟ ଶତକଡ଼ା ୪୦ ଜଣ ଲୋକ କୃଷି କରନ୍ତି । ଏଠାରେ ଅନେକ ଗୁଡ଼ିଏ ବଣ ଓ ବଡ଼ ବଡ଼ ଖଣି ଅଛି ।

ପ୍ରାଥମିକ ଶିକ୍ଷା ବାଧ୍ୟତାମୂଳକ । କ୍ଷେତ୍ରଫଳ ୧୭୩,୩୬୩ ବର୍ଗମାଇଲ, ଲୋକସଂଖ୍ୟା ୬,୦୨୨,୪୯୨ । ରାଜଧାନୀ ଷ୍ଟକହଲମ

**ସୁଇଜରଲାଣ୍ଡ**—ଏଠାରେ ଅନେକ ସୁନ୍ଦର ଖେଳ ପଡ଼ିଆ, ଜଳପ୍ରପାତ, ମନୋହର ହ୍ରଦ ଅଛି । ପୃଥିବୀର ସବୁ ଅଞ୍ଚଳ ଲୋକ ଏଠାକୁ ଆସନ୍ତି । ଘଡ଼ିପାଇଁ ଏହା ବିଖ୍ୟାତ କ୍ଷେତ୍ରଫଳ ୧୫,୯୪୦ ବର୍ଗମାଇଲ ଓ ଲୋକସଂଖ୍ୟା ୩,୮୮୦,-୪୦୦ । ରାଜଧାନୀ—ବର୍ଣ୍ଣ ( Berne )

**ସିରିଆ**—ପୂର୍ବେ ତୁର୍କି ଅଧୀନରେ ଥିଲା । ଗତ ମହାଯୁଦ୍ଧ ପରେ ଫ୍ରାନ୍ସକୁ ରାଜ୍ୟଶାସନ ପାଇଁ ଜାତିସଂଘ କର୍ତ୍ତୃକ ପ୍ରଦତ୍ତ ହୋଇଅଛି । ସନ ୧୯୩୦ ମସିହାରୁ ଫ୍ରାନ୍ସ ଏଥିରେ ସାଧାରଣ ତନ୍ତ୍ର ଶାସନ ( republic ) ଚଳାଇଅଛି । ପ୍ରତି ୪ ବର୍ଷରେ ଥରେ ପାର୍ଲିଆମେଣ୍ଟ ବସେ ଓ ଏହାର ପ୍ରେସିଡେଣ୍ଟ ଜଣେ ମୁସଲମାନ ନିର୍ବାଚିତ ହୁଅନ୍ତି । ଏହା ଅତିବ ଦେଶରେ ଅବସ୍ଥିତ । କ୍ଷେତ୍ରଫଳ ୬୦ ହଜାର ବର୍ଗ ମାଇଲ । ଲୋକସଂଖ୍ୟା ୩୦ ଲକ୍ଷ—ରାଜଧାନୀ ଡାମାସ୍କସ୍ ।

**ଟେଙ୍ଗାନିକା**—ଅଫ୍ରିକାରେ—କ୍ଷେତ୍ରଫଳ ୩୬୫ ହଜାର ବର୍ଗମାଇଲ । ସ୍ଥାନୀୟ ଅଧିବାସୀଙ୍କ ସଂଖ୍ୟା ୪୮ ଲକ୍ଷ ୩୧ ହଜାର ୨୨୪ । ଗୋରା ଲୋକଙ୍କ ସଂଖ୍ୟା ୭୩୭୦ ଏହା ବ୍ୟତୀତ ୧୦ ହଜାର ଭାରତୀୟ ଓ ୪ ହଜାର ଅରବଦେଶୀୟ ଲୋକ ଅଛନ୍ତି । ବହୁତ ବହୁତ ଜଙ୍ଗଲ ଅଛି । ଟିଣ ଓ ସୁନା ମିଳେ । ଡ଼େରସଲେମ୍ ଏହାର ରାଜଧାନୀ । ଜର୍ମାନମାନଙ୍କ ଦ୍ୱାରା ରାଜଧାନୀ ନିର୍ମିତ । ଏଠାରୁ ଟେଙ୍ଗାନିକା ପର୍ଯ୍ୟନ୍ତ ରେଲପଥ ଯାଇଛି ।

**ତିବ୍ବତ**—ହିମାଳୟର ଉତ୍ତରରେ ବହୁତ ଉଚ୍ଚରେ ଅବସ୍ଥିତ । ଏଥିରେ ଅସଂଖ୍ୟ ମଠ ବିଦ୍ୟମାନ । ଏଠାରେ ପୁରୁଷ ସଂଖ୍ୟା ସ୍ତ୍ରୀ ସଂଖ୍ୟାନୁପାତରେ ଅଧିକ । ଯେ କୌଣସି ସ୍ତ୍ରୀଲୋକ ଏକରୁ ଅଧିକ ସ୍ୱାମୀ ଗ୍ରହଣ କରିପାରେ । ଏହା ଭାରତକୁ ପଶମବୋରକ୍ ( boroq ) ଓ କସ୍ତୁରୀ ( musk ) ରପ୍ତାନି କରେ । କ୍ଷେତ୍ରଫଳ ୬୫୦ ହଜାର ବର୍ଗମାଇଲ । ଲୋକସଂଖ୍ୟା ୩୦ ଲକ୍ଷ, ରାଜଧାନୀ ଲାସା ।

**ଟୋଗୋଲେଣ୍ଡ**—( Togoland ) ପୂର୍ବେ ଗୋଟିଏ ଜର୍ମାନ ଅଧିକୃତ ରାଜ୍ୟ ଥିଲା; ବର୍ତ୍ତମାନ ଦୁଇଭାଗରେ ବିଭକ୍ତ; ଏକଭାଗ ଇଂରାଜମାନଙ୍କର ଓ ଅପରଟି ଫ୍ରେଞ୍ଚମାନଙ୍କର ଶାସନାଧୀନ । କ୍ଷେତ୍ରଫଳ ୪୩ ହଜାର ୪୦ ବର୍ଗମାଇଲ, ଲୋକସଂଖ୍ୟା ୨ ଲକ୍ଷ ୭୫ ହଜାର ୯୨୫ । ଲୋମ୍ (Lome) ପ୍ରଞ୍ଚଟୋଗୋଲଣ୍ଡର ରାଜଧାନୀ ।

**ତୁର୍କିସ୍ଥାନ**—( Turkey ) ୧୯୨୦ ମସିହା ପର୍ଯ୍ୟନ୍ତ ଏ ଦେଶ ଇଉରୋପର ଦୁର୍ବଳତମ ( Sickman ) ଦେଶ ବୋଲି କଥିତ ହେଉଥିଲା କିନ୍ତୁ ବର୍ତ୍ତମାନ ତାହାର ସମସ୍ତ କୁସଂସ୍କାର ବର୍ଜନ କରି ଗୋଟିଏ ସଭ୍ୟତମ ଦେଶ ବୋଲି କଥିତ ହେଉଅଛି । ୧୯୨୩ ମସିହାର ଅକ୍ଟୋବର ତା ୨୯ ରିଖରେ ଏହା ଗୋଟିଏ ସାଧାରଣ ତନ୍ତ୍ର ଦେଶ ବୋଲି ଘୋଷିତ ହେଲା । ମୁସ୍ତାଫା କେମାଲପାସା ଏହା ( President ) ନିର୍ବାଚିତ ହେଲେ । ଏହାଙ୍କୁ ମଧ୍ୟ ଏ ଦେଶରେ ( George Washington ) କହନ୍ତି । ତୁର୍କିମାନଙ୍କର ନବଜୀବନ ଏହାଙ୍କ ପ୍ରଚେଷ୍ଟାରେ ଫେରି ଆସିଅଛି । ୧୯୨୪ ସାଲ ମାର୍ଚ୍ଚ ତା ୩ ରିଖରେ ଖିଲାଫତ୍ ଶାସନ ଉଠାଇ ଦିଆଗଲା ଏବଂ ରାଜବଂଶର ସମସ୍ତଙ୍କୁ ନିର୍ବାସିତ କରାଯାଇଥିଲା । ଧର୍ମ ଯାଜକମଣ୍ଡଳୀ ଉଠାଇ ଦିଆଗଲା ଓ ତେକେ 'ଟେକା' ( Tekas ) ବା ମଠମାନଙ୍କୁ ଧ୍ୱଂସ କରାଗଲା । ଅରବୀୟ ଅକ୍ଷର ଉଠାଇ ଦିଆଯାଇ ଲାଟିନ୍ ଅକ୍ଷର ପ୍ରଚଳିତ କରାଗଲା । ତୁର୍କିମାନେ ବର୍ତ୍ତମାନ ଆଉ ପୂର୍ବପ୍ରଚଳିତ (Fez) ଫେଜ୍ ଟୋପି ବ୍ୟବହାର କରୁ ନାହାନ୍ତି, ହେଟ୍ ବ୍ୟବହାର କରୁଛନ୍ତି । ବହୁ ବିବାହ ( Polygamy ) ନିଷିଦ୍ଧ ହୋଇଅଛି ଏବଂ ସ୍ତ୍ରୀମାନଙ୍କୁ ସ୍ୱାଧୀନତା ଦିଆଯାଇଅଛି । ନାରୀମାନେ ବର୍ତ୍ତମାନ ମୁନିସିପାଲିଟିରେ ଭୋଟ ଦେଇ ପାରୁଛନ୍ତି ଏବଂ ସେକ୍ରେଟେରିଏଟ୍‌ରେ କିରାଣି ଏବଂ ସେକ୍ରେଟେରୀ ନିଯୁକ୍ତ ହୋଇଯାଉଛନ୍ତି । କେତେକ ମଧ୍ୟ ବାରିଷ୍ଟର ହୋଇପାରିଛନ୍ତି । ତମ୍ବା, ରୂପା, ଦସ୍ତା, କୋଇଲା, ଏବଂ ସାମାନ୍ୟ ଲୁହା ସମ୍ପଦରେ ପୂର୍ଣ୍ଣ । ଚର୍ମର ଏବଂ ଧୂଆଁପତ୍ର ପାଇଁ ତୁର୍କି ପ୍ରସିଦ୍ଧ—ସୁନ୍ଦର ଚର୍ମ୍ମର ଓ ଧୂଆଁପତ୍ର ଜଗତ୍ରେ ବିଖ୍ୟାତ । କ୍ଷେତ୍ରଫଳ—୪୧୦ ହଜାର ବର୍ଗମାଇଲ । ଲୋକସଂଖ୍ୟା ୧୩୬ ଲକ୍ଷ ୬୦ ହଜାର ୨୭୨ । ଅଙ୍ଗୋରା ଏହାର ରାଜଧାନୀ । ଗାଜି ମୁସ୍ତାଫା କେମାଲପାଶା ଏହାର ପ୍ରେସିଡେଣ୍ଟ ।

**ଉରୁଗ୍ୱେ** ( Uruguay )— ଦକ୍ଷିଣ ଆମେରିକାର ରିପବ୍ଲିକ । ଏହା କୃଷି ଓ ପଶୁପାଳନ ପ୍ରଧାନ ଦେଶ । ୧୯୦୭ ଖ୍ରୀଷ୍ଟାବ୍ଦରେ ମୃତ୍ୟୁଦଣ୍ଡ ରହିତ ହେଲା । ସବୁ ଗୃହ-ବର୍ଷରେ ପାର୍ଲିଆମେଣ୍ଟ ଦ୍ୱାରା ଥରେ ପ୍ରେସିଡେଣ୍ଟ ନିର୍ବାଚିତ ହୁଅନ୍ତି । କ୍ଷେତ୍ରଫଳ ୭୨ ହଜାର ୧୮୦ ବର୍ଗ ମାଇଲ, ଲୋକସଂଖ୍ୟା ୧୯ ଲକ୍ଷ ୮ ହଜାର ୮୬ । ରାଜଧାନୀ ମଣ୍ଟିଭିଡ଼ିଓ ।

**ଯୁକ୍ତରାଜ୍ୟ** ( U. S. A. )— ପୃଥିବୀର ଅତି କ୍ଷମତାଶାଳୀ ଦେଶ । ଇଂରାଜୀ ଲୋକମାନଙ୍କର ମାତୃଭାଷା । ଆମେରିକାନମାନେ ଅତୀବ ଧନୀ ଏବଂ ଚତୁର ଲୋକ । ୪୮ ଗୋଟି ଷ୍ଟେଟ୍ ( ରାଜ୍ୟ ) ଗଠିତ ଗୋଟିଏ ଯୁକ୍ତରାଷ୍ଟ୍ରସଂଘ ବିଶିଷ୍ଟ ସାଧାରଣ ତନ୍ତ୍ର ଦେଶ ବା ରାଜ୍ୟ । ତିନିଗୋଟି ବିଭିନ୍ନ ବିଭାଗରେ ଶାସନତନ୍ତ୍ର ବିଭକ୍ତ— ୧-କାର୍ଯ୍ୟକାରୀ ବିଭାଗ ( Executive ) ୨-ଆଇନ ପ୍ରଣୟନକାରୀ ବିଭାଗ ( Legislative ) ୩-ବିଚାର ବିଭାଗ ( Judicial ) କାର୍ଯ୍ୟକାରୀ ବିଭାଗ ପ୍ରେସିଡେଣ୍ଟଙ୍କ ଉପରେ ନ୍ୟସ୍ତ ଥାଏ। ପ୍ରତି ୪ ବର୍ଷରେ ଏହି ପ୍ରେସିଡେଣ୍ଟ ନିର୍ବାଚିତ ହୁଅନ୍ତି । ଆଇନ ପ୍ରଣୟନ କରିବା କ୍ଷମତା କଂଗ୍ରେସ ( Congress ) ଉପରେ ନ୍ୟସ୍ତ । ଆମେରିକା ଖୁବ୍ ଧନୀ ହୋଇଥିଲେ ମଧ୍ୟ ସେ କର୍ମଚାରୀମାନଙ୍କୁ ମୋଟା ଦରମା ଦିଏନାହିଁ । ପ୍ରେସିଡେଣ୍ଟ ବାର୍ଷିକ ୭୫ ହଜାର ଡୋଲାର ଦରମା ପାନ୍ତି—ଏହା ଅବଶ୍ୟ ଭାରତର ଭାଇସ୍‌ରୟଙ୍କ ଦରମାଠାରୁ କମ୍ । ନଗରମାନଙ୍କରେ ସେମାନଙ୍କର ପ୍ରଗାଢ଼ ବିଶ୍ୱାସ । ବଡ଼ ବଡ଼ ରାସ୍ତାମାନଙ୍କରେ ଲୋକ ଗମନାଗମନ ଏବଂ ଯାନବାହନ ଚଳାଚଳ ନିୟନ୍ତ୍ରଣପାଇଁ କନେଷ୍ଟବଳ ପରିବର୍ତ୍ତେ ସ୍ୱେଚ୍ଛାସଙ୍କେତର ( automatic signs ) ପ୍ରଚଳନ ଅଛି । ହିସାବରୁ ଜଣାଯାଇଛି ପ୍ରତ୍ୟେକ ଲୋକ ହାରାହାରି ବର୍ଷରେ ଏକହଜାର ସିଗାରେଟ୍ ସେବନ କରେ । ଏହି ରାଜ୍ୟ ଅଲାସ୍କାକୁ ମିଶାଇ କ୍ଷେତ୍ରଫଳରେ ୬୧୦ ହଜାର ୩୦୭ ବର୍ଗମାଇଲ । ଲୋକସଂଖ୍ୟା ୧୪ କୋଟି ୨ ଲକ୍ଷ ୩୩ ହଜାର ୩୮୧ । ଅଲାସ୍କା, ଗୁଆମ୍ ( Guam ), ହାଉଆଇ, ପେନାମା କେନାଲ ଜୋନ୍, ଫିଲିପାଇନ୍ ଦ୍ୱୀପପୁଞ୍ଜ, ପୋର୍ଟୋରିକୋ, ସାମୁଆ ଓ ଭର୍ଜିନ ଦ୍ୱୀପପୁଞ୍ଜ ଏହାର ଅଧିକୃତ । ୱାସିଙ୍ଗଟନ ଏହାର ରାଜଧାନୀ । ଏକ ଲକ୍ଷରୁ ଅଧିକ ଲୋକ ବାସ କରୁଥିବା ୯୩ଟି ସହର ଏଥିରେ ଅଛି । ନିଉୟର୍କ ସର୍ବାପେକ୍ଷା ବୃହତ୍; ଲୋକସଂଖ୍ୟା ୭୧ ଲକ୍ଷ ୩୦ ହଜାର ୪୩୨ । ସାର ଗ୍ରେଟ୍‌ବ୍ରିଟେନରୁ ସେଠିକି ଟେଲିଫୋନ୍ ଯନ୍ତ୍ର ଅବସ୍ଥିତ ଏକା ନିଉୟର୍କରେ ଯେତିକି ବିଦ୍ୟମାନ ।

**ଭେନେଜୁଏଲା** (Venezuela)—ଏହା ମଧ୍ୟ ଗୋଟିଏ ଫେଡେରଲ ସାଧାରଣତନ୍ତ୍ର ଦେଶ । ଏହା କୋଡ଼ିଏ ଗୋଟି ଷ୍ଟେଟ୍‌ଦ୍ୱାରା ଗଠିତ । ଦକ୍ଷିଣ ଆମେରିକାରେ ଅବସ୍ଥିତ । ରାଜ୍ୟଶାସନ ପାଇଁ ଦୁଇଗୋଟି ସଭା ଅଛି । ଗୋଟିଏ ସଭାରେ ୪୦ ଜଣ ମେମ୍ବର ଓ ଅନ୍ୟଟିରେ ୮୦ ଜଣ ମେମ୍ବର । ସଭାପତି ପାଞ୍ଚବର୍ଷ ସକାଶେ ନିର୍ବାଚିତ ହୁଅନ୍ତି । କୃଷି ଓ ପଶୁପାଳନ ଲୋକମାନଙ୍କର ପ୍ରଧାନ ଅବଲମ୍ବନ । କ୍ଷେତ୍ରଫଳ—ତିନିଲକ୍ଷ ତେଷଠି ହଜାର ସାତଶ ଅଠାଅଶି ବର୍ଗମାଇଲ । ଲୋକସଂଖ୍ୟା ତିରିଶିଲକ୍ଷ ଛବିଶ ହଜାର ଅଠଶ ଅଠସ୍ତରୀ । ରାଜଧାନୀ କାରାକାସ୍ ( Caracas ) ।

**ୟେମେନ୍** (Yeman)—ଆରବ ଦେଶରେ ଗୋଟିଏ ଷ୍ଟେଟ୍ । ମୋଖା (Mokha) ନାମକ ବନ୍ଦର ଏ ଦେଶରେ ଅବସ୍ଥିତ । ମୋଖା କଫି ଜଗତ୍‌ବିଖ୍ୟାତ । କ୍ଷେତ୍ରଫଳ ତିରିସ୍ତରୀ ହଜାର ବର୍ଗ ମାଇଲ । ଲୋକସଂଖ୍ୟା ପଚାଶଲକ୍ଷ । ରାଜଧାନୀ ସାନା ( Sana ) ।

**ଯୁଗୋସ୍ଲାଭିଆ** (Yugoslavia)—ଏହା ଯୁଦ୍ଧପୂର୍ବରୁ ସାର୍ଭିଆ, ମଣ୍ଟିନିଗ୍ରୋ ଓ ଅଷ୍ଟ୍ରିଆ ଓ ବୁଲଗେରିଆର କେତେକ ଅଂଶ ନେଇ ଗଠିତ । ଏ ଦେଶରେ ସେର୍ବସ୍, କ୍ରୋଟ୍ ଓ ସ୍ଲୋଭେନ୍ ଜାତି ବାସ କରନ୍ତି । ମଣ୍ଟିନିଗ୍ରୋର ବାଳକମାନେ ଅତୀବ ସୁନ୍ଦର । କୃଷି ଲୋକମାନଙ୍କର ପ୍ରଧାନ ବ୍ୟବସାୟ । କ୍ଷେତ୍ରଫଳ ଛଅଶହ ନବେ ହଜାର ସୁରଶ ତେଇଶି ବର୍ଗମାଇଲ । ଲୋକସଂଖ୍ୟା ଏକକୋଟି ଅଣେଇଶି ଲକ୍ଷ ତେଇଶି ହଜାର ନଅଶ ଅଠର । ରାଜଧାନୀ ବେଲଗ୍ରେଡ୍ ( Belgrade ) ।

**ଜାଞ୍ଜିବାର** (Zanzibar)— ଦକ୍ଷିଣ ଅଫ୍ରିକାରେ ବ୍ରିଟିଶମାନଙ୍କର ଶାସନାଧୀନ ଗୋଟିଏ ଦ୍ୱୀପପୁଞ୍ଜ । ଏଠାରେ ବହୁତ ନଡ଼ିଆ ଫସଲ ହୁଏ । ପୃଥିବୀର ଅଧିକାଂଶ ଲବଙ୍ଗ

ଉପକାର କଲେ ଖଳ ଲୋକଙ୍କର ଫଳ ମିଳେ ଅପକାର ।

ଏଠାରେ ଲମ୍ବା ହୁଏ । ଜାଞ୍ଜିବାର ଓ ପେମ୍ବା ଦ୍ୱୀପମାନଙ୍କର ଲୋକସଂଖ୍ୟା ଦୁଇଲକ୍ଷ ପଚିଶହଜାର ଗୁଡ଼ାଏ ଷଠାଇଶି । ଅଧିକାଂଶ ଆରବ ଓ ନିଗ୍ରୋ ଅଟନ୍ତି । ପ୍ରାୟ ଦଶହଜାର ଭାରତୀୟ ବାସ କରନ୍ତି । ଜାଞ୍ଜିବାର ସହର ପୂର୍ବ-ଅଫ୍ରିକାର ସମସ୍ତ ସହରମାନଙ୍କଠାରୁ ବଡ଼ ।



# ଭାରତୀୟ ନେତା ଓ ପ୍ରସିଦ୍ଧ ବ୍ୟକ୍ତିମାନଙ୍କର ପରିଚୟ ।

**ଡାକ୍ତର ଆନସାରୀ** M. A.—୧୮୮୦ ଖ୍ରୀଷ୍ଟାବ୍ଦରେ ଜାତ ହୋଇଥିଲେ । ୧୯୦୦ ଖ୍ରୀଷ୍ଟାବ୍ଦରେ କୃତିତ୍ୱ ସହିତ ବି. ଏ. ପାସ୍ କରିଥିଲେ ଓ ଏଡ଼ିନବର୍ଗ ବିଶ୍ୱବିଦ୍ୟାଳୟରୁ ଏମ୍. ବି. ସିଏର୍. ବି. ଡିଗ୍ରୀ ଲାଭ କରିଥିଲେ । ୧୯୧୦ ମହାଯୁଦ୍ଧରେ ମୁସଲମାନ ସମ୍ପ୍ରଦାୟର ପ୍ରସିଦ୍ଧ ନେତା ହୋଇଥିଲେ, ୧୯୨୭ ରେ ଭାରତ କଂଗ୍ରେସର ସଭାପତି ହୋଇ ଅକାତରେ ଦେଶପାଇଁ କାରାବରଣ କରିଥିଲେ । ଡାକ୍ତରୀ ବ୍ୟବସାୟରେ ତାଙ୍କର ଯଥେଷ୍ଟ ପ୍ରତିପତ୍ତି ଅଛି ।

## ସାର ଜଗଦୀଶଚନ୍ଦ୍ର ବୋଷ K. T., C. S. I.C.I.E., M. A. (Cant) D. Sc. (Lon)

କଲିକତା ପ୍ରେସିଡେନ୍ସି କଲେଜର ଭୂତପୂର୍ବ ଅଧ୍ୟାପକ । ଢାକା ଅନ୍ତଃପାତୀ ବରିଶାଲ ଗ୍ରାମରେ ଜନ୍ମଗ୍ରହଣ କରିଥିଲେ । କଲିକତାରେ ଏବଂ କେମ୍ବ୍ରିଜ୍‌ର ଖ୍ୟାତନାମା କଲେଜ୍‌ରେ ଶିକ୍ଷାଲାଭ କରିଥିଲେ । ସେ ନିଜର ଅଗାଧ ପାଣ୍ଡିତ୍ୟ ଓ ଗମ୍ଭୀର ଗବେଷଣା ଦ୍ୱାରା ପ୍ରାକୃତିକ ବିଜ୍ଞାନରେ ବ୍ୟୁତ୍ପତ୍ତି ଲାଭକରି ଡକ୍ଟର ଅଫ ସାଏନ୍ସ ପ୍ରଭୃତି ନାନା ଉପାଧିରେ ମଣ୍ଡିତ ହୋଇଥିଲେ । ବିଲାତରୁ ଫେରିଆସି କଲିକତାର ପ୍ରେସିଡେନ୍ସି କଲେଜରେ ଅଧ୍ୟାପକ ରୂପେ ନିଯୁକ୍ତ ହୋଇଥିଲେ । ବୈଜ୍ଞାନିକ ତଥ୍ୟ ଅନୁସନ୍ଧାନ କରିବା ପାଇଁ ପାର୍ଲିଆମେଣ୍ଟରୁ ବୃତ୍ତି ପାଇଥିଲେ । ୧୯୦୦ରେ ପାରିସ ନଗରରେ ଅନୁଷ୍ଠିତ ଆନ୍ତର୍ଜାତିକ ବୈଜ୍ଞାନିକ ମହାସଭାରେ ଯୋଗଦାନ କରିଥିଲେ । ସରକାରଙ୍କ ଦ୍ୱାରା ପ୍ରେରିତ ହୋଇ ସେ ଅନେକ ଥର ୟୁରୋପ ପରିଦର୍ଶନ କରିଥିଲେ । ଇଂଲଣ୍ଡର ରୟେଲ ଇନଷ୍ଟିଚ୍ୟୁସନ୍ ଓ ଅନ୍ୟାନ୍ୟ କେତେକ ଶିକ୍ଷିତ ସମାଜରେ ତାଙ୍କର ଅନୁସନ୍ଧାନମୂଳକ ଅନେକ ବକ୍ତୃତା ଦେଇଥିଲେ । ସରକାର ତାଙ୍କ ଉପରେ ସନ୍ତୁଷ୍ଟ ହୋଇ ତାଙ୍କୁ ୧୯୦୩ରେ ସି. ଆଇ. ଇ. ଓ ୧୯୦୬ରେ ସି. ଏସ. ଆଇ. ଉପାଧିରେ ଭୂଷିତ କରିଥିଲେ । ସେ ୧୯୧୪-୧୫ ରେ ଗଭର୍ଣ୍ଣମେଣ୍ଟଙ୍କ ଦ୍ୱାରା ପୁନଃ ପ୍ରେରିତ ହୋଇ ଆମେରିକା ଓ ୟୁରୋପ ଯାତ୍ରା କରିଥିଲେ । ତତ୍ରତ୍ୟ ନାନା ବିଦ୍ୟାପୀଠରେ ବହୁ ସାରଗର୍ଭକ ବକ୍ତୃତା ଦେଇ ନିଜର ବୁଦ୍ଧିମତ୍ତାର ପରିଚୟ ଦେଇଥିଲେ । ଆମେରିକା ଓ ୟୁରୋପର ଖ୍ୟାତନାମା ବୈଜ୍ଞାନିକମାନେ ତାଙ୍କର ଉଦ୍ଭିଦ ସମ୍ବନ୍ଧୀୟ ନୂତନ ତଥ୍ୟକୁ ସମାଦର କରିଥିଲେ । ସେ ବିଦ୍ୟୁତ୍ ଶକ୍ତି ସାହାଯ୍ୟରେ ଉଦ୍ଭିଦଜୀବନ ପର୍ଯ୍ୟବେକ୍ଷଣ କରି ଅମରତ୍ୱ ଲାଭ କରିଅଛନ୍ତି । ଅନୁଶୀଳନ ଗୃହ ( Research Laboratory ) ନିର୍ମାଣ କରିବା ପାଇଁ ସରକାର ତାଙ୍କୁ ବହୁତ ଅର୍ଥ ସାହାଯ୍ୟ କରିଥିଲେ ଏବଂ ଉଦ୍ଭିଦର ଶରୀରତତ୍ତ୍ୱ ପରୀକ୍ଷା କରିବାପାଇଁ ଗୋଟିଏ ଉଦ୍ୟାନ କଲିକତାର ଅନତିଦୂରରେ ଗଙ୍ଗାନଦୀ କୂଳରେ ତାଙ୍କ ଅଧିକାରରେ ଛାଡ଼ି ଦେଇଥିଲେ । ୧୯୧୭ରେ ସେ ତାଙ୍କର ଅନୁଶୀଳନ ଗୃହ ଓ ବକ୍ତୃତାପୀଠ ଜାତିକୁ ଉତ୍ସର୍ଗ କରିଥିଲେ ।

## ହିଜ ହାଇନେସ ଆଗାଖାଁ

The G. C. I. E., G. C. S. I., G. C. V. O., Ll. D., ( Camb )

୧୮୭୫ ରେ ଜନ୍ମଗ୍ରହଣ କରିଥିଲେ । ସେ ୟୁରୋପରେ ଶିକ୍ଷାଲାଭ କରି ୧୮୮୭ ରେ ହିଜ୍ ହାଇନେସ୍ ଉପାଧି ଲାଭ କରିଥିଲେ । ସେ ପୁଣି ୧୮୯୧ରେ କେ. ସି. ଆଇ. ଇ. ୧୯୦୨ ରେ ଜି. ସି. ଆଇ. ଇ. ଏବଂ ୧୯୧୨ ରେ ଜି. ସି. ଏସ. ଆଇ. ଓ ୧୯୧୨ ରେ ଅକ୍ସଫୋର୍ଡ଼ ୟୁନିଭର୍ସିଟିରୁ ଏଲ୍‌ଏଲ୍. ଡ଼ି. ଉପାଧି ପ୍ରାପ୍ତ ହୋଇଥିଲେ । ବଡ଼ଲାଟ ମହାସଭାରେ ସଦସ୍ୟ ହୋଇଥିଲେ । ସେ ଇସ୍‌ମାଇଲ ମୁସଲମାନ ମାନଙ୍କର ପ୍ରଧାନ ନେତା ଅଟନ୍ତି । ସେ କ୍ରୀଡ଼ା ନିପୁଣ ଏବଂ ଘୋଡ଼ଦୌଡ଼ରେ ଅନେକଥର ଜୟ ଲାଭ କରିଅଛନ୍ତି । ୧୯୨୧ ରେ ଗୋଟିଏ ଫରାସୀ ମହିଳା ବିବାହ କରିଥିଲେ

ଓ ଗୋଲଟେବୁଲ ବୈଠକରେ ଜଣେ ପ୍ରତିନିଧି ମେମ୍ବର ଥିଲେ ।

**ମିସେସ୍ ସରୋଜିନୀ ନାଇଡୁ—** ୧୮୭୯ ଫେବ୍ରୁୟାରୀ ମାସରେ ଦାକ୍ଷିଣାତ୍ୟର ହାଇଦ୍ରାବାଦରେ ଜନ୍ମିଥିଲେ । ଲଣ୍ଡନ ଏବଂ କେମ୍ବ୍ରିଜରେ ଶିକ୍ଷା ପ୍ରାପ୍ତ ହୋଇଥିଲେ । ସେ ଭାରତରେ ସ୍ତ୍ରୀଜାତିର ଉନ୍ନତିପାଇଁ ଯେଉଁ ଆନ୍ଦୋଳନ ହୋଇଥିଲା ତାହାର ପ୍ରଧାନ ନେତ୍ରୀ ଅଟନ୍ତି । ସେ ଦେଶପାଇଁ ବହୁବାର କାରାରୁଦ୍ଧ ହୋଇଅଛନ୍ତି । ସେ ଦକ୍ଷିଣ ଅଫ୍ରିକା ( Delegation ) ର ମେମ୍ବର ଥିଲେ । ତାଙ୍କର କବିତା ଲେଖିବା ଶକ୍ତି ଈଶ୍ୱରଦତ୍ତ । ସେ ବହୁ ପୁସ୍ତକ ପ୍ରଣୟନ କରିଅଛନ୍ତି—ଯଥା ବାର୍ଡ଼ ଅଫ୍ ଟାଇମ ( Bird of Time ) ଗୋଲ୍ଡନ୍ ଥ୍ରେସହୋଲ୍ଡ (Golden Thershold । ସେ ଗୋଲଟେବୁଲ ବୈଠକରେ ଯୋଗଦାନ କରିଥିଲେ ଏବଂ ସାହିତ୍ୟ ସମ୍ବନ୍ଧୀୟ ରୟେଲ ସମାଜର ସଦସ୍ୟ ଥିଲେ । ସେ ଅମର ଗାୟିକା ଓ ପ୍ରଧାନତମ ବକ୍ତା ।

**ରବୀନ୍ଦ୍ରନାଥ ଠାକୁର—Kt., D. Litt.—** ଶ୍ରୀମାନ୍ ରବୀନ୍ଦ୍ରନାଥ ୧୮୬୧ ମେ ମାସ ତା ୬ ରିଖରେ କଲିକତାରେ ଜନ୍ମ ଗ୍ରହଣ କରିଥିଲେ । ସେ ମହର୍ଷି ଦେବେନ୍ଦ୍ରନାଥ ଠାକୁରଙ୍କ କନିଷ୍ଠ ପୁତ୍ର ଏବଂ ପ୍ରିନ୍ସ ଦ୍ୱାରକାନାଥ ଠାକୁରଙ୍କ ନାତି ଅଟନ୍ତି । ସେ ଓରିଏଣ୍ଟାଲ ସେମିନାରି ଓ ସେଣ୍ଟ ଏକ୍ସଭିଅରସ୍ ସ୍କୁଲରେ ଅଧ୍ୟୟନ କରିଥିଲେ । ନବୀନ ବୟସରେ ସେ ବଙ୍ଗଳା ଭାଷାରେ କବିତା ଲେଖିଲେ । ସେ ସପ୍ତଦଶ ବର୍ଷ ବୟଃକ୍ରମ କାଳରେ ଇଂଲଣ୍ଡକୁ ଯାଇ ସେଠାରେ ଲଣ୍ଡନ ୟୁନିଭର୍ସିଟି କଲେଜରେ ଅଧ୍ୟୟନ କଲେ । ସେ ଅନେକ କବିତା, ଉପନ୍ୟାସ, କ୍ଷୁଦ୍ର ଗଳ୍ପ, ଧର୍ମ, ସାହିତ୍ୟ, ଶିଳ୍ପ, ରାଜନୀତି ଓ ଶିକ୍ଷା ସମ୍ବନ୍ଧୀୟ ଅନେକ କ୍ଷୁଦ୍ର ପ୍ରବନ୍ଧ ଲେଖିଥିଲେ । ତାହା ଛଡ଼ା ସେ ବହୁତ ପଦ୍ୟ ଗୀତାକାରରେ ଲେଖି ଅଛନ୍ତି । ଭାରତୀ, ସାଧନା, ଏବଂ ବଙ୍ଗ ଦର୍ଶନ ନାମ୍ନୀ ୩ ଖଣ୍ଡ ମାସିକ ପତ୍ରିକାର ସମ୍ପାଦକରୂପେ କାର୍ଯ୍ୟ କରିଥିଲେ । ୧୯୦୦ ରେ ବୋଲପୁର ସ୍କୁଲ ସ୍ଥାପନ କରିଥିଲେ । ସେ ବଙ୍ଗର ଜାତୀୟ ଆନ୍ଦୋଳନର ନେତା ଓ ଉତ୍ତେଜନାକାରୀ ଅଟନ୍ତି । ସେ ୧୯୦୭ ରେ ଅନୁଷ୍ଠିତ ବଙ୍ଗ ସାହିତ୍ୟ ସମିତିର ସଭାପତି ଓ ୧୯୦୭ ରେ ବଙ୍ଗ ପ୍ରାଦେଶିକ ରାଜନୈତିକ ସଭାର ସଭାପତି ହୋଇଥିଲେ । ସେ ୧୯୧୨ ରେ ଇଂଲଣ୍ଡକୁ ଯାତ୍ରା କରି ତାଙ୍କର ପଦ୍ୟବଳୀକୁ ଇଂରାଜୀରେ ଅନୁବାଦ କରି ଗୀତାଞ୍ଜଳି ନାମ ଦେଇଥିଲେ ଏବଂ ୧୯୧୩ ରେ ସାହିତ୍ୟ କ୍ଷେତ୍ରରେ ତାଙ୍କର ଅଗାଧ ପାଣ୍ଡିତ୍ୟ ଲାଗି ନୋବେଲ ପୁରସ୍କାର ପାଇଥିଲେ । କଲିକତା ବିଶ୍ୱବିଦ୍ୟାଳୟ ତାଙ୍କୁ ୧୯୧୪ ରେ ଅନରେରି ଡି. ଲିଟ୍ ଉପାଧି ପ୍ରଦାନ କରିଥିଲେ । ସେହି ବର୍ଷ 'ନାଇଟ୍' ଉପାଧି ପାଇଲେ । ୧୯୧୬-୧୭ ରେ ବକ୍ତୃତା ଦେବା ଉଦ୍ଦେଶ୍ୟରେ ଯାପାନ ଓ ଆମେରିକା ଭ୍ରମଣ କରିଥିଲେ, ଏବଂ ଇଉରୋପ, ଆମେରିକା, ଯାପାନ, ଓଲନ୍ଦାଜ ପୂର୍ବ ଦ୍ୱୀପପୁଞ୍ଜ, ଚୀନ, ରୁଷିଆ ଏବଂ ପୃଥିବୀର ଅନ୍ୟାନ୍ୟ ଅଂଶ ପରିଦର୍ଶନ କରିଥିଲେ । ତାଙ୍କର ଲେଖା ପୃଥିବୀର ବହୁ ଭାଷାରେ ଅନୂଦିତ ହୋଇଅଛି । ୧୯୩୧ ରେ ସପ୍ତତି ଜୟନ୍ତୀ ମହାସମାରୋହରେ ସମ୍ପନ୍ନ ହୋଇଥିଲା । ବୋଲପୁରର ଶାନ୍ତିନିକେତନ ଏହାଙ୍କର କୃତି । ୧୯୪୧ ରେ [illegible]

**ସ୍ୟାର୍ ଚନ୍ଦ୍ରଶେଖର ବେଙ୍କଟା ରମଣ—** ଏମ୍. ଏ., ଏଲ୍.ଏଲ୍. ଡି. ( ଗ୍ଲାସଗୋ ) ଡି. ଏସ୍‌ସି. ( କଲିକତା ) ଏଫ୍. ଆର୍. ଏସ୍., କେଟି.—୧୮୮୮ ମସିହା ନଭେମ୍ବରରେ ତ୍ରିଚିନପଲ୍ଲୀରେ ଜାତ ହୋଇ ମାନ୍ଦ୍ରାଜ ପ୍ରେସିଡେନ୍ସି କଲେଜରେ ଶିକ୍ଷା ପ୍ରାପ୍ତ ହୋଇଥିଲେ । ୧୯୦୭ ରେ ଡିଗ୍ରୀ ଲାଭ କରି ଭାରତ ଗଭର୍ଣ୍ଣମେଣ୍ଟଙ୍କ ( Finance ) ରାଜସ୍ୱ ବିଭାଗରେ ପ୍ରବେଶ କଲେ । ୧୯୧୭ ରେ କଲିକତା ବିଶ୍ୱବିଦ୍ୟାଳୟର ପଦାର୍ଥ ବିଜ୍ଞାନ ଅଧ୍ୟାପକ ପଦ ତାଙ୍କୁ ପ୍ରଦତ୍ତ ହେଲା । ଇଉରୋପ ଯାତ୍ରା ସମୟରେ ସମୁଦ୍ରରେ ଭିନ୍ନ ରଙ୍ଗମାନ ଦେଖି ଆଲୋକତତ୍ତ୍ୱ ଅନୁଶୀଳନରେ ମନ ବଳାଇଲେ । ସେ ବହୁ ଆଶାନୁରୂପ ଗବେଷଣା କରି ୧୯୨୮ ରେ ବିଜ୍ଞାନର ଏକ ନୂତନ ତଥ୍ୟ ଆବିଷ୍କାର କଲେ । ତାହାର ନାମ ରମଣ ଏଫେକ୍ଟ (Raman Effect)) । ୧୯୨୯ ରେ ନାଇଟ୍ ପଦ ଲାଭ କଲେ । ୧୯୩୦ ରେ ନୋବେଲ ପ୍ରାଇଜ ପାଇଲେ । ଏଫ୍. ଆର୍. ଏସ୍ ହୋଇ ବାଙ୍ଗାଲୋର ଭାରତୀୟ ବୈଜ୍ଞାନିକ ସମାଜର ଡାଇରେକ୍ଟର ହୋଇଅଛନ୍ତି ।

**ଆଚାର୍ଯ୍ୟ ପ୍ରଫୁଲ୍ଲ ଚନ୍ଦ୍ର ରାୟ—** ସି. ଆଇ. ଇ. ଡି. ଏସ୍‌ସି, (Edin) ପି.ଏଚ. ଡି, (Cal) ଡି, ଏସ୍‌ସି, ( Durham Honoris Causa ) ରସାୟନ ଶାସ୍ତ୍ରଜ୍ଞ ଏବଂ ହିନ୍ଦୁ ରସାୟନ ଶାସ୍ତ୍ର ( 2 vols )ର ଗ୍ରନ୍ଥକାର ଓ ବୈଜ୍ଞାନିକ ଜଗତର ପ୍ରାମାଣିକ ଲେଖକ । ଯଶୋର ଜିଲ୍ଲା ରାରୁଲୀ ଗ୍ରାମରେ ୧୮୬୧ ଅଗଷ୍ଟ ତା ୨ ରିଖରେ ଜନ୍ମ । ୯ମ ବର୍ଷ ବୟସ ପର୍ଯ୍ୟନ୍ତ ଗ୍ରାମ ଉଚ୍ଚ ସ୍କୁଲରେ ଶିକ୍ଷାଲାଭ କରି କଲିକତାରେ ହେୟାର ସ୍କୁଲ ଓ ଅଲବର୍ଟ ସ୍କୁଲରେ ଅଧ୍ୟୟନ କଲେ । ୧୮୭୪ ରେ ଏଣ୍ଟ୍ରାନ୍ସ ପରୀକ୍ଷୋତ୍ତୀର୍ଣ୍ଣ ହୋଇ ମେଟ୍ରୋପୋଲିଟନ ଇନ୍‌ଷ୍ଟିଚ୍ୟୁଟ୍ ଓ ପ୍ରେସିଡେନ୍ସି କଲେଜର ଛାତ୍ର ହେଲେ । ତତ୍ପରେ ଏଡିନବର୍ଗ ବିଶ୍ୱବିଦ୍ୟାଳୟରେ ୧୮୮୫ ରେ ବି. ଏସ୍‌ସି. ଡିଗ୍ରୀ ପାଇ ୧୮୮୭ରେ ହୋପ ପ୍ରାଇଜ ପାଇଲେ । ୧୮୮୮ ରେ ଭାରତକୁ ଫେରିଆସି ପ୍ରେସିଡେନ୍ସି କଲେଜର କେମିଷ୍ଟ୍ରି ପ୍ରଫେସର ହେଲେ । ୧୯୧୬ ପର୍ଯ୍ୟନ୍ତ ପ୍ରୋକ୍ତ ପଦରେ ଥାଇ କେମିଷ୍ଟ୍ରି ବିଭାଗର ପ୍ରଫେସର ସ୍ୱରୂପ ଅବସର ଗ୍ରହଣ କଲେ ଓ କଲିକତା ବିଶ୍ୱବିଦ୍ୟାଳୟର ବିଜ୍ଞାନ କଲେଜର ପାଲିତ ପ୍ରଫେସର ହେଲେ । ୧୮୯୨ ରେ ବେଙ୍ଗଲ କେମିକେଲ ଓ ଫର୍ମାସିଉଟିକେଲ ଓାର୍କସର ସେ ଥିବା ଜୀବନ ଓ ଆତ୍ମା ସ୍ୱରୂପ ହେଲେ ଏବଂ ତାହାର ବର୍ତ୍ତମାନ ଉନ୍ନତିର ଭିତ୍ତି ତାଙ୍କ ଦ୍ୱାରା ସ୍ଥାପିତ । ବଙ୍ଗ ଏସିଏଟିକ ସୋସାଇଟିରେ ତାଙ୍କର ପ୍ରଥମ ପତ୍ର ପାଠ କରିଥିଲେ । ୧୮୯୫ରେ ପାରଦ ଏବଂ ପାରଦ ଓ ନାଇଟ୍ରିକ୍ ଏସିଡ୍ ବିଷୟରେ ଗବେଷଣା କଲେ । ୧୯୦୭ରେ କଲିକତା ବିଶ୍ୱବିଦ୍ୟାଳୟ ତାଙ୍କୁ ଅନରେରି Ph. D. ପଦ ପ୍ରଦାନ କଲେ । ବ୍ରିଟିଶ ସାମ୍ରାଜ୍ୟର ବିଶ୍ୱବିଦ୍ୟାଳୟ ମହାସଭାରେ କଲିକତା ବିଶ୍ୱବିଦ୍ୟାଳୟର ପ୍ରତିନିଧି ସ୍ୱରୂପ ଯୋଗଦାନ କରିଥିଲେ । ଦରହାମ ବିଶ୍ୱବିଦ୍ୟାଳୟ ତାଙ୍କୁ ୧୯୧୨ ରେ D. Sc. ଡିଗ୍ରୀ ପ୍ରଦାନ କଲେ ଓ ସେହି ବର୍ଷ ଭାରତ ସାମ୍ରାଜ୍ୟର ସହଚର ହେଲେ ଲଣ୍ଡନ କେମିକେଲ ସୋସାଇଟିର ଫେଲୋ—ବଙ୍ଗ ଏସିଆଟିକ୍ ସୋସାଇଟିର ଫେଲୋ ହେଲେ । ଭାରତୀୟ ରସାୟନ ବିଦ୍ୟାର ଅନୁଶୀଳନ ପାଇଁ ଏକ ପ୍ରସିଦ୍ଧ ବିଦ୍ୟାଳୟ ବସାଇଲେ । ସେଠା ଛାତ୍ରମାନଙ୍କ ମଧ୍ୟରୁ କେତେକ ଏକନିଷ୍ଠ ସେବକ ପୃଥିବୀର ରସାୟନ ପଦାର୍ଥ ସମ୍ବନ୍ଧେ ପୂର୍ବରୁ ପ୍ରଶଂସାଭାଜନ ହୋଇଥିଲେ । ସେ ଖଦଡ଼ର ପୂରାପ୍ରଚାରକ ଅଟନ୍ତି । ତାଙ୍କର ଲେଖାବଳୀ :—

ହିନ୍ଦୁ ରସାୟନ ଶାସ୍ତ୍ରର ଇତିହାସ—୨ ଖଣ୍ଡ, Life and Experience of a Bengali Chemist. Most Important Discoveries: Mercurous Nitric and its derivatives, Amine Nitrites.

**ଦି ରାଇଟ୍ ଅନରେବଲ୍ ଶ୍ରୀନିବାସ ଶାସ୍ତ୍ରୀ, ପି. ସି**—ହିନ୍ଦୁ ବ୍ରାହ୍ମଣ । ୧୯୧୬-୨୦ ଇମ୍ପିରିଏଲ ଲେଜିସ୍ଲେଟିଭ୍ କାଉନ୍‌ସିଲର ଜଣେ ମେମ୍ବର । ୧୯୧୮ ରେ ମି: ମଣ୍ଟେଗୁଙ୍କ ଭାରତ ଭ୍ରମଣ କାଳରେ ସେ ତାଙ୍କ ସହିତ ରହିଥିଲେ । ୧୯୨୧ ରେ (ଇମ୍ପିରିଏଲ କନଫରେନ୍ସ) ରାଜକୀୟ ସମ୍ମିଳନୀରେ ଭାରତର ପ୍ରତିନିଧି ହୋଇଥିଲେ । ପୁଣି ସେହି ବର୍ଷ ଲିଗ୍ ଅଫ୍ ନେସନ୍ ଓ ଓାସିଂଟନ ସମ୍ମିଳନୀରେ ଭାରତ ତରଫରୁ ଯୋଗଦାନ କରିଥିଲେ । ପ୍ରିଭି କାଉନ୍‌ସିଲର ହେଲେ ଓ ୧୯୨୧ ରେ ଲଣ୍ଡନ ନଗରର ସ୍ୱାଧୀନତା ଲାଭ କଲେ । ୧୯୨୨ ରେ ଭାରତ ଗଭର୍ଣ୍ଣମେଣ୍ଟଙ୍କ ପ୍ରତିନିଧି ସ୍ୱରୂପ ବିଭିନ୍ନ ରାଜ୍ୟ ଭ୍ରମଣ କରିଥିଲେ । ୧୯୨୧-୨୪ କାଉନ୍‌ସିଲ ଅଫ ଷ୍ଟେଟ୍‌ର ମେମ୍ବର ନିର୍ବାଚିତ ହୋଇଥିଲେ । ୧୯୨୬-୨୯ ଦକ୍ଷିଣ ଆଫ୍ରିକାକୁ ସେ ଭାରତର ପ୍ରଥମ ପ୍ରତିନିଧି ହୋଇ ଯାଇଥିଲେ ଓ ହ୍ୱିଟଲେ କମିସନର ମେମ୍ବର ଥିଲେ । ଲର୍ଡ଼ରିଡ଼ିଂ କହିଥିଲେ, 'ଶାସ୍ତ୍ରୀ ଆମ ଇଂରାଜୀଭାଷାର ଗୌରବ ବଢ଼ାଇଛନ୍ତି' । ଏ ମହାଶୟ ପୃଥିବୀ ମଧ୍ୟରେ ଇଂରାଜୀରେ ଜଣେ ସୁବକ୍ତା ।

**ଅରବିନ୍ଦ ଘୋଷ**—କଲିକତାରେ ଜନ୍ମ । ୭ମ ବର୍ଷରେ ପିତାମାତାଙ୍କ ସହ ବିଲାତ ଯାତ୍ରା—St. Pauls' School ଓ King's College, Cambridge ରେ ଶିକ୍ଷା । କ୍ଲାସିକେଲ ଟ୍ରାଇପୋସ୍ (Tripos)ରେ ୧ମ ଶ୍ରେଣୀ ଲାଭ । I. C. S. ପରୀକ୍ଷାରେ ସଫଳତା ଲାଭ ମାତ୍ର ଅଶ୍ୱାରୋହଣରେ ଅପଟୁତା ହେତୁ ଅଯୋଗ୍ୟ । ବରୋଦାରେ ଚାକିରି ଗ୍ରହଣ—ଜନ୍ମଭୂମି ବଙ୍ଗକୁ ଆସି ରାଜନୀତି ଆନ୍ଦୋଳନରେ ଯୋଗଦାନ-ପ୍ରଧାନ ଦୈନିକ ଜାତୀୟ ପତ୍ରିକା 'ବନ୍ଦେ ମାତରଂ'ର ପ୍ରଥମ

ଅଳ୍ପଚେଷ୍ଟା ଥିଲେ ଦଉଡ଼ି କୂପୁଁ ନ ଆସେ ଜଳ ॥



ଅରବିନ୍ଦ ଘୋଷ

ଅରୁଣୋଦୟ ପ୍ରେସ, କଟକ ।

ସମ୍ପାଦକ—ଆଲିପୁର ବୋମା ମୋକଦ୍ଦମାରେ ବନ୍ଦୀ କରି ବିଦ୍ରୋହ ଉଦ୍ଦେଶ୍ୟରେ ଷଡ଼ଯନ୍ତ୍ର କରିଥିବା ଦାୟରୁ ସମ୍ପୂର୍ଣ୍ଣରୂପେ ମୁକ୍ତ ହୋଇ ଖଲାସ । ବିଦ୍ରୋହମୂଳକ ଲେଖା ପାଇଁ ୧୯୧୦ରେ ଓ୍ୟାରଣ୍ଟ ହେବାରୁ ଫ୍ରାନ୍ସ ରାଜ୍ୟ ପଣ୍ଡିଚେରୀକୁ ଗମନ—ପୂର୍ଣ୍ଣରୂପେ ରାଜନୀତି ପରିତ୍ୟାଗ—ଅଦ୍ୟାବଧି ଭଗବାନଙ୍କ ଅନୁସନ୍ଧାନରେ ନିଯୁକ୍ତ—ପଣ୍ଡିଚେରୀରେ ଆଶ୍ରମ ସ୍ଥାପନ—ଜ୍ଞାନପିପାସୁମାନେ ସେଠାରେ ଭୁକ୍ତ ହେଉଛନ୍ତି । ସେ ସାଧୁ, କର୍ମୀ, ଦେଶ ଭକ୍ତ ଓ ଯୋଗୀ ।

## ମୁକୁନ୍ଦରାମରାଓ ଜୟକାର—ଏମ୍. ଏ. ଏଲ୍.

ଏଲ୍. ବି. ବାରିଷ୍ଟର—ରାଜନୀତି କ୍ଷେତ୍ରରେ ବାଲ ଗଙ୍ଗାଧର ତିଲକଙ୍କ ଶିଷ୍ୟ—ତାଙ୍କ ମୃତ୍ୟୁ ପରେ ମହାତ୍ମା ଗାନ୍ଧିଙ୍କ ସହ ଯୋଗଦାନ—ଏସେମ୍ବ୍ଲିରେ ସର୍ବପ୍ରଧାନ ସ୍ୱାଧ୍ୟ-ସ୍ୱରାଜ ଦଳର ନେତା ହୋଇ ୧୯୨୧ରେ ଦାୟିତ୍ୱପୂର୍ଣ୍ଣ ଦଳର ବଶିଷ୍ଟ ସଭ୍ୟ-କଂଗ୍ରେସ୍ ତ୍ୟାଗ—୧୯୩୦ ଜୁନରେ ସରକାର ଓ କଂଗ୍ରେସ ମଧ୍ୟରେ ଶାନ୍ତିପାଇଁ ଉଦ୍ୟମ, କିନ୍ତୁ ବ୍ୟର୍ଥ ମନୋରଥ—ଗୋଲ୍-ଟେବୁଲ ବୈଠକର ଜଣେ ମେମ୍ବର ।

## ସାର୍ ଗୌରହରି ସିଂ —Di.T.T.

D. ବାରିଷ୍ଟର ୧୮୭୦ ରେ ଜନ୍ମ । ଲେଜିସ୍ଲେଟିଭ ଏସେମ୍ବ୍ଲିର ସହକାରୀ ସଭାପତି । ଦିଲ୍ଲୀ ବିଶ୍ୱବିଦ୍ୟାଳୟର ପ୍ରଥମ ଭାଇସ ଚାନ୍ସେଲର-ଭାରତର ଅପରାଧୀୟ ଆଇନ, ହିନ୍ଦୁ ହସ୍ତାନ୍ତର ଆଇନ, ହିନ୍ଦୁକୋଡ଼ର ପ୍ରଣେତା ।

## କମଳାଦେବୀ ଚଟ୍ଟୋପାଧ୍ୟାୟ—ଦକ୍ଷିଣ

କାନଡ଼ାର ସୁବିଦିତ ସାରସ୍ୱତ ବ୍ରାହ୍ମଣ କୁଳରେ ଜନ୍ମ । ବାଲ୍ୟ-ବିବାହ-ମାନ୍ଦ୍ରାଜର କୁଇନ ମେରି କଲେଜରେ ଅଧ୍ୟୟନ ସମୟରେ ବିଧବା-ସରୋଜିନୀ ନାଇଡୁଙ୍କ ଭ୍ରାତା ହରୀନ୍ଦ୍ରନାଥ ଚଟ୍ଟୋପାଧ୍ୟାୟଙ୍କ ସହିତ ଅତର୍କିତ ଠାରେ ସାକ୍ଷାତ୍ ଓ ବନ୍ଧୁତା ଏବଂ ଫଳରେ ବିବାହ—ପ୍ରତିଭାବଳରେ ସୁପରିଚିତରୂପେ ବକ୍ତୃତା କରି ସମସ୍ତଙ୍କୁ ମୁଗ୍ଧ କରିବାର କ୍ଷମତା ଇଂଲଣ୍ଡ ଓ ଅନ୍ୟାନ୍ୟ ଦେଶକୁ ଯାଇ ଭାରତୀୟ ନାରୀଜାତିର ଗୌରବ ବଢ଼ାଇଛନ୍ତି । କଂଗ୍ରେସ ପାଇଁ ଏକାଧିକ ଥର କାରାବରଣ କରି ନେଇ ଅଛନ୍ତି ।

## ପଣ୍ଡିତ ମଦନମୋହନ ମାଳବୀୟ—

୧୮୬୧ ଡିସେମ୍ବର ୨୫ ତାରିଖରେ ଏଲାହାବାଦରେ ଜନ୍ମ । ଶିକ୍ଷା—ଏଲାହାବାଦରେ, ଧର୍ମଜ୍ଞାନୋପଦେଶ ପାଠଶାଳାରେ ସଂସ୍କୃତ । ଗଭର୍ଣ୍ଣମେଣ୍ଟ ହାଇସ୍କୁଲ ଓ Minor ସେଣ୍ଟ୍ରାଲ୍ କଲେଜରେ ଇଂରାଜୀ; ବି. ଏ. ( କଲିକତା ); ସ୍କୁଲ ଶିକ୍ଷକ ୧୮୮୫-୮୭ । ୧୮୮୫-୮୭ ଇଣ୍ଡିଆନ୍ ଓପିନିୟନ ଓ ହିନ୍ଦୁସ୍ଥାନ ପତ୍ରିକାର ସମ୍ପାଦକ । ୧୮୮୭-୮୯ L. L. B. ୧୮୯୧ ଏଲାହାବାଦ ବିଶ୍ୱବିଦ୍ୟାଳୟର ଓ ଏଲାହାବାଦ ହାଇକୋର୍ଟର ଓକିଲ । ୧୯୦୨-୧୨ ପ୍ରୋଭିନ୍‌ସିଏଲ ଲେଜିସ୍ଲେଟିଭ କାଉନ୍‌ସିଲର ମେମ୍ବର । ୧୯୦୯ ଓ ୧୯୧୮ ରେ ଭାରତୀୟ ଜାତୀୟ କଂଗ୍ରେସର ସଭାପତି । ୧୯୧୦-୧୯୧୯ ଇମ୍ପିରିଏଲ ଲେଜିସ୍ଲେଟିଭ କାଉନ୍‌ସିଲର ମେମ୍ବର । ୧୯୧୬-୧୮ ଭାରତୀୟ ଶିଳ୍ପ କମିଶନର ମେମ୍ବର । ପ୍ରୟାଗ ସେବାସମିତି ବୟ୍ ସ୍କାଉଟ୍, ସେବା ସମିତି ସ୍କାଉଟ ସଭାର ପ୍ରେସିଡେଣ୍ଟ । ୧୯୧୯ ଠାରୁ ବନାରସ ହିନ୍ଦୁ ବିଶ୍ୱବିଦ୍ୟାଳୟର ଭାଇସଚାନ୍ସେଲର । ୧୯୨୩-୨୪ ହିନ୍ଦୁ ମହାସଭାର ସଭାପତି । ୧୯୨୪ ଠାରୁ ଲେଜିସ୍ଲେଟିଭ ଏସେମ୍ବ୍ଲିର ମେମ୍ବର । ୧୯୩୦ ରେ ପଦତ୍ୟାଗ । ହିନ୍ଦୁ ବିଶ୍ୱବିଦ୍ୟାଳୟ ଏ ମହାରମନାଙ୍କର ଦେହମୟ କୀର୍ତ୍ତି । ଭାରତର ବର୍ତ୍ତମାନ ରାଜନୀତି କ୍ଷେତ୍ରରେ ଏହାଙ୍କର ପ୍ରଭାବ ଯଥେଷ୍ଟ ।

## ଏ ରଙ୍ଗସ୍ୱାମୀ ଆୟାଙ୍ଗାର—କୋଏମ୍ବେ-

ଟୋର (Coimbatore) ଓ ମାନ୍ଦ୍ରାଜ ପ୍ରେସିଡେନ୍‌ସି କଲେଜରେ ଶିକ୍ଷାଲାଭ । ୧୯୨୬-୨୭ ରେ କଂଗ୍ରେସର ଜେନେରେଲ ସେକ୍ରେଟେରୀ; କଂଗ୍ରେସ ତ୍ୟାଗ, କିନ୍ତୁ ଉଦାରପନ୍ଥୀୟ ଜାତୀୟବାଦୀ । ୨ୟ ଗୋଲଟେବୁଲ ବୈଠକର ମେମ୍ବର । ହିନ୍ଦୁ ପତ୍ରିକାର ସମ୍ପାଦକ ।

## ସାର୍ ଅତୁଳ ଚାଟାର୍ଜି—K. C. S. I.

K.C.I.E., I.C.S. (Retd) ୧୮୭୪ ନଭେମ୍ବର ୨୪ ରେ ଜନ୍ମ । I.C.S. ପରୀକ୍ଷାରେ ୧ମ—୧୯୨୫ ରୁ ୧୯୩୧ ଭାରତର ହାଇକମିସନର । ୧୮୯୬ ରେ I. C. S. ରେ ପ୍ରବେଶ । ସେହିଦିନଠାରୁ ଭାରତ ସରକାରଙ୍କର ବିବିଧ

ପ୍ରତଜ୍ଞ ଯେବେ ଈଶ୍ୱର ଥିଲେ ସ୍ୱଜ ସଦନେ ।

ବିଲାତରେ କାର୍ଯ୍ୟ କରିଛନ୍ତି । ପ୍ରଧାନ ଘଟଣାରେ ଭାରତ ଗଭର୍ଣ୍ଣମେଣ୍ଟର ପ୍ରତିନିଧି ହୋଇଅଛନ୍ତି । ଯଥା— ୱାଶିଂଟନ ଓ ଜେନେଭାରେ International Labour Conference ରେ ଏବଂ ଲଣ୍ଡନରେ Naval Conference ରେ International Labour Conference at Washington and Geneva and London Naval Conference), ଅଷ୍ଟ୍ରେଲିଆରେ ଭାରତୀୟ ପ୍ରତିନିଧି । ଭାରତ କାଉନ୍‌ସିଲର ଜଣେ ମେମ୍ବର ।

**ସର୍ଦ୍ଦାର ବଲ୍ଲଭଭାଇ ପଟେଲ**—ସେ ବମ୍ବେ ଅଦାଲତ ପ୍ରବେଶିକା ପରୀକ୍ଷାରେ ଉତ୍ତୀର୍ଣ୍ଣ ହୋଇ ଉକ୍ତ ଜିଲ୍ଲା ପ୍ଲିଡର ହୋଇଥିଲେ ଏବଂ ପାଞ୍ଚମହଲ ଜିଲ୍ଲା ଅନ୍ତର୍ଗତ ଗୋଧ୍ରା ସହରରେ ଓକିଲାତି ଆରମ୍ଭ କରିଥିଲେ । ସେ ଇଂଲଣ୍ଡକୁ ଯାଇ ସେଠାରେ ବାରିଷ୍ଟର ଶିକ୍ଷା ସାଙ୍ଗ କରି ଅବଶେଷରେ ଭାରତକୁ ଫେରି ଆସିଥିଲେ । ସେ ଅହମଦାବାଦରେ କାର୍ଯ୍ୟ କରୁଥିବା ସମୟରେ ମହାତ୍ମା ଗାନ୍ଧୀଙ୍କ ସଙ୍ଗରେ ମିଶିବାର ସୁବିଧା ପାଇଥିଲେ । ଏହି ସମୟ ତାଙ୍କ ଜୀବନର ଉଲ୍ଲେଖଯୋଗ୍ୟ ଅଟେ । ତାଙ୍କ ଜୀବନରେ ବହୁତ ରାଜନୈତିକ ଯୁଦ୍ଧ ହୋଇଥିଲା କିନ୍ତୁ ସେ ତାଙ୍କର ନୈପୁଣ୍ୟ ଏବଂ କର୍ମକୁଶଳତା ଯୋଗୁଁ ଜୟଲାଭ କରିଥିଲେ । ସେ କୈରା ସତ୍ୟାଗ୍ରହ, ନାଗପୁର ଫ୍ଲାଗ ସତ୍ୟାଗ୍ରହ, ବର୍ସାଦ କର ନ ଦେବା ଅଭିଯାନ, ବର୍ଦ୍ଦୋଲି ଅଭିଯାନ ପ୍ରଭୃତି ନାନା ଗୋଳମାଳରେ ଯୋରଦାର ଭାବରେ ନିଜର ଦକ୍ଷତାରେ ସମସ୍ତ ଜୟଲାଭ କରିଥିଲେ । ସେ ଅହମଦାବାଦ୍ ସହରର ଉନ୍ନତି, ଗୁଜରାଟ ବନ୍ୟା ସାହାଯ୍ୟ ପ୍ରଭୃତିରେ ପ୍ରଧାନ ନେତାରୂପେ କାର୍ଯ୍ୟ କରିଥିଲେ । ସେ ୪୫ ଶ ଭାରତୀୟ ଜାତୀୟ କଂଗ୍ରେସର ସଭାପତି ହୋଇଥିଲେ ଏବଂ ଅନେକ ବାର କାରାରୁଦ୍ଧ ହୋଇଥିଲେ । ସେ ଜଣେ ସ୍ୱାଧୀନ ଚିନ୍ତାଶୀଳ ବ୍ୟକ୍ତି ଏବଂ କୌତୁକପ୍ରିୟ ।

**ମହାଦେବ ଗୋବିନ୍ଦ ରାଣାଡେ**—୧୮୪୨ ମସିହା ଜାନୁଆରୀ ୧୮ ରେ ଜନ୍ମ, ୧୯୦୧ ମସିହା ଜାନୁଆରୀ ୧୬ ରେ ମୃତ୍ୟୁ, ସେ ୫୯ ବର୍ଷ ଜୀବିତ ଥିଲେ । ସେ ନିଜ ଯୋଗ୍ୟତା ଗୁଣରେ ଜଜ୍ ହୋଇଥିଲେ । ସେ ଗୋପାଳକୃଷ୍ଣ ଗୋଖେଲେଙ୍କର ରାଜନୈତିକ ଗୁରୁ ଥିଲେ ।

**ପଣ୍ଡିତ ଅଯୋଧ୍ୟା ନାଥ**—୧୮୪୦ ମସିହା ଅପ୍ରେଲ ତା ୮ ରିଖରେ ଜନ୍ମ । ୧୮୯୨ ମସିହା ଜାନୁଆରୀ ତା ୧୧ ରିଖରେ ମୃତ୍ୟୁ । କଂଗ୍ରେସର ୪ର୍ଥ ଅଧିବେଶନ ଲର୍ଡ ଡଫରିନ ବିରୋଧୀ ହେଲେ । ଏ ମହାଶୟ ନ ଥିଲେ ସେ ବର୍ଷ କଂଗ୍ରେସ ହୋଇପାରି ନ ଥାନ୍ତା । ତାଙ୍କର ଏକ ପୁତ୍ର ପଣ୍ଡିତ ହୃଦୟନାଥ କୁଞ୍ଜରୁ ଭାରତ ସେବକ ସମିତିର ଉପ-ସଭାପତି ଅଛନ୍ତି ।

**ରାସବିହାରୀ ଘୋଷ**—୧୮୪୫ ମସିହା ଡିସେମ୍ବର ୨୩ ରେ ଜନ୍ମ । ଜୀବିତ କାଳ ୭୬ ବର୍ଷ । ସେ ୧୯୨୧ ମସିହାରେ ସ୍ୱର୍ଗବାସୀ ହେଲେ । ସେ ବଡ଼ ଦାତା ଏବଂ ଆଇନ ବିଦ୍ୟାରେ ବିଶେଷ ଦକ୍ଷ ଥିଲେ । କଂଗ୍ରେସରେ ଏହାଙ୍କର କାର୍ଯ୍ୟ ସାମାନ୍ୟ ନୁହେ । କଲିକତା ବିଶ୍ୱବିଦ୍ୟାଳୟକୁ ଏହାଙ୍କର ମହତ୍‌ଦାନ ଚିରସ୍ମରଣୀୟ ରହିବ ।

**ଏନ୍. ସି. କେଲ୍‌କାର**—୧୮୭୨ ରେ ଜନ୍ମ । ସ୍ୱର୍ଗୀୟ ବାଳଗଙ୍ଗାଧର ତିଳକଙ୍କର ରାଜନୈତିକ ଶିଷ୍ୟ-ଲେଜିସ୍ଲେଟିଭ ଏସେମ୍ବ୍ଲି ଓ ବୋମ୍ବାଇ କାଉନ୍‌ସିଲର ମେମ୍ବର-ଦାୟିତ୍ୱପୂର୍ଣ୍ଣଦଳର ପ୍ରଧାନ ମେମ୍ବର । ହିନ୍ଦୁ ମହାସଭାର ପ୍ରେସିଡେଣ୍ଟ—'କେଶରୀ' ପତ୍ରିକାର ସମ୍ପାଦକ—ପୁନା ମ୍ୟୁନିସିପାଲିଟିର ସଭାପତି ( ୧୯୧୮, ୧୯୨୨-୨୪ )।

**ପଣ୍ଡିତ ଜହରଲାଲ ନେହେରୁ**— ମୋତିଲାଲ ନେହେରୁଙ୍କ ସୁଯୋଗ୍ୟ ପୁତ୍ର । ଏଲାହାବାଦରେ ୧୮୮୯ ରେ ଜନ୍ମ । ହାରୋ ସ୍କୁଲ୍ ଓ କେମ୍ବ୍ରିଜର ଟ୍ରିନିଟି କଲେଜରେ ଶିକ୍ଷା—ବାରିଷ୍ଟର-ଭାରତ ମହାସଭାର ପ୍ରଧାନ ସେକ୍ରେଟେରୀ । ୧୯୨୯-୩୦ କଂଗ୍ରେସର ସଭାପତି । କଂଗ୍ରେସ ଓ ଅସହଯୋଗ ଆନ୍ଦୋଳନ ପାଇଁ କେତେଥର ବନ୍ଦୀ । ସାମ୍ୟବାଦ ମତର ସେ ପ୍ରଧାନ ପଥ ପ୍ରଦର୍ଶକ । ପୁଣି ନିର୍ଭୀକତା ଓ ତ୍ୟାଗର ଚୂଡ଼ାନ୍ତ ଦେଖାଇଛନ୍ତି । ବର୍ତ୍ତମାନ ଜେଲରେ ।

**ଏସ୍. ସତ୍ୟମୂର୍ତ୍ତି—ବି. ଏ. ବି. ଏଲ୍.**— ମାନ୍ଦ୍ରାଜ୍ ଲେଜିସ୍ଲେଟିଭ କାଉନ୍‌ସିଲର ମେମ୍ବର-ଦକ୍ଷ ରାଜନୀତିଜ୍ଞ-କଂଗ୍ରେସର ଲୋକ । ଦାକ୍ଷିଣାତ୍ୟରେ କଂଗ୍ରେସ ଆନ୍ଦୋଳନର ନେତା । ଦେଶପାଇଁ କେତେଥର ବନ୍ଦୀ ।

ନ ମିଳଇ ଅନ୍ନ କଣିକା ନିଶ୍ଚେ ଜାଣିଥା ମନ ।

**ସାର୍ ଏନ୍. ଏନ୍ ସରକାର** Kt. ବାରିଷ୍ଟର- ଜଣେ ମୁନସିଫ୍ ହୋଇ କାର୍ଯ୍ୟ ଆରମ୍ଭ କଲେ। ଇଂଲଣ୍ଡ ଯାଇ ବାରିଷ୍ଟର ପାସ କଲେ । କଲିକତା ହାଇକୋର୍ଟରେ ଯୋଗ-ଦେଲେ। ଅଳ୍ପ କେତେକ ବର୍ଷରେ ଜଣେ ପ୍ରଧାନ ଏଡ୍-ଭୋକେଟ୍ ହେଲେ । ୨କତେକବର୍ଷ ବଙ୍ଗର ଏଡ୍‌ଭୋକେଟ୍ ଜେନେରେଲ ହେଲେ। ସର୍ବସାଧାରଣଙ୍କ କାର୍ଯ୍ୟରେ ହିତ ସାଧନ କରି ଖ୍ୟାତିଲାଭ କଲେ । ବଙ୍ଗର ହିନ୍ଦୁ ପ୍ରତିନିଧି ସ୍ୱରୂପ ୩ୟ ଗୋଲଟେବୁଲ ବୈଠକକୁ ଯାଇଥିଲେ । ସେ ଜଣେ ଚତୁର ତାର୍କିକ-ସମ୍ପ୍ରତି ଭାରତ ସରକାରଙ୍କ ଆଇନ ମେମ୍ବର ।

**ମହମ୍ମଦ୍ ଅଲି ଜିନ୍ନା**—ବାରିଷ୍ଟର । ବୋମ୍ବାଇ ହାଇକୋର୍ଟର ଜଣେ ପ୍ରଧାନ ଆଇନ ବ୍ୟବସାୟୀ । ମୁସଲମାନ ସମାଜର ରାଜନୈତିକ ନେତା । ୧୯୧° ରୁ ପ୍ରଧାନ ଲେଜି-ସ୍ଲେଟିଭ୍ କାଉନ୍‌ସିଲର ମେମ୍ବର । ଦାଦାଭାଇ ନୌରଜିଙ୍କ-ଠାରୁ ରାଜନୀତି ଶିକ୍ଷା ଓ ୧୯°୬ ରେ ତାଙ୍କର ସେକ୍ରେଟରୀ-ରୂପରେ ଜାତୀୟ ମହାସଭାରେ ଯୋଗଦାନ କରି ଜଣେ ପ୍ରଧାନ ମେମ୍ବର ହୋଇ ସରକାରଙ୍କୁ ବିଶେଷରୂପେ ସମାଲୋଚନା କରିଥିଲେ-ରାଓଲେଟ୍ ଆକ୍‌ଟର ପ୍ରତିବାଦ କରି ଲେଜିସ୍ଲେଟିଭ କାଉନ୍‌ସିଲର ମେମ୍ବର ପଦ ତ୍ୟାଗ କଲେ । କଂଗ୍ରେସ ତ୍ୟାଗ All India Moselm League ର ପ୍ରଧାନ ମେମ୍ବର କମ୍ୟୁନେଲିଜିମ୍ (Communalism) ସୋ ୨ ଶତ୍ରୁ । ଗୋଲ-ଟେବୁଲ ବୈଠକର ଜଣେ ମେମ୍ବର ।

**ସି. ୱାଇ. ଚିନ୍ତାମଣି**—
ଏଲାହାବାଦର 'ଲିଡ଼ର' ନାମକ ପତ୍ରିକାର ପ୍ରଧାନ ସମ୍ପାଦକ, ଇଉ. ପି ଲେଜିସ୍ଲେଟିଭ୍ କାଉନ୍‌ସିଲର କେତେ ଥର ମେମ୍ବର ଓ ୧୯୨୧-୨୩ ରେ ଇଉ. ପି. ଗଭର୍ଣ୍ଣମେଣ୍ଟର ଶିକ୍ଷା ତଥା ଶିଳ୍ପ ବିଭାଗର ମନ୍ତ୍ରୀ। ୨ୟ ବାର ଗୋଲଟେବୁଲ ବୈଠକର ପ୍ରତିନିଧି । ଜାତୀୟ ଲିବରେଲ ଦଳର ଜଣେ ବିଶିଷ୍ଟ ସଭ୍ୟ ।

**ସାର୍ ତେଜବାହାଦୂର ସାପ୍ରୁ** Kt—
୧୮୭୫ ଡିସେମ୍ବରରେ ଜନ୍ମ। ଇଉ. ପି ଲେଜିସ୍ଲେଟିଭ୍ କାଉ-ନ୍ସିଲର ମେମ୍ବର । ଭାରତର ଜାତୀୟ କଂଗ୍ରେସ ୨୫ଶ ଅଧି-ବେଶନର ସେକ୍ରେଟେରୀ । ଇମ୍ପିରିଏଲ ଲେଜିସ୍ଲେଟିଭ କାଉନ୍-ସିଲର ମେମ୍ବର । ୧୯୨°--୨୨ ଭାରତ ଗଭର୍ଣ୍ଣମେଣ୍ଟଙ୍କ ଆଇନ ମେମ୍ବର । ଲିବାରେଲ ଦଳର ଜଣେ ବିଶିଷ୍ଟ ମେମ୍ବର । ୧ମ, ୨ୟ ଓ ୩ୟ ଗୋଲଟେବୁଲ ବୈଠକର ମେମ୍ବର ।

**ମୌଲାନା ସୌକତଅଲି**—
ଅଲିଗଡ଼ର M. A. O. କଲେଜରେ ଶିକ୍ଷାପ୍ରାପ୍ତ । ସରକାରଙ୍କ ଅଫିମ ବିଭାଗରେ ୧୫ ବର୍ଷ କାର୍ଯ୍ୟ । ନଜରବନ୍ଦୀ-ଖିଲାଫତ୍ ଆନ୍ଦୋଳନ ଓ ସତ୍ୟାଗ୍ରହ ଆନ୍ଦୋଳନର ପ୍ରଧାନ ନେତା । (୧୯୧୯—୨°). କଂଗ୍ରେସ ତ୍ୟାଗ-All India Moslem Conference ର ବିଶିଷ୍ଟ ନେତା ।

**ସାର୍ ଯଦୁନାଥ ସରକାର**—Kt.
C. I. E., M. A. (୧୮୯୨.) ଇଂରାଜୀରେ ୧ମ ଶ୍ରେଣୀ) ସ୍ୱର୍ଣ୍ଣପଦକ ଓ ପୁରସ୍କାର ପ୍ରାପ୍ତ । P. R. S. ( ମାଉଟ ପଦକ ପ୍ରାପ୍ତ ) ୧୮୯୬ । ମେଟ୍ରୋପୋଲିଟନ ଇନ୍‌ଷ୍ଟିଟିଉସନର ଅଧ୍ୟାପକ ୧୮୯୩ । ୧୮୯୮ ଜୁନ ଠାରୁ ୧୮୯୯ ଜୁନ ଏବଂ ୧୯°୧ ଜୁନଠାରୁ ଡିସେମ୍ବର ପର୍ଯ୍ୟନ୍ତ ପ୍ରେସିଡେନ୍ସି କଲେଜର ଅଧ୍ୟାପକ । ୧୮୯୯ରୁ ୧୯୧୭ ପର୍ଯ୍ୟନ୍ତ ପାଟଣା କଲେଜ ଓ ୧୯୧୭ ରୁ ୧୯୧୯ ବନାରସ ହିନ୍ଦୁବିଶ୍ୱବିଦ୍ୟାଳୟର ଅଧ୍ୟାପକ ଭାରତଇତିହାସ ବିଭାଗର ସେନାପତି । ୧୯୧୮ ରେ I. E. S. ରେ ପ୍ରବେଶ । ୧୯୧୯-୧୯୨୩ କଟକ ରେଭେନ୍‌ସା କଲେଜ-୧୯୨୩—୧୯୨୬ ପୁଣି ପାଟଣା କଲେଜ । ୧୯୨୬ ରେ C. I. E. । ୧୯୨୬-୨୭ କଲିକତା ବିଶ୍ୱବିଦ୍ୟାଳୟର ଭାଇସ୍‌ଚାନ୍‌ସଲର—ରୟେଲ୍ ଏସିଆଟିକ ସୋସାଇଟିର ଅବୈତନିକ ଫେଲୋ—ପ୍ରଧାନ ଐତିହାସିକ—ଐତିହାସିକ ରେକର୍ଡ କମିସନର ମେମ୍ବର । ସର ଉଇଲିୟମ ମେୟର୍ ଲେକ୍‌ଚରର ( ମାନ୍ଦ୍ରାଜ ବିଶ୍ୱବିଦ୍ୟାଳୟ )—ଭାରତ ଇତି-ହାସରେ ମୁସଲମାନ ରାଜତ୍ୱରେ ବିଧିସମ୍ମତ ଅଧିକାରୀ । 'ଆଉ-ରଙ୍ଗଜେବ' "ଶିବାଜି" "ଫଲ ଅଫ ମୋଗଲ ଏମ୍ପାୟର" ପ୍ରଭୃତିର ଲେଖକ ।

**ଡାକ୍ତର ବି. ଆର୍. ଆମ୍ବେଦକାର**—
ଘୋର ହିନ୍ଦୁକୁଳରେ ଜାତ । ବରୋଦାର ଗାଇକୁଆଡ଼ଙ୍କ ବୃତ୍ତି ପାଇ କଲମ୍ବିଆରେ ଅର୍ଥନୀତି ଓ ସମାଜତତ୍ତ୍ୱ ( Sociologie ).

ଅଧ୍ୟୟନ । ପରୀକ୍ଷାରେ କୃତକାର୍ଯ୍ୟ ହୋଇ ଲଣ୍ଡନରେ ଏକବର୍ଷ ରହି ଇଣ୍ଡିଆ ଅଫିସ ଲାଇବ୍ରେରୀରେ ଗବେଷଣା କାର୍ଯ୍ୟ କରି ୧୯୧୬ ରେ ଭାରତକୁ ଫେରି ଆସିଲେ । ଅର୍ଥନୀତି ଓ ଜାତି ସମ୍ବନ୍ଧରେ ବହି ଲେଖିଲେ । ଦଳିତ ଜାତି ପାଇଁ ସ୍କୁଲ ବସାଇଲେ ଓ ସେମାନଙ୍କ ଉନ୍ନତି ପାଇଁ ଆନ୍ଦୋଳନ କଲେ । ବୋମ୍ବାଇ ଲେଜିସ୍ଲେଟିଭ କାଉନ୍ସିଲରେ ମନୋନୀତ ମେମ୍ବର ଥିଲେ ।

**ଉଦୟ ଶଙ୍କର**—୧୯୦୦ ମସିହା ଡିସେମ୍ବର ୮ ତାରିଖରେ ଉଦୟପୁରରେ ଜନ୍ମ ଗ୍ରହଣ କରିଥିଲେ । ସେ ୧୭ ବର୍ଷ ବୟସରେ ବୋମ୍ବେରେ ଥିବା ସର୍ ଜେ. ଜେ. କଲେଜରେ ଚିତ୍ରବିଦ୍ୟା ଶିକ୍ଷା କରିଥିଲେ । ତଦନନ୍ତର ସେ ଲଣ୍ଡନରେ ଥିବା ରୟେଲ ଆର୍ଟସ୍ କଲେଜରେ ଶିକ୍ଷା ପ୍ରାପ୍ତ ହୋଇଥିଲେ । ସେ ପେଭ୍ଲୋଭା ନାମ୍ନୀ ଗୋଟିଏ ଜଗଦ୍-ବିଖ୍ୟାତ ରୁଷୀୟ ନର୍ତ୍ତକୀଙ୍କ ସହିତ ଯୋଗଦାନ କରି ତାଙ୍କୁ ବ୍ୟାଲେ ନୃତ୍ୟରେ ବହୁତ ସାହାଯ୍ୟ କରିଥିଲେ ଓ ଏଥିରେ କୃତକାର୍ଯ୍ୟ ହୋଇ ପେଭ୍ଲୋଭାଙ୍କ ସଙ୍ଗରେ ଆମେରିକା ଯାଇଥିଲେ । ୧୯୨୫ ରେ ପ୍ୟାରିସ୍ ସହରରେ ଆଶ୍ଚର୍ଯ୍ୟ ଜନକ ନୃତ୍ୟ ଦେଖାଇ ଲୋକମାନଙ୍କୁ ଆନନ୍ଦିତ କରିଥିଲେ । ବର୍ଲିନ୍, ପାରିସ୍, ଭିଏନା, ବୁଡ଼ାପେଷ୍ଟ ପ୍ରଭୃତି ନାନାସ୍ଥାନରେ ତାଙ୍କର ଖ୍ୟାତି ବଢ଼ିବାକୁ ଲାଗିଲା । ୧୯୨୧ ରେ ଭାରତବର୍ଷରେ ବିଶେଷତଃ କଲିକତାଠାରେ ଲୋକମାନେ ଖୁବ୍ ଆନନ୍ଦ ସହକାରେ ତାଙ୍କର ଅଭ୍ୟର୍ଥନା କରିଥିଲେ । ତାହାପରେ ସେ ଅନେକ ଲୋକ ସହିତ ଇଉରୋପ ଏବଂ ଆମେରିକା ଯାଇଥିଲେ । ତତ୍ପରେ ସେ ୧୯୩୮ ମସିହାରେ ଭାରତକୁ ଫେରିଆସି ସେଠାରେ ଅଭ୍ୟର୍ଥିତ ହୋଇଥିଲେ ।

**ସୁଭାଷଚନ୍ଦ୍ର ବୋଷ**—ସେ ୧୯୧୩-୧୪ ରେ ପ୍ରେସିଡେନ୍ସି କଲେଜ ଇଉନିୟନର ସେକ୍ରେଟେରି ଥିଲେ । ୧୯୧୯ ରେ ବି, ଏ, ପାସ୍ କରି ଦର୍ଶନ-ଶାସ୍ତ୍ରରେ ପ୍ରଥମବିଭାଗରେ ୨ୟସ୍ଥାନ ଅଧିକାର କରିଥିଲେ । ୧୯୧୯-୨୧ ପର୍ଯ୍ୟନ୍ତ ସେ କେମ୍ବ୍ରିଜରେ ଅଧ୍ୟୟନ କରି ୧୯୨୦ ରେ ଆଇ. ସି. ଏସ୍. ପରୀକ୍ଷାରେ ଉତ୍ତୀର୍ଣ୍ଣ ହୋଇ ୪ର୍ଥସ୍ଥାନ ଅଧିକାର କରିଥିଲେ ଏବଂ ଇଂରେଜୀ ରଚନାରେ ପ୍ରଥମ ହୋଇଥିଲେ । ୧୯୨୧ ରେ ବି, ଏ, (Cantab) ଲଣ୍ଡନରେ ଥିବା ସମୟରେ I. C. S. ଇସ୍ତଫା ଦେଇଥିଲେ । ସେ ଉତ୍ତର ବଙ୍ଗ ବନ୍ୟା ସମୟରେ ବହୁତ ସାହାଯ୍ୟ କରିଥିଲେ, ୧୯୨୩ରେ ଫରୱାର୍ଡର ପରିଚାଳକ ଓ ୧୯୨୪ ରେ କଲିକତା କର୍ପୋରେସନ୍‌ର ପ୍ରଧାନ ଏକ୍ଜିକ୍ୟୁଟିଭ୍ ଅଫିସର ହୋଇଥିଲେ ଏବଂ ସି. ଆର୍. ଦାସଙ୍କର ପ୍ରଧାନ ମନ୍ତ୍ରଣାଦାତା ଥିଲେ । ସେ ଯୁବକ ରାଜନୀତିଜ୍ଞମାନଙ୍କ ମଧ୍ୟରେ ପ୍ରଧାନନେତା ଏବଂ ବେଙ୍ଗଲ କଂଗ୍ରେସର ନେତା ବୋଲି ସମସ୍ତେ ତାଙ୍କୁ ସ୍ୱୀକାର କରୁଥିଲେ । ସେ ବହୁଥର କାରାରୁଦ୍ଧ ହୋଇଥିଲେ କିନ୍ତୁ ଅସୁସ୍ଥତା ହେତୁ ଇଉରୋପକୁ ଯାଇ ମୁକ୍ତ ହୋଇଅଛନ୍ତି । ସେ ମହାନ ଶଦ୍ଧ କଟକର ସୁବିଖ୍ୟାତ ଉକିଲ ଜାନକୀ ବାବୁଙ୍କ ପୁତ୍ର ଅଟନ୍ତି । ସେ ପ୍ରଥମେ କଟକ ପି. ଏମ୍. ଏକାଡେମୀରେ ଅଧ୍ୟୟନ କରି ପାଟନା ବିଶ୍ୱବିଦ୍ୟାଳୟରେ ପ୍ରବେଶିକା ପରୀକ୍ଷାରେ 'ଦ୍ୱିତୀୟ' ସ୍ଥାନ ଅଧିକାର କରିଥିଲେ ।

**ରମେଶଚନ୍ଦ୍ର ବନ୍ଦୋପାଧ୍ୟାୟ**—ଜନ୍ମ ୧୮୪୪ ଡିସେମ୍ବର ମାସରେ ଓ ମୃତ୍ୟୁ ୧୯୦୬ ଜୁଲାଇ ତା ୨୧ ରିଖରେ । ଏ ଜଣେ ସୁବକ୍ତା ଓ ସୁଲେଖକ ।

**ଦାଦାଭାଇ ନୌରଜୀ**—୧୮୨୫ ମସିହା ସେପ୍ଟେମ୍ବର ତା ୪ ରିଖରେ ଜନ୍ମ । ଜୀବିତ କାଳ ୯୨ବର୍ଷ । ମୃତ୍ୟୁ ୧୯୧୭ ମସିହାରେ । ଏ 'ସ୍ୱରାଜ' ଶବ୍ଦର ଜନ୍ମଦାତା । ଜାତିରେ ପାର୍ଶୀ । ନିଜ ଗୁଣରେ ପାର୍ଲିଆମେଣ୍ଟର ସଭ୍ୟ ହୋଇଥିଲେ ।

**ସର୍ ସୟଦ ଅହମଦ ଖାଁ**—୧୮୧୭ ମସିହାରେ ଦିଲ୍ଲୀରେ ଜାତ ହୋଇଥିଲେ । ଅଲିଗଡ଼ରେ ଏକ ମୁସଲମାନ ବିଶ୍ୱବିଦ୍ୟାଳୟ ବସାଇଥିଲେ । ସେ ମାତାଙ୍କୁ ବଡ଼ ଭକ୍ତି କରୁଥିଲେ ।

**ସର୍ ଗୁରୁଦାସ ବନ୍ଦୋପାଧ୍ୟାୟ**—୧୮୪୪ ମସିହା ଜାନୁୟାରୀ ୨୬ ତାରିଖରେ ଜନ୍ମ ଗ୍ରହଣ କରିଥିଲେ । ମୃତ୍ୟୁ ୧୯୧୮ ମସିହାରେ । ଜୀବିତ କାଳ ୭୨ବର୍ଷ । ସେ ଜଣେ ବିଦ୍ୱାନ୍ ଓ ବିଚକ୍ଷଣ ଜଜ ଏବଂ ଅସାଧାରଣ ମାତୃଭକ୍ତ ଥିଲେ । ହିନ୍ଦୁଧର୍ମମର୍ମାନୁସାରେ ସେ ବେଶେ ପବିତ୍ର ଓ ସରଳ ଭାବରେ ଚଳୁଥିଲେ ।



ଭଗବଦ୍ଗୁରୁ ଶ୍ରୀମତ୍ ଶଙ୍କରାଚାର୍ଯ୍ୟ



ମହାମହୋପାଧ୍ୟାୟ ସାମନ୍ତ ଶ୍ରୀ ଚନ୍ଦ୍ରଶେଖର ସିଂହ

(ପଠାଣି ସାମନ୍ତ)

**ମହାମହୋପାଧ୍ୟାୟ ଚନ୍ଦ୍ରଶେଖର ସିଂହ ସାମନ୍ତ**—ଏ ମହାଶୟ ଖଣ୍ଡପଡ଼ା ରାଜବଂଶରେ ୧୮୩୫ ସାଲ ପୌଷ କୃଷ୍ଣାଷ୍ଟମୀରେ ଜନ୍ମ ହୋଇଥିଲେ । ପିତାଙ୍କ ନାମ-ଶ୍ୟାମବନ୍ଧୁ ସିଂହ, ମାତାଙ୍କ ନାମ ବିଷ୍ଣୁମାଳୀ । ଅପଭ୍ରଂଶ ନାମ 'ପଠାଣି ସାମନ୍ତ' । ଘରେ ପ୍ରାଥମିକ ଓଡ଼ିଆ ତଥା ସଂସ୍କୃତ ଶିକ୍ଷା-ବ୍ୟାକରଣ, କାବ୍ୟ, ନାଟକ, ଅଳଙ୍କାର ଓ ସ୍ମୃତିରେ ଅଗାଧ ପାଣ୍ଡିତ୍ୟ ଲାଭ । ୧୦ମ ବର୍ଷ ବୟସରେ ପିତାଙ୍କଠାରୁ ଗ୍ରହ ନକ୍ଷତ୍ରମାନଙ୍କର ପରିଚୟ ସମ୍ବନ୍ଧ ଶିକ୍ଷା ଓ ଫଳିତ ଜ୍ୟୋତିଷ ଏବଂ ୧୫ଶ ବର୍ଷ ବୟସରେ ଗଣିତ ଜ୍ୟୋତିଷର ଆଲୋଚନା । ଗ୍ରହମାନଙ୍କର ଉଦୟାସ୍ତ ପରୀକ୍ଷଣ ପାଇଁ ଯନ୍ତ୍ର ନିର୍ମାଣ, ପ୍ରାଚୀନ ସିଦ୍ଧାନ୍ତ ସହିତ ନିଜର ଦୈନନ୍ଦିନ ଲିପିର ଅସାମଞ୍ଜସ୍ୟ ଦେଖି ସହିଁରେ ନିଜର ସିଦ୍ଧାନ୍ତ ଲିପିବଦ୍ଧ କଲେ ତାହାର ନାମ 'ସିଦ୍ଧାନ୍ତ ଦର୍ପଣ' । ଏ।୨୦ ବର୍ଷ ଅଧ୍ୟବସାୟର ଫଳ (୧୮୬୦-୭୦) । ନିଜ ପ୍ରତିଭା ବଳରେ 'ବିଲାତରେ ଗ୍ରହଣ' ଦେଖାଇ ସୁଦୂର ଇଉରୋପରେ ସୁପରିଚିତ । ଖଣ୍ଡପଡ଼ାଠାରୁ ପୁଣି ୧୫୧୬୦୦ ପାହ୍ନଣ୍ଡ ବାଟ-ଏହିପରି ନଦୀ, ପର୍ବତ ପ୍ରଭୃତିର ଦୂରତା ଓ ଉଚ୍ଚତା ସ୍ଥିରକରି ପାରୁଥିଲେ । ୧୮୯୩ରେ ଗଭର୍ଣ୍ଣମେଣ୍ଟଙ୍କଠାରୁ 'ମହାମହୋପାଧ୍ୟାୟ' ଉପାଧି ଓ ପରେ ମାସିକ ୫୦୦ ବୃତ୍ତିଲାଭ । ମାନଯନ୍ତ୍ର, ଶଙ୍କୁଯନ୍ତ୍ର, ଖଗୋଳ ପ୍ରଭୃତି ଉଦ୍ଭାବନ-ଖଣ୍ଡପଡ଼ା ରାଜାଙ୍କର ବିରାଗଭାଜନ ଓ ଜନ୍ମଭୂମିରେ ବୋଲି ନିର୍ଭୀକ । ସ୍ମାର୍ତ୍ତ ବୈଷ୍ଣବ ଧର୍ମାବଲମ୍ବୀ ଓ ଅତିବଡ଼ ସମ୍ପ୍ରଦାୟ ଭକ୍ତ । ଦୈନିକ ଖାଦ୍ୟ ଦିବସରେ କୁଷ୍ମାଣ୍ଡ ଏକ ୨୫ ଟଙ୍କା ଓ ରାତିରେ ୧୪ ଗୁଣ୍ଡା । ହିନ୍ଦୁଶାସ୍ତ୍ର ଓ ସ୍ମୃତି ଅନୁସାରେ ଜୀବନ ଯାପନ କରି ତା ୧୧।୬।୧୯୦୪ ରିଖ ଜ୍ୟେଷ୍ଠ କୃଷ୍ଣ ଦ୍ୱାଦଶୀ ଦିନ ପୁଷ୍ପରେ ମାଳାଚଳକୁ ଗ୍ରହିଁ ଜଗନ୍ନାଥଙ୍କ ନାମ ଜପ କରୁଁ କରୁଁ ସ୍ୱର୍ଗାରୋହଣ । ଏହାଙ୍କ ଗଣନା ଦୃକ୍‌ସିଦ୍ଧ ଓ ତଦନୁଯାୟୀ ଓଡ଼ିଶାର ପଞ୍ଜିକା ପ୍ରସ୍ତୁତ ହେଉଛି । ସେ ପ୍ରାଚୀନ ସାହିତ୍ୟର ସମ୍ୟକ୍ ଆଲୋଚନା କରିଥିଲେ । ସଂସ୍କୃତରେ 'ସିଦ୍ଧାନ୍ତ ଦର୍ପଣ' ଓ ଓଡ଼ିଆରେ 'ଦର୍ପଣ ସାର' ଏହାଙ୍କର ରଚନା । ଏହାଙ୍କୁ ଭାରତର ଦ୍ୱିତୀୟ ଭାସ୍କର କହନ୍ତି ।

**ରମେଶଚନ୍ଦ୍ର ଦତ୍ତ ସି. ଆଇ. ଇ.**—୧୮୪୮ ମସିହାରେ ଜନ୍ମ । ୧୯୦୯ ରେ ମୃତ୍ୟୁ । ସେ ଓଡ଼ିଶାର କମିଶନର ଥିଲେ । ତାଙ୍କର ବଙ୍ଗ ସାହିତ୍ୟ ଓ ଇଂରେଜୀ ଇତିହାସ ପ୍ରଭୃତିର ଲେଖା ଅତି ସୁନ୍ଦର ।

**ସୁରେନ୍ଦ୍ରନାଥ ବନ୍ଦୋପାଧ୍ୟାୟ**—୧୮୪୮ ମସିହାରେ ଜନ୍ମଗ୍ରହଣ କରିଥିଲେ । ସେ ବିଲାତ ଯାଇ ଆଇ. ସି. ଏସ୍. ପାଶ୍ କରିଥିଲେ । ସରକାର ତାଙ୍କୁ ବରଖାସ୍ତ କରି ମାସକୁ ୫୦୦୲ ବେତନ ଦେଲେ । ବଙ୍ଗ ବିଚ୍ଛେଦ ସମ୍ବନ୍ଧରେ ସେ ସ୍ଥାନୀୟ ଥିଲେ । ସେ ବଙ୍ଗର ମନ୍ତ୍ରୀ ହୋଇ କଲିକତା କର୍ପୋରେଶନକୁ ଦେଶୀୟ ଲୋକଙ୍କର ହାତକୁ ଦେଲେ । ଶେଷ ଜୀବନରେ କଂଗ୍ରେସ୍ ଆନ୍ଦୋଳନରୁ ବିଚ୍ଛିନ୍ନ ହୋଇ ସରକାର ସହିତ ସହଯୋଗ କରିବାରୁ ସେ ନିଜର ଲୋକପ୍ରିୟତା ହରାଇଥିଲେ ।

**କାଶୀନାଥ ତ୍ରିମ୍ବକ ତେଲଙ୍ଗ**—୧୮୫୦ ମସିହା ଅଗଷ୍ଟ ତା ୩୦ ରିଖରେ ଜନ୍ମ । ୧୮୯୩ ମସିହା ସେପ୍ଟେମ୍ବର ତା ୧ ରିଖରେ ମୃତ୍ୟୁ । ସେ ଯେପରି ବୁଦ୍ଧିମାନ୍ ଓ ବିଦ୍ୱାନ୍ ସେହିପରି ଦେଶହିତୈଷୀ ଓ ସୁବକ୍ତା ଥିଲେ ।

**ବାଳଗଙ୍ଗାଧର ତିଳକ**—୧୮୫୬ ମସିହା ଜୁଲାଇ ତା ୨୩ ରିଖରେ ଜନ୍ମଗ୍ରହଣ କରିଥିଲେ । ମୃତ୍ୟୁ-୧୯୨୦ ମସିହା ଜୁଲାଇ ତା ୩୧ ରିଖରେ । ସେ ସ୍ୱଦେଶପ୍ରେମିକ ଥିଲେ ଏବଂ ସ୍ୱଦେଶ ପାଇଁ ୩ ଥର ଜେଲ ଯାଇଥିଲେ । ସଂସ୍କୃତ ଭାଷା ଏବଂ ଇତିହାସ ଓ ପ୍ରତ୍ନତତ୍ତ୍ୱ ବିଷୟରେ ସେ ଜଣେ ଅଦ୍ୱିତୀୟ ପଣ୍ଡିତ ଥିଲେ । ସେ ଗୀତାର ଯେଉଁ ଭାଷ୍ୟ ଲେଖିଛନ୍ତି ତାହା ଅମୂଲ୍ୟ । ସ୍ୱଦେଶରେ ସମ୍ମାନ ଓ ବିଦେଶରେ ଯଶ ଅର୍ଜନ କରି ଜନ୍ମଭୂମିର ଗୌରବ ବଢ଼ାଇଛନ୍ତି । ତିଳକ ପ୍ରକୃତରେ ଭାରତ ମସ୍ତକର ତିଳକ ସ୍ୱରୂପ ଥିଲେ । ଫର୍ଗୁସନ କଲେଜ ଏହାଙ୍କ ଯତ୍ନରେ ପ୍ରତିଷ୍ଠିତ, ଫର୍ଗୁସେନ କଲେଜରେ ଅଧ୍ୟାପକ—ଉତ୍ତର ମେରୁରେ ବୈଦିକ ନିବାସ ( Artic House of the Vedas ) ଓ 'ଓରାୟନ୍'ର ଲେଖକ କେଶରୀ ଓ ମରହଟ୍ଟା ପତ୍ରିକାର ସମ୍ପାଦକ-ନିସ୍ବାର୍ଥ କର୍ମୀ ଓ ତାହାଙ୍କର ଚରିତ୍ର ନିଷ୍କଳଙ୍କ ଥିଲା ।

ଜଳହିକୁ କ୍ଷୁଦ୍ର ବୋଲି ନ କରିବ ମନେ । ଦାବାନଳ ଜଳେ କ୍ଷୁଦ୍ର ତରୁ ସଂଘର୍ଷଣେ ॥

**ମହାତ୍ମା ଗାନ୍ଧି**—୧୮୬୯ ଖ୍ରୀଷ୍ଟାବ୍ଦ ଅକ୍ଟୋବର ତା ୨ ରିଖରେ ଜନ୍ମଗ୍ରହଣ କରିଥିଲେ । ଏହାଙ୍କର ପୂର୍ଣ୍ଣ ନାମ 'ମୋହନ ଦାସ କର୍ମଚାନ୍ଦ ଗାନ୍ଧି' । ସେ ବିଲାତ ଯାଇ ବାରିଷ୍ଟରୀ ପାସ କରିଥିଲେ ଓ ଦକ୍ଷିଣ ଆଫ୍ରିକାରେ ଆଇନ ବ୍ୟବସାୟ ଆରମ୍ଭ କରିଥିଲେ । ସେ ଧନୀ ଓ ବିଦ୍ୱାନ୍ । ପ୍ରଥମେ ସେ ଦକ୍ଷିଣ ଆଫ୍ରିକାରେ ଆଫ୍ରିକାବାସୀ ଭାରତୀୟମାନଙ୍କର ଦୁଃଖକଷ୍ଟ ମୋଚନ ପାଇଁ ଓ ଦ୍ୱିତୀୟରେ ଚମ୍ପାରଣରେ ନୀଳଚାଷ ଆନ୍ଦୋଳନ ସମ୍ବନ୍ଧରେ ନିଜର କୃତିତ୍ୱ ଦେଖାଇଥିଲେ । ତାଙ୍କର ସ୍ୱଭାବ ଓ କାର୍ଯ୍ୟ ଯୋଗୁଁ ଭାରତ ତାଙ୍କୁ ବିଶ୍ୱାସ କଲା । ଆଜି ସେ ପୃଥିବୀରେ ସର୍ବଶ୍ରେଷ୍ଠ ମାନବ । ଭାରତର ବର୍ତ୍ତମାନ ମହା ଆନ୍ଦୋଳନ ଅସହଯୋଗ ନୀତିର ସେ ଜନ୍ମଦାତା । ଦକ୍ଷିଣ ଆମେରିକାରେ ବୋର ଯୁଦ୍ଧ ଓ ଜୁଲୁ ଯୁଦ୍ଧ ସମୟରେ ଭାରତୀୟ ଯୁଦ୍ଧରେ ଆହତ ସୈନ୍ୟମାନଙ୍କର ଚିକିତ୍ସାଗାର ସ୍ୱରୂପ ବ୍ୟବହୃତ ଶକଟ Corps ତାଙ୍କ ଜିମାରେ ଥିଲା । ୧୯୧୫—୧୬ ରେ ସେ ସତ୍ୟାଗ୍ରହ ଓ ୧୯୨୦ ରେ ଅସହଯୋଗ ଆନ୍ଦୋଳନ ଆରମ୍ଭ କରି ସରକାରଙ୍କ ପ୍ରତି ଅଭକ୍ତିର ଉତ୍ତେଜନା ପାଇଁ ୧୯୨୨ ମାର୍ଚ୍ଚ ୧୮ ତାରିଖରେ ବିନା ପରିଶ୍ରମରେ ୬ ବର୍ଷ କାରାଦଣ୍ଡ ପାଇଥିଲେ । ମାତ୍ର ୧୯୨୪ ଫେବୃୟାରୀ ତା ୪ ରିଖରେ ମୁକ୍ତ ହୋଇଥିଲେ । ସେ ଜାତୀୟ ମହାସଭାର ସଭାପତି ଓ ଖଦଡ଼ ପ୍ରଚାରର ପ୍ରଧାନ ଉଦ୍ୟୋକ୍ତା ଅଟନ୍ତି । ୧୯୩୦ ଅପ୍ରେଲରେ ଦାଣ୍ଡିରେ ଲବଣ ଆଇନ ଅମାନ୍ୟ କରିବାରୁ ୧୯୩୦ ମେ ତା ୫ ରିଖରେ ଏହାଙ୍କୁ ଅଟକାଇ ରଖା ଯାଇଥିଲା । ସେ ସାଧୁ ତପସ୍ୱୀଙ୍କପରି ଜୀବନ କଟାଉଛନ୍ତି । ଅନେକ ସମୟରେ ଦେଶବାସୀଙ୍କପାଇଁ ସେ ଉପବାସ କରନ୍ତି । ସମ୍ପ୍ରତି ଅସ୍ପୃଶ୍ୟତା ନିବାରଣ କରିବାକୁ ପ୍ରାଣ ପଣ କରିଛନ୍ତି । ୨ୟ ଗୋଲଟେବୁଲ ବୈଠକରେ କଂଗ୍ରେସର ପ୍ରତିନିଧି ହୋଇ ଯୋଗଦାନ କରିଥିଲେ । 'Indian Home Rule' 'Young India', 'Nava Jivan' ( ହିନ୍ଦି ଓ ଗୁଜରାଟୀ ) ଏହାଙ୍କ ଦ୍ୱାରା ପ୍ରକାଶିତ ।

**ଆନନ୍ଦକୁମାର ସ୍ୱାମୀ**—ସେ ଭାରତର ସଙ୍ଗୀତ ବାଦ୍ୟ ଓ ଚିତ୍ର ବିଦ୍ୟାରେ ପ୍ରବୀଣ ଥିଲେ ।

**ଦିନଶା ଏଡ଼ୁଲଜି ଓ୍ୱାଚ୍ଚା**—୧୮୪୪ ଖ୍ରୀଷ୍ଟାବ୍ଦ ଅଗଷ୍ଟ ତା ୨ ରିଖରେ ଜନ୍ମ । ଲୋକେ ତାଙ୍କୁ କଂଗ୍ରେସର ପୁରାଣ ପଣ୍ଡା ବୋଲି କହନ୍ତି । ସରକାରୀ ମହଲରେ ତାଙ୍କର ଯଥେଷ୍ଟ ଖ୍ୟାତି ଅଛି ।

**ସ୍ୱାମୀ ଶ୍ରଦ୍ଧାନନ୍ଦ**—ଏ ମହାଶୟ ଜଣେ ତେଜସ୍ୱୀ ଆମାୟିକ, ସରଳ ଓ ନିଷ୍କପଟ ବ୍ୟକ୍ତି । ଏ ଗୁରୁକୁଳ ପ୍ରତିଷ୍ଠା କରିଥିଲେ । ଜଣେ ମୁସଲମାନ ଏହାଙ୍କୁ ହତ୍ୟା କଲା ।

**ଲାଲା ଲାଜପତ୍ ରାୟ**—ଏ ମହାଶୟ ଲୁଧିଆନା ଜିଲ୍ଲାରେ ୧୮୬୫ ଖ୍ରୀଷ୍ଟାବ୍ଦରେ ଜନ୍ମଗ୍ରହଣ କରିଥିଲେ । ସ୍ୱଦେଶର ସେବା କରି ଏ ଯେ କେତେ କଷ୍ଟ ଭୋଗ କରିଥିଲେ ତାର ସୀମା ନାହିଁ । ଆର୍ଯ୍ୟ ସମାଜର ଉନ୍ନତି କଲ୍ପେ ସେ ବହୁତ ପରିଶ୍ରମ କରିଥିଲେ । ସେ ଭାରତରୁ ନିର୍ବାସିତ ହୋଇ ଆମେରିକାରେ ରହି ମଧ୍ୟ ଦେଶର ଦୁର୍ଦ୍ଦଶା ଦୂର କରିବା ପାଇଁ ପ୍ରାଣପଣେ ଯତ୍ନ କରିଥିଲେ । ଏ ଜଣେ ବଡ଼ ପ୍ରଭାବଶାଳୀ ଲେଖକ ଥିଲେ । ଏ ଲାହୋର ଲୋକ ସେବକ ମଣ୍ଡଳର ପ୍ରତିଷ୍ଠାତା ।

**ରାମାବାଈ**—୧୮୫୮ ମସିହାରେ ବୋମ୍ବାଇ ସହରର ନିକଟବର୍ତ୍ତୀ ଗଙ୍ଗାମୂଳ ଜଙ୍ଗଲରେ ଭୂମିଷ୍ଠ ହୋଇଥିଲେ । ଶୈଶବରେ ସେ ଶ୍ରୀମଦ୍ଭାଗବତ ମୁଖସ୍ଥ କରିଥିଲେ । ସେ ଅନେକ ତୀର୍ଥ ପର୍ଯ୍ୟଟନ କରି ନାନାସ୍ଥାନରେ ସ୍ତ୍ରୀ ଶିକ୍ଷା ସମ୍ବନ୍ଧରେ ବକ୍ତୃତା ଦେଇଥିଲେ । ବିଦ୍ୟାସାଗର ପ୍ରଭୃତି ପଣ୍ଡିତଙ୍କ ସହିତ ଶାସ୍ତ୍ରୀୟ ବିଷୟରେ କଥାବାର୍ତ୍ତା କରି ଅନେକ ଉପାଧି ଓ ସରସ୍ୱତୀ ଉପାଧି ପାଇଥିଲେ । ସେ ପୁନାରେ ଆର୍ଯ୍ୟ ମହିଳା ସମାଜ ନାମକ ଏକ ସଭା ସ୍ଥାପନ କରିଥିଲେ । ତପରେ ବିଲାତରେ ଚେଲ୍ଟେନହ୍ୟାମ ଲେଡ଼ିଜ କଲେଜରେ ସଂସ୍କୃତର ପ୍ରଫେସର ହେଲେ । ଆମେରିକାକୁ ଯାଇଁ "ହାଇକାଷ୍ଟ ହିନ୍ଦୁ ଲେଡ଼ି" ନାମକ ଏକ ପୁସ୍ତକ ଲେଖିଥିଲେ ।

**ବଙ୍କିମଚନ୍ଦ୍ର ଚଟ୍ଟୋପାଧ୍ୟାୟ**—ଜନ୍ମ ୧୮୩୮ ମସିହା । ମୃତ୍ୟୁ ୧୮୯୩ ମସିହା ଜୁନ ତା ୨୬ ରିଖ । ସେ ଜଣେ ସ୍ୱାଧୀନଚେତା ଓ ଗୀରବକର୍ମ୍ମୀ ଥିଲେ । ଓଡ଼ିଶାରେ

ଜଜିଅତି ଡେପୁଟୀ କାର୍ଯ୍ୟ କରି କାର୍ଯ୍ୟକୁଶଳତା ଯୋଗୁଁ ସ୍ଥାନାନ୍ତରିତ ହେଲେ ଏବଂ ପୁନାମ ଅର୍ଜ୍ଜନ କରିଥିଲେ । ସେ ବଙ୍ଗସାହିତ୍ୟର ପ୍ରାଣପ୍ରତିଷ୍ଠାତା । ତାଙ୍କର ଉତ୍କୃଷ୍ଟ ଉପନ୍ୟାସମାନ ବଙ୍ଗଳାରେ ମହାଜାତୀୟ ଭାବର ସୃଷ୍ଟି କରିଅଛି ।

**ଗୋପାଳକୃଷ୍ଣ ଗୋଖଲେ**—ଏ ମହାଶୟ କୋହ୍ଲାପୁରରେ ଦରିଦ୍ର ବ୍ରାହ୍ମଣ ପରିବାରରେ ୧୮୬୬ ମସିହାରେ ଜନ୍ମଗ୍ରହଣ କରିଥିଲେ ଓ ୧୯୧୫ ମସିହା ଫେବୃଆରୀ ୧୯ ତାରିଖରେ ସ୍ୱର୍ଗବାସୀ ହେଲେ । ଏ ସରକାରୀ ଅର୍ଥ ବ୍ୟୟ ହିସାବ ପ୍ରତି ବିଶେଷ ଦୃଷ୍ଟି ରଖିଥିଲେ । ଦେଶର ମଙ୍ଗଳ କାମନାରେ ସେ ସାରା ଜୀବନ କଟାଇଥିଲେ । ତାଙ୍କ ଯୋଗୁ ଦେଶରେ ଶିକ୍ଷା ବିସ୍ତାର ଲାଭ କଲା । ସେ ପୁନାର ଭାରତ ସେବକ ସମାଜ ସ୍ଥାପନ କରି ଯାଇଛନ୍ତି । ବଡ଼ଲାଟ ସଭାରେ ମେମ୍ବର ଥିଲାବେଳେ ଲର୍ଡ଼ କର୍ଜନଙ୍କୁ ତର୍କଯୁଦ୍ଧରେ ପରାସ୍ତ କରିଥିଲେ । ବଜେଟ ବକ୍ତୃତା ପାଇଁ ୨୬ଘଣ୍ଟା କଟାଇଥିଲେ । ଇଂରାଜୀଭାଷାରେ ତାଙ୍କର ଅଗାଧ ପାଣ୍ଡିତ୍ୟ ଥିଲା । ସେ କଂଗ୍ରେସର ସଭ୍ୟ ସମ୍ପାଦକ ଓ ପରେ ସଭାପତି ହୋଇଥିଲେ । ମହାତ୍ମା ଗାନ୍ଧି ଏହାଙ୍କର ମଲତ୍ୟାଗ ସ୍ଥାନ ସ୍ୱହସ୍ତେ ପରିଷ୍କାର କରିଥିଲେ ।

**ସ୍ୱାମୀ ବିବେକାନନ୍ଦ**—୧୮୬୨ ଖ୍ରୀଷ୍ଟାବ୍ଦ ଜାନୁଆରୀ ୯ ତାରିଖରେ ଜନ୍ମ । ୧୯୦୨ ମସିହା ଜୁଲାଇରେ ସ୍ୱର୍ଗ ରୋହଣ । ସେ ଆମେରିକାର ଧର୍ମ ମହାସଭାରେ ହିନ୍ଦୁଧର୍ମର ସାର ମର୍ମ୍ମ ପୁଙ୍ଖାନୁପୁଙ୍ଖ ରୂପେ ବୁଝାଇ ଦେଇଥିଲେ । ସେ ଧର୍ମ ଶାସ୍ତ୍ରର ଗୂଢ଼ ତତ୍ତ୍ୱ ବୁଝାଇ ଦେଇ ଯାଇଛନ୍ତି ଓ ଜନସେବା କରିବା ପାଇଁ ଦୃଢ଼ୃଷ୍ଟାନ୍ତ ରଖି ଯାଇଛନ୍ତି । ଭାରତ ତାଙ୍କ ଠାରୁ ରାଜସିକ ଧର୍ମଶିକ୍ଷା କରିଅଛି । ପତ୍ରାବଳୀ, ପରିବ୍ରାଜକ, ପ୍ରାଚ୍ୟ ଓ ପାଶ୍ଚାତ୍ୟ ବୀରବାଣୀ, ଭାବିବାର କଥା, ବର୍ତ୍ତମାନ ଭାରତ, ଧର୍ମବିଜ୍ଞାନ, ଗୁରୁଶିଷ୍ୟସମ୍ବାଦ, ପ୍ରଭୃତି ଗ୍ରନ୍ଥ ଏ ମହାଶୟ ଲେଖି ଯାଇଛନ୍ତି ।

**ରାମାନନ୍ଦ ଚଟର୍ଜି**—

ମଡ଼ର୍ଣ୍ଣ ରିଭିଉ ଓ ପ୍ରବାସୀର ସମ୍ପାଦକ । ପ୍ରସିଦ୍ଧ ପଣ୍ଡିତ ଅଧ୍ୟାପକ ବଂଶରେ ୧୮୬୫ ମେ ରେ ବାଙ୍କୁଡ଼ାରେ ଜନ୍ମ । ବାଙ୍କୁଡ଼ା ଜିଲା ସ୍କୁଲରେ ଅଧ୍ୟୟନ କରି ୧୮୮୩ ରେ ଏଣ୍ଟ୍ରାନ୍ସ ପରୀକ୍ଷାରେ ୪ର୍ଥ ହୋଇଥିଲେ । Presidency St.XaXiers' ଓ ସିଟି କଲେଜରେ ଅଧ୍ୟୟନ । ୧୮୮୭ ରେ ଇଂଲିଶରେ ଅନର୍ସ ସହ ବି, ଏ. ରେ ୧ମ ସ୍ଥାନ ଅଧିକାର । ୧୮୮୯ ରେ ଇଂଲିଶରେ ଅନର୍ସ ସହ ଏମ୍. ଏ. ରେ ୧ମ ଶ୍ରେଣୀ-ଦାସୀ, ଧର୍ମବନ୍ଧୁ ପତ୍ରିକାର ସମ୍ପାଦକ, ଇଣ୍ଡିଆନ ମେସେଞ୍ଜରର ସହକାରୀ ସମ୍ପାଦକ । ପ୍ରଥମେ ବଙ୍ଗଭାଷାରେ 'ପ୍ରଦୀପ' ନାମକ ମାସିକ ପତ୍ରିକା ପ୍ରକାଶ କରି ସମ୍ପାଦକ ହେଲେ । ୧୮୯୫ ଅକ୍ଟୋବରରେ ଏଲାହାବାଦ କାୟସ୍ଥ କଲେଜର ପ୍ରିନ୍ସିପାଲ ପଦରେ ନିଯୁକ୍ତ ଓ ଏଲାହାବାଦ ବିଶ୍ୱବିଦ୍ୟାଳୟର ଫେଲୋ-ଯୁକ୍ତ ପ୍ରଦେଶରେ ସେକେଣ୍ଡରୀ ଏଡୁକେଶନ ରିଫର୍ମ କମିଟିରେ କାର୍ଯ୍ୟ କରିବା ପାଇଁ Sir Authony Macdonnelଙ୍କ ଦ୍ୱାରା ନିଯୁକ୍ତ—୧୯୦୧ ରେ ପ୍ରବାସୀ ନାମକ ବଙ୍ଗଳା ମାସିକ ପତ୍ରିକା ଏଲାହାବାଦରୁ ପ୍ରକାଶ କଲେ—୧୯୦୬ ସେପ୍ଟେମ୍ବରରେ କାୟସ୍ଥ କଲେଜର ପ୍ରିନ୍ସିପାଲ ପଦ ତ୍ୟାଗ—୧୯୦୭ ଜାନୁଆରୀରେ ମଡର୍ଣ୍ଣ ରିଭିଉ ପ୍ରକାଶ କଲେ—୧୯୦୮ ଅପ୍ରେଲରେ କଲିକତା ଆଗମନ କରି ପ୍ରବାସୀ ଓ ମଡ଼ର୍ଣ୍ଣ ରିଭିଉ ସେଠାରେ ପ୍ରକାଶ କରୁଅଛନ୍ତି—ହିନ୍ଦୁ ମହାସଭାର ଉପ ସଭାପତି ଓ ଜଣେ ଅଗ୍ରଣୀ ଏବଂ ବିବେକବୁଦ୍ଧିସମ୍ପନ୍ନ ଭାରତୀୟ ସାମ୍ବାଦିକ ।

**ଲାଲମୋହନ ଘୋଷ**—୧୮୪୧ ମସିହା ଡିସେମ୍ବର ୧୭ ତାରିଖରେ ଜନ୍ମଗ୍ରହଣ କରିଥିଲେ । ସେ ଜଣେ ପ୍ରଧାନ ବକ୍ତା ।

**ସର୍ ଶେଷାଦ୍ରି ଆୟାର**—୧୮୪୫ ମସିହାରେ ଜନ୍ମ ଓ ୧୯୦୧ ମସିହା ଅକଟୋବରରେ ମୃତ୍ୟୁ । ସେ ଜଣେ ବିଚକ୍ଷଣ ଶାସକ ଥିଲେ । ଲର୍ଡ଼ କର୍ଜନ ତାଙ୍କୁ କହିଥିଲେ "ବାସ୍ତବରେ କେଡ଼େ ପ୍ରତିଭାଶାଳୀ ବ୍ୟକ୍ତି" ।

**ବଦ୍ରୁଦ୍ଦିନ ତାୟାବଜୀ**—୧୮୪୪ ମସିହା ଅକ୍ଟୋବର ତା ୮ ରିଖରେ ଜନ୍ମ । ୧୯୦୬ ମସିହା ଅଗଷ୍ଟ ୧୯ ତାରିଖରେ ମୃତ୍ୟୁ । ସେ ଜାତିରେ ମୁସଲମାନ । ସେ ଜଣେ ପ୍ରଧାନ ସମାଜ-ସଂସ୍କାରକ ଏବଂ ସାମ୍ପ୍ରଦାୟିକ ଏକତାର ବିଶେଷ ପକ୍ଷପାତୀ ଥିଲେ ।

ସାମାନ୍ୟ ଦୋଷରେ ନୁହେ ଅନାଦୃତ କେବେଁ ବହୁଗୁଣୀଜନ ।

**ସର୍ ଫିରୋଜସାହ୍ ମେହ୍ତା**—୧୮୪୫ ମସିହା ଅଗଷ୍ଟ ୪ ତାରିଖରେ ଜନ୍ମ । ୧୯୧୫ ମସିହା ନଭେମ୍ବର ତା ୫ ରିଖରେ ମୃତ୍ୟୁ । ସେ ବୋମ୍ବାଇରେ ଫିରୋଜସାହ ପାର୍ସୀ ବଂଶରେ ଜନ୍ମଗ୍ରହଣ କରିଥିଲେ । ମହାବଳ ବାଘ ପରି ଏହାଙ୍କର ଚେହେରା । ରାଜନ୍ୟବର୍ଗ ଏହାଙ୍କର ବ୍ୟଙ୍ଗୋକ୍ତି ଓ କଟୁ ସମାଲୋଚନାକୁ ବଡ଼ ଭୟ କରୁଥିଲେ ।

**ଅଶ୍ୱିନୀ କୁମାର ଦତ୍ତ**—୧୮୫୬ ମସିହା ଜାନୁଆରୀ ୨୫ ତାରିଖରେ ଜନ୍ମଗ୍ରହଣ କରିଥିଲେ । ସେ ସର୍ବଦା ବରିଶାଲରେ ରହୁଥିଲେ । ସେ ଆପଣା ଦୃଷ୍ଟାନ୍ତ ଦ୍ୱାରା ଅସଂଖ୍ୟ ଲୋକଙ୍କୁ ପ୍ରକୃତ 'ଜନସେବକ' ତିଆରି କରି ଯାଇଛନ୍ତି । ତାଙ୍କ ଲିଖିତ "ଭକ୍ତିଯୋଗ" ପୁସ୍ତକ ଅତି ଉପାଦେୟ ।

**ବିପିନଚନ୍ଦ୍ର ପାଲ**—ତା୭।୧୧।୧୮୫୮ ମସିହାରେ ସିଲ୍‌ହଟଠାରେ ଜନ୍ମଗ୍ରହଣ କରିଥିଲେ । ବ୍ରାହ୍ମଧର୍ମ ଗ୍ରହଣ କରିବା ଯୋଗୁଁ ଏହାଙ୍କର ପିତା ଦଶବର୍ଷ କାଳ ଏହାଙ୍କର ମୁହଁ ଚାହିଁ ନ ଥିଲେ । ଏ ମହାଶୟ କିଛିଦିନ କଟକ ପି. ଏମ୍. ଏକାଡେମିରେ ପ୍ରଧାନ ଶିକ୍ଷକ କାର୍ଯ୍ୟ କରିଥିଲେ । ସ୍ୱଦେଶୀ ଆନ୍ଦୋଳନ ସମୟରେ ଜେଲ୍ ଯାଇଥିଲେ । ସେ ଅଦ୍ଭୁତ ବକ୍ତା ଏବଂ ପ୍ରସିଦ୍ଧ ଲେଖକ ଥିଲେ । ୧୯୦୮ ରେ ବିଲାତରେ 'ସ୍ୱରାଜ' ପତ୍ରିକା ପ୍ରକାଶ କରିଥିଲେ ।

**ରାୟ ବାହାଦୁର ଆର. ଏନ. ମୁଧୋଲକର**—୧୮୫୭ ମେ ତା ୧୬ ରିଖରେ ଜନ୍ମ ଓ ୧୯୧୯ ମସିହାରେ ମୃତ୍ୟୁ । ଏ ଜଣେ ମଧ୍ୟପ୍ରଦେଶର ପ୍ରଧାନ ନେତା ଥିଲେ ।

**ବରୋଦାର ଗାଇକ୍‌ୱାଡ୍**—୧୮୬୩ ଖ୍ରୀଷ୍ଟାବ୍ଦ ମାର୍ଚ୍ଚ ମାସରେ ଜନ୍ମଗ୍ରହଣ କରିଥିଲେ । ରାଜା ହୋଇ ସୁଦ୍ଧା ଭାରତର ଜାତୀୟ ଜୀବନ ଉନ୍ନତି ପାଇଁ ଅନେକ ଲଢ଼ିଛନ୍ତି । ସେ G. C. S. I (1881) G. C. I. E. (1919) L. L. D. (1924) ପାଇଥିଲେ । ଲେଖାବଳୀ From 'Caesar to Sultan', 'Famine notes' 'Speeches'

**ସୁବ୍ରହ୍ମଣ୍ୟ ଆୟାର**—ଜନ୍ମ ୧୮୫୫ ଖ୍ରୀଷ୍ଟାବ୍ଦରେ ଓ ମୃତ୍ୟୁ ୧୯୦୯ ଖ୍ରୀଷ୍ଟାବ୍ଦରେ । ସେ ଜଣେ ପୂର୍ଣ୍ଣ ସ୍ୱଦେଶୀ ଥିଲେ ।

**ଉତ୍କଳମଣି ପଣ୍ଡିତ ଗୋପବନ୍ଧୁ ଦାସ**—

ପୁରୀଜିଲ୍ଲା ସତ୍ୟବାଦୀ ନିକଟସ୍ଥ ସୁଆଣ୍ଡୋ ଗ୍ରାମରେ କୌଶିକ ଗୋତ୍ରୀୟ ବ୍ରାହ୍ମଣକୁଳରେ ୧୮୭୭ ସାଲରେ ଜନ୍ମ । ପିତାଙ୍କ ନାମ-ଦୈତାରି ଦାଶ ଓ ମାତାଙ୍କ ନାମ-ସ୍ୱର୍ଣ୍ଣମୟୀ । ଶୈଶବରୁ ମାତୃସ୍ଥାନ-୯ମ ବର୍ଷ ପର୍ଯ୍ୟନ୍ତ ଗ୍ରାମରେ ନିୟମିତ ରୂପେ ଭାଗବତ ଅଧ୍ୟୟନ । ୧୨ଶ ବର୍ଷରେ ବିବାହ । ରୂପଦେଇପୁର ଭର୍ଣ୍ଣାକୁଲର ସ୍କୁଲରୁ ଉତ୍ତୀର୍ଣ୍ଣ ହୋଇ ପୁରୀଜିଲ୍ଲା ସ୍କୁଲରେ ଅଧ୍ୟୟନ ଓ ସାହିତ୍ୟ ଆଲୋଚନା । କଟକ ରେଭେନ୍ସା କଲେଜରେ ଅଧ୍ୟୟନ ଓ ପିତୃ ବିୟୋଗ । ଏଫ. ଏ. ଓ ବି. ଏ. ପାସ ଏବଂ ଦେଶର ନାନା ଚିନ୍ତାରେ ଚିନ୍ତିତ । ବି. ଏଲ୍. ପାଶ ସହିତ ସହଧର୍ମିଣୀ ମୋତି ଦେବୀଙ୍କର ପରଲୋକ ଗମନ ସଂବାଦ ଏକ ସମୟରେ କଟକରେ ପ୍ରାପ୍ତ । ଉତ୍କଳଯୁବକ-କେନ୍ଦ୍ରସମିତି ସ୍ଥାପନ-ସନ୍ନ୍ୟାସୀବେଶରେ ସ୍ୱଦେଶୀ ଭାବ ପ୍ରଚାର—ଦୁର୍ଭିକ୍ଷ ପ୍ରପୀଡ଼ିତ ଲୋକଙ୍କୁ ସାହାଯ୍ୟ ଦାନ । ନୀଳଗିରି ଉଚ୍ଚ ଇଂରାଜୀ ସ୍କୁଲର ପ୍ରଧାନ ଶିକ୍ଷକ—ମୟୂରଭଞ୍ଜର ଷ୍ଟେଟ୍ ପ୍ଲିଡ଼ର । କଟକ ଓ ପୁରୀରେ ଓକିଲାତି । ସତ୍ୟବାଦୀରେ ଏକ ଆଦର୍ଶ ଉଚ୍ଚ ଇଂରାଜୀ ବିଦ୍ୟାଳୟ ସ୍ଥାପନ ଓ ସେଥିର ସମ୍ପାଦକ । ୧୯୧୭।୨୧ ବର୍ଷର ଓଡ଼ିଶା ଲାଟସଭାର ସଭ୍ୟ ଓ ଓକିଲାତି ତ୍ୟାଗ । ଉତ୍କଳର ବିଚ୍ଛିନ୍ନ ଅଞ୍ଚଳରେ ଓଡ଼ିଆ ଭାଷା ପ୍ରଚାର । କାଉନ୍‌ସିଲ କାର୍ଯ୍ୟ କାଳରେ କଟକରେ ଏମ୍. ଏ. ବି. ଏଲ୍. କ୍ଲାସ ଖୋଲିବା, ଇଞ୍ଜିନିୟରିଂ ସ୍କୁଲ ବସାଇବା, ପୁରୀରେ ସଂସ୍କୃତ କଲେଜ ପ୍ରତିଷ୍ଠା କରିବା ଓ ସ୍କୁଲ ମାନଙ୍କରେ ଶତକଡ଼ା ୧୦ ଟା Free Student-ship ବଢ଼ାଇବା କାର୍ଯ୍ୟ ପ୍ରଧାନ । ଓଡ଼ିଶାରୁ ଜଣେ ଲେଖାଏଁ ଆଇ. ସି. ଏସ୍. ( I. C. S. ) ପଢ଼ିବା ପାଇଁ ଯିବାର ବନ୍ଦୋବସ୍ତ । ୧୯୧୯ ରେ ଉତ୍କଳ ସମ୍ମିଳନୀର ସଭାପତି । ପଲ୍ଲୀସଂସ୍କାର ପାଇଁ ଯତ୍ନ । ସମାଜର ସମ୍ପାଦକ । ପୁରୀ ଦୁର୍ଭିକ୍ଷ ନିବାରଣ କରିବାରେ ଅକ୍ଳାନ୍ତ ଶ୍ରମ, ବନ୍ୟାର ସ୍ଥାୟୀ ପ୍ରତିକାର ପାଇଁ ଚେଷ୍ଟା । ପାଟନା ବିଶ୍ୱବିଦ୍ୟାଳୟର ସିନେଟ ଓ ସେଣ୍ଡିକେଟ ସଭାର ମେମ୍ବର ।

ପୁରୀ ଜିଲ୍ଲାବୋର୍ଡ଼ର ମେମ୍ବର । ୧୯୨୦ ରେ ପୁରୀ ଦୁର୍ଭିକ୍ଷ ପାଇଁ ଭାରତର ନାନା ସ୍ଥାନରୁ ସାହାଯ୍ୟ ଆଣି ବହୁତ ଲୋକଙ୍କୁ ବଞ୍ଚାଇ ଥିଲେ । ଅସହଯୋଗ ଆନ୍ଦୋଳନରେ ଯୋଗ ଦେଇ ଜେଲ ଗଲେ । ତାଙ୍କ ଯୋଗୁ କଂଗ୍ରେସ କାର୍ଯ୍ୟ ଓଡ଼ିଶାରେ ଆରମ୍ଭ ହେଲା । ସେ କବି, ନେତା, କର୍ମୀ ଓ ରାଜନୀତିଜ୍ଞ ଥିଲେ । ସମାଜ ପତ୍ରିକା ଚଳାଇ ଓଡ଼ିଆ ଭାଷାର ଯଥେଷ୍ଟ ଉନ୍ନତି କରିଥିଲେ । ସେ ଜୀବନର ବିନ୍ଦୁ ବିନ୍ଦୁ ରକ୍ତ ଦେଇ ଓଡ଼ିଶାର ଉନ୍ନତି କରିଥିଲେ । ଉତ୍କଳ ସ୍ୱରାଜ ସେବକ ସଂଘ ଓ ସ୍ୱେଚ୍ଛାସେବକ ଦଳ ଗଠନ କରୁଥିବା ଅପରାଧରେ କାରାବାସ । ୧୯୨୨ ରେ ଲାହୋରର ଲୋକସେବକ ସମାଜର ସଭ୍ୟ ଓ ୧୯୨୮ ରେ ତାହାର ସହକାରୀ ସଭାପତି । ପୁରୀରେ ଜଗନ୍ନାଥ ବିଧବାଶ୍ରମ ସ୍ଥାପନ ଓ ନିଜର ସମ୍ପତ୍ତି ପ୍ରଭୃତି ଟ୍ରଷ୍ଟି ହାତରେ ଏବଂ ସତ୍ୟବାଦୀ ପ୍ରେସ ପ୍ରଭୃତି ଦେଶକାର୍ଯ୍ୟରେ ଲାଗିବାର ବ୍ୟବସ୍ଥା କରି ୧୯୨୮ ଜୁନ ତା' ୭ ରିଖରେ ସତ୍ୟବାଦୀର ବକୁଳ କୁଞ୍ଜରେ ସ୍ୱର୍ଗବାସୀ ହେଲେ । ସେ ଉତ୍କଳର ତରୁଣପ୍ରାଣରେ ନବ ଜାଗରଣ ଓ କର୍ମର ପ୍ରେରଣା ଆଣିଦେଇ ଅଛନ୍ତି । ଉତ୍କଳସାହିତ୍ୟକୁ ଏହାଙ୍କର ଦାନ ଚିରସ୍ମରଣୀୟ ରହିବ । ହୃଦୟର ସରସତାରେ ସେ ଉତ୍କଳରେ ଅଦ୍ୱିତୀୟ ଥିଲେ ।

**ସର୍ଦ୍ଦାର ଶାର୍ଦ୍ଦୁଳ ସିଂହ କ୍ୟାଭେସିଅର**—ଏ ମହାଶୟ ଜଣେ ବରିଷ୍ଠ ଶିଖ ପେନ୍‌ସନପ୍ରାପ୍ତ ସୈନିକ ଏବଂ ପଞ୍ଜାବର ଜଣେ ନେତା ।

**ଗୋପବନ୍ଧୁ ଚୌଧୁରୀ**—କଟକଜିଲ୍ଲାର କରଣ-କୁଳରେ ଜନ୍ମ (୧୮୯୪) ପିତା—ଗୋକୁଳାନନ୍ଦ ଚୌଧୁରୀ, ମାତା—ପଦ୍ମାବତୀ ଦେଈ—କଲେଜିଏଟ ସ୍କୁଲରୁ ଏଣ୍ଟ୍ରାନ୍ସ (୧୯୦୮) ରେଭେନ୍ସା କଲେଜରୁ ଆଇ. ଏ. (୧୯୧୦) ବି. ଏ. (୧୯୧୨) ପାଶ—ଏମ୍. ଏ. ପରୀକ୍ଷାରେ କଲିକତା ବିଶ୍ୱବିଦ୍ୟାଳୟରେ ୨ୟ (୧୯୧୪) । ଏ ମହାଶୟ ନିଜର ବିବେକ ବଳରେ ଡେପୁଟି କଲେକ୍ଟରର ଚାକିରି ଛାଡ଼ି ସପରିବାର ଅସହଯୋଗ ଆନ୍ଦୋଳନରେ ଯୋଗଦେଇ ରାଜନୈତିକ ବନ୍ଦୀ ହୋଇଥିଲେ । କଟକ ଜିଲ୍ଲାବୋର୍ଡ଼ରେ ଚେୟାରମ୍ୟାନ ହୋଇ ସୁଖ୍ୟାତି ଅର୍ଜ୍ଜନ କରିଥିଲେ । ଏ ସରଳ, ନିଷ୍ଠାପର କର୍ମୀ । ତାଙ୍କ ଚରିତର ମାଧୁର୍ଯ୍ୟ ତାଙ୍କର ସ୍ତ୍ରୀ ରମାଦେବୀ ଏବଂ ପୁତ୍ର କନ୍ୟା ଓ ଭ୍ରାତାଭ୍ରାତୃବଧୂଙ୍କ ଉପରେ ପ୍ରତିଫଳିତ ହୋଇ ତାଙ୍କ ଜାତୀୟ ଜୀବନର ସହାୟତା କରୁଅଛି । ବର୍ତ୍ତମାନ ବରୀରେ ଆଶ୍ରମ କରି ଗ୍ରାମସଂଗଠନ କାର୍ଯ୍ୟ କରୁ ଅଛନ୍ତି ।

**ସର୍ ସି. ଶଙ୍କରନ୍ ନାୟାର**—୧୮୫୭ ଜୁଲାଇ ୧୧ ତାରିଖରେ ଜନ୍ମ । ମାନ୍ଦ୍ରାଜ ପ୍ରେସିଡେନ୍ସି କଲେଜରେ ଶିକ୍ଷା । ହାଇକୋର୍ଟ ଉକିଲ, ମାନ୍ଦ୍ରାଜ ଗଭର୍ଣ୍ଣମେଣ୍ଟଙ୍କ ପବ୍‌ଲିକ ପ୍ରସିକ୍ୟୁଟର ଅଡ୍‌ଭୋକେଟ୍ ଜେନେରେଲ, ମାନ୍ଦ୍ରାଜ ହାଇ-କୋର୍ଟ ଜଜ୍, ମାନ୍ଦ୍ରାଜ ଲେଜିସ୍ଲେଟିଭ୍ କାଉନ୍‌ସିଲର ମେମ୍ବର, ଅମରେଉଟିରେ ଭାରତ କଂଗ୍ରେସର ସଭାପତି (୧୮୯୭) । ମାନ୍ଦ୍ରାଜର ସାମାଜିକ କନ୍‌ଫରେନ୍ସର ସଭାପତି । ମାନ୍ଦ୍ରାଜରେ ଭାରତର କୃଷିଶିଳ୍ପ ପ୍ରଦର୍ଶନୀର ସଭାପତି । ମାନ୍ଦ୍ରାଜ ରିଭିଉ, ମାନ୍ଦ୍ରାଜ ଲ ଜର୍ନେଲ ଓ ଦୈନିକ ସମ୍ବାଦପତ୍ର । ମାନ୍ଦ୍ରାଜ ଷ୍ଟାଣ୍ଡର୍ଡର ସମ୍ପାଦକ । ଗଭର୍ଣ୍ଣର ଜେନେରେଲଙ୍କର ଭାରତରେ କାର୍ଯ୍ୟକାରୀ ସଭାର ମେମ୍ବର (୧୯୧୫-୧୯) । ସେକ୍ରେଟେରୀ ଅଫ୍ ଷ୍ଟେଟ୍ ଫର ଇଣ୍ଡିଆ କାଉନ୍‌ସିଲର ମେମ୍ବର (୧୯୨୦-୨୧) । ସାଇମନ୍ କମିସନ ସହିତ ସେଣ୍ଟ୍ରାଲ ଲେଜିସ୍ଲେଚରର କମିଟିର ଚେୟାରମ୍ୟାନ (୧୯୨୮) — ଗାନ୍ଧି ଓ ଅରାଜକତାର ଲେଖକ ।

**ପଣ୍ଡିତ ଲିଙ୍ଗରାଜ ମିଶ୍ର**—ଏ ମହାଶୟ ପୁରୀଜିଲ୍ଲା ସତ୍ୟବାଦୀ ଥାନା ଅନ୍ତର୍ଗତ ଶ୍ରୀରାମଚନ୍ଦ୍ରପୁର ଶାସନରେ ୧୮୯୫ ମସିହାରେ ବ୍ରାହ୍ମଣ କୁଳରେ ଜନ୍ମଗ୍ରହଣ କରିଥିଲେ । ପିତାଙ୍କ ନାମ—ନୀଳକଣ୍ଠ ମିଶ୍ର ଓ ମାତାଙ୍କ ନାମ—ଟମୋଡ଼ି ଦେବୀ । ଭୁବନେଶ୍ୱର ମି. ଇ. ସ୍କୁଲରୁ ୧୯୦୮ ରେ ମି. ଇ. ପାସକରି ବୃତ୍ତିପାଇ ୧୯୧୨ ରେ ପୁରୀଜିଲ୍ଲା ସ୍କୁଲରେ ଅଧ୍ୟୟନ କଲେ । ସେଠାରେ ମାସିକ ଟ ୨୫ ବୃତ୍ତିପାଇ ରେଭେନ୍ସା କଲେଜକୁ ଆସିଲେ । ସେଠାରେ ୧୯୧୪ରେ I. A. ରେ ୨ୟ ହୋଇ ଟ ୨୫ ବୃତ୍ତି ପାଇଲେ ଓ ବି. ଏ. ପାସକରି ଲ ବୃତ୍ତି ପାଇଲେ । କଲିକତା ବିଶ୍ୱବିଦ୍ୟାଳୟରୁ ୧୯୧୯ରେ ଏମ୍. ଏ. ପରୀକ୍ଷାରେ ସଂସ୍କୃତରେ ୧ମ ଶ୍ରେଣୀରେ ୧ମ ସ୍ଥାନ ଅଧିକାର କରି ସ୍ୱର୍ଣ୍ଣପଦକ ଲାଭକଲେ । ପରେ ଓଡ଼ିଶା ଷ୍ଟେଟ୍ ନାଗପୁର ସଂସ୍କୃତ ଷ୍ଟଡ଼ିଜ୍ (Sanskrit Studies) ର ଆସିଷ୍ଟେଣ୍ଟ

ସୁପରିଣ୍ଟେଣ୍ଡେଣ୍ଟ ହୋଇ ଗ୍ରିଅର ଭୂମିହର ବ୍ରାହ୍ମଣ କଲେ ଜରେ ୧ ବର୍ଷ ଯଷ୍ଟ୍ର ଅଧ୍ୟାପକ ହୋଇ ପୁଣି ପୂର୍ବପଦକୁ ଫେରି ଆସିଲେ । ଅସହଯୋଗ ଆନ୍ଦୋଳନ ସମୟରେ ୧୯୨୧ ସେପଟେମ୍ବରରେ ସରକାରୀ ଚାକରୀରୁ ଇସ୍ତଫା ଦେଇ ସତ୍ୟବାଦୀ ଜାତୀୟ ବିଦ୍ୟାଳୟରେ ୧୯୨୪ ରେ ଶିକ୍ଷକ ହେଲେ । ୧୯୨୬ରେ ବିହାର-ଓଡ଼ିଶା କାଉନ୍‌ସିଲର ମେମ୍ବର ହେଲେ ଓ ସେହିବର୍ଷ ପିପୁଲ୍‌ସ ସୋସାଇଟିରେ ଯୋଗଦାନ କଲେ । ୧୯୩୦ ରୁ ସମାଜର ସମ୍ପାଦକ କାର୍ଯ୍ୟ କରୁଅଛନ୍ତି ।

**ଗଣପତିଦାସ** ବି. ଏ. ବି ଏଲ—ସନ ୧୨୭୮ ସାଲ ବୈଶାଖ ( ୧୮୭୧ ) ରେ ଜନ୍ମ—ସନ ୧୩୨୫ ଚୈତ୍ର ( ୧୯୧୮ ) ରେ ମୃତ୍ୟୁ । ପିତାଙ୍କ ନାମ ଭଗବତ ଦାସ, ମାତାଙ୍କ ନାମ ଦମୟନ୍ତୀ ଦାସୀ । ୯ମ ବର୍ଷରେ ଭଦ୍ରକ ପୁରୁଣାବଜାର ମି. ଇ. ସ୍କୁଲର ପ୍ରବେଶ—୧୮୭୪ରେ ପାସ ଓ ବୃତ୍ତିଲାଭ—ବାଲେଶ୍ୱର ଜିଲ୍ଲା ସ୍କୁଲରେ ଅଧ୍ୟୟନ-୧୮୭୬ରେ ପ୍ରବେଶିକା ପରୀକ୍ଷାରେ ଓଡ଼ିଶାରେ ୧ ମ ଓ ବୃତ୍ତିଲାଭ—୧୮୭୮ ରେ ରେଭେନ୍ସା କଲେଜରେ ଅଧ୍ୟୟନ ଓ ଏଫ. ଏ, ପରୀକ୍ଷାରେ ୧ମ ହୋଇ ଉତ୍ତୀର୍ଣ୍ଣ । ୨୨ ବର୍ଷ ସମୟରେ ବି. ଏ. ପାସ । କଲେଜଏଟ ସ୍କୁଲରେ ସହକାରୀ ପ୍ରଧାନ ଶିକ୍ଷକ ୩ ବର୍ଷ—ବି. ଏଲ, ପରୀକ୍ଷାରେ ୨ୟ ସ୍ଥାନ ଅଧିକାର । ଭଦ୍ରକରେ ଓକିଲ ଅଦାଲତ ଅନୁସନ୍ଧାନ, ଅନେକ ସ୍ୱଚନ୍ତ୍ର ପ୍ରବନ୍ଧ ଓ ( Young Orissa ) ପୁସ୍ତକ ଲେଖିଥିଲେ । ଗଣିତକ ଜ୍ୟୋତିଷରେ ଦକ୍ଷ—ଭଦ୍ରକ ହାଇସ୍କୁଲର ମେନେଜିଂ କମିଟି ମେମ୍ବର—ଅଣିଜ ମନ୍ଦିର ନିର୍ମାଣ, ସେ ଦେଶଭକ୍ତ, ସ୍ୱଦେଶପ୍ରେମିକ, ଗୁଣୀ ଓ ଗୁଣଗ୍ରାହୀ ଥିଲେ ।

**ମଧୁସୂଦନଦାସ, ସି. ଆଇ. ଇ.**—କଟକ ଜିଲ୍ଲା ସତ୍ୟଭାମାପୁରରେ ୧୮୪୮ ମେ ୨୮ ତାରିଖରେ କରଣକୁଳରେ ଜନ୍ମ । ପିତାଙ୍କ ନାମ ଚୌଧୁରୀ ରଘୁନାଥ ଦାସ ଓ ମାତାଙ୍କନାମ ସରଳା ଦେଈ । ଗ୍ରାମରେ ପ୍ରାଥମିକ ଶିକ୍ଷା-ପରେ କଟକରେ ଅଧ୍ୟୟନ । କଲିକତାରେ ଖ୍ରୀଷ୍ଟଧର୍ମ ଗ୍ରହଣ ଓ ଏଫ୍. ଏ., ବି. ଏ. ଏବଂ ଏମ୍. ଏ ପାସ ଏବଂ ସେଠା ସ୍କୁଲରେ ଶିକ୍ଷକତା । ଗାର୍ଡ଼େନରିଚ ସ୍କୁଲର ହେଡ୍‌ମାଷ୍ଟର । ବି. ଏଲ୍. ପାଶ ପରେ କଲିକତା ହାଇକୋର୍ଟରେ ଓକିଲାତି । ଓଡ଼ିଆଙ୍କ ମଧ୍ୟରେ ପ୍ରଥମ ଓକିଲ । ନିଜ ବାହୁବଳରେ ସେ ବିଲାତ ଯାଇ ନିଜ ଦେଶ ଓ ନିଜ ଜାତିର ଟେକ ରଖିଛନ୍ତି । ସେ ଉତ୍କଳ ସମ୍ମିଳନୀର ସ୍ଥାପୟିତା ଥିଲେ, ତାଙ୍କ ଯୋଗୁଁ ଓଡ଼ିଶାର ସୁନା ରୁପା ତାରକସି କାମର ବାହାଦୁରି ରହିଛି । ସେ ଉତ୍କଳ ଟାନେରି ସ୍ଥାପନ କରି ଓଡ଼ିଶାକୁ ପୃଥିବୀରେ ଚହ୍ଲାଇ ଦେଇଛନ୍ତି । ତାଙ୍କ ଭଳି ବିଦ୍ୱାନ୍ ଓ ବୁଦ୍ଧିମାନ୍ ଭାରତର ନେତାମାନଙ୍କ ମଧ୍ୟରେ ଅଳ୍ପ ଦେଖାଯାନ୍ତି । ସେ ବିହାର ଓଡ଼ିଶାର ମନ୍ତ୍ରୀ ଥିଲେ । ନିର୍ଭୀକତା, ମୌଳିକତା ଏବଂ ଅଜସ୍ର ପରିଶ୍ରମ ତାଙ୍କ ଜୀବନର ଅତି ପ୍ରଧାନ ସ୍ତମ୍ଭ ଥିଲା । ସେ ଦେଶର ବଳ ଓ ଜାତିର ମେରୁଦଣ୍ଡ ଥିଲେ । ଯେ ତାଙ୍କର ବାଗ୍ମିତା ଓ ବଚନ ରଚନା ଶୁଭୁସୀ ସଭା ସମିତିରେ ଓ ରାଜକୀୟ ପାରିଷଦରେ ଶୁଣି ଅଛନ୍ତି ସେ ତନ୍ମୟ ହୋଇ ଅଛନ୍ତି । ସେ ୧୯୩୪ ଫେବୃୟାରୀ ୩ ତାରିଖରେ ସ୍ୱର୍ଗାରୋହଣ କଲେ ।

**ଲାଲା ହଂସରାଜ**—୧୮୬୧ ଖ୍ରୀଷ୍ଟାବ୍ଦରେ ଜନ୍ମ । ଏ ମହାଶୟ ପଞ୍ଜାବର ଜଣେ ତ୍ୟାଗୀ ପୁରୁଷ ଓ ଆର୍ଯ୍ୟ ସମାଜର ଜଣେ ପ୍ରସିଦ୍ଧ ନେତା ।

**ଦେଶବନ୍ଧୁ ସି. ଆର୍. ଦାସ**—ଜଣେ ବାରିଷ୍ଟର ଥିଲେ । ଅରବିନ୍ଦ ଘୋଷଙ୍କ ରାଜଦ୍ରୋହ ମକଦ୍ଦମାରେ ଲଢ଼ି ଖ୍ୟାତି ଲାଭ କରିଥିଲେ । ଶେଷରେ ସର୍ବସ୍ୱ ଦାନ କରି ଅସହଯୋଗ ଆନ୍ଦୋଳନରେ ଯୋଗ ଦେଇଥିଲେ । ସେ ବଙ୍ଗର ସର୍ବପ୍ରଧାନ ନେତା ଥିଲେ ।

**ମୋତିଲାଲ ନେହେରୁ**—ଏ ମହାଶୟ ଜଣେ ବିଚକ୍ଷଣ ଆଇନ ବ୍ୟବସାୟୀ ଥିଲେ । ଭାରତର ଭବିଷ୍ୟତ ଶାସନ ଖସଡ଼ା ଲେଖିଥିଲେ । ମହାଭୋଗୀ ହୋଇ ମହାତ୍ୟାଗୀ ହେଲେ । କଂଗ୍ରେସର ସ୍ଥାୟୀ ଆବାସ ନିମିତ୍ତ ନିଜର ମହାମୂଲ୍ୟ ବାସଗୃହ ଆନନ୍ଦ ଭବନ ଦାନ କରି ଯାଇଅଛନ୍ତି ।

**ରାଜେନ୍ଦ୍ର ପ୍ରସାଦ**—ବିହାରର ସର୍ବପ୍ରଧାନ ନେତା ଓ ଶ୍ରେଷ୍ଠ କର୍ମୀ । ତାଙ୍କର ଅସୀମ ତ୍ୟାଗ ପ୍ରଭୃତି ଦେଖିଲେ ତାଙ୍କୁ ବିହାରର ଦ୍ୱିତୀୟ ଗାନ୍ଧି ବୋଲି ଅବଶ୍ୟ କୁହାଯିବ । ଆଇନ ବ୍ୟବସାୟରେ ମଧ୍ୟ ସେ ବିଶେଷ ଖ୍ୟାତି ଲାଭ କରିଥିଲେ । ସମ୍ପ୍ରତି ଭାରତୀୟ କଂଗ୍ରେସର ସଭାପତି ।



ସ୍ୱର୍ଗୀୟ ଉତ୍କଳର ବରପୁତ୍ର ମଧୁସୂଦନ ଦାସ ସି. ଆଇ ଇ

**ମଜହରୁଲ ହକ୍**—ଏ ମହାଶୟ ଜଣେ ତ୍ୟାଗୀ, ଫକୀର ଓ ଧନପତି । ତାଙ୍କର ବିପୁଳ ସମ୍ପତ୍ତି ସେ ଦେଶ ପାଇଁ ଦାନ କରି ଯାଇଛନ୍ତି ।

**ଶେଠ ଯମୁନାଲାଲ ବଜାଜ**—ଏ ମହାଶୟ ମହାମନା । ଦେଶରେ ଖଦଡ଼ ପ୍ରଚାର ପାଇଁ ଓ ଅନ୍ୟାନ୍ୟ ଲୋକ ହିତକର କାର୍ଯ୍ୟରେ ବହୁ ଅର୍ଥ ଦାନ କରି ଅଛନ୍ତି । ମହାତ୍ମା ଗାନ୍ଧିଙ୍କର ଏ ଜଣେ ପରମ ଭକ୍ତ ।

**ଅଧ୍ୟାପକ କାର୍ଭେ**—ଭାରତର ସ୍ତ୍ରୀ ବିଶ୍ୱବିଦ୍ୟାଳୟର ପ୍ରତିଷ୍ଠାତା । ସେ ପୁନାରେ ରହନ୍ତି ।

**ବ୍ରଜକିଶୋର ପ୍ରସାଦ**—ବିହାରର ଅନେକଙ୍କର ଗୁରୁ । ରାଜେନ୍ଦ୍ରପ୍ରସାଦ ଏହାଙ୍କ ମନ୍ତ୍ରରେ ଦୀକ୍ଷିତ ।

**ଗୋପାଳକୃଷ୍ଣ ଦେବଧର**—ପୁନା ସେବାସଦନ ଏ ମହାଶୟଙ୍କର ସମୁଜ୍ଜ୍ୱଳ କୀର୍ତ୍ତି । ସେ ବର୍ତ୍ତମାନ ଭାରତ ସେବକ ସମାଜର ସଭାପତି । ସମବାୟ ଆନ୍ଦୋଳନରେ ସେ ଭାରତର ଅତି ଶ୍ରେଷ୍ଠ ନେତା ।

**ଅମୃତଲାଲ ଠକ୍କର**—ଏ ମହାଶୟ ଅତି ସରଳ ଓ ଭଦ୍ର । ପୁରୀ ଦୁର୍ଭିକ୍ଷରେ ଅନେକ କାର୍ଯ୍ୟ କରିଥିଲେ । ବର୍ତ୍ତମାନ ଅସ୍ପୃଶ୍ୟତା ନିବାରଣ ପାଇଁ ପ୍ରାଣପଣେ ଯତ୍ନ କରୁଛନ୍ତି । ବୃଦ୍ଧ ହେଲେଣି, ବୟସ ପ୍ରାୟ ୭୦ ବର୍ଷ । ସେ ଭାରତ ସେବକ ସମାଜର ଜଣେ ଖୁବ୍ କର୍ମଠ ସଭ୍ୟ ।

**ବାରିଷ୍ଟର ଫୋକନ**—ଏ ମହାଶୟଙ୍କ ଘର ଆସାମରେ । ଅସହଯୋଗ ଆନ୍ଦୋଳନ ପାଇଁ ଏ ଯଥେଷ୍ଟ ତ୍ୟାଗ କରିଛନ୍ତି ।

**ଭିଟଲ୍‌ଭାଇ ପଟେଲ**—ଏ ମହାଶୟ ଅହମଦାବାଦ ଓ ଇଂଲଣ୍ଡରେ ଶିକ୍ଷା ପାଇଥିଲେ । ବୋମ୍ବାଇ କର୍ପୋରେଶନର ସଭ୍ୟ ଓ ପରେ ସଭାପତି ( ୧୯୨୪-୨୫ )-ହିଲେ ବୋମ୍ବାଇ କଂଗ୍ରେସର ଅଭ୍ୟର୍ଥନା ସଭାର ସଭାପତି ( ୧୯୧୮ ) ଅସହଯୋଗ ଆନ୍ଦୋଳନ କମିଟିର ମେମ୍ବର ( ୧୯୨୨ ) ସେ ବୋମ୍ବାଇ କାଉନ୍‌ସିଲରେ ସଭ୍ୟ ହୋଇଥିଲେ । ପୁଣି ନୂଆ ଫାଷ୍ଟାରରେ ଭାରତୀୟ ବ୍ୟବସ୍ଥାପକ ସଭାର ପ୍ରଥମ ଭାରତୀୟ ସଭାପତି ହୋଇଥିଲେ । ଏହାଙ୍କର ଜବାବ ଦେବାର ଅଦ୍ଭୁତ କ୍ଷମତା । ବୃଦ୍ଧବୟସରେ ଦେଶପାଇଁ ଅନେକ ଦୁଃଖ ଭାର ବହନ କରି ଶେଷରେ ଇଉରୋପ ଅଷ୍ଟ୍ରିୟାରେ ପ୍ରାଣତ୍ୟାଗ କଲେ ।

**ଜେ, ଏମ୍. ସେନଗୁପ୍ତ**—ସେ ପୂର୍ବବଙ୍ଗର ଲୋକ । ଚଟ୍ଟଗ୍ରାମରେ ତାଙ୍କର ଘର ଥିଲା । ବାରିଷ୍ଟର ଥିଲେ । କିନ୍ତୁ ସି. ଆର. ଦାସଙ୍କ ମହତ୍ ତ୍ୟାଗ ମନ୍ତ୍ରରେ ଦୀକ୍ଷିତ ହୋଇ ଅପାର ସର୍ବସ୍ୱ ଦେଶମାତୃକାର ଚରଣରେ ଅର୍ପଣ କରି ପ୍ରାଣତ୍ୟାଗ କଲେ । ଜେଲ ଜୀବନରେ ପୀଡ଼ିତ ହୋଇ ତାଙ୍କର ଜୀବନ ନଷ୍ଟ ହେଲା ।

**ଡାକ୍ତର ମୁଞ୍ଜେ**—ମଧ୍ୟପ୍ରଦେଶର ସର୍ବପ୍ରଧାନ ହିନ୍ଦୁ ନେତା । ଆମର ଦେଶର ଯୁବକମାନେ ସାମରିକ ବିଦ୍ୟାରେ ଯେପରି ସୁଯୋଗ ସୁବିଧା ପାଇବେ ସେଥିପାଇଁ ଖୁବ୍ ଉଦ୍ୟମ କରିଛନ୍ତି ଏବଂ ଅନେକ ଅଧିକାର ପାଇଛନ୍ତି । ଆଇନ ଅମାନ୍ୟ ଆନ୍ଦୋଳନରେ ଯୋଗଦାନ କରି କାରାଦଣ୍ଡ ପାଇଥିଲେ । ହିନ୍ଦୁ ମହାସଭାର ସଭ୍ୟ ଓ ନେତା ଥିଲେ ।

**ନାରାୟଣ ମୋହନ ଦେ ଏମ୍. ଏ.**—ପାଟନା କଲେଜର ଇଂରାଜୀ ଅଧ୍ୟାପକ । ଭଦ୍ରକ ସନ୍ନିକଟ ଗ୍ରାମରେ ୧୨୯୪ ଫାଲ୍‌ଗୁନରେ ଜନ୍ମ, ପିତା ମାତାଙ୍କ ନାମ-ପ୍ରାଣକୃଷ୍ଣ ଦାସ ଓ ମୁକ୍ତାମଣି—ବାଲେଶ୍ୱରର ହରମୋହନ ଦେ ଓ ଅନ୍ନପୂର୍ଣ୍ଣାଙ୍କ ପୋଷ୍ୟପୁତ୍ର । ୧୯୦୧ ରେ ମି: ଉ: ରେ, ୧୯୦୭ରେ ଏଣ୍ଟ୍ରାନ୍ସରେ ଏବଂ ୧୯୦୯ରେ ଆଇ. ଏ. ରେ କୃତିତ୍ୱ ସହ ଉତ୍ତୀର୍ଣ୍ଣ ଓ ବୃତ୍ତିଲାଭ । ୧୯୧୮ ରେ ଇଂରାଜୀରେ ଅନର୍ସସହ ବି. ଏ. ପାସ । ୧୯୧୬ ରେ ଏମ୍. ଏ. ପରୀକ୍ଷାରେ ବାହାରଣ ଛାତ୍ର ଭାବରେ ପରୀକ୍ଷାଦେଇ ବିହାରଓଡ଼ିଶାରେ ପ୍ରଥମ । ୧୯୧୬ ଜୁଲାଇରେ ବିହାରଓଡ଼ିଶା ଏଡୁକେସନ ସର୍ଭିସରେ ପ୍ରବେଶ । ୧୯୧୩ ରେ ଭଦ୍ରକ ହାଇସ୍କୁଲ ଓ ଟାଉନ ଭିକ୍ଟୋରିଆ ହାଇସ୍କୁଲରେ ଏବଂ ୧୯୧୪—୧୬ କଟକ ପି. ଏମ୍. ଏକାଡେମିରେ ଶିକ୍ଷକତା । ବାଲ୍ୟକାଳରୁ ୧୯୨୧ ପର୍ଯ୍ୟନ୍ତ ପ୍ରାୟ—ସ୍ୱତନ୍ତ୍ର ପ୍ରବନ୍ଧ ଓ ଉତ୍କୃଷ୍ଟ କବିତା ଲେଖକ—୧୯୧୨ ରେ ପ୍ରଥମେ ଏହାଙ୍କ କବିତା ପ୍ରକାଶିତ ହୋଇ ସର୍ବତ୍ର ଆଦୃତ ହୋଇଥିଲା ।

## କୁମାରୀ ମନୋରମା ଦେବୀ—

ଗଞ୍ଜାମଜିଲ୍ଲା ଚନ୍ଦ୍ରପୁର ( ବ୍ରହ୍ମପୁର-ଗ୍ରାମ ) ରେ ଭା ୨୦।୫।୧୯୧୨ ରିଖ ଶନିବାରରେ ଜନ୍ମ । ପାରଳା ତେଲଗୁ ବାଳିକା ବିଦ୍ୟାଳୟରେ ପ୍ରାଥମିକ ଶିକ୍ଷା । ତତ୍ପରେ ୧୯୧୯ ରେ ବ୍ରହ୍ମପୁର ପାଟଣାରେ ( Hope Girls' School ) ହୋପ ବାଳିକା ବିଦ୍ୟାଳୟ ଓ ମିଶନ ପାଟଣା ବାଳିକା ବିଦ୍ୟାଳୟରେ ଅଧ୍ୟୟନ ୧୯୨୦ରେ କୁଲିନ ମେଷ ହାଇସ୍କୁଲରେ ପ୍ରବେଶ—୧୯୨୮ ରେ ସ୍କୁଲ ଫାଇନାଲ ପରୀକ୍ଷାରେ (Matric) କୃତିତ୍ୱ ସହ ପାଶ ଏବଂ ସ୍ୱର୍ଣ୍ଣପଦକ ସହ ପୁସ୍ତକ ଓ ପୁରସ୍କାର ଲାଭ—୧୯୩୦ ରେ ଷ୍ଟାମାସ୍ତୁ Mrs. A. V. N, College ରେ I. A. ପାଶ । ୧୯୩୩ ରେ ମାନ୍ଦ୍ରାଜ ବିଶ୍ୱବିଦ୍ୟାଳୟର ପ୍ରେସିଡେନ୍ସି କଲେଜରେ ବି. ଏ. ( Honores ) ଇଂରାଜୀ ଏମ୍. ଏ. ପାଶ—୧୯୩୪ ରେ Lady Willingdon College ରେ LT. ପାଶ । ସମ୍ପ୍ରତି ପଞ୍ଜାବସ୍ଥ ଜଳନ୍ଧର କନ୍ୟା ମହାବିଦ୍ୟାଳୟର ଆଇ. ଏ. ଶ୍ରେଣୀର ଅଧ୍ୟାପିକା । ଏ ନାରୀକବି ଶ୍ରୀମତୀ ଅନ୍ନପୂର୍ଣ୍ଣାଙ୍କର କନ୍ୟା ।

**ହରେକୃଷ୍ଣ ମହତାବ୍**—ପିତା ଜଗନ୍ନାଥ ମହତାବ୍—ନିଜେ ଅପୁତ୍ରକ, ଏହାଙ୍କ ବଡ଼ ଝିଅଙ୍କ ଗର୍ଭରୁ କୃଷ୍ଣଚରଣ ଦାସଙ୍କ ଔରସରେ ହରେକୃଷ୍ଣଙ୍କର ଜନ୍ମ । ହରେକୃଷ୍ଣ ତାଙ୍କ ପିତାଙ୍କର ୨ୟ ପୁତ୍ର; ୧ମ ପୁତ୍ର ବିକଳାଙ୍ଗ ଥିବାରୁ ଜଗନ୍ନାଥ ମହତାବ୍ ଏହାଙ୍କୁ ପୋଷ୍ୟପୁତ୍ର ରୂପେ ଗ୍ରହଣକରି ନିଜ ପରେ ଅଗରପଡ଼ା ଜମିଦାରୀର ଉତ୍ତରାଧିକାରୀ ନିଯୁକ୍ତ କରିଗଲେ । ଏହାଙ୍କର ପିତା କୃଷ୍ଣଚରଣ ଦାସଙ୍କୁ ହରେକୃଷ୍ଣଙ୍କର ଅଭିଭାବକ ଓ ଷ୍ଟେଟ୍‌ର ସବୈତନିକ ପରିଚାଳକ ନିଯୁକ୍ତକରି ଯାଇଥିଲେ । ମାତା—ସ୍ୱର୍ଣ୍ଣ ଧନୀ ଦେବୀ । ଶିକ୍ଷା—(୧) ପ୍ରାଥମିକ-ଗୃହଠାରେ (୨) ମାଇନର-ଗୃହଠାରେ (୩) ଭଦ୍ରକ-ଭଦ୍ରକ ହାଇସ୍କୁଲରେ; ମାଟ୍ରିକ୍ୟୁଲେଶନ ପାଶ୍ ୧୯୧୮ ରେ ( ୪ ) ବିଶ୍ୱବିଦ୍ୟାଳୟ—୧୯୧୯ରେ I. Sc. ପାଶ୍ କରି ବି. ଏସ୍ ସି. ଅଧ୍ୟୟନ—୧୯୨୦ରେ ବି. ଏ. ଶ୍ରେଣୀତ୍ୟାଗ—ଅସହଯୋଗ ଆନ୍ଦୋଳନରେ ଯୋଗ । ରାଜନୈତିକ ଜୀବନ-ବହୁଥର କାରାବାସ ଭୋଗ । ବାଲେଶ୍ୱରରେ "ପ୍ରଜାତନ୍ତ୍ରର" ପରିଚାଳନା—ବିହାର-ଓଡ଼ିଶା କାଉନ୍‌ସିଲର ମେମ୍ବର—ବାଲେଶ୍ୱର ଜିଲ୍ଲାବୋର୍ଡ଼ର ଚେୟାରମ୍ୟାନ୍ । ସଂଗଠନ—ଅଗରପଡ଼ାରେ କର୍ମମନ୍ଦିର, ମ. ଇ. ସ୍କୁଲ ପରିଚାଳନା—ହାଇସ୍କୁଲ ଓ ଡାକ୍ତରଖାନା ସ୍ଥାପନ ଓ ପରିଚାଳନା ।

**ନାରୀ କବି ଅନ୍ନପୂର୍ଣ୍ଣା**—୧୮୭୩ ସାଲରେ ଗଞ୍ଜାମଜିଲ୍ଲା ଚିକିଟି ରାଜଧାନୀରେ ଜନ୍ମ । ୧୯୦୨ରେ କବିତା ଲେଖା ଆରମ୍ଭ । ଏହାଙ୍କର କବିତା ଲେଖିବା ଶକ୍ତି ଈଶ୍ୱରଦତ୍ତ । ସୁଦୂର ଦକ୍ଷିଣ ପାଟଣାରେ ଥାଇ ମାତୃଭାଷାର ଉନ୍ନତିକଳ୍ପେ ମନପ୍ରାଣ ଢାଳି ଦେଇଛନ୍ତି । ଭୀଷଣ ସାମାଜିକ ସଂଘର୍ଷ ଏହାଙ୍କର ବ୍ୟକ୍ତିତ୍ୱକୁ ବିକଶିତ କରି ଦେଇଛି ।

**ଆଚାର୍ଯ୍ୟ ହରିହର ଦାସ**—ଏ ମହାଶୟ ୧୮୭୨ରେ ପୁରୀଜିଲ୍ଲା ଶ୍ରୀରାମଚନ୍ଦ୍ରପୁର ଶାସନରେ ଜନ୍ମଗ୍ରହଣ କରିଥିଲେ । ଏହାଙ୍କ ପିତାଙ୍କ ନାମ ମହାଦେବ ବ୍ରହ୍ମା ଓ ମାତାଙ୍କ ନାମ ଶ୍ରଦ୍ଧାଦେବୀ । ସେ ଭର୍ଣ୍ଣାକ୍ୟୁଲର ଓ ଏଣ୍ଟ୍ରାନ୍ସ ପରୀକ୍ଷୋତ୍ତୀର୍ଣ୍ଣ ହୋଇ ୧୯୦୨ରେ ଆଇ. ଏ. ପାଶ କଲେ । ତତ୍ପରେ ପୁରୀଜିଲ୍ଲା ସ୍କୁଲ, ଜାଜପୁର ହାଇସ୍କୁଲ, ରେଭେନ୍ସା କଲେଜିଏଟ୍, ମିଶନ ହାଇସ୍କୁଲ, ପି.ଏମ୍. ଏକାଡେମୀ ଓ ସତ୍ୟବାଦୀ ହାଇ ସ୍କୁଲରେ ଶିକ୍ଷକତା କରି ବିପୁଳ ଯଶ ଅର୍ଜନ କରିଅଛନ୍ତି । ଏହାଙ୍କର ଆଚାର, ବ୍ୟବହାର ଓ ସ୍ୱଜାତି ଓଡ଼ିଆରେ ଅତୁଳନୀୟ । ବହୁତ ଛାତ୍ର ଏହାଙ୍କୁ ଆଦର୍ଶ କରି ନିଜ ନିଜର ଜୀବନ ଗଢ଼ିଛନ୍ତି ଓ ଗଢ଼ୁଛନ୍ତି । ୧୯୧୨ ରେ ଯେତେବେଳେ ସତ୍ୟବାଦୀ ସ୍କୁଲ ଜାତୀୟ ବିଦ୍ୟାଳୟରେ ପରିଣତ ହେଲା ଏ ମହାଶୟ ସେଠାରେ ଶିକ୍ଷକ ଥାଇ ଛାତ୍ରବୃନ୍ଦଙ୍କର ବିବିଧ ବିଗରେ ଉନ୍ନତି ପାଇଁ ପ୍ରୟାସୀ ହେଲେ । ସେ ୧୯୩୦ ରେ ଲବଣ ଆଇନ ଅମାନ୍ୟରେ ଯୋଗଦାନ କରି କାରାରୁଦ୍ଧ ହେଲେ । ସେହିଦିନଠାରୁ ଅଦ୍ୟାବଧି ସେ ଚାରିଥର କାରାବାସୀ ହୋଇଲେଣି ( ୧୯୩୦, ୩୨, ୩୩, ୩୪ )

**ଅଧ୍ୟାପକ ପ୍ରାଣକୃଷ୍ଣ ପରିଜା** M. A.(Cantab) B. Sc. (cal) I. E. S.

କଟକ ଜିଲ୍ଲା—ଇଛାପୁର, ବାଲିକୁଦାରେ ୧୮୯୧ ମସିହା ଏପ୍ରିଲ ( ଶୁକ୍ଳ ଚତୁର୍ଦ୍ଦଶୀ )ରେ ଜନ୍ମ; ପିତା—ବିଶ୍ୱନାଥ ପରିଜା ଓ ମାତା ଜୟନ୍ତୀ ଦେଈ, ଗ୍ରାମରେ ପ୍ରାଥମିକ ଶିକ୍ଷା ଓ



ମହାରାଜା ସାର୍ ବୀରମିତ୍ରୋଦୟ ସିଂହଦେବ ଧର୍ମନିଧି ଜ୍ଞାନଗୁଣାକର
କେ. ସି. ଆଇ. ଇ.— ସୋନପୁର ଷ୍ଟେଟ



ଅଧ୍ୟାପକ ଶ୍ରୀ ପ୍ରାଣକୃଷ୍ଣ ପରିଜା ଆଇ. ଇ. ଏସ୍.

ଜମିଦାରୀ ସେରସ୍ତାରେ କାର୍ଯ୍ୟ ଶିକ୍ଷା । ବାଲିକୁଦା ମାଇନର ସ୍କୁଲରୁ ବୃତ୍ତି ପାଇ କଲେଜିଏଟ୍ ସ୍କୁଲରେ ଅଧ୍ୟୟନ । ୧୯୦୯ ରେ ପ୍ରବେଶିକା ପରୀକ୍ଷାରେ ବିଶ୍ୱବିଦ୍ୟାଳୟରେ ସପ୍ତମ ଓ ସଂସ୍କୃତରେ ପ୍ରଥମ ହୋଇ ଟ ୨୦ ଙ୍କା ବୃତ୍ତି ପାଇଲେ—୧୯୧୧ ରେ ଅଇ. ଏ. ପରୀକ୍ଷାରେ କଲିକତା ବିଶ୍ୱବିଦ୍ୟାଳୟର ପ୍ରଥମଶ୍ରେଣୀରେ ପଞ୍ଚମ ସ୍ଥାନ ଅଧିକାର କଲେ ୧୯୧୩ ରେ ପ୍ରେସିଡେନ୍ସି କଲେଜରେ ଗଣିତରେ ଅନର୍ସ ସହିତ ବି. ଏସ୍‌ସି. ପରୀକ୍ଷାରେ ଉତ୍ତୀର୍ଣ୍ଣ ହୋଇ ୧୯୧୪ ରେ ଗଭର୍ଣ୍ଣମେଣ୍ଟ ବୃତ୍ତି ପାଇ ବିଲାତ ଯାଇଥିଲେ । ତେତେବେଳେ ସେ ଷଷ୍ଠବାର୍ଷିକ ଶ୍ରେଣୀରେ ଅଧ୍ୟୟନ କରୁଥିଲେ । ବିଲାତରେ ସାତବର୍ଷ ରହି Botany, Natural Science ଅଧ୍ୟୟନ କଲେ । Frauk Smart Studeutsship and Prize ୨ ବର୍ଷ ପାଇଲେ । ୧୯୧୮ ପର୍ଯ୍ୟନ୍ତ କୌଣସି ଭାରତୀୟ ଛାତ୍ର ଏହା ଲାଭ କରି ନ ଥିଲେ । ୧୯୧୭ ରେ ପ୍ରଥମ ଓ ୧୯୧୮ ରେ ଦ୍ୱିତୀୟଯୁଦ୍ଧରେ ସଫଳତା ଲାଭକଲେ କାଏଷ୍ଟ କଲେଜର ଛାତ୍ର ହୋଇ Food Investigation Boardରେ ଏକବର୍ଷ ଗବେଷଣା କଲେ । ୧୯୨୧ ରେ ସେଠାରୁ ଅଧ୍ୟାପକ ପଦରେ ନିଯୁକ୍ତ ହୋଇ ଭାରତକୁ ଆସି ରେଭେନ୍ସା କଲେଜରେ ଯୋଗଦାନ କଲେ । ୧୯୩୦ ରେ ଏଲାହାବାଦରେ ବିଜ୍ଞାନ ମହାସଭା (ବୋଟାନି ବିଭାଗରେ) ସଭାପତି ହୋଇଥିଲେ—୧୯୩୧ ଠାରୁ ସିଣ୍ଡିକେଟର ମେମ୍ବର ଓ ଶିକ୍ଷାବିଭାଗର ବିଶ୍ୱବିଦ୍ୟାଳୟମାନଙ୍କ ପାଇଁ ଦୁଇଥର ଲେଜିସ୍ଲେଟିଭ୍ କାଉନ୍‌ସିଲର ମେମ୍ବର—ବିଲେଷ୍ଟର ଛାତ୍ର ସମ୍ମିଳନୀର ସଭାପତି ନେସ୍‌ନେଲ ଇନ୍‌ଷ୍ଟିଚ୍ୟୁଟ (୧୯୩୫) ଫାଉଣ୍ଡେସନ୍‌ର ଫେଲୋ ଉତ୍କଳ ସାହିତ୍ୟ ସମାଜର ୧୯୩୪ ଠାରୁ ସଭାପତି ।

**ବିଶ୍ୱନାଥ କର**—୧୮୬୪ ଡିସେମ୍ବରରେ କଟକ ମୂଳବସନ୍ତ ଗ୍ରାମରେ କର ବଂଶରେ ଜନ୍ମ, ଗ୍ରାମରେ ପ୍ରାଥମିକ ଶିକ୍ଷା ଓ ସଂସ୍କୃତ ଶିକ୍ଷା—କୁଆଁପାଳ ମାଇନର ସ୍କୁଲରେ ଅଧ୍ୟୟନ, ବାରବର୍ଷ ବୟସରେ ଅଷ୍ଟବର୍ଷ ବୟସ୍କା କନ୍ୟା ଜାନକୀଙ୍କୁ ବିବାହ । ପି. ଏମ୍. ଏକାଡେମିରେ ଅଧ୍ୟୟନ ଓ କପିଳେଶ୍ୱର ବିଦ୍ୟାଭୂଷଣଙ୍କ ସହିତ ସଂସ୍କୃତ ତଥା ଓଡ଼ିଆ ସାହିତ୍ୟର ଆଲୋଚନା, ମିସନ ସ୍କୁଲରେ ଅଧ୍ୟୟନ ଓ 'ସମ୍ବାଦବାହିକା'ର ସମ୍ପାଦକ । ତତ୍ପରେ ଏକ ସ୍କୁଲର ହେଡ୍‌ମାଷ୍ଟର ଓ ପରେ ବ୍ରାହ୍ମଧର୍ମ ଗ୍ରହଣ, କଟକ ଟାଉନ୍ ସ୍କୁଲରେ ଶିକ୍ଷକତା, ୧୮୯୭ ରେ ଉତ୍କଳ ସାହିତ୍ୟ ସମ୍ପାଦନ ୧୯୦୦ ରେ ଶିକ୍ଷକତା ତ୍ୟାଗ ଓ ଉତ୍କଳ ସାହିତ୍ୟପ୍ରେସ ଆରମ୍ଭ ୧୯୦୫-୭ ରେ ସ୍ୱଦେଶୀ ଆନ୍ଦୋଳନରେ ଯୋଗଦାନ । ଉତ୍କଳ ସମ୍ମିଳନୀର ବିଶିଷ୍ଟ ସ୍ଥାପକ ଓ କର୍ମୀ, ଉତ୍କଳ ସାହିତ୍ୟ ସମାଜର ସଭାପତି-ପଦତଳାଚର ପତନଥିବାରୁପେ ବିହାରଓଡ଼ିଶା ସରକାରଙ୍କର ମନୋନୀତ ମେମ୍ବର ଓ ସେଠାରେ ଓଡ଼ିଆରେ ବକ୍ତୃତା ଦେଇ ନିଜର ମୌଳିକତା ପ୍ରଦର୍ଶନ, ୧୯୩୧ରେ ସରକାରି ପ୍ରଦତ୍ତ ରାଏସାହେବ ଉପାଧି ପ୍ରତ୍ୟାଖ୍ୟାନ । ୩୮ ବର୍ଷ ଉତ୍କଳ ସାହିତ୍ୟକୁ ନାନା ବାଧା ଓ ମତଭେଦ ସତ୍ତ୍ୱେ ଚଳାଇ ଥିଲେ । ପ୍ରବୀଣ ସମ୍ପାଦକ, ସମାଜ ସଂସ୍କାରକ, ଶୁଦ୍ଧସାହିତ୍ୟରେ ପ୍ରଗଲ୍‌ଭବକ୍ତା—ସତ୍ୟସମାଚାରର ସମ୍ପାଦକ—୧୯୩୪ ଅକ୍ଟୋବର ତା ୧୯ ରିଖରେ ସ୍ୱର୍ଗାରୋହଣ ।

**ବାବାଜୀ ପଦ୍ମଚରଣ ଦାସ**—୧୨୬୫ ସାଲ ପୌଷ ବହୁଳ ଅମାବାସ୍ୟାରେ ସୋର ସନ୍ତୁସରପୁର ଗ୍ରାମରେ ଜନ୍ମ; ପିତା—ସନ୍ନଚରଣ ଦାସ, ମାତା—ସୁଭଦ୍ରା ଦେଈ-ଗ୍ରାମରେ ପ୍ରାଥମିକ ଶିକ୍ଷା ଓ ମି. ଭି. ପାସ—୧୩ ବର୍ଷରେ ବାଲେଶ୍ୱର ଜିଲ୍ଲା ସ୍କୁଲରେ ଅଧ୍ୟୟନ ଓ ୧୮୯୭ ରେ ପ୍ରଥମ ଶ୍ରେଣୀରେ ପାସ—୧୯୦୦ ରେ ଏଫ୍. ଏ, ଓ ୧୯୦୨ ରେ ବି.ଏ. ପାସ—କଟକ ପି. ଏମ୍. ଏକାଡେମୀରେ ଶିକ୍ଷକତା ଭଦ୍ରକ ଖାସମହାଲ ତହସିଲଦାର. ଓକିଲାତି ପରୀକ୍ଷାରେ ବ୍ୟର୍ଥ ମନୋରଥ । ୧୯୦୭ ରେ ଢେଙ୍କାନାଳ ହାଇସ୍କୁଲରେ ଶିକ୍ଷକତା—୧୯୦୮ ରେ ସେଠା ରାଜକୁମାରଙ୍କ ଗୃହଶିକ୍ଷକ-ରାଜାଙ୍କ ରାଜ୍ୟଲାଭପରେ ସେ ଷ୍ଟେଟର ସହକାରୀ ଦେୱାନ୍ ୧୯୧୧ରେ ଭେଖାଶ୍ରୟ ଓ ନାମ ପରିବର୍ତ୍ତନ । (ଏହାଙ୍କ ପ୍ରଥମ ନାମ ପାର୍ବତୀ ଚରଣ ଦାସ) । ବାଲ୍ୟାବସ୍ଥାରେ ବିବିଧ କବିତା ଓ ପ୍ରବନ୍ଧ ଲେଖିଥିଲେ । ଚୈତନ୍ୟ ଚରିତାମୃତ, ଚୈତନ୍ୟ ଚନ୍ଦ୍ରାମୃତ ( ପ୍ରଥମ ), ପ୍ରଭୁ ରସିକାନନ୍ଦ, ପ୍ରଭୁ ଶ୍ୟାମାନନ୍ଦ, ଭକ୍ତକଥା, ଠାକୁର ଶ୍ରୀହରି ଦାସ, ବୃହତ୍ ଭାଗବତାମୃତ; ଶ୍ରୀକୃଷ୍ଣ, ଶ୍ରୀ ଗୌରାଙ୍ଗ, ପ୍ରେମପରୁଦ୍ର ନାଟକ, ରାଧାକୃଷ୍ଣ କେଳିବିଳାସ, କଂସବଧ, ଓଡ଼ିଆ କୀର୍ତ୍ତନ (୧ମ ଓ ୨ୟ) ଓ ସଙ୍ଗୀତ ହାରାବଳୀ, ଏ ଭକ୍ତଙ୍କର ଲେଖା ।

ଶାସ୍ତ୍ର ଶୁଣିବା ତା ନିଷ୍ଫଳ ଯାର ନାହିଁ ବିବେକ ।

## ଅଭିରାମ ଭଞ୍ଜ ଏମ୍. ଏ. ବି. ଏଲ୍—

ଏ ମହାଶୟ ଭଞ୍ଜ ବଂଶରେ ଜନ୍ମ । ଏହାଙ୍କର ଗୃହ ପୁରୀ ଜିଲ୍ଲା ହଳଦିଆପଦା ଗ୍ରାମରେ । ଏ ୧୯ ବର୍ଷରେ ଏମ୍. ଏ. ବି. ଏଲ୍. ପାସ କରି ପିଲାମାନଙ୍କ ପାଇଁ ଇତିହାସ ଲେଖି-ଥିଲେ । ସେ ଅଳ୍ପ ବୟସରେ ମରିଗଲେ । ଏହାଙ୍କର ସ୍ୱଭାବ ମଧୁମୟ ଥିଲା ।

## ଏଲ୍. ଆର୍. ତେୟାର୍ସି— ଏ ମହାଶୟ ଜଣେ

ଜୋଷ୍ଟିପଡ ବଣିକ । ଏହାଙ୍କ ଘର କଚ୍ଛ ଗଡ଼ଜାତରେ । ବୋମ୍ବାଇ 'ଜନନ୍ମ' ଦୈନିକ ପତ୍ରିକା ଏହାଙ୍କର ସ୍ୱତ୍ୱ ।

## ଅଧ୍ୟାପକ ଜି. ଆର୍. ଅଭ୍ୟଙ୍କର—

ଏ ମହାଶୟ ପୁନା କଲେଜର ଜଣେ ଖ୍ୟାତନାମା ଅଧ୍ୟାପକ ଓ ଭାରତ ଦେଶୀୟ ରାଜ୍ୟ ପ୍ରଜାଙ୍କ ମଧ୍ୟରେ ବିଶିଷ୍ଟ ନେତା ।

## ରାୟବାହାଦୁର ସୁଦାମଚରଣ ନାୟକ—

ବାଲେଶ୍ୱର ଜିଲ୍ଲା ଭଦ୍ରକ ସ: ଡି: ଅନ୍ତର୍ଗତ ପୁରୁଣା-ବଜାର ବାରୁସାହିରେ ୧୮୬୩ରେ ଜନ୍ମ । ପିତା-ଗୋବିନ୍ଦଚନ୍ଦ୍ର ନାୟକ ଓ ମାତା-ନୂପୁର । ନିଜ ଯୋଗ୍ୟତାରେ ଢେଙ୍କାନାଳର ମେନେଜର ହୋଇ ଓଡ଼ିଶା ଟ୍ରିବୁଟେରି ମାହାଲର ସହକାରୀ ସୁପରିଣ୍ଟେଣ୍ଡେଣ୍ଟ ହୋଇଥିଲେ । ଏହାଙ୍କର ହୃଦୟ ସରଳ ଓ ବ୍ୟବହାର ଅମାୟିକ । ଖ୍ୟାତ ପ୍ରତିପତ୍ତି ମଧ୍ୟ ଯଥେଷ୍ଟ ଥିଲା ଓ ସ୍ୱଦେଶର ଉନ୍ନତି ପ୍ରୟାସୀ ଥିଲେ । ବୃଦ୍ଧ ବୟସରେ ଏକମାତ୍ର ପୁତ୍ରର ଅକାଳବିୟୋଗ ହେତୁ ଶୋକରେ ମ୍ରିୟମାଣ ହୋଇ ୧୯୨୫ ଜାନୁଆରୀରେ ଇହଧାମ ତ୍ୟାଗ କଲେ । ତାଙ୍କର ପୁତ୍ରବଧୂ ସୁଶୀଳା ନିଶାମଣି ଭଗବାନଙ୍କ ସେବାରେ ଆତ୍ମନିୟୋଗ କରି କାଳ କାଟୁଅଛନ୍ତି । ଏହାଙ୍କର ଜ୍ୟେଷ୍ଠଭ୍ରାତା ରାୟ ବାହାଦୁର ନାରାୟଣଚନ୍ଦ୍ର ନାୟକ ଅନୁଗୁଳର ସୁଯୋଗ୍ୟ ଡେପୁଟି କମିସନର ଥାଇ ସରକାର ତଥା ଦେଶବାସୀଙ୍କର ବହୁ ଉପକାର କରି ଯାଇ ଅଛନ୍ତି ।

## ରାମଚନ୍ଦ୍ର ଦାଶ—ପୁରୀଜିଲ୍ଲା ଅନ୍ତର୍ଗତ ଭିଙ୍ଗାରପୁର ଗ୍ରାମରେ ଏକ ଦରିଦ୍ର ନିଷ୍ଠାପର ବ୍ରାହ୍ମଣ ଗୃହରେ

୧୮୬୭ ସାଲରେ ଜନ୍ମ । ପିତା-ବାମନ ଦାଶ, ମାତା—ଅନ୍ନପୂର୍ଣ୍ଣା ଦେବୀ । ପ୍ରାଚୀନ ରୀତିରେ କିଛିଦିନ ଶିକ୍ଷା କରି ୧୮୭୯ ରେ ସୁନ୍ଦରଗ୍ରାମ ସ୍କୁଲରେ ଓ ୧୮୮୩ ରେ କଟକ ନର୍ମାଲ ସ୍କୁଲରେ ଅଧ୍ୟୟନ ଏବଂ ୧୮୮୬ ରେ ପରୀକ୍ଷୋତ୍ତୀର୍ଣ୍ଣ । ୧୮୮୭ ରେ ମୋକ୍ତାରୀ ପାସ କରି ପୁରୀରେ ପ୍ରଥମ ଓଡ଼ିଆ ମୋକ୍ତାର । ନିଜର ବହୁ ବ୍ୟୟରେ ଜିଲ୍ଲା ମଧ୍ୟରେ କେତେକ ସ୍କୁଲ ସ୍ଥାପନ । ଦେଶବାସୀଙ୍କ କଲ୍ୟାଣ ନିମନ୍ତେ ନିଜର ସୁଖସ୍ୱାଚ୍ଛନ୍ଦ୍ୟ ବଳିଦାନ । ପୁରୀରେ ଉତ୍କଳ ବ୍ରାହ୍ମଣ ସମିତି ସ୍ଥାପନ । ସରଳ, ଶାନ୍ତ ମାନବ ସ୍ପଷ୍ଟବାଦୀ, ସଂଯମୀ—ଦେଶ-ସେବକ, କଂଗ୍ରେସ ତଥା ଉତ୍କଳ ସମ୍ମିଳନୀର ଭକ୍ତ । ୧୯୦୬ ଜୁଲାଇ ୩୧ ତାରିଖ ମଙ୍ଗଳବାର ଅପରାହ୍ଣରେ ସ୍ୱର୍ଗବାସୀ । ଏହାଙ୍କର ପ୍ରିୟଶିଷ୍ୟ ଉତ୍କଳମଣି ପଣ୍ଡିତ ଗୋପବନ୍ଧୁ ଦାଶ ।

## ନନ୍ଦକିଶୋର ଦାସ ଏମ. ଏ,—

ବାଲେଶ୍ୱର ଜିଲ୍ଲା ସୋରରେ ୧୩୦୧ ସାଲ ଭାଦ୍ର ୧୧ ଦିନ ଜନ୍ମ । ପିତା-ଶ୍ୟାମଚରଣ ଦାସ, ମାତା-ଅମ୍ବିକା ଦେଈ । ସୋରରେ ମି: ଇ: ପାସ, ବାଲେଶ୍ୱର ଜିଲ୍ଲାସ୍କୁଲରୁ ୧୯୧୪ ରେ ପ୍ରବେଶିକା ପରୀକ୍ଷାରେ ବୃତ୍ତି ଗ୍ରହଣ । ରେଭେନ୍ସା କଲେ-ଜରେ ଆଇ. ଏ. ପରୀକ୍ଷାରେ ବୃତ୍ତି ଗ୍ରହଣ (୧୯୧୬) ଓ ୧୯୧୮ ରେ ବି. ଏ. ପରୀକ୍ଷୋତ୍ତୀର୍ଣ୍ଣ-୧୯୨୦ ରେ ଏମ୍. ଏ. ପାସ ଓ ଆଇନ ଶ୍ରେଣୀରେ ଅଧ୍ୟୟନ ସମୟରେ ୧୯୨୧ ରେ ଅସହଯୋଗ ଆନ୍ଦୋଳନରେ ଯୋଗଦାନ । ସତ୍ୟବାଦୀ ଜାତୀୟ ବିଦ୍ୟାଳୟରେ ଶିକ୍ଷକତା (୧୯୨୨-୨୫)—ଲେଜିସ୍ଲେଟିଭ କାଉନ୍ସିଲର ମେମ୍ବର, ବାଲେଶ୍ୱର ଜିଲ୍ଲାବୋର୍ଡର ମେମ୍ବର ଓ ମ୍ୟୁନିସିପାଲିଟିର କମିସନର (୧୯୨୭-୨୮)—ଜାତୀୟ ଆନ୍ଦୋଳନ ପାଇଁ କାରାବାସ (୧୯୩୦)ରେ ଯୋଗଦାନ ସମ୍ପ୍ରତି ଓଡ଼ିଶା ପ୍ରାଦେଶିକ ହରିଜନ ସେବକ ସଂଘର ସମ୍ପାଦକ ।

ପାଏ କି ସୁସ୍ୱାଦୁ ଖଡ଼କା ପାକ ଶିଖି ଅନେକ ।



ସ୍ୱର୍ଗୀୟ ରାମଚନ୍ଦ୍ର ଦାଶ



ଆଚାର୍ଯ୍ୟ ହରିହର ଦାଶ



ଶ୍ରୀଯୁକ୍ତ ଗୋପବନ୍ଧୁ ଚୌଧୁରୀ



ପଣ୍ଡିତ ଲିଙ୍ଗରାଜ ମିଶ୍ର

ସତ୍ୟବାଦୀ ପ୍ରେସ, କଟକ ।

# ମହାପୁରୁଷମାନଙ୍କ ଜୀବନୀ

## ତ୍ରୈଲିଙ୍ଗ ସ୍ୱାମୀ

ମାନ୍ଦ୍ରାଜ ପ୍ରଦେଶରେ ହଲିପୁଲା ଗ୍ରାମରେ ବ୍ରାହ୍ମଣ କୁଳରେ ମହାତ୍ମା ତୈଲଙ୍ଗ ସ୍ୱାମୀ ଜନ୍ମଗ୍ରହଣ କରିଥିଲେ । ନୃସିଂହଦେବ ବହୁଧନ ଅପୁତ୍ରିକ ଥାଇ ପୁନର୍ବାର ବିବାହ କରିବାରୁ ତାଙ୍କର ପ୍ରଥମା ସ୍ତ୍ରୀ ପୁତ୍ରପ୍ରାର୍ଥୀ ହୋଇ ବ୍ରତାନୁଷ୍ଠାନ କଲେ, ଏବଂ ଈଶ୍ୱରସାଧନା କରି ପୁତ୍ର ପ୍ରାପ୍ତ ହୋଇ ସେ ପୁତ୍ରର ନାମ ଶିବରାମ ରଖିଲେ । ଶିବରାମ ୫ ମ ବର୍ଷ ବୟସରେ ପିତାଙ୍କ ଦ୍ୱାରା ଜନନୀଙ୍କ ଯତ୍ନରେ ଗ୍ରାମ୍ୟ ପାଠଶାଳାରେ ପ୍ରବେଶକଲେ ଏବଂ ଅଳ୍ପ ସମୟ ମଧ୍ୟରେ ନିଜର ଅସାଧାରଣ ମେଧା ଓ ବୁଦ୍ଧିବଳରେ ସବୁ ବିଦ୍ୟାରେ ଦକ୍ଷ ହେଲେ । ମାତାଙ୍କ ଅନୁରୋଧରେ ସେ ବିବାହ କରି ୪୮ ବର୍ଷ ବୟସ ପର୍ଯ୍ୟନ୍ତ ସଂସାରୀ ହେଲେ ଓ ତାଙ୍କ ମନରେ ବୈରାଗ୍ୟ ଜାତ ହେବାରୁ ସେ ନିଜର ସମସ୍ତ ସମ୍ପତ୍ତି ବୈମାତ୍ରେୟ ଭ୍ରାତାମାନଙ୍କୁ ପ୍ରଦାନ କରି ମାତାଙ୍କ ସମାଧି ସ୍ଥାନରେ କେତେକ ବର୍ଷ ଅବସ୍ଥାନ କଲେ ଏବଂ ଯୋଗାଭ୍ୟାସରେ ରତ ହେଲେ ।

ତଦନନ୍ତର ଶିବରାମ ପର୍ଯ୍ୟଟନ କରିବାକୁ ଯାଇ ପଥରେ ଦୈବ ଚେଷ୍ଟାରେ ସଦ୍‌ଗୁରୁ ପ୍ରାପ୍ତ ହୋଇ ଯୋଗ ଶିକ୍ଷା କଲେ ଏବଂ ତାହାଙ୍କ ନିକଟ ଦୀକ୍ଷିତ ହୋଇ "ତୈଲଙ୍ଗ ସ୍ୱାମୀ" ଉପାଧି ପ୍ରାପ୍ତ ହେଲେ ।

ଗୁରୁଦେବଙ୍କ ସ୍ୱର୍ଗପ୍ରୟାଣ ପରେ ଶିବରାମ ସେତୁବନ୍ଧ ରାମେଶ୍ୱର ଗମନ କଲେ । ସେଠାରେ ନିଜର ଗୁଣ ପ୍ରକାଶ ହୋଇ ପଡ଼ିବାରୁ ଅନବରତ ଲୋକମାନେ ଯାତାୟାତ କଲେ ଏବଂ ତାଙ୍କ ଯୋଗାଭ୍ୟାସରେ ବାଧା ପଡ଼ିବାରୁ ସେ ସେଠାରୁ ନେପାଳକୁ ଗଲେ । ସେଠାରେ ମଧ୍ୟ ସେପରି ଘଟିବାରୁ ସେ ବିରକ୍ତ ହୋଇ ମାନସ ସରୋବରକୁ ଯାଇ ଯୋଗାଭ୍ୟାସ କଲେ । ସେଠାରେ ସିଦ୍ଧ ହୋଇ କାଶୀଧାମକୁ ଆସି ଦଶାଶ୍ୱମେଧ ଘାଟରେ ଅବସ୍ଥାନକଲେ । ପରେ କେଦାର ଘାଟରେ ରହି ପଞ୍ଚଗଙ୍ଗା ଘାଟରେ ଯୋଗାଶ୍ରମ ନିର୍ମାଣକଲେ । ଏହିସମୟରେ ସେ ଅନେକଙ୍କୁ ଯୋଗଶିକ୍ଷା ଦେଲେ ଏବଂ ନିଜର ଅମାନୁଷିକ ଶକ୍ତି ପ୍ରଭାବରେ ସମସ୍ତଙ୍କୁ ସ୍ତମ୍ଭିତ କରିଥିଲେ ।

ସ୍ୱାମୀ ୨୮୦ ବର୍ଷ ଜୀବିତ ଥାଇ ୧୮୮୭ ସାଲର ପୌଷ ଶୁକ୍ଳ ଏକାଦଶୀ ସାୟଂକାଳରେ ଯୋଗାସନରେ ଉପବିଷ୍ଟ ଥାଇ ଦେହତ୍ୟାଗ କରିଥିଲେ ।

ସ୍ୱାମୀ ଉପଦେଶ ପୂର୍ଣ୍ଣ "ମହାବାକ୍ୟ ରତ୍ନାବଳୀ" ନାମକ ସଂସ୍କୃତ ଗ୍ରନ୍ଥ ପ୍ରଣୟନ କରିଥିଲେ ।

### ଅମାନୁଷିକ କାର୍ଯ୍ୟର ଉଦାହରଣ

କାଶୀ ଅସିଘାଟର ସନ୍ନିକଟ ଏକ ବ୍ୟକ୍ତିର ସର୍ପାଘାତରେ ମୃତ୍ୟୁ ଘଟିଥିଲା । ସ୍ୱାମୀଜୀ ସେବୁଦ୍ୟମାନ ଅଳ୍ପବୟସ୍କା ବଧୂର ମନୋବେଦନା ଜାଣିପାରି ସେଠାକୁ ଗଲେ ଓ ମାହାକୁ ଚିନ୍ତା ନ କରି ଅଙ୍ଗୁଷ୍ଠ ଏବଂ ତର୍ଜନୀଦ୍ୱାରା କିଛି ଗଙ୍ଗା ମୃତ୍ତିକା ନେଇ ସେହି ସର୍ପଦଂଷ୍ଟ୍ର ବ୍ୟକ୍ତିର କ୍ଷତସ୍ଥାନରେ ଲଗେଇଦେଇ ଗଙ୍ଗାଜଳରେ ନିମଜ୍ଜିତ ହେଲେ । ସେବ୍ୟକ୍ତି ପୁନର୍ଜୀବିତ ହେଲା ।

ସ୍ୱାମୀଜୀ ଉଲଙ୍ଗ ହୋଇ କାଶୀର ପଥରେ, ଘାଟରେ ସର୍ବଦା ବିଚରଣ କରୁଥିଲେ । ପୁଲିସ୍ ପ୍ରହରୀ ବାରଂବାର ସାବଧାନ କରିଦେଲେ ହେଁ ସେ ଶୁଣିଲେ ନାହିଁ । ସେ ବାହ୍ୟଜ୍ଞାନ ଶୂନ୍ୟ ହୋଇ ବସିଥିଲେ, ପ୍ରହରୀ ତାଙ୍କୁ ଥାନାକୁ ଯିବାକୁ କହିଲା । ସେ ଉତ୍ତର ନ ଦେବାରୁ ପ୍ରହରୀ ତାଙ୍କୁ ରୁଲରେ ପ୍ରହାର କଲା । ଶିଷ୍ୟମାନେ ବାଧା ଦେବାରୁ ସେ ସଙ୍ଗରେ ଥାନାକୁ ଖବର ପାଇ କେତେକ ଜଣ କନେଷ୍ଟବଲ ଆଣି ତାଙ୍କୁ ଜୋରରେ ଥାନାକୁ ନେଇଗଲା । ପରଦିବସ ମାଜିଷ୍ଟ୍ରେଟ ବିଚାରକଲେ । ଉକିଲ ମାନେ କହିଲେ "ଏ ମହାପୁରୁଷ, ଏହାଙ୍କର ଶରୀର ନିର୍ବିକାର;ସୁତରାଂ ବସ୍ତ୍ର ପରିଧାନ ଅନାବଶ୍ୟକ ।" ମାଜିଷ୍ଟ୍ରେଟ ସାଧୁଙ୍କ ପରୀକ୍ଷାପାଇଁ ନିଜର ମଧ୍ୟାହ୍ନ ଭୋଜନର ଭୋଜନାବଶିଷ୍ଟ ଖାଦ୍ୟଦ୍ରବ୍ୟ ତାଙ୍କୁ ଖାଇବାକୁ ଦେଲେ । ସ୍ୱାମୀଜୀ କହିଲେ "ଆପଣ ଯେବେ ମୋ ଖାଦ୍ୟର କିୟଦଂଶ ଆସ୍ୱାଦନ କରନ୍ତି, ତେବେ ମୋର ଆପଣଙ୍କ ଖାନା ଖାଇବାରେ ଆପତ୍ତି

ଆପତ୍ତି ରଖିବନାହିଁ ।” ଏହାକହି ସେ ନିଜହସ୍ତରେ ମଳ ତ୍ୟାଗକର ସଙ୍ଗସଙ୍ଗେ ଆନନ୍ଦରେ ତାହା ଭକ୍ଷଣ କଲେ । ବିଶ୍ୱପତି ଏହାଦେଖି ତାଙ୍କୁ ଉଲଙ୍ଗାବସ୍ଥାରେ ବିଚରଣ କରିବା ପାଇଁ ଅନୁମତି ଦେଲେ ।

## ମହାତ୍ମା କବୀର

ଗୁରୁ ରାମାନନ୍ଦଙ୍କର ଏକ ବ୍ରାହ୍ମଣ ଶିଷ୍ୟ ଥିଲେ । ସେ ଦିନେ ନିଜ ବିଧବା କନ୍ୟାକୁ ଦର୍ଶନ କରିବାପାଇଁ ଯାଇଥିଲେ । ସେ କନ୍ୟା ଭକ୍ତିରେ ତାଙ୍କୁ ପ୍ରଣାମ କରିବାରୁ ସେ ପରମ-ଆନନ୍ଦରେ ଆଶୀର୍ବାଦ କଲେ ଯେ, ତମେ ପୁତ୍ରବତୀ ହୁଅ । କନ୍ୟା ସ୍ୱାମିହୀନା ବୋଲି ପରେ ଜାଣି କହିଲେ 'ମୋ କଥା ଅନ୍ୟଥା ହେବନାହିଁ, ତମେ ମୋ କଲ୍ୟାଣରେ ପବିତ୍ର ଗର୍ଭ ଧାରଣ କରି, ଏକ ସାଧୁପୁତ୍ର ପ୍ରସବ କରିବ' । ସେ ବିଧବା ଯଥା ସମୟରେ ଗର୍ଭବତୀ ହୋଇ ସନ୍ତାନ ପ୍ରସବ କଲେ ଏବଂ ଲୋକାପବାଦ ଭୟରେ ତାହାକୁ କାଶୀ ନିକଟସ୍ଥ ଲହରତାଲାଓ ନାମକ ସରୋବରରେ ଭସାଇଦେଲେ । ଦୈବକ୍ରମେ ନୂରୀ ନାମ୍ନୀ ଏକ ମୁସଲମାନ ଜୋଲା ତାହାକୁ ପ୍ରତିପାଳନ କରିବାପାଇଁ ନେଇଯିବା ସମୟରେ ସେ ସନ୍ତାନ କହିଲେ "ମୋତେ କାଶୀ ନେଇ ଚାଲ" । ସେ ଜୋଲା ଶିଶୁ ସନ୍ତାନର କଥା ଶୁଣି ତାହାକୁ ଉପଦେବତା ମନେ କରି ଭୟରେ ପଥରେ ପକାଇ ଦେଇ ପଳାଇଗଲେ । ଅର୍ଦ୍ଧକୋଶ ଯିବାପରେ ନୂରୀ ସମ୍ମୁଖରେ ସେହି ଶିଶୁ ଉପସ୍ଥିତ ହୋଇ କହିଲେ "ଭୟ କରନାହିଁ, ମୋତେ ପ୍ରତିପାଳନ କର" । ଏହା ଶୁଣି ସେ ଜୋଲା ତାହାଙ୍କୁ ନେଇ ପ୍ରତିପାଳନ କଲେ ଏବଂ ତାହାଙ୍କର ନାମ 'କବୀର' ଦେଲେ । ଯେତେବେଳେ କବୀର ବୟସ୍ଥ ହେଲେ, ସେ ବସ୍ତ୍ର ବୟନ କରି ଦିନ କାଟିଲେ । ଦିନେ ଘରେ ଅନ୍ନ ନ ଥିବାରୁ କବୀର ଖଣ୍ଡିଏ ଲୁଗା ପ୍ରସ୍ତୁତ କରି ବିକ୍ରୟପାଇଁ ବଜାରକୁ ଗଲେ । ସେଠାରେ ଜଣେ ନିତାନ୍ତ ଦରିଦ୍ର ଶୀତାର୍ତ୍ତ ହୋଇ କବୀରଙ୍କୁ ସେ ଲୁଗା-ଖଣ୍ଡି ମାଗିଲେ । କବୀର ଅଚ୍ଛେଦନ କରି ସେ ବସ୍ତ୍ରଖଣ୍ଡି ତାହାଙ୍କୁ ଦେଲେ ଓ ଭଗବାନଙ୍କ ନାମ ଜପ କରୁଁ କରୁଁ ଶୂନ୍ୟହସ୍ତରେ ଘରକୁ ଫେରିଲେ । ସେଠାକୁ ଆସି ଦେଖିଲେ ଯେ ମା ଅନ୍ନ ବ୍ୟଞ୍ଜନ ପ୍ରସ୍ତୁତ କରି ତାଙ୍କ ଅପେକ୍ଷାରେ ବସିଛନ୍ତି । କବୀର ପଚାରିଲେ "ମା, ତମେ ଖାଦ୍ୟଦ୍ରବ୍ୟ କେଉଁଠୁ ଆଣିଲ ?" ସେ ଉତ୍ତର ଦେଲେ, "ତୁ ଦେବ ସେମାନ ଆଣି ଦେଇ କେଉଁଆଡ଼େ ଚାଲିଗଲୁ, ପୁଣି ଏକି କଥା ?" କବୀର କହିଲେ, 'ମା' ତମେ ବଡ଼ ଭାଗ୍ୟବତୀ, ଭଗବାନ୍ ମୋ ବେଶରେ ତମକୁ ଦର୍ଶନ ଦେଇଛନ୍ତି ।" ଏହା କହି ସେ ଦିନର ସମସ୍ତ ଘଟଣା ନିବେଦନ କଲେ । ସେହିଦିନରୁ କବୀରଙ୍କର ଭାବାନ୍ତର ଜାତ ହେଲା । ସେ ଗୁରୁ ପାଇବା ପାଇଁ ବ୍ୟାକୁଳ ହେଲେ । ଗୁରୁ ରାମାନନ୍ଦଙ୍କୁ ମନ୍ତ୍ର ପ୍ରାର୍ଥନା କରିବାରୁ ସେ ତାଙ୍କୁ ଯବନଜାତ ବୋଲି ଉପେକ୍ଷା କଲେ । ସେଥିରେ ସେ ହତାଶ ହୋଇ ଦିନେ ରାତ୍ରି ଶେଷରେ ଗୁରୁଙ୍କ ଦ୍ୱାରଦେଶରେ ଆସି ଶୟନ କଲେ ଏବଂ ଯେତେବେଳେ ଗୁରୁ ଘରୁ ବାହାରିଲେ, ସେତେବେଳେ ତାଙ୍କ ପଦ କବୀରଙ୍କ ଅଙ୍ଗ-ସ୍ପର୍ଶ କଲା । ରାମାନନ୍ଦ ଯବନସ୍ପର୍ଶ ହେଲା ବୋଲି 'ରାମ,' 'ରାମ,' କହିବାକୁ ଲାଗିଲେ । ସେହି ରାମ ନାମକୁ ଗୁରୁମନ୍ତ୍ର ଜ୍ଞାନକରି, କବୀର ସର୍ବଦା ଜପ କରିବାକୁ ଲାଗିଲେ । ଯେତେବେଳେ କବୀରଙ୍କ ମନ ଭଗବାନ୍‌ଙ୍କୁ ଦର୍ଶନ କରିବାପାଇଁ ବ୍ୟାକୁଳ ହୋଇ ଉଠିଲା ଦୟାମୟ ଭଗବାନ୍ ତାହାଙ୍କୁ ଦର୍ଶନ ଦେଇ ଶବ୍ଦଯୋଗ ଶିକ୍ଷା ପ୍ରଦାନ କରିଥିଲେ । ଯଥା—

କବୀର ନିନ୍ଦକ ମରିମରି ଜୀବେ ଅତି ଅମୋଘ
ହାମତ ସଦ୍‌ଗୁରୁ ପାଇଥା ନିନ୍ଦକ କି ପାରସାଦ ।

ତତ୍ପରେ ସେ ପ୍ରକୃତ ସାଧୁ ସିଦ୍ଧପୁରୁଷ ହେଲେ ଓ ହିନ୍ଦୁ ମୁସଲମାନଙ୍କ ତୀର୍ଥବ୍ରତାଦି ପ୍ରତି ଦୋଷାରୋପ କଲେ । ମୁସଲମାନଗଣ ଦିଲ୍ଲୀ ବାଦସାହ ସିକନ୍ଦର ଲୋଦୀଙ୍କ ନିକଟରେ ଅଭିଯୋଗ କରିବାରୁ ସେ ତାଙ୍କୁ ଧରାଇ ନେଇ ପ୍ରଥମେ ଯମୁନା-ଜଳରେ ଓ ଦ୍ୱିତୀୟରେ ପ୍ରଜ୍ୱଳିତ ଅଗ୍ନିରେ ନିକ୍ଷେପ କଲେ । ସେ ମୃତ ନ ହେବାରୁ, ଭୟରେ ବାଦସାହ କ୍ଷମା ପ୍ରାର୍ଥନା କରି ତାଙ୍କ ସହିତ ବନ୍ଧୁତା ସ୍ଥାପନ କଲେ ।

ଶେଷଜୀବନରେ କବୀର ଶିଷ୍ୟମାନଙ୍କ ସମ୍ମୁଖରେ ବସ୍ତ୍ରାବୃତ ହୋଇ ଦେହ ତ୍ୟାଗ କଲେ । ତାଙ୍କ ପବିତ୍ର ଶରୀର ପାଇଁ ହିନ୍ଦୁ ମୁସଲମାନଙ୍କ ଭିତରେ ବିବାଦ ଆରମ୍ଭ ହେଲା । ସହସା କବୀର ଦିବ୍ୟଦେହରେ ଉପସ୍ଥିତ ହୋଇ କହିଲେ "ବିବାଦ କରିବା ପୂର୍ବରୁ ବସ୍ତ୍ର ଉନ୍ମୋଚନ କରି ଦେଖ ।" ତାହା କରି ସେମାନେ ଦେଖିଲେ ଯେ, ଶବ ପରିବର୍ତ୍ତେ କେତେଗୁଡ଼ିଏ ଫୁଲ ଅଛି । ପୁଣି କବୀର ଅଦୃଶ୍ୟ ହେଲେ । ସେହି ପୁଷ୍ପକୁ ଉଭୟେ ବାଣ୍ଟିନେଲେ । କାଶୀ ରାଜା ନିଜ ରାଜଧାନୀକୁ ଆଣାଇ

ବାଦ କରି ସେମାନେ ଭିସ୍ତି ସେଠାରେ ନିହତ କଲେ, ତାହାର ନାମ କବୀର ଚୌରା ଓ ପଠାଣମାନେ ଅପସାରିତ କବୀରଙ୍କ ଜନ୍ମସ୍ଥାନରେ ହୋଇ, ତାହାଉପରେ ସମାଧି ମନ୍ଦିର ନିର୍ମାଣ କରିଥିଲେ । ଏହା କବୀରପନ୍ଥୀଙ୍କର ତୀର୍ଥସ୍ଥାନ ।



## ଶଙ୍କରାଚାର୍ଯ୍ୟ

ଭଗବାନ ଶଙ୍କରାଚାର୍ଯ୍ୟ କେରଳ ଦେଶରେ ବ୍ରାହ୍ମଣ-କୁଳରେ ଜାତ ହୋଇଥିଲେ । ଏହାଙ୍କ ପିତାଙ୍କ ନାମ ବିଶ୍ୱଜିତ ବା ଶିବଗୁରୁ ଓ ମାତାଙ୍କ ନାମ ବିଶିଷ୍ଟା ବା ସତୀ । ଲୋକେ କହନ୍ତି, ସନାତନ ବୈଦିକ ଧର୍ମ ରକ୍ଷା ପାଇଁ ସ୍ୱୟଂ ଶୂଳପାଣି ମହାଦେବ ଶଙ୍କରାଚାର୍ଯ୍ୟ ରୂପରେ ପୃଥିବୀରେ ଅବତୀର୍ଣ୍ଣ ହୋଇଥିଲେ । ପଞ୍ଚମ-ବର୍ଷରେ ଏହାଙ୍କର ଉପନୟନ କରା ଯାଇଥିଲା । ପିତାଙ୍କ ମୃତ୍ୟୁର ଅଷ୍ଟମ ବର୍ଷରେ ସେ ଗୁରୁ ଉଦ୍ଦେଶ୍ୟରେ ଉତ୍ତରକୁ ଗଲେ ଏବଂ ନର୍ମଦା ନଦୀ ତୀରରେ ଗୋବିନ୍ଦ ନାଥ ନାମକ ଜଣେ ସିଦ୍ଧପୁରୁଷଙ୍କ ଦ୍ୱାରା ସନ୍ନ୍ୟାସ ଧର୍ମରେ ଦୀକ୍ଷିତହେଲେ । ତାଙ୍କ ନିକଟରେ ସର୍ବ ଦର୍ଶନ ଅଧ୍ୟୟନ କରି କାଶୀ ଗଲେ ଏବଂ ସେଠାରେ ବେଦପାରଗ ପଣ୍ଡିତମାନଙ୍କୁ ନିଜ ମତକୁ ଆଣିଲେ । ସେହିତ-ବେଳେ ସେ କାଶୀର ସର୍ବଶ୍ରେଷ୍ଠ ପଣ୍ଡିତ ମଣ୍ଡନ ମିଶ୍ରଙ୍କୁ ଯୁକ୍ତିରେ ପରାଜୟ କରି ତାଙ୍କୁ ସଂସାର ଧର୍ମତ୍ୟାଗ କରାଇଥିଲେ ସେତେବେଳେ ମିଶ୍ରଙ୍କ ସ୍ତ୍ରୀ ଭାରତୀ ତାଙ୍କ ସହିତ ଶାସ୍ତ୍ରତର୍କରେ ପ୍ରବୃତ୍ତହେଲେ । ୧୭ଦିନ ତର୍କପରେ ତାଙ୍କୁ ପରାଜୟକରି ନ ପାରି କାମଶାସ୍ତ୍ରର ପ୍ରସଙ୍ଗ ଉତ୍ଥାପନ କଲେ । ଶଙ୍କର ସେ ବିଷୟରେ ଅଜ୍ଞ ଥିବାରୁ ଭାରତୀଙ୍କ ଠାରୁ କେତେକ ଦିନ ଅବସର ଗ୍ରହଣ କରି ଏକ ମୃତ ରାଜଶରୀରରେ ପ୍ରବିଷ୍ଟ ହେଲେ ଓ ସେଠାରେ ସଂସାର ଧର୍ମ ଶିକ୍ଷା କରି ଆସି ଭାରତୀଙ୍କୁ ପରାଜୟ କରିଥିଲେ । ଏହାପରେ ଆତ୍ମା ଯେ ଦେହାନ୍ତର ଗ୍ରହଣ କରିପାରେ ଏହା ଅଗ୍ନିଭୂତ(ଏକ ଦିଗମ୍ବର ଜୈନ) ସୁମତ(ଏକ ଶ୍ୱେତାମ୍ବର ଜୈନ) ଓ ସୁବାନ୍ତ ( ଏକ ଜୈନଯତି ) ଙ୍କୁ ପ୍ରତ୍ୟକ୍ଷ ଦେଖାଇଥିଲେ । ପୁଣି ଈଶ୍ୱର ଏକ ଓ ଜୀବ ବହୁ ଏହା କାର୍ଯ୍ୟତଃ ପ୍ରମାଣ କରି ଦେଇଥିଲେ । ଏବେ ସ୍ୱୟଂ ଶଙ୍କର ଛଦ୍ମବେଶରେ ତାହାଙ୍କୁ ପରୀକ୍ଷା କରିଦିବ୍ୟଜ୍ଞାନ ପ୍ରଦାନ କଲେ ଏବଂ ଦର୍ଶନ ଦେଇ ବ୍ରହ୍ମସୂତ୍ରଭାଷ୍ୟ ପ୍ରଣୟନ ପାଇଁ ଆଦେଶ ଦେଲେ । ତାଙ୍କର ଉପଦେଶ ଅନୁସାରେ ସେ ବ୍ରହ୍ମସୂତ୍ରଭାଷ୍ୟ, ଗୀତାଭାଷ୍ୟ, ସହସ୍ରନାମ ଓ ଅନେକ ସ୍ତୋତ୍ର ଗ୍ରନ୍ଥ ସଙ୍କଳନ କଲେ । ଦେଶମଧ୍ୟରେ ସେ ନାନାତୀର୍ଥ ପର୍ଯ୍ୟଟନ ଓ ମଠ ସ୍ଥାପନ କରି ଅଦ୍ୱୈତବାଦ ପ୍ରଚାର କଲେ । ଜନନୀଙ୍କ ମୃତ୍ୟୁ ସମୟରେ ଶଙ୍କରାଚାର୍ଯ୍ୟ ତାଙ୍କ ନିକଟରେ ଥାଇ ତାଙ୍କର ଅନୁରୋଧାନୁସାରେ ତାଙ୍କୁ ଯେଉଁ ଈଶ୍ୱରଙ୍କ ନାମ ଗାନ କରି ଶୁଣାଇଥିଲେ ତାହା ଏହି :—

ନୀଳ କମଳ ଶ୍ୟାମଳ ବରଣ,    ତ୍ରିଲୋକ ଜନ ଶରଣ କାରଣ ।
ଶୋଭନ ନୀଳ ଗଗନ-ବସନ,    ଜୟ ହରେ ଜାଦବରେ ॥
ବିଶ୍ୱ ସୃଜନ-କାରଣ କାରଣ    ଦୁଷ୍ଟ ଦମନ ଅଧମ ତାରଣ ।
ପ୍ରଣତ ଜନ ମନ ନାରାୟଣ,    ଜୟ ହରେ ପାପ ହରେ ॥

ମାତାଙ୍କ ମୃତ୍ୟୁପରେ ତାଙ୍କର ପ୍ରତିବେଶୀ କେହି ଶବସତ୍କାର କରିବାକୁ ନ ଆସିବାରୁ ସେ ନିଜର ବାଲ୍ୟ ସଙ୍ଗୀ କୁମାରଙ୍କ ସହାୟତାରେ ତାହା ସତ୍କାର କରିଥିଲେ । ପରିଶେଷରେ ସେ କାଞ୍ଚୀପୁରରେ ୩୨ବର୍ଷ ବୟଃକ୍ରମରେ ନିର୍ବାଣ ପ୍ରାପ୍ତ ହେଲେ । ସେ ଜଣେ ବାକ୍‌ସିଦ୍ଧ ମହାପୁରୁଷ ଥିଲେ । ସେ ଶୈବଧର୍ମ ପ୍ରଚାର କରିଥିଲେ ଓ ଷୋଡ଼ଶ ବିଦ୍ୟା ଭଲରୂପେ ଜାଣିଥିଲେ ।



## ସାଧୁ ତୁଳସୀ ଦାସ ।

ତୁଳସୀ ଦାସଙ୍କ ପ୍ରକୃତ ନାମ 'ରାମବୋଲା' । ଏହାଙ୍କର ପିତାଙ୍କ ନାମ ଆତ୍ମାରାମ ଓ ମାତାଙ୍କ ନାମ ହୁଲସୀ । ଏ ଅଭୁକ୍ତ ନକ୍ଷତ୍ରରେ ଜାତ ହୋଇଥିଲେ ବୋଲି ପିତୃପରିତ୍ୟକ୍ତ ହୋଇ-ଥିଲେ ଏବଂ ଏକ ସାଧୁ ତାଙ୍କୁ ଲାଳନ ପାଳନ କରି ଶେଷରେ ତାଙ୍କର ଗୁରୁ ହୋଇଥିଲେ । ଏ ବାଲ୍ୟକାଳରେ ନିଜର ମାତୃଭାଷା ଶିକ୍ଷା କରିଥିଲେ । ଏହାଙ୍କ ସ୍ତ୍ରୀ ନାମ ରତ୍ନାବଳୀ । ଏ ଅତିଶୟ ସ୍ତ୍ରୈଣ ଥିଲେ, ଏପରି କି ପତ୍ନୀଙ୍କୁ ଘଣ୍ଟାଏ ଦଣ୍ଡେ ହେଲେ କେଉଁଠି ରହି ନ ଥିଲେ । ତାଙ୍କର ଶ୍ୱଶୁର ଝିଅକୁ ନେବା ପାଇଁ ଅନେକ ଥର ଲୋକ ପଠାଇ ବିଫଳମନୋରଥ ହୋଇଥିଲେ ଏବଂ ଶେଷରେ ନିଜେ ଆସି କନ୍ଦିତ କନ୍ୟାକୁ ନେଇଗଲେ । ପତ୍ନୀଙ୍କୁ ବିଦାୟ ଦେଇ ତୁଳସୀଦାସ ବିଚ୍ଛେଦ ବେଦନାରେ ଅତ୍ୟନ୍ତ ଅସ୍ଥିର ହେଲେ ଏବଂ ରାତ୍ରିର ଅପେକ୍ଷା ନ କରି

ସ୍ୱପ୍ନାବସ୍ଥାରେ ଉପସ୍ଥିତ ହୋଇ ସ୍ତ୍ରୀଙ୍କୁ କହିଲେ "ତୁମ୍ଭଙ୍କ ଘର ପୁଂ ଦଣ୍ଡେ ହେଲେ ବଞ୍ଚି ପାରିବ ନାହିଁ, ଏଣୁ ତୁମ୍ଭେ ମୋ ସଙ୍ଗରେ ଘରକୁ ଚାଲ"। ରତ୍ନାବଳୀ ସ୍ୱାମୀଙ୍କର ଏବମ୍ପ୍ରକାର ଆଚରଣରେ ଅତ୍ୟନ୍ତ ଲଜ୍ଜିତା ହେଲେ ଏବଂ ତାଙ୍କୁ ଅପ୍ରିୟ ବଚନରେ ଭର୍ତ୍ସନା କରି କହିଲେ "ତୁମ୍ଭେ ମୋ ପଛେ ନ ଆସି ଯେବେ ଈଶ୍ୱରଙ୍କୁ ଚିନ୍ତା କରୁଥାଆନ୍ତ, ତେବେ ପରମ ଆନନ୍ଦ ପାଇଥାନ୍ତ।" ଏଥିରେ ତୁଳସୀ ମନେ ମନେ ଜଗତର ଅନିତ୍ୟତା ବିଷୟ ଚିନ୍ତା କରି ସେହିଠାରୁ ତୀର୍ଥ ଭ୍ରମଣରେ ବାହାରିଗଲେ। ବହୁକାଳ ପରେ ସେ ଜନ୍ମସ୍ଥାନକୁ ଫେରିଆସି ଅଜ୍ଞାତରେ ନିଜ ଶ୍ୱଶୁରଗୃହରେ ଅତିଥି ହେଲେ। ରତ୍ନାବଳୀ ଅତିଥି ସେବା କରିବାକୁ ଆସି ତାଙ୍କୁ ଚିହ୍ନିପାରିଲେ ମାତ୍ର ସାଧୁ ତାଙ୍କୁ ଚିହ୍ନି ନ ଥିଲେ। ରନ୍ଧନସମୟରେ ରତ୍ନାବଳୀ ମରିଚ ଚକ୍ଷୁ ଯାଚିବାରୁ ସେ ସମସ୍ତ ନିଜ ଝୁଲିରେ ଅଛି ବୋଲି କହିଲେ। କଥାବାର୍ତ୍ତା ହେଉଁ ରତ୍ନାବଳୀ ଚିହ୍ନା ଦେଇ ପଦସେବା କରିବାକୁ ଉଦ୍ୟତ ହେଲେ କିନ୍ତୁ ସାଧୁ ଅସ୍ୱୀକାର କରି ପ୍ରସ୍ଥାନ କରିବାକୁ ଉଦ୍ୟତ ହେବାରୁ ରତ୍ନାବଳୀ କହିଲେ "ତୁମ୍ଭର ଝୁଲିରେ ତ ସମସ୍ତ ଅଛି, କେବଳ ମୋତେ ଠାବ ମିଳିଲା ନାହିଁ"। ଏଥିରେ ସାଧୁଙ୍କର ଜ୍ଞାନ ସଞ୍ଚାର ହେଲା ଏବଂ ସେ ଝୁଲି ଫୋପାଡି ଦେଇ ଚାଲିଗଲେ।

ତତ୍ପରେ ତୁଳସୀଦାସ ଗୁରୁ ପାଇ ସ୍ମାର୍ତ୍ତ ବୈଷ୍ଣବ ରୂପେ କିଛିଦିନ ଅଯୋଧ୍ୟାରେ ରହିଲେ ଏବଂ ସ୍ୱପ୍ନରେ ରାମଚନ୍ଦ୍ରଙ୍କ ଆଜ୍ଞା ପାଇ ନିଜ ମାତୃଭାଷାରେ ରାମାୟଣ ରଚନା କଲେ। ପ୍ରବାଦ ଅଛି ତୁଳସୀ ଦାସଙ୍କ ରାମାୟଣ ପାଠ ସମୟରେ ହନୂମାନ୍ ବ୍ରାହ୍ମଣ ବେଶରେ ସେଠାକୁ ଆସି ତାହା ଶ୍ରବଣ କରୁଥିଲେ ଏବଂ ଦୟାକରି ତାଙ୍କୁ ଦର୍ଶନ ଦେଇ ସୀତା, ରାମ ଓ ଲକ୍ଷ୍ମଣଙ୍କ ପାଦପଦ୍ମ ଦର୍ଶନ କରାଇଥିଲେ। ସେ କାଶୀରେ ମାନବଲୀଳା ସମ୍ବରଣ କଲେ। ଏବେ ସେ ସ୍ଥାନକୁ ତୁଳସୀଘାଟ ବୋଲି କହନ୍ତି।



## ନାନକ ସାହ।

ନାନକ ସାହ ଲାହୋରର ଦଶ ମାଇଲ ଦକ୍ଷିଣସ୍ଥ 'ତାଲାବୁଣ୍ଡୀ' ଗ୍ରାମରେ କ୍ଷତ୍ରିୟ ବଂଶରେ ଜାତ ହୋଇଥିଲେ। ଏହାଙ୍କର ପିତାଙ୍କ ନାମ କାଲୁବେଦୀ। ନାନକ ଅତି ଅଳ୍ପ ବୟସରେ ଗଣିତ ଓ ପାରସ୍ୟ ଭାଷା ଶିକ୍ଷା କରିଥିଲେ। ସେ ଯେପରି ଧାର୍ମିକ ସେହିପରି ଭାବୁକ ଥିଲେ; ଏଣୁ ସାଂସାରିକ ବ୍ୟବସାୟ ସୁଖକୁ ବିଷ ସଦୃଶ ମନେ କରୁଥିଲେ। ପିତା ପୁତ୍ରର ଏପରି ଭାବ ଜାଣି ପାରି ତାଙ୍କୁ ସଂସାର ଧର୍ମରେ ରଖିବା ପାଇଁ ଯତ୍ନ କଲେ। ସେଥିଲାଗି ତାଙ୍କୁ ୪୦ ଦେଇ ଲବଣ ବ୍ୟବସାୟ କରିବା ପାଇଁ କହିଲେ। ନାନକ ସେ ଟଙ୍କା ନେଇ ଖାଦ୍ୟସାମଗ୍ରୀ କିଣି ଅନାହାରୀ ଫକୀରମାନଙ୍କୁ ଖୁଆଇଲେ। ସେ ଯୌବନକାଳରେ ହିନ୍ଦୁ ଓ ମୁସଲମାନଙ୍କର ସମସ୍ତ ଧର୍ମଗ୍ରନ୍ଥ ଅଧ୍ୟୟନ କରି ସେଥିର ସାରମର୍ମ ଅବଗତ ହୋଇଥିଲେ ଏବଂ ଉଭୟର ଅଲୌକିକ ବୁଦ୍ଧିବଳରେ ଏକ ଉଦାର ଓ ବିଶୁଦ୍ଧ ମତ ପ୍ରଚାର କରିବାକୁ ଲାଗିଲେ। ଯହିଁରେ ହୃଦୟରେ ଶାନ୍ତି ମିଳେ ଓ ପବିତ୍ର ଭାବରେ ଐଶ୍ୱରିକ ତତ୍ତ୍ୱ ପରିସ୍ଫୁଟ ହୁଏ, ତାହାହିଁ ଜୀବନର ସାର କାର୍ଯ୍ୟ ବୋଲି ସେ ମନେ କରୁଥିଲେ। ସେ ସାରା ଭାରତ ଭ୍ରମଣ କରି ଓ ଅନେକ ଉପକୂଳ ପାର ହୋଇ ଅନ୍ତର୍ଦ୍ୱୀପ ଓ କୁସ୍ତୁନ୍ତୁନିଆର ଦେଖି ନିତାନ୍ତ ଦୁଃଖିତ ହୋଇ ନିଜ ଦେଶକୁ ଫେରି ଆସିଲେ। ସନ୍ନ୍ୟାସ ଧର୍ମ ପରିତ୍ୟାଗ କରି ଇରାବତୀ ତୀରରେ 'କରତାରପୁର' ନାମକ ଏକ ଧର୍ମଶାଳାରେ ନିଜ ପରିବାର ଓ ଶିଷ୍ୟଙ୍କ ସହ ଶେଷ ଜୀବନ ପର୍ଯ୍ୟନ୍ତ ବାସ କରିଥିଲେ। ତାଙ୍କ ସ୍ତ୍ରୀଙ୍କ ନାମ ସୁଲକ୍ଷଣା ଓ ପୁତ୍ର ଦୁହିଁଙ୍କର ନାମ ଶ୍ରୀଚନ୍ଦ୍ର ଏବଂ ଲକ୍ଷ୍ମୀ ଦାସ। ସେ ୬୦ ବର୍ଷରେ ଦେହ ରକ୍ଷା କରିଥିଲେ। ତାଙ୍କର ଶିଷ୍ୟମାନେ ଶିଖ ଅଟନ୍ତି।

## ଚୈତନ୍ୟଦେବ

ଚୈତନ୍ୟ ଦେବ ଅସାଧାରଣ ଧର୍ମପ୍ରଚାରକ ଓ ଆଦର୍ଶପୁରୁଷ ଥିଲେ। ସେ ନବଦ୍ୱୀପରେ ଜନ୍ମ ଗ୍ରହଣ କରିଥିଲେ। ତାଙ୍କପିତାଙ୍କ ନାମ ଜଗନ୍ନାଥ ମିଶ୍ର ଓ ମାତାଙ୍କ ନାମ ଶଚୀଦେବୀ। ବାଲ୍ୟକାଳରେ ତାହାଙ୍କର ସ୍ୱଭାବ ବଡ଼ ଚଞ୍ଚଳ ଓ ଉଦ୍ଧତ ଥିଲା, ମାତ୍ର ଅସାମାନ୍ୟ ପ୍ରତିଭା ଓ ସ୍ମରଣଶକ୍ତି ଯୋଗୁଁ ଯାହା ଶିକ୍ଷା କରୁଥିଲେ, ତାହା ପାସୋରି ଦେଉ ନ ଥିଲେ। ତାଙ୍କ ଭଳି ଛାତ୍ର ଚତୁଷ୍ପାଠୀରେ କେହି ନ ଥିଲେ। ପିତୃବିୟୋଗ ପରେ ତାଙ୍କର ସଂସାରଯାତ୍ରା ନିର୍ବାହ ଶଚୀଦେବୀଙ୍କ ପକ୍ଷରେ କଷ୍ଟକର ହେଲା। ଚୈତନ୍ୟଦେବ ନିଜର ଅସାଧାରଣ ଶକ୍ତିବଳରେ ଗଙ୍ଗାତୀରରୁ ସୁବର୍ଣ୍ଣ ସଂଗ୍ରହ କରି ଆଣି ମାତାଙ୍କୁ ଦେଉଥିଲେ। ତତ୍ପରେ ସେ ଅତ୍ୟଳ୍ପ ବୟସରେ ବିବିଧ ଶାସ୍ତ୍ରରେ ସୁପଣ୍ଡିତ ହୋଇ ୧୬ ବର୍ଷ ବୟସରେ ଚତୁଷ୍ପାଠୀ ସ୍ଥାପନ କଲେ। ଇତିପୂର୍ବରୁ ସେ ନ୍ୟାୟ ଶାସ୍ତ୍ରର ଟୀକା ଲେଖିଥିଲେ, ମାତ୍ର ନିଜ ସହାଧ୍ୟାୟୀର ଉକ୍ତ

"ତୁମ୍ଭର ଟୀକା ଥାଉଁ ମୋ ଟୀକାକୁ କିଏ ଆଦର କରିବ ?" ଶୁଣି ତାହାକୁ ଚିର ଗଙ୍ଗାରେ ଭସାଇ ଦେଲେ । ଏତେବେଳକୁ ତାଙ୍କର ସୁଯଶ ଚତୁର୍ଦ୍ଦିଗରେ ବ୍ୟାପ୍ତ ହୋଇଥିଲା । ବହୁ ଦୂର-ଦେଶରୁ ଛାତ୍ରମାନେ ଆସି ତାଙ୍କ ଚତୁଷ୍ପାଠୀରେ ଯୋଗଦେବାରୁ ତାଙ୍କର ଅର୍ଥକଷ୍ଟ ଦୂର ହେଲା । ତତ୍ପରେ ସେ ଲକ୍ଷ୍ମୀଦେବୀଙ୍କୁ ବିବାହକଲେ । ଚୈତନ୍ୟଦେବ ପୂର୍ବବଙ୍ଗକୁ ଯାଇଥିବାସମୟରେ ସର୍ପାଘାତରେ ଲକ୍ଷ୍ମୀଦେବୀଙ୍କର ପ୍ରାଣ ବିୟୋଗ ଘଟିଲା । ସେ ପ୍ରବାସରୁ ଫେରିଆସି ମାତୃ ଅନୁରୋଧ ଏଡ଼ି ନ ପାରି ପୁନର୍ବାର ବିଷ୍ଣୁପ୍ରିୟାଙ୍କର ପାଣିଗ୍ରହଣ କଲେ । ତଦନନ୍ତରେ ସେ ଗୟାଧାମକୁ ଯାଇ ପିତୃପିଣ୍ଡ ଦାନାନନ୍ତର କୃଷ୍ଣ ପ୍ରେମରେ ବିଭୋର ହେଲେ । ଅତଃପର, ସେ ରାତ୍ରିକାଳରେ ସମସ୍ତଙ୍କ ଅଗୋଚରରେ ଗୃହତ୍ୟାଗକଲେ ଏବଂ ଦଣ୍ଡୀ କେଶବ ଭାରତୀଙ୍କ ନିକଟ ସନ୍ନ୍ୟାସ ଧର୍ମରେ ଦୀକ୍ଷିତହେଲେ । ସେ ନାନାତୀର୍ଥ ପର୍ଯ୍ୟଟନ କରି ପଣ୍ଡିତମାନଙ୍କୁ ନିଜମତକୁ ଆଣିଲେ । ୨୪ବର୍ଷ ଗୃହବାସ, ୬ବର୍ଷ ନାନାତୀର୍ଥ ପର୍ଯ୍ୟଟନ ଓ ୧୨ବର୍ଷ ନୀଳଗିରି ବାସ କରି ଲୋକଶିକ୍ଷା ଓ ଧର୍ମପ୍ରଚାର ପୂର୍ବକ ୪୮ବର୍ଷ ବୟସରେ ଟୋଟାଗୋପୀନାଥଙ୍କ ସ୍ଥାନରେ ଦେହରକ୍ଷା କଲେ । ପୁରୀର ରାଧାକାନ୍ତମଠ ଚୈତନ୍ୟଙ୍କର ପ୍ରଧାନ ମଠ ।

ଜଗନ୍ନାଥ ମିଶ୍ର ଉତ୍କଳୀୟ ଯାଜପୁର ନିବାସୀ ଶ୍ରୋତ୍ରିୟ ବ୍ରାହ୍ମଣ ଥିଲେ ।

ପ୍ରବାଦ ଅଛି, ଚୈତନ୍ୟଦେବ ସମୁଦ୍ରକୂଳରେ ଅଦୃଶ୍ୟ ହୋଇଥିଲେ ।



## ଯବନ ହରିଦାସ ।

୧୩୭୧ ଶକାବ୍ଦରେ ନଦୀୟା ଅନ୍ତର୍ଗତ ବୁଢ଼ନ ଗ୍ରାମରେ ହରିଦାସ ଜନ୍ମଗ୍ରହଣ କରିଥିଲେ । ତାହାଙ୍କ ପିତାଙ୍କ ନାମ ସୁମତି ଠାକୁର ଓ ମାତାଙ୍କ ନାମ ଗୌରୀଦେବୀ । ହରିଦାସଙ୍କ ଛଅବର୍ଷ ବୟସରେ ତାଙ୍କର ପିତୃ ବିୟୋଗ ହେଲା ଏବଂ ଜନନୀ ମଧ୍ୟ ସହମୃତା ହେଲେ । ବାଳକ ନିରାଶ୍ରୟ ହୋଇ ଯବନ ହସ୍ତରେ ପଡ଼ି ମୁସଲମାନ ଧର୍ମରେ ଦୀକ୍ଷିତ ହେଲେ । ପ୍ରଥମେ ସେ ମୁସଲମାନ ଧର୍ମଶାସ୍ତ୍ର ପାଠକଲେ । ତାଙ୍କର ଧର୍ମାନୁରାଗ ପ୍ରବଳ ହୋଇ ଉଠିଲା । ସେ ଶାନ୍ତିପୁରକୁ ଯାଇ ଅଦ୍ୱୈତଙ୍କ ନିକଟରେ ଉପସ୍ଥିତ ହେଲେ । ସେତେବେଳେ ଅଦ୍ୱୈତ ସମାଧିସ୍ଥ ଥିଲେ । ତାଙ୍କର ସମାଧି ଭଙ୍ଗ ପରେ ହରିଦାସ ତାଙ୍କ ନିକଟ ଧର୍ମ ପ୍ରାର୍ଥନା କଲେ ମାତ୍ର ସେ ତାଙ୍କୁ ମ୍ଳେଚ୍ଛ ବୋଲି ଅଗ୍ରାହ୍ୟ କଲେ ଏବଂ ଶେଷରେ ହରିଦାସଙ୍କ ବ୍ୟାକୁଳ ପ୍ରାର୍ଥନାରେ ମୁଗ୍ଧ ହୋଇ ହରିନାମ ମନ୍ତ୍ର ଦୀକ୍ଷା ଦେଲେ । ହରିଦାସ ସେହିଦିନଠାରୁ ହରିଭକ୍ତିପରାୟଣ ହେଲେ ଏବଂ ଜପ କରିବା ପାଇଁ ଫୁଲିୟା ଗ୍ରାମ ନିକଟେ କୁଟୀର ନିର୍ମାଣ କଲେ ।

କାଜୀ ଏ ବିଷୟ ଶୁଣି ହରିଦାସଙ୍କୁ ନିଜଧର୍ମକୁ ଆଣିବାପାଇଁ ଚେଷ୍ଟାକଲେ ଏବଂ ନ ପାରିବାରୁ ବେତ୍ରାଘାତରେ ପ୍ରାଣଦଣ୍ଡାଜ୍ଞା ଆଦେଶ ଦେଲେ ଏବଂ ତଦନୁଯାୟୀ ସେ ଦଣ୍ଡିତ ହେଲେ । ବେତ୍ରାଘାତରେ ହରିଦାସ ଚେତନାହୀନ ହେବାରୁ କାଜୀଙ୍କ ଆଦେଶରେ ପାଇକମାନେ ତାଙ୍କୁ ପୋତିବାପାଇଁ କବର ସ୍ଥାନକୁ ନେଇଗଲେ । ପୋତିବା ସମୟରେ ତାଙ୍କର ଜ୍ଞାନ ହେବାରୁ କାଜୀଙ୍କ ଆଜ୍ଞାରେ ପାଇକମାନେ ତାଙ୍କୁ ନଦୀଜଳରେ ନିକ୍ଷେପ କଲେ । ହରିଦାସ ଭାସି ଭାସି କୂଳକୁ ଉଠି ବୃନ୍ଦପୁର ଗ୍ରାମରେ ଆଶ୍ରୟ ନେଲେ । ସେଠାରେ ବଳରାମ ଆଚାର୍ଯ୍ୟ ସେ ସମୟର ହିନ୍ଦୁସମାଜର କଠିନ ନିୟମାବଳୀ ପ୍ରତି ଦୃକ୍‌ପାତ ନ କରି ତାଙ୍କୁ ଆଶ୍ରୟ ଦେଲେ ଓ ହରିଦାସ ପ୍ରେମଗଦ୍‌ଗଦ ହୋଇ ହରିଲୁଟ ପରି ନୃତ୍ୟ କଲେ । ଏହା ଦେଖି ସମସ୍ତେ ତାଙ୍କୁ ପାଗଳ ବୋଲି କହିଲେ । ତଦନନ୍ତର ସେ ଶାନ୍ତିପୁରକୁ ଯାଇ ଗଙ୍ଗାତଟରେ ଏକ କୁଟୀର ନିର୍ମାଣ କରି ବାସକଲେ ଏବଂ ପ୍ରତିଦିନ ଲକ୍ଷାଧିକ ବାର ନାମ ଜପ ନ କରି ଜଳଗ୍ରହଣ କଲେ ନାହିଁ । ସେଠାରେ ଜଣେ ଜମିଦାରଙ୍କ ପ୍ରରୋଚନାରେ ଏକ ବେଶ୍ୟା ତାଙ୍କ ସାଧନାରେ ବିଘ୍ନ ଜନ୍ମାଇବା ପାଇଁ ଯାଇ ନିଜେ ହରିନାମ ପ୍ରେମରେ ଉନ୍ମତ୍ତ ହେଲା ଓ ତାଙ୍କ ନିକଟରୁ ମନ୍ତ୍ରଦୀକ୍ଷା ଗ୍ରହଣ କଲା ।

ତତ୍ପରେ ହରିଦାସ ନବଦ୍ୱୀପକୁ ଯାଇ ବୈଷ୍ଣବଙ୍କ ସଙ୍ଗରେ ମିଳିତ ହେଲେ । ମହାପ୍ରଭୁ ଶ୍ରୀ ଚୈତନ୍ୟ ନୀଳାଚଳ ଗମନ କରିବାରୁ ସେ ସେଠାକୁ ଯାଇ ଶେଷ ଜୀବନ ସୁଖରେ କଟାଇଲେ ଓ ନାମ ଜପ କରୁ କରୁ ଦେହତ୍ୟାଗ କଲେ । ଚୈତନ୍ୟଦେବ ତାଙ୍କ ଶବଦେହ ସମୁଦ୍ରତୀରକୁ ନିଅଇ ବାଲୁକା ଗର୍ଭରେ ତାଙ୍କର ସମାଧି କରାଇ ଥିଲେ ।

## ସାଧୁ ହରିଦାସ ।

ସାଧୁ ହରିଦାସଙ୍କ ପରିଚୟ କାହାରିକୁ ଜଣାନାହିଁ । ସେ ପୂର୍ବଜନ୍ମର ପୁଣ୍ୟଫଳରେ ଏକ ମହାଯୋଗୀ ପୁରୁଷଙ୍କୁ ଦୀକ୍ଷାଗୁରୁ କରି ପର୍ବତଗୁହାରେ ଯୋଗାଭ୍ୟାସ କରିଥିଲେ । ଏହାର

କେତେକ ଦିନ ପରେ ସେ ଅଦ୍ଭୁତ ସହରକୁ ଆସି ଯୋଗବଳରେ ନିଜର ଅଲୌକିକ କ୍ଷମତା ଦେଖାଇଥିଲେ । ସିଦ୍ଧ ହେଲା ପରେ ସେ ଅନାହାର ଓ ଅନିଦ୍ରାରେ ୭ ମାସ କାଳ ମୃତ୍ତିକାମଧ୍ୟରେ ପୋତ ହୋଇ ମଧ୍ୟ ଜୀବିତ ରହିଥିଲେ । ପରେ ସେ ଜେଲମିର ନାମକ ସ୍ଥାନରେ ୬ହାତ ଦୀର୍ଘ, ଦେଢ଼ହାତ ପ୍ରସ୍ଥ ଓ ଦୁଇହାତ ଗଭୀର ଗର୍ତ୍ତରେ ଏକମାସ ପ୍ରୋଥିତ ହୋଇଥିଲେ । ସେହି ସମୟରେ ସମସ୍ତେ ତାଙ୍କୁ ମୃତ ବୋଲି ମନେ କରିଥିଲେ କିନ୍ତୁ ଶିଷ୍ୟମାନଙ୍କର କେତେକ ଘଣ୍ଟା ସେବା ଶୁଶ୍ରୂଷାରେ ତାଙ୍କ ମୃତ ଦେହରେ ପ୍ରାଣସଞ୍ଚାର ହେଲା । ସେହିଦିନରୁ କି ହିନ୍ଦୁ କି ମୁସଲମାନ ସମସ୍ତେ ତାଙ୍କୁ ଈଶ୍ୱରଙ୍କର ଅଂଶ ବୋଲି ମନେ କରି ତାଙ୍କ ନିକଟରେ ନତମସ୍ତକ ହେଲେ ।

ତଦନନ୍ତର ମହାରାଜା ରଣଜିତ୍‌ସିଂହ ଏହି ଅଦ୍ଭୁତ କ୍ଷମତା କଥା ଅବଗତ ହୋଇ ସନ୍ଦେହ କଲେ ଓ ସ୍ୱୟଂ ପରୀକ୍ଷା କରିବା ପାଇଁ ସାଧୁ ହରିଦାସଙ୍କୁ ଲାହୋରକୁ ନେଇଗଲେ । ସେଠାରେ ସେ ମହାରାଜଙ୍କୁ କହିଲେ "ମହାରାଜ ମୋତେ ୪୦ ଦିନ ପରେ ଯେପରି ମୃତ୍ତିକାରୁ ଉତ୍ତୋଳନ କରାଇବେ ।" ସେଥିରେ ସେ ସ୍ୱୀକୃତ ହେବାରୁ ସାଧୁ ଯୋଗାବଲମ୍ବନ କଲେ । ତାଙ୍କୁ ଏକ କାଠର ସିନ୍ଦୁକରେ ବସାଯାଇ ତାଲା ବନ୍ଦକରି ଦିଆଗଲା ଓ ଭୂମିରେ ସେ ସିନ୍ଦୁକ ପୋତାଗଲା । ଇହାର ବେଢ଼ା ଚାରି ଗୃହପାଖରେ ପହରା ବସାଗଲା । ସେ ମାଟିଉପରେ ଯବ ବୁଣାଯାଇ ସେ ଘର ଦ୍ୱାର ବନ୍ଦ କରାଗଲା । ୪୦ ଦିନ ପରେ ଦ୍ୱାର ଖୋଲାଯିବାରୁ ଦେଖାଗଲା ଯେ କେତେକ ଅଙ୍କୁରିତ ଯବ ଗଛ ସେ ସମାଧି ଉପରେ ଉଠିଛି ଏବଂ ସିନ୍ଦୁକକୁ ଭୂମିରୁ ବାହାରକରି ଖୋଲିବାରୁ ଦେଖାଗଲା ସେ ପୂର୍ବପରି ବସିଅଛନ୍ତି । ଡାକ୍ତରମାନେ ପରୀକ୍ଷା କରି କହିଲେ "ଏ ଦେହ ପୁନର୍ଜୀବିତ ହେବା ଅସମ୍ଭବ ।" ପରେ ଶିଷ୍ୟମାନେ ସେବା ଶୁଶ୍ରୂଷା କରିବାରୁ ସେ କଥା କହିଲେ ।

ଏତଦ୍ ବ୍ୟତୀତ ସେ ଯୋଗବଳରେ ଜଳ ଉପରେ ଚାଲି ଯାଉଥିଲେ ଓ ଶୂନ୍ୟରେ ଅବସ୍ଥାନ କରୁଥିଲେ ।

## ଭାସ୍କରାନନ୍ଦ ସରସ୍ୱତୀ ।

କାନପୁରରେ ମିଶ୍ରୀଲାଲ ମିଶ୍ର ନାମକ ଏକ ସଂସ୍କୃତ ଅଧ୍ୟାପକଙ୍କର ପୁତ୍ର ମତିରାମ ସମୟକ୍ରମେ ଭାସ୍କରାନନ୍ଦ ସରସ୍ୱତୀ ନାମ ଗ୍ରହଣ କରିଥିଲେ । ତାଙ୍କର ଅଷ୍ଟମବର୍ଷ ବୟସରେ ଉପନୟନ କ୍ରିୟା ସମ୍ପନ୍ନ ହେଲା ଓ ସେ ପାଠାଭ୍ୟାସ ପାଇଁ ଗୁରୁ ଗୃହକୁ ପ୍ରେରିତ ହେଲେ । ସପ୍ତଦଶ ବୟସରେ ସେ ଏକ ଅଦ୍ୱିତୀୟ ପଣ୍ଡିତ ହେଲେ । ୧୮ ବର୍ଷ ବୟସରେ ବିବାହ କରିଥିଲେ ଓ ବିବାହର ପାଞ୍ଚବର୍ଷପରେ ତାଙ୍କର ଏକ ସନ୍ତାନ ଜାତ ହୋଇ ଶୈଶବରେ ମୃତ ହେବାରୁ ମତିରାମ ସଂସାର ବିରାଗୀ ହେଲେ । ସେ ଉଜ୍ଜୟିନୀକୁ ଗମନ କରି ଉପଯୁକ୍ତ ଗୁରୁଙ୍କ ତତ୍ତ୍ୱାବଧାନରେ 'ଯୋଗମାର୍ଗ—ନିଦର୍ଶକ' ପୁସ୍ତକ ଅଧ୍ୟୟନ ଓ ଯୋଗାଭ୍ୟାସରେ ରତ ହେଲେ । ସେଠାରୁ ଗୁଜରାଟ ଓ ମାଳବକୁ ଯାଇ ସାତ ବର୍ଷର କାଳ ସମଗ୍ର ବେଦାନ୍ତ ଗ୍ରନ୍ଥ ଅଧ୍ୟୟନ କରି ଉଜ୍ଜୟିନୀକୁ ଫେରି ଆସିଲେ । ସେଠାରେ ପରମହଂସ ଶ୍ରୀପୂର୍ଣ୍ଣାନନ୍ଦ ସରସ୍ୱତୀଙ୍କଠାରୁ ଦୀକ୍ଷା ଗ୍ରହଣ କଲେ ଓ ଗୁରୁ ତାଙ୍କୁ "ଶ୍ରୀସ୍ୱାମୀ ଭାସ୍କରାନନ୍ଦ ସରସ୍ୱତୀ" ନାମ ପ୍ରଦାନ କଲେ । ତଦନନ୍ତର ସେ ନାନା ସ୍ଥାନରେ ଭ୍ରମଣକରି ଜନ୍ମଭୂମି ଦର୍ଶନାନନ୍ତର କେବଳ ମାତ୍ର କୌପୀନ ଧାରଣ ପୂର୍ବକ ଭାରତର ସକଳ ତୀର୍ଥ ପର୍ଯ୍ୟଟନ କରି କାଶୀଧାମର ଆନନ୍ଦବାଗ ଆଶ୍ରମକୁ ଆସିଲେ । ତଦନନ୍ତର ସେ କୌପୀନ ପର୍ଯ୍ୟନ୍ତ ତ୍ୟାଗ କଲେ । ତପଃ ପ୍ରଭାବରେ ତାଙ୍କର ଅମାନୁଷିକ କ୍ଷମତା ଜାତ ହୋଇଥିଲା । ସେ ବଡ଼ ଧୀର ଶାନ୍ତ ଓ ନିର୍ଜ୍ଜନପ୍ରିୟ ଥିଲେ । ତାଙ୍କର ଶିଷ୍ୟ ସଂଖ୍ୟା ପ୍ରାୟ ଲକ୍ଷାଧିକ । ଇଉରୋପ ଓ ଆମେରିକାର ମହତ୍ ମହତ୍ ବ୍ୟକ୍ତିଗଣ ଏବଂ ଭାରତର ଧନୀମାନଙ୍କଠାରୁ ରଜା ମହାରଜା ପର୍ଯ୍ୟନ୍ତ ତାଙ୍କ ପାଦପଦ୍ମରେ ଶ୍ରଦ୍ଧାଭକ୍ତି ପୁଷ୍ପାଞ୍ଜଳି ପ୍ରଦାନ କରୁଥିଲେ । ୧୮୯୯ ଖ୍ରୀଷ୍ଟାବ୍ଦରେ ୭୫ ବର୍ଷ ବୟସରେ ସେ ଦେହ ରକ୍ଷା କରିଥିଲେ ।



## ଗୁରୁ ଶିଷ୍ୟ ସମ୍ବାଦ ।

( ଭାସ୍କରାନନ୍ଦ ସରସ୍ୱତୀଙ୍କର ଯୋଗ ସମ୍ବନ୍ଧୀୟ ଉପଦେଶର ସାରାଂଶ )

ସଂସାର ତ୍ୟାଗ କରି ଉଦାସୀନ ହୋଇ ଯୋଗ ସାଧନ କଲେ ଯେ ଈଶ୍ୱରଙ୍କୁ ଲାଭ କରନ୍ତି, ଏପରି ନୁହେଁ, ସଂସାରୀ ଏବଂ ଉଦାସୀନ ଉଭୟ ଯୋଗୀ ଯଦି ଚିତ୍ତ ଓ ମନକୁ ସ୍ଥିର ରଖି ପାରନ୍ତି, ତେବେ ତାଙ୍କର ସାକ୍ଷାତ ପାଆନ୍ତି । ମାନବର ସମସ୍ତ

ଗୁଣ ଅଛି । ମନୁଷ୍ୟ ଅଜ୍ଞାନ ଅନ୍ଧକାରାଚ୍ଛନ୍ନ ଥିବାରୁ ସେ ସମସ୍ତ ଗୁଣ କାର୍ଯ୍ୟରେ ପରିଣତ କରିପାରୁ ନାହିଁ । ଯୋଗସିଦ୍ଧି ଦ୍ୱାରା ସେହି ଅଜ୍ଞାନରୂପ ଅନ୍ଧକାରକୁ ଦୂର କରିହୁଏ । ଯୋଗବଳସମ୍ପନ୍ନ ମନୁଷ୍ୟର ଅସାଧ୍ୟ କିଛି ନାହିଁ ।

ପ୍ରଶ୍ନ—ଯୋଗ କାହାକୁ କହନ୍ତି ?

ଉତ୍ତର—ବେଦ ଶାସ୍ତ୍ରରେ ଯାହା ଧ୍ୟାନ ବୋଲି କଥିତ ହୁଏ, ତାହାକୁ ଅନ୍ୟାନ୍ୟ ଶାସ୍ତ୍ରକାରଗଣ ଯୋଗ ଶବ୍ଦରେ ଉଲ୍ଲେଖ କରି ଥାଆନ୍ତି, କେତେଗୁଡ଼ିଏ କ୍ରିୟାନୁଷ୍ଠାନ ଦ୍ୱାରା ଯୋଗଲାଭ କରିବାକୁ ହୁଏ, ସେମାନଙ୍କ ମଧ୍ୟରେ ସମାଧି ସର୍ବ ପ୍ରଧାନ । ସମାଧି କହିଲେ—ବହିର୍ବିଷୟରେ ପ୍ରସକ୍ତ ଅନ୍ତଃକରଣକୁ ଏକାଗ୍ରଭାବରେ ଗୋଟାଇ ନେବା ବୁଝାଏ । ସେହି ଗୋଟାଇବା କେନ୍ଦ୍ରସ୍ଥଳଟି ପରମାର୍ଥ ପଦାର୍ଥ । ଭଗବାନ୍ ପତଞ୍ଜଳି କହିଛନ୍ତି "ଯୋଗଶ୍ଚିତ୍ତବୃତ୍ତିନିରୋଧଃ" ଚିତ୍ତବୃତ୍ତି ନିରୋଧର ନାମ ଯୋଗ । ଏହିପରି ଚିତ୍ତବୃତ୍ତି ନିରୋଧ ହୋଇ ପରମାତ୍ମାରେ ସ୍ଥିତହେଲେ, ଜୀବାତ୍ମା ଓ ପରମାତ୍ମାଙ୍କର ଐକ୍ୟ ହେଲା ବୋଲି ବୁଝାଯାଏ । ଏଥିପାଇଁ ପ୍ରଚଳିତ କଥାରେ ପରମାତ୍ମାଙ୍କ ସହିତ ଜୀବାତ୍ମାଙ୍କର ଐକ୍ୟ କରିବାକୁ ଯୋଗ କହନ୍ତି ।

ପ୍ରଶ୍ନ—ଯୋଗଶିକ୍ଷା କରିବାକୁ ହେଲେ କି କି ବିଷୟ ଜାଣିବା ଆବଶ୍ୟକ ?

ଉତ୍ତର—ଯୋଗାଭ୍ୟାସ ପାଇଁ ପ୍ରଥମତଃ ସିଦ୍ଧ ଗୁରୁ ଆବଶ୍ୟକ । ପରେ ମନ ସ୍ଥିର କରିବା ନିମିତ୍ତ ନିଜ ଅବସ୍ଥାରେ ସନ୍ତୁଷ୍ଟ ହେବା ଦରକାର ଏବଂ ଇଚ୍ଛାଭିଳାଷ ତ୍ୟାଜ୍ୟ । ମନ ସ୍ଥିର ନ ହେଲେ ଯୋଗରେ ଅଧିକାର ହୁଏ ନାହିଁ । ଏହାପରେ କାମାଦି ରିପୁତ୍ୟାଗ ନିଷ୍ଠୁରତା, ପରମବ୍ରହ୍ମଙ୍କର ଚିତ୍ତ ସମର୍ପଣ ଇତ୍ୟାଦି ଆବଶ୍ୟକ । ତତ୍ପରେ ଆସନ, ମୁଦ୍ରା, ପ୍ରାଣାୟାମ, ଧ୍ୟାନ, ପ୍ରତ୍ୟାହାର, ଧାରଣା ଏବଂ ସମାଧି ଆବଶ୍ୟକ । ଯୋଗରେ ବସିବା ପୂର୍ବରୁ ନିୟମାଦି ଅଭ୍ୟାସ କରିବାକୁ ହୁଏ ।

ପ୍ରଶ୍ନ—ନିୟମ କାହାକୁ କହନ୍ତି ?

ଉତ୍ତର—ଶାନ୍ତି, ସନ୍ତୋଷ, ଆହାର ଓ ନିଦ୍ରାର ଅଳ୍ପତା; ସର୍ବବିଷୟରେ ସର୍ବଦା ଉଦାସୀନ ଭାବ, ଯଥାଲାଭରେ ତୃପ୍ତି, ନିଷ୍ଠୁରତା, ଚିତ୍ତସ୍ଥିରତା ଏବଂ ପରମବ୍ରହ୍ମରେ ଚିତ୍ତ ସମର୍ପଣକୁ ନିୟମ କହନ୍ତି । ନିୟମ ପରେ ଦେହଜ୍ଞାନ ହେବା ଆବଶ୍ୟକ ।

ପ୍ରଶ୍ନ—ଦେହଜ୍ଞାନ କାହାକୁ କହନ୍ତି ।

ଉତ୍ତର—ଯହିଁରେ ଜୀବାତ୍ମା, ପରମାତ୍ମା ଓ ପ୍ରାଣ, ଅପାନାଦି ଏକତ୍ର ମିଳିତ ହୁଏ, ତାହାକୁ ଦେହ କହନ୍ତି । ଦେହ ମଧ୍ୟରେ ମୋଟ ତ୍ରିସପ୍ତତି ସହସ୍ର ନାଡ଼ୀ ଅଛି । ସେମାନଙ୍କ ମଧ୍ୟରେ ଇଡ଼ା, ପିଙ୍ଗଳା, ସୁଷୁମ୍ନା ଏହି ତିନୋଟି ନାଡ଼ୀ ସର୍ବ ପ୍ରଧାନ ଓ ଏମାନେ ଊର୍ଦ୍ଧ୍ୱଗାମିନୀ ଅଟନ୍ତି ଗାନ୍ଧାରୀ, ପୁଷା, ହସ୍ତିଜିହ୍ୱା, ଯଶା, ଅଳମ୍ବୁଷା, କୁହୁ ଏବଂ ଶଙ୍ଖିନୀ ନାଡ଼ୀସମୂହ ସର୍ବଶରୀରରେ ଦକ୍ଷିଣାଙ୍ଗରେ ଓ ବାମାଙ୍ଗରେ ଅବସ୍ଥିତ କରୁଅଛି । ଏହି ଦଶ ନାଡ଼ୀରୁ ବହୁସଂଖ୍ୟକ କ୍ଷୁଦ୍ର ନାଡ଼ୀ ଉତ୍ପନ୍ନ ହୋଇ ସର୍ବ ଶରୀରରେ ବ୍ୟାପ୍ତ ହୋଇଅଛି ।

ଶରୀରରେ ଦଶ ପ୍ରକାର ବାୟୁ ଅଛି । ପ୍ରାଣବାୟୁ ହୃଦୟରେ ଅପାନ ଗୁହ୍ୟରେ, ସମାନ ନାଭିରେ, ଉଦାନ କଣ୍ଠରେ, ବ୍ୟାନ ଓ ଧନଞ୍ଜୟ ସର୍ବ ଶରୀରରେ, ନାଗ ଉଦ୍ଗାରରେ, କୂର୍ମ ଉନ୍ମୀଳନରେ, କୃକର କ୍ଷୁତ୍କୃତରେ ଏବଂ ଦେବଦତ୍ତ ଜୃମ୍ଭଣରେ ଅବସ୍ଥିତ କରୁଅଛି ।

ପ୍ରଶ୍ନ—ଷଟ୍‌ଚକ୍ର କାହାକୁ କହନ୍ତି ।

ଉତ୍ତର—ମୂଳାଧାର, ସ୍ୱାଧିଷ୍ଠାନ, ମଣିପୁର, ଅନାହତ, ବିଶୁଦ୍ଧ ଏବଂ ଆଜ୍ଞା ଏହି ଛଅଟି ଚକ୍ର ଦେହ ମଧ୍ୟରେ ଅଛି । ସେମାନଙ୍କୁ ଷଟ୍‌ଚକ୍ର କହନ୍ତି । ଯୋଗରେ ବସିବାକୁ ହେଲେ ଆସନ ଓ ମୁଦ୍ରାଦି ଅଭ୍ୟାସ କରିବାକୁ ହୁଏ ।

ପ୍ରଶ୍ନ—ଆସନ କାହାକୁ କହନ୍ତି ।

ଉତ୍ତର—ବସିବାର ରୀତିକୁ ଆସନ କହନ୍ତି । ଆସନାଦି ଅଭ୍ୟାସ କଲେ ମନର ଯେଉଁ ଦୁଷ୍ଟବୃତ୍ତି ଗୁଡ଼ିକ ପ୍ରଭୃତି, ତାହା ଅଗତ୍ୟା ମନରୁ ପଳାୟନ କରେ ଏବଂ ଆସନ ଅଭ୍ୟାସ ହେଲେ ମେରୁଦଣ୍ଡ ସ୍ଥିର ହୁଏ ମେରୁଦଣ୍ଡ ସ୍ଥିର ନ ହେଲେ ସମାଧି ହୁଏ ନାହିଁ ।

ପ୍ରଶ୍ନ—ଆସନ କେତେ ପ୍ରକାର ?

ଉତ୍ତର—ଆସନ ଚଉରାଶୀ ପ୍ରକାର । ସେଥି ମଧ୍ୟରୁ ସିଦ୍ଧ, ପଦ୍ମ, ଭଦ୍ର ଓ ସ୍ୱସ୍ତିକ ଏହି ଚାରିଗୋଟି ପ୍ରସିଦ୍ଧ ଏବଂ

ତୁଳସୀ କହନ୍ତି ମର୍ତ୍ତ୍ୟଲୋକେ ଆସି କିଏ ବା ଏତେ ସମର୍ଥ ।

ସର୍ବୋତ୍କୃଷ୍ଟ ସ୍ଥିର ମନରେ ସ୍ପୃହାଶୂନ୍ୟ ହୋଇ ଭକ୍ତି ସହକାରେ ଅତି ଗୋପନରେ ଆସନରେ ଉପବେଶନ କରି ଯୋଗାଭ୍ୟାସ କରିବାକୁ ହେବ, ନଚେତ୍ ମନ ସ୍ଥିର ହୁଏ ନାହିଁ । କାହାର ନିକଟରେ ପ୍ରକାଶ କରିବ ନାହିଁ ଯେ, ତୁମ୍ଭେ କେଉଁଠି କଅଣ କରୁଛ ।

ପ୍ରଶ୍ନ—ସିଦ୍ଧାସନ କାହାକୁ କହନ୍ତି ?

ଉତ୍ତର— ଯତ୍ନ ସହକାରେ ମେରୁଦଣ୍ଡ ସରଳ କରି ଏକପାଦ ମୂଳ ଦ୍ୱାରା ଗୁହ୍ୟଦେଶ ବିଶେଷରୂପେ ଅବରୋଧ କରିବ ଓ ଅପର ପାଦ ମୂଳ ଲିଙ୍ଗର ଉପରିଭାଗରେ ସ୍ଥାପନ କରିବ, ପରେ ସ୍ଥିର ଭାବରେ ପରମବ୍ରହ୍ମରେ ମନ ସମର୍ପଣ କରି ଊର୍ଦ୍ଧ୍ୱନେତ୍ରରେ ଭ୍ରୂଯୁଗଳର ମଧ୍ୟଭାଗ ନିରୀକ୍ଷଣ କରୁଁ କରୁଁ ପ୍ରାଣାୟାମାନୁଷ୍ଠାନ କରି ପରମବ୍ରହ୍ମଙ୍କୁ ଧ୍ୟାନ କରିବାକୁ ହେବ । ଏହାକୁ ସିଦ୍ଧାସନ କହନ୍ତି ।

ସଯତ୍ନରେ ଦକ୍ଷିଣ ପଦ ବାମ ଉରୁ ଉପରେ ଏବଂ ବାମପଦ ଦକ୍ଷିଣ ଉରୁ ଉପରେ ସ୍ଥାପନ କରିବ । ପରେ ବାମହସ୍ତ ଦ୍ୱାରା ପୃଷ୍ଠଦେଶରୁ ବାମପଦର ବୃଦ୍ଧାଙ୍ଗୁଷ୍ଠ ଏବଂ ଦକ୍ଷିଣ ହସ୍ତଦ୍ୱାରା ସେହିପରି ଦକ୍ଷିଣ ପଦର ବୃଦ୍ଧାଙ୍ଗୁଷ୍ଠ ଧରି ମେରୁଦଣ୍ଡ ସରଳ କରିବ । ପରେ ବକ୍ଷସ୍ଥଳରେ ଚିବୁକ ସ୍ଥାପନ କରି ଦୁଇ ଚକ୍ଷୁ ଦ୍ୱାରା ଏକ ସମୟରେ ନାସିକାର ଅଗ୍ରଭାଗ ଦେଖୁଁ ଦେଖୁଁ ପ୍ରାଣାୟାମାନୁଷ୍ଠାନ କରି ପରମବ୍ରହ୍ମଙ୍କୁ ଧ୍ୟାନ କରିବାକୁ ହେବ । ଏହିପରି କ୍ରିୟାକୁ ପଦ୍ମାସନ କହନ୍ତି ।

ଦେହ ଓ ମେରୁଦଣ୍ଡ ସରଳ କରି ଦକ୍ଷିଣ ପଦ ବାମ ଉରୁ ଓ ଜାନୁର ମଧ୍ୟରେ ଏବଂ ବାମପଦ ଦକ୍ଷିଣ ଉରୁ ଓ ଜାନୁର ମଧ୍ୟସ୍ଥଳରେ ସ୍ଥାପନ କରି ପ୍ରାଣାୟାମାନୁଷ୍ଠାନ ପୂର୍ବକ ପରମବ୍ରହ୍ମରେ ଚିତ୍ତସ୍ଥାପନ କରିବାକୁ ସ୍ୱସ୍ତିକାସନ କହନ୍ତି ।

ଦେହ ଓ ମେରୁଦଣ୍ଡ ସରଳ କରି ଗୁଲ୍ଫଦ୍ୱୟ ବିପରୀତ ଭାବରେ କୋଷର ନିମ୍ନଭାଗରେ ସ୍ଥାପନ କରି, ବାମହସ୍ତ ଦ୍ୱାରା ପୃଷ୍ଠଦେଶରୁ ବାମପଦର ବୃଦ୍ଧାଙ୍ଗୁଷ୍ଠ ଏବଂ ଦକ୍ଷିଣ ହସ୍ତ ଦ୍ୱାରା ସେହିପରି ଦକ୍ଷିଣ ପଦର ବୃଦ୍ଧାଙ୍ଗୁଷ୍ଠ ଧରିବାକୁ ହେବ । ପରେ କଣ୍ଠ ସଙ୍କୋଚ କରି ବକ୍ଷୋପରି ଚିବୁକ ସ୍ଥାପନ ପୂର୍ବକ ଚକ୍ଷୁଦ୍ୱୟ ଦ୍ୱାରା ଏକ କାଳରେ ନାସିକାର ଅଗ୍ରଭାଗ ନିରୀକ୍ଷଣ କରୁଁ କରୁଁ ପ୍ରାଣାୟାମାନୁଷ୍ଠାନ ପୂର୍ବକ ପରମବ୍ରହ୍ମଙ୍କୁ ଚିନ୍ତା କରିବାକୁ ହେବ, ଏହାର ନାମ ଭଦ୍ରାସନ ।

ଉଲ୍ଲିଖିତ ଚତୁଃପ୍ରକାର ଆସନ ମଧ୍ୟରୁ ଯେ କୌଣସି ପ୍ରକାର ଆସନରେ ବସି ତିନିଘଣ୍ଟା ଧ୍ୟାନ ନିମଗ୍ନ ହୋଇପାରିଲେ ଆସନ ସିଦ୍ଧ ହେବ । ଏହିପରି ଯୋଗ ସାଧନ କରୁଁ କରୁଁ ନିତ୍ୟ ସମାଧିସ୍ଥ ହେବ । ଊଷାକାଳ ଓ ସନ୍ଧ୍ୟାକାଳ ଯୋଗର ପ୍ରଶସ୍ତ ସମୟ ।

ପ୍ରଶ୍ନ—ମୁଦ୍ରା କେତେ ପ୍ରକାର, ପୁଣି ସେମାନଙ୍କ ନାମ କ'ଣ ?

ଉତ୍ତର—ମୁଦ୍ରା ପଞ୍ଚବିଂଶତି ପ୍ରକାର । ତାହା ମଧ୍ୟରେ ମହାମୁଦ୍ରା, ଖେଚରୀ, ଶକ୍ତିଚାଳନୀ, ମହାବନ୍ଧ, ବିପରୀତ କରଣୀ, ଜାଳନ୍ଧରବନ୍ଧ, ମହାବେଧ, ଉଡ୍ଡିୟାନ, ମୂଳବନ୍ଧ ଓ ବଜ୍ରୋଣୀ ପ୍ରଧାନ ।

ବାମଗୁଲ୍ଫ ଦ୍ୱାରା ଗୁହ୍ୟଦେଶ ବିଶେଷରୂପେ ଅବରୋଧ କରି, ଦକ୍ଷିଣ ଚରଣ ପ୍ରସାରଣ କରି ହସ୍ତାଙ୍ଗୁଳି ଦ୍ୱାରା ଚରଣାଙ୍ଗୁଳି ଧରିବାକୁ ହେବ । ପରେ ବକ୍ଷସ୍ଥଳରେ ଚିବୁକ ସଂସ୍ଥାପନ କରି ଦୁଇ ଚକ୍ଷୁ ଦ୍ୱାରା ଏକ ବେଳକେ ଭ୍ରୂଯୁଗଳର ମଧ୍ୟଭାଗ ଦେଖିବାକୁ ହେବ । ଏହାର ନାମ ମହାମୁଦ୍ରା ।

ଜିହ୍ୱାକୁ ପ୍ରଥମତଃ ଲବଣୀ ଦ୍ୱାରା ଦୋହନ କରି କ୍ରମଶଃ ଏପରି ଦୀର୍ଘ କରିବାକୁ ହେବ ଯେ, ଅନାୟାସରେ ଉଦ୍ଧ୍ୱାସ ଭ୍ରୂମଧ୍ୟଭାଗ ସ୍ପର୍ଶ କରିବ । ଜିହ୍ୱା ଭ୍ରୂମଧ୍ୟଭାଗସ୍ପର୍ଶୋପଯୋଗୀ ହେଲେ ନିଭୃତ ସ୍ଥଳକୁ ଯାଇ ବଜ୍ରାସନରେ ଉପବେଶନ କରିବ; ପରେ ଭ୍ରୂଦ୍ୱୟର ମଧ୍ୟଭାଗ ଦୃଷ୍ଟି କରିବାକୁ ହେବ । ତତ୍ପରେ ଜିହ୍ୱାକୁ ବିପରୀତ ଭାବରେ ଊର୍ଦ୍ଧ୍ୱଦିଗକୁ ଉତ୍ଥିତ କରି ଜିହ୍ୱାମୂଳର ଊର୍ଦ୍ଧ୍ୱରେ ତାଳୁ ପ୍ରଦେଶର ଅମୃତ କୂପରେ ସଂଯୁକ୍ତ ପୂର୍ବକ ଏକାଗ୍ରଚିତ୍ତରେ ପରମବ୍ରହ୍ମଙ୍କୁ ଚିନ୍ତା କରିବାକୁ ହେବ । ଏପରି କରିବାକୁ ଖେଚରୀ ମୁଦ୍ରା କହନ୍ତି । ଏହି ମୁଦ୍ରା ଅଭ୍ୟାସ କଲେ ଦେହ ସର୍ବଦା ପବିତ୍ର ଥାଏ ଏବଂ ମୃତ୍ୟୁ ଇଚ୍ଛାଧୀନ ହୁଏ ।

ଆଧାର କମଳରେ ଗାଢ଼ ନିଦ୍ରାଭିଭୂତା କୁଣ୍ଡଳିନୀ ଶକ୍ତିକୁ ଜାଗରିତ କରି ଅପାନ ବାୟୁରେ ଆରୋହଣ କରିବାକୁ ଶକ୍ତିଚାଳନୀ ମୁଦ୍ରା କହନ୍ତି । ଏହି ମୁଦ୍ରା ସର୍ବସିଦ୍ଧିପ୍ରଦାୟିନୀ । ଏହାକୁ ଅଭ୍ୟାସ କରି କୁଣ୍ଡଳିନୀ ଶକ୍ତିକୁ ଜାଗରିତ କରି ପାରିଲେ ବ୍ରହ୍ମଦ୍ୱାର ଭେଦନ ହୋଇ ବ୍ରହ୍ମ ରନ୍ଧ୍ରପଥ ଉଦ୍ଘାଟିତ ହୁଏ ଓ ଜୀବର ପ୍ରକୃତ ଜ୍ଞାନ ଜନ୍ମେ । ଶୁଭ୍ର ସୂକ୍ଷ୍ମବସ୍ତ୍ର ଦ୍ୱାରା ନାଭି ବେଷ୍ଟନ କରି ଅଙ୍ଗରେ ଭସ୍ମ ବୋଳି ସିଦ୍ଧାସନରେ ଉପବେଶନ କରିବ । ପରେ ନାସିକା ଦ୍ୱାରା ବାୟୁ ଆକର୍ଷଣ କରି

ଅପାନ ବାୟୁ ସହିତ ଏକତ୍ରିତ କରିବାକୁ ହେବ ଏବଂ ଯେପର୍ଯ୍ୟନ୍ତ ସେହି ବାୟୁ ସୁଷୁମ୍ନା ନାଡ଼ୀର ଅଭ୍ୟନ୍ତରକୁ ଗମନ ନ କରେ, ସେ ପର୍ଯ୍ୟନ୍ତ ଗୁହ୍ୟଦେଶ ଅକୁଞ୍ଚନ କରିବାକୁ ହେବ । ଏହିପରି କୁମ୍ଭକ ଦ୍ୱାରା ବାୟୁ ଅବରୁଦ୍ଧ କଲେ କୁଣ୍ଡଳିନୀ ଜାଗରିତା ହୋଇ ଊର୍ଦ୍ଧ୍ୱଗାମିନୀ ହୁଅନ୍ତି, ଏବଂ ସହସ୍ରାରେ ପରମ ସ୍ୱାମୀ ସହ ମିଳିତ ହୁଅନ୍ତି । କୁଣ୍ଡଳିନୀ ଜାଗରିତା ହେଲେ କୌଣସି ବିଶେଷ ଗୁରୁଙ୍କୁ ଯାଇ ଏହି ମୁଦ୍ରା ସାଧନ କରିବାକୁ ହେବ ।

ଦକ୍ଷିଣ ଚରଣ ବାମ ଊରୁ ଉପରେ ରଖି ଗୁହ୍ୟ ଅକୁଞ୍ଚନ କରି ଅପାନ ବାୟୁକୁ ଊର୍ଦ୍ଧ୍ୱଗତ କରିବ ଓ ନାଭିସ୍ଥ ସମାନ ବାୟୁ ସହିତ ଏକତ୍ର କରିବ, ପରେ ହୃଦୟସ୍ଥ ପ୍ରାଣବାୟୁକୁ ନିମ୍ନଗାମୀ କରି ପ୍ରାଣ ଓ ଅପାନ ବାୟୁ ସହିତ ଜଠର ମଧ୍ୟରେ କୁମ୍ଭକ ଦ୍ୱାରା ଅବରୁଦ୍ଧ କରିବ । ଏହାକୁ ମହାବନ୍ଧ କହନ୍ତି । ଏହା ଅଭ୍ୟାସ କଲେ ସୁଷୁମ୍ନାର ମଧ୍ୟ ପଥରେ ବାୟୁ ଯାତାୟାତ କରେ ଏବଂ ଚିତ୍ତ ସଦାନନ୍ଦ ରହେ ।

ତାଳୁମୂଳରେ ଚନ୍ଦ୍ରନାଡ଼ୀ ଏବଂ ନାଭିମୂଳରେ ସୂର୍ଯ୍ୟନାଡ଼ୀ ଥାଏ । ସହସ୍ରାର ନିର୍ଗତ ସୁଧା, ନାଭିମୂଳସ୍ଥ ସୂର୍ଯ୍ୟନାଡ଼ୀ ପାନ କରେ ବୋଲି ଜୀବର ମୃତ୍ୟୁ ହୁଏ । ଚନ୍ଦ୍ରନାଡ଼ୀ ସେହି ସୁଧା ପାନ କଲେ ଜୀବ ଅମରତ୍ୱ ପ୍ରାପ୍ତ ହୁଏ । ବିପରୀତକରଣୀ ମୁଦ୍ରା ଦ୍ୱାରା ଚନ୍ଦ୍ରନାଡ଼ୀକୁ ସେହି ସୁଧା ପାନ କରାଏ । ଭୂମିରେ ମସ୍ତକ ରଖି, ହସ୍ତଦ୍ୱୟ ପାତିତ କରି ପାଦଯୁଗଳ ଶୂନ୍ୟରେ ଉଠାଇ କୁମ୍ଭକ କରିବାକୁ ବିପରୀତକରଣୀ ମୁଦ୍ରା କହନ୍ତି ।

କଣ୍ଠ ସଙ୍କୋଚ କରି ଏବଂ ବକ୍ଷସ୍ଥଳରେ ଚିବୁକ ସ୍ଥାପନ କରି ପରମ ବ୍ରହ୍ମ ଧ୍ୟାନ କରିବାକୁ ଜାଳନ୍ଧରବନ୍ଧ କହନ୍ତି । ଏହାଦ୍ୱାରା ସହସ୍ରାର ନିର୍ଗତ ସୁଧା ଊର୍ଦ୍ଧ୍ୱଗାମୀ ହୁଏ ।

କୁମ୍ଭକ ଯୋଗରେ ନାଭିର ନିମ୍ନସ୍ଥ ନାଡ଼ୀସମୂହକୁ ନାଭିର ଊର୍ଦ୍ଧ୍ୱରେ ଉତ୍ତୋଳନ କରିବାକୁ ଉଡ୍ଡୀୟାନ ବନ୍ଧ କହନ୍ତି । ଏହା ଦ୍ୱାରା ଶରୀର ରୋଗଶୂନ୍ୟ ହୁଏ ଏବଂ ଦେହସ୍ଥ ବାୟୁ ଶୁଦ୍ଧ ହୁଏ ।

ମହାବନ୍ଧ ଓ ଉଡ୍ଡୀୟାନ ବନ୍ଧ ଅନୁଷ୍ଠାନ କରି କୁମ୍ଭକ ଯୋଗରେ ବାୟୁରୋଧ କରିବାକୁ ମହାବେଧ କହନ୍ତି । ଏହାଦ୍ୱାରା ସୁଷୁମ୍ନା ପଥସ୍ଥ ବାୟୁ ବ୍ରହ୍ମଗ୍ରନ୍ଥି ଭେଦ କରେ ।

ସ୍ଥିରଆସନରେ ହସ୍ତତଳଦ୍ୱୟ ମୃତ୍ତିକା ଉପରେ ରଖି ଚରଣଦ୍ୱୟ ଏବଂ ମସ୍ତକ ଶୂନ୍ୟକୁ ଉତ୍ତୋଳନ କରି ପରମବ୍ରହ୍ମ ଧ୍ୟାନ କରିବାକୁ ବଜ୍ରୋଣୀ ମୁଦ୍ରା କହନ୍ତି । ଏହାକୁ ଅଭ୍ୟାସ କଲେ ସହଜରେ ସିଦ୍ଧ ହୁଅନ୍ତି ।

ପ୍ରଶ୍ନ—ପ୍ରାଣାୟାମ କିପରି କରିବାକୁ ହେବ ?

ଉତ୍ତର—ପ୍ରଥମେ କୌଣସି ଏକ ଆସନରେ ଉପବେଶନ କରି ପରମବ୍ରହ୍ମରତ ହୋଇ ଦକ୍ଷିଣ ହସ୍ତର ଅଙ୍ଗୁଷ୍ଠଦ୍ୱାରା ଦକ୍ଷିଣ ନାସିକା ଚାପି ପୂରକ ଅର୍ଥାତ୍ ଧୀରେ ଧୀରେ ବାମ ନାସାଦ୍ୱାରା ଓଁ ମନ୍ତ୍ରରେ ବାୟୁ ପୂରଣ କରିବ । ପରେ ଅନାମିକା ଓ କନିଷ୍ଠାଦ୍ୱାରା ବାମନାସା ଚାପି, ସେହି ବାୟୁ ଦୃଢ଼ରୂପେ ଧାରଣ କରି, ଶରୀରସ୍ଥ ପାପ-ପୁରୁଷ ସହିତ ଦେହ ଶୋଧନ କରିବ ଏବଂ ଦେହକୁ ବ୍ରହ୍ମମୟ ଚିନ୍ତା କରି ପୂରକ ସଂଖ୍ୟାର ଚତୁର୍ଗୁଣ ଓଁ ମନ୍ତ୍ର ଜପ କରି କୁମ୍ଭକ ଅର୍ଥାତ୍ ଶ୍ୱାସରୋଧ କରିବ । ଏହାପରେ ପୂରକ ସଂଖ୍ୟାର ଦ୍ୱିଗୁଣ ଓଁ ମନ୍ତ୍ର ଜପ କରୁଁ କରୁଁ ଦକ୍ଷିଣ ନାସାପୁଟ ଛାଡ଼ିଦେଇ, ଧୀରେ ଧୀରେ ବାୟୁ ରେଚକ କରିବ ଅର୍ଥାତ୍ ଛାଡ଼ିଦେବ । ପୁନଶ୍ଚ ଏହିପରି ଅବସ୍ଥାରେ ବିପରୀତ କ୍ରମରେ ଅର୍ଥାତ୍ ବାମ ନାସିକା ଚାପି ପୂରକ, ଉଭୟ ନାସିକା ଚାପି କୁମ୍ଭକ ଏବଂ ବାମ ନାସିକା ଛାଡ଼ିଦେଇ ରେଚକ କରିବ । ଏହିପରି ପ୍ରାଣାୟାମ ଅଭ୍ୟାସ କଲେ ଦେହ ପବିତ୍ର, ଜ୍ୟୋତିର୍ମୟ ଏବଂ ବାୟୁପୂର୍ଣ୍ଣ ଥାଏ । ଅନ୍ତତଃ ୧୦୦ ଗଣନା କାଳ ପର୍ଯ୍ୟନ୍ତ କୁମ୍ଭକ ଅଭ୍ୟାସ କରିବ ।

ଧ୍ୟାନ ଦୁଇ ପ୍ରକାର—ସ୍ଥୂଳ ଓ ସୂକ୍ଷ୍ମ । ମନ୍ତ୍ର ଦ୍ୱାରା ରୂପାଦି ବର୍ଣ୍ଣନା କରି ଯେଉଁ ଧ୍ୟାନ କରାଯାଏ, ତାହାକୁ ସ୍ଥୂଳ ଧ୍ୟାନ କହନ୍ତି । ଆଉ ମନ୍ତ୍ର ଶୂନ୍ୟ ଧ୍ୟାନକୁ ଅର୍ଥାତ୍ ମାନସ-ପଟରେ ବ୍ରହ୍ମରୂପ ଅଙ୍କିତ କରି ତଦ୍ଗତ ହେବାକୁ ସୂକ୍ଷ୍ମ ଧ୍ୟାନ କହନ୍ତି । ସୂକ୍ଷ୍ମ ଧ୍ୟାନରେ ମଗ୍ନ ହୋଇ ଯୋଗବଳରେ ଶ୍ୱାସ ପ୍ରଶ୍ୱାସାଦି ପରିତ୍ୟାଗ କରି ପରମବ୍ରହ୍ମରେ ଚିତ୍ତ ସ୍ଥିର କରିବାକୁ ସମାଧି କହନ୍ତି । ସମାଧି ସମୟରେ ଚିତ୍ତ ପୃଥିବୀ ସହିତ ସଂସୃଷ୍ଟ ଥାଏ ନାହିଁ, ସୁତରାଂ ସେତେବେଳେ ଆଉ ପାର୍ଥିବ ଜ୍ଞାନ କିଛି ମାତ୍ର ନ ଥାଏ ।



## ଆଉଲ ଗ୍ରନ୍ଦ ।

( ଯାହାର ଦୈବଶକ୍ତି ଅଛି, ପାରସୀଭାଷାରେ ତାହାକୁ ଆଉଲିୟା ବୋଲି କହନ୍ତି—ଏହି ଶବ୍ଦରୁ ଆଉଲ-ଚାନ୍ଦ ନାମ ହୋଇଅଛି )

ନଦୀୟା ଜିଲ୍ଲାରେ ମହାଦେବ ଦାସ ନାମରେ ଜଣେ ପାନସା ଥିଲେ । ସେ ଦିନେ ପାନବରଜରୁ ଏକ ଅଷ୍ଟମବର୍ଷୀୟ ସୁନ୍ଦର ବାଳକ ପାଇଥିଲେ । ସେ ବାଳକକୁ ମହାଦେବ ତାର ପରିଚୟାଦି ବିଷୟ ପଚାରିବାରୁ ସେ କହିଲେ "ମୁଁ କିଛି ଜାଣେ ନାହିଁ" । ମହାଦେବ ଅପୁତ୍ରକ ଥିଲେ । ସେ ତାଙ୍କୁ ଅତି ପୁତ୍ର ପରି ପ୍ରତିପାଳନ କଲେ । ତାଙ୍କ ସ୍ତ୍ରୀ ସେ ବାଳକର ନାମ ପୂର୍ଣ୍ଣଚନ୍ଦ୍ର ଦେଲେ ।

ପୂର୍ଣ୍ଣଚନ୍ଦ୍ର ସେଠାରେ ପ୍ରଥମେ ଗୋଚାରଣ ଓ ବରଯୋବୃଦ୍ଧି ସଙ୍ଗେ କୃଷିକାର୍ଯ୍ୟାଦି କଲେ । ମହାଦେବଙ୍କର ସ୍ୱଭାବ ରୁକ୍ଷ ଥିଲା । କୌଣସି କାର୍ଯ୍ୟରେ କିଛି ତ୍ରୁଟି ଦେଖିଲେ ସେ ପୂର୍ଣ୍ଣଚନ୍ଦ୍ରଙ୍କୁ ନାନା ଗାଳି ଓ ପ୍ରହାର ପର୍ଯ୍ୟନ୍ତ କରୁଥିଲେ । ପୂର୍ଣ୍ଣଚନ୍ଦ୍ର ସମସ୍ତ ସହ୍ୟକରି ଗୃହର ଯାବତୀୟ କାର୍ଯ୍ୟ ପରିପାଟୀ-ରୂପେ ସମାପ୍ତ କରୁଥିଲେ ଓ ଈଶ୍ୱରୋପାସନାରେ ରତ ହେଉଥିଲେ । ତାଙ୍କ ଘର ନିକଟରେ ଜଣେ ବୈଷ୍ଣବ ଭକ୍ତ ଥିଲେ । ପୂର୍ଣ୍ଣଚନ୍ଦ୍ର ସେଠାକୁ ଯାଇ ଧର୍ମଶାସ୍ତ୍ର ଓ ଫାର୍ସୀ ଭାଷା ଶିକ୍ଷା କଲେ । ତାଙ୍କର ସ୍ୱଭାବ ଯେପରି ମଧୁର, ବୁଦ୍ଧି ସେହିପରି ପ୍ରଖର ଥିଲା । ତାଙ୍କର ଯୋଗ୍ୟତା ଦେଖି ସମସ୍ତେ ଧନ୍ୟ ଧନ୍ୟ କଲେ ମାତ୍ର ମହାଦେବଙ୍କୁ ତାହା ଅସହ୍ୟ ହେଲା ଏବଂ ସେ ପୂର୍ଣ୍ଣଚନ୍ଦ୍ରଙ୍କୁ ସେଠାକୁ ଯିବାକୁ ମନା କଲେ । ଏଥିରେ ପୂର୍ଣ୍ଣଚନ୍ଦ୍ର ସେଠାରୁ ଲୁଚିଯାଇ ସେହି ବୈଷ୍ଣବ ଭକ୍ତଙ୍କ ଘରେ ରହିଲେ । କିଛି ଦିନ ପରେ ସେ ତାଙ୍କୁ ବିବାହ କରିବାକୁ କହିବାରୁ ପୂର୍ଣ୍ଣଚନ୍ଦ୍ର ସଂସାରର ଅସାରତା ବିଷୟ ବୁଝାଇ ବୈଷ୍ଣବ ଧର୍ମ ଗ୍ରହଣ ମାନସରେ ଫୁଲିଆ ଗ୍ରାମକୁ ଗଲେ । ସେଠାରେ ବଳରାମ ଦାସଙ୍କଠାରୁ ଦୀକ୍ଷା ଗ୍ରହଣ କରି ଆଉଲଚାନ୍ଦ ନାମ ପାଇଲେ । ସେଠାରେ ଦେଢ଼ବର୍ଷ ରହି ସମସ୍ତ ଭାରତବର୍ଷ ପ୍ରଦକ୍ଷିଣ କରି ନାନା ତୀର୍ଥପର୍ଯ୍ୟଟନ କଲେ ଓ ଶେଷରେ ବଜରା ଗ୍ରାମରେ ଆସି ରହିଲେ । ସେଠାରେ ଭିକ୍ଷା କରି ଭିକ୍ଷାଲବ୍ଧ ଧନରୁ ଦୁଃଖୀ ଦୀନ ଓ ଅତୁରଙ୍କୁ ବିତରଣ କରୁଥିଲେ । ଗ୍ରାମବାସୀ ଓ ଅନ୍ୟାନ୍ୟ ତାଙ୍କର ସାଧୁତା ଓ ପରୋପକାରିତାରେ ମୁଗ୍ଧ ହେଲେ । ଦୈବଶକ୍ତି ବଳରେ ସେ ଅନ୍ଧଙ୍କୁ ଚକ୍ଷୁ, ଖଞ୍ଜଙ୍କୁ ପାଦ ଓ ଦୁରାରୋଗ୍ୟବ୍ୟାଧିଗ୍ରସ୍ତଙ୍କୁ ସ୍ୱାସ୍ଥ୍ୟ ପ୍ରଦାନ କରୁଥିଲେ । ଏହି ସମୟରେ ତାଙ୍କର ଅନେକ ଶିଷ୍ୟ ହେଲେ । ସେଠାରେ ତୁଳସୀ ତଳରେ ସୁଧାମୟ ହରିନାମ ଶ୍ରବଣ କରୁ କରୁ ଓ ଜଡ଼ିତ କଣ୍ଠରେ ହରିନାମ ଉଚ୍ଚାରଣ କରୁ କରୁ ସେ ୧୭୫୧ ଶକାବ୍ଦ ବୈଶାଖ ମାସରେ ଦେହରକ୍ଷା କଲେ ।

ମନ୍ତ୍ର ପ୍ରଦାନ କରି ଆଉଲଚାନ୍ଦ ଶିଷ୍ୟମାନଙ୍କୁ ଯେଉଁ ଦଶକର୍ମ କରିବାକୁ ନିଷେଧ କରୁଥିଲେ ଓ ତତ୍ପରେ ଯେଉଁ କେତୋଟି ଉପଦେଶ ଦେଉଥିଲେ ତାହା ନିମ୍ନରେ ପ୍ରଦତ୍ତ ହେଲା ।

### ଉପଦେଶ—

"ଏକମାତ୍ର ପରମ ଚୈତନ୍ୟସ୍ୱରୂପ ଭଗବାନ୍ ଶ୍ରୀକୃଷ୍ଣଙ୍କୁ ଭଜନ କରିବ, ଅପିଚ ଅନ୍ୟାନ୍ୟ ଦେବତାମାନଙ୍କୁ ନିନ୍ଦା କରିବନାହିଁ । ମନ୍ତ୍ରଦାତା ଗୁରୁଙ୍କୁ ମନୁଷ୍ୟ ଜ୍ଞାନ କରିବ ନାହିଁ ଏବଂ ତାହାଙ୍କୁ ପ୍ରତ୍ୟହ ମାନସରେ ଓ ପ୍ରତ୍ୟକ୍ଷରେ ପ୍ରଦକ୍ଷିଣ କରିବ । ଉଦୟ ଓ ଅସ୍ତଗମନ ସମୟରେ ଧୌତ ବସ୍ତ୍ର ପରିଧାନ କରିବ । କାୟ-ମନରେ ଅତିଥିର ସେବାଶୁଶ୍ରୂଷା କରିବ । ନିୟତ ଅନ୍ତେ-କାଳର ଅଦ୍ୱିତୀୟ ଉପାୟ ସ୍ୱରୂପ ହରିନାମ ଓ ସତ୍‌କର୍ମରେ ତତ୍ପର ରହିବ । ମନୁଷ୍ୟ ମାତ୍ରଙ୍କୁ ନିଜ ସହୋଦର ପରି ଦେଖିବ । ସର୍ବସ୍ଥାନରେ ଓ ସକଳ ସମୟରେ, ସତ୍‌କଥା ଓ ବୈଷ୍ଣବ ଧର୍ମର ଗୁଣ କୀର୍ତ୍ତନ ପ୍ରଭୃତିର ଆଲୋଚନା କରିବ । ପ୍ରତିଦିନ ଆହାର ପୂର୍ବରୁ ତୁଳସୀପତ୍ରଯୁକ୍ତ ପବିତ୍ର ମୃତ୍ତିକା ଭକ୍ଷଣ କରି ଦେହ ଶୁଦ୍ଧ କରିବ, ଏବଂ ସମସ୍ତ ଜାତି ନିର୍ବିଶେଷ ଅନ୍ନ ଭକ୍ଷଣ କରିବେ । ଏହିସମ୍ପ୍ରଦାୟ ସମ୍ବନ୍ଧୀୟ କୌଣସି କଥା କାହାକୁ କହିବ ନାହିଁ; ସତ୍ୟରେ ତତ୍ପର ରହି ଗୁରୁ ସତ୍ୟ ଓ ଜଗତ ମିଥ୍ୟା, ଏହା ଦୃଢ଼ ପ୍ରତ୍ୟୟ କରିବ ।"

### ନିଷିଦ୍ଧ ଦଶକର୍ମ:—

କାୟକର୍ମ ତିନୋଟି—ପରସ୍ତ୍ରୀ ଗମନ, ପରଦ୍ରବ୍ୟ ହରଣ ଓ ପରହତ୍ୟା ବା ପର ପୀଡ଼ନ ।

ମନଃକର୍ମ ତିନୋଟି—ପର ଦ୍ରବ୍ୟ ହରଣର ଇଚ୍ଛା, ପର ହତ୍ୟା କରଣର ଇଚ୍ଛା ଓ ପରସ୍ତ୍ରୀ ଗମନର ଇଚ୍ଛା ।

ବାକ୍ୟ କର୍ମ ଚାରୋଟି—ମିଥ୍ୟା କଥନ, କଟୁବଚନ, ଅନର୍ଥ-ବଚନ ଓ ପ୍ରଳାପ ଭାଷଣ ।



ମୂର୍ଖସଙ୍ଗ କଲେ ଇନ୍ଦ୍ରପୁରେ ଦୁଃଖୀ ହୋଇଥାଏ ସଦା ହେଁସୁ ।

# ଶ୍ୟାମାନନ୍ଦ

ଏହି ସୁପବିତ୍ର ଉତ୍କଳର ଦଣ୍ଡେଶ୍ୱର ଗ୍ରାମରେ ଶ୍ରୀକୃଷ୍ଣମଣ୍ଡଳ ନାମକ ଜଣେ ପରମ ଭକ୍ତ ଥିଲେ । ପ୍ରଭୁ ଶ୍ୟାମାନନ୍ଦ ଏହାଙ୍କର ପୁତ୍ର । ଏ ୧୪୫୭ ଶକାବ୍ଦ ଚୈତ୍ର ପୂର୍ଣ୍ଣିମାରେ ଜନ୍ମଗ୍ରହଣ କରିଥିଲେ । ଭକ୍ତିମତୀ ଦୁରିକାଙ୍କର କେତେକ ଶିଶୁ ସନ୍ତାନ ବିନଷ୍ଟ ହୋଇ ଥିବାରୁ ପିତାମାତା ମନୋଦୁଃଖରେ ଏହାଙ୍କୁ 'ଦୁଃଖିଆ' ବୋଲି ଡାକୁଥିଲେ ।

କୃଷ୍ଣଭକ୍ତି-ସମ୍ପନ୍ନ ପିତାମାତାଙ୍କ ଆଦର୍ଶରେ ଦୁଃଖିଆର ପିଲାଦିନରୁ କୃଷ୍ଣଭକ୍ତି ଜାତ ହୋଇଥିଲା । ସେ ଶୈଶବାବସ୍ଥାରେ ମନୋଯୋଗ ପୂର୍ବକ ବିଦ୍ୟାଭ୍ୟାସ କରି କାବ୍ୟ ବ୍ୟାକରଣରେ ବ୍ୟୁତ୍ପତ୍ତି ଲାଭ କଲେ । ବୈଷ୍ଣବମାନଙ୍କ ମୁଖରୁ ଶ୍ରୀ ଗୌର ନିତ୍ୟାନନ୍ଦ ଓ ସୀତାନାଥଙ୍କର ସୁମଧୁର ଚରିତ ଶ୍ରବଣ କରି ଓ କୃଷ୍ଣଲୀଳାମୃତ ପାନ କରି ଦୁଃଖିଆର କୃଷ୍ଣ ନିଷ୍ଠା କ୍ରମେ କ୍ରମେ ବଢ଼ିବାକୁ ଲାଗିଲା । ପିତା ପୁତ୍ରକୁ ଅମୂଲ୍ୟ କୃଷ୍ଣପ୍ରେମର ଅଧିକାରୀ ଦେଖି ନିଜକୁ ଭାଗ୍ୟବାନ୍ ମନେ କଲେ ଏବଂ ନିଜ ଇଚ୍ଛାନୁସାରେ ସଦ୍ଗୁରୁଙ୍କଠାରୁ କୃଷ୍ଣମନ୍ତ୍ର ଗ୍ରହଣ କରିବା ପାଇଁ ଆଦେଶ ଦେଲେ । ଏହା ଶୁଣି ଦୁଃଖୀ ପ୍ରଭୁପାଦ ଶ୍ରୀ ଗୌରଦାସ ପଣ୍ଡିତଙ୍କ ଶିଷ୍ୟ ଶ୍ରୀପାଦ ଶ୍ରୀ ହୃଦୟ ଚୈତନ୍ୟଙ୍କଠାରୁ ମନ୍ତ୍ର ଉପଦେଶ ଗ୍ରହଣ କରିବାର ଇଚ୍ଛାପ୍ରକାଶ କଲେ । ପରେ ଗମ୍ଭୀର ନିଶାକାଳରେ ପିତା ମାତାଙ୍କ ଉଦ୍ଦେଶ୍ୟରେ ପ୍ରଣାମ କରି ଅମ୍ବିକା ପଥର ପଥିକ ହେଲେ । ପଥରେ ନାନାକଷ୍ଟ ସହ୍ୟ କରି ସେ ସନ୍ଧ୍ୟା ସମୟରେ ଅମ୍ବିକା ନଗରରେ ପ୍ରବେଶ କଲେ ଓ ସେଠାରେ ନୟନାନନ୍ଦମୟ ଯୁଗଳ ବିଗ୍ରହଙ୍କର ଶ୍ରୀଚରଣ ଦର୍ଶନ କରି ଧନ୍ୟ ହେଲେ ।

ସେଦିନ ସେଠାରେ ସେବାରେ ଲାଗିଲେ । କିଛିଦିନ ପରେ ନିଜର ସରଳ ବ୍ୟବହାର ଓ ସେବା ପାରିପାଟ୍ୟ ଯୋଗୁଁ ଠାକୁର ଶ୍ରୀହୃଦୟ ଚୈତନ୍ୟଙ୍କ ସ୍ନେହ ଆକର୍ଷଣ କଲେ । ସେ ତାଙ୍କୁ ଶୁଭମୁହୂର୍ତ୍ତରେ କୃଷ୍ଣମନ୍ତ୍ରରେ ଦୀକ୍ଷିତ କରି ତାଙ୍କ ନାମ ଦୁଃଖୀ କୃଷ୍ଣଦାସ ରଖିଲେ । ତଦନନ୍ତର ଗୁରୁଙ୍କ ଆଦେଶରେ ସେ ଭାରତର ନାନା ତୀର୍ଥ ଭ୍ରମଣ କରି ନିଜ ଜନ୍ମସ୍ଥାନରେ ଆସି ପହଞ୍ଚିଲେ ଏବଂ ପିତାମାତାଙ୍କ ସହିତ କିଛିଦିନ ସୁଖରେ ବାସ କଲେ । ଏହି ସମୟରେ ତାଙ୍କର ବିବାହ ସମ୍ପନ୍ନ ହେଲା ।

କୃଷ୍ଣ ଦାସଙ୍କ ପକ୍ଷରେ ଗୃହବାସ ପ୍ରୀତିକର ବୋଧ ନ ହେବାରୁ ସେ ଗୁରୁଙ୍କ ନିକଟକୁ ଗମନ କଲେ ଏବଂ ସେ ତାଙ୍କୁ ଶ୍ରୀ ବୃନ୍ଦାବନ ଧାମକୁ ପ୍ରେରଣ କଲେ । ସେଠାରେ କୃଷ୍ଣଦାସ ମହାନୁଭବ ଶ୍ରୀ ଜୀବ ଗୋସ୍ୱାମୀଙ୍କଠାରୁ ବୈଷ୍ଣବ ଶାସ୍ତ୍ର ଅଧ୍ୟୟନ ଓ ଶ୍ରୀନିବାସ ଏବଂ ନରୋତ୍ତମଙ୍କ ସହିତ କୃଷ୍ଣ କଥା ଆଳାପ କରି ପରମ ସୁଖରେ ରହିଲେ । ପୁଣି ଶ୍ରୀ ଜୀବ-ଗୋସ୍ୱାମୀଙ୍କଠାରୁ ମଧୁର ଭାବର ଭଜନ ପ୍ରଣାଳୀ ଶିକ୍ଷା କରି ନବ ନୂବଗରେ ନବ ସ୍ୱତରେ ସାଧନ କରିବାକୁ ଲାଗିଲେ ଏବଂ ତାଙ୍କର ମାନସିକ ସେବା ଦିନକୁ ଦିନ ବଢ଼ିବାକୁ ଲାଗିଲା । ଯେତେବେଳେ ତାଙ୍କ ସାଧନର ପରିପକ୍ୱଦଶା ଆସି ଉପସ୍ଥିତ ହେଲା ଦିନେ ସେ ଯମୁନାପୁଳିନ ନିକଟବର୍ତ୍ତୀ ନିତ୍ୟ ରାସ ମଣ୍ଡଳରେ ଉପସ୍ଥିତ ହେଲେ ଓ ରାସକ୍ରୀଡ଼ା ଦର୍ଶନ କଲେ । କୃଷ୍ଣଦାସ ପ୍ରେମ ନେତ୍ରରେ ଏ ଅପୂର୍ବ ଦୃଶ୍ୟ ଦେଖୁଁ ଦେଖିଲେ ନୃତ୍ୟ କାଳରେ ଶ୍ରୀମତୀ ରାଧିକାଙ୍କ ବାମ ପଦର ନୂପୁର ଖସି ପଡ଼ିଲା । ରାସାନ୍ତେ ରାସେଶ୍ୱରୀ ରସିକଶେଖରଙ୍କ ସହ କୁଞ୍ଜ କୁଟୀରରେ ଶୟନ କଲେ ଓ ସଖୀମାନେ ନିଜ କୁଞ୍ଜରେ ଶୋଇଲେ । ଉଷା କାଳରେ ଶ୍ରୀ ରାଧାମାଧବ ନିଶାନ୍ତ ଉପଯୋଗୀ ସେବା ଗ୍ରହଣ କରି ଆପଣା ମନ୍ଦିରାଭିମୁଖେ ଯାତ୍ରା କଲେ । କୃଷ୍ଣଦାସ କୁଞ୍ଜ ପରିଷ୍କାର କରୁଁ କରୁଁ ଏକ କଳ୍ପତରୁ ମୂଳରେ ପଟେ କନକ ନୂପୁର ଦର୍ଶନ କରି ପ୍ରେମ ବିହ୍ୱଳିତ ହେଲେ ଓ ତାହାକୁ କଣ୍ଠରେ ଧାରଣ କରି ନିଜ ସେବା ପରିତ୍ୟାଗପୂର୍ବକ ଶ୍ରୀ ଜୀବଗୋସ୍ୱାମୀଙ୍କୁ ସମସ୍ତ ବିଷୟ କହିଲେ ।

ଏଣେ ଶ୍ରୀମତୀଙ୍କ ଆଦେଶରେ ଶ୍ରୀ ଲଳିତାଦେବୀ ବୃଦ୍ଧା-ବ୍ରାହ୍ମଣୀ ବେଶରେ ସେ ନୂପୁର ଅନ୍ୱେଷଣ କରୁଁ କରୁଁ କୃଷ୍ଣଦାସ ପାଇଥିବାର ଜାଣି ତାଙ୍କ ଭକ୍ତିରେ ବଶ ହେଲେ ଓ ତାଙ୍କୁ ନିଜ ସ୍ୱରୂପ ଦେଖାଇଲେ । ପରେ ସେ ନୂପୁରକୁ କୃଷ୍ଣଦାସଙ୍କର ଲଲାଟରେ ସ୍ପର୍ଶ କରାଇ କହିଲେ "ଏ ନୂପୁର ଚିହ୍ନ ଚିରକାଳ ତୁମ୍ଭ ଲଲାଟରେ ଶୋଭା ପାଉ" ତତ୍କ୍ଷଣାତ୍ ଶ୍ରୀ ହରିମନ୍ଦିର ତିଳକ କୃଷ୍ଣଦାସଙ୍କ ଲଲାଟରେ ପରିସ୍ଫୁଟ ହେଲା ଏବଂ ନୂପୁର ଚିହ୍ନ ସ୍ପର୍ଶରେ ସେହି ତିଳକର ମଧ୍ୟଭାଗରେ ଗୋଟିଏ ବିନ୍ଦୁ ପ୍ରକାଶ ପାଇଲା । ତତ୍ପରେ ଶ୍ରୀ ଲଳିତା କହିଲେ "ତୁମ୍ଭେ ଏ ନୂପୁର ପାଇ ଆଜି ଶ୍ରୀ ଶ୍ୟାମାଙ୍କର ଅପାର ଆନନ୍ଦ ବିଧାନ କରିଅଛ, ଏଣୁ ଆଜିଠାରୁ ତୁମ୍ଭର ନାମ ଶ୍ୟାମାନନ୍ଦ ରହିଲା ।

ଏହା କହି ସେ ଅଦୃଶ୍ୟ ହେଲେ । ସେହି ନୂତନ ତିଳକ 'ଶ୍ୟାମାନନ୍ଦୀ' ନାମରେ ଖ୍ୟାତ । ଶ୍ରୀ ରାଧା ଶ୍ୟାମସୁନ୍ଦରଙ୍କ ମନ୍ଦିର ନିକଟସ୍ଥ ଏକସ୍ଥାନ ଅଦ୍ୟାପି ଶ୍ୟାମାନନ୍ଦଙ୍କ ନୂପୁର ପ୍ରାପ୍ତି ସ୍ଥାନ ବୋଲି ନିର୍ଦ୍ଦିଷ୍ଟ ଅଛି ।

କୃଷ୍ଣଦାସଙ୍କ ତିଳକ ଓ ନାମ ପରିବର୍ତ୍ତନ ସମ୍ବାଦରେ ତାଙ୍କ ଗୁରୁଙ୍କର କ୍ରୋଧ ଉଦ୍ରେକ ହେଲା ଏବଂ ସେ ତାଙ୍କୁ ପରୀକ୍ଷା କରିବା ପାଇଁ ଶ୍ରୀ ବୃନ୍ଦାବନକୁ ଆଗମନ କରି ସେଠାରେ ଏକ ମହତୀ ସଭାର ଆୟୋଜନ କଲେ । ସଭାରେ ମହାନ୍ତଗଣ କୃଷ୍ଣଦାସଙ୍କୁ ପଚାରିଲେ "ତୁମ୍ଭେ ବର୍ତ୍ତମାନ କାହାର ସେବକ ? କିଏ ତୁମ୍ଭକୁ ଏ ନୂତନ ନାମ ଓ ତିଳକ ପ୍ରଦାନ କରିଅଛନ୍ତି" ? ଶ୍ୟାମାନନ୍ଦ ବିନୟରେ କହିଲେ, "ଏ ଅଧମ ଶ୍ରୀପାଦ ଶ୍ରୀହୃଦୟ ଚୈତନ୍ୟଙ୍କର ଦାସ ନୁଦାସ। ସେ ସ୍ୱପ୍ନରେ ଦାସର ନାମ ଶ୍ୟାମାନନ୍ଦ ରଖି ଅଛନ୍ତି ।

ପ୍ରଶ୍ନ—ଏହାର ତୁମ୍ଭେ ପ୍ରମାଣ କରାଇ ପାରିବ ?

ଉତ୍ତର—ଶ୍ରୀ ଗୌରୀଦାସ ପଣ୍ଡିତ ଠାକୁର ପ୍ରଭୁପାଦ ଶ୍ରୀହୃଦୟ ଚୈତନ୍ୟଙ୍କ ସ୍ୱରୂପରେ ଆସି ମୋତେ କୃପାକରି ଏହି ନୂତନ ନାମ ଓ ନୂତନ ତିଳକ ପ୍ରଦାନ କରି ଅଛନ୍ତି । ଆପଣମାନେ ପରୀକ୍ଷା କରି ପାରନ୍ତି ।

ଏହା ଶୁଣି ଠାକୁର ଶ୍ରୀ ହୃଦୟ ଚୈତନ୍ୟ କୃଷ୍ଣଦାସଙ୍କର ଲଲାଟ ତିଳକ ଓ ବକ୍ଷସ୍ଥଳର ଶ୍ୟାମାନନ୍ଦ ନାମ ନିଜ କରରେ ସମ୍ପୂର୍ଣ୍ଣରୂପେ ଧୌତ କଲେ । ଶ୍ରୀମତୀଙ୍କ ଅପାର କରୁଣାରୁ ଦେଖୁଁ ଦେଖୁଁ ସେ ତିଳକ ଓ ନାମ ପୂର୍ବାପେକ୍ଷା ଉଜ୍ଜ୍ୱଳତର ରୂପେ ପ୍ରକାଶିତ ହେଲା । ଯେତେ ଥର ଧୋଇଲେ ତେତେ ଅଧିକ ଉଜ୍ଜ୍ୱଳ ଦେଖାଗଲା । ଏହା ଦେଖି ସମସ୍ତେ ବିସ୍ମିତ ହେଲେ ଓ ଗୁରୁଦେବ ଶିଷ୍ୟକୁ ଆଲିଙ୍ଗନ କଲେ ।

ଅନନ୍ତରେ ଶ୍ରୀପାଦ ଶ୍ରୀ ହୃଦୟ ଚୈତନ୍ୟ ଦ୍ୱାଦଶବନ ପରିକ୍ରମା ସମୟରେ ରାସମଣ୍ଡଳରେ ଶ୍ୟାମାନନ୍ଦଙ୍କୁ ଗୋପୀଭାବ ଅବଲମ୍ବନ କରିଥିବାର ଦେଖି କ୍ରୋଧରେ ତାଙ୍କ ପୃଷ୍ଠରେ ଏପରି ପ୍ରହାର କଲେ ଯେ ଶ୍ୟାମାନନ୍ଦଙ୍କ ଚର୍ମ ଫାଟି ରକ୍ତଧାର ବହିଗଲା । ସେ ଦିନ ରାତିରେ ଗୁରୁ ସ୍ୱପ୍ନରେ ଦେଖିଲେ ଶ୍ରୀ ଗୌରଚନ୍ଦ୍ରଙ୍କ ଉତ୍ତମାଙ୍ଗ କ୍ଷତାକ୍ତ ହୋଇଅଛି. କାରଣ ପଚାରି ବୁଝିଲେ ଯେ ଶ୍ୟାମାନନ୍ଦ ତାଙ୍କର ଅଙ୍ଗ।

ଏଣୁ ସେ ପ୍ରହାର ତାଙ୍କ ଅଙ୍ଗରେ ବାଜି ରକ୍ତ ନିର୍ଗତ ହେଲା ଓ ଉତ୍ତମାଙ୍ଗ କ୍ଷତାକ୍ତ ହେଲା । ଏହା ପାପର ପ୍ରାୟଶ୍ଚିତ୍ତ ସ୍ୱରୂପ ତାଙ୍କୁ ଦ୍ୱାଦଶ ଦିନ ବ୍ୟାପୀ ମହୋତ୍ସବ କରିବାର ଆଦେଶ ପାଇଲେ ।

ଶ୍ୟାମାନନ୍ଦ ସେ ମହୋତ୍ସବ ଭିକ୍ଷା ନେଇ ସୁଚାରୁରୂପେ ସମ୍ପନ୍ନ କରାଇଲେ । ଅଦ୍ୟାପି ଶ୍ରୀପାଟ ଗୋପୀବଲ୍ଲଭ ପୁରରେ ଉକ୍ତ ମହୋତ୍ସବ ସ୍ନାନ ପୂର୍ଣ୍ଣିମା ସମୟରେ ମହାସମାରୋହରେ ସମ୍ପାଦିତ ହେଉଅଛି ।

ଶେଷରେ ଶ୍ୟାମାନନ୍ଦ ଉତ୍କଳରେ ନାମ ପ୍ରଚାର ଓ ପାଷଣ୍ଡ-ମାନଙ୍କୁ ଉଦ୍ଧାର କରି ୧୫୫୬ ଶକାବ୍ଦ ଆଷାଢ଼ ମାସ ଦେବସ୍ନାନ ପୂର୍ଣ୍ଣିମା ପର କୃଷ୍ଣ ପ୍ରତିପଦରେ ଶ୍ରୀ ରାଧା କୃଷ୍ଣ ପାଦପଦ୍ମ ଧ୍ୟାନ ଓ ଶ୍ରୀ ରାଧାକୃଷ୍ଣଙ୍କ ସୁମଧୁର ନାମ ଶ୍ରବଣ କରୁଁ କରୁଁ ନିତ୍ୟ ଧାମକୁ ପ୍ରସ୍ଥାନ କଲେ ।

ଶ୍ୟାମାନନ୍ଦ ଜଣେ ବିଖ୍ୟାତ କବି ଓ ଗାୟକ ଥିଲେ । ଅନେକଗୁଡ଼ିଏ କୀର୍ତ୍ତନ ତାଙ୍କର ସୃଷ୍ଟି । ନିମ୍ନରେ ତାଙ୍କ ରଚିତ କୀର୍ତ୍ତନ ପ୍ରଦତ୍ତ ହେଲା ।

( କୀର୍ତ୍ତନ )

ଭଜ ଭାଇ ଶ୍ରୀ ଚୈତନ୍ୟ ପ୍ରଭୁ ନିତ୍ୟାନନ୍ଦ,
ଘୁଚିବେ ସକଳ ଜ୍ୱାଳା ପାଇବେ ଆନନ୍ଦ ।
ବଦନ ଭରିଣ ଭାଇ ବୋଲ ହରିବୋଲ,
ଆନନ୍ଦେ ବୈଷ୍ଣବଗଣ ଧରି ଦେବେ କୋଲ ।
ମନତ କରିଣ କହି ଶୁନ ସଜ୍ଜନା,
ବ୍ରଜେ ରାଧା-କୃଷ୍ଣଲୀଳା କରହ ଭାବନା ।
ଏମନ ଜନମ ଭାଇ ନ ହଇବେ ଆର,
ଶ୍ୟାମାନନ୍ଦ କହେ କେହ ନହେ ଆପନାର ।



## ଜୟଦେବ ।

ପୁରୀ ଜିଲ୍ଲାରେ ବିନ୍ଦୁବିଲ୍ୱ ନାମକ ଗ୍ରାମରେ ଜୟଦେବ ଜାତ ହୋଇଥିଲେ । ତାଙ୍କ ପିତାଙ୍କ ନାମ ଭୋଜଦେବ ଓ ମାତାଙ୍କ ନାମ ବାମା ଦେବୀ । ଶୈଶବାବସ୍ଥାରେ ଜୟଦେବ ପିତୃମାତୃହୀନ ହୋଇଥିଲେ । ନିତାନ୍ତ ଦରିଦ୍ର ପରିବାରରେ

ଜନ୍ମଗ୍ରହଣ କରିଥିବା ସେ ସଂସ୍କୃତରେ ଯଥେଷ୍ଟ ବ୍ୟୁତ୍ପତ୍ତି ଲାଭ କରିଥିଲେ । ବାଲ୍ୟକାଳରୁ ତାଙ୍କର ଜଗନ୍ନାଥଙ୍କଠାରେ ଅଚଳା ଭକ୍ତି ଥିଲା ।

ଦେବଶର୍ମା ନାମକ ଏକ ବ୍ରାହ୍ମଣଙ୍କର ସନ୍ତାନ ସନ୍ତତି ନ ହେବାରୁ ସେ ପ୍ରଭୁଙ୍କୁ ଅର୍ଥାତ୍ ଜଗନ୍ନାଥଙ୍କ ନିକଟରେ ଏହି ମାନସିକ କରିଥିଲେ ଯେ, ଯେବେ ପୁରୁଷୋତ୍ତମଙ୍କ କୃପାରୁ ତାଙ୍କର ସନ୍ତାନ ସନ୍ତତି ଜାତ ହେବ ତେବେ ସେ ପ୍ରଥମ ଗର୍ଭର ସନ୍ତାନକୁ ଜଗନ୍ନାଥଙ୍କ ସେବାରେ ନିୟୋଜିତ କରିବେ । ଏହି ଘଟଣାର କିଛିଦିନ ପରେ ତାଙ୍କର ପ୍ରଥମେ ଏକ କନ୍ୟା ଓ ପରେ ଏକ ପୁତ୍ର ଜାତ ହେଲା । ବ୍ରାହ୍ମଣ ଆପଣା ପୂର୍ବ ସତ୍ୟ ସ୍ମରଣ କରି ସେ କନ୍ୟାକୁ ନେଇ ଶ୍ରୀ ପୁରୀରେ ପହଞ୍ଚିଲେ । ଦେବଦର୍ଶନ ପରେ ସେ ଜଗନ୍ନାଥଙ୍କୁ ନିଜ ମନ କଥା କହିଲେ । ସେଦିନ ରାତ୍ରିରେ ଜଗନ୍ନାଥ ସ୍ୱପ୍ନରେ ସେ ବ୍ରାହ୍ମଣଙ୍କୁ ଆଦେଶ ଦେଲେ ଯେ, ସେ କନ୍ୟାକୁ ତାଙ୍କର ପରମ ଭକ୍ତ ଜୟଦେବଙ୍କୁ ପ୍ରଦାନ କଲେ ସେ ପରମ ତୁଷ୍ଟ ହେବେ । ଦେବଶର୍ମା ସ୍ୱପ୍ନାଦେଶ ଲାଭକରି ତହିଁଆରଦିନ ପ୍ରଭାତରେ ଜୟଦେବଙ୍କ ନିକଟରେ ଉପସ୍ଥିତ ହେଲେ । ସେତେବେଳେ ସେ ଏକ ପର୍ଣ୍ଣକୁଟୀରରେ ଦରିଦ୍ର ବେଶରେ ବାସ କରୁଥିଲେ । ଦେବଶର୍ମା ତାଙ୍କୁ ପ୍ରଭୁଙ୍କର ସ୍ୱପ୍ନାଦେଶ ଜଣାଇ ସେ କନ୍ୟା ଗ୍ରହଣ କରିବା ପାଇଁ ଅନୁରୋଧ କଲେ । ମାତ୍ର ଜୟଦେବ ଏସବୁ ବୃତ୍ତାନ୍ତ ସମ୍ପୂର୍ଣ୍ଣ ମିଥ୍ୟା ବୋଲି ମନେ କରି ଅସମ୍ମତ ହେଲେ । ଅଗତ୍ୟା ବ୍ରାହ୍ମଣ କନ୍ୟାକୁ କହିଲେ 'ମା' ଏହି ତୋର ପତି, ପତିର ଆଜ୍ଞା ପାଳନ ନାରୀର ପରମ ଧର୍ମ" । ଏହା କହି ସେ କନ୍ୟାକୁ ଛାଡ଼ି ଯିବାରୁ ଜୟଦେବ ସେ କନ୍ୟାକୁ ଯିବା ପାଇଁ କହିଲେ, ମାତ୍ର ସେ କହିଲେ "ପିତା ମୋତେ ଯାହାଙ୍କୁ ସମର୍ପଣ କରି ଦେଇ ଗଲେ ସେ ମୋର ପତି, ତାଙ୍କୁ ଛାଡ଼ି ମୁଁ କଦାପି ଯିବି ନାହିଁ" । ତହୁଁରେ ଜୟଦେବ ବାଧ୍ୟ ହୋଇ ଦେବଶର୍ମାଙ୍କ ଗୃହକୁ ଯାଇ ସାମାଜିକ ନିୟମାନୁସାରେ ସେ କନ୍ୟାକୁ ବିବାହ କଲେ । ତାଙ୍କର ନାମ ପଦ୍ମାବତୀ । ବିବାହ ପରେ ସେ ଦମ୍ପତି ଏକମନ ଏକପ୍ରାଣ ହୋଇ ଜଗନ୍ନାଥଙ୍କ ସେବାରେ ନିୟୋଜିତ ହେଲେ ।

ତହୁଁରେ ଜୟଦେବ ଗୀତଗୋବିନ୍ଦ ନାମକ ଏକ ଗୀତିକାବ୍ୟ ରଚନା କରି ସେହି ସବୁ ପ୍ରତିଦିନ ଜଗନ୍ନାଥଙ୍କ ମନ୍ଦିରରେ ନାଚି ନାଚି ଗାଇବାକୁ ଲାଗିଲେ । ଏଥିରେ ପ୍ରଭୁ ଏପରି ସନ୍ତୁଷ୍ଟ ହେଲେ ଯେ ସେଦିନଠାରୁ ସେ ନୃତ୍ୟ ଗୀତ ପ୍ରଭୁଙ୍କ ନିତିନିଅମ ସେବାରେ ପରିଣତ ହେଲା ।

ଗୀତଗୋବିନ୍ଦ ରଚନା ସମୟରେ ସ୍ୱାଧୀନଙ୍କ ମାନଭଞ୍ଜନ ଲେଖୁ ଲେଖୁ "ସ୍ମର ଗରଳଖଣ୍ଡନଂ ମମ ଶିରସି ମଣ୍ଡନଂ ଦେହି ପଦ ପଲ୍ଲବମୁଦାରଂ" ଏହି ଭାବ ମନରେ ଉଦିତ ହେଲା, ମାତ୍ର ସେ କୃଷ୍ଣଙ୍କର ଐଶ୍ୱର୍ଯ୍ୟକଥା ବିଷୟ ଚିନ୍ତାକରି ତାହା ଲିପିବଦ୍ଧ କରିବାକୁ ସଙ୍କୁଚିତ ହେଲେ ଏବଂ ଅନ୍ୟ କୌଣସି ଉତ୍କୃଷ୍ଟ ଭାବ ନ ପାଇ ସେ ପଦଟି ଅସମ୍ପୂର୍ଣ୍ଣ ରଖି ସ୍ନାନ କରିବାକୁ ଗଲେ । ଏଣେ ଶ୍ରୀକୃଷ୍ଣ ଜୟଦେବବେଶରେ ଆସି ପଦ୍ମାବତୀଙ୍କ ଠାରୁ ପୋଥି ଖେଦା ମାଗି ନେଇ ପାଦ ପୂରଣ କରି ଦେଇ ପୁଣି ସ୍ନାନ କରିବାକୁ ଗଲେ । କ୍ଷଣକ ପରେ ପ୍ରକୃତ ଜୟଦେବ ଆସି ଉପସ୍ଥିତ ହେଲେ ।

ପଦ୍ମାବତୀ ତାଙ୍କୁ ପୁଣି ଏଠାରୁ ସ୍ନାନ ସାରି ଆସିବାର ଦେଖି ଆଶ୍ଚର୍ଯ୍ୟାନ୍ୱିତ ହେଲେ ଏବଂ ପୋଥି ଲେଖା ପ୍ରଭୃତି କଥା କହିଲେ । ଜୟଦେବ ପୋଥି ଖେଦା ଦେଖି ରହସ୍ୟ ଭେଦ କରି ନ ପାରି ଚିନ୍ତାକୁଳ ହେଲେ । ପ୍ରଭୁ ସ୍ୱୟଂ ସ୍ୱପ୍ନ ଯୋଗେ ତାଙ୍କୁ ସମସ୍ତ କଥା କହି ତାଙ୍କର ଅଶାନ୍ତି ଦୂର କଲେ । ଗୀତଗୋବିନ୍ଦ ସମାପ୍ତି ପରେ ସେ ତାହା ଜଗନ୍ନାଥଙ୍କୁ ସମର୍ପଣ କରି ଧନ୍ୟ ହେଲେ ।

ଉତ୍କଳରାଜ ସେହି ଗୀତଗୋବିନ୍ଦର ଅନୁକରଣରେ ନିଜେ ଏକ କାବ୍ୟ ରଚନା କରି ରାଜ୍ୟରେ ଘୋଷଣା କଲେ ଯେ, ମଦ୍‌ରଚିତ ଗୀତଗୋବିନ୍ଦ ନ ଗାଇ ଯେ ଜୟଦେବଙ୍କ ଗୀତଗୋବିନ୍ଦ ଗାନ କରିବ ସେ ଦଣ୍ଡ ପାଇବ । ଯେବେ ଜୟଦେବ ସ୍ୱରଚିତ ଗୀତଗୋବିନ୍ଦ ଗାଉଥିବା ବେଳେ ରାଜା ନିଜେ ଶୁଣି ଆଦେଶ ଲଙ୍ଘନର କାରଣ ପଚାରିବାରୁ ଜୟଦେବ ତାଙ୍କର ଗୀତଗୋବିନ୍ଦ ଶୁଣି ଭଗବାନ୍ ପ୍ରୀତ ହୁଅନ୍ତି ବୋଲି କହିଲେ । ଏହା ଶୁଣି ରାଜା ଉଭୟ ଗୀତଗୋବିନ୍ଦକୁ ଜଗନ୍ନାଥଙ୍କ ସମ୍ମୁଖରେ ସ୍ଥାପନକରି କହିଲେ "ଏ ଦୁଇ ଖଣ୍ଡ ମଧ୍ୟରୁ ଯେଉଁ ଖଣ୍ଡ ଅଧିକତର ପ୍ରିୟ ତାହାର ଆସନ ଉପରେ ହେଉ" । ତହୁଁରେ ଦ୍ୱାର ରୁଦ୍ଧ ହେଲା କ୍ଷଣକ ପରେ ଦ୍ୱାର ନିଜେ ଫିଟିଗଲା ଏବଂ ରାଜା ପ୍ରଭୃତି ମନ୍ଦିର ଭିତରେ ପଶି ଦେଖିଲେ ଜୟଦେବଙ୍କ ଗୀତଗୋବିନ୍ଦ ପ୍ରଭୁଙ୍କ ହୃଦ-

ଶୂନ୍ୟଘରେ ହୁଏ ଭୌତିକ ଉତ୍ପାତ, ଶୂନ୍ୟମନେ ଖୋଳେ ସୟତାନ ଗାତ ।

ନ୍ତରେ ସ୍ଥାନ ପାଇଛନ୍ତି ଏବଂ ରାଜାଙ୍କ ଗୀତଗୋବିନ୍ଦ ପଢ଼ୁଥିଲେ ନିଷେଧ କରି ଦେଉଛନ୍ତି । ଏଥିରେ ରାଜା ନିତାନ୍ତ ଦୁଃଖିତ ହେବାରୁ ପ୍ରଭୁ ସ୍ୱପ୍ନରେ ରାଜାଙ୍କୁ ଦର୍ଶନ ଦେଇ ପ୍ରବୋଧ ଦେଲେ ।

ଥରେ ରାଣୀ ପଦ୍ମାବତୀଙ୍କୁ ପରୀକ୍ଷା କରିବାପାଇଁ ମନରେ ଚିନ୍ତା କରି ମିଥ୍ୟାରେ ତାଙ୍କୁ ଜୟଦେବଙ୍କ ମୃତ୍ୟୁ ସମ୍ବାଦ ଦେଇଥିଲେ ଏବଂ ପଦ୍ମାବତୀ ଏହା ଶୁଣିବା ମାତ୍ରେ ମୂର୍ଚ୍ଛିତା ହେଲେ, ସେ ମୂର୍ଚ୍ଛା ମହାନିଦ୍ରାରେ ପରିଣତ ହେଲା । ଏହା ଦେଖି ରାଣୀ ନିତାନ୍ତ ଅଧୀରା ହେଲେ । ଏଥିରେ ଜୟଦେବ ଆସି ନାନା ବାଦ୍ୟ ବଜାଇ ମାନଭଞ୍ଜନର "ପ୍ରିୟେ ଚାରୁଶୀଳେ, ମୁଞ୍ଚ ମୟିମାନମନିଦାନଂ" ଗୀତଟି ଗାଇଲେ । କ୍ରମେ କ୍ରମେ ସେ ପୁନର୍ଜୀବିତା ହେଲେ ।

ଥରେ ଜୟଦେବ ଗ୍ରାମାନ୍ତରରୁ ଧନରତ୍ନାଦି ନେଇ ଆସୁଥିବା ସମୟରେ ଦସ୍ୟୁଙ୍କ କବଳରେ ପଡ଼ିଲେ । ସେମାନେ ତାଙ୍କର ଧନରତ୍ନାଦି ଅପହରଣ ପୂର୍ବକ ହସ୍ତପଦାଦି ଛେଦନ କରି ବନ ମଧ୍ୟରେ ପକାଇ ଦେଇ ଚାଲିଗଲେ । ସୌଭାଗ୍ୟବଶତଃ ଉତ୍କଳରାଜ ସେଦିନ ମୃଗୟାକୁ ଯାଇ ଜୟଦେବଙ୍କର ଏ ଶୋଚନୀୟ ଦୁର୍ଦ୍ଦଶା ଦେଖି ଶିବିକାରେ ରାଜପୁରକୁ ଆଣାଇଲେ ଓ ଚିକିତ୍ସାର ସୁବନ୍ଦୋବସ୍ତ କଲେ । ଫଳରେ ସେ ଅଳ୍ପଦିନରେ ସୁସ୍ଥ ହେଲେ, ମାତ୍ର ହାତ ଗୋଡ଼ ଖଣ୍ଡିଆ ରହିଲା । କିଛି ଦିନପରେ ସେହି ଦସ୍ୟୁମାନେ ଛଦ୍ମ ସନ୍ନ୍ୟାସୀ ବେଶରେ ତାଙ୍କ ଗୃହରେ ଉପସ୍ଥିତ ହେଲେ । ଜୟଦେବ ସେମାନଙ୍କୁ ଅତିଥିରୂପରେ ପୂଜାକଲେ ଓ ରାଜାଙ୍କ ନିକଟରେ ସେମାନଙ୍କର ସଦ୍‌ଗୁଣାବଳୀ ବର୍ଣ୍ଣନା କରି ନାନା ଉପହାର ପ୍ରଦାନ କରାଇଲେ । ଦୁର୍ଗମ ବନପଥ ଅତିକ୍ରମ କରାଇ ଦେବାପାଇଁ କେତେଜଣ ପାଇକ ମଧ୍ୟ ସେମାନଙ୍କ ସଙ୍ଗରେ ଦେଲେ । ପଥରେ ଦସ୍ୟୁମାନେ ପାଇକଙ୍କୁ କହିଲେ, ଯେଉଁ ବ୍ରାହ୍ମଣ ଆମ୍ଭଙ୍କୁ ଏ ଧନ ରତ୍ନାଦି ଦିଅଇଲେ ସେ ଜଣେ ଚୋର, ଦିନେ ସେ ଚୋରିକରି ପ୍ରାଣଦଣ୍ଡ ପାଇଥିଲେ, ଆମ୍ଭେମାନେ ତାଙ୍କର ଜୀବନ ରକ୍ଷାକରି ଥିଲୁଁ, ମାତ୍ର ଘାତକମାନେ ତାଙ୍କର ହସ୍ତ ପଦାଦି ଛେଦନ କରି ନେଲେ । ଏଣୁ ସେ ପୂର୍ବ ଉପକାର ସ୍ମରଣ କରି ଝଣ୍ଡା ଭକ୍ତି ଦେଖାଇ ଧନରତ୍ନାଦି ଦିଅଇଲେ । ଏହା କହିବା ମାତ୍ରେ ସେମାନଙ୍କ ମସ୍ତକରେ ବଜ୍ରପାତ ହେଲା । ପାଇକମାନେ ରାଜାଙ୍କ ନିକଟରେ ଏ ବିଷୟ ଜଣାଇଲେ । ଜୟଦେବ ସେମାନଙ୍କ ମୃତ୍ୟୁ ସମ୍ବାଦ ଶୁଣି ଛିନ୍ନ ହସ୍ତ ପାଦ କମ୍ପିତ କାନ୍ଦିଲେ । ଫଳରେ ସେମାନ ପୂର୍ଣ୍ଣାଙ୍ଗ ହେଲା ।

ଜୟଦେବ ପ୍ରତିଦିନ ଗଙ୍ଗାସ୍ନାନ କରନ୍ତି । ବାର୍ଦ୍ଧକ୍ୟ ଆଗମନ ହେବାରୁ ସେ ଯିବାକୁ ଅକ୍ଷମ ହେବାର ଜାଣି ଗଙ୍ଗା ଦେବୀ ସ୍ୱପ୍ନରେ ତାଙ୍କୁ କହିଲେ "କାଲିଠାରୁ ମୁଁ ତୁମ୍ଭ ପୁଷ୍କରିଣୀରେ ଆବିର୍ଭୂତ ହେବି । ସେଥିର ଶକୁନ ସ୍ୱରୂପ ପୋଖରୀରେ ଏକ ପଦ୍ମ ପ୍ରସ୍ଫୁଟିତ ହେବ । ତୁମ୍ଭଙ୍କ ଆଉ ଶ୍ରମସ୍ୱୀକାର କରି ଏତେ ଦୂର ଆସିବାକୁ ପଡ଼ିବ ନାହିଁ, ସେହିଠାରେ ସ୍ନାନ କରିବ ।" ରାଜା ପ୍ରଭୃତି ଏହି ସ୍ୱପ୍ନ ମଧ୍ୟ ଦେଖିଲେ । ପରଦିନ ସ୍ୱପ୍ନଦୃଷ୍ଟ ବୃତ୍ତାନ୍ତ ଅବିକଳ ଘଟିଲା । ଜୟଦେବ ସେଥିରେ ସପ୍ତଦିନ ସ୍ନାନ କରି ଦିବ୍ୟ ଦେହ ଧାରଣ କଲେ ।

ଜୟଦେବ ପତ୍ନୀ ପଦ୍ମାବତୀଙ୍କ ସହ ଶେଷ ଜୀବନ ବୃନ୍ଦାବନରେ କଟାଇ ସେଠାରେ ଅପ୍ରକଟ ହୋଇଥିଲେ । ତାଙ୍କର କୁଳ ଦେବତା ରାଧାମାଧବ ତାଙ୍କ ପାଖରେ ଥିଲେ । ଜୟପୁର ରାଜା ଜୟଦେବଙ୍କ ତିରୋଧାନ ପରେ ସେ ଦେବବିଗ୍ରହଙ୍କୁ ନିଜରାଜ୍ୟକୁ ଆଣାଇ ଦିବ୍ୟ ମନ୍ଦିରରେ ରଖାଇଲେ ।



## ମୀରା ବାଈ ।

ମୀରା ରାଜସ୍ଥାନର ରାଠୋର କୁଳରେ ଜାତ ହୋଇଥିଲେ । ତାଙ୍କର ରୂପ ଗୁଣ ଅତୁଳନୀୟ ଓ କଣ୍ଠସ୍ୱର ସୁମଧୁର ଥିଲା । ସେ ନୃତ୍ୟଗୀତରେ ବିଶେଷ ଦକ୍ଷତା ଲାଭ କରିଥିଲେ । ବାଲ୍ୟକାଳରୁ ଶ୍ରୀକୃଷ୍ଣଙ୍କଠାରେ ତାଙ୍କର ଅଚଳା ଭକ୍ତି । ମିବାରାଧିପତି ମହାରାଣା କୁମ୍ଭ ତାହାଙ୍କ ଅନୁପମ ସୌନ୍ଦର୍ଯ୍ୟ ପ୍ରଭୃତିର ଖ୍ୟାତିରେ ଆକୃଷ୍ଟ ହୋଇ ଛଦ୍ମବେଶରେ ମୀରାଙ୍କ ପିତାଳୟକୁ ଗମନ କଲେ ଏବଂ ସେଠାରେ ନିଜର ଚକ୍ଷୁ କର୍ଣ୍ଣର ବିବାଦ ମୀମାଂସା କରି ତାଙ୍କୁ ଆପଣାର ଅଙ୍କଲକ୍ଷ୍ମୀ କରିବାପାଇଁ ଲାଳାୟିତ ହେଲେ । ଯଥା ସମୟରେ ଶୁଭ ପରିଣୟ କ୍ରିୟା ସମ୍ପାଦିତ ହେଲା ।

ମୀରା ଶ୍ୱଶୁରକୁଳସ୍ଥ ଅନ୍ୟ ସମସ୍ତଙ୍କର ସ୍ନେହାଦରର ପାତ୍ରୀ ହେଲେ । ମହାରାଣା ତାଙ୍କୁ ଏପରି ଭଲ ପାଉଥିଲେ ଯେ, ସେ ତାଙ୍କର କ୍ଷଣିକ ବିରହ ସହିପାରୁ ନ ଥିଲେ । ମୀରା ଅନ୍ତଃପୁରରେ 'ରଣଛୋଡ଼' ଦେବଙ୍କୁ ପୂଜା କରିବା ପାଇଁ ଅନୁମତି ପାଇଲେ ଏବଂ ମହାରାଣାଙ୍କ ଆଦେଶରେ ବୈଷ୍ଣବମାନେ ମଧ୍ୟ ଅବାଧରେ ସେଠାକୁ ଯାଇ ନାମ ସଂକୀର୍ତ୍ତନ କରୁଥିଲେ । ମୀରା ସେମାନଙ୍କ ସହ ଯୋଗଦାନ କରି କୃତାର୍ଥ ହେଉଥିଲେ । ତାଙ୍କର ଦେବପୂଜା ଓ ଅତିଥିସେବା ଦିନକୁ ଦିନ ବୃଦ୍ଧିଲାଭ କଲା । ପରେ ଏପରି ହେଲା ଯେ, ମୀରା ସ୍ୱାମୀଙ୍କ କଥା ଏକାବେଳକେ ବିସ୍ମୃତ ହେଲେ । ମହାରାଣା ମନେ କରିଥିଲେ ଯେ, ତାଙ୍କର ଦାମ୍ପତ୍ୟ ଜୀବନ ମଧୁମୟ ହେବ, ମାତ୍ର ଫଳତଃ ସେ ଆଶା ମରୁ-ମରୀଚିକାରେ ପରିଣତ ହେଲା । ଏଣୁ ସେ ଅଶାନ୍ତି ଅନଳରେ ଦଗ୍ଧୀଭୂତ ହୋଇ ମୀରାଙ୍କ ଠାରୁ ଅନୁମତି ନେଇ ଦ୍ୱିତୀୟବାର ଦାରପରିଗ୍ରହ କଲେ । ପୁଣି ସେଠାରେ ସମସ୍ତେ ଶିବଭକ୍ତ । ରାଜମାତା ମୀରାଙ୍କୁ କୃଷ୍ଣ ଉପାସନା ତ୍ୟାଗ କରିବାପାଇଁ ଉପଦେଶ ଦେଲେ, କିନ୍ତୁ ମୀରାଙ୍କ ହୃଦୟ କୃଷ୍ଣମୟ । ସେ ତାହା ତ୍ୟାଗ କରିପାରିଲେ ନାହିଁ, ଏଣୁ ରାଜମାତାଙ୍କ ସହିତ ତାଙ୍କର ମତଭେଦ ହେଲା । ମୀରା ସର୍ବସାଧାରଣଙ୍କ ସହିତ ମନ୍ଦିରମଧ୍ୟେ କୀର୍ତ୍ତନ କରୁଥିଲେ ବୋଲି ରାଜ୍ୟରେ ତାଙ୍କର ଅଖ୍ୟାତି ରଟନା ହେଲା । ସେ ଅଶେଷ ଗଞ୍ଜନା ସହିବାକୁ ବାଧ୍ୟ ହେଲେ । ଏହିସବୁ କାରଣରୁ ମହାରାଣା ତାଙ୍କୁ ମିବାର ତ୍ୟାଗ କରିବାପାଇଁ ଅନୁମତି ଦେଲେ । ସେ ଅତୁଳ ଐଶ୍ୱର୍ଯ୍ୟର ଅଧିକାରିଣୀ ହୋଇ ପାର୍ଥିବ ବିଭବକୁ ତୁଚ୍ଛ ମଣୁଥିଲେ ଏବଂ ରାଜରାଣୀ ହୋଇ ସାମାନ୍ୟ ସନ୍ନ୍ୟାସିନୀରୂପେ ଜୀବନ ଯାପନ କରୁଥିଲେ । ମୀରା ସ୍ୱାମୀଙ୍କ ଆଦେଶ ଶିରୋଧାର୍ଯ୍ୟ କରି ଅମ୍ଳାନବଦନରେ ଯଥାସର୍ବସ୍ୱ ପରିତ୍ୟାଗ ପୂର୍ବକ ବୃନ୍ଦାବନ ପଥରେ ପଥିକା ହେଲେ । ପିଞ୍ଜରାବଦ୍ଧା ସାରିକା ଏବେ ମୁକ୍ତିଲାଭ କଲା । ତାଙ୍କର ଗନ୍ତବ୍ୟ ମାର୍ଗ କୁସୁମମୟ ହେଲା । ସେ ମଧୁର କଣ୍ଠରେ ମଧୁମୟ ହରିନାମ ଗାୟନ କରି ରାଜମାର୍ଗରେ ଗମନ କରିବା ସମୟରେ ଅନେକେ ତାଙ୍କର ସହଯାତ୍ରୀ ହେଲେ । ଧର୍ମରେ ଅଟଳ ବିଶ୍ୱାସ ଓ ଭକ୍ତିରେ ଅଚଳ ଥିବା ହେତୁ ସେ ସାମାନ୍ୟ ଭିଖାରୁଣୀ ବେଶ ଧାରଣ କରି ସୁଦ୍ଧା ନିଜକୁ ରାଜରାଣୀ ଠାରୁ ଅଧିକ ସ୍ୱାଚ୍ଛନ୍ଦ୍ୟ ମନେ କଲେ ।

ବୃନ୍ଦାବନବାସୀ ତାଙ୍କ ଭକ୍ତି ଦେଖି ମୁଗ୍ଧ ହେଲେ । ଦିନକୁ ଦିନ ତାଙ୍କର ସୁଖ୍ୟାତି ବଢ଼ିବାକୁ ଲାଗିଲା । କ୍ରମେ ଏହା ମହାରାଣାଙ୍କ କର୍ଣ୍ଣଗୋଚର ହେଲା । ସେ ତାଙ୍କୁ ଫେରାଇ ଆଣିବାକୁ ବୃନ୍ଦାବନ ଗଲେ, ମାତ୍ର ମୀରା ସ୍ୱାମୀଙ୍କ ପ୍ରସ୍ତାବରେ ସମ୍ମତ ହେଲେନାହିଁ । ଯେଉଁ ହୃଦୟ ଧର୍ମର ବିମଳ ଆନନ୍ଦ ଉପଭୋଗ କରିଛି ପାଗଳ ସେଠାରେ କି ଅକିଞ୍ଚିତ୍କର ସାଂସାରିକ ସୁଖଭୋଗ ସ୍ଥାନ ପାଇ ପାରିବ ? ସେ କେବଳ ପତିଙ୍କ ଆଜ୍ଞା ଅବଜ୍ଞା କରି ନ ପାରି ସମୟ ସମୟରେ ମିବାରକୁ ଯିବାପାଇଁ ପ୍ରତିଶ୍ରୁତ ହେଲେ, ଏବଂ ତଦନୁଯାୟୀ କାର୍ଯ୍ୟ କଲେ ।

ମୀରା ଭାରତର ନାନାତୀର୍ଥ ପରିଭ୍ରମଣ କରି ଶେଷରେ ଦ୍ୱାରକାରେ ଉପସ୍ଥିତ ହେଲେ, ଏବଂ ପ୍ରବାଦ ଅଛି, ସେଠାରେ ଅନ୍ତର୍ହିତ ହେଲେ ।

ମୀରା ମିବାରରେ ଥିବା ସମୟରେ ଧର୍ମଶାଳା ସ୍ଥାପନ କରି ଦୁଃଖୀ ଓ ଅନାଥଙ୍କର ଆଶ୍ରୟସ୍ଥଳ ଥିଲେ ଏବଂ ବୃନ୍ଦାବନରେ ଅନେକଙ୍କର ଜ୍ଞାନଚକ୍ଷୁ ଫିଟାଇଥିଲେ । ମିବାରରେ ଅବରୁଦ୍ଧ ହୋଇଥିବା ସମୟରେ ତାଙ୍କର କବିତ୍ୱଶକ୍ତି ବିକଶିତ ହୋଇଥିଲା । ସେ ନିଜ ମନକଥା ଗୀତାକାରରେ ଲେଖୁଥିଲେ । କାଳକ୍ରମେ ସେମାନ ବୈଷ୍ଣବମାନଙ୍କର କଣ୍ଠାଭରଣ ହେଲା । ତାଙ୍କର ଯତ୍ନରେ ମହାରାଣା କୁମ୍ଭ ପଦ୍ୟ ରଚନା କରି ପାରିଥିଲେ । ଅଦ୍ୟାବଧି ମୀରାଙ୍କ ରଚିତ ଗୀତାବଳୀ ଭାରତର ନାନାପ୍ରଦେଶରେ ସମାଦର ଲାଭ କରୁଅଛି ।



# ଜଗନ୍ନାଥ ଦାସ ।

ସୂର୍ଯ୍ୟବଂଶରେ ପ୍ରଥମ ରାଜା ପୁଣ୍ୟଶ୍ଳୋକ କପିଳେନ୍ଦ୍ରଦେବ ପୁରୁଷୋତ୍ତମ କ୍ଷେତ୍ରର ପଶ୍ଚିମରେ ପ୍ରାୟ ୩ କୋଶ ଦୂରରେ କପିଳେଶ୍ୱର ପୁର ନାମକ ଗୋଟିଏ ଶାସନ ସ୍ଥାପନ କରିଥିଲେ । ସେହି ଶାସନର ପ୍ରଥମାଂଶରେ କୌଶିକ ଗୋତ୍ରୀୟ ଭଗବାନ ଦାସଙ୍କର ବାସ । ସେ ଧର୍ମନିଷ୍ଠ, ସଚ୍ଚରିତ୍ର, ସରଳ ଓ ପ୍ରଧାନ ଭକ୍ତ ଥିଲେ । ତାଙ୍କର ସଦ୍ଗୁଣ ଦେଖି ତତ୍କାଳୀନ ମହାରାଜା ଶ୍ରୀ ପୁରୁଷୋତ୍ତମ ଦେବ ତାଙ୍କୁ ପୁରାଣପଣ୍ଡା ଉପାଧି ଦାନ କରିଥିଲେ ଓ କେତେକ ଜମି ପୁରସ୍କାର ସ୍ୱରୂପ ଦେଇ ଥିବାରୁ ତଦ୍ୱାରା ସେ ସୁଖରେ ଚଳୁଥିଲେ । ତାଙ୍କ ସ୍ତ୍ରୀଙ୍କ ନାମ ପଦ୍ମାବତୀ । ସେ ସୁଶୀଳା ଓ ପତିବ୍ରତା । ସେ ତାଙ୍କ ସ୍ୱାମୀଙ୍କୁ ପ୍ରତ୍ୟେକ ଧର୍ମକାର୍ଯ୍ୟରେ ସାହାଯ୍ୟ କରୁଥିଲେ । ପତିପରାୟଣା ପଦ୍ମାବତୀଙ୍କ ଗର୍ଭରୁ ୧୦୧୨ ଶକାବ୍ଦ (୧୪୯୦ ଖ୍ରୀ) ଭାଦ୍ରମାସ ଶୁକ୍ଳପକ୍ଷ ରାଧା ଜନ୍ମାଷ୍ଟମୀ ବୁଧବାର ଦିନ ମଧ୍ୟାହ୍ନ ସମୟରେ ଜଗନ୍ନାଥ ଦାସ ଜନ୍ମ ପରିଗ୍ରହ କରିଥିଲେ । ଲୋକମାନେ ତାଙ୍କ ଦେହରେ ମହାପୁରୁଷ ଲକ୍ଷଣ ଓ ଲୋକୋତ୍ତର ଲାବଣ୍ୟ ଦେଖି ଭାବିଲେ ଯେ, ଏହା ପିତାମାତାଙ୍କର ତପସ୍ୟାର ଓ ଈଶ୍ୱର ଭକ୍ତିର ଫଳ ଅଟେ । ଚତୁର୍ଥ ବର୍ଷରେ ଏହାଙ୍କର ଚୂଡ଼ାକର୍ମ କର୍ଣ୍ଣବେଧାଦି ସାଙ୍ଗ ହୋଇଥିଲା । ପଞ୍ଚମ ବର୍ଷ ବୟସରେ ଗ୍ରାମ ପାଠଶାଳାରେ ବର୍ଣ୍ଣଶିକ୍ଷା ଓ ଅଙ୍କ ଆଦି ଶିଖିଲେ । ତତ୍ପରେ ପିତାଙ୍କ ନିକଟରେ ଅମର କୋଷ, ଅଭିଧାନ ଓ କଳାପ, ବର୍ଦ୍ଧମାନ ନାମକ ଦୁଇଟି ବ୍ୟାକରଣ ସମ୍ପୂର୍ଣ୍ଣ କଣ୍ଠସ୍ଥ କରି ବ୍ୟୁତ୍ପନ୍ନ ହେଲେ । ନିକଟବର୍ତ୍ତୀ ବ୍ରାହ୍ମଣ ଶାସନକୁ ପ୍ରତିଦିନ ଯାଇ ଯଜୁର୍ବେଦ ଓ ସାମବେଦ ସଂହିତାମାନ ଅଧ୍ୟୟନ ଓ କଣ୍ଠସ୍ଥ କରିଥିଲେ । ନ୍ୟାୟ, ବେଦାନ୍ତ, ଦର୍ଶନ ଶାସ୍ତ୍ର, ମହାଭାରତ, ରାମାୟଣ ଧର୍ମଶାସ୍ତ୍ର ଏବଂ କାବ୍ୟ ନାଟକାଦି ପଢ଼ି ସାରି ସର୍ବ ଶେଷରେ ଶ୍ରୀମଦ୍ ଭାଗବତ ଅଧ୍ୟୟନ କଲେ । ଅଷ୍ଟାଦଶ ବର୍ଷ ବୟସରେ ସେ ସମସ୍ତ ଶାସ୍ତ୍ରରେ ପ୍ରବୀଣ ହେଲେ । ତାଙ୍କର ଖ୍ୟାତି ଶୁଣି ପଣ୍ଡିତମାନେ ତାଙ୍କୁ ଆଦର କରିବାକୁ ଲାଗିଲେ । ବହୁତ ଲୋକଙ୍କୁ ଶ୍ରୀକ୍ଷେତ୍ର ଯିବାର ଦେଖି ଓ ଶ୍ରୀ ଜଗନ୍ନାଥଙ୍କର ମହିମା ଲୋକମୁଖରୁ ଶୁଣି ତାଙ୍କ ମନ ସେ ଆଡ଼କୁ ଆକୃଷ୍ଟ ହେଲା । ସେ ଲୋକମାନଙ୍କ ସାଙ୍ଗରେ ଶ୍ରୀ କ୍ଷେତ୍ରକୁ ଯାଇ ଜଗନ୍ନାଥ ଦର୍ଶନ କରୁଥିଲେ । ଶ୍ରୀ ମନ୍ଦିରର ଦକ୍ଷିଣ ପଟରେ ବଟଗଣେଶଙ୍କ ନିକଟରେ ପୁରାଣ ପାଠର ସ୍ଥାନ ନିର୍ଦ୍ଦିଷ୍ଟ ଥିଲା । ପୁରାଣ ଶୁଣିବାପାଇଁ ସେଠାରେ ବହୁତ ଲୋକ ସମବେତ ହେଉଥିଲେ । ବର୍ତ୍ତମାନ ସୁଦ୍ଧା ବଟଅବକାଶଙ୍କ ମଠରେ ପୁରାଣ ପାଠର ବ୍ୟବସ୍ଥା ଅଛି ଓ ପୌରାଣିକମାନଙ୍କ ପାଇଁ ରାଜଦତ୍ତ ବୃତ୍ତି ଖଞ୍ଜା ହୋଇଅଛି । ସେଠାରେ ଜଗନ୍ନାଥ ଦାସ ଭାଗବତ ଚର୍ଚ୍ଚାରେ ରତ ହେଲେ । ୧୫୦୯ ଖ୍ରୀଷ୍ଟାବ୍ଦରେ ଶ୍ରୀ ଚୈତନ୍ୟ ଦେବ ସନ୍ନ୍ୟାସ ଗ୍ରହଣ ପୂର୍ବକ ନିତ୍ୟ ବୃନ୍ଦାବନ ନୀଳାଚଳ ଧାମରେ ଶ୍ରୀ ଜଗନ୍ନାଥ ଦେବଙ୍କୁ ଦର୍ଶନ କରିବା ଲାଗି ଉପସ୍ଥିତ ହେଲେ । ସେତେବେଳକୁ ଜଗନ୍ନାଥଙ୍କର ୧୯ ଶ ବର୍ଷ ହୋଇଥିଲା । ଶ୍ରୀ ଚୈତନ୍ୟ ଜଗନ୍ନାଥ ଦର୍ଶନ କରି ସାରି ବଟମୂଳରେ ସନ୍ନିହିତ ଶ୍ରୀ ଜଗନ୍ନାଥ ଦାସଙ୍କୁ ଦେଖିଲେ ଓ ପରସ୍ପର ଦେହସ୍ପର୍ଶରେ ପ୍ରେମାଲିଙ୍ଗନ କଲେ । ଉଭୟ ପ୍ରେମାଶ୍ରୁ ବର୍ଷଣ କଲେ ଓ ଭାବୋନ୍ମତ୍ତ ହେଲେ । ଉଭୟଙ୍କର ଆଗରୁ କେବେ ସାକ୍ଷାତ ହୋଇ ନ ଥିଲା କିମ୍ବା ପରିଚୟ ନ ଥିଲା, କିନ୍ତୁ ସେମାନଙ୍କର ହୃଦୟସ୍ଥ ହରିପ୍ରେମ ଉଭୟଙ୍କୁ ମିଳନ କରାଇଦେଲା । ଏଥି ଉତ୍ତାରୁ ଅନେକ ଦିନ ପର୍ଯ୍ୟନ୍ତ ଉଭୟ ଏକତ୍ର ବାସ କଲେ । ଶ୍ରୀ ଚୈତନ୍ୟ ନିଜର ଅନୁଚରମାନଙ୍କୁ ଡାକି କହିଲେ "ବ୍ରହ୍ମ ସର୍ବ ଭୂତରେ ପୂରି ରହି ଅଛନ୍ତି । ମୁଁ ଶ୍ରୀ ଜଗନ୍ନାଥ ଦେବଙ୍କୁ ଯେପରି ଭୟ ଓ ଭକ୍ତି କରେ, ସର୍ବଦା ମୋର ସେହିଭାବ । କାହିଁକିନା ଦାସେ ତାଙ୍କର (ଶ୍ରୀ ଜଗନ୍ନାଥ) ସଙ୍ଗୀ । ଦାସଙ୍କର ପାଦପଦ୍ମ ମହାପ୍ରେମର ଆକର । ମୁଁ ତାହା ନିଷ୍କାମ ଭାବରେ ହୃଦୟରେ ଧରୁଥିବି" । ଏହା କହି ସେ ତାଙ୍କୁ ପୁନଃ ପୁନଃ ସମ୍ମାନ କଲେ । ତାଙ୍କର ଶିଷ୍ୟମାନେ ମଧ୍ୟ ତାଙ୍କୁ ଅନୁସରଣ କଲେ । ଏହିପରି ପ୍ରତିଦିନ ଶ୍ରୀ ଚୈତନ୍ୟ ଜଗନ୍ନାଥ ଦେବଙ୍କୁ ଦର୍ଶନ କରି ସାରି ବଟଅବକାଶ ମଠରେ ବସି ତାଙ୍କ ସଙ୍ଗରେ ପୁରାଣ ଚର୍ଚ୍ଚାକରି ତାଙ୍କର ଅଗାଧ ପାଣ୍ଡିତ୍ୟର ଓ ଧର୍ମ ଭାବର ପରିଚୟ ପାଇଥିଲେ । ଏହାଦେଖି ଗୌଡ଼ୀୟ ବୈଷ୍ଣବମାନେ ଈର୍ଷାନ୍ୱିତ ହୋଇ ଶ୍ରୀ ଚୈତନ୍ୟଙ୍କୁ କହିଲେ "ଜଗନ୍ନାଥ ବୈଷ୍ଣବ ଦୀକ୍ଷା ଗ୍ରହଣ କରି ନାହାନ୍ତି, ତେଣୁ ତାଙ୍କର ଅଙ୍ଗ ସ୍ପର୍ଶ କରିବା ବୈଷ୍ଣବ ମତରେ ଶାସ୍ତ୍ର-



ଯାଚକଠାରୁ ହୀନତା ନାହିଁ, ଦାନଦାତାଠାରୁ ଉଚ୍ଚତା କାହିଁ ?

ନଷିବ" । ଚୈତନ୍ୟ ଉତ୍ତର ଦେଲେ "ଏହା ଠିକ ନୁହେଁ । ବ୍ରାହ୍ମଣର ଅଙ୍ଗ ଭକ୍ତିମୟ, ବ୍ରାହ୍ମଣ ଅଙ୍ଗରେ ଶ୍ରୀକୃଷ୍ଣ ବାସ କରନ୍ତି । ସୁତରାଂ ଶ୍ରୀକୃଷ୍ଣ ଓ ବ୍ରାହ୍ମଣ ମଧ୍ୟରେ ଭିନ୍ନଭିନ୍ନ କରିବା ଉଚିତ ନୁହେଁ । ଉପଦିଷ୍ଟ ହୋଇ ନ ଥିଲେ ମଧ୍ୟ ସେ ଭକ୍ତିମୟ ଶରୀର" । କାରଣମାନ ଜଗନ୍ନାଥ ଦାସ ଯେତେବେଳେ ଏହା ଶୁଣିଲେ ତାଙ୍କ ହୃଦୟ ଷଦାଗ୍ରହଣ ନିମିତ୍ତ ଅତ୍ୟନ୍ତ ବ୍ୟାକୁଳ ହୋଇ ଉଠିଲା । ସେ ଅତି ଅଗ୍ରହରେ ଦୁଇଟି ଶ୍ରେଷ୍ଠ ହାଣ୍ଡି ମହାପ୍ରସାଦ ଧରି କାଶୀ ମିଶ୍ରଙ୍କ ଘରେ ଉପସ୍ଥିତ ହେଲେ । ସେତେବେଳେ ଶ୍ରୀ ଚୈତନ୍ୟଦେବ ସେଠାରେ ଅବସ୍ଥାନ କରୁଥିଲେ । ଶ୍ରୀ ଚୈତନ୍ୟଦେବ ସମୁଦ୍ର ସ୍ନାନ ସାରି ନିଜ ପ୍ରକୋଷ୍ଠରେ ଉପସ୍ଥିତ ହେଲା ମାତ୍ରେ ଦାସେ ହସ୍ତ ପ୍ରକ୍ଷାଳନ ପୂର୍ବକ ଯୁକ୍ତକରରେ ତାହାଙ୍କୁ ନମସ୍କାର କଲେ । ଶ୍ରୀଚୈତନ୍ୟ ମହାଆମୋଦରେ ତାହାଙ୍କୁ କହିଲେ "ପୂର୍ଣ୍ଣଭକ୍ତିମୟ ଦାସେ ଆପଣେ, ଆସିବା ହେଉନ୍ତୁ" । ଦାସେ ଯୋଡ଼ହସ୍ତରେ ବିନୟପୂର୍ବ ସହିତ କହିଲେ "ଆଜ୍ଞା, ମୁଁ ଅନୁପଦିଷ୍ଟ, ମୋତେ ସ୍ପର୍ଶ କରନ୍ତୁ ନାହିଁ । ଦୟାକରି ମୋତେ ଦୀକ୍ଷା ପ୍ରଦାନ କରନ୍ତୁ" ଏହା ଶୁଣି ଚୈତନ୍ୟଦେବ ବଳରାମ ଦାସଙ୍କ ଅଡ଼କୁ ଚାହିଁଲେ ଏବଂ ଏହାଙ୍କୁ ଦୀକ୍ଷା ପ୍ରଦାନ କରିବେ ବୋଲି ଇଙ୍ଗିତ କଲେ । ସେ ଜଗନ୍ନାଥ ଦାସଙ୍କର ପ୍ରେମଭକ୍ତି ଦେଖି ତାଙ୍କୁ ଆଦରଭାବେ ଦୀକ୍ଷା ଦେଲେ । ପ୍ରେମମୟ ଷୋଡ଼ଶ ହରିନାମ ମହାମନ୍ତ୍ର ସହ ରାଧାକୃଷ୍ଣ ଯୁଗଳ ଗାୟତ୍ରୀ ଓ ଜଗନ୍ନାଥ ନାମ ପଞ୍ଚକ ଉପଦେଶ ଦେଲେ । ସେହି ଦିନରୁ ସେ ଡୋର କୌପୀନ ଧାରଣ କରି ବୈରାଗୀ ହେଲେ । ଦିନକୁଦିନ ତାଙ୍କର ଭକ୍ତିର ପ୍ରୀତି ବୃଦ୍ଧି ପ୍ରାପ୍ତ ହେଲା । ସେ ପ୍ରତ୍ୟହ ଜଗନ୍ନାଥ ଦର୍ଶନ କରୁଁ କରୁଁ ଭାବୋନ୍ମତ୍ତ ହୋଇ ଯାଉଥିଲେ ଓ ଜଗନ୍ନାଥଙ୍କ ମୂର୍ତ୍ତିରେ ରାଧାକୃଷ୍ଣଙ୍କର ଭାବାବେଶ ଅନୁଭବ କରୁଥିଲେ । ସେ ରାଗମାର୍ଗ ଆଶ୍ରୟ କଲେ ମଧ୍ୟ ବୈଧିକ ଆଚାର ପରିତ୍ୟାଗ କରି ନ ଥିଲେ । ସେ ନିଜକୁ ରାଧା ଓ ଶ୍ରୀଚୈତନ୍ୟଙ୍କୁ କୃଷ୍ଣ ବୋଲି ଉପଲବ୍ଧି କରି ତାଙ୍କୁ ପ୍ରାଣପତି ରୂପେ ପ୍ରତ୍ୟହ ସେବା କରୁଥିଲେ । ଶ୍ରୀଚୈତନ୍ୟ ଦାସଙ୍କର କ୍ରିୟାକଳାପରେ ସନ୍ତୁଷ୍ଟ ହୋଇ ଦିନେ କହିଲେ, "ଦାସେ, ଆପଣଙ୍କର ରୀତି ଦେଖିଲେ ଜଣାଯାଏ ଆପଣ ସାଧକ ନୁହନ୍ତି, ନିତ୍ୟସିଦ୍ଧ । ଆପଣ ପୂର୍ବସିଦ୍ଧ ଅଙ୍ଗ କେଉଁଠାରୁ ପାଇଲେ କହିବା ହେଉନ୍ତୁ ।" ତାହା ଶୁଣି ଦାସେ କହିଲେ "ମହାପ୍ରଭୋ, ଆପଣ ଅନ୍ତର୍ଯ୍ୟାମୀ । ଆପଣଙ୍କୁ କେଉଁକଥା ଅଗୋଚର । ଆପଣ ଯେତେବେଳେ ପଚାରୁଛନ୍ତି, ଆପଣଙ୍କ କହିବା ଉଚିତ । ମୁଁ ଯେତେବେଳେ ବହୁବିଧ ସଂହତା ଲକ୍ଷିତ ବୈକୁଣ୍ଠଧାମରେ ସୁବର୍ଣ୍ଣ ପୀଠସ୍ଥିତ ମଣିମଣ୍ଡିତ ମଣ୍ଡପରେ ରାଧାଲିଙ୍ଗିତ ଶ୍ରୀକୃଷ୍ଣଙ୍କର ମହାରାସଲୀଳା ପ୍ରକାଶକ ବଂଶୀ ସ୍ୱନ ଶ୍ରବଣ କରି ଭାବାବିଷ୍ଟ ହେଲି, ମୋର ବାହ୍ୟଜ୍ଞାନ ଅନ୍ତର୍ହିତ ହେଲା । ସେତେବେଳେ ଉପଲବ୍ଧି କଲି ନିତ୍ୟ ବୈକୁଣ୍ଠଧାମରେ ଶ୍ରୀ ମଦ୍‌ରାଧାକୃଷ୍ଣ ଏକହାବସ୍ଥିତ ଥିଲେ । ପରସ୍ପର ପରସ୍ପରକୁ ଅତି ଆନନ୍ଦରେ ନିରୀକ୍ଷଣ କଲେ । ଭଗବାନ ରାଧାଙ୍କୁ ଚାହିଁ ହସିଲେ । ସେହି ହାସ୍ୟରୁ କୋଟି ବ୍ରହ୍ମାଣ୍ଡର ଉତ୍ପତ୍ତି । ଆପଣ ମଧ୍ୟ ତହିଁରୁ ଆବିର୍ଭୂତ ହେଲେ । ମୁଁ ରାଧାଙ୍କ ହାସ୍ୟରୁ ଆବିର୍ଭୂତ ହୋଇ ଆପଣଙ୍କ ନିକଟରେ ଉପସ୍ଥିତ ହେଲି । ସେ ଆପଣଙ୍କୁ ମର୍ତ୍ତ୍ୟରେ ଅବତାର ହେବାକୁ ଆଜ୍ଞା ଦେଲେ ଓ ମୋତେ ଆଜ୍ଞା କଲେ ଯାଅ ତୁମ୍ଭେ ମର୍ତ୍ତ୍ୟରେ ଅବତୀର୍ଣ୍ଣ ହୋଇ ଏହି ମୂର୍ତ୍ତି ଧ୍ୟାନ କରୁଥିବ ଓ ଅନ୍ତକାଳରେ ଏହି ଗତି ଲାଭ କରିବ ।" ତହୁଁପରେ ଚୈତନ୍ୟ "ଦାସେ, ତମେ ଅତିବଡ଼" ଏହା କହି ଗୈରିକ ଉତ୍ତରୀୟ ତାଙ୍କ ମୁଣ୍ଡରେ ବାନ୍ଧିଦେଲେ । ସେହିଦିନଠାରୁ ଲୋକେ ତାଙ୍କୁ ଅତିବଡ଼ ଗୋସ୍ୱାମୀ ବୋଲି ଡାକିଲେ । କ୍ରମେ ତାଙ୍କର ପ୍ରାଧାନ୍ୟ ପୁରଅଟ୍ଟେ ବ୍ୟାପିଗଲା । ଏଥିରେ କେତେକ ଗୌଡ଼ୀୟ ବୈଷ୍ଣବ ତାଙ୍କୁ ହିଂସା କରି ରାଜପୁରକୁ ପଳାଇଗଲେ । ଶ୍ରୀ ଚୈତନ୍ୟ ଜଗନ୍ନାଥଙ୍କୁ ନେଇ ସେଠାକୁ ଗଲେ ଓ ସେମାନଙ୍କୁ ବୈଷ୍ଣବ ଶ୍ଳୋକ ଉତ୍ତମରୂପେ ବୁଝାଇ ଦେଲେ । ସେହି ବୈଷ୍ଣବମାନେ ବାହ୍ୟତଃ ମିଳନର ଭାବ ଦେଖାଇଲେ; କିନ୍ତୁ ତାଙ୍କର ହୃଦୟରୁ ପୂର୍ବ ମାଳିନ୍ୟ ଦୂରୀଭୂତ ହେଲା ନାହିଁ ।

ଦିନେ ଉତ୍କଳାଧୀଶ୍ୱର ଶ୍ରୀ ପ୍ରତାପରୁଦ୍ରଦେବ ଶ୍ରୀଚୈତନ୍ୟଙ୍କୁ ପଚାରିଲେ "ଶ୍ରୀ ଜଗନ୍ନାଥଙ୍କ ମୂର୍ତ୍ତିରେ କିପରି ରାଧାକୃଷ୍ଣଙ୍କର ଯୁଗଳ ମୂର୍ତ୍ତି ବା ବ୍ରଜଭାବ ଉପଲବ୍ଧି କରିହେବ ଓ ଶ୍ରୀକୃଷ୍ଣଙ୍କୁ ଲାଭ କରିବାର ଉତ୍କୃଷ୍ଟ ପନ୍ଥା କଣ ?" ଶ୍ରୀଚୈତନ୍ୟ କହିଲେ "ଶ୍ରୀ ଜଗନ୍ନାଥ ଦାସ ଏହି ପ୍ରଶ୍ନ ସମାଧାନ କରିବାକୁ ସମର୍ଥ ।" ତହୁଁ ଅତିବଡ଼ ସ୍ୱାମୀ ଆସି ଏହି ଜଟିଳ ପ୍ରଶ୍ନ-

ଜ୍ଞାରତ ଉଚ୍ଚ ଶନ୍ତ୍ରାକଲେ, ବପଥେ ନ ଯିବଟି ଭଲେ ।

ତତ୍ତ୍ୱର ମୀମାଂସା କରି ଦେଇଥିଲେ । ସେ କହିଥିଲେ ଯେ ଶ୍ରୀକୃଷ୍ଣଙ୍କର ଅନେକୋଟି ଶକ୍ତି ଅଛି ।

ଶ୍ରୀକୃଷ୍ଣ

| ଚିତ୍‌ଶକ୍ତି | ମାୟାଶକ୍ତି | ଜୀବଶକ୍ତି |
|---|---|---|
| ଅନ୍ତରଙ୍ଗା | ବହିରଙ୍ଗା | ତଟସ୍ଥା |
| ହ୍ଲାଦିନୀ | ସନ୍ଧିନୀ | ସମ୍ବିତ୍ |
| ଆନନ୍ଦ | ସତ୍ ବା ଅଧିର ଶକ୍ତି | ଚିତ୍ |

ବା ସ୍ୱପ୍ରକାଶ

ରାଧା ଏହି ଆନନ୍ଦଶକ୍ତିବିଶିଷ୍ଟା । ଜଗନ୍ନାଥଙ୍କଠାରେ ଏହି ସତ୍, ଚିତ୍, ଆନନ୍ଦ ପରିପୂର୍ଣ୍ଣଭାବରେ ରହିଅଛି । ତେଣୁ ଜଗନ୍ନାଥଙ୍କଠାରେ ରାଧା କୃଷ୍ଣଙ୍କର ଯୁଗଳ ମୂର୍ତ୍ତି ବା ବ୍ରଜସ୍ୱରୂପ ଉପଲବ୍ଧ କରି ହେବ । ଦ୍ୱିତୀୟ ପ୍ରଶ୍ନର ଉତ୍ତର ଦେବାକୁ ଯାଇ ସେ କହିଥିଲେ ଯେ, ଶାନ୍ତ, ଦାସ୍ୟ, ସଖ୍ୟ, ବାତ୍ସଲ୍ୟ ଓ ଶୃଙ୍ଗାର ଏହିପଞ୍ଚବିଧ ରସ ମଧ୍ୟରେ କେବଳ ଶୃଙ୍ଗାର ବା ମଧୁର ରସରେ ଶାନ୍ତର ନିଷ୍ଠା, ଦାସ୍ୟର ସେବା, ସଖ୍ୟର ମମତା ଓ ବିଶ୍ୱାସବାତ୍ସଲ୍ୟର ମମତା, ଏବଂ ଏତଦବ୍ୟତୀତ ମଧୁର ରସର ନିଜାଙ୍ଗ ଦାନରେ କୃଷ୍ଣସୁଖୋତ୍ପାଦନ ବା ପରମ ଆତ୍ମୀୟତା ରହିଅଛି । ଏହି ମଧୁର ରସରେ ପଞ୍ଚରସର ଗୁଣ ପରିପୂର୍ଣ୍ଣରୂପେ ଥିବାରୁ ତାର ସ୍ୱାଦୁ ପରିପୂର୍ଣ୍ଣ ଅଟେ । ଯେପରି କ୍ଷିତି, ଅପ୍, ତେଜ, ମରୁତ୍, ବ୍ୟୋମ ଏହି ପଞ୍ଚ ମହାଭୂତମଧ୍ୟରେ ପୃଥିବୀରେ ଆକାଶର ଶବ୍ଦ, ବାୟୁର ସ୍ପର୍ଶ, ଜଳର ରସ, ଅଗ୍ନିର ରୂପ ଏବଂ ପୃଥିବୀର ନିଜଗୁଣ ଗନ୍ଧ-ଏହି ପାଞ୍ଚଗୁଣ ରହିଥିବାରୁ ସେ ମହାଭୂତମାନଙ୍କ ମଧ୍ୟରେ ଶ୍ରେଷ୍ଠ । ସେହିପରି ମଧୁର ରସରେ ପଞ୍ଚରସ ପୂର୍ଣ୍ଣମାତ୍ରାରେ ଥିବାରୁ ସେହି ମଧୁରରସ ବା କାନ୍ତାପ୍ରେମ ଭଜନଦ୍ୱାରା ଶ୍ରୀକୃଷ୍ଣ ପରିପୂର୍ଣ୍ଣରୂପରେ ମିଳନ୍ତି । ସେ ତାଙ୍କର ପ୍ରତିଭା ଦେଖି ଅତ୍ୟନ୍ତ ସନ୍ତୁଷ୍ଟ ହୋଇ ତାଙ୍କର ଭକ୍ତ ହେଲେ ଓ ବଶ୍ୟତା ସ୍ୱୀକାର କଲେ, ପୁଣି ଶ୍ରୀଜଗନ୍ନାଥ ମନ୍ଦିର ବାୟୁକୋଣରେ ଓ ମାର୍କଣ୍ଡେୟ ତୀର୍ଥର ଦକ୍ଷିଣ ଦିଗରେ ଗୋଟିଏ ଗୃହ ନିର୍ମାଣ କରାଇ ଦେଇଥିଲେ । ସେହି ମଠ ଅଦ୍ୟାବଧି ଓଡ଼ିଆ ମଠ ନାମରେ ପରିଚିତ । ତଦନନ୍ତର ଦକ୍ଷିଣରେ ଶଙ୍କରାଚାର୍ଯ୍ୟମଠ ଓ ଉତ୍ତରରେ ଯଜ୍ଞେଶ୍ୱର ମନ୍ଦିର ଏହି ଦୁଇ ସ୍ଥାନର ମଧ୍ୟବର୍ତ୍ତୀ ସ୍ଥାନରେ ଭଜନ କୁଟୀର ସ୍ଥାପିତ ହେଲା । ଏହି କୁଟୀର ସମୁଦ୍ରତୀରବର୍ତ୍ତୀ ବାଲୁକାମୟ ସ୍ଥାନରେ ଅବସ୍ଥିତ । ଏହାର ଆଧୁନିକ ନାମ ସାତଲହରି ମଠ । କଥିତ ଅଛି-ଶ୍ରୀଅତିବଡ଼ସ୍ୱାମୀ ସମୁଦ୍ରତରଙ୍ଗର ଘୋର ଗର୍ଜନରେ ଭଜନ ସ୍ମରଣରେ ଘୋର ଅସୁବିଧା ଅନୁଭବ କରି ଶ୍ରୀଜଗନ୍ନାଥ ମହାପ୍ରଭୁଙ୍କ କୃପାପ୍ରାର୍ଥୀ ହେବାରୁ ତାଙ୍କର ଆଜ୍ଞାରେ ସମୁଦ୍ର ସାତସ୍ତର ପରିମାଣରେ ଦୂରକୁ ଘୁଞ୍ଚିଯାଇଥିଲା ! ଏହି କାରଣରୁ ସେହି ମଠର ନାମ ସାତଲହରି ମଠ ।

ପ୍ରତିଦିନ ରାତିରେ ଶ୍ରୀ ଜଗନ୍ନାଥ ମହାପ୍ରଭୁଙ୍କ ପହୁଡ଼ହେଲା ପରେ ମେଧା ଓ ସୁମେଧା ନାମ୍ନୀ ଅତି ସୁନ୍ଦରୀ ଦୁଇଜଣ ସଖୀ ଅତିବଡ଼ ସ୍ୱାମୀଙ୍କ ଆଶ୍ରମକୁ ଆସି ତାହାଙ୍କୁ ସେବା କରନ୍ତି । ମହାରାଜ ପ୍ରତାପରୁଦ୍ରଦେବ ଏ ବିଷୟ ଶୁଣିପାରି ଅତ୍ୟନ୍ତ ଦୁଃଖିତ ଓ ବିସ୍ମିତ ହେଲେ । ଦାସଙ୍କ ଚରିତ୍ର କଳଙ୍କିତ ହୋଇଗଲାଣି ବୋଲି ସେ ଆଶଙ୍କା କରି ତାଙ୍କୁ ପରୀକ୍ଷା କରିବାକୁ ଲାଗିଲେ । ସେଥିପାଇଁ ଦିନେ ରାତିରେ ଛଦ୍ମବେଶରେ ତାଙ୍କ ଠାରେ ପହଞ୍ଚିଲେ । ସେ ଯାହା ଶୁଣିଥିଲେ ଠିକ୍ ତାହା ଦେଖିଲେ । କିନ୍ତୁ ଭକ୍ତ ଓ ଅନ୍ତର୍ଯ୍ୟାମୀ ଯୋଗବଳରେ ଏ କଥା ଜାଣିପାରି ରାଜାଙ୍କୁ ଡାକି ଏ କଥା କହିଲେ "ମହାରାଜ, ଆପଣଙ୍କ ଅନ୍ତଃପୁରରେ ଯେପରି ମହାଦେଇଙ୍କୁ ସ୍ତ୍ରୀ ପରିଚାରିକା ସେବା କରନ୍ତି, ମୋତେ ମଧ୍ୟ ସେହିପରି ଏହି ଦୁଇଟି ଭକ୍ତି-ପରାୟଣା ସ୍ତ୍ରୀ ସେବା କରନ୍ତି" । ପ୍ରତାପରୁଦ୍ରଦେବ ସେ ଦୁଇଟି ସ୍ତ୍ରୀଙ୍କୁ ଧରି ନେବାକୁ ଚେଷ୍ଟା କଲେ । ମାତ୍ର ସେମାନଙ୍କୁ ହଠାତ୍ ଅତି ଅଦ୍ଭୁତରୂପେ ଅନ୍ତର୍ହିତ ହେବାର ଦେଖି ଭୟ ଓ ଭକ୍ତିରେ ବିହ୍ୱଳ ହୋଇ ତାଙ୍କ ନିକଟରେ କ୍ଷମା ପ୍ରାର୍ଥନା କରି ନିଜର ଦୋଷ ମାଗି ନେଲେ ।

ଅନ୍ୟ ଏକଦିନେ ମହାରାଜା ଅତି ଉତ୍କୃଷ୍ଟ ମୂଲ୍ୟବାନ୍ ଚନ୍ଦନ ଜଣେ ବଣିକଠାରୁ ବହୁମୂଲ୍ୟରେ କିଣି ମହାପ୍ରଭୁଙ୍କ ସେବା-ଲାଗି ଅତିବଡ଼ସ୍ୱାମୀଙ୍କ ହାତରେ ଦେଇଲେ । ମାତ୍ର ସ୍ୱାମୀ ସେ ଚନ୍ଦନ ଘୋରି ଆଶ୍ରମ କାନ୍ଥରେ ବୋଳିଦେଲେ ରାଜା ଏ ବିଷୟ ଶୁଣିପାରି ଅତ୍ୟନ୍ତ ଦୁଃଖିତ ହେଲେ । କିନ୍ତୁ ତହିଁ

ପରଦିନ ମହାପ୍ରଭୁଙ୍କୁ ଦର୍ଶନ କରିବାକୁ ଯାଇ ତାଙ୍କ ଅଙ୍ଗରେ ସେହି ଚନ୍ଦନ ବୋଳା ହୋଇ ଥିବାର ଦେଖିଲେ । ଏହାଦ୍ୱାରା ଦାସଙ୍କ ଭକ୍ତିର ପରାକାଷ୍ଠା ଜଣାଗଲା । ସେ ସାଧନା ଓ ଭକ୍ତି-ବଳରେ ଐନ୍ଦ୍ରଜାଲିକ ପରି ଦୁଃସାହସିକ କାର୍ଯ୍ୟମାନ କରି ପାରୁଥିଲେ ଓ ଏହିପରି ଦୃଷ୍ଟାନ୍ତରେ ଅନେକେ ତାଙ୍କର ଶିଷ୍ୟତ୍ୱ ଗ୍ରହଣ କରିଥିଲେ ।

ଥରେ ବ୍ରହ୍ମାନନ୍ଦ ନାମକ ଜଣେ ମାୟାବାଦୀ ସନ୍ନ୍ୟାସୀ ଏକ ତ୍ରିକୋଣାକାର ଛତ୍ରସହ ମହାରାଜାଙ୍କ ନିକଟରେ ଉପସ୍ଥିତ ହୋଇ କହିଲେ, "ଆପଣଙ୍କର ପଣ୍ଡିତମାନଙ୍କୁ ଡକାନ୍ତୁ, ସେମାନେ ମୋତେ ବ୍ରହ୍ମଭିକ୍ଷା ଦିଅନ୍ତୁ । ବ୍ରହ୍ମତତ୍ତ୍ୱ ସମସ୍ୟାରେ ମୋତେ ପରାଜୟ କଲେ ମୁଁ ଭିକ୍ଷା ଗ୍ରହଣ କରିବି । ଅନ୍ୟଥା ଏଠାରୁ ଚତୁଷ୍କୋଣ ଛତ୍ରଟିଏ ବିଦାୟ ନେବି" । ଉକ୍ତ ଜଗନ୍ନାଥ ଚକ୍ରବର୍ତ୍ତୀ ତେତେବେଳେ ଅଦ୍ୱୈତ-ବାଦବିରୋଧୀ । ସେ ଅଚ୍ୟୁତ ସ୍ୱାମୀଙ୍କୁ ଡକାଇ ଏହାଙ୍କ ସଙ୍ଗେ ତର୍କ କରିବାକୁ ଅନୁରୋଧ କଲେ । ଶ୍ରୀ ଅଚ୍ୟୁତ ସ୍ୱାମୀ ଯୁକ୍ତି ଓ ପ୍ରତିଭା ବଳରେ ଅଦ୍ୱୈତବାଦ ଖଣ୍ଡନ କରି ଶ୍ରୀଚୈତନ୍ୟ ପ୍ରବର୍ତ୍ତିତ ଅଚିନ୍ତ୍ୟଭେଦାଭେଦବାଦ ପ୍ରତି-ପାଦନ କଲେ । ଏଥିରେ ବ୍ରହ୍ମାନନ୍ଦଙ୍କର ଗର୍ବ ଖର୍ବ ହେଲା ଓ ଦାସଙ୍କର ସୁଖ୍ୟାତି ଚତୁର୍ଦ୍ଦିଗରେ ବ୍ୟାପିଗଲା ।

ପ୍ରତାପରୁଦ୍ରଦେବଙ୍କ ମହାଦେଈଙ୍କ ନାମ ଶ୍ରୀମତୀ ଗୌରୀ । ତାଙ୍କୁ ଧର୍ମ ଦୀକ୍ଷା ଦେବାପାଇଁ ମହାରାଜ ସ୍ତ୍ରୀଗୁରୁ ଖୋଜିଲେ । ଶ୍ରୀ ଚୈତନ୍ୟ ଏହା ଶୁଣି କହିଲେ "ଏଥିପାଇଁ ଅଚ୍ୟୁତ ସ୍ୱାମୀ ବଡ଼ ଉପଯୁକ୍ତ" । ଦାସେ ପୁରୁଷ ବୋଲି ମହାରାଜ ମନା କଲେ । ଶ୍ରୀ ଚୈତନ୍ୟଙ୍କ କଥାନୁସାରେ ଅଚ୍ୟୁତସ୍ୱାମୀ ସ୍ତ୍ରୀଭାବ ଧାରଣକରି ପାଟମହାଦେଈଙ୍କୁ ଦୀକ୍ଷା ଦେଲେ । ପ୍ରତାପରୁଦ୍ର-ଦେବ ଦାସଙ୍କ ଅଙ୍ଗ-ପ୍ରତ୍ୟଙ୍ଗରେ ସ୍ତ୍ରୀ-ଚିହ୍ନମାନ ଦେଖି ଅତ୍ୟନ୍ତ ବିସ୍ମିତ ହେଲେ ।

ଶ୍ରୀ ଅଚ୍ୟୁତ ସ୍ୱାମୀ ପୁରୀସମୁଦ୍ରତୀରବର୍ତ୍ତୀ ସେହି ଭଜନ କୁଟୀରରେ ୬୦ ବର୍ଷ ପର୍ଯ୍ୟନ୍ତ ଭଜନ ଓ ଶ୍ରୀ ଜଗନ୍ନାଥ ଦେବଙ୍କ ତ୍ରିକାଳ ସେବାରେ ନିଯୁକ୍ତ ଥିଲେ । ସେ ଥରେ ସମସ୍ତ ଶିଷ୍ୟ ଓ ଭକ୍ତ ପରିବେଷ୍ଟିତ ହୋଇ ଶ୍ରୀରାଧା ଓ ଶ୍ରୀକୃଷ୍ଣଙ୍କ ଯୁଗଳ ମୂର୍ତ୍ତି ଉପାସନାର ତତ୍ତ୍ୱ ଉପଦେଶ ଦେଉଥିଲେ । ତତ୍ପରେ ନିଜର କାଷ୍ଠ ପାଦୁକା ଦ୍ୱୟ ପ୍ରଧାନ ଶିଷ୍ୟ ହରିଦାସଙ୍କୁ ଦେଇ କହିଲେ ଏହାଙ୍କୁ ପୀଠର ଅଧିକାରୀସ୍ୱରୂପ ସ୍ଥାପନ କର । ତତ୍ପରେ ତୁଳସୀ ମାଳାଦି ଧାରଣପୂର୍ବକ ଯୋଗାସନରେ ବସି ରାଧା କୃଷ୍ଣ ଯୁଗଳ-ମିଳନ ଧ୍ୟାନରେ ନିମଗ୍ନ ହେଲେ । ସେ ସମସ୍ତ ଶିଷ୍ୟ ଓ ଭକ୍ତ ପରିବେଷ୍ଟିତ ହୋଇ ଜଗନ୍ନାଥ ଦେବଙ୍କ ଦର୍ଶନକୁ ଯାଇ ରତ୍ନସିଂହାସନ ନିକଟରେ ବଜ୍ରାସନ ପରି ସୂକ୍ଷ୍ମଶରୀରରେ ଶ୍ରୀ ଜଗ-ନ୍ନାଥ ମହାପ୍ରଭୁଙ୍କ ଶରୀରରେ ଲୀନ ହେଲେ । ସେଦିନ ମାଘ ଶୁକ୍ଳ ସପ୍ତମୀ । ଅର୍କକ୍ଷେତ୍ରରେ ଚନ୍ଦ୍ରଭାଗା ସ୍ନାନଯୋଗ । ତାଙ୍କର ସ୍ଥୂଳଶରୀର ଭଜନ କୁଟୀରରେ ଅଚେତନ ହୋଇ ରହିଥିଲା । ଶିଷ୍ୟବର୍ଗ ତାହାକୁ ମହା ସମାରୋହରେ ଯେଉଁଠି ସମାହିତ କଲେ ତାହାର ନାମ ହାତିଲଡ଼ି ମଠ ।

ସେ ଏକାଧାରରେ ଯୋଗୀ, ଭକ୍ତ, ସନ୍ନ୍ୟାସୀ, ଧର୍ମ ପ୍ରବର୍ତ୍ତକ ଓ କବି ଥିଲେ । ତାଙ୍କ ରଚିତ ଶ୍ରୀମଦ୍‌ଭାଗବତ ଓଡ଼ିଆର ଘରେ ଘରେ ଅଦ୍ୟାବଧି ପୂଜିତ ହେଉଅଛି ଓ ଯାବଚ୍ଚନ୍ଦ୍ରାର୍କ ପୂଜିତ ହେଉଥିବ ।

କଥିତ ଅଛି, ଦାସଙ୍କ ମାତା ଶ୍ରୀମଦ୍‌ଭାଗବତ ଶୁଣିବାକୁ ଇଚ୍ଛା କରିବାରୁ ମାତୃଭକ୍ତ ଦାସେ ନଦୀଆକୁ ଯାଇ ସେଠାରେ ସଂସ୍କୃତ ଭାଗବତ ପାଠ କରିଥିଲେ । ତାହାର ଭାବ ମନେ ରଖି ଓଡ଼ିଆ ଭାଷାରେ ତାହା ରଚନା କରି ମାତାଙ୍କୁ ଶୁଣାଇଥିଲେ ।



## ଭୀମଭୋଇ ।

ଭୀମଭୋଇ ପ୍ରାୟ ୧୮୫୫ ଅବ୍ଦରେ ରେଢ଼ାଖୋଲରେ କନ୍ଧ ଗୃହରେ ଜନ୍ମଗ୍ରହଣ କରିଥିଲେ । ସେ ଜନ୍ମାନ୍ଧ ଓ ପିତୃହୀନ । ଜନ୍ମର ଦୁଇବର୍ଷ ପରେ ତାଙ୍କର ପିତୃବିୟୋଗ ହୋଇଥିଲା । ତାଙ୍କର ବାଲ୍ୟଜୀବନ ଅତି ଦୁଃଖମୟ ଥିଲା, ମାତ୍ର ସେ ଭଗବାନଙ୍କ ନାମ ଉଚ୍ଚାରଣ କରି ନିଜକୁ ସୁଖୀ ମଣୁଥିଲେ । ସେ ଅତିଶୟ ବୁଦ୍ଧିମାନ ଥିବାରୁ ଭାଗବତ ଓ ପୁରାଣାଦି ଶ୍ରବଣକରି ଅବିକଳ ମନେ ରଖୁଥିଲେ । ପ୍ରଭୁ ଅଲେଖସ୍ୱାମୀଙ୍କ ଠାରୁ ଦୀକ୍ଷା ଗ୍ରହଣ କରି ମହିମାଧର୍ମ ବିଷୟରେ ଗ୍ରନ୍ଥ ଲେଖିଲେ । ସେ ଯେଉଁ ଧର୍ମ ପ୍ରଚାର କରିଥିଲେ, ତାହାର ନାମ କୁମ୍ଭୀପଟିଆ ଧର୍ମ । ଏ ସମ୍ପ୍ରଦାୟର ସନ୍ନ୍ୟାସୀମାନେ କୁମ୍ଭୀ ବୃକ୍ଷର ବକ୍କଳରେ ବସ୍ତ୍ର ଓ ଉତ୍ତରୀୟ ପ୍ରସ୍ତୁତ କରି ପରିଧାନ କରନ୍ତି । ବ୍ରାହ୍ମଣ, କ୍ଷତ୍ରିୟ ଓ ରଜକ ଘରେ ଏମାନେ ଭିକ୍ଷା ଗ୍ରହଣ କରନ୍ତି ନାହିଁ ।

ପଞ୍ଚାନନ୍ଦର ଓ ଚରକାଶ୍ରୀ ଏମାନଙ୍କର ଭକ୍ଷ୍ୟସାମଗ୍ରୀ । ଗୋମୂତ୍ର ଲେପନକରି ଦେହ ଶୋଧନ ଓ ଗୋମୂତ୍ର ପାନକରି ଅନ୍ତଃ-ଶୋଧନ କରନ୍ତି । ଯଦି ଅଧର ଏମାନଙ୍କର ଜଷିଦ୍ଧ ଓ ଏମାନେ ଜୀବହତ୍ୟାର ବିରୋଧୀ ହେଲେହେଁ ମତ୍ସ୍ୟାଦି ଭକ୍ଷଣରେ ଆପତ୍ତି କରନ୍ତି ନାହିଁ । ଏ ମହିମାଧର୍ମ ଭଜିଲେ ଓ ପାପୀ ଓ ପୁଣ୍ୟବାନ ସମସ୍ତେ ମୁକ୍ତି ପାଇବେ ବୋଲି ସେ ପ୍ରକାଶ କରିଅଛନ୍ତି । ଏ ଧର୍ମରେ ମିଥ୍ୟା, ପରଦାର ଗମନ, ଚୌର୍ଯ୍ୟ, ପରପବାଦ, ଧନ ଲୋଭଦିର ସ୍ଥାନ ନାହିଁ ।

ସ୍ୱାମୀଜୀଏ ୧୮୭୫ ରେ ସୋନପୁର ରାଜ୍ୟର ଖଲିଅ-ପାଳି ଗ୍ରାମରେ ଦେହରକ୍ଷା କରିଥିଲେ ।

ଢେଙ୍କାନାଳ ଅନ୍ତର୍ଗତ ଜୋରନ୍ଦାରେ ଅଲେଖ ସ୍ୱାମୀଙ୍କ ଗାଦି ଅଛି । ପ୍ରତିବର୍ଷ ମାଘୀ ପୂର୍ଣ୍ଣିମାରେ ସେଠାରେ ଏକ ମହୋତ୍ସବ ହୁଏ ଓ ଓଡ଼ିଶାର ପ୍ରାୟ ପ୍ରତ୍ୟେକ ଅଞ୍ଚଳରୁ ଲୋକମାନେ ଯାଇ ସେ ଉତ୍ସବରେ ଯୋଗଦାନ କରନ୍ତି ।



## ବୁଦ୍ଧଦେବଙ୍କର ବଚନ ।

୧—ଅଜ୍ଞାନର ଅନୁଗତ ନ ହୋଇ, ଜ୍ଞାନୀର ସେବା କରିବା ଓ ମାନନୀୟ ବ୍ୟକ୍ତିଙ୍କୁ ସମ୍ମାନ କରିବା ପରମଧର୍ମ ।

୨—ହୃଦୟରେ ସାଧୁ ଇଚ୍ଛା ପୋଷଣ କରିବାହିଁ ପରମଧର୍ମ ।

୩—ଆତ୍ମସଂଯମ ଓ ପ୍ରିୟବଚନହିଁ ପରମଧର୍ମ ।

୪—ପିତାମାତାଙ୍କର ସେବା କରିବା ପରମଧର୍ମ ।

୫—ସ୍ତ୍ରୀ ପୁତ୍ରଙ୍କୁ ସୁଖୀ କରିବା ଓ ଶାନ୍ତିର ଅନୁସରଣ କରିବାହିଁ ପରମଧର୍ମ ।

୬—ପାପକାର୍ଯ୍ୟରୁ ବିରତ ରହିବା ଓ ସେଥିପ୍ରତି ଘୃଣା, ମାଦକଦ୍ରବ୍ୟ ସମ୍ପୂର୍ଣ୍ଣରୂପେ ତ୍ୟାଗ ଓ ସତ୍‌କାର୍ଯ୍ୟରେ ପରିଶ୍ରାନ୍ତ ନ ହେବା ମାନବର ଧର୍ମ ।

୭—ଶ୍ରଦ୍ଧା, ବିନୟ, ସନ୍ତୋଷ, କୃତଜ୍ଞତା ଏବଂ ଯଥା ସମୟରେ ଧର୍ମତତ୍ତ୍ୱ ଶ୍ରବଣ କରିବା ପ୍ରକୃତ ଶାନ୍ତି ।

୮—କଷ୍ଟସହିଷ୍ଣୁତା ଓ ଦୀନତା ଗ୍ରହଣ, ସାଧୁସଙ୍ଗ ଓ ଧର୍ମଚର୍ଚ୍ଚା କରିବା ଯଥାର୍ଥ ସୁଖ ।

୯—ଜୀବନର ପରିବର୍ତ୍ତନ ଓ ବିଚିତ୍ର ଘଟନାବଳୀ ମଧ୍ୟରେ ଯାହାର ଚିତ୍ତ ବିଚଳିତ ନ ହୁଏ, ଏବଂ ଯେ ହୃଦୟ, ଶୋକ, ଦୁଃଖ ଓ ଇନ୍ଦ୍ରିୟାତୀତ ଏବଂ ସ୍ଥିର, ତାହାର ଧର୍ମ, ଉଚ୍ଚ ଧର୍ମ ।

୧୦—ପ୍ରତ୍ୟେକ ବିଷୟରେ ଯେଉଁମାନେ ପବିତ୍ର ସରଳ ଏବଂ ପ୍ରତ୍ୟେକ ବିଷୟରେ ଯେଉଁମାନେ ନିରାପଦ, ସେହିମାନେହିଁ ପ୍ରକୃତ ସାଧୁ ।

୧୧—ମନକୁ ବଶୀଭୂତ କରିବା, ମାନବର ପ୍ରଧାନ କାର୍ଯ୍ୟ । କାରଣ ଏହା କ୍ଷଣ ମୁହୂର୍ତ୍ତମଧ୍ୟରେ କେଉଁଆଡ଼େ ଦୌଡ଼ିଯାଏ ଓ କେଉଁଆଡ଼େ ଯାଇ ନିବୃତ୍ତ ହୁଏ, ତାହା କେହି କହିପାରେ ନାହିଁ । ଅତଏବ ସଂଯତଚିତ୍ତତାହିଁ ନିତ୍ୟ ସୁଖାବହ ।

୧୨—ଯେଉଁ ବ୍ୟକ୍ତି ମୁଖରେ ସାଧୁ ଓ ମିଷ୍ଟକଥା କହେ, ଅଥଚ ତଦନୁରୂପ ନ କରେ, ତାହାର ସଙ୍ଗ ପରିତ୍ୟାଗ କରିବ ।

୧୩—ଜଣେ ସଂଗ୍ରାମରେ ସହସ୍ର ଲୋକଙ୍କୁ ଜୟ କରିପାରେ, କିନ୍ତୁ ଯେ ଆପଣାକୁ ଜୟ କରିଅଛି, ସେ ସର୍ବଶ୍ରେଷ୍ଠ ବୀର ।

୧୪—ପାପକୁ ସାମାନ୍ୟ ଲଘୁ ଜ୍ଞାନ କରିବା ଉଚିତ ନୁହେ । ଯେବେ କେହି ମନେ ମନେ ଚିନ୍ତାକରେ ଯେ, ପାପ ମୋତେ ପରାସ୍ତ କରି ପାରିବ ନାହିଁ, ତେବେ ସେଠା ତାହାର ନିତାନ୍ତ ଭ୍ରାନ୍ତି । କାରଣ, କୌଣସି ଜଳପାତ୍ରରେ ଏକସ୍ଥାନରେ ବିନ୍ଦୁମାତ୍ର ଛିଦ୍ର ଥିଲେ, ତାହା କ୍ରମେ କ୍ରମେ ଜଳବୃଦ୍ଧି ହୋଇ ନିମଗ୍ନ ହୋଇଯାଏ ।

୧୫—କଦାପି ଧର୍ମର ନିୟମ ଲଙ୍ଘନ କର ନାହିଁ । ଯେଉଁ ବ୍ୟକ୍ତି ଧର୍ମର କୌଣସି ଏକ ନିୟମ ଲଙ୍ଘନ କରିପାରେ, ସେହି ବ୍ୟକ୍ତି ସମସ୍ତ ପାପକାର୍ଯ୍ୟ କରିବାକୁ ସମର୍ଥ ହୁଏ ।

୧୬—ଅକ୍ରୋଧ ଦ୍ୱାରା କ୍ରୋଧକୁ, ଏବଂ ସାଧୁ ଭାବଦ୍ୱାରା ଅସାଧୁଭାବକୁ ଜୟ କରିବ, ସତ୍ୟଦ୍ୱାରା ମିଥ୍ୟାକୁ ଜୟକରିବ ।

୧୭—ସତ୍ୟକଥା, କ୍ଷମା ଓ ନିଃସ୍ୱ ବ୍ୟକ୍ତିଙ୍କୁ ଦାନ, ଏହି ତ୍ରିବିଧ କାର୍ଯ୍ୟଦ୍ୱାରା ମନୁଷ୍ୟ ଦେବ ପ୍ରକୃତ ଲାଭ କରିବାକୁ ସମର୍ଥ ହୁଏ ।

୧୮—ଜୀବ ହିଂସା, ପରର ଦ୍ରବ୍ୟ ହରଣ, ମିଥ୍ୟାକଥା କହିବା, ସୁରାପାନକରିବା, ପରସ୍ତ୍ରୀ ହରଣ, ଏମାନ ମହାପାପ ।



## ବୈଷ୍ଣବ ତତ୍ତ୍ୱ ନିରୂପଣ ।

୧—ଉପାସ୍ୟଦେବଙ୍କ ପ୍ରତି ଅସାଧାରଣ ପ୍ରୀତି ଓ ଅନୁରାଗ ଜନ୍ମାଇବାର ନାମ ଭକ୍ତି । କାୟମନୋବାକ୍ୟରେ ଭଗବାନଙ୍କର ଅନୁଗତ ହେବାହିଁ ଭକ୍ତି ।

୨—ଭକ୍ତିର ଅବସ୍ଥା ତିନପ୍ରକାର;—୧ମ ସାଧନ-ଭକ୍ତି, ୨ୟ ଭାବ-ଭକ୍ତି, ୩ୟ ପ୍ରେମ-ଭକ୍ତି ।

୩—ଜଗତରେ ମାନବଜନ୍ମ ଅତି ଦୁର୍ଲଭ । ଚୌରାଶୀଲକ୍ଷ ଯୋନି ଭ୍ରମଣକରି ଜୀବ ମନୁଷ୍ୟତ୍ୱ ପ୍ରାପ୍ତ ହୁଏ । ଏହି ମନୁଷ୍ୟତ୍ୱ ଲାଭ କରି ଯେ ଭଗବଚ୍ଚରଣରେ ଐକାନ୍ତିକୀ ଭକ୍ତି ରଖିଅଛନ୍ତି, ସେ ଧନ୍ୟ ।

୪—ଅହେତୁକୀ ଭକ୍ତି ଅର୍ଥାତ୍ ଅନ୍ୟବସ୍ତୁର ଅଭିଳାଷ ଶୂନ୍ୟ ଓ ଜ୍ଞାନକର୍ମାଦିର ବ୍ୟବଧାନରହିତ ଭକ୍ତିଦ୍ୱାରା ଶ୍ରୀ ଭଗବାନଙ୍କୁ ପ୍ରାପ୍ତ ହୋଇ ପାରନ୍ତି ।

୫—ନାସ୍ତିକ, ଏକମାତ୍ର ନୈତିକ ଓ ଇହକାଳପନ୍ଥୀ ପ୍ରଭୃତିଙ୍କର ସଙ୍ଗଗ୍ରହଣ, କୁଶିଷ୍ୟ ଓ କୁବନ୍ଧୁଗ୍ରହଣ, ବୈଷ୍ଣବ ସମ୍ଭାଷଣରେ ଓ ସଦ୍ବ୍ୟବହାରରେ ଶୂନ୍ୟକରିବା ଓ ଆଳସ୍ୟ କରିବା, ଶୋକାଭିଭୂତତା, କୁସଂସ୍କାର ରକ୍ଷା, ପରନିନ୍ଦା କରିବା, ଜୀବହିଂସା କରିବା, କଳହ କରିବା ପରସ୍ତ୍ରୀ କାମନା କରିବା, ସେବାରେ ଅଯତ୍ନ କରିବା, ଅହଙ୍କାର କରିବା, ହରିନାମର ଏକମାତ୍ର ପ୍ରଶଂସା ଭିନ୍ନ କିଛିନୁହେଁ ଏପରି ଧାରଣା କରିବା, ହରିନାମର ଅପବ୍ୟବହାର କରିବା, କୌଣସି ନା କୌଣସି ଶ୍ରେଷ୍ଠ ବିଷୟ ସହିତ ହରିନାମର ତୁଳନା କରିବା, ଭଗବାନଙ୍କ ନିନ୍ଦାର ଅନୁମୋଦନ କରିବା ବା ଶ୍ରବଣ କରିବା, ଏହି ସମସ୍ତ ଧର୍ମ-ଜଗତର ସର୍ବନାଶକାରୀ ଅପରାଧ ବୋଲି, ସତତ ସ୍ମରଣ ରଖିବ ।

୬— ପ୍ରଥମେ ବିଶ୍ୱାସ, ପରେ ସାଧୁସଙ୍ଗ, ପରେ ଅର୍ଚ୍ଚନା, ପରେ ଅନର୍ଥନିବୃତ୍ତି, ପରେ ନିଷ୍ଠା, ପରେ ରୁଚି, ପରେ ଭାବ, ତାହାପରେ ପ୍ରେମୋଦୟ ହୋଇଥାଏ ।

୭— ଏକମାତ୍ର ଶୁଦ୍ଧ ଭଗବାନଙ୍କର ଭଜନ କର, କିନ୍ତୁ ଅନ୍ୟର ଅନ୍ୟରୂପ ସାଧନ-ପ୍ରଣାଳୀକୁ ନିନ୍ଦା କରନାହିଁ । ବାହ୍ୟ ପୃଥକ୍ଭାବ ଦେଖି ତର୍କ କର ନାହିଁ ।

୮— ବିଶୁଦ୍ଧ ପ୍ରେମ କେବଳ ଯଥାର୍ଥ ଧର୍ମ । କୃଷ୍ଣପ୍ରେମ କେବଳ ସୁନିର୍ମଳ । ଅବସ୍ଥା ବିଶେଷରେ ପ୍ରେମର ନାମହିଁ ଭକ୍ତି ।

୯— ଭକ୍ତିର ଉତ୍କୃଷ୍ଟ ସାଧନହିଁ କୃଷ୍ଣଭକ୍ତିର ସର୍ବସ୍ୱ ।

୧୦— ସେବାରେ ପ୍ରୀତିସଞ୍ଚାର, ଭକ୍ତଗଣଙ୍କ ସହିତ ମଧୁର ଭାଗବତର ରସାସ୍ୱାଦ, ସାଧୁସଙ୍ଗ, ନାମ- ସଂକୀର୍ତ୍ତନ, ଏଥିରୁ ଯହିଁରେ ଯେତେବେଳେ ଯାହାର ରୁଚି ହୁଏ, ସେ ସେତେବେଳେ ତାହାର ଆଲୋଚନା କରିବେ ।

୧୧—ରସଅର୍ଥେ ଆନନ୍ଦ, ସେହି ଆନନ୍ଦ ଦୁଇପ୍ରକାର; ଜଡ଼ାନନ୍ଦ ଓ ଚିଦାନନ୍ଦ । ଚିଦ୍ରସ ଅର୍ଥେ ବ୍ରହ୍ମାନନ୍ଦ, ଆଉ ଜଡ଼ରସ ଅର୍ଥେ ସଂସାରିକ ସୁଖ ଦୁଃଖମାତ୍ର । ପରମାନନ୍ଦ ବା ଚିଦ୍ରସ ବିକୃତ ହୋଇ ଦାମ୍ପତ୍ୟ ପ୍ରଣୟ, ଅପତ୍ୟ ସ୍ନେହ, ସଖ୍ୟ, ଆନୁଗତ୍ୟ ଓ କ୍ରୀଡ଼ାକୌତୁକ ପ୍ରଭୃତିରେ ପରିଣତ ହୋଇଅଛି ।

୧୨—ସର୍ବଜାତୀୟ ଲୋକମାନେ ପ୍ରେମଭକ୍ତିର ଅଧିକାରୀ । ଚାହୁଁ ହିନ୍ଦୁ କି ମ୍ଳେଚ୍ଛ, ସମସ୍ତଲୋକେ ପ୍ରେମଭକ୍ତିର ଅନୁଷ୍ଠାନରେ ସମର୍ଥ । ସେହି ସର୍ବସ୍ୱର ପରମେଶ୍ୱରଙ୍କୁ ଏକାନ୍ତ ପ୍ରେମ, ଭକ୍ତି ଓ ଅନୁରାଗରେ ଭଜନା ନ କଲେ, କଦାପି ସେ ଜୀବସମୂହ ମୋକ୍ଷରେ ସୁଲଭ ହୁଅନ୍ତି ନାହିଁ । ସେ ରସ ବା ଭାବବିଶେଷର ବଶୀଭୂତ । ସେହି ରସ ବା ଭାବ,ପାଞ୍ଚପ୍ରକାର-ଶାନ୍ତ, ଦାସ୍ୟ, ସଖ୍ୟ, ବାତ୍ସଲ୍ୟ ଓ ମଧୁର ବା କାନ୍ତା । ଉପାସନାର ପୂର୍ଣ୍ଣ ବିକାଶ ହେଲେ, ଶାନ୍ତ, ଦାସ୍ୟ, ସଖ୍ୟ, ବାତ୍ସଲ୍ୟ ଓ ମଧୁର ଏହି ପଞ୍ଚଭାବ ଦୃଷ୍ଟ ହୁଏ । ମଧୁର ବା କାନ୍ତାଭାବ ସର୍ବାପେକ୍ଷା ଶ୍ରେଷ୍ଠ ସତୀସ୍ତ୍ରୀ ଯେପରି ପ୍ରିୟପତିଙ୍କୁ ଦେହ, ମନ ପ୍ରଭୃତି ସମର୍ପଣ କରନ୍ତି, ସେହିପରି ଭାବରେ ଭଗବାନଙ୍କୁ ଆତ୍ମ ସମର୍ପଣ କରିବାହିଁ ଶ୍ରେଷ୍ଠସାଧନ । ଏଥିରେ ଶାନ୍ତରସର ଅଚଞ୍ଚଳତା,

ଦାସ୍ୟର ସେବା, ସଖ୍ୟର ବିଶ୍ୱାସ, ବାତ୍ସଲ୍ୟର ସ୍ନେହ ଏବଂ କାନ୍ତାର ଆତ୍ମସମର୍ପଣ ସମସ୍ତ ଅଛି । ସୁତରାଂ ସୂକ୍ଷ୍ମରୂପେ ଦେଖିବାକୁ ଗଲେ ଏହି କାନ୍ତାଭାବ କେବଳ ସର୍ବଶ୍ରେଷ୍ଠ ।

୧୩—ପ୍ରଥମେ ସାଧନଭକ୍ତି, ପରେ ଭାବଭକ୍ତି, ତାହା ପରେ ପ୍ରେମଭକ୍ତି । ଭାବର ଅପର ଏକ ନାମ ରତି । କିନ୍ତୁ ତାହା କେବଳ ତନ୍ମୟ ଅବସ୍ଥାରେ ହୋଇଥାଏ ।

୧୪—କୃଷ୍ଣକୃପାରେ ରତିର ଉତ୍ପତ୍ତି, କିନ୍ତୁ ତାହା ରକ୍ଷାଦେବା କଠିନ । ସାଧୁସଙ୍ଗରେ ରତି ପୁଷ୍ଟ ହୁଏ । ସ୍ୱେଦ, କମ୍ପ, ଅଶ୍ରୁ, ପୁଲକ, ବିବର୍ଣ୍ଣତା, ଇତ୍ୟାଦି ରତିର ଲକ୍ଷଣ ।

୧୫—ରତି ଏହି ଦୁଇ ପ୍ରକାର-ଭଗବଦ୍ଭକ୍ତ ରତି, ଛାୟାରତି, ଜଡ଼ରତି ଓ କପଟରତି । ଭଗବଦ୍‌ରତିର କିଛି ଉଦୟ ହେଲେ ତାହାକୁ ଛାୟାରତି କହନ୍ତି । ଆଉ ମଦ୍ୟପାୟୀ, ବେଶ୍ୟାଦକ୍ତ ଓ ପ୍ରଣୟୀର ଯେଉଁ ଲକ୍ଷଣ, ତାହା ଜଡ଼ ରତିର ଲକ୍ଷଣ, ସଙ୍କୀର୍ତ୍ତନରେ ଲୋକଙ୍କୁ ଦେଖାଇବା ପାଇଁ ଯେ ଧୂଳ୍ୟବଲୁଣ୍ଠନ ଓ ଭ୍ରୂଷ୍ଟାନାସାର ସ୍ଥାନି ଦର୍ଶନରେ ଯେ ପୁଲକ, ତାହା କପଟ ରତିର ଲକ୍ଷଣ ଜାଣିବ ।

୧୬—କୌଣସି କୌଣସି ବୈଷ୍ଣବ, ବୈଷ୍ଣବ ଧର୍ମକୁ ଶ୍ରେଷ୍ଠ ମନେ କରନ୍ତି, କିନ୍ତୁ ନିଜେ ବୈଷ୍ଣବ ନୁହନ୍ତି । କେହି ବୈଷ୍ଣବ ଚିହ୍ନ ଧାରଣ କରନ୍ତି, କିନ୍ତୁ ଯଥାର୍ଥ ବୈଷ୍ଣବ ନୁହନ୍ତି । ପୁଣି କେହି ବୈଷ୍ଣବ ବଂଶରେ ଜନ୍ମ ଗ୍ରହଣ କରିଅଛନ୍ତି । ସମସ୍ତ ବୈଷ୍ଣବଙ୍କ ପରି, କିନ୍ତୁ ଯଥାର୍ଥ ବୈଷ୍ଣବ ହୋଇପାରି ନାହାନ୍ତି । ଏହି ସମସ୍ତ ବୈଷ୍ଣବ-ପକ୍ଷୀୟ ସତ୍ୟ, କିନ୍ତୁ ଏକମାତ୍ର ଭକ୍ତଙ୍କ ସଙ୍ଗରେ ଋଷ୍ଟାଳାପ କରିବେ, ଅନ୍ୟର ସହିତ କରିବେ ନାହିଁ ।

୧୭—ହରି ନାମ ଶ୍ରବଣ ମାତ୍ରେ ପାପ ଦୂର ହୋଇ ଈଶ୍ୱର ପବିତ୍ର ବୋଧ ହୁଏ । ଯେଉଁଠାରେ କୌଣସି ବିଷୟ ଉପଲବ୍ଧ ହେବୁ ତାହା ନ ହୁଏ ସେଠାରେ ବାରଂବାର କୃଷ୍ଣନାମ ଉଚ୍ଚାରଣ କରୁଥିବ । କ୍ରମେ ଈଶ୍ୱରର ପବିତ୍ରତା ସମ୍ପାଦିତ ହେବ । ମନ ଯେତେବେଳେ ଭଗବାନଙ୍କଠାରେ ଏକନିଷ୍ଠ ହୁଏ, ସେତେବେଳେ ସମସ୍ତ ସହଜ ହୋଇ ପଡ଼େ । ଆଉ କିଛିର ଅପେକ୍ଷା ରହେ ନାହିଁ ।

୧୮—ଅନ୍ତରେନ୍ଦ୍ରିୟ ବଶୀଭୂତ କରିବାର ନାମ ଶମ, ବାହ୍ୟେନ୍ଦ୍ରିୟ ବଶୀଭୂତ କରିବାର ନାମ ଦମ, ଦୁଃଖାଦି ସହ୍ୟ କରିବାକୁ ଅଭ୍ୟାସ କରିବାର ନାମ ତିତିକ୍ଷା ଏବଂ ସମସ୍ତ ନଶ୍ୱର ବସ୍ତୁକୁ ଅବସ୍ତୁ ଜ୍ଞାନ କରିବାର ନାମ ବୈରାଗ୍ୟ ।

୧୯—ତିତିକ୍ଷା ଓ ବୈରାଗ୍ୟ ବୈଷ୍ଣବ ସନ୍ନ୍ୟାସୀମାନଙ୍କର ପ୍ରଧାନ ଧର୍ମ ।

୨୦—ଶ୍ରଦ୍ଧା, ସାଧୁସଙ୍ଗ, ଭଜନ ଓ ନିବୃତ୍ତି ଇତ୍ୟାଦି ଦ୍ୱାରା ଯେତେବେଳେ ଭଗବତ୍ ରତିର ଉଦୟ ହୁଏ, ସେତେବେଳେ ବିରକ୍ତି ନାମରେ ଏକ ଧର୍ମ ବୈଷ୍ଣବ-ହୃଦୟରେ ଉଦୟ ହୋଇଥାଏ । ସେହି ସମୟରେ ବୈଷ୍ଣବଗଣ କୌପୀନାଦି ଧାରଣ ଓ ଭିକ୍ଷା ଦ୍ୱାରା ଜୀବନ ଯାତ୍ରା ନିର୍ବାହ କରନ୍ତି । ଏହା ବୈଷ୍ଣବମାନଙ୍କର ଭେକ । ଏହିରୂପ ଭେକ ଦୁଇ ପ୍ରକାର,—ଭାବଜନିତ ବିରକ୍ତି ଲାଭ କରି କୌଣସି ସାଧୁ ନିକଟରୁ ଭେକ ଗ୍ରହଣ ଅଥବା ସ୍ୱୟଂ ସେହିପରି ଭାବରେ ଆଚରଣ ।

୨୧—ଯେ ପର୍ଯ୍ୟନ୍ତ ଗୃହତ୍ୟାଗ କରିବାକୁ ଅକ୍ଷମ, ସେ ପର୍ଯ୍ୟନ୍ତ କାମନା ଏବଂ ତାହାର ଶେଷଫଳ ଦୁଃଖଜନକ ଓ ମନ୍ଦ ଜାଣି ଭଗବାନଙ୍କୁ ପ୍ରୀତି ପୂର୍ବକ ଭଜନା କର । ଏହା ଗୃହସ୍ଥ ବୈଷ୍ଣବର ଲକ୍ଷଣ ।

୨୨—ଯେତେବେଳେ ଭେକ ଧାରଣ କରିବ ସେତେବେଳେ ଆଶ୍ରମ ସକଳ ପରିତ୍ୟାଗ କରି ସକଳ ବିଧିର ଅତୀତ ଯେ ପରମହଂସ ବୈଷ୍ଣବ ଆଶ୍ରମ, ସେଥିରେ ବିଚରଣ କରିବ ।

୨୩—ଜଳର ଧର୍ମ ଶୀତଳତା, ଅଗ୍ନିର ଧର୍ମ ଉତ୍ତାପ ଏବଂ ମନୁଷ୍ୟର ଧର୍ମ ଶୁଦ୍ଧ ପ୍ରେମ ।

୨୪—ସଂସାରରୂପ ସର୍ପ ଯାହାକୁ ଦଂଶନ କରିଅଛି, ତାହାର ଆଉ ଅନ୍ୟ ଔଷଧ ନାହିଁ । ବୈଷ୍ଣବ ମନ୍ତ୍ର କୃଷ୍ଣ ନାମକୁ ଜପ କରୁଁ କରୁଁ ସେ ପରିତ୍ରାଣ ପାଇବ ।

୨୫—ତ୍ରେତା ଓ ଦ୍ୱାପରରେ ଧ୍ୟାନ, ଯଜ୍ଞ ଓ ପୂଜା ଦ୍ୱାରା ବ୍ରହ୍ମଲାଭ ହୋଇଥିଲା । କଳିରେ କେବଳ ନାମ ସଂକୀର୍ତ୍ତନ ଦ୍ୱାରା ଭଗବାନଙ୍କୁ ଲାଭ କରି ହେବ ।

୨୬—'ହରି' ଏହି ଦୁଇଟି ଅକ୍ଷର ଯାହାର ଜିହ୍ୱା ଅଗ୍ରରେ ସତତ ବର୍ତ୍ତମାନ, ତାହାର ଆଉ କୁରୁକ୍ଷେତ୍ର, କାଶୀ ଆଦି ତୀର୍ଥର ପ୍ରୟୋଜନ କ'ଣ ?

୨୭—ବହୁ ଶାସ୍ତ୍ରାଲୋଚନା କରି, ବହୁ ଦିନରୁ ବାରଂବାର ବିଚାର କରି ଏହା ଏକମାତ୍ର ସିଦ୍ଧାନ୍ତ ହୋଇଅଛି ଯେ, ନିତ୍ୟ ନାରାୟଣଙ୍କର ଧ୍ୟାନ କରିବ ।

୨୮—ଧ୍ୟାନରେ ଯେପରି ପାପ ଶୋଧନ ହୁଏ, ସେପରି ଆଉ କାହିଁରେ ହୁଏ ନାହିଁ । ହରିନାମ ରୂପ ଅଗ୍ନି ପୁନର୍ଜନ୍ମରୂପ ପାପକୁ ଦଗ୍ଧ କରି ପକାଏ ।

୨୯—ବୃକ୍ଷ ମଧ୍ୟରେ ବହ୍ନିଅଗ୍ନି ଯେପରି ମନ୍ଦ ମନ୍ଦ ପବନ ପାଇ ସମସ୍ତ ଦଗ୍ଧ କରିପକାଏ, ସେହିପରି ଚିତ୍ତସ୍ଥିତ ବିଷ୍ଣୁ, ଯୋଗୀମାନଙ୍କର ଅନ୍ତରସ୍ଥ ସମୁଦାୟ ପାପ ଦଗ୍ଧ କରିଥାଆନ୍ତି ।

୩୦—ଇହ ସଂସାରରେ ସମସ୍ତଙ୍କର କର୍ମାନୁସାରେ ଫଳ ଲାଭ ହୋଇଥାଏ । କିନ୍ତୁ ସିଦ୍ଧ ଧାନ୍ୟରୁ ଯେପରି ଅଙ୍କୁର ହୁଏ ନାହିଁ, ସେହିପରି ବୈଷ୍ଣବଙ୍କଠାରେ କଦାପି କର୍ମଫଳ ଫଳିପାରେ ନାହିଁ । ସେହି ଭକ୍ତବତ୍ସଳ କୃପାକର ଭକ୍ତର କର୍ମଫଳ ଦୂରରୁ ସଂହାର କରି ଥାଆନ୍ତି ।



## ପରମ ହଂସ ଦେବଙ୍କର କେତୋଟି ଉପଦେଶ ।

ଥରେ ଡୁବ ରତ୍ନ ନ ପାଇଲେ ରତ୍ନାକରକୁ ରତ୍ନହୀନ ମନେ କରନାହିଁ । ଧୈର୍ଯ୍ୟ ଧାରଣ ପୂର୍ବକ ସାଧନାରେ ପ୍ରବୃତ୍ତ ହୋଇଥାଅ, ଯଥା ସମୟରେ ଈଶ୍ୱରଙ୍କର କୃପା ତୁମ୍ଭ ଉପରେ ଅବତୀର୍ଣ୍ଣ ନିଶ୍ଚୟ ହେବ ।

ଏକ ବ୍ୟକ୍ତି ସମସ୍ତ ଦିବସ ଇକ୍ଷୁକ୍ଷେତ୍ରରେ ଜଳ ସେଚନ କରି ଅବଶେଷରେ ଦେଖିଲା ଯେ, ବିନ୍ଦୁମାତ୍ର ଜଳ କ୍ଷେତ୍ରରେ ପ୍ରବେଶ କରିନାହିଁ, ଦୂରରେ କେତେଗୁଡ଼ିଏ ଗର୍ତ୍ତ ଥିଲା, ତାହା ଦ୍ୱାରା ସମୁଦାୟ ଜଳ ବାହାର ହୋଇ ଯାଇଛି । ସେହିପରି ଯେ ବିଷୟ ଆକାଂକ୍ଷା, ପାର୍ଥିବ ମାନସମ୍ଭ୍ରମ, ସୁଖ-ସ୍ୱଚ୍ଛନ୍ଦତାର ପ୍ରତି ଆସକ୍ତି ରଖି ଉପାସନା କରୁଅଛନ୍ତି, ଆଜୀବନ ଉପାସନା କରି ଅବଶେଷରେ ସେ ଦେଖିପାରିବେ ଯେ, ସେହି ସକଳ ଆସକ୍ତି ରୂପ ଛିଦ୍ର ଦେଇ ତାହାଙ୍କର ସମୁଦାୟ ଉପାସନା ବାହାରି ହୋଇ ଯାଇଛି; ସେ ଯେଉଁ ମନୁଷ୍ୟ, ସେହି ମନୁଷ୍ୟ ପଡ଼ି ରହିଛନ୍ତି, ଏକବିନ୍ଦୁ ଉନ୍ନତ କରି ପାରିନାହାନ୍ତି ।

ଏ ସଂସାର ଈଶ୍ୱରଙ୍କର ଲୀଳାଭୂମି । ଲୀଳାମୟ ହରି ନାନାଭାବରେ ଏଠାରେ ସର୍ବଦା ଲୀଳା ପ୍ରକାଶ କରୁଅଛନ୍ତି । ମାତା ଯେପରି ସନ୍ତାନ ହସ୍ତରେ ଲାଲ ଚୁଚୁମା କାଠି ଦେଇ ଭୁଲାଇ ରଖନ୍ତି, ଈଶ୍ୱର ସେହିପରି ନାନା ପଦାର୍ଥ ଦେଇ ଆମ୍ଭମାନଙ୍କୁ ଭୁଲାଇ ରଖି ଅଛନ୍ତି । ସନ୍ତାନ ଚୁଚୁମା କାଠି ପକାଇ ଦେଇ ମା ବୋଲି ଚିତ୍କାର କଲେ, ମାତା ତତ୍କ୍ଷଣାତ୍ ଯେପରି ତାହା ନିକଟରେ ଉପସ୍ଥିତ ହୁଅନ୍ତି, ଆମ୍ଭେମାନେ ମଧ୍ୟ ଯଦି ପାର୍ଥିବ ମମତାବର୍ଜିତ ହୋଇ ବ୍ୟାକୁଳ ଅନ୍ତରରେ ଈଶ୍ୱରଙ୍କ ପାଇଁ କ୍ରନ୍ଦନ କରିପାରୁଁ, ତେବେ ସେ ମଧ୍ୟ ତତ୍କ୍ଷଣାତ୍ ଆମ୍ଭମାନଙ୍କ ନିକଟରେ ଉପସ୍ଥିତ ହୁଅନ୍ତି ।

ଗେରୁଆ ବସନ ସହିତ ପବିତ୍ର ଭାବର ସମ୍ବନ୍ଧ ଅଛି । ଯେପରି ଚଟି ଜୋତା ଓ ଛିନ୍ନବସନ ପରିଧାନ ପୂର୍ବକ ରାସ୍ତାରେ ବୁଲିଲେ ସହଜେ ମନରେ ଦୀନଭାବର ଉଦୟ ହୁଏ, ଏବଂ ପେଣ୍ଟାଲୁନ ଓ ବୁଟ୍ ଜୋତା ଗୋଡ଼ରେ ଦେଲେ ସହଜେ ମନରେ ଅହଙ୍କାର ଉଦୟ ହୁଏ, ସେହିପରି ଗେରୁଆ ବସନ ପରିଧାନ କଲେ ସହଜେ ମନରେ ସାଧନାର ଉପଯୋଗୀ ଭାବ ଉପସ୍ଥିତ ହୁଏ ।

ତର୍କ କର ନାହିଁ । ତୁମ୍ଭେ ତୁମ୍ଭର ମତ ଉପରେ ଯେପରି ନିର୍ଭର କର, ଅପରକୁ ତାହାର ମତ ଉପରେ ସେହିପରି ନିର୍ଭର କରିବାକୁ ଦିଅ, ବୃଥା ତର୍କରେ କିଛି ଫଳ ହେବ ନାହିଁ, ଈଶ୍ୱରଙ୍କର କୃପା ହେଲେ ସମସ୍ତେ ଆପଣା ଆପଣା ଭୁଲ ବୁଝି ପାରିବେ ।

ଅପରକୁ ବଧ କରିବାକୁ ହେଲେ ବିବିଧ ଅସ୍ତ୍ରର ଆବଶ୍ୟକ ହୁଏ, କିନ୍ତୁ ଆତ୍ମହତ୍ୟା ସାମାନ୍ୟ ଗୋଟିଏ ନହରୁଣୀ ଦ୍ୱାରା ସାଧିତ ହୋଇପାରେ: ଲୋକଶିକ୍ଷା ଦେବାକୁ ହେଲେ ଅନେକ ଶାସ୍ତ୍ରପାଠ ଆବଶ୍ୟକ ହୁଏ ସତ୍ୟ; କିନ୍ତୁ ନିଜର ଧର୍ମଲାଭ ସାମାନ୍ୟ ଜ୍ଞାନଦ୍ୱାରା ହୋଇପାରେ ।

ନିଜ ପ୍ରଶଂସା ଶ୍ରବଣେ ନ ବଳାଅ ମତି, ମନ ମୋଟ କଲେ ଶେଷେ ମିଳିବ ଅଖ୍ୟାତି ।

ଅଳ୍ପବୟସ୍କ ବାଳକକୁ ଯେପରି ରମଣ-ସୁଖ ବୁଝାଇବା ଅସମ୍ଭବ, ସେହିପରି ବିଷୟାସକ୍ତ, ମାୟାମୁଗ୍ଧ ସଂସାରୀ ମାନଙ୍କୁ ଧର୍ମର ନିର୍ଗୀସ୍ଥ ପଥ ବୁଝାଇବା ଅସମ୍ଭବ ।

ବ୍ୟାଘ୍ର ମଧ୍ୟରେ ଈଶ୍ୱର ଅଛନ୍ତି ସତ୍ୟ, କିନ୍ତୁ ବ୍ୟାଘ୍ରର ସମ୍ମୁଖକୁ ଯିବା ଉଚିତ ନୁହେ । କୁଲୋକ ମଧ୍ୟରେ ଈଶ୍ୱର ଅଛନ୍ତି ସତ୍ୟ, କିନ୍ତୁ କୁଲୋକର ସଙ୍ଗ କରିବା ଉଚିତ ନୁହେ ।

ଜଳ ଓ ଦୁଗ୍ଧ ଏକତ୍ର ରଖିଲେ ସମସ୍ତ ମିଶ୍ରିତ ହୋଇ ଯାଏ, ଦୁଗ୍ଧର ଉତ୍କଟତା ଆଉ ରହେ ନାହିଁ । ଧର୍ମପିପାସୁ ନବୀନ ସାଧକ, ସଂସାରର ସକଳ ପ୍ରକାର ଲୋକଙ୍କ ସହିତ ମିଶିଲେ ଆପଣାର ଧର୍ମଭାବ ହରାଇ ବସେ, ତାହାର ପୂର୍ବର ବିଶ୍ୱାସ, ଉତ୍ସାହ କେଉଁଠି ଚାଲିଯାଏ, ସେ କିଛି ଜାଣିପାରେ ନାହିଁ ।

ଜଳ ଓ ଦୁଗ୍ଧ ମିଶ୍ରିତ ହୋଇଯାଏ ସତ୍ୟ, କିନ୍ତୁ ଦୁଗ୍ଧକୁ ନବନୀତରେ ପରିଣତ କରି ପାରିଲେ, ଆଉ ଜଳ ସହିତ ମିଶ୍ରିତ ହେବାର ସମ୍ଭାବନା ଥାଏ ନାହିଁ । ସଚ୍ଚିଦାନନ୍ଦ ହରିଙ୍କୁ ଥରେ ହୃଦୟଙ୍ଗମ କରିପାରିଲେ, ଶତସହସ୍ର ବଦ୍ଧ ଜୀବମଧ୍ୟରେ ବାସ କଲେ ସୁଦ୍ଧା ଆଉ ତାହାର ବିଶ୍ୱାସ କ୍ଷୀଣ ହେବ ନାହିଁ ।

ସମସ୍ତ ପିଷ୍ଟକ ଏକ ତଣ୍ଡୁଳ ଚୂର୍ଣ୍ଣରେ ନିର୍ମିତ, କିନ୍ତୁ ପୁର ପ୍ରଭେଦରେ ପିଷ୍ଟକ ଭଲମନ୍ଦ ହୋଇଥାଏ । ସକଳ ମନୁଷ୍ୟ ଏକ ଉପାଦାନରେ ନିର୍ମିତ ସତ୍ୟ, କିନ୍ତୁ ଆତ୍ମାର ପବିତ୍ରତା ଅନୁସାରେ ମନୁଷ୍ୟ ଭଲମନ୍ଦରୂପେ ପରିଗଣିତ ହୁଏ ।



## ସାଧୁ ବଚନ ସଂଗ୍ରହ ବା ଶତ ଉପଦେଶ ।

୧—ଅନ୍ନ-ଜଳ ନିୟମିତରୂପେ ଆହାର କଲେ ରକ୍ତ ଦେହ କ୍ରମେ ଯେପରି ବଳବାନ୍ ହୋଇଥାଏ, ସେହିପରି ଈଶ୍ୱରଙ୍କର ବାକ୍ୟ ଅର୍ଥାତ୍ ସାଧୁ ମହାଜନମାନଙ୍କର ଉପଦେଶ ସକଳ ଗ୍ରହଣ କରି ପାଳନ କଲେ, ଆତ୍ମା ବଳବାନ୍ ହୋଇଥାଏ ।

୨—ରୋଗୀମାନଙ୍କର ଆରୋଗ୍ୟାର୍ଥ ଯେପରି ଶ୍ରୀ ଶ୍ରୀ ଈଶ୍ୱର କୃପାକରି ନାନା ଔଷଧ ସୃଷ୍ଟି କରିଅଛନ୍ତି, ସେହିପ୍ରକାର ପାପରୁ ମୁକ୍ତ ହେବା ନିମିତ୍ତ, ତାହାଙ୍କର ପବିତ୍ର ବାକ୍ୟ ରହିଅଛି । ତାହାଙ୍କର ଆଜ୍ଞା ସକଳ ଗ୍ରହଣ ପାଳନ କରି ଓ ତାହାଙ୍କୁ ଆରାଧନା ଓ ସାଧନା ଏବଂ ମନ ଦେଇ ପ୍ରେମ କଲେ, ପାପରୁ ଅବଶ୍ୟ ମୁକ୍ତ ହେବେ ।

୩—ରକ୍ତ ଭଲ ଥାଉଁ ଥାଉଁ ଚିକିତ୍ସା କର, ରକ୍ତ ମନ୍ଦ ହେଲେ ଆଉ ଦେହର ରକ୍ଷା ନାହିଁ । ପୁଣି ଭଲ ଚିକିତ୍ସକର ବ୍ୟବସ୍ଥା ନ ହେଲେ, ଯେପରି ଦେହ ରକ୍ଷା ହୁଏ ନାହିଁ, ସେହିପରି ବର୍ତ୍ତମାନ ସମୟ ଥାଉଁ ଥାଉଁ ପବିତ୍ର ମହାଜନମାନଙ୍କର ଉପଦେଶମାନ ଗ୍ରହଣ କରି ପାଳନ ନ କଲେ ପାପରୁ କେହି ମୁକ୍ତ ହୁଏ ନାହିଁ ।

୪—ସାବଧାନ ହୁଅ, ଯେପରି ରୋଗ ଉପରେ କୁପଥ୍ୟ ନ ହୁଏ, ତାହା ହେଲେ ଆଉ ଦେହର ରକ୍ଷା ନାହିଁ । ସେହିପରି ପାପ ଜାଣି ପାପ କଲେ ଆଉ ଆତ୍ମାର ନିସ୍ତାର ନାହିଁ ।

୫—ସକଳ ଶିଶୁ ସନ୍ତାନ ମାତାର ହସ୍ତ କିମ୍ବା ଅଞ୍ଚଳ ଧରି ଚାଲିଲେ, ସେମାନଙ୍କର ଯେପରି କୌଣସି ଭୟ ନ ଥାଏ, ସେହିପରି ଯଦି ଆମ୍ଭେମାନେ ଶିଶୁ ପରି ହୋଇ ଆମ୍ଭମାନଙ୍କର ସ୍ୱର୍ଗସ୍ଥ ପରମ-ପବିତ୍ର ପିତାଙ୍କ କଥାର ବଶରେ ଅର୍ଥାତ୍ ତାହାଙ୍କ ଆଜ୍ଞାନୁଯାୟୀ ଚଳୁ, ତାହା ହେଲେ ଆଉ ଆମ୍ଭମାନଙ୍କର କୌଣସି ବିପଦ କିମ୍ବା କ୍ଲେଶ ଓ ପାପ ଘଟିପାରେ ନାହିଁ ।

୬—ସାଧୁ ପବିତ୍ରାତ୍ମାମାନଙ୍କର ଉପଦେଶମାନ ଗ୍ରହଣ କର । ସେମାନଙ୍କ ପଥରେ ଚାଲିଲେ ସାଧୁ ଓ ପବିତ୍ର ହୋଇପାରିବ । ସେମାନଙ୍କ ସାହାଯ୍ୟ ବିନା କେହି ସିଦ୍ଧ ହୋଇ ପାରେନାହିଁ ଏବଂ ସଦ୍‌ଗୁରୁ ଭିନ୍ନ ଅନ୍ୟ କେହି ଧର୍ମର ପଥ ଦେଖାଇ ପାରେ ନାହିଁ ।

୭—ଆତ୍ମା ଓ ଦେହର ତତ୍ତ୍ୱ ନ କଲେ ଧର୍ମାଧର୍ମ ଓ ପାପ ପୁଣ୍ୟର ବୋଧ ହୁଏ ନାହିଁ, ସତ୍ୟରେ ଧର୍ମର ଉତ୍ପତ୍ତି, ଦୟାରେ ବୃଦ୍ଧି, କ୍ଷମାରେ ସ୍ଥିତି ଏବଂ ଲୋଭରେ ବିନାଶ ।

୮—ଧର୍ମର ଏକମାତ୍ର ପଥ, ବଡ଼ ଦୁର୍ଗମ ଏବଂ ସଂକୀର୍ଣ୍ଣ, ଅନେକେ ପ୍ରବେଶ କରିବାକୁ ଚେଷ୍ଟା କରନ୍ତି, କିନ୍ତୁ

ଈଶ୍ୱରଙ୍କର କୃପା ବିନା କେହି ଦେଖି ପାରନ୍ତି ନାହିଁ କି ଯାଇ ପାରନ୍ତି ନାହିଁ । ଯହିଁରେ ତାଙ୍କର କୃପା ହୁଏ, ତାହା ସମସ୍ତଙ୍କର ପ୍ରଥମେ ଚେଷ୍ଟା କରିବା ଅତି ଆବଶ୍ୟକ ଏବଂ କର୍ତ୍ତବ୍ୟ ।

୯—କାମ, କ୍ରୋଧ, ଲୋଭ, ମୋହ, ମଦ ଓ ମାତ୍ସର୍ଯ୍ୟ ଏହି ଷଡ଼ରିପୁକୁ ଜୟ ଏବଂ ମନକୁ ବଶୀଭୂତ ନ କଲେ ଓ ବୈରାଗ୍ୟ ପଥର ପଥିକ ନ ହେଲେ, ଧର୍ମର ପଥ କେହି ଦେଖି ପାରନ୍ତି ନାହିଁ ।

୧୦—ସାଧୁ, ପାପୀ, ନାସ୍ତିକ, ଧନୀ ଓ ଦୁଃଖୀ ସମସ୍ତଙ୍କୁ ସମଭାବରେ ଦେହ ରକ୍ଷା କରି ଯିବାକୁ ହେବ । ଜନ୍ମିଥିଲେ ମୃତ୍ୟୁ ଅବଶ୍ୟ ଅଛି, ଏଥିରେ ଅତି ସନ୍ଦେହ ନାହିଁ, କିନ୍ତୁ କେଉଁଠାକୁ ଯିବାକୁ ହେବ, ତାହା ଅନେକେ ଜାଣି ଜାଣୁନାହାନ୍ତି, ମାନବ ଐଶ୍ୱର୍ଯ୍ୟର ଅହଙ୍କାରରେ ଉନ୍ମତ୍ତ ହୋଇ ମନେ କରେ ଯେ, ଆଉ ମୋତେ ଯିବାକୁ ହେବ ନାହିଁ କିନ୍ତୁ ଯେତେବେଳେ କାଳ ଉପସ୍ଥିତ ହେବ ଏବଂ ମୃତ୍ୟୁ ଶଯ୍ୟାରେ ଶୟନ କରିବାକୁ ହେବ, ସେତେବେଳେ ଧନ, ଐଶ୍ୱର୍ଯ୍ୟ ଏବଂ ପରିବାର ସକଳ କେଉଁଠି ପଡ଼ି ରହିବେ ଏବଂ କେଉଁଠାକୁ ଯିବାକୁ ହେବ ତାହା ଜାଣି ପାରିବ । ଅତଏବ ବର୍ତ୍ତମାନ ସମୟ ଥାଉଁ ଥାଉଁ ନିଜ ନିଜର ଯିବାର ପଥ ଚିହ୍ନିବା ଏବଂ ଜାଣିବା ଅତି ଆବଶ୍ୟକ ।

୧୧—ଅନ୍ନ, ମିଷ୍ଟାନ୍ନ, ଫଳ, ବସ୍ତ୍ର, ଧନ, କଉଡ଼ି, ଫୁଲ ଓ ଓ ଚନ୍ଦନ ଦେଇ ପୂଜା ଓ ଆରାଧନା କଲେ ଯେ ସେ ମିଳନ୍ତି, ତାହା ନୁହେଁ, ସେ ଏହି ସକଳ ଦ୍ରବ୍ୟ ଚାହାନ୍ତି ନାହିଁ, କେବଳ ମନ ଚାହାନ୍ତି, ଅତଏବ ମନକୁ ସ୍ଥିର କରି ଭକ୍ତି-ପୁଷ୍ପ ଦେଇ ତାହାଙ୍କୁ ପୂଜା, ଆରାଧନା ଏବଂ ସାଧନା କଲେ ଅବଶ୍ୟ ତାହାଙ୍କୁ ପାଇ ପାରିବା ।

୧୨—ଟଙ୍କା କଉଡ଼ିରେ ଦେହର ରୋଗର ପ୍ରାୟଶ୍ଚିତ୍ତ ହୁଏ, କିନ୍ତୁ ପାପ—ରୋଗର ପ୍ରାୟଶ୍ଚିତ୍ତ ହୁଏ ନାହିଁ । ଏହି ରୋଗର ଔଷଧ କେବଳ ପାପକୁ ଘୃଣା କରି ନିତ୍ୟ ଶ୍ରୀହରିଙ୍କର ଆରାଧନା, ସାଧନା ଏବଂ ତାହାଙ୍କ ନାମାମୃତ ପାନ ।

୧୩—ମୃତ୍ୟୁ ଧାର୍ମିକମାନଙ୍କର ବନ୍ଧୁ ଓ ପାପୀମାନଙ୍କର କାଳସ୍ୱରୂପ । ପାପୀମାନେ ମୃତ୍ୟୁକୁ ଭୟ କରନ୍ତି, ଭଲ ସାଧକମାନେ ମୃତ୍ୟୁକୁ କ୍ରମେ କ୍ରମେ ଜୟ କରନ୍ତି ।

୧୪—ଅଗ୍ନି ଦ୍ୱାରା ଯେପରି ସୁବର୍ଣ୍ଣ ପରୀକ୍ଷିତ ହୁଏ, ଇହକାଳରେ ନାନାବିଧ ଘଟଣା ଦ୍ୱାରା ମନୁଷ୍ୟ ସେହିପରି ପରୀକ୍ଷିତ ହୋଇଥାଏ ।

୧୫—ଅଦ୍ୟ ତୁମ୍ଭେ ସ୍ୱୀୟ ଜୀବନର ପାପ ଓ ଦୁର୍ବଳତା ସ୍ୱୀକାର କଲ ସତ୍ୟ, କିନ୍ତୁ ଯାହା ସ୍ୱୀକାର କଲ, ସ୍ମରଣ ରଖ କାଲି ପୁଣି ତୁମ୍ଭେ ତାହା କରିବ ।

୧୬—ଅନନ୍ତ କାଳର ସମ୍ବଳ ନିତ୍ୟ ଧନ ପାଇଁ ଚେଷ୍ଟା ନ କରି, କ୍ଷଣସ୍ଥାୟୀ ଐହିକ ସୁଖରେ ପ୍ରମତ୍ତ ରହିବା ଅସାରତା ମାତ୍ର ।

୧୭—ଅନ୍ତରେ ସ୍ୱଚ୍ଛ ଏବଂ ସ୍ୱାଧୀନ ଥାଅ, କୌଣସି ସୃଷ୍ଟବସ୍ତୁ ସହିତ ନିଜକୁ ଜଡ଼ିତ କରନାହିଁ । ଅନ୍ତରେ ବିବେକ ଉଜ୍ଜ୍ୱଳ ନ ହେଲେ ମନୁଷ୍ୟ ନିରାପଦରେ ଆନନ୍ଦ ଉପଭୋଗ କରିପାରେ ନାହିଁ ।

୧୮—ଅନ୍ୟର ପ୍ରତିପତ୍ତିଲାଭ ଓ ଉନ୍ନତି ଏବଂ ଆପଣାର ଅସମ୍ମାନ ଓ ଅବନତି ଦେଖି ଦୁଃଖିତ ହୁଅ ନାହିଁ ।

୧୯—ଅନ୍ୟ ନିକଟରୁ ଯେବେ ସହିଷ୍ଣୁତା ଆଶା କର, ତେବେ ଅନ୍ୟ ପ୍ରତି ସହିଷ୍ଣୁ ହୁଅ ।

୨୦—ଅନେକ କ୍ଷୁଦ୍ରଚେତା ଲୋକ କହିଥାନ୍ତି ଯେ, ସେହି ଲୋକଟି କିପରି ସୁଖୀ, କିପରି ସମ୍ଭ୍ରାନ୍ତ ଓ ମହତ୍ତ୍ୱ-ବ୍ୟକ୍ତି, କିନ୍ତୁ ଟିକିଏ ଚିନ୍ତି ଦେଖିଲେ ଜାଣି ପାରିବ ଯେ, ସଂସାରର ସମ୍ପତ୍ତିସବୁ ଅନିଶ୍ଚିତକର, ଅସ୍ଥାୟୀ ଭୟଜନକ ଏବଂ ଦୁଃଖଉତ୍ପାଦକ । ଐହିକ ସମ୍ପତ୍ତିର ଅଧିକାରୀ ହେଲେ ମନୁଷ୍ୟ ସୁଖୀ ହୁଏନାହିଁ ।

୨୧—ଆମ୍ଭମାନଙ୍କ ମନରେ ଅନେକପ୍ରକାର ଆକାଂକ୍ଷା ଉଦିତ ହୋଇ ଆମ୍ଭମାନଙ୍କୁ ବଳପୂର୍ବକ ନାନାଆଡ଼କୁ ଟାଣେ, ଏଥିରେ ଆମ୍ଭମାନଙ୍କୁ ସମୟ ସମୟରେ ବିପଦରେ ପଡ଼ିବାକୁ ହୁଏ, ସୁତରାଂ ତାହା ଦମନର ଚେଷ୍ଟା କରିବା ଉଚିତ ।

୨୨—ଅପରିମିତ ବ୍ୟୟ କଦାପି କରନାହିଁ । ଅପରିମିତ ବ୍ୟୟ କଲେ ଆଜୀବନ ଦୁଃଖ କଷ୍ଟ ମୋଚନ ହୁଏ ନାହିଁ,

ହେଁ ଜଳବୁଦ୍ବୁଦ ଦରବନ୍ଧୁତା ଭୂତ ଓ ସଙ୍ଗର ସାଥୀ ହୁଏ, ଅବଶେଷରେ ଋଣଜାଲରେ ଜଡ଼ିତ ହୋଇ ସର୍ବସ୍ୱାନ୍ତ ହେବାକୁ ହୁଏ ।

୨୩—ଅମୁକ କାହିଁକି କଷ୍ଟ ପାଏ, ଅମୁକ କାହିଁକି ସୁଖଭୋଗ କରେ, ଅମୁକର ବା କାହିଁକି ଏତେ ଉନ୍ନତ ଇତ୍ୟାଦି ବିଷୟ ଚିନ୍ତା ବା ତର୍କବିତର୍କ କରନାହିଁ । ଏମାନ ମାନବ ବୁଦ୍ଧିର ଅତୀତ । ଈଶ୍ୱରଙ୍କ ଅଭିସନ୍ଧିର ଗୂଢ଼-ଚକ୍ର ଜାଣିବାର ମନୁଷ୍ୟର ଅଧିକାର ନାହିଁ ।

୨୪—ଗାଳି ଓ ଅପମାନ ସହ୍ୟକରି ନ ପାରିଲେ ରାଗ ଦମନ କରିଯାଏ ନାହିଁ ।

୨୫—ଅସ୍ଥିର ବ୍ୟକ୍ତିର ସହିତ କଦାପି ଦେଣା-ପାଉଣା ସମ୍ବନ୍ଧ ରଖନାହିଁ ।

୨୬—ନିଜକୁ ଅନ୍ୟ ଅପେକ୍ଷା ଶ୍ରେଷ୍ଠ ଜ୍ଞାନ କରନାହିଁ, ତୁମ୍ଭେ ତ ଜାଣନାହିଁ, ତାହାଙ୍କର ସନ୍ତାନମଣ୍ଡଳୀମଧ୍ୟରେ କେଉଁ-ସ୍ଥାନ ଲାଭ କରିବ ।

୨୭—ଅମ୍ଭେମାନେ ଅନ୍ୟକୁ ନିର୍ଦ୍ଦୋଷ ଦେଖିବାକୁ ଚାହୁଁ, କିନ୍ତୁ ସ୍ୱୀୟ ଦୋଷ ସଂଶୋଧନ କରୁନାହୁଁ ।

୨୮—ଆପଣା ଉପରେ ନିର୍ଭର ନ କର, ଈଶ୍ୱରଙ୍କ ପ୍ରତି ନିର୍ଭର ସ୍ଥାପନ କର । ତୁମ୍ଭେ ସ୍ୱୀୟ କର୍ତ୍ତବ୍ୟ ସମ୍ପାଦନରେ ବ୍ରତୀ ହେଲେ, ଈଶ୍ୱର ତୁମ୍ଭର ସେହି ଶୁଭ ଇଚ୍ଛା ସମ୍ପାଦନରେ ସହାୟ ହେବେ ।

୨୯—ଅମ୍ଭମାନଙ୍କର ମନ ଏପରି ଦୁର୍ବଳ ଯେ, ଶୀଘ୍ର କଳଙ୍କିତ ହୋଇଯାଏ, କଥା କହିବା ପରେ ଅନେକ ସମୟରେ ଏପରି ମନେ ହୁଏ ଯେ, ହାୟ ! ଯେବେ ନୀରବ ରହିଥାନ୍ତି, ଯେବେ ଲୋକ ସମାଜକୁ ନ ଯାଇଥାନ୍ତି, ଆଲୋଚନାରେ ଯୋଗଦେଇ ନ ଥାନ୍ତି, ତାହା ହେଲେ ଭଲ ହୋଇଥାନ୍ତା ।

୩୦—ଅମ୍ଭେମାନେ କେବେ କେବେ ଦୁଃଖ ପାଉଁ, ତାହା ଭଲ, କାହିଁକିନା ତଦ୍ଦ୍ୱାରା ଆତ୍ମପରୀକ୍ଷାର ସୁଯୋଗ ଉପସ୍ଥିତ ହୁଏ ।

୩୧—ଅମ୍ଭେମାନେ ଯେ ପରବ୍ରହ୍ମଙ୍କଠାରୁ ଶାନ୍ତିଲାଭ କରି ପାରୁନାହୁଁ, ତାହାର କାରଣ ଏହି ଯେ, ଅମ୍ଭେମାନେ ଅନୁତାପିତ ହୋଇ ଶାନ୍ତି ଅନ୍ୱେଷଣ କରୁନାହୁଁ ; ଏହି ପୃଥିବୀର ଅସାର ସୁଖର ମାୟା ତ୍ୟାଗ କରୁନାହୁଁ ।

୩୨—ଇଚ୍ଛାନୁଯାୟୀ କାର୍ଯ୍ୟ କରି ନ ପାରିଲେ, କଦାପି ଦୁଃଖିତ ହୁଅନାହିଁ, କାରଣ ଇଚ୍ଛାନୁସାରେ କାର୍ଯ୍ୟ କରିବାକୁ ଏ ପୃଥିବୀରେ କେତେ ଜଣ ପାରନ୍ତି ?

୩୩—ଈଶ୍ୱର ପ୍ରେମ ଓ ଈଶ୍ୱରସେବା ଭିନ୍ନ ଏ ସଂସାରରେ ଆଉ ସମସ୍ତ ଅସାର । ଈଶ୍ୱର ଯାହାକୁ ରକ୍ଷାକରନ୍ତି, ମନୁଷ୍ୟ ତାହାର ପ୍ରତିକୂଳାଚରଣ କରି କିଛି କରି ପାରେନାହିଁ ।

୩୪—ଉଦ୍ଦେଶ୍ୟ ଉଚ୍ଚ ରଖିବ, କିନ୍ତୁ ଚକ୍ଷୁ ନିମ୍ନଦିଗକୁ ରଖିବା ଦରକାର ।

୩୫—ଉଚ୍ଚାଭିଳାଷୀ ହୁଅନାହିଁ, ଭଗବାନ୍ ଯେତେବେଳେ ଯେ ଅବସ୍ଥାରେ ରଖନ୍ତି ସେହି ଅବସ୍ଥାକୁ ସୁଖକର ମନେ କରିବ । ଉଚ୍ଚାଭିଳାଷୀ ଲୋକ କୌଣସିଦିନ ସୁଖୀ ହୁଏ ନାହିଁ ।

୩୬—ଊର୍ଦ୍ଧ୍ୱକୁ ଦୃଷ୍ଟି ରଖି କାର୍ଯ୍ୟକର, ମନରେ ଶାନ୍ତିପାଇବ,

୩୭—ଏପରି ସମୟ ଆସିବ, ଯେତେବେଳେ ତୁମ୍ଭେ ଶୀଘ୍ର ଜୀବନ ସଂଶୋଧନ ନିମନ୍ତେ ସମୟ ଭିକ୍ଷା କରିବ, କିନ୍ତୁ ତାହା ତୁମ୍ଭେ ପାଇବ କି ନା ସନ୍ଦେହ ।

୩୮—ଋଣ କରି ସୁଖସ୍ୱଚ୍ଛନ୍ଦ କୌଣସି କାର୍ଯ୍ୟ କରିବ ନାହିଁ, ଋଣ ପାପ ବଡ଼ ଭୟାନକ । ଋଣୀକୁ କେହି ବିଶ୍ୱାସ କରନ୍ତି ନାହିଁ ଏବଂ ଋଣୀ ବ୍ୟକ୍ତି କଦାପି ମନରେ ଶାନ୍ତି ପାଏ ନାହିଁ ।

୩୯—ଏପରିଭାବରେ ଜୀବନ ଯାପନ କର, ଯେପରି ମୃତ୍ୟୁ ସମୟରେ ମନୋମଧ୍ୟରେ କୌଣସି ପ୍ରକାର ଅନୁତାପ ନ ଆସେ ।

୪୦—ଐହିକ ସୁଖପାଇଁ କାହାରି ମନରେ କଷ୍ଟ ଦିଅନାହିଁ କାରଣ ଐହିକ ସୁଖ କ୍ଷଣିକ ନିମନ୍ତେ ।

୪୧—କର୍ତ୍ତବ୍ୟ ପାଳନ କରିବାକୁ କଦାପି ଭୁଲ ନାହିଁ ।

୪୨—କଦାପି ଅସତ୍ୟର ପୂଜା କର ନାହିଁ ।

୪୩—କଦାପି ଖୋସାମଦିଆ ଲୋକ ଓ ନୀଚଅନ୍ତଃକରଣବିଶିଷ୍ଟ-ଲୋକର ସେବା କର ନାହିଁ ।

୪୪—କଦାପି ସ୍ତ୍ରୀଜାତି ପ୍ରତି ଅନ୍ୟାୟ ବ୍ୟବହାର କରନାହିଁ, ସ୍ତ୍ରୀଜାତି ଗୃହର ଲକ୍ଷ୍ମୀ ଓ ଶୋଭା । ସ୍ତ୍ରୀ ସମ୍ପଦରେ ବିପଦରେ, ସୁଖରେ ଦୁଃଖରେ, ସୁସ୍ଥତାରେ ଅସୁସ୍ଥତାରେ, ଜୀବନରେ ମରଣରେ, ସମସ୍ତ ଅବସ୍ଥାରେ ସମସ୍ତ ସମୟରେ ତୁଲ୍ୟ ଅଧିକାରିଣୀ ।

ଫୁଲ ଶୋଭା ନୁହେ ନ ଥିଲେ ସୌରଭ । ପୂଜେ କେ ମାନବେ ନଥିଲେ ଗୌରବ ।

୪୫—କାର୍ଯ୍ୟ ସ୍ରୋତରେ ପଡ଼ି ଯେବେ କଦାପି ତୁମ୍ଭର ପ୍ରବୃତ୍ତି ଉତ୍ତେଜିତ ଏବଂ ଅନ୍ତଃକରଣ କ୍ରୋଧାନ୍ଧ, ଅଶାନ୍ତ, ଗର୍ବିତ ବା ହିଂସାପରତନ୍ତ୍ର ହୁଏ, ତାହାହେଲେ କୌଣସି ନିର୍ଜ୍ଜନ ସ୍ଥାନରେ ବସି ହାତଯୋଡ଼ି ଈଶ୍ୱରଙ୍କ ନିକଟରେ ଏହି ପ୍ରାର୍ଥନା କରିବ ଯେ, "ହେ ପ୍ରଭୁ ! ତୁମ୍ଭର ଦାସକୁ ଶାସନରେ ରଖ ।"

୪୬—କାହାର କୌଣସି ବିପଦ ଦେଖିଲେ ପ୍ରାଣପଣେ ତାହାକୁ ସେଥିରୁ ଉଦ୍ଧାର କରିବାକୁ ଚେଷ୍ଟା କରିବ ।

୪୭—କ୍ରୋଧକୁ ସମ୍ବରଣ କରିବାକୁ ଚେଷ୍ଟା କରିବ, କ୍ରୋଧ ମାନବର ଏକ ପ୍ରଧାନ ଶତ୍ରୁ । କ୍ରୋଧାନ୍ୱିତ ହୋଇ ମନୁଷ୍ୟ ନ କରିପାରେ ଏପରି ଦୁଷ୍କାର୍ଯ୍ୟ ନାହିଁ । କ୍ରୋଧ ଉପଶମ ହେଲେ ମନକୁ ଅନୁତାପାନଳରେ ଦଗ୍ଧ କରେ ଓ ଯନ୍ତ୍ରଣା ଦିଏ ।

୪୮—କାହାର ସହିତ ତର୍କ କରନାହିଁ । କାରଣ ତର୍କ କରୁ କରୁ ପରସ୍ପର ମଧ୍ୟରେ ବିବାଦ ଘଟିଯାଏ । ଯଦି ଏକାନ୍ତ ଆବଶ୍ୟକ ହୋଇପଡ଼ିଏ, ଅଗ୍ରେ କ୍ଷମା ମାଗି ନେଇ ନିଜର ବକ୍ତବ୍ୟ ମିଷ୍ଟସ୍ୱରରେ ବୁଝାଇ ଦେବ ।

୪୯—କାହାର ଗଳଗ୍ରହ ହୋଇ ରହନାହିଁ । ନିଜେ ନାନା ପ୍ରକାର କଷ୍ଟ ଓ ପରିଶ୍ରମ କରି ଶାକ ଅନ୍ନ ଖାଇବା ଭଲ, କିନ୍ତୁ କାହାର ଗଳଗ୍ରହ ହୋଇ କାଳିଆ ପଲଉ ଭକ୍ଷଣ କରିବା ଉଚିତ ନୁହେଁ ।

୫୦—କୁସଂସର୍ଗ ପରିତ୍ୟାଗ କର । କଥାରେ ଅଛି, "ସାଧୁ-ସଙ୍ଗରେ ସ୍ୱର୍ଗେ ବାସ, ଆଉ ଅସାଧୁସଙ୍ଗେ ସର୍ବନାଶ ।"

୫୧—କୌଣସି କାର୍ଯ୍ୟ କଠିନ ବୋଲି ମନେ କର ନାହିଁ, ବା ଅବହେଳା କରନାହିଁ । ଏକାଗ୍ରଚିତ୍ତରେ ଚେଷ୍ଟା କଲେ ତାହା ସଫଳ ହୋଇପାରେ ।

୫୨—କେହି ତୁମ୍ଭ ପ୍ରତି ଅନିଷ୍ଟ କଲେ ବା ତୁମ୍ଭ ପ୍ରତି ଅନ୍ୟାୟ ବ୍ୟବହାର କଲେ ବେଦନା ପାଅ ଏବଂ ଶାସ୍ତି ପ୍ରଦାନ କରିବାକୁ ଉଦ୍ୟତ ହୁଅ, କିନ୍ତୁ ତୁମ୍ଭେ କେତେଜଣଙ୍କ ପ୍ରତି ଅନ୍ୟାୟ ବ୍ୟବହାର କରୁଅଛ, ତାହା ଥରେ ଭାବି ଦେଖନାହିଁ ।

୫୩—ଗୁରୁଜନଙ୍କ ପ୍ରାଣରେ କଦାପି ଆଘାତ ଦିଅ ନାହିଁ । ଗୁରୁଜନଙ୍କ ପ୍ରାଣରେ ଆଘାତ ଦେଲେ କେହି କଦାପି ସୁଖୀ ହୋଇ ପାରେ ନାହିଁ ।

୫୪—ଚେଷ୍ଟା ଓ ପରିଶ୍ରମଦ୍ୱାରା ମୁଁ ଏତେ ଉନ୍ନତି କରିଛି, ଏପରି କହିବ ବା ମନେ କରିବା କେବଳ ମୂର୍ଖତାର ପରିଚାୟକ ମାତ୍ର; କାରଣ, ଦେବପ୍ରସାଦ ବ୍ୟତୀତ, ଦୈବବଳ ଭିନ୍ନ, ତୁମ୍ଭର କିଛି କରିବାର କ୍ଷମତା ନାହିଁ । କଥାରେ କହନ୍ତି—

"ନର ଅଭିପ୍ରାୟ ଜାଣ, ଖଣ୍ଡେ ବିଧି ଅନୁମାଣ ।"

୫୫—ତୁମ୍ଭର କୌଣସି ଗୁଣ ଥାଇପାରେ, କିନ୍ତୁ ଅନ୍ୟର ଅଧିକ ଅଛି, ଏହା ଭାବି ନମ୍ରତା ଅବଲମ୍ବନ କରିବା କର୍ତ୍ତବ୍ୟ ।

୫୬—ଦ୍ୱେଷ, ହିଂସା, ପରନିନ୍ଦା କଦାପି କରିବ ନାହିଁ । ସାଧାରଣତଃ ଦେଖାଯାଏ, ଲୋକେ ପରନିନ୍ଦା ଓ ପରଚର୍ଚ୍ଚା କରିବାକୁ ଯେପରି ଆମୋଦ ପାଆନ୍ତି, ଏପରି ଆଉ କାହିଁରେ ପାଆନ୍ତି ନାହିଁ । ଯେ ସେହି ସମସ୍ତ ରିପୁକୁ ଦମନ କରିଛନ୍ତି, ସେ ସାଧୁପୁରୁଷ ଓ ଜଗତର ପୂଜ୍ୟ ।

୫୭—ଦୁଷ୍ଟ ଲୋକର ମିଷ୍ଟକଥାରେ ମୁଗ୍ଧ ହୋଇ ଆପଣା କାର୍ଯ୍ୟ ଭୁଲନାହିଁ ।

୫୮—ଦୈନିକ କାର୍ଯ୍ୟରେ ପ୍ରବୃତ୍ତ ହେବା ପୂର୍ବରୁ ସଦ୍ୟ ପରମେଶ୍ୱରଙ୍କୁ ସ୍ମରଣ କରିବ ।

୫୯—ଦୃଶ୍ୟ ଜଗତ ପ୍ରତି ଅନୁରାଗରୁ ମନକୁ ଫେରାଇ, ଅଦୃଶ୍ୟ ସଚ୍ଚିଦାନନ୍ଦମୟ ରାଜ୍ୟକୁ ନେଇ ଯିବା ପାଇଁ ସାଧନା କର ।

୬୦—ଧନ, ସମ୍ପଦ କିମ୍ବା ପରାକ୍ରମଶାଳୀ ବନ୍ଧୁମାନଙ୍କୁ ପାଇ ଗର୍ବ କରନାହିଁ, ଯେ ସେମାନ ଦାନ କରିଅଛନ୍ତି, ସେହି ପରମପିତାଙ୍କର ମହିମା ଘୋଷଣା କର ।

୬୧—ଧନୀମାନଙ୍କୁ ତୋଷାମୋଦ କର ନାହିଁ ଏବଂ ପ୍ରତିପତ୍ତି-ଶାଳୀ ବ୍ୟକ୍ତିମାନଙ୍କ ନିକଟକୁ ସହଜରେ ଗମନ କରନାହିଁ ।

୬୨—ଧାର୍ମିକତାର ବେଶ ବ୍ୟବହାର କରିବା କିଛି କଷ୍ଟକର ନୁହେଁ, କିନ୍ତୁ କୁତ୍ସିତ ଓ ପାପ ପରିତ୍ୟାଗ କରିବା ବଡ଼ କଠିନ ।

୬୩—ନିୟତ ଈଶ୍ୱର ସେବାରେ ନିୟୋଜିତ ଥାଅ । ନିୟତ ସ୍ମରଣ କର ଯେ, ପରମେଶ୍ୱରଙ୍କ ସେବା କରିବା ପାଇଁ ତୁମ୍ଭେ ଇହସଂସାରକୁ ଆସିଅଛ ।

ଦୁଃସମୟ ହେଲେ ମନସ୍ଥିର କର । ସୁଖ ଦୁଃଖ ଭବେ କିଛି ନୁହେ ସ୍ଥିର ।

୬୪—ସତ୍ୟ ଚରିତ୍ରରେ ବାସ କରିବା ଚରିତ୍ରବାନ୍ ଲୋକ, ସମସ୍ତଙ୍କ ନିକଟରେ ଆଦରଣୀୟ ଓ ଈଶ୍ୱରଙ୍କ ପ୍ରିୟପାତ୍ର ହୁଏ ।

୬୫—ପରଧନର ପ୍ରତ୍ୟାଶା କର ନାହିଁ । ନିଜର ଅବସ୍ଥା ଉପରେ ସନ୍ତୁଷ୍ଟ ରହି ପ୍ରାଣପଣେ ଉନ୍ନତିର ଚେଷ୍ଟା କରିବ ।

୬୬—ପରର ତ୍ରୁଟି ଏବଂ ଦୁର୍ବଳତା ସହ୍ୟ କର । ତୁମ୍ଭର ମଧ୍ୟ ଅନେକ ଦୋଷ ଅଛି ତାହା ଅନ୍ୟକୁ ସହ୍ୟ କରିବାକୁ ହୁଏ ।

୬୭—ପ୍ରାଣର କଥା କାହାକୁ କହନାହିଁ । କାରଣ, ଆଜି ଯେ ତୁମ୍ଭର ବନ୍ଧୁ ଅଛନ୍ତି, କାଲି ସେ ତୁମ୍ଭର ଶତ୍ରୁ ହୋଇପାରନ୍ତି ।

୬୮—ପରଶ୍ରୀରେ କାତର ହୁଅ ନାହିଁ । ପରଶ୍ରୀରେ କାତର ହେବା ବଡ଼ ଅଧର୍ମର କଥା । ଯେ ପରଶ୍ରୀରେ କାତର ହୁଏ, ସେ କୌଣସି ଦିନ ମଧ୍ୟ ଶାନ୍ତି ପାଏ ନାହିଁ । ଚିରଜୀବନ ଦୁଃଖାନଳରେ ଜଳି ପୋଡ଼ି ମରେ ।

୬୯—ପରିବାରବର୍ଗଙ୍କ ପ୍ରତି ସର୍ବଦା ସଦ୍‌ବ୍ୟବହାର କରିବ । ସମସ୍ତଙ୍କର ଦୋଷ ତ୍ରୁଟି ଓ ପ୍ରାର୍ଥନା ଅକାତରେ ସହ୍ୟ କରିବ । ଯେଉଁ ପରିବାରରେ କର୍ତ୍ତାଙ୍କର ସହ୍ୟଗୁଣ ନାହିଁ, ସେ ସଂସାର କୌଣସି ଦିନ ସୁଖ ଓ ଶାନ୍ତିର ଅଧିକାରୀ ହୁଏ ନାହିଁ ।

୭୦—ମାତା ପିତାଙ୍କୁ ସର୍ବତୋଭାବେ ସୁଖୀ କରିବାକୁ ଚେଷ୍ଟା କରିବ । ମାତାପିତାଙ୍କୁ ଭକ୍ତି କଲେ, ଭଗବାନଙ୍କର ପ୍ରିୟ କାର୍ଯ୍ୟ ସାଧନ କରିବ ହୁଏ ଏବଂ ଇହକାଳ ଓ ପରକାଳରେ ସେ ସୁଖଶାନ୍ତିରେ ବାସ କରେ ।

୭୧—ପୃଥିବୀର ସମସ୍ତ ମହାଜନମାନେ ଦୁଃଖ-ବେଦୀରୁ ମଧ୍ୟ ଦେଇ ଧର୍ମ-ରାଜ୍ୟକୁ ଗମନ କରିଅଛନ୍ତି । ସୁଖର ଶଯ୍ୟା କାହାର ପାଇଁ ନ ଥିଲା ।

୭୨—ବିନୟୀ ଓ ନମ୍ର ହୁଅ ଏବଂ କଦାପି ନିଜକୁ ବଡ଼ ବୋଲି ଭାବ ନାହିଁ ।

୭୩—ବିପଦ ସମୟରେ ଅଧୀର ହୁଅ ନାହିଁ, ଅଧୀର ହେଲେ ଜ୍ଞାନ, ବୁଦ୍ଧି, ବଳ ସମସ୍ତ ହରାଇବାକୁ ହୁଏ । ବିଶେଷତଃ ବିପଦ କଦାପି ଏକା ଆସେ ନାହିଁ । ତାହାର ଦଳବଳକୁ ସଙ୍ଗରେ ନେଇ ଆସେ ।

୭୪—ବିପଦରେ ସ୍ଥିର ରହିବା, ନିର୍ଯ୍ୟାତନ ସମୟରେ ନୀରବ ରହିବା, ଈଶ୍ୱରଙ୍କ ପ୍ରତି ଦୃଷ୍ଟି ରଖିବା ଏବଂ ମନୁଷ୍ୟ କଥାରେ ବିଚଳିତ ନ ହେବା ଏକାନ୍ତ କର୍ତ୍ତବ୍ୟ ।

୭୫—ଭଣ୍ଡ ସନ୍ନ୍ୟାସୀମାନେ ଅର୍ଥାତ୍ ଯେଉଁମାନେ ବସ୍ତ୍ର କଡ଼ରେ ବା ବଣବୁଦା ପାଖରେ ବସି ତିଳକ-ମାଟି ଲଗାଇ ନାଗାସନ୍ନ୍ୟାସୀ ସାଜନ୍ତି ଏବଂ ଲୋକଙ୍କ ଦ୍ୱାରରେ ଭିକ୍ଷା କରନ୍ତି, ହସ୍ତରେଖା ଦେଖି ଭୂତ ଭବିଷ୍ୟତ ଗଣି ଦିଅନ୍ତି, ବନ୍ଧ୍ୟା ସ୍ତ୍ରୀଲୋକମାନଙ୍କୁ ସନ୍ତାନ ହେବାର ଔଷଧ ପ୍ରଦାନ କରନ୍ତି, ସେମାନଙ୍କୁ କଦାପି ବିଶ୍ୱାସ କରନାହିଁ । ଏରୂପ ସନ୍ନ୍ୟାସୀମାନଙ୍କ ସହିତ କଥା କହିଲେ ମଧ୍ୟ ପାପ ହୁଏ । କାରଣ, ସେମାନେ ଧାର୍ମିକର ବେଶ ଧାରଣ କରି ଲୋକଙ୍କର ମନ ଆକର୍ଷଣ କରନ୍ତି ଓ ସୁବିଧା ପାଇଲେ ପ୍ରତାରଣା କରି ପ୍ରସ୍ଥାନ କରନ୍ତି ।

୭୬—ଭବିଷ୍ୟତକୁ ବିଶ୍ୱାସ କର ନାହିଁ ଏବଂ ଭବିଷ୍ୟତ ଆଶା କରି କାହାକୁ ଆଶ୍ୱାସ ଦିଅ ନାହିଁ ।

୭୭—ଭବିଷ୍ୟତରେ କରିବ ବୋଲି ହାତରେ କାର୍ଯ୍ୟ ପକାଇ ରଖ ନାହିଁ, ପକାଇ ରଖିଲେ ପ୍ରାୟ ତାହା ଶେଷ ହୁଏ ନାହିଁ ।

୭୮—ମନୁଷ୍ୟ ସହିତ ଆଳାପ କରି ଯେଉଁ ସମୟ ଅତିବାହିତ କର, ସେହି ସମୟ ଈଶ୍ୱରଙ୍କ ସହିତ ଆଳାପ କରିବା ଅଧିକତର ଇଷ୍ଟଜନକ ।

୭୯—ମନୁଷ୍ୟ ଆଜି ଅଛି । କାଲି ରହିବ ନାହିଁ । ଏହି ଅଛି, ଏହି ନାହିଁ; ଆମ୍ଭେମାନେ ଜାଣି ମଧ୍ୟ ବର୍ତ୍ତମାନ ସୁଖ ସୁବିଧା ନେଇ ବ୍ୟସ୍ତ, ଭବିଷ୍ୟତ ପାଇଁ କୌଣସି ଚିନ୍ତା କରୁନାହିଁ ।

୮୦—ମିଷ୍ଟଭାଷୀ, ମୃଦୁହାସୀ, ଦେଖିବାକୁ ଗୋରୁ ପରି ଏପରି ଲୋକକୁ କଦାପି ବିଶ୍ୱାସ କରିବ ନାହିଁ, ଏପରି ଲୋକର ଅନ୍ତର ପ୍ରାୟ ଭଲ ହୁଏ ନାହିଁ ।

୮୧—ଯେତେବେଳେ ଅନ୍ୟର ମୃତ୍ୟୁ ଦର୍ଶନ କର, ଚିନ୍ତା କର, ତୁମ୍ଭଙ୍କୁ ମଧ୍ୟ ସେହି ପଥରେ ଯିବାକୁ ହେବ ।

୮୨—ଯେତେ ଦୁଃଖ ହେଉନା କାହିଁକି, ଯେତେ ବିପରୀତ ବିଷୟ ଘଟୁନା କାହିଁକି, ଯେଉଁ ବ୍ୟକ୍ତି କୃତଜ୍ଞ ଅନ୍ତରେ

ସଂସାରରେ ସକଳ ବିଷୟ ଗ୍ରହଣ କରେ ଏବଂ ଈଶ୍ୱରଙ୍କ ହସ୍ତରୁ ଆସିଅଛି ବୋଲି ବିଶ୍ୱାସ କରେ, ସେହି ବ୍ୟକ୍ତି ପ୍ରକୃତ ଧୈର୍ଯ୍ୟଶୀଳ ।

୮୩—ଯେବେ ତୁମ୍ଭେ ସର୍ବଦା ଆତ୍ମପରୀକ୍ଷା କରି ନ ପାର, ତେବେ ଦିନ ମଧ୍ୟରେ ଅନ୍ତତଃ ଦୁଇବାର-ପ୍ରାତଃକାଳରେ ଓ ସନ୍ଧ୍ୟାକାଳରେ ପରୀକ୍ଷା କରିବ । ପ୍ରାତଃକାଳରେ ଗାତ୍ରୋତ୍ଥାନ କରି, ସତ୍‌ସଂକଳ୍ପ ଗ୍ରହଣ କରି ଦିବାଭାଗ ଯାପନ କର । ସନ୍ଧ୍ୟାକାଳରେ ପରୀକ୍ଷା କରି ଦେଖ, ସାରାଦିନ କିପରି ବ୍ୟବହାର କରିଅଛ । ଦେଖିବ ଈଶ୍ୱର ଓ ମାନବ ନିକଟରେ କେତେ ଦୋଷ କରିଅଛ ।

୮୪—ଯଦି ଦେଖ, କୌଣସି ବ୍ୟକ୍ତି ଭୟାନକ ପାପ କରୁଅଛି ଆପଣାକୁ ତଦପେକ୍ଷା ଶ୍ରେଷ୍ଠ ଜାଣି ଅହଂକାର କରନାହିଁ, କାହିଁକି ନା ଏପରି ସମୟ ଆସିପାରେ ଯେ, ତୁମ୍ଭେ ମଧ୍ୟ ସେହି ପ୍ରକାର ପାପ କରିବ । ନିଜେ କେତେ କାଳ ସୁସ୍ଥିର ରହି ପାରିବ, ତାହା ତ ଜାଣନାହିଁ ।

୮୫—ଯାହାର ଅନ୍ତରରେ ବାସନାର ଅନଳ ଜଳୁଅଛି, ପଦ୍ମପତ୍ରର ଜଳ ପରି ତାହାର ଚିତ୍ତ ସର୍ବଦା ଅସ୍ଥିର, ଲୋଭୀ ବ୍ୟକ୍ତି କଦାପି ଶାନ୍ତି ଲାଭ କରି ପାରେ ନାହିଁ ।

୮୬—ଯେଉଁମାନେ ସାଂସାରିକ ସମୁଦାୟ ବାଧା ବିଘ୍ନ ଅତିକ୍ରମ କରି ଈଶ୍ୱରଙ୍କ ସେବା ପାଇଁ ଅବସର ନିଅନ୍ତି, ସେହିମାନେହିଁ ମନୁଷ୍ୟ ।

୮୭—ଯେ କେବଳ ପରର କଥା ଓ ଅନଧିକାର ଚର୍ଚ୍ଚା ଘେନି ବ୍ୟସ୍ତ, ନିଜ ଜୀବନର କଥା ଭାବେ ନାହିଁ, ଆତ୍ମଚିନ୍ତା କରେ ନାହିଁ, ସେ ବ୍ୟକ୍ତି ପଶୁ ବ୍ୟତୀତ ଅନ୍ୟ କିଛି ନୁହେଁ ।

୮୮—ଯେଉଁ ଦୋଷମାନ ଅନ୍ୟଲୋକ ମଧ୍ୟରେ ଦେଖିଲେ ତୁମ୍ଭର ଘୃଣାର ଉଦ୍ରେକ ହୁଏ, ସେ ଦୋଷରୁ ତୁମ୍ଭେ ନିବୃତ୍ତ ହୁଅ ।

୮୯—ଯୌବନ କାଳରେ ଅତ୍ୟାଚାର କରି ଶରୀର ନଷ୍ଟ କର ନାହିଁ । ଅନେକେ ଯୌବନ କାଳରେ ଅତ୍ୟାଚାର କରି ପରିଣାମରେ ଅନୁତପ୍ତ ହୁଅନ୍ତି ।

୯୦—ଶରୀରର ସୌନ୍ଦର୍ଯ୍ୟ ଦେଖି ପ୍ରୀତ ହୁଅ ନାହିଁ, କାହିଁକି ନା ସାମାନ୍ୟ ପୀଡ଼ାରେ ସୌନ୍ଦର୍ଯ୍ୟ ନଷ୍ଟ ହୋଇ ଯାଇପାରେ ।

୯୧—ସମୟର ସଦ୍‌ବ୍ୟବହାର କର, କଦାପି ଆଳସ୍ୟ ପରବଶ ହୋଇ ସମୟ ନଷ୍ଟ କରନାହିଁ । ଆଳସ୍ୟ କରି ସମୟ ନଷ୍ଟ କଲେ ସଂସାରରେ ଅଲକ୍ଷ୍ମୀ ପ୍ରବେଶ କରନ୍ତି ।

୯୨—ସମସ୍ତଙ୍କ ନିକଟରେ ହୃଦୟ ଦ୍ୱାର ଉନ୍ମୁକ୍ତ କରନାହିଁ, ସେଥିରେ ଅନିଷ୍ଟର ଆଶଙ୍କା ଅଛି । ଯେଉଁମାନେ ଜ୍ଞାନୀ ଏବଂ ଭକ୍ତ ସେମାନଙ୍କ ନିକଟରେ ଆପଣାର ବିଷୟ ବ୍ୟକ୍ତ କର ।

୯୩—ଶେଷଦିନ ସ୍ମରଣ କର ଏବଂ ଯେଉଁ ସମୟ ଯାଇଅଛି, ତାହା ଆଉ ଫେରି ଆସିବ ନାହିଁ, ଏ ବିଷୟ ଚିନ୍ତା କର ।

୯୪—ସଂସାର-ମୋହରେ ପଡ଼ି ଭଗବାନଙ୍କୁ ଭୁଲ ନାହିଁ ।

୯୫—ସଂସାର ତୁମ୍ଭର ସ୍ଥାୟୀ ବାସସ୍ଥାନ ନୁହେଁ । ଏଠାକୁ ଦୁଇ ଦିନ ପାଇଁ ଆସିଅଛ । ଅନନ୍ତ ପରମେଶ୍ୱର କେବଳ ତୁମ୍ଭର ନିତ୍ୟ କାଳର ଆଶ୍ରୟ ସ୍ଥାନ, ଅତଏବ ତାଙ୍କ ପ୍ରତି ନିର୍ଭର କର ।

୯୬—ସର୍ବପ୍ରକାର ତ୍ୟାଗ ସ୍ୱୀକାର ଶିକ୍ଷା କରିବ, ଏହା ଅପେକ୍ଷା ଧର୍ମ ଆଉ ନାହିଁ ।

୯୭—ସତ୍‌ପଥ ଅବଲମ୍ବନ କରି ସଂସାର ଯାତ୍ରା ନିର୍ବାହ କର, କଦାପି ଅସତ୍‌ପଥ ଅବଲମ୍ବନ କର ନାହିଁ । ଅଧର୍ମୀର ସଂସାର କଦାପି ଉନ୍ନତିପଥରେ ପଦାର୍ପଣ କରିପାରେ ନାହିଁ ।

୯୮—ସାଧୁକାର୍ଯ୍ୟ କରୁଅଛ ବୋଲି ଅହଂକାର କରନାହିଁ । କାହିଁକି ନା, ଈଶ୍ୱରଙ୍କ ବିଚାର ମାନବ ବିଚାରଠାରୁ ଭିନ୍ନ, ଯେଉଁ କାର୍ଯ୍ୟ ମନୁଷ୍ୟକୁ ସୁଖୀ କରେ, ତାହା ଅନେକ ସମୟରେ ଈଶ୍ୱରଙ୍କ ନିକଟରେ ଘୃଣାକର ।

୯୯—ସାଧନ କ୍ଷମତା ବା ବିଦ୍ୟାବୁଦ୍ଧି ଲାଭ କରିଅଛ ବୋଲି ଉଲ୍ଲାସିତ ହୁଅ ନାହିଁ । ଏପରି କଲେ ଭଗବାନ୍ ଅସନ୍ତୁଷ୍ଟ ହେବେ । କାହିଁକି ନା, ତୁମ୍ଭର ଯାହା ଅଛି, ସେ ସକଳ ସେ ଦେଇ ଅଛନ୍ତି ।

୧୦୦—ସ୍ତ୍ରୀ ଲୋକ ଏବଂ ଅପରିଚିତ ବ୍ୟକ୍ତିମାନଙ୍କ ସହିତ ଅଧିକ ଆଳାପ କର ନାହିଁ ।

—:o:—

## ଶ୍ରୀକୃଷ୍ଣ ତତ୍ତ୍ୱ ।

ଶ୍ରୀକୃଷ୍ଣ ସ୍ୱୟଂ ଭଗବାନ । କାରଣାବ୍ଧିଶାୟୀ, ଗର୍ଭୋଦକ-ଶାୟୀ ଓ କ୍ଷୀରୋଦକଶାୟୀ ପୁରୁଷଗଣ ନାରାୟଣଙ୍କର ଅଂଶ ଏବଂ ସେହି ନାରାୟଣହିଁ ଶ୍ରୀକୃଷ୍ଣଙ୍କର ବିଳାସମୂର୍ତ୍ତି ।

ବ୍ରଜର ବ୍ରଜେନ୍ଦ୍ରନନ୍ଦନ ଶ୍ରୀକୃଷ୍ଣ ଅନାଦି ମୂଳକାରଣ । ସେ ଆଦି ସେ ପରମେଶ୍ୱର ଓ ସକଳଙ୍କର ଅନ୍ତର୍ଯ୍ୟାମୀଭୂତ ଚିଦାନନ୍ଦ ବିଗ୍ରହ । ନିତ୍ୟ କିଶୋର ରସିକଶେଖର ଶ୍ରୀକୃଷ୍ଣ ସ୍ୱୟଂ ଭଗବାନ ପରମେଶ୍ୱର । ତାଙ୍କଠାରୁ ଶ୍ରେଷ୍ଠ କିମ୍ବା ତାଙ୍କ ସମାନ ଆଉ କେହି ନାହାନ୍ତି । ସେ ଅବତାରୀ ଓ ସର୍ବ ଅବତାରର ମୂଳ । ସେ ସାର ଭଗବଦାବତାର, ଅନ୍ୟ ସମସ୍ତ ଭଗବଦ୍‌ଗଣ ତାଙ୍କର ଅଂଶ ବା କଳା । ଗୋପୀଗଣ ପରିବେଷ୍ଟିତ ବ୍ରଜମଣ୍ଡଳର ଅଧୀଶ୍ୱର ଶ୍ରୀକୃଷ୍ଣ ସମସ୍ତଙ୍କର ଆଦି । ସେଥିପାଇଁ ତାଙ୍କ ନାମ ଅବତାରାବଳୀବୀଜ । ବୈକୁଣ୍ଠପତି ଶ୍ରୀ ନାରାୟଣ ଏହାଙ୍କର ଅଂଶ । ସେ ନବକିଶୋର ନଟବର ରୂପେ ସତେ ଶ୍ରୀ ରାଧାଙ୍କ ସହିତ ଶ୍ରୀ ବୃନ୍ଦାବନରେ କ୍ରୀଡ଼ା କରୁଅଛନ୍ତି । ଶ୍ରୀକୃଷ୍ଣ ନାୟକଙ୍କର ଶିରୋମଣି ବୋଲି ସର୍ବପ୍ରକାର ମହଦ୍‌ଗୁଣ ଏହାଙ୍କ ନିକଟରେ ବର୍ତ୍ତମାନ ଅର୍ଥାତ୍ ଚତୁଃଷଷ୍ଟି ସଂଖ୍ୟକ ଗୁଣ ସମସ୍ତ ପୂର୍ଣ୍ଣମାତ୍ରାରେ ଏହାଙ୍କଠାରେ ରହିଅଛି । ଯଥା—ସକଳର ନେତା, ଶୋଭନାଙ୍ଗ, ସର୍ବଲକ୍ଷଣ-ଯୁକ୍ତ, ରୁଚିର, ତେଜୋଯୁକ୍ତ, ବଳୀୟାନ୍, ଚିରନବୀନ, ବିବିଧ ଭାଷାବିତ୍, ସତ୍ୟବାଦୀ, ପ୍ରିୟମ୍ବଦ, ସୁବକ୍ତା, ସୁପଣ୍ଡିତ, ବୁଦ୍ଧି-ମାନ୍, ପ୍ରତିଭାଶାଳୀ, ସୁରସିକ, ଚତୁର, ଦକ୍ଷ, କୃତଜ୍ଞ, ଦୃଢ଼-ବ୍ରତ, ଦେଶକାଳପାତ୍ରଜ୍ଞ, ଶାସ୍ତ୍ରଚକ୍ଷୁ, ପବିତ୍ର, ଜିତେନ୍ଦ୍ରିୟ, ସ୍ଥିର, ଦାନ୍ତ, କ୍ଷମାଶୀଳ, ଗମ୍ଭୀର, ଧୃତିମାନ୍, ସାମ୍ୟପରାୟଣ, ବଦାନ୍ୟ, ଧାର୍ମିକ, ଶୂର, କରୁଣ, ମାନଦ, ସୁଶୀଳ, ବିନୟୀ, ଲଜ୍ଜାଶୀଳ, ଶରଣାଗତପାଳକ, ସୁଖୀ, ଭକ୍ତସୁହୃତ୍, ପ୍ରେମ-ବଶୀଭୂତ, ସର୍ବକଲ୍ୟାଣକାରୀ, ମହାପ୍ରତାପଶାଳୀ, କୀର୍ତ୍ତିମାନ୍, ଲୋକାନୁରକ୍ତ, ସାଧୁଗଣଙ୍କର ଆଶ୍ରୟ, ନାରୀ ମନୋହାରୀ, ସର୍ବାରାଧ୍ୟ, ମହାସମୃଦ୍ଧିଶାଳୀ, ସର୍ବଶ୍ରେଷ୍ଠ ଓ ଈଶ୍ୱର ସ୍ୱରୂପା-ବସ୍ଥାରେ ସ୍ଥିତ, ସର୍ବଜ୍ଞ, ନିତ୍ୟନୂତନ, ସଚ୍ଚିଦାନନ୍ଦବିଗ୍ରହ ଓ ସର୍ବସିଦ୍ଧି ତାଙ୍କର ଅଧୀନ । ଅଚିନ୍ତ୍ୟମହାଶକ୍ତିଶାଳୀ, କୋଟିବ୍ରହ୍ମାଣ୍ଡବିଗ୍ରହ, ଅବତାରାବଳୀବୀଜ, ନିହତ ଅରିଗତି-ଦାତା, ଆତ୍ମାରାମ-ଯୋଗୀର ଚିତ୍ତାକର୍ଷଣକାରୀ, ଚମତ୍କାର ଲୀଳାତରଙ୍ଗବାରିଧି, ପ୍ରିୟ ମଣ୍ଡଳୀରୁ ଅତୁଳନ ମଧୁର ପ୍ରେମରେ ମଣ୍ଡିତ କରି ରହିଅଛନ୍ତି, ମୁରଳୀରବ ତ୍ରିଜଗତ ଆକର୍ଷଣ କରି ଅସମୋର୍ଦ୍ଧ ରୂପ କାନ୍ତିରେ ବିଶ୍ୱଚରାଚରକୁ ବିମୋହିତ କରୁଅଛନ୍ତି ।

ପ୍ରଥମୋକ୍ତ ପଞ୍ଚାଶତ୍ ସଂଖ୍ୟକ ଗୁଣ ସାଧାରଣ ମନୁଷ୍ୟାଦିଠାରେ କିଞ୍ଚିତ୍ ମାତ୍ରାରେ ଥାଇପାରେ । ତତ୍ପର ଆଉ ଅଧିକ ୫ ସଂଖ୍ୟକ ଗୁଣ ଶିବାଦିଙ୍କଠାରେ ବର୍ତ୍ତମାନ, ତତୋଧିକ ପାଞ୍ଚ ଗୁଣ ଶ୍ରୀ ନାରାୟଣଙ୍କ ଠାରେ ବର୍ତ୍ତମାନ ରହିଅଛି; କିନ୍ତୁ ଶେଷ ଚାରୋଟି ଗୁଣ କେବଳ ଶ୍ରୀକୃଷ୍ଣଙ୍କ ମଧ୍ୟରେ ନିହିତ; ଏହା ଶ୍ରୀ ନାରାୟଣଙ୍କ ନିକଟରେ ମଧ୍ୟ ନାହିଁ । ଏହି ୬୪ ଗୁଣବିଶିଷ୍ଟ ଶ୍ରୀକୃଷ୍ଣ ସତତ ବ୍ରଜମଣ୍ଡଳରେ ବାସ କରନ୍ତି । ସେ ବ୍ରଜ ଛାଡ଼ି ଅନ୍ୟତ୍ର ଗମନ କରନ୍ତି ନାହିଁ । ମଥୁରା ଓ ଦ୍ୱାରକାକୁ ଯେ ଗମନ କରିଥିଲେ ସେ ବାସୁଦେବ । ସ୍ୱୟଂ ବ୍ରଜେନ୍ଦ୍ରନନ୍ଦନ ନୁହନ୍ତି—ତାହାଙ୍କର ଏକ ପ୍ରକାଶମୂର୍ତ୍ତି ମାତ୍ର । ଯେତେବେଳେ ସେହି ପ୍ରକାଶମୂର୍ତ୍ତି ମଥୁରାକୁ ଗମନ କରନ୍ତି, ସେତେବେଳେ ସ୍ୱୟଂ ବ୍ରଜେନ୍ଦ୍ରନନ୍ଦନ ଶ୍ରୀକୃଷ୍ଣ ଯୋଗମାୟାଙ୍କ ଶକ୍ତିରେ ଅଲକ୍ଷିତଭାବେ ବ୍ରଜରେ ରହିଥିଲେ ।

କେହି କେହି କହିପାରନ୍ତି ଭଗବାନ୍ ନିରାକାର ତାଙ୍କର ବିଗ୍ରହ ଆସିଲା କେଉଁଠୁ । ବେଦାନ୍ତରେ ଅଛି, ଭଗବାନ ସର୍ବୈଶ୍ୱର୍ଯ୍ୟରୂପେ ସଚ୍ଚିଦାନନ୍ଦ ବିଗ୍ରହଧାରୀ । ସେ ଶ୍ରୀକୃଷ୍ଣ ଆଦି ପୁରୁଷ ଏବଂ ସର୍ବ କାରଣର କାରଣ । ସେ ଅବତାରୀ ଓ ମତ୍ସ୍ୟ କୂର୍ମାଦି ତାଙ୍କର ଅବତାର । ସେ ବ୍ରହ୍ମା, ବିଷ୍ଣୁ ଓ ଶିବଙ୍କୁ ସୃଜନ, ପାଳନ ଓ ସଂହାର କାର୍ଯ୍ୟରେ ନିଯୁକ୍ତ କରିଅଛନ୍ତି । ଅନ୍ୟ ସମସ୍ତେ ତାଙ୍କର ଅଜ୍ଞାନୁସରଣ କରି ଚଳୁଅଛନ୍ତି; ମାତ୍ର ଶ୍ରୀକୃଷ୍ଣଙ୍କ ଇଚ୍ଛା ବ୍ୟତୀତ କିଛି ସିଦ୍ଧ ହୋଇ ନ ପାରେ । ଜୀବନ, ମରଣ ଓ ରକ୍ଷଣାବେକ୍ଷଣ ସମସ୍ତହିଁ ଶ୍ରୀକୃଷ୍ଣଙ୍କର କାର୍ଯ୍ୟ, ତାହା ଛଡ଼ା ଆଉ କିଛି ନାହିଁ ।

"ଜୀବନ ମରଣ କୃଷ୍ଣ ଇଚ୍ଛାରେ ହୁଅଇ ।
ବିଷ ବା ଅମୃତ ଭକ୍ଷି କିଛି ନ ହୁଅଇ ॥
ରଖନ୍ତି ମାରନ୍ତି ଯାକୁ ଯେମନ୍ତ ପ୍ରକାରେ ।
ତାଙ୍କ ବିନା ଅନ୍ୟ କେହି କରିଣ ନ ପାରେ ॥"



ଠାଣ ମାଷ୍ଟରେଡ଼ ଫାଳ ଓଲଟାଇ ଠାଣେ କେ ନ କରି ଖାତ ।

## ଶ୍ରୀରାଧା ତତ୍ତ୍ୱ ।

ଶ୍ରୀରାଧା ଓ ଶ୍ରୀକୃଷ୍ଣ ଏକ । ଏକ ରସ ଆସ୍ୱାଦନ ନିମିତ୍ତ ଦୁଇଦେହ ଧାରଣ କରିଅଛନ୍ତି । ଅଗ୍ନି ଓ ତାହାର ଜ୍ୱାଳା ଯେପରି ଏକ ବସ୍ତୁ, ମୃଗମଦ ଓ ତାହାର ଗନ୍ଧ ଯେପରି ଏକ-ବସ୍ତୁ, ଶ୍ରୀରାଧା ଓ ଶ୍ରୀକୃଷ୍ଣ ସେହିପରି ଦୁଇଦେହ ହେଲେ ମଧ୍ୟ ଏକ । ସେ କୃଷ୍ଣଙ୍କ ଆହ୍ଲାଦ କରନ୍ତି ବୋଲି ତାଙ୍କ ନାମ ଆହ୍ଲାଦିନୀ । ଶ୍ରୀକୃଷ୍ଣ ଯେପରି ଅବତାରାବଳୀର ବୀଜ, ଶ୍ରୀରାଧା ମଧ୍ୟ ସେହିପରି ମୂଳ ଶକ୍ତି । ଅନ୍ୟ ସମସ୍ତ ଶକ୍ତି ଶ୍ରୀରାଧାଙ୍କର ଅଂଶ । ରାଧା ଶକ୍ତିଗଣମଧ୍ୟେ ଅଂଶିନୀ । ଦ୍ୱାରକାପୁରର ଶ୍ରୀକୃଷ୍ଣ ପଟ୍ଟମହିଷୀ ଶ୍ରୀମତୀ ସତ୍ୟଭାମା ତାହାଙ୍କର ସୌଭାଗ୍ୟ ବାଞ୍ଛା କରନ୍ତି । ଅଶେଷ ଗୁଣଶାଳିନୀ ଲଳିତାଦି ବ୍ରଜରମଣୀଗଣ ଏହାଙ୍କ ନିକଟରେ କଳା ବିଳାସ ଶିକ୍ଷାକରନ୍ତି, ଶ୍ରୀନାରାୟଣଙ୍କର ଅଙ୍କଶୋଭିନୀ ଲକ୍ଷ୍ମୀ ଠାକୁରାଣୀ ଓ ଶିବପତ୍ନୀ ପାର୍ବତୀ ଏହାଙ୍କର ସୌନ୍ଦର୍ଯ୍ୟାଦି ଗୁଣର ଅଭିଳାଷ କରନ୍ତି ଏବଂ ପତିବ୍ରତା ଶିରୋମଣି ଅରୁନ୍ଧତୀ ଏହାଙ୍କର ପାତିବ୍ରତ୍ୟ ଧର୍ମ ଇଚ୍ଛାକରନ୍ତି । ଏପରି କି ସ୍ୱୟଂ ବ୍ରଜେନ୍ଦ୍ରନନ୍ଦନ ଶ୍ରୀକୃଷ୍ଣ ଏହାଙ୍କର ଗୁଣ ଗଣନା କରି ସୀମା ପାଆନ୍ତି ନାହିଁ ।

ଏହି ମହାଭାବ ଚିନ୍ତାମଣିସ୍ୱରୂପିଣୀ ଶ୍ରୀରାଧାଙ୍କୁ ତାଙ୍କର କାୟବ୍ୟୂହରୂପା ସଖୀଗଣ ସତତ ଶ୍ରୀକୃଷ୍ଣଙ୍କ ସହିତ ବିଳାସ କରାଇ ନାନାପ୍ରକାର ସୁଖ ଆସ୍ୱାଦନ କରନ୍ତି । ବ୍ରଜର ମଧୁର ରସାଶ୍ରିତା ସଖୀ ଓ ମଞ୍ଜରୀ ବ୍ୟତୀତ ଅନ୍ୟ କାହାର ମଧ୍ୟ ସେ ଉଜ୍ଜ୍ୱଳ ମଧୁର ରସ ଆସ୍ୱାଦନର ଶକ୍ତି ନାହିଁ । ସଖୀଗଣ ଶ୍ରୀରାଧା ଗୋବିନ୍ଦଙ୍କର ଅଶେଷପ୍ରକାର ଲୀଳାର ବିସ୍ତାର କରନ୍ତି, ଏବଂ ଅନେକ ପ୍ରକାର ହାସ୍ୟ ପରିହାସ ବାକ୍ୟଦ୍ୱାରା ଲୀଳାର ପୁଷ୍ଟି-ସାଧନ କରନ୍ତି । ସେମାନ ସମୁଦ୍ରଲହରୀବତ୍ ଗଣନା କରାଯାଇ ପାରେନାହିଁ ।

ଶ୍ରୀରାଧା ଗୋବିନ୍ଦଙ୍କର ଏହି ଅପୂର୍ବ ବ୍ରଜଲୀଳାରେ ଶ୍ରୀ ଲକ୍ଷ୍ମୀ ଠାକୁରାଣୀଙ୍କର ପର୍ଯ୍ୟନ୍ତ ଅଧିକାର ନାହିଁ । ଗୋପୀଙ୍କ ଛଡ଼ା ଅନ୍ୟ କୌଣସି ନାରୀ ବ୍ରଜେନ୍ଦ୍ରନନ୍ଦନ ଶ୍ରୀକୃଷ୍ଣଙ୍କର ମନୋହରଣ କରିପାରନ୍ତି ନାହିଁ । ଗୋପୀଗଣଙ୍କର ଏହି ବିଶୁଦ୍ଧ ମଧୁର ଭାବରେ ଐଶ୍ୱର୍ଯ୍ୟର ଗନ୍ଧମାତ୍ର ନାହିଁ । ଲକ୍ଷ୍ମୀଠାକୁରାଣୀ ଐଶ୍ୱର୍ଯ୍ୟ ଭାବର ଭଜନା କରିବାରୁ ଓ ନାରୀକୁଳ-ମୁକୁଟମଣି ଶ୍ରୀରାଧାଙ୍କର ଆନୁଗତ୍ୟ ସ୍ୱୀକାର ନ କରିବାରୁ ତପସ୍ୟା କରି ମଧ୍ୟ ବ୍ରଜରେ ବ୍ରଜେନ୍ଦ୍ରନନ୍ଦନଙ୍କୁ ପାଇ ପାରିଲେ ନାହିଁ । ଏହି ଗୋପୀଗଣଙ୍କର ବିଶୁଦ୍ଧ ପ୍ରୀତି 'କେବଳା' ନାମରେ ଅଭିହିତ । ଏହି କେବଳା ଭାବର ଭଜନକୁ ଶ୍ରୀକୃଷ୍ଣ-ସଖା ଉଦ୍ଧବ ପ୍ରଶଂସା କରି ଯାଇଛନ୍ତି । ଶ୍ରୀକୃଷ୍ଣ ଦ୍ୱାରକାପୁରରୁ ଉଦ୍ଧବଙ୍କୁ ବ୍ରଜକୁ ପଠାଇଥିଲେ । ସେ ପ୍ରେମବତୀ ଗୋପରମଣୀଙ୍କର ନିର୍ମଳ ଭଜନରୀତି ଦର୍ଶନକରି ଚମତ୍କୃତ ହୋଇଥିଲେ ଏବଂ ଯୋଗୀମାନଙ୍କର ପଦରଜପ୍ରାର୍ଥୀ ହୋଇଥିଲେ । ବ୍ରଜର ଗୋପୀଗଣ ଶ୍ରୀକୃଷ୍ଣଙ୍କୁ ଉତ୍କୃଷ୍ଟତମ ପ୍ରୀତି ପ୍ରଦାନ କରନ୍ତି । ଅନ୍ୟ କୌଣସି ନାରୀ ରସିକଶେଖରଙ୍କ ଚରଣକୁ ଉତ୍କୃଷ୍ଟତରମାଣରେ ରସାସ୍ୱାଦନ କରାଇ ପାରନ୍ତି ନାହିଁ । ଗୋପୀଗଣଙ୍କ ପ୍ରେମରେ ସ୍ୱସୁଖର ଦୋଷ ନାହିଁ, ସେଥିପାଇଁ ଶ୍ରୀକୃଷ୍ଣ ଗୋପୀପ୍ରେମରେ ଅତ୍ୟନ୍ତ ପ୍ରୀତି ଲାଭକରନ୍ତି । କୃଷ୍ଣସୁଖହିଁ ଗୋପରମଣୀମାନଙ୍କର ଏକମାତ୍ର ଉଦ୍ଦେଶ୍ୟ । ନିଜ ନିଜ ସୁଖ ପ୍ରତି ସେମାନଙ୍କର ଚିହ୍ନମାତ୍ର ଆକାଙ୍କ୍ଷା କିମ୍ବା ଆପଣାର ଅସୀମ କଷ୍ଟ ପ୍ରତି କୌଣସିପ୍ରକାର ଭ୍ରୂକ୍ଷେପ ନାହିଁ । ଏହା ସୁନିର୍ମଳ ପ୍ରେମ, ଏଥିରେ ବିନ୍ଦୁମାତ୍ର କଳଙ୍କ ନାହିଁ । ଥରେ ମହର୍ଷି ନାରଦ 'ଗୋପୀପ୍ରେମ' ଉପଲବ୍ଧି କରିବାକୁ ପ୍ରୟାସୀ ହୋଇ ଦ୍ୱାରକାରେ ଶ୍ରୀ କୃଷ୍ଣଙ୍କୁ ତାହା ପଚାରିଥିଲେ । ଶ୍ରୀକୃଷ୍ଣ ବାକ୍ୟରେ ନ ବୁଝାଇ କାର୍ଯ୍ୟରେ ବୁଝାଇ ଦେବାକୁ ଇଚ୍ଛାକଲେ । ସ୍ୱକୀୟ ଇଚ୍ଛାରେ ନିଜର ଶ୍ରୀଅଙ୍ଗରେ ଜ୍ୱର ସଞ୍ଚାତ ହେଲା । ଅନେକ ଯତ୍ନରେ ମଧ୍ୟ ତାହାର କିଛିମାତ୍ର ଉପଶମ ହେଲାନାହିଁ । ଦ୍ୱାରକାବାସୀ ଶ୍ରୀକୃଷ୍ଣଙ୍କ ପୀଡ଼ାରେ ଅତିଶୟ ବ୍ୟାକୁଳ ହେଲେ । ଶ୍ରୀମତୀ ସତ୍ୟଭାମା, ରୁକ୍ମିଣୀ ପ୍ରଭୃତି ଶ୍ରୀକୃଷ୍ଣମହିଷୀଗଣଙ୍କର ଚିନ୍ତାର ସୀମା ରହିଲାନାହିଁ । ଶ୍ରୀକୃଷ୍ଣ କହିଲେ, "ଏ ଜ୍ୱର ଅନ୍ୟ ଉପାୟରେ ଉପଶମ ହେବନାହିଁ । ଯେବେ ମୋର ଏହି ପତ୍ନୀମାନଙ୍କ ମଧ୍ୟରୁ କେହି ନିଜର ପଦଧୂଳି ମୋ ମଥାରେ ଦିଅନ୍ତି, ତେବେ ଶୀଘ୍ର ଏହି ଜ୍ୱର ଉପଶମ ହୋଇପାରେ ।" ମହିଷୀମାନଙ୍କ ମଧ୍ୟରେ କେହି ଶ୍ରୀକୃଷ୍ଣଙ୍କ ମସ୍ତକରେ ନିଜର ପଦଧୂଳି ଦେବାକୁ ସମ୍ମତ ହେଲେନାହିଁ । ସେମାନେ କହିଲେ "ଆମ୍ଭେମାନେ ଶ୍ରୀକୃଷ୍ଣଙ୍କର ଦାସୀ, ଆମ୍ଭେମାନେ କିପରି ତାଙ୍କ

ନିଜ ଦୋଷ ଆଗେ ଦେଖ, ପର ଦୋଷ ପଛେ ଲେଖ ।

ମୟଂକରେ ଚରଣଧୂଳି ଦେବନାହିଁ ?" ତତ୍ପରେ ଶ୍ରୀକୃଷ୍ଣ ନାରଦଙ୍କୁ ବୃନ୍ଦାବନକୁ ରାଧା କିମ୍ବା ଅନ୍ୟ କୌଣସି ଗୋପୀଙ୍କର ପଦଧୂଳି ଆଣିବାକୁ ପ୍ରେରଣ କଲେ । ନାରଦ ଯାଇ ଗୋପୀଗଣପରିବେଷ୍ଟିତା ବିରହିଣୀ ଶ୍ରୀରାଧାଙ୍କୁ ଉକ୍ତ ବିଷୟ ଜ୍ଞାପନ କରାଇଲେ । ସେମାନେ ଶ୍ରୀକୃଷ୍ଣଙ୍କ ଜ୍ୱରସମ୍ବାଦରେ ନିତାନ୍ତ କାତର ହୋଇ କହିଲେ, "ମୁନିବର, ଆପଣ କ୍ଷଣକାଳ ବିଳମ୍ବ ନ କରି ଅମ୍ଭମାନଙ୍କର ପଦଧୂଳି ନେଇ ଦ୍ୱାରକାକୁ ପ୍ରତ୍ୟାଗମନ କରନ୍ତୁ, ଶ୍ରୀକୃଷ୍ଣଙ୍କର କଷ୍ଟହିଁ ପୀଡ଼ା ମଧ୍ୟ ଅମ୍ଭମାନଙ୍କର ଅସହ୍ୟ" । ଏଥିରୁ ସ୍ପଷ୍ଟରୂପେ ଜଣାଯାଉଛି, କେବଳ କୃଷ୍ଣସୁଖହିଁ ଗୋପୀମାନଙ୍କ ଜୀବନର ଲକ୍ଷ୍ୟ । ଏଣୁ ସେମାନେ ଅପରାଧ ବା ଭୟ କିମ୍ବା ଧର୍ମାଧର୍ମ ବିଚାର ନ କରି ଆପଣାର ପଦଧୂଳି ପଠାଇଦେଲେ ।

"ଆତ୍ମ ସୁଖ ଦୁଃଖ ଗୋପୀ ନ କରେ ବିଚାର
କୃଷ୍ଣସୁଖ ହେତୁ କରେ ସବୁ ବ୍ୟବହାର ।
କୃଷ୍ଣ ବିନୋ ଆଉ ସବୁ କରି ପରିତ୍ୟାଗ
କୃଷ୍ଣସୁଖ ହେତୁ କରେ ଶୁଦ୍ଧ ଅନୁରାଗ ।"

❋ ❋ ❋ ❋

"ରାଧାକୃଷ୍ଣ ଏକଆତ୍ମା ଦୁଇ ଦେହ ଧରି
ଅନ୍ୟୋନ୍ୟେ ବିଳାସେ ରସ ଆସ୍ୱାଦନ କରି ।
ରାଧା ପୂର୍ଣ୍ଣଶକ୍ତି, କୃଷ୍ଣ ପୂର୍ଣ୍ଣଶକ୍ତିମାନ ।
ଦୁଇବସ୍ତୁ ଭେଦ ନାହିଁ ଶାସ୍ତ୍ର ପରମାଣ ।"



# ଜ୍ଞାନମଞ୍ଜରୀ ।

## ( ଯୌଗିକ ପନ୍ଥା )

### ଶଯ୍ୟାତ୍ୟାଗ ।

ବ୍ରାହ୍ମ ମୁହୂର୍ତ୍ତରୁ ଶଯ୍ୟା ତ୍ୟାଗ କରିବା ସମସ୍ତଙ୍କର କର୍ତ୍ତବ୍ୟ । ଅନ୍ତତଃ ପ୍ରତ୍ୟେକ ବ୍ୟକ୍ତିଙ୍କର ସୂର୍ଯ୍ୟୋଦୟ ପୂର୍ବରୁ ନିଦ୍ରା ପରିହାର କରିବା ଉଚିତ । ଯେଉଁମାନଙ୍କର ପ୍ରାତଃକାଳରେ ସ୍ନାନ କରିବାର ଅଭ୍ୟାସ ଅଛି ସେମାନେ ସ୍ନାନ କରି ପାରନ୍ତି । କିନ୍ତୁ ଯେଉଁମାନଙ୍କର ଅଭ୍ୟାସ ନାହିଁ ସେମାନଙ୍କର ୯ଟା ପରେ ସ୍ନାନ କରିବା ଶ୍ରେୟ । କିନ୍ତୁ ସୂର୍ଯ୍ୟୋଦୟଠାରୁ ୯ଟା ମଧ୍ୟରେ ସ୍ନାନ କରିବା ଅନୁଚିତ, କାରଣ ଏ ସମୟରେ ବାୟୁ, ପିତ୍ତ ଓ କଫର ସମତା ଥାଏ ନାହିଁ ।

## ପ୍ରାତଃକାଳରେ ନିଦ୍ରା ଭାଙ୍ଗିଲେ କିଂ କାର୍ଯ୍ୟ କରିବା ଉଚିତ ।

ପ୍ରତ୍ୟେକ ପ୍ରାତଃକାଳରେ ଶଯ୍ୟା ତ୍ୟାଗ କରିବା ପୂର୍ବରୁ ପ୍ରଥମେ ଶନ୍ଦ ଦୁଇ ହାତ ଯୋଡ଼ି ଘଷି ଦେଇ ପୁଣି ସେ ଗୁଡ଼ିକ ଏକ ସଙ୍ଗରେ ପେଟର ଆଣି କହୁଣି ଦ୍ୱାରା ଯକୃତ୍ ଓ ପ୍ଲୀହାର ସ୍ଥାନରେ ଘଷି ଦେବ । ଏହିପରି ୩।୪ ଥର କରିବା ପରେ ଦୁଇ ଏକ ମିନିଟ୍ ମୁହଁ ମାଡ଼ି ଶୋଇବା ଉଚିତ, ଏହାଦ୍ୱାରା ପ୍ଲୀହା ଓ ଯକୃତ୍ କ୍ରମାନ୍ୱୟ ବିନା ଔଷଧରେ କମିଯିବ ଓ ଏହି ପ୍ରକ୍ରିୟା ଦ୍ୱାରା ବାହ୍ୟର ବେଗ ସହଜରେ ଆସିବ । ପ୍ରାତଃକାଳରେ ଶଯ୍ୟାତ୍ୟାଗ କରିବା ସମୟରେ ଓ ଆହାରାନ୍ତେ ଦକ୍ଷିଣ ହସ୍ତ ବୃଦ୍ଧାଙ୍ଗୁଳିର ନିମ୍ନଭାଗ ଦ୍ୱାରା କପାଳ ଭାଗ ଓ କଣ୍ଠପୃଷ୍ଠ ୨।୩ ଥର ଘଷି ଦେବା ଉଚିତ, କାରଣ ଏହି ପ୍ରକ୍ରିୟା ଦ୍ୱାରା କଫାଶ୍ରିତ ବାୟୁ ଓ ଶ୍ଳେଷ୍ମାର ଦୋଷ ନଷ୍ଟହୁଏ । ପ୍ରାତଃକାଳରେ ଓ ସନ୍ଧ୍ୟା ସମୟରେ ତର୍ଜନୀ ଦ୍ୱାରା କାନ ଭିତରେ ଘଷି ଦେବା ଉଚିତ । ଏହାଦ୍ୱାରା ଯାବତୀୟ କର୍ଣ୍ଣ ରୋଗ ନଷ୍ଟ ହୁଏ ।

## ମଳ ଓ ପ୍ରସ୍ରାବ ତ୍ୟାଗ କରିବା ସମୟରେ କର୍ତ୍ତବ୍ୟ ।

ଦକ୍ଷିଣ ନାସିକାରେ ଶ୍ୱାସ ପ୍ରବାହିତ ସମୟରେ ମଳତ୍ୟାଗ ଓ ବାମ ନାସିକାରେ ଶ୍ୱାସ ପ୍ରବାହିତ ସମୟରେ ମୂତ୍ରତ୍ୟାଗ କରିବା ଉଚିତ । କିନ୍ତୁ ଏହାର ବିପରୀତ କଲେ ଶୁକ୍ର କ୍ଷରଣ ହୁଏ । ମଳତ୍ୟାଗ କରିବା ସମୟରେ ସ୍ୱତଃ ପ୍ରସ୍ରାବ ହେବ । କିନ୍ତୁ ସେଥିରେ କିଛି ଦୋଷ ନାହିଁ । ମଳତ୍ୟାଗ କରିବା ସମୟରେ ଦାନ୍ତକୁ ଦାନ୍ତ ଚପି ଓ ଅଣ୍ଡକୋଷ ଦୁଇଟି ହସ୍ତଦ୍ୱାରା ଚପିଧରି ବସିବା ଉଚିତ । ଏହାଦ୍ୱାରା ବୃଦ୍ଧ କାଳରେ ମୁଦ୍ଧା ଦାନ୍ତପଡ଼ିବ ନାହିଁ ଓ ଏକ ଶିରା ରୋଗ ଜୀବନରେ ହେବ ନାହିଁ ।

କୃଷକ ପାଇଁ ଜଗତଜନ, ବଗ୍ଗୁର, ଅଛି କି ତା ସନମାନ ।

ପ୍ରତ୍ୟେକ ଲୋକର ଲେଙ୍ଗୁଟୀ ଓ କୌପୀନ ବ୍ୟବହାର କରିବା ଉଚିତ ।

## ହାତମୁହଁ ଧୋଇବାର ନିୟମ ।

ପ୍ରତ୍ୟହ ପ୍ରାତଃକାଳରେ ମୁହଁ ଧୋଇବାବେଳେ ପ୍ରଥମେ ମୁହଁ ପୂରି ଜଳ ନେଇ ୨୦।୨୫ ଥର ଆଖିରେ ପାଣି ଛିଟା ମାରିବା ଉଚିତ । ପରେ ଜଳରେ ମୁଖ ପୂର୍ଣ୍ଣକରି ଆଖିରେ ୫।୬ ଥର ପାଣିଛିଟା ମାରି ପାଟିରେ ଥିବା ପାଣି ଫିଙ୍ଗିଦେଇ ପୁଣି ହାତରେ ଜଳ ନେଇ ମୁହଁ ଓ କପାଳ ଭଲକରି ଧୋଇଦେବା କର୍ତ୍ତବ୍ୟ । ଏହିପରି ୩।୪ ଥର କରିବା ପରେ ଦାନ୍ତ ଘଷିବା ଉଚିତ । ଯାହା ନିର୍ମିତ ଜିଭଛେଲା ବ୍ୟବହାର କରିବା କର୍ତ୍ତବ୍ୟ । ଏହିପରି ଆଖିରେ ପାଣି ଛିଟିଲେ ଆଖି କେବେ ଖରାପ ହେବ ନାହିଁ ଓ ବୃଦ୍ଧ ବୟସରେ ଚଷମା ବ୍ୟବହାର କରିବାକୁ ପଡ଼ିବ ନାହିଁ ।

## ଆହାରର ସମୟ ।

ଦକ୍ଷିଣ ନାସିକାରେ ଶ୍ୱାସ ପ୍ରବାହିତ ସମୟରେ ଆହାର କରିବା ଓ ବାମ ନାସିକାରେ ଶ୍ୱାସ ପ୍ରବାହିତ ସମୟରେ ଜଳପାନ କରିବା ଉଚିତ ।

## ପ୍ରାତଃକାଳରେ ଶଯ୍ୟାରୁ ଉଠିବାର ନିୟମ

ପ୍ରତିଦିନ ପ୍ରାତଃକାଳରେ ନିଦ୍ରାଭଙ୍ଗ ହେଲେ ଶଯ୍ୟାରୁ ଉଠିବା ସମୟରେ ଯେଉଁ ନାସିକାରେ ଶ୍ୱାସ ବହୁଥିବ, ସେହି ଅଙ୍ଗର ହସ୍ତରେ ସେହି ଅଙ୍ଗ ମୁଖ ସ୍ପର୍ଶ କରି ଉଠିଲେ ବାଞ୍ଛିତ ଫଳ ଲାଭ ହୁଏ, ସେ ଦିନ କୌଣସି ହାନି କିମ୍ବା ବିପଦ ଘଟେ ନାହିଁ । ଏପରିକି ଗୋଡ଼ରେ କଣ୍ଟା ସୁଦ୍ଧା ଭୁକିବ ନାହିଁ ।

ଶଯ୍ୟାରୁ ଓହ୍ଲାଇବା ସମୟରେ ଦୁଇ ହାତ ଚିତ୍ କରି ଆଗରେ ରଖି ହାତର ରେଖାମାନଙ୍କୁ ମୋଟରେ ଦେଖିବ । ପରେ ଯେଉଁ ନାସିକାରେ ଶ୍ୱାସ ବହୁଥିବ, ସେହି ଅଙ୍ଗର ହାତରେ ମୁଖର ସେହି ପାର୍ଶ୍ୱ ସ୍ପର୍ଶ କରିବ । ତଦନନ୍ତର ଶଯ୍ୟାରୁ ଭୂମିରେ ପାଦ ଦେବା ସମୟରେ ଯେଉଁ ନାସିକାରେ ଶ୍ୱାସ ବହୁଥିବ ସେହି ଅଙ୍ଗର ପାଦ ଆଗେ ବଢ଼ାଇ ଶ୍ୱାସ ଭିତରେ ପ୍ରବେଶ କାଳରେ ଶଯ୍ୟାରୁ ଓହ୍ଲାଇବ । ପ୍ରତିଦିନ ଏହି ନିୟମ ପାଳନ କଲେ ଅତି ଆଶ୍ଚର୍ଯ୍ୟ ଫଳ ପାଇବ ।

## ବାହ୍ୟ ଓ ପ୍ରସ୍ରାବର ନିୟମ ।

ଯେଉଁ ଦିଗରୁ ବାୟୁ ପ୍ରବାହିତ ହେଉଥିବ ଓ ସୂର୍ଯ୍ୟ ଚନ୍ଦ୍ର ଆଡ଼କୁ ମୁଖ କରି ବାହ୍ୟ ବା ପ୍ରସ୍ରାବ କରିବା ଉଚିତ ନୁହେଁ । ସୂର୍ଯ୍ୟଙ୍କ ଆଡ଼କୁ ମୁହଁ କରି ପ୍ରସ୍ରାବ ଓ ବାହ୍ୟ କଲେ ଉଦର ପୀଡ଼ା ଜାତ ହୁଏ । ଚନ୍ଦ୍ର ଆଡ଼କୁ ଓ ଯେଉଁ ଦିଗରୁ ବାୟୁ ପ୍ରବାହିତ ହୁଏ ସେହି ଦିଗକୁ ମୁହଁ କରି ପ୍ରସ୍ରାବ କଲେ ଶୁକ୍ରଗତ ପୀଡ଼ା ଜନ୍ମେ ।

## ଉପବାସର ଦିନ ।

ସମସ୍ତ ଏକାଦଶୀ କିମ୍ବା ଶୟନ, ଉତ୍ଥାନ, ପାର୍ଶ୍ୱ, ଭୈମୀ ଏକାଦଶୀ, ମହାଷ୍ଟମୀ, ରାମନବମୀ, ଶିବଚତୁର୍ଦ୍ଦଶୀ, କୃଷ୍ଣଙ୍କର ଜନ୍ମାଷ୍ଟମୀ, ଦୋଳ ପୂର୍ଣ୍ଣିମା ଏହି କେତେଦିନ ଉପବାସ କରିବା ନିତାନ୍ତ କର୍ତ୍ତବ୍ୟ । ଯେବେ ଉପବାସ କରି ନ ପାରିବ ଫଳ ମୂଳ ଖାଇବ, କିନ୍ତୁ କଦାପି ଭାତ ଖାଇବ ନାହିଁ ।

## ଆହାର ପରେ କର୍ତ୍ତବ୍ୟ ।

ଆହାରାନ୍ତେ ବୀରାସନରେ ବସି ଚରୁଣିଦ୍ୱାରା ୧୫।୨୦ ମିନିଟ ମୁଣ୍ଡବାଳ ଭଲକରି କୁଣ୍ଡାଇବା ଉଚିତ । ଏହା ଦ୍ୱାରା ମସ୍ତିଷ୍କ ଶକ୍ତି ବୃଦ୍ଧିପାଏ । ତହିଁପରେ ମ ୧୦।୧୫ ମିନିଟ୍ ସମୟ ବିଶ୍ରାମ ନେଇ ନିଜ କର୍ତ୍ତବ୍ୟ କରିବା ଉଚିତ ।

ବାମ ନାସିକାରେ ଶ୍ୱାସ ପ୍ରବାହିତ ହେଲେ ଶୟନ କରିବା ଉଚିତ । ଦକ୍ଷିଣ କିମ୍ବା ପୂର୍ବ ଦିଗକୁ ମୁଣ୍ଡ କରି ବାମକର ମଡ଼ି ହୋଇ ଶୋଇବା କର୍ତ୍ତବ୍ୟ ।

## ସ୍ୱାସ୍ଥ୍ୟରକ୍ଷାର ଯୌଗିକ ଉପାୟ—

ଆମ୍ଭମାନଙ୍କର ଅଧିକାଂଶ ରୋଗ ଅପାନବାୟୁହେତୁ ଉତ୍ପନ୍ନ ହୁଏ । ଗୁହ୍ୟଠାରୁ ନାଭି ପର୍ଯ୍ୟନ୍ତ ଅପାନ ବାୟୁର ସ୍ଥାନ, ନାଭିର ମୂଳରେ ସମାନ ବାୟୁର ଅବସ୍ଥିତି । ମୁଖ ଓ ନାସିକା ଦ୍ୱାରା ଯେ ବାୟୁ ନାଭିର ଉପର ଭାଗ ପର୍ଯ୍ୟନ୍ତ ଗମନ କରେ ତାହା ପ୍ରାଣ ବାୟୁ । କଣ୍ଠ ପାଖରେ ଉଦାନ ବାୟୁର ଅବସ୍ଥିତି ଓ ସର୍ବ ଶରୀରରେ ବ୍ୟାନବାୟୁ ଅବସ୍ଥାନ କରେ ।

## ଅପାନ ବାୟୁ ଶୋଧନ କରିବାର ନିୟମ ।

ମଳ ତ୍ୟାଗ ପରେ ଶୌଚକର୍ମ କରିବା ସମୟରେ ମଧ୍ୟମାଙ୍ଗୁଳି ଦ୍ୱାରା ଗୁହ୍ୟ ଭିତରେ ଜଳ ଦେଇ ପରିଷ୍କାର କରି ଦେବା ଉଚିତ । ଏହି ପ୍ରକ୍ରିୟା ଦ୍ୱାରା ନାନାପ୍ରକାର ରୋଗ ନିବାରିତ ହୁଏ ।

## ସର୍ବବ୍ୟାଧି ବିନାଶକ ନିୟମ ।

କୌଣସି ବ୍ୟାଧି ( ଜ୍ୱର, ମୁଣ୍ଡବିନ୍ଧା ଇତ୍ୟାଦି ) ଉପସ୍ଥିତ ହେଲେ ତତକ୍ଷଣାତ୍ ଯେଉଁ ନାକପୁଡ଼ାରେ ଶ୍ୱାସ ପ୍ରବାହିତ ହେଉଥିବ, ତାହାର ବିପରୀତ ନାକପୁଡ଼ାରେ ଶ୍ୱାସ ପ୍ରବାହିତ କରିଲେ, ତାହା ତୁରନ୍ତ ଉପଶମ ହେବ । ତେଣୁ ଯେଉଁ ନାକପୁଡ଼ାରେ ଶ୍ୱାସ ପ୍ରବାହିତ ହେଉଥିବ, ତାହାର ବିପରୀତ କଡ଼ ମାଡ଼ି କାଖତଳେ ଗୋଟିଏ ତକିଆ ଦେଇ ଦୁଇ ଏକ ମିନିଟ୍ ଶୋଇଲେ, ଅନ୍ୟ ନାକପୁଡ଼ାରେ ନିଶ୍ୱାସ ବହିବ ।

## ଦୈନିକ ସୁଖଦୁଃଖ ଜାଣିବାର ଉପାୟ ।

ସୋମେ ଶୁକ୍ରେ ବୁଧେ ବାମ ।
ବାରେ ଲକ୍ଷ୍ମୀ ଜଗତେ ସମ ॥

ସୋମ, ଶୁକ୍ର, ବୁଧବାର ପ୍ରାତଃକାଳେ ବାମ ନାସା ପୁଟରେ ବାୟୁ ବହିବା ସମୟରେ ନିଦ୍ରା ଭଙ୍ଗ ହେଲେ, ସେହି ଦିନ ସୁଖରେ ଅତିବାହିତ ହେବ ଏବଂ ଦକ୍ଷିଣ ନାସାପୁଟରେ ଶ୍ୱାସ ବହିଲେ ସେ ଦିନ କୌଣସି ପ୍ରକାର ବିଘ୍ନ ବା ଚିନ୍ତା ଉପସ୍ଥିତ ହେବ ।

ରବି, ମଙ୍ଗଳ, ବୃହସ୍ପତି ଓ ଶନିବାର ଦିନ ପ୍ରାତଃକାଳରେ ଦକ୍ଷିଣ ନାସିକାରେ ଶ୍ୱାସ ପ୍ରବାହିତ ହେଲେ, ସେ ଦିନ ସୁଖରେ ଅତିବାହିତ ହେବ, କିନ୍ତୁ ଏ ଦିନମାନଙ୍କରେ ବାମ ପୁଡ଼ାରେ ଶ୍ୱାସ ପ୍ରବାହିତ ହେଲେ, ବିପରୀତ ଫଳ ଫଳିବ ।

## ଯାତ୍ରା କରିବାର ନିୟମ ।

ପୂର୍ବ ଓ ଉତ୍ତର ଦିଗକୁ ଦକ୍ଷିଣ ନାସିକାରେ ଶ୍ୱାସ ପ୍ରବାହିତ ସମୟରେ ଏବଂ ଦକ୍ଷିଣ ଓ ପଶ୍ଚିମ ଦିଗକୁ ବାମ ନାସିକାରେ ଶ୍ୱାସ ପ୍ରବାହିତ ସମୟରେ ଯିବା ଉଚିତ ।

## ବାର ଓ ସ୍ୱର ସମ୍ବନ୍ଧରେ ଦୋହା ।

ନ ହୁଅଇ ଶୁଦ୍ଧ ଦିନ ଜ୍ୟୋତିଷ ମତରେ ।
ଏଣୁ ଶିବ ଜ୍ଞାନ ଶୁଣ ତା ବିନିମୟରେ ॥
ରବିବାରେ ଯାଏ।କାଳେ ଶିରେ ଦେବ କର ।
ସୋମବାରେ ଦେବ କର ମୁଖରେ ଅବର ।
ମଙ୍ଗଳେ ଗଳାରେ ହାତ, ବୁଧରେ ଉଦରେ ।
ବୃହସ୍ପତିବାରେ ପାର୍ଶ୍ୱେ, ଶୁକ୍ରେ କର୍ଣ୍ଣୋପରେ ।
ଶନିବାରେ ପୃଷ୍ଠେ ହାତ ଯାହାର ନିର୍ଣ୍ଣୟ ।
ଅସାଧ୍ୟ ସୁସାଧ୍ୟ ଏଥେଁ ହୋଇବ ନିଶ୍ଚୟ ॥
ଅନ୍ତରେ ପ୍ରବେଶ ହେବେ କରେ ସମାରଣ ।
ସ୍ୱସ୍ତି କହି ପକାଇବ ଦକ୍ଷିଣ ଚରଣ ।

ଅଶ୍ଳେଷା, ମଘା, ବ୍ୟତିପାତ, ଶନିର ପ୍ରଥମ ଷଷ୍ଠ ଓ ଶେଷ ଦ ୪ ଣ୍ଡ ଏହି କେତୋଟି ସମୟରେ ଯେ କୌଣସି କାର୍ଯ୍ୟ କରାଯାଏ ସେଥିରେ ବିଘ୍ନ ଉପସ୍ଥିତ ହୁଏ, ଏଣୁ ଏହା ମାନି ଚଳିବା ଉଚିତ ।

## ପନ୍ଦର ଦିନ ମଧ୍ୟରେ କୌଣସି ଅସୁଖ ହେବ କି ନାହିଁ ଜାଣିବାର ଉପାୟ ।

ଶୁକ୍ଳପକ୍ଷର ପ୍ରତିପଦ ତିଥିରେ ପ୍ରଭାତରେ ନିଦ୍ରାଭଙ୍ଗ ପରେ ବାମନାସିକାରେ ଓ କୃଷ୍ଣପକ୍ଷର ପ୍ରତିପଦ ତିଥିରେ ସେହି ସମୟରେ ଦକ୍ଷିଣ ନାସିକାରେ ଯେବେ ଶ୍ୱାସ ପ୍ରବାହିତ ହୁଏ, ତେବେ ପନ୍ଦର ଦିନ ପର୍ଯ୍ୟନ୍ତ କୌଣସି ପ୍ରକାର ରୋଗ ହେବ ନାହିଁ । କିନ୍ତୁ ଏହାର ବିପରୀତ ହେଲେ ବିପରୀତ ଫଳ ଘଟିବ ।

## ନିତ୍ୟ ଜୟ ଲାଭର ସୂଚନା ।

ପ୍ରଭାତେ ଓ ମଧ୍ୟାହ୍ନେ ବାମ ନାସାରେ ଓ ସନ୍ଧ୍ୟାରେ ଦକ୍ଷିଣ ନାସିକାରେ ଶ୍ୱାସ ବହିଲେ ନିତ୍ୟ ଜୟ ଲାଭ ହେବ । ଏହାର ବିପରୀତରେ ଫଳ ଦୁଃଖଦାୟକ ହେବ । ଏହାର ଅନ୍ୟଥା ହେଲେ କାର୍ଯ୍ୟ ସିଦ୍ଧି ହେବ ନାହିଁ ।

ଦୂରକୁ ବାହାର ମହାକାଳ ଫଳ । ଭିତର ଭାହାର କଳା ବଲବଲ ।

ଯାତ୍ରାକାଳରେ ଦକ୍ଷିଣ ନାସିକାରେ ବାୟୁ ବହନ ସମୟରେ ଦକ୍ଷିଣ ପାଦ ଓ ବାମ ନାସିକାରେ ବାୟୁ ପ୍ରବାହିତ ସମୟରେ ବାମ ପାଦ ଅଗ୍ରେ ପକାଇ ଗୃହରୁ ବହିର୍ଗତ ହେବା ଉଚିତ ।

ଶନି ଓ ଶୁକ୍ରବାର ଦିନ ସାତବାର, ରବି ବୁଧ, ଓ ମଙ୍ଗଳବାର ଦିନ ଏକାଦଶବାର ଏବଂ ଗୁରୁବାର ଦିନ ଅର୍ଦ୍ଧବାର ମୃତ୍ତିକାରେ ପଦକ୍ଷେପଣ କରି ବହିର୍ଗତ ହେଲେ କାର୍ଯ୍ୟ ସିଦ୍ଧି ହେବ ।

କୌଣସି ସ୍ଥାନକୁ ଶୀଘ୍ର ଯିବାକୁ ହେଲେ, ଶତ୍ରୁ ସଙ୍ଗରେ ବିବାଦ ପାଇଁ ଯିବାକୁ ହେଲେ କିମ୍ବା ଆନର କାରଣ ଉପସ୍ଥିତ ହେଲେ, ସେତେବେଳେ ଯେଉଁ ନାସିକାରେ ଶ୍ୱାସ ବହୁଥିବ, ସେହି ଅଙ୍ଗ ଅଙ୍ଗରେ ହସ୍ତ ସ୍ପର୍ଶ କରିବ ଏବଂ ବାମ ନାସିକାରେ ଶ୍ୱାସ ବହନ ହେଲେ ଚାରିବାର ଓ ଦକ୍ଷିଣ ନାସିକାରେ ଶ୍ୱାସ ବହନ ହେଲେ ପଞ୍ଚବାର ମୃତ୍ତିକାରେ ପଦକ୍ଷେପଣ କରି ବହିର୍ଗତ ହେବ—ଏପରି ଗମନ ଶ୍ରେଷ୍ଠ । ଏଥିରେ କୌଣସି ପ୍ରକାର ଅମଙ୍ଗଳ ଘଟିବ ନାହିଁ ।

## ବାମ ନାସିକାରେ ଶ୍ୱାସ ପ୍ରବାହିତ ସମୟରେ କି କି କାର୍ଯ୍ୟ କରିବା ଉଚିତ ।

ଯାତ୍ରା, ଦାନ, ବିବାହ, ପରୋପକାର, ବିଦ୍ୟାରମ୍ଭ, ମନ୍ତ୍ରସାଧନ, ଗୀତବାଦ୍ୟ ଯୋଗାଭ୍ୟାସ, ବାଣିଜ୍ୟ ପ୍ରଭୃତି ବାମ ନାସିକାରେ ଶ୍ୱାସ ପ୍ରବାହିତ ସମୟରେ କରିବା କର୍ତ୍ତବ୍ୟ ।

## ଦକ୍ଷିଣ ନାସିକାରେ ଶ୍ୱାସ ପ୍ରବାହିତ ସମୟରେ କି କି କାର୍ଯ୍ୟ କରିବା ଉଚିତ ।

ସ୍ତ୍ରୀ ସଙ୍ଗ, ବେଶ୍ୟାଗମନ, ଶାସ୍ତ୍ରାଭ୍ୟାସ, ସ୍ନାନ, ଭୋଜନ, ବ୍ୟାୟାମ, ଅଧ୍ୟୟନ, ଅଧ୍ୟାପନ ଏବଂ ସକଳପ୍ରକାର କ୍ରୂରକର୍ମ ଦକ୍ଷିଣ ନାସିକାରେ ଶ୍ୱାସ ପ୍ରବାହିତ ସମୟରେ କରିବା କର୍ତ୍ତବ୍ୟ । ଦକ୍ଷିଣ ନାସିକାରେ ଶ୍ୱାସ ବହୁଥିବା ସମୟରେ ପାଠାଭ୍ୟାସ କଲେ ପାଠ ଶୀଘ୍ର ହୁଏ ।

## ଗୁରୁ, ବନ୍ଧୁ, ରାଜା, ଜମିଦାର, ଅମାତ୍ୟ, ପ୍ରଭୁ ଓ ଆତ୍ମୀୟଲୋକଙ୍କୁ ବଶୀଭୂତ କରିବାର ଉପାୟ ।

ଗୁରୁ, ବନ୍ଧୁ, ରାଜା, ଜମିଦାର, ଉଚ୍ଚକର୍ମଚାରୀ କିମ୍ବା ଅନ୍ୟ କୌଣସି ବ୍ୟକ୍ତି ପାଖରେ କୌଣସି କାର୍ଯ୍ୟ ସିଦ୍ଧି କିମ୍ବା ଅନୁଗ୍ରହ ପ୍ରାପ୍ତିର ଆଶା ପୋଷଣ କରି ଯାତ୍ରା କରିବା ସମୟରେ ଯେଉଁ ନାକରୁ ଶ୍ୱାସ ପ୍ରବାହିତ ହେଉଥିବ, ସେହି ଦିଗର ପଦ ଅଗ୍ରେ ବଢ଼ାଇ, ସେହିଦିଗର ମୁଖରେ ହସ୍ତ ସ୍ପର୍ଶକରି ଶ୍ୱାସ ଭିତରେ ପ୍ରବେଶ ସମୟରେ ଗୃହ ତ୍ୟାଗ କଲେ ଫଳ ସିଦ୍ଧ ହୋଇଥାଏ ।

ଅଭୀଷ୍ଟ ଲୋକ ନିକଟରେ ଉପସ୍ଥିତ ହୋଇ ସେ ସମୟରେ ତୁମ୍ଭର ଯେଉଁ ନାସିକାରୁ ଶ୍ୱାସ ପ୍ରବାହିତ ହେଉଥିବ ସେହି ଦିଗରେ ଅଭୀଷ୍ଟ ଲୋକକୁ ରଖି କଥାବାର୍ତ୍ତା କରିବା । ଏହିପରି କଲେ ତୁମ୍ଭର କାର୍ଯ୍ୟ ସିଦ୍ଧ ହେବ । ଯାତ୍ରାକାଳ ଓ ଯେ କୌଣସି ଶୁଭକାର୍ଯ୍ୟରେ ବହିର୍ଗତ ହେବାବେଳେ ଉପର ଲିଖିତ ପ୍ରକ୍ରିୟା କରି ଗଲେ କାର୍ଯ୍ୟ ସିଦ୍ଧି ହେବ ।

## ଶତ୍ରୁ, ଦୁଷ୍ଟ, ଖଳ ଓ ଅଧମ ବ୍ୟକ୍ତି ନିକଟରେ ଜୟଲାଭ କରିବାର ଉପାୟ ।

ଶତ୍ରୁ, ଦୁଷ୍ଟ ଓ ଖଳ ବ୍ୟକ୍ତି ପାଖରେ ଜୟଲାଭ କରିବାର ଇଚ୍ଛା ପୋଷଣ କରି ସ୍ୱଗୃହରୁ ବହିର୍ଗତ ହେବାବେଳେ ଯେଉଁ ନାକପୁଡ଼ାରେ ଶ୍ୱାସ ପ୍ରବାହିତ ହେଉଥିବ, ତାହାର ବିପରୀତ ଦିଗର ପଦ ଅଗ୍ରେ ବଢ଼ାଇ ଯାତ୍ରାକଲେ ଅଭୀଷ୍ଟ କାମନା ସିଦ୍ଧ ହେବ ।

## କୁପିତ ପ୍ରଭୁ, ବିଦ୍ୱେଷୀ ଓ ଖଳବ୍ୟକ୍ତିଙ୍କୁ ବଶୀଭୂତ କରିବାର ଉପାୟ ।

ଯେ କୌଣସି ଖଳ ଓ ଦୁଷ୍ଟ ବ୍ୟକ୍ତିକୁ ବଶୀଭୂତ କରିବାର କାମନା କରି ସ୍ୱଗୃହରୁ ବହିର୍ଗତ ହେବାବେଳେ ଯେଉଁ ନାସିକାରେ ଶ୍ୱାସ ପ୍ରବାହିତ ହେଉଥିବ ତାହାର ବିପରୀତ ଦିଗର ପଦ ଅଗ୍ରେ ବଢ଼ାଇ ଯାତ୍ରା କଲେ ନିଶ୍ଚୟ ମନୋବାଞ୍ଛା

ପୂର୍ଣ୍ଣ ହେବ । ତତ୍ପରେ ଅଭୀଷ୍ଟ ବ୍ୟକ୍ତି ନିକଟରେ ପହଞ୍ଚ ଯେଉଁ ନାସିକାରେ ଶ୍ୱାସ ପ୍ରବାହିତ ହେଉଥିବ ସେହି ଦିଗରୁ ହସ୍ତଦ୍ୱାରା କାର୍ଯ୍ୟ କଲେ ନିଜର ମନୋରଥ ସିଦ୍ଧ ହେବ ।

## କ୍ରୋଧିତ ପ୍ରଭୃତି କୁପିତ ବ୍ୟକ୍ତି ବା ଯେ କୌଣସି ବ୍ୟକ୍ତି ନିକଟରେ ଉପସ୍ଥିତ ହେଲେ କି କି କାର୍ଯ୍ୟ କରିବାର ଉଚିତ ।

ପୂର୍ବ କଥିତ ମତେ ଯାତ୍ରା କରି କୁପିତ ବ୍ୟକ୍ତି ନିକଟକୁ ଗମନ କରିବ ଏବଂ ଦକ୍ଷିଣ ନାସିକାରେ ତୁମ୍ଭର ଶ୍ୱାସ ବହୁଥିଲେ ତାହାଙ୍କୁ ନିଜ ବାମ ଦିଗରେ ରଖି କଥାବାର୍ତ୍ତା କହିବ । ପୁଣି ବାମ ନାସିକାରେ ତୁମ୍ଭର ଶ୍ୱାସ ବହୁଥିଲେ ତାହାଙ୍କୁ ନିଜର ଦକ୍ଷିଣ ପାର୍ଶ୍ୱରେ ରଖି କଥାବାର୍ତ୍ତା କହିବ । ଏଥିରେ କ୍ରୋଧିତ ବ୍ୟକ୍ତିର କ୍ରୋଧ ଉତ୍ତେଜଣା ପ୍ରଶମିତ ହେବ ଏବଂ ସେ ତୁମ୍ଭପ୍ରତି ସନ୍ତୁଷ୍ଟ ଓ ବଶୀଭୂତ ହେବ । ବହୁ ଚେଷ୍ଟାରେ ଓ ବହୁ ତୋଷାମୋଦରେ ଯେଉଁ ଫଳ ଲାଭ ନ ହୁଏ, ଏହି ନିୟମରେ କାର୍ଯ୍ୟ କଲେ ସେ ଫଳ ଅନାୟାସରେ ଲାଭ ହେବ ସନ୍ଦେହ ନାହିଁ ।

## ସ୍ୱପୂର୍ଣ୍ଣ ଶ୍ୱାସବେଳେ କର୍ତ୍ତବ୍ୟ ।

ଯେତେବେଳେ ଶ୍ୱାସ ଭିତରକୁ ପ୍ରବେଶ କରେ ସେତେବେଳେ ତାହାକୁ ସ୍ୱପୂର୍ଣ୍ଣ ଶ୍ୱାସ କହନ୍ତି । ଏହି ସ୍ୱପୂର୍ଣ୍ଣ ଶ୍ୱାସ ସମୟରେ ଯେ କୌଣସି କାର୍ଯ୍ୟ କରାଯିବ, ତାହା ସଫଳ ହେବ । ସ୍ୱପୂର୍ଣ୍ଣ ଶ୍ୱାସବେଳେ କାମ କଲେ ଶୀମାଖିତ ଫଳ ଲାଭହୁଏ ।

## ଶତ୍ରୁକୁ ବଶୀଭୂତ କରିବାର ଉପାୟ ।

ଗୋଟିଏ ପାତ୍ରରେ ଅଳ୍ପଜଳ ଆଣି ସୂର୍ଯ୍ୟଅଡ଼କୁ ମୁଖ କରି ମନେ ମନେ ଶତ୍ରୁ ସଙ୍ଗରେ ମିତ୍ରତା ଇଚ୍ଛାପୂର୍ବକ ସ୍ୱପୂର୍ଣ୍ଣ ଶ୍ୱାସ ସମୟରେ ନାସାରନ୍ଧ୍ର ଦ୍ୱାରା ଏହି ଜଳ ଟାଣିନେବ । ଏହିପରି ପ୍ରତ୍ୟହ ପ୍ରାତଃକାଳେ ଥରେ ଲେଖାଏଁ କିଛିଦିନ କଲେ, ଶତ୍ରୁ ସଙ୍ଗରେ ମିତ୍ରତା ସ୍ଥାପିତ ହେବ ।

## ସ୍ତ୍ରୀକୁ ବଶୀଭୂତ କରିବାର ଉପାୟ ।

ଯେଉଁ ନାସିକାରେ ଶ୍ୱାସ ପ୍ରବାହିତ ହେଉଥିବ, ସେହି ଦିଗରେ ନିଜ ସ୍ତ୍ରୀକୁ ରଖି ତାହା ସହିତ କଥାବାର୍ତ୍ତା, ଶୟନ ଓ ସଙ୍ଗମ କଲେ ସ୍ତ୍ରୀ ବଶୀଭୂତ ହେବ ।

## ଦାନ କରିବାର ନିୟମ ।

ଭଲ ବାର ଓ ତିଥିମାନଙ୍କରେ ସ୍ୱପୂର୍ଣ୍ଣ ଶ୍ୱାସ ଗ୍ରହଣ ସମୟରେ ଦାନକଲେ ଦାନର ଫଳ ଅଧିକ ହୁଏ ।

## ଶ୍ରାନ୍ତି ଦୂର କରିବାର ନିୟମ ।

ବହୁପଥ ଚାଲି ଚାଲି କ୍ଲାନ୍ତହୋଇ ପଡ଼ିଲେ ଅଥବା କଠିନ ପରିଶ୍ରମ ପରେ କ୍ଲାନ୍ତହେଲେ ଦକ୍ଷିଣ କଡ଼ମାଡ଼ି କିଛି ସମୟ ଶୟନ କଲେ ଶ୍ରାନ୍ତି ଦୂରୀଭୂତ ହେବ ।

## ଅଗ୍ନି ନିର୍ବାଣ କରିବାର କୌଶଳ ।

କୌଣସି ଗୃହ ବା ଯେ କୌଣସି ସ୍ଥାନରେ ଅଗ୍ନି ଲାଗିଲେ, ଛୋଟ ଘଟିକାରେ ଏକଘଟିକା ଜଳଆଣି ଅଗ୍ନି ଆଡ଼କୁ ମୁଖ କରି ସ୍ୱପୂର୍ଣ୍ଣ ଶ୍ୱାସ ସମୟରେ ନାସାରନ୍ଧ୍ର ଦ୍ୱାରା ଜଳ ଟାଣିନେଲେ ଅଗ୍ନି ଆଉ ବୃଦ୍ଧି ପାଇବ ନାହିଁ ଓ ଅଳ୍ପ ସମୟ ଭିତରେ ଅଗ୍ନି ସ୍ତମ୍ଭୀଭୂତ ହେବ ।

## ଚିରକାଳ ଯୌବନ ରଖିବାର ଉପାୟ ।

ପ୍ରତିଦିନ ଦିବାଭାଗେ ବାମନାସିକାରେ ଓ ରାତ୍ରିରେ ଦକ୍ଷିଣ ନାସିକାରେ ଶ୍ୱାସ ପ୍ରବାହିତ କରାଇଲେ ଚିରକାଳ ଯୌବନ ରହିବ । ତେଣୁ ଦିନବେଳେ ଦକ୍ଷିଣ ନାକପୁଡ଼ାରେ ଓ ରାତିରେ ବାମ ନାକପୁଡ଼ାରେ ଗୋଟିଏ ତୁଳାର ପୁଟୁଳି ବ୍ୟବହାର କଲେ, ତାହାର ବିପରୀତ ପୁଡ଼ାରେ ଅର୍ଥାତ୍ ନିର୍ଦ୍ଦିଷ୍ଟ ପୁଡ଼ାରେ ଶ୍ୱାସ ବହିବ ।

## ପ୍ରଶ୍ନ ଗଣନା କରିବାର ନିୟମ ।

ବାମ ନାସିକାରେ ଶ୍ୱାସ ପ୍ରବାହିତ ସମୟରେ ସମ୍ମୁଖ କିମ୍ବା ବାମଦିଗରେ ଏବଂ ଦକ୍ଷିଣ ନାସିକାରେ ଶ୍ୱାସ ପ୍ରବାହିତ ସମୟରେ ଦକ୍ଷିଣଦିଗରେ ଏବଂ ପଶ୍ଚାତରେ ପ୍ରଶ୍ନ ପଚାରିଲେ ଶୁଭ ଫଳ ମିଳେ ।

## ଶୟନ କରିବାର ନିୟମ ।

ବାମ କଡ଼ ମାଡ଼ି ଶୋଇବା ଉଚିତ, ଚିତ୍ହୋଇ କଦାପି ଶୋଇବା ଉଚିତ ନୁହେ । କାରଣ ଏହାଦ୍ୱାରା ସୁଷୁମ୍ନା ନାଡ଼ିରେ ଶ୍ୱାସ ପ୍ରବାହିତ ହୋଇ ନାନା ପ୍ରକାର ରୋଗ ଉତ୍ପନ୍ନ କରାଏ ।

## ସ୍ମରଣଶକ୍ତି ବୃଦ୍ଧି ହେବାର ଉପାୟ ।

୧ । ଖଣ୍ଡିଏ ଚନ୍ଦନକାଠ ମୁଣ୍ଡ ଉପରେ ରଖି ଗୋଟିଏ କାଠର ହାତୁଡ଼ି ଦ୍ୱାରା ଅସ୍ତେ ଅସ୍ତେ ଆଘାତ କଲେ ସ୍ମରଣ ଶକ୍ତି ବୃଦ୍ଧିହେବ ।

୨ । ପ୍ରାତଃକାଳରେ ଦୁଇତୋଳା ଗୁଆଘିଅ ସହିତ ଦୁଇଟା ପାଚିଲେମ୍ବୁର ରସ ମିଶାଇ ଦଶଦିନ ସେବନ କଲେ ସ୍ମରଣ ଶକ୍ତି ବୃଦ୍ଧି ହୁଏ । ଷୋଳବର୍ଷର ପୂର୍ବ ବାଳକ ଓ ଚାଳିଶବର୍ଷର ଊର୍ଦ୍ଧ୍ୱ ବୃଦ୍ଧ ବ୍ୟକ୍ତିପକ୍ଷରେ ଏହା ବ୍ୟବହାରଯୋଗ୍ୟ ନୁହେ ।

## ସୁପୁତ୍ର ଲାଭ କରିବାର ଉପାୟ ।

ସ୍ତ୍ରୀଲୋକମାନଙ୍କର ଋତୁପରେ ଷୋଳଦିନ ପର୍ଯ୍ୟନ୍ତ ଗର୍ଭଧାରଣ କରିବାର ଶକ୍ତି ଥାଏ । କିନ୍ତୁ ସୁସନ୍ତାନ ଲାଭ କରିବାକୁ ହେଲେ ପ୍ରଥମ ଚାରିଦିନ, ଏଗାର ଏବଂ ତେରଦିନ ବାଦ୍ ଦେଇ ଅନ୍ୟଦିନରେ ସଙ୍ଗମ ବିଧେୟ । ଅବଶିଷ୍ଟ ଦଶଦିନ ମଧ୍ୟରୁ ଯେତେ ବିଳମ୍ବରେ ସଙ୍ଗମ କରିବ, ସନ୍ତାନ ତେତେ ସୌଭାଗ୍ୟଶାଳୀ, ବଳବାନ୍, ଧନବାନ୍ ହେବ ଏବଂ ସନ୍ତାନର ଆୟୁ ବୃଦ୍ଧି ହେବ । ପୁଣି ଏହି ଦଶଦିନ ମଧ୍ୟରେ ଯଦି ରବିବାର, ଗୁରୁବାର, ଅମାବାସ୍ୟା, ପୂର୍ଣ୍ଣିମା, ଚତୁର୍ଦ୍ଦଶୀ, ଅଷ୍ଟମୀ ବା ସଂକ୍ରାନ୍ତି ପଡ଼େ, ତାହା ହେଲେ ତାହା ବାଦ୍ ଦେବାକୁ ପଡ଼ିବ । ଏହା ବ୍ୟତୀତ ଯେଉଁ ଅବଶିଷ୍ଟ ଦିନ ରହିବ, ସେଦିନ ରାତିର ୪ର୍ଥ ପ୍ରହରରେ ( ତୃତୀୟ ପ୍ରହରର ଶେଷ ଓ ଚତୁର୍ଥ ପ୍ରହରର ଆରମ୍ଭରେ ) ଗର୍ଭାଧାନ କଲେ ଯେଉଁ ସନ୍ତାନ ହେବ, ସେ ସୌଭାଗ୍ୟଶାଳୀ ଓ ସର୍ବଗୁଣସମ୍ପନ୍ନ ହେବ ।

## ସ୍ୱପ୍ନଦୋଷ ନିବାରଣ କରିବାର ଉପାୟ ।

ଲାଲ ନଳିଦୁଲ୍ଲାଲ ଫୁଲର କେତେକ ଢାଳ ପରିଷ୍କୃତ ପରିଚ୍ଛନ୍ନ ହୋଇ ଦକ୍ଷିଣ ନାସିକାରେ ଶ୍ୱାସ ପ୍ରବାହିତ ସମୟରେ ତୋଳି ସେ ଗୁଡ଼ିକୁ ଏକ ଲୁହାର ହେଉଁରିଆ ଭିତରେ ପୂରାଇ ଅଣ୍ଟାରେ ବାନ୍ଧିଲେ ସ୍ୱପ୍ନଦୋଷ ନିବାରିତ ହେବ । ସ୍ଥାନେ ନଳିଦୁଲ୍ଲାଳ ଫୁଲକୁ ସନ୍ଧ୍ୟାମାଳତୀ ଫୁଲ ବୋଲନ୍ତି ଏହା ଉପରଓଲଟା ପୁଷ୍ପ ।

## ମୋକଦ୍ଦମାରେ ଜୟଲାଭ କରିବାର ଉପାୟ ।

ଯେବେ ମିଥ୍ୟା ମୋକଦ୍ଦମା ନ ହୁଏ, ତେବେ ଯେତେବେଳେ ଦକ୍ଷିଣ ନାସାରେ ନିଶ୍ୱାସ ବହୁଥାଏ, ସେତେବେଳେ ଅଗ୍ରେ ବାମ ପାଦ ବଢ଼ାଇ ମୋକଦ୍ଦମାକୁ ଯାତ୍ରା କଲେ ସେ ମୋକଦ୍ଦମାରେ ନିଶ୍ଚୟ ନିଶ୍ଚୟ ଜୟଲାଭ ହେବ । ପୁଣି ବିଚାରପତିଙ୍କ ସମ୍ମୁଖରେ ଦଣ୍ଡାୟମାନ ହୋଇ କଥାବାର୍ତ୍ତା କହିବାକୁ ଓ ଏଜାହାର ଦେବା ସମୟରେ ନିଜର ଯେଉଁ ନାସିକାରେ ନିଶ୍ୱାସ ବହୁଥିବ, ବିଚାରକଙ୍କୁ ସେହି ପାର୍ଶ୍ୱରେ ରଖି ଏବଂ ଯେଉଁ ନାସିକାରେ ନିଶ୍ୱାସ ବନ୍ଦଥିବ ସେହି ପାର୍ଶ୍ୱରେ ବିବାଦୀକୁ ରଖି କଥାବାର୍ତ୍ତା କଲେ ମୋକଦ୍ଦମାରେ ଜୟଲାଭ କରିବ ।

## ରକ୍ତ ପରୀକ୍ଷାର କୌଶଳ ।

ସ୍ଥିରଭାବରେ ସିଧା ହୋଇ ବସି ଓଷ୍ଠଦ୍ୱୟ ଫାକ କରି ଅଳ୍ପ ଅଳ୍ପ କରି ଅସ୍ତେ ଅସ୍ତେ ଶବ୍ଦ କରି ବାହାରର ବତାସ ଅପଣା ଦମ ଅନୁସାରେ ଟାଣି ନେଇ ମୁଖ ବନ୍ଦ କରିବ ଏବଂ ଢୋକ ଗିଳିବା ପରି ଗିଳି ଦେଇ ଟିକିଏ ପରେ ନାସାରେ ଧୀରେ ଧୀରେ ସେହି ବାୟୁ ତ୍ୟାଗ କରିବ । ପ୍ରତିଦିନ ପ୍ରଭାତରେ, ଅପରାହ୍ଣରେ ଓ ରାତ୍ରରେ ଅନ୍ତତଃ ୫।୭ ମିନିଟ୍ ଲେଖାଏ ଏହିପରି ବାୟୁ ଟାଣିବ ଓ ଛାଡ଼ିବ । ପ୍ରତିଦିନ ଏହିପରି କଲେ ରକ୍ତ ପରିଷ୍କାର ହୋଇ ଶରୀର କନ୍ଦର୍ପ ପରି କାନ୍ତି ଓ ଜ୍ୟୋତିଃ ବିଶିଷ୍ଟ ହେବ ।

## ଜ୍ୱର ଆରୋଗ୍ୟର ଉପାୟ ।

ରୂପା ସନ୍ଦୁକ ବା ରୂପାର ପାତ୍ର ଅଥବା ଶ୍ୱେତବର୍ଣ୍ଣ ଦ୍ରବ୍ୟ ସବୁବେଳେ ଚିନ୍ତା କଲେ ଶୀଘ୍ର ଜ୍ୱର ଆରୋଗ୍ୟ ହୁଏ ।

ନିସିନ୍ଦାମୂଳ ହାତରେ ବାନ୍ଧିଲେ ସର୍ବପ୍ରକାର ଜ୍ୱର ଆରୋଗ୍ୟ ହୁଏ ।

କାଗଜିଲେମ୍ବୁ ପତ୍ରର ରସ ସକାଳେ ଓ ଉପର ଓଳ ନେଲେ ପ୍ରସୂତକ ଓ ନୂତନ ଜ୍ୱର ଆରୋଗ୍ୟ ହୁଏ ।

କୃଷ୍ଣ ପକ୍ଷରେ ଜ୍ୱର ହେଲେ ବାମ ନାସିକାର ଶ୍ୱାସ ଓ ଶୁକ୍ଳ ପକ୍ଷରେ ଜ୍ୱର ହେଲେ ଦକ୍ଷିଣ ନାସିକାର ଶ୍ୱାସ ବନ୍ଦ କରି ଯଥାକ୍ରମେ ଦକ୍ଷିଣ ଓ ବାମ ନାସାରେ ଶ୍ୱାସ ନେଲେ ଜ୍ୱର ଆରୋଗ୍ୟ ହେବ ।

ଯେ କୌଣସି ଉପସର୍ଗ ଉପସ୍ଥିତ ହେଲେ ଯେଉଁ ନାସାରେ ଶ୍ୱାସ ବହୁଥିବ ତାହା ବନ୍ଦ କରି ଅନ୍ୟ ନାସାରେ ଶ୍ୱାସ ନେଲେ ସେହି ଉପସର୍ଗ ଶାନ୍ତ ହେବ ।

## ରୋଗ ଅରୋଗ୍ୟର ଆଶ୍ଚର୍ଯ୍ୟ କୌଶଳ ।

( କ ) ଲଲାଟୋପରି ପୂର୍ଣ୍ଣଚନ୍ଦ୍ର ସଦୃଶ ଜ୍ୟୋତି ଧ୍ୟାନ କଲେ ରୋଗ ଆରୋଗ୍ୟ ହୁଏ ଓ ଆୟୁ ବୃଦ୍ଧି ହୁଏ ।

( ଖ ) ଦୃଷ୍ଟି ଅଗ୍ରରେ ଉଜ୍ଜ୍ୱଳ ପୀତବର୍ଣ୍ଣ ସର୍ବଦା ଧ୍ୟାନ କଲେ ବିନା ଔଷଧରେ ସର୍ବରୋଗ ଆରୋଗ୍ୟ ହୁଏ ।

( ଗ ) ପ୍ରତିଦିନ ଅର୍ଦ୍ଧଦଣ୍ଡ ପଦ୍ମାସନରେ ବସି ଦନ୍ତମୂଳ ଜିହ୍ୱାଗ୍ରରେ ଚାପି ରଖିଲେ ସର୍ବବ୍ୟାଧି ବିନଷ୍ଟ ହୁଏ ।

( ଘ ) ମସ୍ତକରେ ଶ୍ୱେତବର୍ଣ୍ଣ କିମ୍ବା ପୂର୍ଣ୍ଣଚନ୍ଦ୍ର ଧ୍ୟାନ କଲେ ଶିରଃପୀଡ଼ା ଆଦି ଶିରର ଯାବତୀୟ ଅସୁଖ ଆରୋଗ୍ୟ ହୁଏ ।

( ଙ ) ସନ୍ଧ୍ୟା ପୂଜାଦିରେ ଯେଉଁ ବର୍ଣ୍ଣ ଧ୍ୟାନ କରିବାକୁ ହୁଏ, ସେଥିରେ ସ୍ୱାସ୍ଥ୍ୟ ରକ୍ଷା ହୋଇଥାଏ ।

## ଦୁର୍ଭାଗ୍ୟ ନଷ୍ଟର ଉପାୟ ।

ଗୋରଚନା ଓ କୁଙ୍କୁମରେ ଭୂର୍ଜପତ୍ରରେ ନାମ ଲେଖି ମଧୁ ମଧ୍ୟରେ ସ୍ଥାପନ କଲେ ଦୁର୍ଭାଗ୍ୟ ନଷ୍ଟ ହୋଇ ସୌଭାଗ୍ୟ ଉଦିତ ହେବ ।

ପୁଷ୍ୟା ନକ୍ଷତ୍ରରେ ଶ୍ୱେତ ଅରଖ ଗଛର ମୂଳ ଦକ୍ଷିଣ ନାସିକାରେ ଶ୍ୱାସ ପ୍ରବାହିତ ସମୟରେ ଉତ୍ତୋଳନ କରି ଦକ୍ଷିଣ ବାହୁରେ ସେ ମୂଳ ବନ୍ଧନ କଲେ ଦୁର୍ଭାଗ୍ୟ ନଷ୍ଟ ହୋଇ ସୌଭାଗ୍ୟ ଉଦିତ ହେବ । କିନ୍ତୁ ଏ କାର୍ଯ୍ୟର ପୂର୍ବଦିନ ସ୍ତ୍ରୀ ସଙ୍ଗମାଦି ରହିତ ହୋଇ ଶଯ୍ୟାଗୃହରେ ଥିବ ।

## ନାରୀ ଜାତିର ।

କୁଙ୍କୁମ, ଓ ଗୋରଚନା ଓ ଅଳତାରେ ନାରୀ ନାମ ଲେଖି ମଧୁମଧ୍ୟରେ ରଖିଲେ ସ୍ତ୍ରୀର ଦୁର୍ଭାଗ୍ୟ ନଷ୍ଟ ହୋଇ ସୌଭାଗ୍ୟ ଉଦିତ ହେବ ।

ବିଲ୍ୱ ପତ୍ରରେ କୁଙ୍କୁମ ଓ ଅଳତାରେ ସ୍ତ୍ରୀର ନାମ ଲେଖି ମଧୁ ମଧ୍ୟରେ ସ୍ଥାପନ କଲେ ସ୍ତ୍ରୀ ଜାତିର ଦୁର୍ଭାଗ୍ୟ ନଷ୍ଟ ହୋଇ ସୌଭାଗ୍ୟ ଉଦିତ ହେବ ।

## ସର୍ବ ସାଧାରଣଙ୍କର ଦୁର୍ଭାଗ୍ୟ ନଷ୍ଟ ହେବାର ପ୍ରଣାଳୀ ।

ଶଯ୍ୟାଗୃହରେ ସ୍ତ୍ରୀସଙ୍ଗମାଦି ରହିତ ହୋଇ ଦକ୍ଷିଣ ନାସିକାରେ ଶ୍ୱାସ ପ୍ରବାହିତ ସମୟରେ ଆମଳକୀ ମୂଳ ଉତ୍ତୋଳନ କରିବ । ତାହାକୁ ଶୀତଳ ଜଳରେ ଶିଳରେ ଚନ୍ଦନ ପରି ଘଷି ତିଳକ ଦେଇ କାହାର ପାଖକୁ ଗଲେ ଅଥବା ଅନ୍ୟ କୌଣସି କାର୍ଯ୍ୟପାଇଁ ଗମନ କଲେ ସିଦ୍ଧ ହୁଏ । ନାରୀ ଓ ପୁରୁଷ ଉଭୟଙ୍କର ଏହି କାର୍ଯ୍ୟ କରିବା ଉଚିତ ।

ଉପରୋକ୍ତ କାର୍ଯ୍ୟ ମାହେନ୍ଦ୍ର ବା ଅମୃତ ବେଳାରେ କରିବ ।

## ସୁଖଶାନ୍ତି ଲାଭର ପ୍ରଧାନ ଉପାୟ ।

ସର୍ବଦା ପରଦୁଃଖରେ ଦୁଃଖିତ ହେଲେ, ପରର ମଙ୍ଗଳ ବାଞ୍ଛା କଲେ ଓ ପରର ଯହିଁରେ ସୁଖଶାନ୍ତି ହୁଏ, ସେଥିପାଇଁ ଯତ୍ନ କଲେ ନିଜର ସୁଖ ଉପସ୍ଥିତ ହେବ ।

ଯେଉଁ ମୁହୂର୍ତ୍ତରେ ଅପରର ଅନିଷ୍ଟ କରିବାର ଇଚ୍ଛା ମନରେ ଜାଗ୍ରତ ହେବ, ସେହି ଅନିଷ୍ଟ କରିବାର ପୂର୍ବରୁ ନିଜର ଅନିଷ୍ଟ ଘଟିବ ।

## ନିଷିଦ୍ଧ କାର୍ଯ୍ୟ ।

ଚୌକି ବା ଅନ୍ୟ କାହାର ଉପରେ ବସି ଗୋଡ଼ ହଲାଇବ ନାହିଁ । ଏହା କଲେ ବାତବ୍ୟାଧି ନିଶ୍ଚୟ ହେବ ।

ଖାଇସାରି ୧୦।୧୫ ମିନିଟ ବିଶ୍ରାମ ନ କଲେ ନାନା ରୋଗ ନିଶ୍ଚୟ ହେବ ।

ବାନ୍ତ ଗୁଳିବାବେଳେ ଉପରଅଡ଼କୁ ବା ଏଣେ ତେଣେ ଅନାଇ ବାନ୍ତ ଗୁଳିବ ନାହିଁ ।

ପୁଣ୍ୟ କାର୍ଯ୍ୟ କରି କହିଲେ ପୁଣ୍ୟ କ୍ଷୟ ଓ ପାପକାର୍ଯ୍ୟ କରି ନ କହିଲେ କ୍ଷତି ହୁଏ । ପାପ ଓ ବ୍ୟାଧି ପାଇଁ ଅନୁତାପ ଏକମାତ୍ର ଔଷଧ ।

କେହି ତୁମ୍ଭର ଅନ୍ୟାୟ କଲେ ଅଭିଶାପ ଦେବନାହିଁ । ଦେଲେ ନିଜର କ୍ଷତି ହେବ ।



## ଇନ୍ଦ୍ରିୟ ତତ୍ତ୍ୱ ।

ଇନ୍ଦ୍ରିୟ ତିନପ୍ରକାର, ଯଥା:—ଜ୍ଞାନେନ୍ଦ୍ରିୟ, କର୍ମେନ୍ଦ୍ରିୟ ଓ ଅନ୍ତରେନ୍ଦ୍ରିୟ । ଜ୍ଞାନେନ୍ଦ୍ରିୟ ପାଞ୍ଚଗୋଟି, ଯଥା:— ଚକ୍ଷୁ, କର୍ଣ୍ଣ, ନାସିକା, ଜିହ୍ୱା ଓ ତ୍ୱକ୍ । ଅନ୍ତରେନ୍ଦ୍ରିୟ ଚାରିଗୋଟି, ଯଥା:—ମନ, ବୁଦ୍ଧି, ଅହଙ୍କାର ଓ ଚିତ୍ତ । କର୍ମେନ୍ଦ୍ରିୟ ପାଞ୍ଚ-ଗୋଟି, ଯଥା:—ବାକ୍, ପାଣି, ପାଦ, ପାୟୁ ଓ ଉପସ୍ଥ । ଏହି ଚତୁର୍ଦ୍ଦଶ ଇନ୍ଦ୍ରିୟର ଦେବତା ଚତୁର୍ଦ୍ଦଶ । ଯଥା:— ଚକ୍ଷୁର ସୂର୍ଯ୍ୟ, କର୍ଣ୍ଣର ଦିକ୍, ନାସିକାର ଅଶ୍ୱିନୀକୁମାର ଦ୍ୱୟ, ଜିହ୍ୱାର ପ୍ରଚେତା, ତ୍ୱକ୍‌ର ବାୟୁ । ମନର ଚନ୍ଦ୍ର, ବୁଦ୍ଧିର ଚତୁର୍ମୁଖ, ଅହଙ୍କାରର ଶଙ୍କର । ଚିତ୍ତର ଅଚ୍ୟୁତ, ବାକ୍ୟର ବହ୍ନି, ପାଣିର ଇନ୍ଦ୍ର, ପାଦର ବିଷ୍ଣୁ, ପାୟୁର ମିତ୍ର ଓ ଉପସ୍ଥର ପ୍ରଜାପତି ।

## ତତ୍ତ୍ୱ କଥା ।

ତତ୍ତ୍ୱର ପରିଚୟ:—ବାୟୁ ମନୁଷ୍ୟଜୀବନ । ଏହି ପ୍ରାଣ-ବାୟୁ ନିଶ୍ୱାସ ଓ ପ୍ରଶ୍ୱାସ ଭେଦରେ ଦୁଇ ପ୍ରକାର । ବାୟୁ ଗ୍ରହଣର ନାମ ନିଶ୍ୱାସ ଓ ପରିତ୍ୟାଗର ନାମ ପ୍ରଶ୍ୱାସ । ପ୍ରାଣ-ବାୟୁ ଏକ ସମୟରେ ଦୁଇ ନାସା ପୁଟରେ ପ୍ରବାହିତ ହୁଏ ନାହିଁ, କେତେବେଳେ ବାମରେ ଓ କେତେବେଳେ ଦକ୍ଷିଣରେ ବହେ । ଘଣ୍ଟାଏ ବାମ ନାସିକାରେ ଓ ଘଣ୍ଟାଏ ଦକ୍ଷିଣ ନାସି-କାରେ ଏହିପରି କ୍ରମରେ ପ୍ରବାହିତ ହୁଏ । ତତ୍ତ୍ୱ ପାଞ୍ଚଗୋଟି ଯଥା:—କ୍ଷିତି, ଅପ୍, ତେଜ, ମରୁତ୍ ଓ ବ୍ୟୋମ । ସେହି ପ୍ରତି ଏକଘଣ୍ଟା ମଧ୍ୟରେ ପାଞ୍ଚଗୋଟି ତତ୍ତ୍ୱର ଉଦୟ ହୁଏ । ତତ୍ତ୍ୱ ପ୍ରବାହର କାଳ-ପ୍ରଥମରେ ବାୟୁ ତତ୍ତ୍ୱ ଆଠମିନଟ, ଦ୍ୱିତୀୟରେ ଅଗ୍ନି ତତ୍ତ୍ୱ ବାର ମିନଟ, ତୃତୀୟରେ ପୃଥ୍ୱୀ ତତ୍ତ୍ୱ କୋଡ଼ିଏ ମିନଟ, ଚତୁର୍ଥରେ ଜଳ ତତ୍ତ୍ୱ ଷୋଳ ମିନଟ ଓ ପଞ୍ଚମରେ ଆକାଶତତ୍ତ୍ୱ ଚାରି ମିନଟ୍ । ଏଣୁ ପ୍ରତ୍ୟେକ ଘଣ୍ଟାର ପ୍ରଥମ କୋଡ଼ିଏ ମିନଟ ବାଦ୍‌ଦେଇ ଚାଳିଶ ମିନଟ୍‌ରେ ସମସ୍ତ କାର୍ଯ୍ୟ କରିବ ।

କେଉଁ ତତ୍ତ୍ୱରେ କେଉଁ କାର୍ଯ୍ୟ କଲେ ଶୁଭଫଳ ମିଳେ ପୃଥ୍ୱୀ ତତ୍ତ୍ୱରେ ସ୍ଥିରକାର୍ଯ୍ୟ, ଜଳ ତତ୍ତ୍ୱରେ ଚରକାର୍ଯ୍ୟ, ଅଗ୍ନି ତତ୍ତ୍ୱରେ କ୍ରୂର କାର୍ଯ୍ୟ, ଓ ଆକାଶ ତତ୍ତ୍ୱରେ ଯୋଗସାଧନ କାର୍ଯ୍ୟ ।

## କେଉଁ ତତ୍ତ୍ୱରେ କି କାର୍ଯ୍ୟ କଲେ କି ଫଳ ମିଳେ ।

ପୃଥ୍ୱୀ ଓ ଜଳ ତତ୍ତ୍ୱ ଉଦୟରେ କାର୍ଯ୍ୟ କଲେ ସିଦ୍ଧି ମିଳେ । ଅଗ୍ନି ତତ୍ତ୍ୱ ଉଦୟରେ କାର୍ଯ୍ୟ କଲେ ମୃତ୍ୟୁ ତୁଲ୍ୟ, ବାୟୁ ତତ୍ତ୍ୱରେ କ୍ଷୟ ଓ ଆକାଶ ତତ୍ତ୍ୱରେ ସବୁ କାର୍ଯ୍ୟ ନିଷ୍ଫଳ ହୁଏ । ତତ୍ତ୍ୱର ଅନୁକୂଳରେ କାର୍ଯ୍ୟ କଲେ ନିଶ୍ଚୟ ସୁଫଳ ଲାଭ ହେବ ।

ତତ୍ତ୍ୱର ଦିକ୍‌ଶୂଳ:—ପୃଥ୍ୱୀ ତତ୍ତ୍ୱର ପଶ୍ଚିମ, ଜଳ ତତ୍ତ୍ୱର ପୂର୍ବ, ଅଗ୍ନି ତତ୍ତ୍ୱର ଦକ୍ଷିଣ, ବାୟୁ ତତ୍ତ୍ୱର ଉତ୍ତର ଏବଂ ଆକାଶ ତତ୍ତ୍ୱର ଈଶାନ ଓ ନୈଋତ କୋଣ-ଦିଗ ଅଟେ । ଯେଉଁ ତତ୍ତ୍ୱର ଯେଉଁ ଦିଗ ତାହାର ବିପରୀତ ଦିଗ ତାହାର ଦିକ୍‌ଶୂଳ । ଏଣୁ ତତ୍ତ୍ୱର ଦିକ୍‌ଶୂଳରେ ଯାତ୍ରା ନିଷିଦ୍ଧ.

ତତ୍ତ୍ୱ ଜାଣିବାର ଉପାୟ—(୧) ଖଣ୍ଡିଏ ଦର୍ପଣ ନାସି-କାର ଚାରି ଅଙ୍ଗୁଳ ନିମ୍ନରେ ରଖି ଶ୍ୱାସ ତ୍ୟାଗ କରନ୍ତୁ । ସେଥିରେ ଯେଉଁ ବାଷ୍ପ ପତିତ ହେବ, ସେଥିରୁ ତତ୍ତ୍ୱ ଜ୍ଞାତ ହେବ । ବାଷ୍ପ ମଳିନ ସମୟରେ ଚତୁଷ୍କୋଣ ହୋଇ ମଳିନ ହେଲେ ପୃଥ୍ୱୀତତ୍ତ୍ୱ, ଅର୍ଦ୍ଧଚନ୍ଦ୍ରାକୃତିରେ ଜଳତତ୍ତ୍ୱ, ତ୍ରିକୋଣା-କୃତିରେ ଅଗ୍ନି ତତ୍ତ୍ୱ, ଗୋଲାକାରରେ ବାୟୁତତ୍ତ୍ୱ ଓ ବିନ୍ଦୁ ହୋଇ ମଳିନ ହେଲେ ଆକାଶ ତତ୍ତ୍ୱର ଉଦୟ ବୋଲି ଜାଣିବ ।

(୨) ସ୍ଥିର ଭାବରେ ମୁଖ ମଧ୍ୟର ପରୀକ୍ଷା କଲେ ଦେଖିବ, ଭିନ୍ନ ସମୟରେ ଭିନ୍ନ ସ୍ୱାଦ ଅନୁଭୂତ ହୁଏ । ସେଥିରୁ କେଉଁ ତତ୍ତ୍ୱର ଉଦୟ ହୋଇଅଛି ବୁଝି ହେବ । ପୃଥ୍ୱୀ ତତ୍ତ୍ୱର ସ୍ୱାଦ ମଧୁର, ଜଳ ତତ୍ତ୍ୱର ସ୍ୱାଦ-ମିଷ୍ଟ କଷାୟ,

ମିତାହାରୀ, ହିତାହାରୀ, ପରିଶ୍ରମୀ ଜନ । କଦାପି ହରାଏ ନାହିଁ ସ୍ୱାସ୍ଥ୍ୟ ରୂପ ଧନ ।

ଅଗ୍ନି ତତ୍ତ୍ୱର ସ୍ୱାଦ-ତିକ୍ତ କଷାୟ, ବାୟୁ ତତ୍ତ୍ୱର ସ୍ୱାଦ—ଅମ୍ଳ କଷାୟ ଓ ଅକାଶ ତତ୍ତ୍ୱର ସ୍ୱାଦ-କଟୁ ଜିହ୍ୱା କେବଳ ହେବେ ସର୍ବପ୍ରକାର ସ୍ୱାଦସ୍ଥାନ । ଆହାର ଓ ତାମ୍ବୁଳ ଭକ୍ଷଣ ସମୟ ବ୍ୟତୀତ ସର୍ବଦା ମୁଖ ମଧ୍ୟରେ ସ୍ୱାଦ ଅନୁଭବ କଲେ ସହଜରେ ତତ୍ତ୍ୱର ଉଦୟ ବୁଝି ପାରିବ ।

( ୩ ) ପୃଥ୍ୱୀତତ୍ତ୍ୱ ଉଦୟରେ ନାସିକାରୁ ବାର ଅଙ୍ଗୁଳି
ଜଳ „ „ „ ଷୋଳ „
ଅଗ୍ନି „ „ „ ଚାରି „
ବାୟୁ „ „ „ ଆଠ „
ପରିମିତ ଶ୍ୱାସ ନିର୍ଗତ ହୁଏ ।

ସିଧା ହୋଇ ବସି ନାସିକା ନିମ୍ନରେ ପାଖ ପର ବା ପେଞ୍ଜାତୁଳା ରଖି ସହଜ ନିଶ୍ୱାସ ତ୍ୟାଗ କରିବ । ନିଶ୍ୱାସର ଶେଷ ଗତି ପର୍ଯ୍ୟନ୍ତ ତାହା ହଲିବ । ତେତେବେଳେ ନାସାଗ୍ରରୁ ପର ତୁଳାଟି ପର୍ଯ୍ୟନ୍ତ ଅଙ୍ଗୁଳିରେ ମାପଲେ ନିଶ୍ୱାସର ପରିମାଣ ବୁଝି ପାରିବ ।

( ୪ ) ପୃଥ୍ୱୀତତ୍ତ୍ୱ ଉଦୟରେ ଶ୍ୱାସବାୟୁ ନାସା ପୁଡ଼ାର ମଧ୍ୟଦେଶ ଦେଇ, ଜଳତତ୍ତ୍ୱ ଉଦୟରେ ନାସାପୁଡ଼ାର ନିମ୍ନଦେଶ ଦେଇ, ଅଗ୍ନିତତ୍ତ୍ୱ ଉଦୟରେ ନାସାପୁଡ଼ାର ଊର୍ଦ୍ଧ୍ୱ ଦେଶ ଦେଇ, ବାୟୁତତ୍ତ୍ୱ ଉଦୟରେ ବକ୍ରଗାମୀ ହୋଇ ନାସାପୁଟର ପାର୍ଶ୍ୱଦେଶ ଦେଇ ଓ ଅକାଶତତ୍ତ୍ୱ ଉଦୟରେ ନାସାପୁଡ଼ାର ସର୍ବଦେଶ ଦେଇ ଲାଗି ପ୍ରବାହିତ ହୁଏ ।

ବିଶେଷତଃ—ପୃଥ୍ୱୀତତ୍ତ୍ୱରେ ଶ୍ୱାସବାୟୁ ଦଣ୍ଡବତ ବାହାରେ ଓ ତାହା ଈଷତ୍ ଉଷ୍ଣ ଏବଂ ଗମ୍ଭୀର ଶବ୍ଦଯୁକ୍ତ ହୁଏ । ଜଳ ତତ୍ତ୍ୱରେ ଶ୍ୱାସ ଗମ୍ଭୀର ଧ୍ୱନିଯୁକ୍ତ, ଶୀଘ୍ରଗାମୀ ଓ ଅତ୍ୟନ୍ତ ଶୀତଳ, ଅଗ୍ନି ତତ୍ତ୍ୱରେ ନିଶ୍ୱାସ ଅତ୍ୟନ୍ତ ଉଷ୍ଣ, ବାୟୁତତ୍ତ୍ୱରେ ନିଶ୍ୱାସ ଅଳ୍ପ ଶୀତଳ ଓ ଅକାଶ ତତ୍ତ୍ୱରେ ଅନ୍ୟାନ୍ୟ ତତ୍ତ୍ୱର ସମସ୍ତ ଗୁଣ ବର୍ତ୍ତମାନ ଥାଏ । ଏମାନଙ୍କ ମଧ୍ୟରେ ପୃଥ୍ୱୀରେ ସୌଭାଗ୍ୟ ପ୍ରଦାୟକ । ଲାଭ, ମଙ୍ଗଳ ଜନକ ଓ ସମ୍ପଦ ପ୍ରଭୃତି କାର୍ଯ୍ୟ ପାଇଁ ପୃଥ୍ୱୀ ଏବଂ ଜଳ ତତ୍ତ୍ୱର ଉଦୟ କାଳରେ ନିଶ୍ୱାସର ଅନୁକୂଳରେ ପଦ କ୍ଷେପଣ କରି ଯାତ୍ରା କରିବ ।



# ପୌରାଣିକ ଉପାଖ୍ୟାନ

## ସାବିତ୍ରୀ ।

ପୂର୍ବେ ମଦ୍ରଦେଶରେ ଅଶ୍ୱପତି ନାମେ ପ୍ରବଳ ପ୍ରତାପ ପରମ ଧାର୍ମିକ ଏକ ରାଜା ଥିଲେ । ବହୁକାଳ ପର୍ଯ୍ୟନ୍ତ ତାଙ୍କର ସନ୍ତାନ ସନ୍ତତି ନ ହେବାରୁ ସେ ମନ୍ତ୍ରିହସ୍ତରେ ରାଜ୍ୟଭାର ଅର୍ପଣ କରି ସସ୍ତ୍ରୀକ ବିବିଧ ଧର୍ମକାର୍ଯ୍ୟରେ ରତ ହେଲେ । ସନ୍ତାନ କାମନାରେ ସେ ବହୁକାଳ ସାବିତ୍ରୀ ଦେବୀଙ୍କର ପୂଜା ଓ ସାଧନା କରି ତାଙ୍କ ବରରେ ଏକ ଅଲୌକିକ ରୂପ-ଲାବଣ୍ୟସମ୍ପନ୍ନା କନ୍ୟାରତ୍ନ ଲାଭ କଲେ ଓ ସେହି ଦେବୀଙ୍କ ନାମାନୁସାରେ କନ୍ୟାର ନାମ ସାବିତ୍ରୀ ରଖିଲେ ।

ପିତା ମାତାଙ୍କର ସ୍ନେହ ଓ ଯତ୍ନରେ ସାବିତ୍ରୀ ଶୁକ୍ଳପକ୍ଷର ଚନ୍ଦ୍ରକଳା ପରି ବଢ଼ିଲେ । କ୍ରମେ ସେ ପିତାଙ୍କ ଯତ୍ନରେ ବିଦ୍ୟାବତୀ ଓ ମାତାଙ୍କ ଯତ୍ନରେ ଗୃହକର୍ମରେ ସୁଶିକ୍ଷିତା ହୋଇ ଯୌବନ ସୀମାରେ ପଦାର୍ପଣ କଲେ ।

ଅଶ୍ୱପତି କନ୍ୟାକୁ ସୁଶିକ୍ଷିତ ସତ୍ପାତ୍ରରେ ସମର୍ପଣ କରିବା ମାନସରେ କନ୍ୟାର ଅନୁରୂପ ପାତ୍ର ଅନୁସନ୍ଧାନ କରି ବ୍ୟର୍ଥ ମନୋରଥ ହେଲେ ଏବଂ କନ୍ୟାର ପାଣିଗ୍ରହଣୋଚିତ କାଳ ଅତିକ୍ରମ କରିବା ଅନ୍ୟାୟ ଓ ଧର୍ମବିରୁଦ୍ଧ ବୋଲି ମନେ କରି ପ୍ରିୟତମା କନ୍ୟାକୁ ସମ୍ବୋଧନ କରି କହିଲେ,—ବତ୍ସେ ସାବିତ୍ରି, କନ୍ୟାକୁ କୌଣସି ସତ୍କୁଳୋଦ୍ଭବ ବିଦ୍ୟା ବୁଦ୍ଧି-ବିନୟାଦି ସମ୍ପନ୍ନ ପାତ୍ର ହସ୍ତରେ ସମର୍ପଣ କରିବା ପିତାର କର୍ତ୍ତବ୍ୟ, ମାତ୍ର ମୁଁ ଅଶାତିରିକ୍ତ ଯତ୍ନ କରି ତୁମ୍ଭର ଅନୁରୂପ ପାତ୍ର ପାଇଲି ନାହିଁ, ଏଣୁ ତୁମ୍ଭଙ୍କୁ ଆଦେଶ ଦେଉଛି, ତୁମ୍ଭେ ତୁମ୍ଭର ମନୋମତ ପାତ୍ର ନିର୍ବାଚନ କରି ମୋର ଚିନ୍ତା ଦୂରକର ।

ପିତାଦେଶରେ ସାବିତ୍ରୀ ମନ୍ତ୍ରୀ ଓ ସହଚରୀମାନଙ୍କ ସହ ରଥାରୋହଣରେ ତୀର୍ଥଭ୍ରମଣୋଦ୍ଦେଶରେ ତପୋବନରେ ଉପସ୍ଥିତ ହେଲେ । ସେଠାରେ ଋଷିମାନଙ୍କର ପଦବନ୍ଦନା କରି ଭ୍ରମଣ କରୁଁ ୨ ସିଦ୍ଧାଶ୍ରମରେ ଦେଖିଲେ, ଏକ ବୃକ୍ଷ-ମୂଳରେ ଏକ ନେତ୍ରହୀନ ବୃଦ୍ଧ, ବୃଦ୍ଧାନାରୀ ଓ ସୁକୁମାର ଯୁବାପୁତ୍ର ସହ ବାସ କରୁଅଛନ୍ତି । ସାବିତ୍ରୀ ଋଷିକନ୍ୟାମାନଙ୍କୁ ସେମାନଙ୍କର ପରିଚୟ ପଚାରିବାରୁ ସେମାନେ କହିଲେ, ଅବ-

ନ୍ତୀର ପରମଧାମିକ ରାଜା ଦ୍ୟୁମତ୍ସେନ ନେତ୍ରହୀନ ହେବାରୁ ଶତ୍ରୁମାନେ ତାଙ୍କ ରାଜ୍ୟ ହରଣ କଲେ, ତେଣୁ ସେ ଏପରି ହୀନାବସ୍ଥାରେ ବନବାସ ଆଶ୍ରୟ କଲେ । ତାଙ୍କ ପତ୍ନୀ ଶୈବ୍ୟା ପତିସେବା ନିମିତ୍ତ ବନବାସିନୀ ହୋଇଲେ । ପିତୃମାତୃ ଭକ୍ତ ପୁତ୍ର ସତ୍ୟବାନ ମଧ୍ୟ ସେମାନଙ୍କର ଆଜ୍ଞାନୁବର୍ତ୍ତୀ ହୋଇ ଏଠାରେ ପରମ ସୁଖରେ ଅଛନ୍ତି ।

ସାବିତ୍ରୀ ସତ୍ୟବାନଙ୍କର ସୁଗୁଣର ପରିଚୟ ପାଇ ମନେ ମନେ ବିଚାର କଲେ, ସତ୍ୟବାନ ରାଜପୁତ୍ର ଓ ନାନା ସଦ୍‌ଗୁଣର ଭଣ୍ଡାର, କିନ୍ତୁ ନିର୍ଦ୍ଧନ ଓ ଆଶ୍ରୟହୀନ । ପିତାଙ୍କର ଯେପରି ପାତ୍ର ଲାଭ ପାଇଁ ଇଚ୍ଛା, ଏହାଙ୍କଠାରେ ସେମାନ ବର୍ତ୍ତମାନ । ଏହାଙ୍କୁ ପତିରୂପେ ବରଣ କରିବା ଉଚିତ । ତଦନନ୍ତର ସେ ମନ୍ତ୍ରୀ ଓ ଦାସଦାସୀଙ୍କ ସହ ସେଠାରୁ ଗୃହକୁ ପ୍ରତ୍ୟାଗମନ କଲେ ।

ସାବିତ୍ରୀ ପିତାଙ୍କ ନିକଟରେ ନିଜର ମନୋଭାବ ବ୍ୟକ୍ତ କଲେ । ଦେବର୍ଷି ନାରଦ ସେ ସମୟରେ ସେଠାରେ ଉପସ୍ଥିତ ଥିଲେ । ସେ ସମସ୍ତ କଥା ଶ୍ରବଣକରି କହିଲେ,—ବତ୍ସେ ! ତୁମ୍ଭେ ଉପଯୁକ୍ତ ପାତ୍ର ସ୍ଥିର କରିଅଛ ସତ୍ୟ, ମାତ୍ର ସେ ଅଳ୍ପାୟୁ, ଆଜଠାରୁ ଏକ ବର୍ଷ ସମାପ୍ତ ଦିବସରେ ସେ ଇହଧାମ ତ୍ୟାଗ କରିବେ । ଏଣୁ ତୁମ୍ଭେ ତାଙ୍କ ପରିବର୍ତ୍ତେ ଅନ୍ୟକୁ ପତିତ୍ୱରେ ବରଣ କର । ଏହା ଶୁଣି ସାବିତ୍ରୀ କହିଲେ,—ଦେବ ! ଆପଣ ସର୍ବଧର୍ମବେତ୍ତା ହୋଇ କିପରି ମୋତେ ଏପରି ଆଦେଶ କରୁଅଛନ୍ତି ? ମୁଁ ଆପଣଙ୍କର ଏ ଭୟପ୍ରଦବାକ୍ୟର ବଶବର୍ତ୍ତୀ ହୋଇ ଧର୍ମପଥ ପରିତ୍ୟାଗ କରିବି ନାହିଁ । ଅଶ୍ୱପତି ନାରଦଙ୍କ ବାକ୍ୟାନୁସାରେ କନ୍ୟାକୁ ବହୁତ ବୁଝାଇଲେ, କିନ୍ତୁ ସାବିତ୍ରୀଙ୍କ ଅଟଳ ପ୍ରତିଜ୍ଞା ନିକଟରେ ତାହା ତୁଚ୍ଛ ହେଲା । ନାରଦ ସାବିତ୍ରୀଙ୍କ କଥାରେ ସନ୍ତୁଷ୍ଟ ହୋଇ 'ତୁମ୍ଭର ମଙ୍ଗଳ ହେଉ' ବୋଲି କହି ଆଶୀର୍ବାଦ ପୂର୍ବକ ପ୍ରସ୍ଥାନ କଲେ ।

ନିର୍ଣ୍ଣୀତ ଦିବସରେ ଅଶ୍ୱପତି କନ୍ୟାପ୍ରଭୃତିଙ୍କ ସହ ସିଦ୍ଧାଶ୍ରମକୁ ଯାଇ କୌଳିକପ୍ରଥା ଅନୁସାରେ ସତ୍ୟବାନଙ୍କୁ କନ୍ୟାସମ୍ପ୍ରଦାନ କଲେ । ଦ୍ୟୁମତ୍ସେନ ଓ ଶୈବ୍ୟାଙ୍କୁ ବିନୟ ବାକ୍ୟରେ କନ୍ୟାର ଦୋଷ କ୍ଷମା କରି ସସ୍ନେହେ ପ୍ରତିପାଳନ କରିବା ପାଇଁ ଅନୁରୋଧ ପୂର୍ବକ ସାବିତ୍ରୀକୁ କହିଲେ,—ମା, ତୁ ଭକ୍ତି ଶ୍ରଦ୍ଧା ସହକାରେ ଶ୍ୱଶୁର ଓ ଶାଶୁଙ୍କ ସେବା ଶୁଶ୍ରୂଷା କରି ତାଙ୍କର ସନ୍ତୋଷ ବିଧାନ କରିବୁ । ତତ୍ପରେ ସେ ସମସ୍ତଙ୍କଠାରୁ ବିଦାୟ ନେଲେ ।

ସାବିତ୍ରୀ ଆର୍ଯ୍ୟଗଣଙ୍କର ସେବା ଶୁଶ୍ରୂଷା କରି ପରମାନନ୍ଦରେ ଦିନ କଟାଇଲେ । ମାତ୍ର ସର୍ବଦା ନାରଦଙ୍କ ବାକ୍ୟ ସ୍ମରଣ କରି ଚିନ୍ତାନଳରେ ଦଗ୍ଧୀଭୂତ ହେଉଥିଲେ । ଏତମ ବର୍ଷର ଶେଷ ହେବାକୁ ଚାରିଦିନ ମାତ୍ର ଅବଶିଷ୍ଟ ଥାଏ, ସେ ଅନଶନରେ ପାତିବ୍ରତ୍ୟ ବ୍ରତ ପାଳନ କଲେ ଏବଂ ତିନିଦିନ ଅନ୍ତେ ଚତୁର୍ଥଦିନ ପ୍ରାଣନାଥଙ୍କ ସହଚାରିଣୀ ହୋଇ ଫଳ ଆହରଣ ପାଇଁ ବନକୁ ଗଲେ ।

ପତିପତ୍ନୀ ଦୁହେଁ ବନେ ବନେ ଭ୍ରମଣ କରି ଫଳମୂଳ ଆହରଣ କଲେ । ତତ୍ପରେ ସତ୍ୟବାନ୍ କୁଠାର ନେଇ ବୃକ୍ଷଚ୍ଛେଦନ ପୂର୍ବକ କାଷ୍ଠାହରଣ କରିବାକୁ ଲାଗିଲେ । ସାବିତ୍ରୀ ବୃକ୍ଷମୂଳରେ ବସି ଅବନତ ମସ୍ତକରେ ଦେବର୍ଷିଙ୍କ ବାକ୍ୟ ଚିନ୍ତା କରୁଥିଲେ । ଏହି ସମୟରେ ସତ୍ୟବାନ ମୁଣ୍ଡବ୍ୟଥାରେ କାତର ହୋଇ ବୃକ୍ଷରୁ ଆସି ସାବିତ୍ରୀଙ୍କ କ୍ରୋଡ଼ରେ ଶିର ରଖି ଶୟନ କଲେ । ଦେଖୁଦେଖୁ ସତ୍ୟବାନଙ୍କ ଶରୀର ଅବସନ୍ନ ହେଲା, ତାଙ୍କ ତୁଣ୍ଡରୁ କଥା ବାହାରିଲା ନାହିଁ । ସାବିତ୍ରୀ ସ୍ୱାମୀଙ୍କର ଶୋଚନୀୟ ଅବସ୍ଥାରେ ଦୁଃଖିତା ହେଲେହେଁ ସାହସରେ ନିର୍ଭର କରି ପରିଚର୍ଯ୍ୟା କଲେ, ମାତ୍ର ସମସ୍ତ ଚେଷ୍ଟା ବ୍ୟର୍ଥ ହେଲା ଏବଂ କ୍ରମେ କ୍ରମେ ସତ୍ୟବାନଙ୍କ ମୁଖଶ୍ରୀ ବିବର୍ଣ୍ଣ ହୋଇଗଲା । ଏହି ସମୟରେ ଅଦୂରେ ଅସ୍ପଷ୍ଟ ଶବ୍ଦ ତାହାଙ୍କ ଶ୍ରୁତିପଥାରୂଢ଼ ହେଲା । ସାବିତ୍ରୀ ଦେଖିଲେ ଏକ ମହାକାୟ କୃଷ୍ଣବର୍ଣ୍ଣ ପୁରୁଷ, ଲୋହିତ ବାସ ପରିଧାନ ଓ ଶିରରେ ମୁକୁଟ ଏବଂ ହସ୍ତରେ ଦଣ୍ଡ ଧାରଣ କରି ତାହାଙ୍କ ନିକଟକୁ ଆଗମନ କରୁଅଛନ୍ତି । ସେ ମହାପୁରୁଷ ତାଙ୍କ ନିକଟରେ ଉପସ୍ଥିତ ହେବାରୁ ସାବିତ୍ରୀ ତାଙ୍କୁ ପ୍ରଣାମ କରି କହିଲେ,—ଆପଣ କିଏ ? ଆପଣଙ୍କର ଦେହଜ୍ୟୋତି ଦେଖି ଆପଣଙ୍କୁ ମନୁଷ୍ୟ ବୋଲି ବୋଧ ହେଉ ନାହିଁ, ଆପଣ ଯେବେ ଏ ଦୁଃଖିନୀ ଦୁଃଖରେ କାତର ହୋଇ ଆସିଥାନ୍ତି; ତେବେ ସଦୟ ହୋଇ ପ୍ରାଣେଶ୍ୱରଙ୍କୁ ଜୀବନଦାନ କରନ୍ତୁ । ଯମ ଏଥିରେ କର୍ଣ୍ଣପାତ ନ କରି ଆତ୍ମ ପରିଚୟ ପ୍ରଦାନ ପୂର୍ବକ ସତ୍ୟବାନଙ୍କର ଜୀବନ ଗ୍ରହଣ କରି ଦକ୍ଷିଣ ଦିଗକୁ ଗମନ କଲେ । ସାବିତ୍ରୀ ପ୍ରେତପତିଙ୍କ

ଅନୁସନ୍ଧାନ କରି ମର୍ମଭେଦୀ ବିଳାପ କଲେ । ଯମ ସେଥିରେ ଦୟାର୍ଦ୍ର ହୋଇ ସାବିତ୍ରୀଙ୍କ ପ୍ରାର୍ଥନାନୁସାରେ ତାଙ୍କୁ କତିପୟ ବରଦାନ କଲେ । ପ୍ରଥମ ବରରେ ଶ୍ୱଶୁରଙ୍କର ନଷ୍ଟ ନେତ୍ର ଓ ହୃତ ରାଜ୍ୟ ପୁନଃପ୍ରାପ୍ତି, ଦ୍ୱିତୀୟ ବରରେ ପିତାଙ୍କର ଦୀର୍ଘଜୀବନ ଓ ଶତପୁତ୍ର, ତୃତୀୟ ବରରେ ସତ୍ୟବାନଙ୍କ ଔରସରେ ସାବିତ୍ରୀଙ୍କ ଗର୍ଭରେ ଦୀର୍ଘଜୀବୀ ଶତପୁତ୍ର ଲାଭ । ସାବିତ୍ରୀ ଅଭୀଷ୍ଟ ବର ପ୍ରାପ୍ତି ପରେ ସ୍ୱାମୀ ସହ ଆଶ୍ରମକୁ ଫେରି ଆସି ମୁନି, ଋଷି ପ୍ରଭୃତିଙ୍କୁ ସମସ୍ତ ବିଷୟ କହିଲେ । ସେମାନେ ସାବିତ୍ରୀଙ୍କ ପତିଭକ୍ତିର ପ୍ରଶଂସା କରି ଧନ୍ୟବାଦ ଦେଲେ ଓ କହିଲେ—ସାବିତ୍ରି ! ତୁମ୍ଭର ଏହି ଅମାନୁଷିକ କାର୍ଯ୍ୟ ଯାବଚ୍ଚନ୍ଦ୍ରାର୍କ ଦେଦୀପ୍ୟମାନ ହୋଇଥିବ । ତୁମ୍ଭର ନାରୀ ଜନ୍ମ ସାର୍ଥକ ଓ ପାତିବ୍ରତ୍ୟ ବ୍ରତ ସଫଳ । ପତିପରାୟଣତା ଗୁଣରେ ତୁମ୍ଭେ ଧରାତଳରେ ଅକ୍ଷୟ କୀର୍ତ୍ତି ସ୍ଥାପନ କଲ । କାଳକ୍ରମେ ପ୍ରେତପତିଙ୍କ ପ୍ରଦତ୍ତ ବର ସଫଳ ହେଲା ।



## ଦାତା କର୍ଣ୍ଣ ।

ଥରେ ଦୁର୍ବାସା ଋଷି ଭୋଜରାଜାଙ୍କର ଅତିଥି ହୋଇଥିଲେ । ରାଜାଙ୍କର କନ୍ୟା କୁନ୍ତୀ ଆତିଥ୍ୟ ସେବାରେ ଋଷିଙ୍କୁ ସନ୍ତୁଷ୍ଟ କଲେ । ଋଷି ତାଙ୍କୁ ଏକ ମନ୍ତ୍ର ପ୍ରଦାନ କରି କହିଲେ,-ତୁମେ ଏ ମନ୍ତ୍ରର ଯେଉଁ ଦେବତାଙ୍କୁ ଆବାହନ କରିବ ସେ ଆସି ତମ ସହିତ ସହବାସ କରିବେ । ଋଷି ଗଲା ପରେ କୁନ୍ତୀ ମନ୍ତ୍ର ପରୀକ୍ଷା କରିବା ପାଇଁ ସୂର୍ଯ୍ୟଙ୍କୁ ଆହ୍ୱାନ କଲେ । ସୂର୍ଯ୍ୟଙ୍କ ଔରସରେ ତାଙ୍କର ଏକ ପୁତ୍ର ଜାତ ହେଲା । ତାଙ୍କର ନାମ କର୍ଣ୍ଣ । ସେତେବେଳେ କୁନ୍ତୀ ଅବିବାହିତା, ସେ ଲୋକଲଜ୍ଜା ଭୟରେ ସେହି ଶିଶୁକୁ ଅଶ୍ୱ ନଦୀରେ ଭସାଇ ଦେଲେ । ଅଧିରଥଙ୍କର ପୁତ୍ର ନ ଥିଲା । ସେ ସୂତ ତାହାଙ୍କୁ ଆପଣାର ପୁତ୍ର ପରି ଲାଳନ ପାଳନ କଲେ ଓ ତାଙ୍କର ନାମ ବସୁସେନ ଦେଲେ । କର୍ଣ୍ଣ ଦ୍ରୋଣଙ୍କର ଶିଷ୍ୟ ହୋଇ ଅସ୍ତ୍ର ଶିକ୍ଷା କଲେ । ସେଠାରେ ସେ ମଧ୍ୟମପାଣ୍ଡବ ଅର୍ଜୁନଙ୍କର ଅସ୍ତ୍ରଶିକ୍ଷା ଦର୍ଶନରେ ହିଂସା କଲେ ଏବଂ ନିଜର ଅଲୌକିକ ବିଦ୍ୟାର ପରିଚୟ ଦେଲେ । ଏହା ଦେଖି କୁରୁକୁଳାଧମ ଦୁର୍ଯ୍ୟୋଧନ ତାଙ୍କ ସହ ବନ୍ଧୁତା କଲେ । ଥରେ କର୍ଣ୍ଣ ଦ୍ରୋଣଗୁରୁଙ୍କୁ ବ୍ରହ୍ମାସ୍ତ୍ର ପାଇଁ ପ୍ରାର୍ଥନା କଲେ । ଦ୍ରୋଣ କହିଲେ,—ବ୍ରାହ୍ମଣ ନ ହେଲେ କେହି ବ୍ରହ୍ମାସ୍ତ୍ର ପାଇ ପାରନ୍ତି ନାହିଁ । ଏହା ଶୁଣି କର୍ଣ୍ଣ ପରଶୁରାମଙ୍କ ନିକଟକୁ ଗମନ କଲେ । ସେତେବେଳେ ସେ ମହେନ୍ଦ୍ର ପର୍ବତରେ ଥିଲେ । ସେଠାରେ ସେ ନିଜକୁ ବ୍ରାହ୍ମଣ ବୋଲି ପରିଚୟ ଦେଇ ତାଙ୍କଠାରୁ ନାନା ଅସ୍ତ୍ର ଶିକ୍ଷା କଲେ । ଦୈବଦୁର୍ଯୋଗବଶତଃ ଥରେ କର୍ଣ୍ଣ ଏକ ବ୍ରାହ୍ମଣର ହୋମଧେନୁ ହତ୍ୟା କଲେ । ଏଥିରେ ବ୍ରାହ୍ମଣ କ୍ରୋଧ କରି ଅଭିଶାପ ଦେଲେ,—ତୁମ୍ଭେ ଯାହାର ପ୍ରାଣନାଶ ପାଇଁ ଯତ୍ନ କରୁଅଛ, ତାହାର ହସ୍ତରେ ତୁମ୍ଭର ମୃତ୍ୟୁ ନିଶ୍ଚିତ । ଏ ଘଟନା ପରେ କର୍ଣ୍ଣ ପରଶୁରାମଙ୍କଠାରୁ ବ୍ରହ୍ମାସ୍ତ୍ର ଲାଭ କଲେ ।

ଥରେ ପରଶୁରାମ କର୍ଣ୍ଣଙ୍କ ଊରୁଦେଶରେ ମସ୍ତକ ରଖି ଶୟନ କରିଥିଲେ । ଏକ କୀଟ ଆସି କର୍ଣ୍ଣଙ୍କର ଊରୁରେ ଦଂଶନ କଲା । ଗୁରୁଙ୍କର ନିଦ୍ରାଭଙ୍ଗ ଭୟରେ କର୍ଣ୍ଣ ସ୍ଥିର ହୋଇ ବସି ରହିଲେ । କ୍ରମେ ସେ କୀଟ ଊରୁଦେଶ ଭେଦ କରି ଅପର ପାର୍ଶ୍ୱରେ ବହିର୍ଗତ ହେଲା, ତେବେ ସୁଦ୍ଧା ସେ ହଲଚଲ ହେଲେ ନାହିଁ । ନିଦ୍ରାଭଙ୍ଗ ପରେ ପରଶୁରାମ କର୍ଣ୍ଣଙ୍କ ଊରୁଦେଶ ରକ୍ତାକ୍ତ ଦେଖି କାରଣ ଅନୁସନ୍ଧାନ କଲେ ଏବଂ ସମସ୍ତ ବିଷୟ ଅବଗତ ହୋଇ କହିଲେ,—ତୁମ୍ଭେ କଦାପି ବ୍ରାହ୍ମଣ ନୁହଁ । ଏପରି ଦାରୁଣ ଯନ୍ତ୍ରଣା ସହ୍ୟ କରିବା ବ୍ରାହ୍ମଣ ପକ୍ଷରେ ଅସମ୍ଭବ । ସତ୍ୟ କହ, ତୁମ୍ଭେ କିଏ ? କର୍ଣ୍ଣ କିଛିକ୍ଷଣ ନୀରବ ରହି ଆତ୍ମ ପରିଚୟ ପ୍ରଦାନ ପୂର୍ବକ କ୍ଷମା ଭିକ୍ଷା ମାଗିଲେ । ପରଶୁରାମ କହିଲେ,—ତୁମ୍ଭେ ପ୍ରତାରକ, ପ୍ରତାରଣା କରି ଯାହା ଶିକ୍ଷା କରିଅଛ କାର୍ଯ୍ୟକାଳେ ତାହା ବିସ୍ମୃତ ହେବ । ଯାଅ, ଏ ସ୍ଥାନ ତୁମ୍ଭର ଉପଯୁକ୍ତ ନୁହେଁ । କର୍ଣ୍ଣ ବିମର୍ଷବଦନରେ ସେଠାରୁ ପ୍ରତ୍ୟାଗମନ କଲେ ।

ତଦନନ୍ତର କର୍ଣ୍ଣ ଦୁର୍ଯ୍ୟୋଧନ ସହ ଚିତ୍ରାଙ୍ଗଦ କନ୍ୟା ସ୍ୱୟମ୍ବର ଉପଲକ୍ଷେ କଳିଙ୍ଗ ରାଜ୍ୟକୁ ଗମନ କଲେ ଓ ଦୁର୍ଯ୍ୟୋଧନ ସେ କନ୍ୟାକୁ ହରଣ କରି ନେବାରୁ ଜରାସନ୍ଧ ସହ କର୍ଣ୍ଣଙ୍କର ଘୋରତର ଯୁଦ୍ଧ ହେଲା । କର୍ଣ୍ଣଙ୍କର ବୀରତ୍ୱ ଦର୍ଶନରେ ଜରାସନ୍ଧ ମୁଗ୍ଧ ହୋଇ ତାହାଙ୍କୁ ମାଳିନୀ ନଗରୀ ପ୍ରଦାନ କଲେ ।

ଏ ଘଟନା ପରେ କର୍ଣ୍ଣ ପଦ୍ମାବତୀଙ୍କୁ ବିବାହ କଲେ । ସାମାନ୍ୟ ସୂତ ପୁତ୍ର ହୋଇ ସେ ଦୁର୍ଯ୍ୟୋଧନଙ୍କୁ ପାଣ୍ଡବଙ୍କ

ଖଳ ଲୋକ ପରି ମଶକ ଜାଣ । ରନ୍ଧ୍ର ଦେଖି କରେ ରକ୍ତ ଶୋଷଣ ।

ବିରୁଦ୍ଧରେ ଉତ୍ତେଜିତ କରୁଥିବାରୁ କୁରୁକୁଳ ପିତାମହ ଭୀଷ୍ମ ତାଙ୍କୁ ଅନାଦର କରୁଥିଲେ । ସେଥିପାଇଁ କର୍ଣ୍ଣ ଦିଗ୍‌ବିଜୟ କରିବାକୁ ଯାଇ ସ୍ୱଳ୍ପକାଳ ମଧ୍ୟରେ ନାନାଦେଶ ଜୟ କଲେ ଓ ଫେରି ଆସି ସମସ୍ତଙ୍କର ପ୍ରଶଂସାଭାଜନ ହେଲେ ।

ଦୁର୍ଯ୍ୟୋଧନ ଏକ ବୈଷ୍ଣବ ଯଜ୍ଞ କଲେ । ସେ ସମୟରେ କର୍ଣ୍ଣ ପଣ କଲେ—ଆଜିଠାରୁ ମୋତେ ଯେ ଯାହା ମାଗିବ ମୁଁ ତାହା ଅକୁଣ୍ଠିତ ହୋଇ ଦେବି । ପୁଣି ଯେଉଁଦିନ ପର୍ଯ୍ୟନ୍ତ ପାର୍ଥଙ୍କୁ ବିନାଶ ନ କରିଅଛି ସେ ପର୍ଯ୍ୟନ୍ତ ଏ ବ୍ରତ ପାଳନ କରିବି ।

ସେହିଦିନଠାରୁ ସେ ଅକାତରେ ପ୍ରାର୍ଥୀର ମନୋରଥ ପୂର୍ଣ୍ଣ କରିବାକୁ ଲାଗିଲେ । ଶ୍ରୀକୃଷ୍ଣ କର୍ଣ୍ଣଙ୍କର ପଣ ପରୀକ୍ଷା କରିବା ପାଇଁ ବ୍ରାହ୍ମଣ ବେଶରେ କର୍ଣ୍ଣଙ୍କୁ ଦର୍ଶନ ଦେଲେ ଏବଂ କର୍ଣ୍ଣ ପୁତ୍ର ବୃଷକେତୁଙ୍କର ମାଂସ ଖାଇବା ପାଇଁ କହିଲେ । ପିତାମାତା ତିଳେମାତ୍ର ବିଚଳିତ ନ ହୋଇ ଶ୍ରୀକୃଷ୍ଣଙ୍କୁ ତାହା ରନ୍ଧନ କରି ଭୋଜନ କରାଇଲେ । ଶ୍ରୀକୃଷ୍ଣ କର୍ଣ୍ଣଙ୍କର ଏହି ଅସାମାନ୍ୟ କାର୍ଯ୍ୟରେ ପରମ ତୁଷ୍ଟ ହୋଇ ମୃତ ସଞ୍ଜୀବନୀ ବିଦ୍ୟାବଳରେ ବୃଷକେତୁଙ୍କୁ ବଞ୍ଚାଇ ଦେଲେ । ଏହି ଅମାନୁଷିକ ଦାନ ନିମିତ୍ତ ତାଙ୍କର 'ଦାତାକର୍ଣ୍ଣ' ନାମ ବିଖ୍ୟାତ ହେଲା ।

ଦେବରାଜ ଇନ୍ଦ୍ର କର୍ଣ୍ଣଙ୍କ ନିକଟରୁ କୁଣ୍ଡଳଦ୍ୱୟ ଗ୍ରହଣ କରି ଶତ୍ରୁମର୍ଦ୍ଦିନୀ ଶକ୍ତି ପ୍ରଦାନ କଲେ ।

କୁରୁକ୍ଷେତ୍ର ମହାଯୁଦ୍ଧରେ ଭୀଷ୍ମ କର୍ଣ୍ଣଙ୍କୁ ନୀଚ ଜାତି ବୋଲି ଅବଜ୍ଞା କଲେ । କର୍ଣ୍ଣ ଏଥିରେ ନିଜକୁ ଅପମାନିତ ବୋଧ କରି ପ୍ରତିଜ୍ଞା କଲେ, ଯେଉଁଦିନ ପର୍ଯ୍ୟନ୍ତ ଭୀଷ୍ମ ଜୀବିତ ଥିବେ, ସେତେଦିନ ପର୍ଯ୍ୟନ୍ତ ଅସ୍ତ୍ର ଧାରଣ କରିବି ନାହିଁ । ଏହା କହି ସେ ଯୁଦ୍ଧକ୍ଷେତ୍ର ପରିତ୍ୟାଗ କରିଥିଲେ । ଦଶଦିନ ମହାସମର ପରେ ଭୀଷ୍ମ କର୍ଣ୍ଣଙ୍କୁ ପାଣ୍ଡବଙ୍କ ପକ୍ଷରେ ଯୋଗ ଦେବା ପାଇଁ କହିଲେ । ସେ କୃତଘ୍ନ ହେବାକୁ ଅସ୍ୱୀକୃତ ହେବାରୁ ଭୀଷ୍ମ, ତାଙ୍କୁ କୂଟ ଯୁଦ୍ଧ ନ କରି ସ୍ୱର୍ଗକାମ ହୋଇ ଯୁଦ୍ଧ କରିବା ପାଇଁ ଉପଦେଶ ଦେଲେ । ଭୀଷ୍ମଙ୍କ ପରେ ଦ୍ରୋଣ ସେନାପତି ହେଲେ । କର୍ଣ୍ଣ ତାଙ୍କ ଅଧୀନରେ ଯୁଦ୍ଧ କରି ବାଳକ ଅଭିମନ୍ୟୁଙ୍କୁ କୂଟ ଯୁଦ୍ଧରେ ମାରିବା ପାଇଁ ମନ୍ତ୍ରଣା ଦେଇ ବିଶେଷ ସାହାଯ୍ୟ କରିଥିଲେ । ଦ୍ରୋଣଙ୍କ ପରେ କର୍ଣ୍ଣ ସେନାପତି ହେଲେ । ମଦ୍ରରାଜ ଶଲ୍ୟ ତାଙ୍କର ସାରଥି ଥିଲେ । କର୍ଣ୍ଣଙ୍କର ଏକାନ୍ତ ବାସନା—ଅର୍ଜ୍ଜୁନଙ୍କୁ ବିନାଶ କରିବା ପାଇଁ, ମାତ୍ର ଶଲ୍ୟ ଅର୍ଜ୍ଜୁନଙ୍କ ଅଜସ୍ର ପ୍ରଶଂସା କରିବାରୁ ସେ ଦ୍ୱିଗୁଣ ହିଂସାରେ ଜଳିଉଠି ଯୁଦ୍ଧ କଲେ । ଏହି ସମୟରେ ପୃଥିବୀ ତାଙ୍କର ରଥଚକ୍ର ଗ୍ରାସ କଲା ଓ ସେ ଶ୍ରୀକୃଷ୍ଣଙ୍କ କୌଶଳରେ ଅର୍ଜ୍ଜୁନଙ୍କ ଶରରେ ନିହତ ହେଲେ ।



## ବେଦବତୀ ।

ସୁରଗୁରୁ ବୃହସ୍ପତିଙ୍କର ଏକ ପୁତ୍ର ନାମ କୁଶଧ୍ୱଜ । ସେ ରୂପଗୁଣସମ୍ପନ୍ନ ଓ କୃତବିଦ୍ୟ । ତାଙ୍କ ସ୍ତ୍ରୀ ନାମ ବ୍ରତତୀ । ସେହି ଦମ୍ପତି ଯୁଗଳ ଈଶ୍ୱରଙ୍କ ନାମରେ ସର୍ବଦା ତନ୍ମୟ ରହୁଥିଲେ । ଦିନେ କୁଶଧ୍ୱଜ ଏକାନ୍ତରେ ବସି ନାମ ଗାନ କରୁଥିଲେ ଏବଂ ସମସ୍ତ ସମୟରେ ଋକ୍ ସୂକ୍ତ ଓ ଯଜୁଃ ସୂକ୍ତମାନ ଶ୍ରୁତି-ମଧୁର କରି ପାଠ କରୁଥିଲେ । ବୃହସ୍ପତି ତନ୍ମୟ ହୋଇ ତାହା ଶ୍ରବଣ କରୁଥିଲେ । କୁଶଧ୍ୱଜ ଯେଉଁବେଳେ ଉଚ୍ଚସ୍ୱରରେ ବେଦୋଚ୍ଚାରଣ ପୂର୍ବକ ଅନନୁଭୂତ ଭାବାବେଶେ ଅଭିଭୂତ ହୋଇଥିଲେ, ତାଙ୍କର ମୁଖାରବିନ୍ଦରୁ ଯେଉଁବେଳେ ସୁଧାଧାରା ସଦୃଶ ବେଦଧ୍ୱନି ନିର୍ଗତ ହେଉଥିଲା, ସେତେବେଳେ ଏକ କନ୍ୟା ଜାତ ହେଲା । ବୃହସ୍ପତି ଅତ୍ୟନ୍ତ ଆନନ୍ଦରେ ବେଦପାଠ କାଳେ କନ୍ୟା ଜନ୍ମିଥିଲା ବୋଲି ତାହାର ନାମ ବେଦବତୀ ରଖିଲେ ।

ଦିନକୁଦିନ ବେଦବତୀ ଅଲୋକସାମାନ୍ୟା ରୂପବତୀ ହୋଇ ପଡ଼ିଲେ । ଅତି ଅଳ୍ପ ବୟସରେ ସେ ବୁଦ୍ଧିମତୀ ଓ ବିଦୁଷୀ ହେବାରୁ ସମସ୍ତଙ୍କର ସ୍ନେହ ଆକର୍ଷଣ କଲେ ।

ଦିନେ ବୃହସ୍ପତି ଓ କୁଶଧ୍ୱଜ ବେଦବତୀଙ୍କ ବିବାହ ବିଷୟରେ କଥାବାର୍ତ୍ତା ହେଉଁ ହେଉଁ କୁଶଧ୍ୱଜ କହିଲେ,—ମୋ କନ୍ୟା ଅଯୋନିସମ୍ଭୂତା, ବେଦାଙ୍ଗସମ୍ଭୂତା, ତପସ୍ୟାରେ ଯଦି ସିଦ୍ଧିଲାଭ କଲାପରେ ପୁରୁଷୋତ୍ତମ ନାରାୟଣ ତାହାକୁ କୃପା କରିବେ ।

ପ୍ରବଳପରାକ୍ରାନ୍ତ ଦୈତ୍ୟପତି ଶମ୍ଭୁ ବାହୁବଳରେ ଅମରପୁରୀ ଅଧିକାର କରିବାକୁ ଆସିଲା । ଦେବାସୁରଙ୍କର

ଷଡ଼କାନେ ଭେଦ ହୁଅଇ ମନ୍ତ୍ର । ଅତି ଘୁଳିବାରୁ ବିଗଡ଼େ ସୂତ୍ର ।

ଘୋର ଯୁଦ୍ଧ ଲାଗିଲା । ଦେବଗଣ ପରାସ୍ତ ହେବାରୁ ଇନ୍ଦ୍ର ସାମ୍ରାବଳଙ୍କ ସ୍ୱର୍ଗରୁ ପଳାୟନ କଲେ ଓ ବୃହସ୍ପତି ଭୟରେ ଚିରସ୍ଥଭାବେ ଲୁକ୍କାୟିତ ରହିଲେ । କ୍ରୋଧାନ୍ଧ ଶମ୍ଭୁ ଯାହାକୁ ସମ୍ମୁଖରେ ଦେଖିଲା, ତାହାକୁ ନିଧନ କଲା । ବେଦପାଠ-ନିରତ କୁଶଧ୍ୱଜଙ୍କର ପ୍ରାଣବାୟୁ ସେହି ଦୁରନ୍ତ ଦୈତ୍ୟର ଏକ ଆଘାତରେ ବହିର୍ଗତ ହୋଇଗଲା । ଶମ୍ଭୁ ଦେବଗଣଙ୍କୁ ପରାଭୂତ କରି ସ୍ୱର୍ଗରେ ଏକାଧିପତ୍ୟ ବିସ୍ତାର କଲା । ବ୍ରତୀ ସ୍ୱାମୀଙ୍କ ଚିତା ଆରୋହଣ କଲେ ।

ବେଦବତୀ ସ୍ୱୀୟ ପିତାଙ୍କ କଥା ପୂର୍ବରୁ ଶୁଣିଥିଲେ । ଉକ୍ତ ଘଟନା ପରେ ପିତାମହଙ୍କଠାରୁ ଅନୁମତି ନେଇ ଅଭୀପ୍ସିତ ସିଦ୍ଧି ପାଇଁ ତପସ୍ୟା କରିବାକୁ ଗଲେ । ଦେବଗଣ ବହୁ ତପସ୍ୟା କରି ଦୁର୍ଗାଙ୍କ କୃପାରେ ଶକ୍ତିଶାଳୀ ହୋଇ ଦୈତ୍ୟ-ମାନଙ୍କ ସହ ଯୁଦ୍ଧ କଲେ । ଦେବୀ ଦୁର୍ଗା କାଳିକାମୂର୍ତ୍ତିରେ ଶମ୍ଭୁକୁ ସଂହାର କଲେ । ପୁନରାୟ ତ୍ରିଭୁବନରେ ଶାନ୍ତି ବିରାଜିତ ହେଲା ।

ବେଦବତୀ ଅନବରତ ତପସ୍ୟାମଗ୍ନା । ବହିର୍ଜଗତ ସମ୍ବନ୍ଧରେ ତାଙ୍କର ତିଳେମାତ୍ର ଜ୍ଞାନ ନାହିଁ । ସେ ତାଙ୍କର ଏକମାତ୍ର ଆରାଧ୍ୟଙ୍କ କଥା ଭାବନ୍ତି । ତପୋପରାୟଣା ବେଦବତୀଙ୍କର ଦୃଢ଼ପଣ—ନାରାୟଣଙ୍କୁ ସ୍ୱାମୀରୂପେ ଲାଭ କରିବା, କିନ୍ତୁ ଜଗନ୍ନାଥଙ୍କର କୃପାରୁ ବଞ୍ଚିତା ।

ମହର୍ଷି ବିଶ୍ରବାଙ୍କ ପୁତ୍ର ରାବଣ ଉଗ୍ରପ୍ରକୃତି ଓ ଦୁର୍ଦ୍ଧର୍ଷ-କର୍ମା । ଶିବଙ୍କ ବରରେ ବଳୀୟାନ ହୋଇ ତ୍ରିଭୁବନରେ ସ୍ୱୀୟ ଆଧିପତ୍ୟ ବିସ୍ତାର କରିବାକୁ ଲାଗିଲା । କୈଳାସ ପୁରୀରେ କୁବେରଙ୍କୁ ପରାଭୂତ କରି ଅରଣ୍ୟ ମଧ୍ୟରେ ଗମନ କରୁ କରୁ ବେଦବତୀକୁ ଦେଖିଲା । ଦୁରାଚାର କାମାନ୍ଧ ନିଶାଚର ରୂପ-ମୋହରେ ଉନ୍ମତ୍ତ ହୋଇ ହତାହତ ଜ୍ଞାନଶୂନ୍ୟ ହେଲା ଓ ବେଦବତୀଙ୍କୁ ଲାଭ କରିବା ଆଶାରେ ଭଦ୍ର ବେଶରେ ତାଙ୍କ କୁଟୀରରେ ଉପସ୍ଥିତ ହେଲା । ବେଦବତୀ ତାଙ୍କୁ ଅତିଥି ଜ୍ଞାନରେ ଆସନ ପ୍ରଦାନ କରି ସ୍ୱାଗତାଦି ପ୍ରଶ୍ନ କଲେ । ରାବଣ ଯଥୋଚିତ ଆତିଥ୍ୟ ଗ୍ରହଣ କରି ଅମ୍ଳୀୟ ପରି ଅତିଶୟ କୋମଳ ସ୍ୱରରେ ପ୍ରଣୟସୂଚକ କଥା ପ୍ରକାଶ କଲା । ବେଦବତୀ ନିଜର ପୀନତା ସ୍ୱୀକାର ପରିଚୟ ପ୍ରଦାନ କରିବାରୁ ରାବଣ ବଳପୂର୍ବକ ତାହାଙ୍କର କେଶାକର୍ଷଣ କରି ଭୂମିତଳଶାୟିନୀ କଲା । ସେ କିଛିକ୍ଷଣ ସଂଜ୍ଞାହୀନ ହେଲେ । ପରେ କିଛିକ୍ଷଣ ବେଦନା ଜାରି ପ୍ରକୃତିସ୍ଥ ହୋଇ କହିଲେ,—ଦୁରାତ୍ମା ନିଶାଚର, ବଳପୂର୍ବକ ତପସ୍ୟାନିରତ ମୋର ଏହି ଦେହକୁ କଳୁଷିତ କରିଛୁ । ଏହାର ପ୍ରତିଶୋଧ ମୁଁ ବର୍ତ୍ତମାନ ନେଇପାରନ୍ତି, କିନ୍ତୁ ତପସ୍ୟାନିରତା ବ୍ରାହ୍ମଣ-କନ୍ୟା ମୁଁ, କ୍ରୋଧର ବଶୀଭୂତ ହୋଇ ମୋର ଅଲୌକିକ ତପୋବଳ ନଷ୍ଟ କରିବି ନାହିଁ । ଯେବେ ମୁଁ ସତୀ ହୋଇଥାଏ, ତେବେ ଏହାର ପ୍ରତିଫଳ ତୋତେ ଭୋଗ କରିବାକୁ ହେବ । ଏହା କହି ସେ କୁଟୀର ବହିର୍ଦ୍ଦେଶରେ ନିଜର ଚିତା ନିଜେ ସଜାଇ ପ୍ରଜ୍ୱଳିତ ଚିତାକୁ ଡେଇଁ ପଡ଼ିଲେ । ରାବଣ ଏହା ଦେଖି ଚମକି ପଡ଼ିଲା ।



## ଧ୍ରୁବ ।

ବ୍ରହ୍ମାଙ୍କର ପୁତ୍ର ସ୍ୱାୟମ୍ଭୁବ ମନୁ । ତାଙ୍କର ଉତ୍ତାନପାଦ ଓ ପ୍ରିୟବ୍ରତ ନାମରେ ଦୁଇ ପୁତ୍ର । ମହାରାଜ ଉତ୍ତାନପାଦ ମହାପରାକ୍ରମଶାଳୀ ଓ କୃତବିଦ୍ୟ ଥିଲେ । ତାଙ୍କର ସୁନୀତି ଓ ସୁରୁଚି ନାମରେ ଦୁଇ ରାଣୀ । ସୁନୀତି ସୁଶୀଳା, ସୁଗୁଣବତୀ ଓ ପତିବ୍ରତା, ମାତ୍ର ସୁରୁଚି ରୂପବତୀ ହେଲେହେଁ କୁଟିଳା । ମହାରାଜା ସାନରାଣୀଙ୍କୁ ଅତିଶୟ ଭଲ ପାଆନ୍ତି । ଦୁଇରାଣୀଙ୍କର ସର୍ବଦା ଅନ୍ତର୍ମଳ । ସୁରୁଚିଙ୍କ ପ୍ରରୋଚନାରେ ମହାରାଜ ସୁନୀତିଙ୍କୁ କପଟ କରି ବନକୁ ପ୍ରେରଣ କଲେ । ସେ ସେଠାରେ ମହର୍ଷି ଦୁର୍ବାସାଙ୍କ ଆଶ୍ରମରେ ରହି ସ୍ୱାମୀ ପାଦପଦ୍ମ ଚିନ୍ତାରେ ଦିନ କଟାଇଲେ ।

କିଛିଦିନ ପରେ ମହାରାଜା ପାରିଧି ପାଇଁ ବନକୁ ଯାଇ ଦୁର୍ବାସାଙ୍କର ଅତିଥି ହେଲେ । ସେଠାରେ ସୁନୀତିଙ୍କ ସହିତ ତାଙ୍କର ଭେଟ ହେଲା । ରାଜ ସହବାସରେ ସୁନୀତି ଗର୍ଭବତୀ ହେଲେ ଓ ଯଥା ସମୟରେ ଏକ ପୁତ୍ର ଜାତ ହେଲା । ତାହାର ନାମ ଧ୍ରୁବ ହେଲା । ସୁନୀତି ପୁତ୍ରର ଲାଳନ ପାଳନ ଓ ପତି ପ୍ରତିମୂର୍ତ୍ତି ପୂଜାକରି ସୁଖରେ ରହିଲେ ।

କ୍ରମେ ଧ୍ରୁବଙ୍କର ପାଞ୍ଚବର୍ଷ ହେଲା । ମହର୍ଷି ଏକ ଶିଷ୍ୟସହ ତାହାଙ୍କୁ ରାଜାଙ୍କ ନିକଟକୁ ପଠାଇଲେ । ସେତେବେଳକୁ ସୁରୁଚିଙ୍କର ଉତ୍ତମ ନାମରେ ଏକ ପୁତ୍ର ହୋଇଥାଏ । ଧ୍ରୁବ

ଯେତେବେଳେ ରାଜ ସଭାରେ ଉପସ୍ଥିତ ହେଲେ ଉତ୍ତମ ରାଜ-କୋଡ଼ରେ ଉପବିଷ୍ଟ ଥିଲେ । ଏହାଦେଖି ଧ୍ରୁବ ମଧ ପିତାଙ୍କ କୋଳରେ ବସିବା ପାଇଁ ଇଚ୍ଛା କରି ଦୁଇହାତ ବଢ଼ାଇ ଦେଲେ । ଏଥିରେ ସୁରୁଚିଙ୍କର ହତାହତ ଜ୍ଞାନ ତିରୋହିତ ହେଲା । ସେ ଧ୍ରୁବଙ୍କୁ ତିରସ୍କାର କରି କହିଲେ,—ସାମାନ୍ୟ ଭିଖାରିଣୀ ଗର୍ଭରେ ଜାତ ହୋଇ ଏପରି ଉଚ୍ଚ ଅଭିଳାଷ କାହିଁକି ? ତୁ ଏ ସର୍ବଶ୍ରେଷ୍ଠ ସ୍ଥାନର ଅନୁପଯୁକ୍ତ । ଯେବେ ତୋର ସେପରି ତପୋବଳ ଥାଆନ୍ତା ତେବେ ତୁ ମୋ ଗର୍ଭରେ ଜାତ ହୋଇ ଥାନ୍ତୁ ଓ ଆଜି ଏ ରାଜସିଂହାସନରେ ରାଜ-କୋଳରେ ବସିଥାନ୍ତୁ । ତୁ ହୀନକପାଳୀ ସୁନୀତିର ପୁତ୍ର । ତାର ସେପରି ଭାଗ୍ୟ କାହିଁ ? ରାଜା ସମସ୍ତ ଶ୍ରବଣ କରି ସୁରୁଚି ଭୟରେ କିଛି କହିଲେ ନାହିଁ କି ଧ୍ରୁବଙ୍କୁ କୋଳକୁ ନେଲେ ନାହିଁ । ଧ୍ରୁବ ବିମାତାଙ୍କର କଠୋର ବାକ୍ୟରେ ମର୍ମା-ହତ ହୋଇ ମାତାଙ୍କ ନିକଟକୁ ଫେରିଗଲେ । ସୁନୀତି ପୁତ୍ରର ବିଷଣ୍ଣବଦନ ଦେଖି କୋଳରେ ବସାଇ ତାର ମୁହଁ ପୋଛି-ଦେଇ ପଚାରିଲେ,--ବାପ, କିଏ ତୋତେ କଅଣ କହିଲା ଯେ ତୁ ଏପରି ବିକଳ ହୋଇ କ୍ରନ୍ଦନ କରୁଛୁ ? ଧ୍ରୁବ ରାଜସଭାରେ ଯାହା ଘଟିଥିଲା ଅବିକଳ କହିଗଲେ । ସୁନୀତି ପୁତ୍ରକୁ କହିଲେ, ବାପ, ସୁରୁଚି ଯାହା କହିଛି ସେ କଥା ସତ୍ୟ । ତୁ ଅଭାଗିନୀ ଗର୍ଭରୁ ଜାତ ହୋଇଛୁ । ସୁରୁଚି ପୁଣ୍ୟବତୀ, ସେଥିଲାଗି ରାଜରାଣୀ ହୋଇଅଛି । ମୋର ସେପରି ପୁଣ୍ୟ ନାହିଁ ବୋଲି ବନବାସିନୀ ହୋଇକାଳ କାଟୁଛି । ଆମେ ବର୍ତ୍ତମାନ ଯେଉଁ ଅବସ୍ଥାରେ ଅଛୁଁ, ସେଥିରେ ସନ୍ତୁଷ୍ଟ ରହିବା ଆମର ଉଚିତ । ଯେବେ ସୁରୁଚିର କଟୂକ୍ତି ତୋତେ ଅସହ୍ୟ ହୋଇଥାଏ, ତେବେ ପୁଣ୍ୟ କାର୍ଯ୍ୟର ଅନୁଷ୍ଠାନ କର, ତୋର ମନୋବାଞ୍ଛା ପୂର୍ଣ୍ଣ ହେବ । ଏହା ଶୁଣି ଧ୍ରୁବ କହିଲେ,—ମା, ବିମାତାଙ୍କ କଥା କ୍ଷତରେ ଲବଣ ପ୍ରଲେପ ପରି କଷ୍ଟ ଦେଉଛି । ମୁଁ ଆଉ କିଛି ଇଚ୍ଛା କରୁନାହିଁ, କେବଳ ଏପରି ଏକ ସ୍ଥାନ ପାଇବି ଯାହା ମୋର ପିତାଙ୍କୁ ଦୁର୍ଲଭ । ସୁନୀତି କହିଲେ,- ଭଗବାନଙ୍କୁ ଡାକ, ସେ ତୋର ସମସ୍ତ ଅଭିଳାଷ ପୂର୍ଣ୍ଣ କରିବେ । ଧ୍ରୁବ ପଚାରିଲା,.ମା, ସେ କେଉଁଠି ଅଛନ୍ତି ? କିପରି ତାଙ୍କ ଦର୍ଶନ ପାଇବି ? ସୁନୀତି ପୁତ୍ରର ମନକଥା ଜାଣିପାରି ବାଆଁରେଇ କହିଲେ, ସେ ହିଂସ୍ରଜନ୍ତୁ ପୂର୍ଣ୍ଣ ଘୋର ଅରଣ୍ୟରେ ଥାଆନ୍ତି. ତାଙ୍କୁ ଦେଖିବା ନିତାନ୍ତ କଠିନ । ଏହିପରି ନାନା କଥା କହି ପୁତ୍ରକୁ କୋଳରେ ନେଇ ସୁନୀତି ଶୟନ କଲେ । କିଛି ସମୟ ପରେ ସେ ନିଦ୍ରିତ ହେଲେ,--ମାଙ୍କ ଧ୍ରୁବଙ୍କୁ ଶଯ୍ୟା କଣ୍ଟକମୟ ବୋଧ ହେଲା । ସେ ସେହି ରଜନୀରେ ଜନନୀର ନିଦ୍ରାବଶ କୋଳ ପରିତ୍ୟାଗ କରି ହରି ପ୍ରାପ୍ତି ଆଶାରେ ଶ୍ୱାପଦସଙ୍କୁଳ ବନରେ ଉପସ୍ଥିତ ହେଲେ । ଗୁହତ୍ୟାଗୀ ଧ୍ରୁବ ପୂର୍ବଦିଗକୁ ଗମନ କରୁଁ ମରୀଚି ଅତ୍ରି, ଅଙ୍ଗିରା, ପ୍ରଭୃତି ସପ୍ତର୍ଷିଙ୍କ ସହିତ ସାକ୍ଷାତ ହେବାରୁ ସେମାନଙ୍କର ଶରଣାପନ୍ନହେଲେ । ସେମାନେ ଧ୍ରୁବ-ଠାରୁ ସମସ୍ତ ବିଷୟ ଅବଗତ ହୋଇ ବିଷ୍ଣୁଙ୍କ ଆରାଧନା ନିମନ୍ତେ ଉପଦେଶ ପ୍ରଦାନ କଲେ । ତତ୍ପରେ ଦେବର୍ଷି ନାରଦ ତାଙ୍କୁ ଏହିମନ୍ତ୍ର ନିର୍ଦ୍ଦେଶ କରିଦେଲେ ।

"ହିରଣ୍ୟଗର୍ଭ ପୁରୁଷପ୍ରଧାନାଽବ୍ୟକ୍ତ ରୂପିଣେ ।
ଓଁ ନମୋ ବାସୁଦେବାୟ ଶୁଦ୍ଧଜ୍ଞାନସ୍ୱଭାବିନେ ।"

ନାରଦଙ୍କ ଆଦେଶାନୁସାରେ ଧ୍ରୁବ ସର୍ବ ପାପନାଶକ ଯମୁନାତୀରସ୍ଥ ମଧୁବନକୁ ଗମନ କରି ଭଗବାନଙ୍କ ଆରାଧନାରେ ମନୋନିବେଶ କଲେ । ସେ ନିରାହାରୀ ହୋଇ ଏପରି କଠୋର ତପ କଲେ ଯେ ଇନ୍ଦ୍ରାଦି ଦେବଗଣ ଶଙ୍କିତ ହୋଇ ବିଷ୍ଣୁଙ୍କର ଶରଣାପନ୍ନ ହେଲେ। ଭଗବାନ ଦେବଗଣଙ୍କୁ ଆଶ୍ୱାସନା ପ୍ରଦାନକରି ଧ୍ରୁବଙ୍କ ନିକଟରେ ଉପସ୍ଥିତ ହୋଇ କହିଲେ "ବତ୍ସ, ନେତ୍ର ଉନ୍ମୀଳନ କର, ମୁଁ ତୋ ତପରେ ପରମ ପ୍ରୀତ ହୋଇ ଅଭିଳଷିତ ବର ପ୍ରଦାନ କରିବା ପାଇଁ ଆସିଅଛି, ବର ପ୍ରାର୍ଥନା କର ।" ଧ୍ରୁବ ନେତ୍ର ଫିଟାଇ ସମ୍ମୁଖରେ ଭଗବାନଙ୍କୁ ଦର୍ଶନ କରି କହିଲେ,—ପ୍ରଭୋ, ମୁଁ ନିତାନ୍ତ ଅବୋଧ ବାଳକ, ମୁଁ ଭକ୍ତି ଜାଣେନାହିଁ କି ସ୍ତୁତି ଜାଣେ ନାହିଁ । ମୋତେ ଦୟା କରି ଏହି ବର ଦିଅନ୍ତୁ,ଯେପରି ମୁଁ ଆପଣଙ୍କର ସ୍ତବ କରିପାରେଁ । ଭଗବାନଙ୍କ ଦର୍ଶନରେ ଧ୍ରୁବର ଜ୍ଞାନ ପରିସ୍ଫୁଟ ହେଲା । ଭଗବାନ କହିଲେ,— ବତ୍ସ, ତୁମ୍ଭେ ପୂର୍ବଜନ୍ମରେ ବ୍ରାହ୍ମଣର ପୁତ୍ର ଥିଲ, ଅନନ୍ୟକର୍ମା ହୋଇ ମୋତେ ଆରାଧନା କଲ, ଜଣେ ରାଜପୁତ୍ର ସହିତ ବନ୍ଧୁତା ହେବାରୁ, ତାହାର ଐଶ୍ୱର୍ଯ୍ୟ ଦେଖି, ରାଜପୁତ୍ର ହେବାକୁ ବାସନା କଲ, ତେଣୁ ଉତ୍ତାନପାଦ ଗୃହରେ ତୁମ୍ଭର ଜନ୍ମ । ମୁଁ ତୁମ୍ଭର ମନକଥା ଜାଣିଛି । ଯେ ମୋତେ ଅନନ୍ୟଚିତ୍ତ ହୋଇ ଆରାଧନା କରେ, ସ୍ୱର୍ଗ ତ ଅତି ତୁଚ୍ଛକଥା, ଅନାୟାସରେ ମୁକ୍ତି

ଲାଭ କରେ । ସେଣୁ ତ୍ରୈଲୋକ୍ୟ ଉପରେ ସକଳ ତାରା ଓ ଗ୍ରହଗଣଙ୍କ ଉପର ସ୍ଥାନରେ ଧ୍ରୁବର ସ୍ଥାନ ହେଲା । ସେ ସ୍ଥାନ ଧ୍ରୁବଲୋକ ବୋଲି ପ୍ରସିଦ୍ଧ ହେବ । ଧ୍ରୁବର ଜନନୀ ମଧ୍ୟ ତାରକା ରୂପରେ ଧ୍ରୁବ ନିକଟରେ ଅବସ୍ଥାନ କରିବେ । ଏହି ବର ପ୍ରଦାନ କରି ବିଷ୍ଣୁ ସେଠାରୁ ଅନ୍ତର୍ହିତ ହେଲେ ଏବଂ ଧ୍ରୁବ ଫେରି ଆସି ପିତାଙ୍କଠାରୁ ରାଜ୍ୟଲାଭ କଲା । ଉତ୍ତାନ-ପାଦ ପତ୍ନୀଦ୍ୱୟ ସହ ପୁତ୍ର ରାଜ୍ୟରେ କିଛିଦିନ ସୁଖରେ ରହିଲେ ଓ ପରେ ଗଭୀର ଅରଣ୍ୟରେ ତପସ୍ୟା କରି ତନୁ-ତ୍ୟାଗ କଲେ । ଧ୍ରୁବର ବୈମାତ୍ରେୟ ଭ୍ରାତା ଉତ୍ତମ ମୃଗ-ୟାରେ ଯକ୍ଷ କର୍ତ୍ତୃକ ନିହତ ହେଲେ । ଧ୍ରୁବଙ୍କର ଭ୍ରମି ଓ ଇଳା ନାମ୍ନୀ ଦୁଇ ପତ୍ନୀ । ଭ୍ରମି ଜଠରରେ କଳ୍ପ ଓ ବତ୍ସର ଏବଂ ଇଳା ଗର୍ଭରେ ଉତ୍କଳଙ୍କର ଜନ୍ମ । ଧ୍ରୁବ ବହୁକାଳ ସୁଖରେ ପ୍ରଜାପାଳନ କରି ଧ୍ରୁବଲୋକକୁ ଗମନ କଲେ ।



## ହରିଶ୍ଚନ୍ଦ୍ର ।

ମହାରାଜ ହରିଶ୍ଚନ୍ଦ୍ର ତ୍ରିଶଙ୍କୁଙ୍କର ପୁତ୍ର । ଏହାଙ୍କ ପତ୍ନୀଙ୍କ ନାମ ଶୈବ୍ୟା ଓ ପୁତ୍ର ନାମ ରୋହିତାଶ୍ୱ । ଏହାଙ୍କପରି ଧାର୍ମିକ, ସତ୍ୟବାଦୀ ଓ ଜିତେନ୍ଦ୍ରିୟ ତ୍ରିଭୁବନରେ ବିରଳ । ଏହାଙ୍କ ରାଜତ୍ୱରେ ପ୍ରଜାମାନେ ମହାସୁଖରେ କାଳ କାଟୁଥିଲେ । ଏକଦା ଦେବସଭାରେ ବଶିଷ୍ଠ ମହାରାଜ ହରିଶ୍ଚନ୍ଦ୍ରଙ୍କର ସତ୍ୟନିଷ୍ଠା ପ୍ରଭୃତି ଅଶେଷ ସଦ୍ଗୁଣର ପ୍ରଶଂସା କରିବାରୁ ବିଶ୍ୱାମିତ୍ର ତାହାଙ୍କୁ ପରୀକ୍ଷା କରିବାପାଇଁ ଅଭିଳାଷୀ ହେଲେ । ବିଶ୍ୱାମିତ୍ର-ଙ୍କର ଏକ ତପୋବନ ଥିଲା । ସେଠାରେ ଶାପଗ୍ରସ୍ତ ହୋଇ ଅପ୍ସରାମାନେ ପୁଷ୍ପ ଚୟନ କରୁଁ କରୁଁ ଲତାଜାଲରେ ଅବଦ୍ଧ ହେଲେ । ମହାରାଜ ହରିଶ୍ଚନ୍ଦ୍ର କୃପାପରବଶ ହୋଇ ସେମା-ନଙ୍କୁ ମୁକ୍ତିଦେଲେ । ଏଣୁ ବିଶ୍ୱାମିତ୍ର ଛଳରେ ହରିଶ୍ଚନ୍ଦ୍ରଙ୍କଠାରୁ ସମସ୍ତ ରାଜ୍ୟ ଦାନ ସ୍ୱରୂପ ଗ୍ରହଣ କଲେ । ଦାନର ଦକ୍ଷିଣାପାଇଁ ପୀଡ଼ନ କରିବାରୁ ସେ ପତ୍ନୀ ପୁତ୍ର ଓ ଆତ୍ମ ବିକ୍ରୟ କରି ଦକ୍ଷିଣାର ଅର୍ଥ ପ୍ରଦାନ କଲେ । ଶୈବ୍ୟା ବାରାଣସୀରେ ଏକ ବ୍ରାହ୍ମଣ ଗୃହରେ ଦାସୀବୃତ୍ତି କରୁଥିଲେ । ସେଠାରେ ତାଙ୍କର କଷ୍ଟର ସୀମା ନ ଥିଲା । ରୋହିତାଶ୍ୱ ସେଠାରେ ବ୍ରାହ୍ମଣଙ୍କର ଦେବପୂଜା ପାଇଁ ପ୍ରତିଦିନ ପୁଷ୍ପ ଚୟନ କରୁଥିଲେ । ହରିଶ୍ଚନ୍ଦ୍ର ଚଣ୍ଡାଳର ସେବକ ହୋଇ ଶ୍ମଶାନରେ ମଡ଼ାରକ୍ଷୀର କାର୍ଯ୍ୟ କଲେ । କିଛିଦିନ ପରେ ରୋହିତାଶ୍ୱ ପୁଷ୍ପଚୟନ କରୁ କରୁ ସର୍ପାଘାତରେ ପ୍ରାଣ ହରାଇଲେ । ଶୈବ୍ୟା ଗଭୀର ନିଶୀଥରେ ମୃତ ପୁତ୍ରକୁ କୋଡ଼ରେ ଧାରଣ କରି ଦାହ ନିମିତ୍ତ ଶ୍ମଶା-ନରେ ଉପସ୍ଥିତ ହେଲେ । ହରିଶ୍ଚନ୍ଦ୍ର ମୃତଶୁଳ୍କ ସଂଗ୍ରହ ପାଇଁ ଭ୍ରମଣ କରୁ କରୁ ସେଠାରେ ଉପସ୍ଥିତ ହେଲେ ଏବଂ କଥୋପ-କଥନ କରିବା ସମୟରେ ଦୁହେଁ ଦୁହିଁଙ୍କୁ ଚିହ୍ନିଲେ । ପୁତ୍ରର ଅକାଳ ବିୟୋଗରେ ପିତା ମାତା ଅତିଶୟ କାତର ହେବା ସମୟରେ ବିଶ୍ୱାମିତ୍ର ସେଠାରେ ଉପସ୍ଥିତ ହୋଇ ସେହି ପୁତ୍ରକୁ ପୁନର୍ଜୀବନ ଦାନ ଓ ହରିଶ୍ଚନ୍ଦ୍ରଙ୍କୁ ରାଜ୍ୟ ପ୍ରଦାନ କଲେ । ନିଜ ପୁଣ୍ୟ ବଳରେ ହରିଶ୍ଚନ୍ଦ୍ର ଶିବଙ୍କର ପାର୍ଶ୍ୱ-ଚର ଓ ଶୈବ୍ୟା ଦୁର୍ଗାଙ୍କ ସହଚରୀ ହୋଇଥିଲେ ।



## ଶକୁନ୍ତଳା ।

ମହର୍ଷି ବିଶ୍ୱାମିତ୍ରଙ୍କ ସୁକଠୋର ତପ ଭଙ୍ଗ କରିବା ନିମିତ୍ତ ଦେବଗଣ ମେନକା ଅପ୍ସରାଙ୍କୁ ପ୍ରେରଣ କରିଥିଲେ । ମେନକା ମହର୍ଷିଙ୍କର ଧ୍ୟାନ ଭଙ୍ଗ କରିବାକୁ ସମର୍ଥା ହେଲେ । ସେହି ମେନକା ଗର୍ଭେ ବିଶ୍ୱାମିତ୍ରଙ୍କ ଔରସରେ ଶକୁନ୍ତଳାଙ୍କର ଜନ୍ମ । ମେନକା ଅରଣ୍ୟ ମଧ୍ୟରେ କନ୍ୟା ପ୍ରସବ କରି ସ୍ୱର୍ଗକୁ ପ୍ରସ୍ଥାନ କଲେ । ଶକୁନ୍ତଗଣ ତେତେବେଳେ ସେହି କନ୍ୟା ପରିବେଷ୍ଟନ କରିଥିଲେ । ମହର୍ଷି କଣ୍ୱ ଏହା ଦେଖି ସେ କନ୍ୟା ସଯତନେ ଆଶ୍ରମକୁ ନେଇଗଲେ । କନ୍ୟା ଶକୁନ୍ତଗଣ ପରିବେଷ୍ଟିତା ଥିଲା ବୋଲି ମହର୍ଷି ତାହାର ନାମ ଶକୁନ୍ତଳା ରଖିଲେ । କ୍ରମେ ସେ ଯୌବନ ସୀମାରେ ପଦାର୍ପଣ କଲେ । ତାଙ୍କର ଅନସୂୟା ଓ ପ୍ରିୟଂବଦା ନାମରେ ଦୁଇଟି ସଖୀ ଥିଲେ ।

ଦୁଷ୍ମନ୍ତ ନାମରେ ଏକ ମହାପ୍ରତାପାନ୍ୱିତ ରାଜା ମୃଗୟା ନିମିତ୍ତ ଅରଣ୍ୟକୁ ଯାଇ ହିରଣ୍ୟ ବନରେ ଉପସ୍ଥିତ ହେଲେ । ସେଠାରେ କଣ୍ୱ ମୁନିଙ୍କର ଆଶ୍ରମ । ରାଜା ଭ୍ରମଣ କରୁଁ କରୁଁ ଶକୁନ୍ତଳା ଓ ତାଙ୍କର ସଖୀଦ୍ୱୟଙ୍କୁ ଦୂରରୁ ଦେଖି ଚମତ୍କୃତ ହେଲେ । ତେତେବେଳେ ସେ ଆଲବାଳରେ ଜଳସେଚନ

ଭାଗ୍ୟରେଖା ସୀମା ଲଙ୍ଘି ନୁହେ କେବେ । ଥାଉ ଆନ ତହୁଁ ପରାଭୂତ ହେବେ ।

କରୁଥିଲେ । ରାଜା ବୃକ୍ଷାନ୍ତରାଳରେ ଥାଇ ଶକୁନ୍ତଳାଙ୍କର ଅତୁଳନୀୟ ମନୋହର ରୂପରାଶି ସନ୍ଦର୍ଶନରେ ବିମୁଗ୍ଧ ହେଲେ ଏବଂ ସେମାନଙ୍କର କଥୋପକଥନରୁ ସେମାନଙ୍କର ନାମ ଜାଣି ପାରିଲେ । ଶକୁନ୍ତଳା ଏକ ପୁଷ୍ପ ବୃକ୍ଷରେ ଜଳସିଞ୍ଚନ କରିବା ସମୟରେ ଭ୍ରମରଟିଏ ପୁଷ୍ପରୁ ଉଡ଼ିଆସି ଶକୁନ୍ତଳାଙ୍କ ପଦ୍ମମୁଖକୁ ପୁଷ୍ପ ମନେ କରି ମଧୁପାନ ଆଶାରେ ସେଠାରେ ବସିବାର ଉଦ୍ୟମ କଲା । ଶକୁନ୍ତଳା ନିଜ ଅଞ୍ଚଳରେ ତାହାକୁ ଘଉଡ଼ାଇ ଦେବାକୁ ଚେଷ୍ଟା କଲେ । କିନ୍ତୁ ଭ୍ରମର ନ ଯାଇ ମୁଖରେ ବସିବା ପାଇଁ ବାରଂବାର ଉପକ୍ରମ କରିବାରୁ ସୁନ୍ଦରୀ ମହା ଉତ୍ପୀଡ଼ିତା ହେଲେ । ତହୁଁ ସେ ହତାଶ ହୋଇ ସଖୀଙ୍କୁ ଡାକି କହିଲେ,—ଦେଖ ଦେଖ ସଖି, ଏ ଭ୍ରମରଟା ମୋତେ କିପରି କଷ୍ଟ ଦେଉଛି, ତମେ ଆସି ରକ୍ଷା କର । ସଖୀଦ୍ୱୟ କହିଲେ, ଆମ୍ଭେମାନେ କଅଣ କରିବୁଁ ? ଦୁଷ୍ମନ୍ତ ଏହି ଅରଣ୍ୟର ଅଧିପତି, ତାହାଙ୍କୁ ସ୍ମରଣ କର, ସେ ଆସି ଦୁଷ୍ଟଙ୍କୁ ଦମନ କରିବେ । ରାଜା ଅପରିଚିତା ରମଣୀଙ୍କ ସମ୍ମୁଖରେ ଉପସ୍ଥିତ ହେବା ନିତାନ୍ତ ଭଦ୍ରତାବିରୁଦ୍ଧ କାର୍ଯ୍ୟ ବୋଲି ମନେ କରି ଲୁଚିଥିଲେ, ସହସା ଏ ସୁଯୋଗ ପାଇ ସମ୍ମୁଖକୁ ଆସି କହିଲେ,—ଅସହାୟା ରମଣୀଙ୍କୁ ଉତ୍ପୀଡ଼ିତ କରିବା ସାହସ ବା ଶକ୍ତି କାହାର ? ରମଣୀତ୍ରୟ ଅପରିଚିତ ପୁରୁଷଙ୍କୁ ଦେଖି ଲଜ୍ଜାରେ ତଳକୁ ମୁହଁ ପୋତି ଠିଆ ହେଲେ । କ୍ରମେ ପରସ୍ପରଙ୍କର ଆଳାପ ପରିଚୟାଦି ହେଲା । ସେ ସମୟରେ କଣ୍ୱ ମୁନି ଆଶ୍ରମରେ ନ ଥିଲେ । ସଖୀଗଣ ରାଜାଙ୍କ ଉପଯୁକ୍ତ ସମ୍ମାନ କଲେ । ସେଠାରେ ଶକୁନ୍ତଳାଙ୍କ ସହିତ ଦୁଷ୍ମନ୍ତଙ୍କର ଗାନ୍ଧର୍ବ ବିବାହ ସମ୍ପନ୍ନ ହେଲା । କିଛିଦିନପରେ ରାଜା ନିଜ ରାଜ୍ୟକୁ ପ୍ରସ୍ଥାନ କଲେ । ଯିବା ସମୟରେ ନିଜ ହସ୍ତର ବହୁମୂଲ୍ୟ ଅଙ୍ଗୁରୀୟ ସାଦରେ ଶକୁନ୍ତଳାଙ୍କ ହସ୍ତରେ ପିନ୍ଧାଇ ଦେଇ କହିଲେ,—ପ୍ରିୟେ, ମୁଁ ବର୍ତ୍ତମାନ ମେଲାଣି ନେଉଛି, ଲୋକ ପଠାଇ ତୁମ୍ଭଙ୍କୁ ନେଇଯାଇ ପାଟରାଣୀ କରିବି । ଶକୁନ୍ତଳାଙ୍କର ମୁହଁରୁ କଥା ବାହାରିଲା ନାହିଁ, କେବଳ ନୟନରୁ ଅଶ୍ରୁଧାର ବହିଗଲା । ରାଜା ସ୍ୱରାଜ୍ୟକୁ ଯାଇ ଶକୁନ୍ତଳାଙ୍କର କୌଣସି ତତ୍ତ୍ୱ ନେଲେ ନାହିଁ । ଦିନକୁ ଦିନ ସଦା ହାସ୍ୟମୟୀ ଶକୁନ୍ତଳା ଚିନ୍ତାରେ କ୍ଷୀଣା ହେଲେ । ସେ ଦୁଷ୍ମନ୍ତଙ୍କ ଚିନ୍ତାରେ ଏପରି ଅନ୍ୟମନସ୍କା ହେଲେ ଯେ, କେହି ତାଙ୍କୁ ଡାକିଲେ ସେ ଶୁଣି ପାରିଲେ ନାହିଁ । କିଛି ଦିନ ପରେ ଦିନେ କ୍ରୋଧର ପ୍ରତିମୂର୍ତ୍ତି ଋଷିଶ୍ରେଷ୍ଠ ଦୁର୍ବାସା କଣ୍ୱଙ୍କ ଆଶ୍ରମରେ ଅତିଥି ହେଲେ । ସେତେବେଳେ ସେଠାରେ ଶକୁନ୍ତଳା ବ୍ୟତୀତ ଅନ୍ୟ କେହି ନ ଥିଲେ । ଶକୁନ୍ତଳା ଦୁଷ୍ମନ୍ତଙ୍କ ଚିନ୍ତାରେ ଏପରି ବିଭୋର ଥିଲେ ଯେ ଦୁର୍ବାସାଙ୍କ ବାକ୍ୟ ତାଙ୍କ କର୍ଣ୍ଣରେ ପ୍ରବେଶ କଲା ନାହିଁ । ମହର୍ଷି ତାହାଙ୍କୁ ବାରଂବାର ଅତିଥି ସତ୍କାର କରିବା ପାଇଁ ଅନୁରୋଧ କରି ବିଫଳମନୋରଥ ହେବାରୁ କ୍ରୁଦ୍ଧ ହୋଇ ଅଭିଶାପ ଦେଲେ ଯେ, ତୁମ୍ଭେ ଯାହାର ଚିନ୍ତାରେ ଏପରି ଅନ୍ୟମନସ୍କା ଥାଇ ଅତିଥିଙ୍କୁ ଅବଜ୍ଞା କଲ ସେ ତୁମ୍ଭଙ୍କୁ ପାସୋରିବେ । ଏହି ସମୟରେ ସଖୀଦ୍ୱୟ ସେଠାରେ ଉପସ୍ଥିତ ହୋଇ ସମସ୍ତ ଶ୍ରବଣ କଲେ ଓ ଋଷିଙ୍କ ପଦଯୁଗ ଧରି ସଖୀଙ୍କୁ ସଦୟ ହେବାପାଇଁ ଅନୁରୋଧ କରିବାରୁ ମହର୍ଷି କହିଲେ-ଯେବେ ତୁମ୍ଭର ସଖୀ ସ୍ମାରକଚିହ୍ନ ଦେଖାଇ ପାରିବେ ତେବେ ସେ ତାଙ୍କୁ ଚିହ୍ନି ପାରିବେ । ଦୁଷ୍ମନ୍ତଙ୍କ ଅଙ୍ଗୁରୀୟ ଶକୁନ୍ତଳାଙ୍କ ହସ୍ତରେ ଥିଲା, ଏଣୁ ସେ ଅଭିଶାପ କୌଣସି କ୍ଷତି କରି ପାରିବ ନାହିଁ ବୋଲି ବୁଝି କଥଞ୍ଚିତ୍ ଆଶ୍ୱସ୍ତା ହେଲେ ।

କଣ୍ୱ ଆଶ୍ରମକୁ ଆସି ସମସ୍ତ ବିଷୟ ଅବଗତ ହୋଇ ଶକୁନ୍ତଳା ଉପଯୁକ୍ତ ପାତ୍ରରେ ବରମାଲ୍ୟ ପ୍ରଦାନ କରିଅଛନ୍ତି ବୋଲି ନିଶ୍ଚିନ୍ତ ହେଲେ । ତତ୍ପରେ କେତେଜଣ ଶିଷ୍ୟ ସହ ତାଙ୍କୁ ରାଜା ଦୁଷ୍ମନ୍ତଙ୍କ ନିକଟକୁ ପ୍ରେରଣ କଲେ । ବାଟରେ ଶଚୀତୀର୍ଥରେ ସ୍ନାନ କରୁଁ ଶକୁନ୍ତଳାଙ୍କ ହସ୍ତରୁ ଦୁଷ୍ମନ୍ତଙ୍କ ମୁଦ୍ରିକା ତାଙ୍କ ଅଗୋଚରରେ ଜଳମଗ୍ନ ହେଲା । ଯେତେବେଳେ ଶକୁନ୍ତଳା ରାଜସଭାରେ ଉପସ୍ଥିତ ହେଲେ, ରାଜା ତାଙ୍କୁ ଆଦୌ ଚିହ୍ନି ପାରିଲେ ନାହିଁ । ସେ ସଲଜ୍ଜ ଭାବରେ ରାଜାଙ୍କ ନିକଟରେ ସମସ୍ତ ଘଟନା ବିବୃତ କଲେ । ରାଜାଙ୍କର କୌଣସି କଥା ସ୍ମରଣ ହେଲା ନାହିଁ । ସେ ତାଙ୍କୁ ବିଦ୍ରୂପ ଓ ଉପହାସ କଲେ । ଶକୁନ୍ତଳା କ୍ରୋଧ, ଅଭିମାନ ଓ ଦୁଃଖରେ ରାଜସଭା ତ୍ୟାଗ କରି ଆସିଲେ । ତତ୍ପରେ ତାଙ୍କର ଏକ ପୁତ୍ର ଜାତ ହେଲା, ତାଙ୍କର ନାମ ଭରତ । ସେହି ଭରତ ରାଜାଙ୍କ ନାମାନୁସାରେ ଏ ଦେଶର ନାମ ଭାରତ ହୋଇଅଛି ।

କିଛିଦିନ ପରେ ଏକ ଧୀବର ଏକ ମତ୍ସ୍ୟ ଧରି କାଟିବା ସମୟରେ ତାହାର ପେଟରୁ ଏକ ବହୁମୂଲ୍ୟ ଅଙ୍ଗୁରୀୟ ପାଇଲା ସେ ତାହାକୁ ରାଜୋପଯୋଗ୍ୟ ମନେ କରି ରାଜାଙ୍କ ନିକଟକୁ

ହେଉଥିଲା । ସେ ଅଙ୍ଗୁରୀୟକୁ ଦେଖିବା ମାତ୍ରକେ ଶକୁନ୍ତଳାଙ୍କ ସମସ୍ତ କଥା ଦୁଷ୍ମନ୍ତଙ୍କ ହୃଦୟରେ ସ୍ମରଣ ହେଲା । ସେ ଶତ ସହସ୍ର ବୃଶ୍ଚିକଦଂଶନର ବ୍ୟଥା ଅନୁଭବ କଲେ ।

ଦୁଷ୍ମନ୍ତ ଶକୁନ୍ତଳାଙ୍କର ବହୁତ ଅନୁସନ୍ଧାନ କଲେ, ମାତ୍ର ସମସ୍ତ ଚେଷ୍ଟା ବ୍ୟର୍ଥ ହେଲା । ଯେବେ ସେ ହତାଶ ହୋଇ ପ୍ରତ୍ୟାଗମନ କରିବା ସମୟରେ ଏକ ଆଶ୍ରମ ନିକଟରେ ଉପସ୍ଥିତ ହେଲେ । ସେଠାରେ ଏକ ବାଳକ ସିଂହ ଶିଶୁ ସହିତ କ୍ରୀଡ଼ା କରୁଥିବାର ଦେଖି ତାଙ୍କ ହୃଦୟରେ ଏକ ଅଭୂତପୂର୍ବ ଭାବର ଉଦୟ ହେଲା । ସେ ତାହାକୁ କୋଳ କରିବାକୁ ବ୍ୟଗ୍ର ହେଲେ । ଏହି ସମୟରେ ଶକୁନ୍ତଳା ସେଠାରେ ଉପସ୍ଥିତ ହେବାରୁ ଉଭୟଙ୍କର ମିଳନ ହେଲା । ରାଜା ପୁତ୍ରସହ ଶକୁନ୍ତଳାଙ୍କୁ ନିଜ ରାଜ୍ୟକୁ ନେଇ ଆସିଲେ । ଶକୁନ୍ତଳା ପାଟରାଣୀ ହେଲେ । କିଛିକାଳ ପରେ ଦୁଷ୍ମନ୍ତ ଭରତଙ୍କୁ ରାଜ୍ୟ ପ୍ରଦାନ କରି ଜୀବନର ଅବଶିଷ୍ଟ ସମୟ ଧର୍ମାଚରଣରେ ଅତିବାହିତ କଲେ ।

## ଚିତ୍ରାଙ୍ଗଦା ।

ଛନ୍ଦୋଲୁ ବୁନ୍ଦେଶ୍ୱର ମହାରାଜ କକୁତ୍ସ୍ଥଙ୍କର ବହୁ-ପୁତ୍ର ମାତ୍ର କନ୍ୟା ନାହିଁ । ଏଥିପାଇଁ ପଟ୍ଟମହିଷୀ ଭଗବତୀ ଦୁର୍ଗାଙ୍କ ମନ୍ଦିରେ ଅଣସ୍ତ ନେଲେ । ରାଜା ରାଣୀଙ୍କ ପ୍ରାଣ ବେଦନା ବୁଝି ନ ପାରି ତାଙ୍କୁ ଅନ୍ତଃପୁରରେ ନ ଦେଖି ଭାବିଲେ, ଏତେ ସ୍ନେହ-ଏତେ ଆଦର-ଯତ୍ନ, ତାର ବିନିମୟରେ ଏହି ଅବହେଳା । ରାଣୀଙ୍କ ପ୍ରତି ଅଭିମାନ କରି ରାଜା ମୃଗୟାର୍ଥେ ବନକୁ ଯାଇ ସୈନ୍ୟସାମନ୍ତଙ୍କୁ ବିଦାୟ ଦେଇ ଲକ୍ଷ୍ୟହୀନ ପରି ଭ୍ରମଣ କରୁଁ କରୁଁ କ୍ଲାନ୍ତ ହୋଇ ଏକଖଣ୍ଡ ଶିଳା-ଉପରେ ଗାଢ଼ ନିଦ୍ରାରେ ଅଭିଭୂତ ହେଲେ । ପରଦିନ ଧନୁର୍ବାଣହସ୍ତରେ ଗମନ କରୁଁ କରୁଁ ଏକ ପାରିଜାତ ପୁଷ୍ପ ତାଙ୍କ ମସ୍ତକରେ ନିପତିତ ହେଲା ଏବଂ କ୍ଷଣାନ୍ତରେ ଏକ ଅପରୂପ ଲାବଣ୍ୟମୟୀ ନାରୀ ବିମାନରୁ ଅବତରଣ କଲେ । ରାଜା ମୂର୍ତ୍ତି ସୌନ୍ଦର୍ଯ୍ୟପର ଅନବଦ୍ୟାଙ୍ଗୀ ସେହି ନାରୀର ପରିଚୟ ଗ୍ରହଣ ପୂର୍ବକ ତାହା ସଙ୍ଗେ ପ୍ରେମାମୋଦରେ ରତ ହେଲେ । କିଛିଦିନ ଗତ ହେଲା । ସେ ନାରୀ ସଦ୍ୟପ୍ରସୂତା ଏକ କନ୍ୟା ରଖି ସ୍ୱୈରିଣୀ ପରି ଯାଉଥିଲା ଚାଲିଗଲେ । ସେ ଆଉ କେହି ନୁହେ, ଉର୍ବଶୀ । ପୁଲକିତ ସେ କନ୍ୟାକୁ କୋଳରେ ନେଇ ନଅରରେ ଉପସ୍ଥିତ ହେଲେ । ତାର ନାମ ରଖିଲେ ଚିତ୍ରାଙ୍ଗଦା । କାଳକ୍ରମେ ରାଣୀ ଦୁର୍ଗାଙ୍କ କୃପାରୁ ଏକ କନ୍ୟା-ରତ୍ନ ଲାଭ କଲେ । ତାର ନାମ-ତାରାବତୀ । କିଛିଦିନପରେ ମହାରାଣୀଙ୍କର ମୃତ୍ୟୁ ଘଟିଲା । ରାଜା ରାଣୀଙ୍କ ପାରଲୌକିକ କ୍ରିୟା ମହା ଆଡ଼ମ୍ବରରେ ସମ୍ପନ୍ନ କଲେ । ଚିତ୍ରାଙ୍ଗଦା ଶ୍ରାଦ୍ଧ କ୍ରିୟା ସମାପନ ପରେ ଅଷ୍ଟାବକ୍ର ମୁନିଙ୍କୁ ଦେଖି ହସିଦେଲେ । ମୁନି କ୍ରୋଧାନ୍ଧ ହୋଇ ଅଭିଶାପ ଦେଲେ,-ଯୌବନ ଓ ସୌନ୍ଦର୍ଯ୍ୟ ଗର୍ବରେ ଅଭିଭୂତ ହୋଇ ତୁ ମୋତେ ଯେପରି ଉପହାସ କଲୁ, ସେହିପରି ତୋର ଏହି ସୌନ୍ଦର୍ଯ୍ୟ ଦାସୀପଣ କରି ଯିବ ଓ ଯୌବନର ଅହଙ୍କାର ଫଳରେ ତୁ କନ୍ୟାବସ୍ଥାରେ ଶିଶୁର ଜନନୀ ହେବୁ । ଏହି ତୀବ୍ର ଅଭିଶାପ ବାଣୀ ଶୁଣି ସମସ୍ତେ ଭବିତବ୍ୟ ଅଖଣ୍ଡନୀୟ ବୋଲି ଖେଦ ବିଳାପ କଲେ ଓ ଚିତ୍ରାଙ୍ଗଦାକୁ ସାନ୍ତ୍ୱନା ଦେଲେ ।

କିଛିଦିନ ପରେ ରାଜା ଦୁଇ କନ୍ୟାଙ୍କ ପାଇଁ ସୁଯୋଗ୍ୟ ପାତ୍ର ଅନ୍ୱେଷଣ କଲେ । ଚିତ୍ରାଙ୍ଗଦାଙ୍କ ପାଣିଗ୍ରହଣ ପାଇଁ କେହି ସ୍ୱୀକୃତ ହେଲେ ନାହିଁ । ଚନ୍ଦ୍ର ବଂଶୀୟ ଏକ ରାଜାଙ୍କ ସହିତ ତାରାବତୀଙ୍କର ବିବାହ ସ୍ଥିର ହେଲା । ସେ ରାଜା ଇନ୍ଦ୍ରିୟପରା-ୟଣ ଓ ତାଙ୍କର ବହୁରାଣୀ ଅଛନ୍ତି ବୋଲି ତାରାବତୀ ଶୁଣିପାରି ତାଙ୍କୁ ବିବାହ କରିବାକୁ ଅସମ୍ମତ ହେଲେ । ରାଜା ପ୍ରଭୃତି ଯେତେ ବୁଝାଇଲେ ସୁଦ୍ଧା ତାରା ନିଜ ପ୍ରତିଜ୍ଞା ଭଙ୍ଗ କରିବାକୁ ରାଜି ହେଲେ ନାହିଁ । ତଦନନ୍ତର ସ୍ୱୟଂବର ସଭା ଆହୂତ ହେଲା । ତାରାବତୀ ପୌଷ୍ୟ ତନୟ ଚନ୍ଦ୍ରଶେଖରଙ୍କ ରୂପ ଗୁଣ ଶୁଣି ତାଙ୍କ ଗଳାରେ ବରମାଲ୍ୟ ଅର୍ପଣ କଲେ । ଚିତ୍ରାଙ୍ଗଦା ସ୍ୱତଃ ପ୍ରବୃତ୍ତ ହୋଇ ତାଙ୍କର ଦାସୀ ହୋଇ ସଙ୍ଗରେ ଗଲେ ।

ତାରାବତୀ ଓ ଚିତ୍ରାଙ୍ଗଦା ତୀର୍ଥସ୍ନାନ କରିବାକୁ ଯାଇଥିଲେ ସକଳଓଳ ତୀର୍ଥକୃତ୍ୟ ସମାପନ କରି ସେମାନେ ସେଠାରେ ରହିଲେ । ଓପରଓଳି ଜଳକ୍ରୀଡ଼ାରେ ବହୁ ପରିଶ୍ରାନ୍ତ ହୋଇ ତାରାବତୀ କୂଳକୁ ଉଠି ଆସିଲେ । ସିକ୍ତବସ୍ତ୍ର ମଧ୍ୟରୁ ତାଙ୍କର ସୌନ୍ଦର୍ଯ୍ୟ ଫୁଟି ବାହାରିଲା । କପୋତ ମୁନି ସେଥିରେ ମୁଗ୍ଧ ହୋଇ ସେଠାରେ ଉପସ୍ଥିତ ହୋଇ ନିଜକୁ ବ୍ରାହ୍ମଣ ତପସ୍ୱୀ

ବୋଲି ପରିଚୟ ଦେଲେ । ତାରାବତୀ ତାହାଙ୍କୁ ପ୍ରଣାମ କରି ଦେଖିଲେ କାଳସାର ଶିଙ୍ଗ ବନ୍ଧି ମୁନିଙ୍କ ନୟନଦ୍ୱୟ ପ୍ରଜ୍ୱଳିତ ହେବାରୁ । ମୁନିଙ୍କ କ୍ରୁଦ୍ଧ ବଚନ ଶ୍ରବଣ କରି ତାରାବତୀ କହିଲେ,—ମୁନିବର, ମନର ଶୃଙ୍ଖଳ୍ୟ ତ୍ୟାଗ କରିବା ଅବଳାଙ୍କର ଧର୍ମ । ଅବଳା ପ୍ରତି ଅତ୍ୟାଚାର କରିବା ଅତି ଧର୍ମ-ବିଗର୍ହିତ, କ୍ଷାନ୍ତ ହୁଅନ୍ତୁ । ଏହି ସମୟରେ ରାଜା ସେଠାରେ ଉପସ୍ଥିତ ହୋଇ ମୁନିଙ୍କୁ ନମସ୍କାର କଲେ । ମୁନି କମଣ୍ଡଳୁରୁ ଗଣ୍ଡୂଷମାତ୍ର ଜଳ ଘେନି ରାଜାଙ୍କୁ ନିକ୍ଷେପ କରିବାରୁ ରାଜା ଭୂମିତଳେ ଗତ ଶିଶୁପରି ଛଟପଟ ହେଲେ । ଏହା ଦେଖି ଚନ୍ଦ୍ରାଙ୍ଗଦା ତାରାବତୀଙ୍କର ବସ୍ତ୍ରାଞ୍ଚଳକୁ ପରିଧାନ କରି କହିଲେ,—ତାରା । ମୁଁ ଯାଉଛି, ତୋ ଠାରୁ ଚିର ବିଦାୟ ନେଇ, ମୋ ପ୍ରତି ବ୍ରହ୍ମଶାପର ସାର୍ଥକତା ଅଜି ଘଟିବ—ତାରା, ବାପାଙ୍କୁ କହିବ, ଅଷ୍ଟାବକ୍ରଙ୍କ ଅଭିଶାପରେ ଅଭିପ୍ରେ ଜୀବନ ଦେଇ, ଚନ୍ଦ୍ରାଙ୍ଗଦା ବଞ୍ଚିଗଲା ଇକ୍ଷ୍ୱାକୁ ବଂଶରେ ଘୋର କାଳିମା । ମୁଁ ଜନ୍ମଦୁଃଖିନୀ କନ୍ୟା,—ମାତୃ ପରିତ୍ୟକ୍ତା—କୈଶୋରେ ସ୍ୱେଚ୍ଛାରେ ରାଜ୍ୟ-ନିର୍ବାସିତା । ବର୍ତ୍ତମାନ ଅବଶିଷ୍ଟ ମୋର କୌମାର୍ଯ୍ୟ । ଅଜି ଯେବେ ସେହି କୌମାର୍ଯ୍ୟର ବିନିମୟରେ ପ୍ରାଣ ଅପେକ୍ଷା ପ୍ରିୟତମ ତୋର ସଖୀଙ୍କୁ ଓ ମହାରାଜ ଚନ୍ଦ୍ରଶେଖରଙ୍କ ଜୀବନ ରକ୍ଷା କରିବାକୁ ସମର୍ଥ ହୁଏ, ତେବେ ମୋର ପରମ ଭାଗ୍ୟ । ଅଭିଶପ୍ତ ଜୀବନର କୌଣସି ଏକ ଅଂଶ ପରର ଉପକାରରେ ବ୍ୟୟିତ ହେଲା ବୋଲି ମନେକରି ମଧ୍ୟ ସୁଖ ପାଇବି । ତତ୍ପରେ ମୁନିଙ୍କ ନିକଟରେ ଉପସ୍ଥିତ ହୋଇ କହିଲେ, ମୁନିବର, ଯାଉନ୍ତୁ ଏବେ ନିର୍ଜନକୁ, ଯିବା ପୂର୍ବରୁ ସେ ରାଜାଙ୍କୁ ବଞ୍ଚାଇ ଦିଅନ୍ତୁ, ନୋହିଲେ କଳଙ୍କ ଦ୍ୱିଗୁଣ ବଢ଼ିବ । କପୋତ ମୁନି ଚନ୍ଦ୍ରାଙ୍ଗଦାଙ୍କୁ ପାଇ ପୁନରାୟ କମଣ୍ଡଳୁ ଜଳରେ ରାଜାଙ୍କୁ ସଚେତନ କରାଇ ତାଙ୍କ ହାତଧରି ଚାଲିଗଲେ ।



## ଅଭିମନ୍ୟୁ ।

ମଧ୍ୟମ ପାଣ୍ଡବ ଅର୍ଜୁନଙ୍କ ଔରସରେ ସୁଭଦ୍ରାଙ୍କ ଗର୍ଭରେ ଅଭିମନ୍ୟୁଙ୍କର ଜନ୍ମ । ସେ ବିବିଧ ଶାସ୍ତ୍ର ଓ ଯୁଦ୍ଧ ବିଦ୍ୟାରେ ନିପୁଣ ଥିଲେ । ଯେତେବେଳେ କୁରୁକ୍ଷେତ୍ରରେ କୁରୁ ପାଣ୍ଡବଙ୍କର ଅସମ ସମର ଲାଗିଥିଲା ସେତେବେଳେ ଏ ଅସୀମ ବୀରତ୍ୱ ଦେଖାଇଥିଲେ । କୁରୁକୁଳ ପିତାମହ ଭୀଷ୍ମ ଦଶଦିନ ଘୋର ସମର କରି ଶରଶଯ୍ୟାରେ ଶୟନ କଲା ପରେ ମହାବୀର ଗୁରୁ ଦ୍ରୋଣ ସେନାପତି ହେଲେ । ସେ ଏକ ଦୁର୍ଭେଦ୍ୟ ଚକ୍ରବ୍ୟୂହ ପ୍ରସ୍ତୁତ କରି ଦଶସହସ୍ର ରଥୀଙ୍କୁ ସେ ବ୍ୟୂହରକ୍ଷା ନିମିତ୍ତ ଅଦେଶ ପ୍ରଦାନ ପୂର୍ବକ ପାଣ୍ଡବମାନଙ୍କୁ ସମରାହ୍ୱାନ-କଲେ । ସେ ଦିନ ଅର୍ଜୁନ ଶ୍ରୀକୃଷ୍ଣଙ୍କ ସହିତ ସଂଶପ୍ତକ ଯୁଦ୍ଧରେ ବ୍ୟାପୃତ ଥିବାରୁ ଏ ଘଟନାର କିଛି ହିଁ ସର୍ଗ ଅବଗତ ହୋଇ ନ ଥିଲେ । ଚକ୍ରବ୍ୟୂହଭେଦ କୃଷ୍ଣାର୍ଜୁନ ବ୍ୟତୀତ ଅପର କାହାରି ସାଧ୍ୟାୟତ୍ତ ନ ଥିଲା । କେବଳ ଅଭିମନ୍ୟୁ ମାତୃ-ଗର୍ଭରେ ଥିବା ସମୟରେ ଯେତେବେଳେ ଅର୍ଜୁନ ସୁଭଦ୍ରାଙ୍କୁ ଏହି ବ୍ୟୂହଭେଦ ବିଷୟ କହୁଥିଲେ, ଶୁଣିଥିଲେ । ମାତ୍ର ଦୈବ-ଦୁର୍ଯୋଗରୁ ସୁଭଦ୍ରା ପ୍ରବେଶ ନିୟମ ଶ୍ରବଣ କରି ନିଦ୍ରିତ ହେବାରୁ ନିର୍ଗମ ବିଷୟ ଅବଗତ ହୋଇ ପାରିଲେ ନାହିଁ । ଦ୍ରୋଣାଚାର୍ଯ୍ୟଙ୍କ ସମରାହ୍ୱାନରେ ଯୁଧିଷ୍ଠିର ହତାଶ ହେବାରୁ ଅଭିମନ୍ୟୁ ଚକ୍ରବ୍ୟୂହ ଭେଦ ନିମିତ୍ତ ପ୍ରାର୍ଥୀ ହେଲେ । ଯୁଧିଷ୍ଠିର ଭୀମଙ୍କୁ ପୃଷ୍ଠରକ୍ଷକ କରି ଅଭିମନ୍ୟୁଙ୍କୁ ଚକ୍ରବ୍ୟୂହ ଭେଦ ନିମନ୍ତେ ଅଦେଶ ଦେଲେ । ସେତେବେଳକୁ ତାଙ୍କର ଷୋଡ଼ଶବର୍ଷ ମାତ୍ର । ସେ ଦ୍ୱାରରକ୍ଷକମାନଙ୍କୁ ପରାଜୟ କରି ଚକ୍ରବ୍ୟୂହ ଭେଦ ପୂର୍ବକ ଭିତରେ ପ୍ରବେଶ କଲେ ଓ ମଦମତ୍ତ ମାତଙ୍ଗ ସଦୃଶ କୌରବ ସୈନ୍ୟଙ୍କୁ ଦଳିତ କଲେ । ଭୀମ ବହୁ ଚେଷ୍ଟା କରି ସୁଦ୍ଧା ଭିତରେ ପ୍ରବେଶ କରି ପାରିଲେନାହିଁ, ସିନ୍ଧୁରାଜ ଜୟଦ୍ରଥ ସେଥିର ପ୍ରତିବନ୍ଧକ ହେଲେ । ଜୟଦ୍ରଥ ପୂର୍ବରୁ ମହାଦେବଙ୍କୁ ଅରାଧନା କରି ବରଲାଭ କରିଥିଲେ ଯେ ଅର୍ଜୁନ ବ୍ୟତୀତ ଅନ୍ୟ ଚାରି ପାଣ୍ଡବଙ୍କୁ ସେ ଜୟ କରିପାରିବେ । ଏଣୁ ସେ ଭୀମଙ୍କୁ ଦ୍ୱାର ରୋଧ କଲେ । ଅଭିମନ୍ୟୁ ବ୍ୟୂହ-ମଧ୍ୟରେ ମୃଗଦଳ ମଧ୍ୟରେ ପଶୁରାଜ ପରି ବିବିଧ ଅସ୍ତ୍ର ଶସ୍ତ୍ରରେ ଶତ୍ରୁ ସୈନ୍ୟଙ୍କୁ କ୍ଷୟ କରିବାକୁ ଲାଗିଲେ । ଏହାଙ୍କ ଯୁଦ୍ଧରେ ଅସଂଖ୍ୟ ରଥୀ ନିହତ ହେଲେ, ପୁଣି ସେ କର୍ଣ୍ଣଙ୍କ ସମକ୍ଷରେ ତାଙ୍କ ଅନୁଜଙ୍କୁ ମଧ୍ୟ ସଂହାର କଲେ । ତଦନନ୍ତର ମହାବୀର-ଅଶ୍ୱକେଶ୍ୱର ଓ ଶଲ୍ୟାନୁଜ ନିହତ ହେବାରୁ ଜୟଦ୍ରଥ ତାହାଙ୍କର ସମ୍ମୁଖୀନ ହେଲେ, ମାତ୍ର ଅଭିମନ୍ୟୁଙ୍କର ଅସୀମ

ଶୌର୍ଯ୍ୟବୀର୍ଯ୍ୟ ଓ ରଣନୈପୁଣ୍ୟ ଯୁଦ୍ଧରେ ଅସ୍ଥିର ହେଲେ । ଅଭିମନ୍ୟୁ ଦ୍ରୋଣ, କର୍ଣ୍ଣ, କୃପ, ଅଶ୍ଵତ୍ଥାମା, ଦୁର୍ଯ୍ୟୋଧନ, ଦୁଃଶାସନ ପ୍ରଭୃତି କୌରବମାନଙ୍କୁ ମଧ୍ୟ ଯୁଦ୍ଧରେ ପରାଜୟ କରି ନିଜ ପିତୃଦତ୍ତ ମାୟାମନ୍ତ୍ର ଗନ୍ଧର୍ବ ଅସ୍ତ୍ରଦ୍ଵାରା ମଧ୍ୟ ବିସ୍ତାରକଲେ । ଏହା ଦେଖି କୌରବମାନେ ଭୀତ ହୋଇ ଇତସ୍ତତଃ ପଳାୟନ କଲେ । ସେହି ଅବକାଶରେ ଅଭିମନ୍ୟୁ କୌରବ ପକ୍ଷରୁ ଦଶସହସ୍ର ରଥୀଙ୍କୁ ପର୍ଯ୍ୟୁଦସ୍ତ କରିଦେଲେ । ଏହା ଦେଖି ଦୁର୍ଯ୍ୟୋଧନ ଦ୍ରୋଣଗୁରୁଙ୍କୁ କହିଲେ,—କଅଣ ଦେଖୁଛନ୍ତି ? ଏ ଘୋର ଦୁର୍ବାର, ଏହାକୁ ପରାସ୍ତ କରିବା ସୁକଠିନ, ଅତଏବ ସମସ୍ତେ ମିଳି ଏହାକୁ ଶୀଘ୍ର ବଧ କରନ୍ତୁ । ଦୁର୍ଯ୍ୟୋଧନଙ୍କ ବାକ୍ୟରେ ଦ୍ରୋଣ, କର୍ଣ୍ଣ, କୃପ, ଅଶ୍ଵତ୍ଥାମା, କୃତବର୍ମା ଓ ହାର୍ଦ୍ଦିକ୍ୟ ଏହି ଷଡ଼ରଥୀ ମିଳିତ ହୋଇ ବାଳକ ଅଭିମନ୍ୟୁଙ୍କୁ ପରିବେଷ୍ଟନ ପୂର୍ବକ ଅଜସ୍ର ବାଣ ବର୍ଷଣ କଲେ । ଅର୍ଜ୍ଜୁନପୁତ୍ର ନାଟକବଚରେ ସେମାନ ସହ୍ୟ କଲେ ମାତ୍ର ତାଙ୍କର ସୁକୋମଳ ଦେହରୁ ରକ୍ତଧାର ବହିବାକୁ ଲାଗିଲା । ତହିଁରେ ଦୁର୍ଯ୍ୟୋଧନ ଶକୁନି ପରାମର୍ଶରେ ଅଭିମନ୍ୟୁଙ୍କୁ ନିରସ୍ତ୍ର କରି ସଂହାର କରିବାପାଇଁ ଆଦେଶ ଦେଲେ । ଦ୍ରୋଣାଚାର୍ଯ୍ୟ ଏପରି ଅନ୍ୟାୟ ପ୍ରସ୍ତାବରେ ସମ୍ମତ ହେଲେ ନାହିଁ । ଏଣେ ବେଳକୁ-ବେଳ ବାଳକର ପ୍ରାପ୍ତ ଉତ୍କ୍ରାନ୍ତି ଉଜ୍ଜ୍ୱଳତର ହେଲା । କୌରବ ସୈନ୍ୟବୃନ୍ଦ ତାର ବାଣାଘାତରେ ଅସ୍ଥିର ହୋଇ ଚତୁର୍ଦ୍ଦିଗକୁ ପଳାୟନ କଲେ । ଦୁର୍ଯ୍ୟୋଧନ ଦ୍ରୋଣଗୁରୁଙ୍କୁ ଅତ୍ୟନ୍ତ ଅନୁରୋଧ କରିବାରୁ ସେ ଅସଂଖ୍ୟ ସୈନ୍ୟ ନିହତ ହେବାର ଦେଖି ଓ ରାଜାଜ୍ଞା ଖଣ୍ଡନ ଅନୁଚିତ ବୋଲି ଭାବି ଗର୍ହିତ ଯୁଦ୍ଧରେ ସ୍ୱୀକୃତ ହେଲେ । ଜୟଦ୍ରଥ ବ୍ୟୂହଦ୍ୱାର ଅବରୋଧ କଲେ ଓ ଷଡ଼୍ରଥୀ ଏକତ୍ର ମିଳିତ ହୋଇ ଚତୁର୍ଦ୍ଦିଗରୁ ବାଳକଙ୍କୁ ବାଣ ନିକ୍ଷେପ କଲେ । ଅଭିମନ୍ୟୁ ସେମାନ ଛେଦନ କରି ସିଂହନାଦ କରିବାରୁ ସେମାନେ ବାରମ୍ବାର ବାଣ ବୃଷ୍ଟିକଲେ । ବାଳକ ଏକାକୀ ନିରୁପାୟ ହୋଇ ଗଦାହସ୍ତରେ ଧାବିତ ହେଲେ । କୌରବ ବୀରଗଣ ତାହାଙ୍କୁ ନିରସ୍ତ କଲେ । ଏହି ସମୟରେ ଦୁଃଶାସନ ସେହି ଶିଶୁ ମସ୍ତକରେ ଦାରୁଣ ଗଦାଘାତ କରିବାରୁ ସେ ରଣାଙ୍ଗନରେ ଚିରନିଦ୍ରାରେ ଅଭିଭୂତ ହେଲେ । କୌରବମାନେ ଆନନ୍ଦ ଜୟଧ୍ୱନିରେ ଓ ପାଣ୍ଡବମାନଙ୍କର ଆର୍ତ୍ତନାଦରେ କୁରୁକ୍ଷେତ୍ର ମୁଖରିତ ହେଲା । ପୁତ୍ରଶୋକାତୁରା ସୁଭଦ୍ରା ଓ ପତିବିୟୋଗବିଧୁରା ଉତ୍ତରାଙ୍କ କରୁଣ ବିଳାପ ଶ୍ରବଣକରି କୃଷ୍ଣାର୍ଜ୍ଜୁନ ଅତ୍ୟନ୍ତ ବ୍ୟଥିତ ହେଲେ । ଅର୍ଜ୍ଜୁନ ଭୀଷଣ ପ୍ରତିଜ୍ଞା କଲେ ଓ ଅଭିମନ୍ୟୁ ବଧର ପ୍ରଧାନ ହେତୁ ସିନ୍ଧୁରାଜ ଜୟଦ୍ରଥଙ୍କୁ ପରଦିନ ସଂହାର କଲେ । କୁରୁକ୍ଷେତ୍ର ଯୁଦ୍ଧାବସାନରେ ଦ୍ରୋଣପୁତ୍ର ଅଶ୍ଵତ୍ଥାମା ଉତ୍ତରାଙ୍କ ଗର୍ଭ ନଷ୍ଟ କରିବାପାଇଁ ଐଷିକ ବାଣାଘାତ କଲେ । ମାତ୍ର ଶ୍ରୀକୃଷ୍ଣ ସୁଦର୍ଶନଚକ୍ର ଆଚ୍ଛାଦନ କରି ତାହା ରକ୍ଷାକଲେ । ମହାରାଜ ଯୁଧିଷ୍ଠିର ରାଜ୍ୟ ପାଳନ କରି ଯେତେବେଳେ ଭ୍ରାତା ଓ ପତ୍ନୀସହ ସ୍ୱର୍ଗଯାତ୍ରା କଲେ ସେତେବେଳେ ଉତ୍ତରାନନ୍ଦନ ପରୀକ୍ଷିତଙ୍କୁ ରାଜସିଂହାସନରେ ବସାଇଗଲେ ।



# ପ୍ରହ୍ଲାଦ ଚରିତ୍ର ।

ଭଗବାନଙ୍କ ଦ୍ଵାରୀ ଜୟ ବିଜୟ ଅଭିଶାପଗ୍ରସ୍ତ ହୋଇ ଦୈତ୍ୟକୁଳରେ ଜାତ ହେଲେ । ସେମାନଙ୍କ ନାମ ହିରଣ୍ୟାକ୍ଷ ଓ ହିରଣ୍ୟକଶିପୁ । ଭଗବାନ ବରାହ ଅବତାରରେ ହିରଣ୍ୟାକ୍ଷକୁ ସଂହାର କଲେ । ନାରଦଙ୍କ ଠାରୁ ଏ ସମ୍ବାଦ ପାଇ ହିରଣ୍ୟକଶିପୁ ଶୋକ ଓ ଦୁଃଖରେ ମଗ୍ନ ହୋଇ କଠୋର ତପସ୍ୟାରେ ବ୍ରହ୍ମାଙ୍କୁ ଆରାଧନା କଲା ଓ ସ୍ୱୀୟ ଅଭିଳାଷାନୁଯାୟୀ ବର ତାଙ୍କଠାରୁ ପ୍ରାପ୍ତ ହେଲା । ତଦନନ୍ତର ଦୈତ୍ୟରାଜ ଭ୍ରାତୃଶୋକରେ କ୍ରୋଧାନ୍ଧ ହୋଇ ଦେବଦ୍ଵିଜଙ୍କୁ ହିଂସା କଲା ଏବଂ ତାହାର ଆଦେଶରେ ତାହାର ଅନୁଚରମାନେ ପ୍ରଜାନାଶ କରିବାରେ ପ୍ରବୃତ୍ତ ହେଲେ । ଦୈତ୍ୟପତି ଦେବଗଣଙ୍କୁ ଯୁଦ୍ଧରେ ପରାଜୟ କରି ତ୍ରିଭୁବନ ଅଧିକାର କରିନେଲା । ଦେବଗଣ ଅମରଧାମ ତ୍ୟାଗ କରି ଅଲକ୍ଷିତଭାବରେ ପୃଥିବୀରେ ପର୍ଯ୍ୟଟନ କଲେ । ହିରଣ୍ୟକଶିପୁର ପତ୍ନୀ ନାମ କୟାଧୁ । ତାଙ୍କ ଉଦରୁ ଚାରିଗୋଟି ପୁତ୍ର ଜାତ ହେଲେ, ପ୍ରହ୍ଲାଦ ସର୍ବ କନିଷ୍ଠ । ଦୈତ୍ୟେଶ୍ଵର ପୁତ୍ରମାନଙ୍କୁ ଅଧ୍ୟୟନ କରାଇବା ନିମିତ୍ତ ଶୁକ୍ରାଚାର୍ଯ୍ୟଙ୍କର ପୁତ୍ର ଷଣ୍ଡାମାର୍କଙ୍କ ନିକଟକୁ ପ୍ରେରଣ କଲେ ।

ସେହି ମୂଢ଼ ସିନା କରେ ବନ୍ଧୁପିତା ପରିଜନ ଆଜ୍ଞା ଲଙ୍ଘନ ।

କିଛିଦିନପରେ ଦୈତ୍ୟେଶ୍ୱର ପୁତ୍ରମାନଙ୍କ ବିଦ୍ୟା ପରୀକ୍ଷା ନିମିତ୍ତ ଡକାଇ ଆଣିଲେ । ପ୍ରହ୍ଲାଦ ରାଜାରାଣୀଙ୍କର ଅତି ପ୍ରିୟ । ରାଜା ତାହାଙ୍କୁ କୋଳରେ ଧରି ପଚାରିଲେ ବାପ, କହ ତ ଏ ସଂସାରରେ ସର୍ବଶ୍ରେଷ୍ଠ କଅଣ ? ପ୍ରହ୍ଲାଦ କହିଲେ,—ପିତଃ, ପୃଥିବୀରେ ହରିପାଦପଦ୍ମ ସେବା କରିବା ଠାରୁ ଅଧିକ ଉତ୍କୃଷ୍ଟ ଆଉ କିଛି ନାହିଁ । ଏହା ଶୁଣି ହିରଣ୍ୟକଶିପୁ କ୍ରୋଧରେ କୋଳରୁ ପୁତ୍ରକୁ ତଳେ ପକାଇ ଦେଇ ଅନୁଚରମାନଙ୍କୁ ଆଦେଶ ଦେଲେ, ନିଅ, ଏ ଦୁଷ୍ଟ ଶିଶୁକୁ ବଧ କର, ଏ ମୋର ପରମ ଶତ୍ରୁ । ଦୈତ୍ୟମାନେ ପ୍ରହ୍ଲାଦକୁ ଶୂଳବିଦ୍ଧ କଲେ, କିନ୍ତୁ ପ୍ରହ୍ଲାଦର କିଛି କ୍ଷତି ହେଲା ନାହିଁ, କାରଣ ସେତେବେଳେ ସେ ଭଗବାନଙ୍କ ପାଦପଦ୍ମରେ ଆତ୍ମ-ସମର୍ପଣ କରିଥିଲା । ତଦନନ୍ତର ତାହାକୁ ବିଷଧର ସର୍ପ ମୁଖରେ ଦେଇଦେଲେ--ଗରଳଭକ୍ଷଣ କରାଇଲେ--ସେଥିରେ ମଧ୍ୟ ତାର ପ୍ରାଣ ବିୟୋଗ ଘଟିଲା ନାହିଁ । ଅନଳରେ ପକାଇଲେ, ସେଥିରେ ପୋଡ଼ିଗଲା ନାହିଁ,-ଗଳାରେ ପଥର ଲଦି ଦେଇ ସମୁଦ୍ରରେ ନିକ୍ଷେପ କଲେ--ଉଚ୍ଚ ପର୍ବତରୁ ଫୋପାଡ଼ି ଦେଲେ, ହସ୍ତୀ ପଦତଳେ ପକାଇଲେ-ସିଂହ ମୁହଁରେ ନିକ୍ଷେପ କଲେ, ଢିଙ୍କିରେ କୁଟି ଶିଳରେ ବାଟିଲେ--କାହିଁରେ କିଛି ହେଲା ନାହିଁ । ଏ ସମସ୍ତ ଦେଖି ହିରଣ୍ୟକଶିପୁ ଆଶ୍ଚର୍ଯ୍ୟ ହୋଇ ପୁନର୍ବାର ଅଧ୍ୟୟନ ନିମିତ୍ତ ପ୍ରହ୍ଲାଦକୁ ଗୁରୁଙ୍କ ନିକଟରେ ସମର୍ପଣ କଲେ । ସେ ଅନ୍ୟାନ୍ୟ ଛାତ୍ରମାନଙ୍କ ସଙ୍ଗରେ ଅଧ୍ୟୟନରେ ନିଯୁକ୍ତ ହେଲେ । ଗୁରୁଙ୍କ ଅନୁପସ୍ଥିତିରେ ପ୍ରହ୍ଲାଦ ସହାଧ୍ୟାୟୀମାନଙ୍କୁ ଭାଗବତ ଧର୍ମ ଉପଦେଶ ପ୍ରଦାନ କଲେ । ଉପଦେଶର ମର୍ମ :—

ମନୁଷ୍ୟ ଜନ୍ମ ଅତ୍ୟନ୍ତ ଦୁର୍ଲଭ ଅଟଇ ।
ସହଜରେ ଏ ଜନମ କେବେ ନ ମିଳଇ ॥
ଜଳବିମ୍ବ ପରି ତାହା ଅଟଇ ଚପଳ ।
ପୁଣି ନରଙ୍କର ଆୟୁ ଶତେକ ବରଷ ॥
ନିଶାରେ ବୃଥାରେ ତହିଁ ଅର୍ଦ୍ଧ ହୁଏ ଶେଷ ।
ବାଲ୍ୟ କୈଶୋର କ୍ରୀଡ଼ାରେ ଯାଏ ବର୍ଷ ବିଂଶ ॥
ଏହା ପରେ ନର ପୁଣି ଅଶକ୍ତ ହୁଅଇ ।
ବାର୍ଦ୍ଧକରେ କିଛି କରି ନ ପାରଇ ॥

ଅବଶିଷ୍ଟ ଦଶବର୍ଷ ଦୁଃଖ ପରିପୂର୍ଣ୍ଣ ।
କାମେ ପୁଣି ମୋହେ ସେହୁ ହୁଅଇ ଅଧୀନ ॥
ଏଣୁ ବିଷୟ ବାସନା ତେଜିଣ ବହନ ।
ନାରାୟଣ ପଦ୍ମପାଦେ ପଶ ହେ ଶରଣ ॥
ହରି ପାଦପଦ୍ମ ମଧୁ କର ତୋଷେ ପାନ ।
ମୁଖେ ଦିନ ରାତି କର ହରି ଗୁଣ ଗାନ ॥
ଦାନ-ଯଜ୍ଞ-ଶୌଚ-ବ୍ରତେ ତୋଷ ସେ ନୁହନ୍ତି ।
ପ୍ରୀତ ହୋନ୍ତି ଦେଖି ମାତ୍ର ନିର୍ମଳ ଭକତି ॥

ଦୈତ୍ୟ ବାଳକମାନେ ଏହି ଉପଦେଶରେ ହରିଭକ୍ତ ହେଲେ । ଏହା ଶୁଣି ହିରଣ୍ୟକଶିପୁ କ୍ରୋଧାନ୍ଧ ହୋଇ ପ୍ରହ୍ଲାଦକୁ ଡକାଇ ଆଣି ପଚାରିଲା,—ରେ ଦୁଷ୍ଟ ବାଳକ, ତୁ କାହିଁକି ବାରମ୍ବାର ମୋ ଶତ୍ରୁର ନାମ ଉଚ୍ଚାରଣ କରି ମୋ ଆଜ୍ଞା ଲଙ୍ଘନ କରୁଛୁ ? ପ୍ରହ୍ଲାଦ ଯୁକ୍ତକରରେ ନିବେଦନ କଲା, ପିତଃ, ଏ ଦାସ ଆପଣଙ୍କୁ ଈଶ୍ୱର ସଦୃଶ ଭକ୍ତି ଓ ମାନ୍ୟ କରେ ଓ ଆପଣଙ୍କ ସମସ୍ତ ଆଜ୍ଞା ପାଳନ କରେ କିନ୍ତୁ କେବଳ ସେହି ସର୍ବଭୂତର ଈଶ୍ୱର ହରିଙ୍କୁ ଭୁଲି ପାରେ ନାହିଁ । ଦୈତ୍ୟେଶ୍ୱର କ୍ରୋଧରେ ପଚାରିଲା,—ତୋର ହରି କେଉଁଠି ଥାଏ ? ପ୍ରହ୍ଲାଦ କହିଲେ, ସେ ସର୍ବତ୍ର ବିରାଜମାନ । ହିରଣ୍ୟକଶିପୁ କହିଲା, ତେବେ କଅଣ ସେ ଏହି ସ୍ତମ୍ଭରେ ଅଛି ? ପ୍ରହ୍ଲାଦ କହିଲେ, ହଁ ଅଛନ୍ତି । ଦୈତ୍ୟପତି କ୍ରୋଧରେ କାହିଁ ? କାହିଁ ? କହି ସେ ସ୍ତମ୍ଭକୁ ମୁଷ୍ଟ୍ୟାଘାତ କଲା ମାତ୍ରକେ ଏକ ଭୟଙ୍କର ଶବ୍ଦ ଶୁଣାଗଲା ଓ ଭଗବାନ୍ ନରସିଂହ ରୂପରେ ସେହି ସ୍ତମ୍ଭରୁ ବହିର୍ଗତ ହେଲେ । ତତ୍ପରେ ସେ ଦୈତ୍ୟକୁଳାଧମକୁ ନିଜ ଜାନୁ ଉପରେ ସ୍ଥାପନ କରି ସୁତୀକ୍ଷ୍ଣ ନଖାଘାତରେ ତାର ବକ୍ଷ ବିଦାରଣ ପୂର୍ବକ ସଂହାର କଲେ । ପ୍ରଭୁ ସିଂହାସନରେ ଉପବେଶନ କରିବାରୁ ସ୍ୱର୍ଗରୁ ଦୁନ୍ଦୁଭି ଧ୍ୱନି ହେଲା, ଅପ୍ସରାମାନେ ନୃତ୍ୟ କଲେ ଏବଂ ବ୍ରହ୍ମା, ଶିବ ଓ ଇନ୍ଦ୍ରାଦି ଦେବଗଣ ଆସି ନରସିଂହ ସ୍ତବ ପାଠ କଲେ । କିନ୍ତୁ ସେ ରୋଷୋଦ୍ଦୀପ୍ତ ଉଗ୍ରମୂର୍ତ୍ତି ଦେଖି କେହି ତାଙ୍କ ନିକଟକୁ ଯାଇ ପାରିଲେ ନାହିଁ । କେବଳ ପ୍ରହ୍ଲାଦ କରଯୋଡ଼ି ଭଗବାନଙ୍କୁ ସ୍ତବ କଲେ ।

ହେ ପ୍ରଭୁ ଭକ୍ତବତ୍ସଳ, କରୁଣା ସାଗର ।
ଅନାଦି, ଅନନ୍ତ ତୁମ୍ଭେ ଶରଣ ସୋଦର ॥

ସ୍ୱତଃ ପ୍ରାପ୍ତ ସୁଖ ସଦା ଜଗତରେ ହୋଇଥାଏ ଦୂରାଦର ।

ଅନାଥର ନାଥ ତୁମ୍ଭେ ଅଗତିର ଗତି ।
ସୃଷ୍ଟି, ସ୍ଥିତି, ଲୟ ତବ ଆଜ୍ଞା ଅନୁବର୍ତ୍ତୀ ॥
ତୁମ୍ଭେ ନିତ୍ୟ ନିରଞ୍ଜନ ହେ କମଳମୁଖ ।
କରୁଣା କଟାକ୍ଷପାତେ ହର ଧରାଦୁଃଖ ॥

ଶ୍ରୀହରି ଭକ୍ତର ସ୍ତବରେ ପରମ ସନ୍ତୁଷ୍ଟ ହେଲେ ।



## ଶର୍ମିଷ୍ଠା ।

ପୂର୍ବେ ବୃଷପର୍ବା ନାମରେ ଏକ ଦୈତ୍ୟ ରାଜା ଥିଲେ । ଶର୍ମିଷ୍ଠା ତାହାଙ୍କର କନ୍ୟା । ସେ ରୂପ ଗୁଣରେ ଅତୁଳନୀୟା । ଦୈତ୍ୟରାଜ ମନ୍ତ୍ରୀ ଶୁକ୍ରାଚାର୍ଯ୍ୟଙ୍କର କନ୍ୟା ଦେବଯାନୀ ଏହାଙ୍କର ସଖୀ । ଶୁକ୍ରାଚାର୍ଯ୍ୟ କନ୍ୟାକୁ ଅତ୍ୟନ୍ତ ସ୍ନେହ କରନ୍ତି, ଏଣୁ, ଦେବଯାନୀ ପିତୃ ଗୌରବରେ ଗୌରବିଣୀ ହୋଇ କାହାକୁ ଖାତିର କରନ୍ତି ନାହିଁ ।

ଦିନେ ରାଜକନ୍ୟା ସଖୀମାନଙ୍କ ସହ ଜଳକ୍ରୀଡ଼ା କରୁଥିଲେ । ସେମାନଙ୍କ ବସନ ଭିନ୍ନ ଭିନ୍ନ ହୋଇ କୂଳରେ ଥିଲା । ଦୈବାତ୍ ପ୍ରବଳପବନରେ ସେ ସବୁ ଏକତ୍ର ହେଲା । ଦେବଯାନୀ ପ୍ରଥମେ ଜଳରୁ ଉଠିଆସି ଭ୍ରମକ୍ରମେ ଶର୍ମିଷ୍ଠାଙ୍କ ବସନ ପରିଧାନ କଲେ । ଶର୍ମିଷ୍ଠା ଏହା ଦେଖି କ୍ରୋଧରେ ତାହାଙ୍କୁ ତିରସ୍କାର କରିବାରୁ ଉଭୟଙ୍କ ମଧ୍ୟରେ ବିବାଦ ଲାଗିଲା । ସଖୀମାନଙ୍କ ସହିତ ଟଣା ଟଣି କରୁଁ କରୁଁ ଦେବଯାନୀ ଏକ କୂପରେ ପଡ଼ିଗଲେ । ଶର୍ମିଷ୍ଠା ଗୃହକୁ ଆସି ଏ ବିଷୟ କାହାକୁ କହିଲେ ନାହିଁ ।

ହସ୍ତିନାଧିପତି ଯଯାତି ମୃଗୟା ନିମିତ୍ତ ବନକୁ ଆସି ଦୈବାତ୍ ସେଠାରେ ଉପସ୍ଥିତ ହେଲେ ଏବଂ ଦେବଯାନୀଙ୍କୁ କୂପରୁ ଉଦ୍ଧାର କରି ସ୍ୱରାଜ୍ୟାଭିମୁଖରେ ପ୍ରସ୍ଥାନ କଲେ । ଦେବଯାନୀ ପିତାଙ୍କୁ ଡକାଇ ସମସ୍ତ ବିଷୟ କହିଲେ । ଶୁକ୍ରାଚାର୍ଯ୍ୟ ତାଙ୍କୁ ବହୁତ ବୁଝାଇଲେ ମଧ୍ୟ ତାଙ୍କ ମନରୁ କ୍ରୋଧ ଦୂର ହେଲା ନାହିଁ । ଏଣୁ ଶୁକ୍ରାଚାର୍ଯ୍ୟ ବୃଷପର୍ବାଙ୍କୁ ଏ ବିବାଦ ବିଷୟ କହି ସେ ରାଜ୍ୟ ପରିତ୍ୟାଗ ନିମିତ୍ତ ମେଲାଣି ମାଗିଲେ । ଦୈତ୍ୟମନ୍ତ୍ରୀଙ୍କର ରାଜାଙ୍କ ଉପରେ ଅସୀମ ପ୍ରଭାବ । ସେ ମୃତସଞ୍ଜୀବନୀ ମନ୍ତ୍ର ଜାଣନ୍ତି । ଦେବାସୁରଙ୍କ ଯୁଦ୍ଧ ସମୟରେ ସେ ମୃତ ଦୈତ୍ୟମାନଙ୍କୁ ଜୀବଦାନ ଦିଅନ୍ତି । ଏଣୁ ବୃଷପର୍ବା ତାହାଙ୍କୁ ମେଲାଣି ଦେଇ ନ ପାରି ପଚାରିଲେ,—କଅଣ କଲେ ଆପଣ ରହିବେ ? ଶୁକ୍ରାଚାର୍ଯ୍ୟ କହିଲେ, ଦେବଯାନୀ ଯେବେ ରହେ, ତେବେ ମୁଁ ରହିବି । ବୃଷପର୍ବା ଦେବଯାନୀଙ୍କୁ ବିନୟରେ ରହିବାପାଇଁ ଅନୁରୋଧ କରିବାରୁ ସେ କହିଲେ,- ଶର୍ମିଷ୍ଠା ଯେବେ ମୋର ପରିଚାରିକା ହେବ, ତେବେ ମୁଁ ରହିବି । ଏହା ଶୁଣି ବୃଷପର୍ବାଙ୍କ ଶିରରେ ବଜ୍ରପାତ ହେଲା । ଶର୍ମିଷ୍ଠା ଏହା ଶୁଣିପାରି ସ୍ୱତଃ ପ୍ରବୃତ୍ତ ହୋଇ ଦେବଯାନୀଙ୍କର ପରିଚାରିକା ହେବାପାଇଁ ଆସିଲେ । ଦେବଯାନୀ ତାଙ୍କୁ କହିଲେ,-ତମେ ତ ରଜାର ଝିଅ, ମୋର ଦାସୀ ହେବ କିପରି ? ଶର୍ମିଷ୍ଠା ଉତ୍ତର ଦେଲେ,—ଦେଶ ମଙ୍ଗଳ ନିମିତ୍ତ-ଜାତିର କଲ୍ୟାଣ ନିମିତ୍ତ-ପିତାଙ୍କ ସମ୍ମାନ ରକ୍ଷା ନିମିତ୍ତ ଦାସୀତ୍ୱ ସ୍ୱୀକାର କଲି, ତଥାପି ସମସ୍ତେ ମୋତେ ରାଜକନ୍ୟା ବୋଲି କହିବେ ।

ଏହାପରେ ମହାରାଜ ଯଯାତି ଦେବଯାନୀଙ୍କୁ ବିବାହ କଲେ । ଶର୍ମିଷ୍ଠା ଦେବଯାନୀଙ୍କର ପରିଚାରିକା ସ୍ୱରୂପ ଗମନ କଲେ । ଯଯାତି ଶର୍ମିଷ୍ଠାଙ୍କର ପରିଚୟ ପାଇ ଦେବଯାନୀଙ୍କ ପରାମର୍ଶାନୁସାରେ ତାଙ୍କୁ ଭିନ୍ନ ମନ୍ଦିରରେ ରଖାଇଲେ । ସେଠାରେ ଶର୍ମିଷ୍ଠା ଦାସୀତ୍ୱରୁ ମୁକ୍ତିଲାଭ କରି ରାଜସୁଖ-ଭୋଗରେ ରହିଲେ । କିଛିଦିନପରେ ସେ ଯଯାତିଙ୍କ ପ୍ରଣୟ-ପାଶରେ ଆବଦ୍ଧ ହେଲେ । ଯଥାସମୟରେ ଦେବଯାନୀଙ୍କର ଦୁଇପୁତ୍ର ଓ ଶର୍ମିଷ୍ଠାଙ୍କର ତିନିପୁତ୍ର ଜାତ ହେଲେ । ଦେବଯାନୀ ଏହା ଜାଣିପାରି ପିତାଙ୍କୁ ସମସ୍ତ ବିଷୟ ଜ୍ଞାପନ କଲେ । ଶୁକ୍ରାଚାର୍ଯ୍ୟ ଅଭିଶାପରେ ଅକାଳ ଜରା ଯଯାତିଙ୍କୁ ଆକ୍ରମଣ କଲା । ଯଯାତି ଶୁକ୍ରାଚାର୍ଯ୍ୟଙ୍କ ଆଦେଶରେ ଶର୍ମିଷ୍ଠାଙ୍କ କନିଷ୍ଠପୁତ୍ର ପୁରୁଙ୍କୁ ସେ ଜରା ପ୍ରଦାନ କରି କିଛିଦିନ ସୁଖଭୋଗ କଲେ । ପରେ ଆପଣା ଜରା ଗ୍ରହଣକରି ପୁରୁଙ୍କୁ ରାଜସିଂହାସନରେ ବସାଇ ବନକୁ ଯାଇ ତପସ୍ୟାରତ ହେଲେ ଏଥିପାଇଁ ଦେବଯାନୀଙ୍କ ମନରେ ଗଭୀର ଦୁଃଖ ଜାତ ହୋଇଥିଲା ।



## ରୁକ୍ମିଣୀ ।

ବିଦର୍ଭରାଜ ଭୀଷ୍ମକଙ୍କର ଦୁହିତା ରୁକ୍ମିଣୀ ଯେପରି ରୂପବତୀ ସେପରି ଗୁଣବତୀ ଥିଲେ । ଭୀଷ୍ମକ ତାହାଙ୍କୁ

ଦ୍ୱାରକାଧିପତି ଶ୍ରୀକୃଷ୍ଣଙ୍କ ହସ୍ତରେ ସମର୍ପଣ କରିବେ ବୋଲି ମନସ୍ଥ କରିଥିଲେ । ଇତିପୂର୍ବରୁ ରୁକ୍ମିଣୀ ଶ୍ରୀକୃଷ୍ଣଙ୍କର ରୂପ ଗୁଣ ବିଷୟ ଜ୍ଞାତ ହୋଇ ତାହାଙ୍କୁ ମନମଧ୍ୟରେ ପତି ପଦେ ବରଣ କରିଥିଲେ । ଭୀଷ୍ମଙ୍କ ପୁତ୍ର ରୁକ୍ମ ବଡ଼ ଦୁଷ୍ଟ । ସେ ମଗଧରାଜ ଜରାସନ୍ଧଙ୍କ ଆଦେଶରେ ଚେଦୀଶ୍ୱର ଶିଶୁପାଳ ସହିତ ସ୍ୱକୀୟ ଭଗ୍ନୀଙ୍କୁ ବିବାହ ଦେବାପାଇଁ ସ୍ଥିରକଲେ । ରୁକ୍ମିଣୀ ଏ ସମ୍ବାଦରେ ନିତାନ୍ତ ଦୁଃଖିତା ହୋଇ ପତ୍ର ଲେଖି ଶ୍ରୀକୃଷ୍ଣଙ୍କୁ ମନୋବେଦନା ଜଣାଇଲେ । ଏଣେ ଶିଶୁପାଳ ବରବେଶ ଧାରଣ କରି ବିଦର୍ଭରେ ଉପସ୍ଥିତ ହେଲା । ରୁକ୍ମିଣୀ ଦେବୀ ପୂଜା ସାରି ପ୍ରତ୍ୟାଗମନ କରିବା ସମୟରେ ପୂର୍ବ ସଙ୍କେତ ଅନୁସାରେ ହସ୍ତ ଉତ୍ତୋଳନ କଲେ । ତେତେବେଳେ ଶ୍ରୀକୃଷ୍ଣ ବଳରାମଙ୍କ ସହିତ ଗରୁଡ଼ପୃଷ୍ଠରେ ଆକାଶମାର୍ଗରେ ଥିଲେ । ଓ ରୁକ୍ମିଣୀଙ୍କ ହସ୍ତ ଧରି ତାଙ୍କୁ ଉଠାଇନେଲେ । ଏ ସମ୍ବାଦରେ ଜରାସନ୍ଧ ପ୍ରଭୃତି କୋପାନ୍ୱିତ ହୋଇ ତାଙ୍କ ସହ ଘୋର ଯୁଦ୍ଧକଲେ । ଶ୍ରୀକୃଷ୍ଣ ବିପକ୍ଷମାନଙ୍କୁ ପରାସ୍ତ କରି ଦ୍ୱାରକାକୁ ଗଲେ ଓ ରୁକ୍ମିଣୀଙ୍କୁ ଯଥାବିଧି ବିବାହ କଲେ । ରୁକ୍ମିଣୀଙ୍କ ଗର୍ଭରେ ପ୍ରଦ୍ୟୁମ୍ନାଦି ଦଶପୁତ୍ର ଓ ଚାରୁମତୀ ନାମୀ ଏକ କନ୍ୟା ଜାତ ହୋଇଥିଲେ । ଯଦୁବଂଶ ଧ୍ୱଂସ ପରେ ଅର୍ଜୁନ ରୁକ୍ମିଣୀଙ୍କୁ ଇନ୍ଦ୍ରପ୍ରସ୍ଥକୁ ନେଇଗଲେ । ପରିଶେଷରେ ରୁକ୍ମିଣୀ ଶ୍ରୀକୃଷ୍ଣ ଉଦ୍ଦେଶ୍ୟରେ ପ୍ରଜ୍ୱଳିତ ହୁତାଶନରେ ପ୍ରବେଶ କରି ପ୍ରାଣତ୍ୟାଗ କରିଥିଲେ ।



## ନଳ ଦମୟନ୍ତୀ ।

ପୂର୍ବକାଳରେ ନିଷଧ ନଗରରେ ନଳ ନାମେ ଏକ ମହାବଳ ପରାକ୍ରାନ୍ତ ନରପତି ଥିଲେ । ତାହାଙ୍କର ଅତୁଳନୀୟ ରୂପ ପୃଥିବୀରେ ବିଖ୍ୟାତ ଥିଲା । ସେ ବିବିଧ ବିଦ୍ୟାରେ ପାରଦର୍ଶିତା ଲାଭ କରିଥିଲେ । ପ୍ରଜାରଞ୍ଜନ ତାଙ୍କର ପ୍ରଧାନ ବ୍ରତ ଥିଲା । ଦିନେ ସେ ପ୍ରମୋଦ ଉଦ୍ୟାନରେ ଭ୍ରମଣ କରୁଁ ଏକ ସୁବର୍ଣ୍ଣପକ୍ଷ ହଂସକୁ ଅବଲୋକନ କଲେ । ସେ ବ୍ରହ୍ମାଙ୍କର ବାହନ, ପୃଥିବୀ ଭ୍ରମଣ ଉଦ୍ଦେଶ୍ୟରେ ଆସିଥିଲେ । ତାହାଠାରୁ ବିଦର୍ଭ ରାଜ ଦୁହିତା ଦମୟନ୍ତୀଙ୍କ ରୂପଲାବଣ୍ୟ ଓ ସୁଗୁଣାବଳୀ ଶ୍ରବଣ କରି ତାହାଙ୍କ ପ୍ରତି ଅସକ୍ତଚିତ୍ତ ହେଲେ । ପୁଣି ସେହି ହଂସ ଦମୟନ୍ତୀଙ୍କୁ ମହାରାଜ ନଳଙ୍କର ଅସୀମ ରୂପ ଗୁଣ ଶ୍ରବଣ କରାଇ ତାଙ୍କ ହୃଦୟରେ ଅନୁରାଗ ସଞ୍ଚାର କରାଇଲେ ।

କିଛିଦିନପରେ ଲକ୍ଷ୍ମୀରୂପା ଦମୟନ୍ତୀଙ୍କର ସ୍ୱୟମ୍ବର ହେଲା । ସେଠାକୁ ନାନା ଦେଶରୁ ଅସଂଖ୍ୟ ନରପତିଗଣ ନିମନ୍ତ୍ରିତ ହୋଇ ଗମନ କଲେ । ଦେବର୍ଷି ନାରଦଙ୍କ ମୁଖରୁ ଦମୟନ୍ତୀଙ୍କର ରୂପଗୁଣମାନ ଶ୍ରବଣ କରି ସ୍ୱର୍ଗରୁ ଦେବଗଣ ସେଠାକୁ ଆସିଲେ । ପଥରେ ମହାରାଜ ନଳଙ୍କ ସହିତ ସେମାନଙ୍କର ଭେଟ ହେଲା ଓ ସେମାନେ ତାହାଙ୍କୁ ଦୂତ କରି ଦମୟନ୍ତୀଙ୍କ ନିକଟକୁ ବିବାହ ପ୍ରସ୍ତାବ ପଠାଇଲେ । ନଳ ଦେବଗଣଙ୍କ ମାୟା ପ୍ରଭାବରେ ଦମୟନ୍ତୀଙ୍କ ଅନ୍ତଃପୁରରେ ପ୍ରବେଶ କରି ଦେବଗଣ ବିବାହପ୍ରାର୍ଥୀ ହୋଇ ଆସିଥିବାର କହିଲେ । ଦମୟନ୍ତୀ ସେ ପ୍ରସ୍ତାବରେ ଅସମ୍ମତ ହେବାରୁ ସେ ଦେବକାର୍ଯ୍ୟ ସାଧନାର୍ଥ ପ୍ରାଣପଣେ ଯତ୍ନ କଲେ, ମାତ୍ର ଫଳତଃ କିଛି ହେଲା ନାହିଁ । ଦେବଗଣ ନଳଙ୍କର ଧର୍ମନିଷ୍ଠା, ସତ୍ୟ ପରାୟଣତା ଓ ବିବାହରେ ଉପେକ୍ଷା ଦର୍ଶନରେ ମୁଗ୍ଧ ହୋଇ ତାହାଙ୍କୁ ନିଜ ନିଜ ବିଦ୍ୟା ପ୍ରଦାନ କଲେ । ସ୍ୱୟମ୍ବରରେ ଅସଂଖ୍ୟ ନରପତି ଓ ଦେବଗଣ ଉପସ୍ଥିତ ଥିଲେହେଁ ଦମୟନ୍ତୀ ନଳଙ୍କ କଣ୍ଠରେ ବରଣମାଳା ପ୍ରଦାନ କଲେ ।

କ୍ରୂରକର୍ମା କଳି ଏ ସଂବାଦରେ ଆପଣାକୁ ତଥା ଦେବଗଣଙ୍କୁ ଅପମାନିତ ବୋଧ କରି କ୍ରୋଧ ଜର୍ଜରିତ ହେଲା ଏବଂ ସେହି ରାଜ ଦମ୍ପତିଙ୍କୁ ପ୍ରତିଫଳ ପ୍ରଦାନ କରିବା ପାଇଁ ଦ୍ୱାପରର ସାହାଯ୍ୟ ଗ୍ରହଣ କଲା । ନଳ ପୁଣ୍ୟଶୀଳ, ଏଣୁ ଦ୍ୱାଦଶ ବର୍ଷ ପର୍ଯ୍ୟନ୍ତ ତାହାଙ୍କ ଛିଦ୍ରାନ୍ୱେଷଣରେ ଥାଇ ବିଫଳ ମନୋରଥ ହେଲା । ଦିନେ ମହାରାଜ ନଳ ପାଦ ଧୌତ ନ କରି ସନ୍ଧ୍ୟା ବନ୍ଦନା କଲେ । ଏହି ସୁଯୋଗରେ କଳି ତାହାଙ୍କ ଶରୀରରେ ପ୍ରବେଶ କଲା । ସେହି ଦିନରୁ ନଳଙ୍କର ସ୍ମୃତି ଓ ବୁଦ୍ଧି ଭ୍ରଂଶ ହେବାକୁ ଲାଗିଲା ।

ପୁଷ୍କର ନଳଙ୍କର କନିଷ୍ଠ ସହୋଦର । କଳି ତାହାଙ୍କୁ ପ୍ରଲୋଭନ ଦେଖାଇ ନଳଙ୍କ ସହିତ ଦ୍ୟୂତକ୍ରୀଡ଼ା କରିବାପାଇଁ ଉପଦେଶ ଦେଲା ଓ ପୁଷ୍କର ନଳଙ୍କୁ ଦ୍ୟୂତ କ୍ରୀଡ଼ା ପାଇଁ ଆହ୍ୱାନ କଲା । ଦୁହେଁ ସର୍ବସ୍ୱ ପଣ କରି କ୍ରୀଡ଼ାରତ ହେଲେ । କଳି ପ୍ରଭାବରେ ପୁଷ୍କର ଜୟୀ ହେଲା । ନଳ ସମସ୍ତ ହରାଇ ବନଗାମୀ ହେଲେ । ପତିପ୍ରାଣା ଦମୟନ୍ତୀ ଏଥିରେ

ଶକଟ ସମ୍ପତ୍ତି ପୁରୁଷର ବଳ ଯୋଷାବଳ ପୁଂସ ଏକା ।

ବଞ୍ଚିତ ନ ହୋଇ ଶିଶୁ ସନ୍ତାନମାନଙ୍କୁ ପିତାଳୟକୁ ପଠାଇ-ଦେଲେ ଏବଂ ନଳଙ୍କ ସହ ଭାଗ୍ୟ ଦୁର୍ଯୋଗରେ ସ୍ୱାମୀଙ୍କର ଅନୁ-ଗାମିନୀ ହେଲେ ।

ରାଜଦମ୍ପତି ବନେ ବନେ ଭ୍ରମଣ କରି ନାନା ପ୍ରକାର କଷ୍ଟ କ୍ଳେଶ ସହିଲେ । ଅନାହାରରୁ ସେ ଦୁହିଁଙ୍କର କଳେବର ଦିନକୁଦିନ ଶୀର୍ଣ୍ଣ ହେବାକୁ ଲାଗିଲା । ବନର ଫଳ ମୂଳ ଭକ୍ଷଣ କରି ଓ କେବେ କେବେ ଝରଣା ଜଳ ପାନ କରି କାଳ କଟାଇଲେ । ରାତିରେ ବୃକ୍ଷତଳ ସେମାନଙ୍କର ଆଶ୍ରୟସ୍ଥଳ ଥିଲା । ଏଥିରେ ରାଜକନ୍ୟା ରାଜରାଣୀ ଦମୟନ୍ତୀଙ୍କ ମନରେ ଟିକିଏ ହେଲେ କଷ୍ଟ ହେଲା ନାହିଁ ।

ଦିନେ ରାଜଦମ୍ପତି ଅରଣ୍ୟରେ ଭ୍ରମଣ କରୁଁ କରୁଁ ଦେଖିଲେ ଯେ ଯୋଡ଼ାଏ ସ୍ୱର୍ଣ୍ଣ ବିହଙ୍ଗ ଏକ ବୃକ୍ଷ ଉପରେ ବସିଅଛନ୍ତି । ନଳ ବିଚାର କଲେ, ଏହାଙ୍କୁ ଧରି ବିକ୍ରୟ କରି ସେହି ଅର୍ଥରେ ସୁଖରେ କାଳଯାପନ କରିବି । ତତ୍ପରେ ସେ ନିଜେ ଉଲଗ୍ନ ହୋଇ ସେହି ବସ୍ତ୍ରଖଣ୍ଡ ସେ ପକ୍ଷୀ ଉପରେ ନିକ୍ଷେପ କଲେ । ପକ୍ଷୀ ବସ୍ତ୍ର ନେଇ ଆକାଶମାର୍ଗକୁ ଉଡ଼ି କହିଲା,—ନଳ, ଆମ୍ଭେ ପ୍ରକୃତ ପକ୍ଷୀ ନୋହୁଁ, ପକ୍ଷୀରୂପୀ କଳି ଓ ଦ୍ୱାପର । ଭୈମୀ ଆମ୍ଭମାନଙ୍କୁ ବରଣ ନ କରି ତୁମ୍ଭଙ୍କୁ ବରଣ କଲା, ସେଥିଯୋଗୁଁ ଆମ୍ଭେ କ୍ରୋଧରେ ତୁମ୍ଭ ଦୁହିଁଙ୍କୁ ଏ ଦଣ୍ଡ ପ୍ରଦାନ କରୁଅଛୁଁ । ରାଜା ଏହା ଶୁଣି ସ୍ତମ୍ଭୀଭୂତ ହୋଇଗଲେ । ତତ୍ପରେ ସେ ଦମୟନ୍ତୀଙ୍କୁ କହିଲେ,- ପ୍ରିୟେ ! ସମସ୍ତ ତ ଶୁଣିଲ, ଅଧିକ କ'ଣ କହିବି ମୋତେ ବହୁତ କଷ୍ଟ କ୍ଳେଶ କରିବାକୁ ହେବ । ତୁମ୍ଭେ କାହିଁକି ମୋ ସଙ୍ଗରେ ଅଛ ? ପିତାଳୟକୁ ଯାଅ, ସୁଖରେ ରହିବ, ମୋ ଲାଗି କାହିଁକି ଦୁଃଖ କ୍ଳେଶ କରିବ ? ଦମୟନ୍ତୀ ରାଜଲକ୍ଷ୍ମୀଭ୍ରଷ୍ଟ ସ୍ୱାମୀଙ୍କୁ ତ୍ୟାଗ କରି ଯିବାକୁ କଦାପି ସମ୍ମତ ହେଲେ ନାହିଁ । ନଳ ଯେତେ ବୁଝାଇଲେ ଦମୟନ୍ତୀ ସେତେ କାନ୍ଦି କହିଲେ, ମୋତେ କର୍ତ୍ତବ୍ୟ ପଥରୁ ବିଚ୍ୟୁତ କରନ୍ତୁ ନାହିଁ । ନଳ ଅଗତ୍ୟା ନୀରବ ରହିଲେ । ନଳଙ୍କ କଥା ଶୁଣି ଦମୟନ୍ତୀଙ୍କ ମନରେ ଆଶଙ୍କା ଜାତ ହେବାରୁ ସେ ନିଜ ବସ୍ତ୍ରରୁ ଅର୍ଦ୍ଧେକ ସ୍ୱାମୀଙ୍କୁ ଦିଆଇଦେଲେ । ଏକ ବସ୍ତ୍ର ପରିଧାନ କରିବାରୁ ଭୈମୀ କଥଞ୍ଚିତ୍ ଆଶ୍ୱସ୍ତ ହେଲେ ।

ଦିନେ ଦମୟନ୍ତୀ ଅତିଶୟ କ୍ଳାନ୍ତ ହୋଇ ଭୂତଳରେ ନିଦ୍ରିତା ହେଲେ । ନଳ ଏହିସମୟରେ ଭାବିଲେ, ଯେବେ ମୁଁ ଏହାଙ୍କୁ ଛାଡ଼ି ଚାଲିଯାଏ, ଏ ନିଶ୍ଚୟ ଅବଶ୍ୟ ନିଜ ପିତୃ-ଗୃହକୁ ଯିବେ ଓ ସେଠାରେ ସୁଖରେ ରହିବେ । ମୋ ସଙ୍ଗରେ ରହି ବୃଥାରେ କଷ୍ଟ ପାଇବେ କାହିଁକି ? ଏପରି ବିଚାର କରି ବସ୍ତ୍ର ଛେଦନ ନିମିତ୍ତ ଉପାୟ ଅନୁସନ୍ଧାନ କରୁଁ କରୁଁ ପାର୍ଶ୍ୱରେ ଖଡ୍ଗ ତରବାରି ଦେଖିଲେ ଓ ତାହାଦ୍ୱାରା ବସ୍ତ୍ର ଛିନ୍ନ କରି ସେହି ଅର୍ଦ୍ଧବାସରେ ସ୍ଥାନାନ୍ତରିତ ହେଲେ । ଦମୟନ୍ତୀଙ୍କର ନିଦ୍ରାଭଙ୍ଗ ପରେ ସେ ସ୍ୱାମୀଙ୍କୁ ନ ଦେଖି ଶୋକବିହ୍ୱଳିତ ହୋଇ ବନେ ବନେ ବହୁ ଅନ୍ୱେଷଣ କଲେ । ଦୈବାତ୍ ଏକ ଅଜଗର ସର୍ପ ତାହାଙ୍କୁ ଗ୍ରାସ କରିବାକୁ ଆସିବା ସମୟରେ ଏକ ବ୍ୟାଧ ଆସି ତାହାକୁ ବାଣବିଦ୍ଧ କଲା । ସେ ଦୁର୍ବୃତ୍ତ ଦମୟନ୍ତୀଙ୍କ ମନମୋହିନୀରୂପରେ ମୁଗ୍ଧ ହୋଇ ତାହାଙ୍କୁ ବଳାତ୍କାର କରିବାରୁ ସତୀ କୋପାନଳରେ ତାହାକୁ ଦଗ୍ଧ କଲେ । ତତ୍ପରେ ସେ ବନ୍ୟହସ୍ତୀ ଉପଦ୍ରବରୁ ରକ୍ଷା ପାଇ କତିପୟ ମହାଜନଙ୍କ ସହାୟତାରେ ଚେଦିରାଜ୍ୟକୁ ଗମନ କରି ରାଜକୁମାରୀ ସୁନନ୍ଦାଙ୍କ ସହଚରୀ ହୋଇ ରହିଲେ । ମାତ୍ର ପତିଙ୍କର ତଥ୍ୟାନୁସନ୍ଧାନ କରୁଥାନ୍ତି । ଏଣେ ନଳ ପତ୍ନୀଙ୍କୁ ତ୍ୟାଗ କରି ବିଷଣ୍ଣ ମୁଖରେ ନିବିଡ଼ କାନ୍ତାରରେ ଭ୍ରମଣ କରୁଁ କରୁଁ ବିକଳ ରୋଦନ ଶ୍ରବଣ କଲେ । କିଏ ଯେପରି କହୁଛି, ହେ ପୁଣ୍ୟଶ୍ଳୋକ ମହାରାଜ ନଳ, ମୋତେ ରକ୍ଷା-କର । ରାଜା ସେ ଆର୍ତ୍ତନାଦରେ ବ୍ୟଥିତ ହୋଇ ସେଠାକୁ ଗମନ କଲେ । ସେ କର୍କଟ ନାମକ ନାଗ, ନାରଦଙ୍କ ଅଭି-ଶାପରେ ଅନଳରେ ଦଗ୍ଧୀଭୂତ ହେଉଥିଲା । ନଳ ତାହାକୁ ସ୍ପର୍ଶ କଲା ମାତ୍ରକେ ସେ ତାହାଙ୍କୁ ଦଂଶନ କରି ଅସ୍ୱପରିଚୟ ପ୍ରଦାନ ପୂର୍ବକ କହିଲା,—ମୁଁ ତୁମ୍ଭର ମିତ୍ର, ବିପଦରେ ରାଜଶ୍ରୀ-ସମ୍ପନ୍ନ ହୋଇ ରହିବା ଉଚିତ ନୁହେ ବୋଲି ମୁଁ ତୁମ୍ଭଙ୍କୁ କୁରୂପ ପ୍ରଦାନ କଲି । ଆଉ ତୁମ୍ଭଙ୍କୁ କେହି ଚିହ୍ନି ପାରିବେ ନାହିଁ । ବର୍ତ୍ତମାନ ମୋ ପ୍ରଦତ୍ତ ବସ୍ତ୍ର ପରିଧାନ କରି ତୁମ୍ଭେ ଅଯୋଧ୍ୟାରାଜ ଋତୁପର୍ଣ୍ଣଙ୍କର ସାରଥି ହୁଅ । ଅଳ୍ପ ଦିନରେ ଭାଗ୍ୟ ପରିବର୍ତ୍ତନ ଘଟିବ । ସେତେବେଳେ ମୋତେ ସ୍ମରଣ କରି ନିଜରୂପ ପ୍ରାପ୍ତ ହେବ ।

ବୁଝିଲ ଯଥାର୍ଥ ନାହିଁ ଭ୍ରାନ୍ତ ଏଥି ଏକା ଅନୁଭବୀ ଲେଖା ।

ବିଦର୍ଭରାଜ ଭୀମସେନ କନ୍ୟା ଓ ଜାମାତାଙ୍କ ଅନ୍ୱେଷଣ ନିମିତ୍ତ ଚତୁର୍ଦ୍ଦିଗକୁ ଚର ପ୍ରେରଣ କରିଥିଲେ । ସୁଦେବ ନାମକ ଜଣେ ବୃଦ୍ଧ ବ୍ରାହ୍ମଣ ଚେଦୀ ରାଜଭବନରେ ଭ୍ରୂଯୁଗଳ ମଧ୍ୟରେ ତିଳଚିହ୍ନରୁ ଦମୟନ୍ତୀଙ୍କୁ ଚିହ୍ନିଲେ । ଦମୟନ୍ତୀଙ୍କ ମାତୃଷ୍ୱସା ଚେଦୀରାଜରାଣୀ ତାଙ୍କର ପରିଚୟ ପାଇ ସମାଦରେ ତାହାଙ୍କୁ ପିତୃଗୃହକୁ ପ୍ରେରଣ କଲେ । ପର୍ଣ୍ଣାଦ ନାମକ ଅନ୍ୟ ଏକ ବ୍ରାହ୍ମଣ କୋଶଳରେ ନଳଙ୍କର କାର୍ଯ୍ୟ ଦେଖି ସେ ଅଲୌକିକସାମାନ୍ୟ କାର୍ଯ୍ୟାବଳୀ ଦମୟନ୍ତୀଙ୍କୁ ଜଣାଇବାରୁ ଦମୟନ୍ତୀ ନିଜର ପୁନଃ ସ୍ୱୟଂବର ବିଷୟ ଲେଖି ଋତୁପର୍ଣ୍ଣଙ୍କୁ ନିମନ୍ତ୍ରଣ କରିବା ପାଇଁ ସୁଦେବଙ୍କୁ ପଠାଇଲେ । ଋତୁପର୍ଣ୍ଣ ସ୍ୱ ସାରଥିଙ୍କର ଅସାଧାରଣ କ୍ଷମତାଦର୍ଶନରେ ତାହାଙ୍କୁ ନଳ ବୋଲି ସନ୍ଦେହ କରି ପୁଣି କଦର୍ଯ୍ୟରୂପ ଦେଖି କିଛି ସ୍ଥିର କରି ପାରିଲେ ନାହିଁ । ସେ ପଥରେ ତାଙ୍କୁ ଗଣିତ ଓ ଅକ୍ଷବିଦ୍ୟା ପ୍ରଦାନ କରି ଅଶ୍ୱ ବିଜ୍ଞାନ ବିଦ୍ୟା ଗ୍ରହଣ କଲେ । ଏଥିରେ କଳି ତାଙ୍କ ଦେହରେ ରହି ନ ପାରି ଗରଳୋଦ୍ଗାର ପୂର୍ବକ ବାହାରି କହିଲେ,-ମହାରାଜ, ମୋତେ କ୍ଷମା ଦେବେ, ଅଜଠାରୁ ଯେ ଆପଣଙ୍କ ନାମ ଗ୍ରହଣ କରିବ, ତା ଉପରେ ମୋର ଅଧିକାର ରହିବ ନାହିଁ । ତଦନନ୍ତର ଦମୟନ୍ତୀ କେଶିନୀ ପରିଚାରିକା ସାହାଯ୍ୟରେ ନଳଙ୍କୁ ଉତ୍ତମ ରୂପେ ପରୀକ୍ଷା କରି ଜାଣିପାରିଲେ ଓ ନଳ କର୍କଟ ନାଗଙ୍କୁ ସ୍ମରଣକରି ଆପଣାର ପୂର୍ବ ଦେହ ପାଇଲେ । ଏହାପରେ ନଳ ପତ୍ନୀସହ ନିଜ ରାଜ୍ୟକୁ ଆସି ପୁଷ୍କରକୁ ପରାସ୍ତ କରି ରାଜା ହେଲେ । ଚତୁର୍ଥ କାଳରେ ସ୍ୱ ପୁତ୍ର ଇନ୍ଦ୍ରସେନଙ୍କୁ ରାଜ୍ୟ ପ୍ରଦାନ କରି ପତି ପତ୍ନୀ ଦୁହେଁ ସଦ୍ଗତି ଲାଭ କଲେ ।



## ଶ୍ରୀବତ୍ସ ।

ପୂର୍ବେ ଶ୍ରୀବତ୍ସ ନାମରେ ଏକ ନରପତି ଥିଲେ । ତାହାଙ୍କର ଗୁଣ ଅପରିମିତ । ସେ ଅସଂଖ୍ୟ ରାଜସୂୟ ଓ ଅଶ୍ୱମେଧ କରି ସସାଗରା ଧରାରେ ସ୍ୱୀୟ ଆଧିପତ୍ୟ ବିସ୍ତାର କରିଥିଲେ । ଏପରି ପୁଣ୍ୟଶୀଳ, ଦାତା, ଶାନ୍ତ, ଶିଷ୍ଟ, ସୁଚରିତ୍ର ସେ ସମୟରେ ବିରଳ ଥିଲେ । ଚିତ୍ରସେନ ରାଜକନ୍ୟା ଚିନ୍ତା ତାହାଙ୍କର ମହିଷୀ । ସମସ୍ତ ବିଷୟରେ ରାଜା ରାଣୀଙ୍କର ଏକମତ । ଚିନ୍ତା ସୁରୂପା, ବିନୀତା ଓ ପତିବ୍ରତା । ପ୍ରଜାମାନେ ଏହାଙ୍କ ରାଜ୍ୟରେ ପରମ ସୁଖରେ ଥିଲେ ।

ଥରେ ସିନ୍ଧୁସୁତା ଲକ୍ଷ୍ମୀ ଓ ସୂର୍ଯ୍ୟପୁତ୍ର ଶନିଙ୍କ ମଧ୍ୟରେ କଳହ ଲାଗିଲା । ଉଭୟେ ନିଜ ନିଜକୁ ଶ୍ରେଷ୍ଠ ବୋଲି କହିଦେଲେ । ତତ୍ପରେ ସେ ଦୁହିଁଙ୍କ ମଧ୍ୟରେ କିଏ ଶ୍ରେଷ୍ଠ ଏ ବିଷୟ ବିଚାରର ଭାର ଶ୍ରୀବତ୍ସଙ୍କ ଉପରେ ନ୍ୟସ୍ତ ହେଲା । ରାଜା ଗୋଟିଏ ସ୍ୱର୍ଣ୍ଣ ସିଂହାସନ ଓ ଆଉ ଗୋଟିଏ ରୌପ୍ୟ ସିଂହାସନ ନିର୍ମାଣ କରାଇ ତାହାକୁ ଉତ୍ତମରୂପେ ଆଚ୍ଛାଦନ କଲେ । ଯେତେବେଳେ ଲକ୍ଷ୍ମୀ ଓ ଶନି ଦୁହେଁ ରାଜସଭାରେ ଉପସ୍ଥିତ ହେଲେ । ରାଜା କରଯୋଡ଼ ସେହି ଦୁଇଟି ସିଂହାସନରେ ଉପବେଶନ କରିବା ପାଇଁ ସେମାନଙ୍କୁ ଅନୁରୋଧ କଲେ । ଶନି ରୌପ୍ୟ ସିଂହାସନ ଓ ଲକ୍ଷ୍ମୀ ସ୍ୱର୍ଣ୍ଣ ସିଂହାସନ ଅଧିକାର କରି ବିଚାର ଫଳ ଜିଜ୍ଞାସା କଲେ । ରାଜା କହିଲେ,—ନିଜ ନିଜ ଆସନରୁ ଶ୍ରେଷ୍ଠାଶ୍ରେଷ୍ଠ ଅବଗତ ହେଉନ୍ତୁ । ଆସନ ଛବି ଦର୍ଶନ କରି ଲକ୍ଷ୍ମୀ ଆନନ୍ଦିତ ଓ ଶନି ମ୍ଳାନମୁଖ ହେଲେ । ଶନିଙ୍କର ପ୍ରସ୍ଥାନ ପରେ ଲକ୍ଷ୍ମୀ ସଦୟା ହୋଇ କହିଲେ,—ମୁଁ ତୁମ୍ଭ ଗୃହରେ ଅଚଳା ହୋଇ ରହିବି ।

କିଛିଦିନ ପରେ ଶ୍ରୀବତ୍ସଙ୍କ ରାଜ୍ୟ ଶନି—କୋପାନଳରେ ଦଗ୍ଧୀଭୂତ ହେବାକୁ ଲାଗିଲା । ରାଜା ପ୍ରଜାଙ୍କ ଦୁଃଖ ସହି ନ ପାରି ଗଭୀର ନିଶୀଥରେ ପତ୍ନୀସହ ବନବାସୀ ହେଲେ । ସ୍ୱାମୀଙ୍କ ଆଦେଶରେ ଚିନ୍ତା ଏକ କନ୍ଥା ଭିତରେ ହୀରା ମୁକ୍ତା ମଣି ସ୍ୱର୍ଣ୍ଣ କିଛି ନେଇ ଯାଇଥିଲେ । ଯାଉଁ ଯାଉଁ ପଥରେ ଏକ ମାୟାନଦୀ ଦେଖିଲେ । ଶନି କର୍ଣ୍ଣଧାର ରୂପେ ସେମାନଙ୍କୁ ପାରି କରିଦେବା ଲାଗି ଆସି ପ୍ରଥମେ କନ୍ଥାକୁ ନଦୀର ଅପର ପାର୍ଶ୍ୱରେ ରଖିବାପାଇଁ ନେଇଗଲେ; ଦେଖୁଁ ଦେଖୁଁ ମାୟାନଦୀ ଲୁପ୍ତ ହେଲା । ଶ୍ରୀବତ୍ସ ଚିନ୍ତାଙ୍କୁ କହିଲେ,-ପ୍ରିୟେ, ତୁମ୍ଭେ ପିତ୍ରାଳୟକୁ ଗମନ କର । ଯେବେ ମୋତେ ଶନି ତ୍ୟାଗ କରନ୍ତି ତେବେ ପୁନର୍ବାର ସାକ୍ଷାତ ହେବ । ଚିନ୍ତା ଉତ୍ତର ଦେଲେ,-ଏ ସମୟରେ ପିତୃଗୃହକୁ ଯିବା ଅନୁଚିତ—ସୁଖ ସମୟରେ ସଙ୍ଗରେ ଥିଲି, ଦୁଃଖ ସମୟରେ ଭିନ୍ନ ହେବା ପତ୍ନୀର ଉଚିତ ନୁହେଁ । ମୁଁ ତୁମ୍ଭ ସଙ୍ଗରେ ଥିଲେ ବିପଦ ଘଟିବ ନାହିଁ । ପୁଣି ଗୃହିଣୀ ଥିଲେ ଲୋକେ ଗୃହସ୍ଥ ବୋଲନ୍ତି ଓ ଉଭୟେ ଯେଉଁଠାରେ ରହନ୍ତି

ବିରହ ନ ଥିଲେ ଜଗତେ ପ୍ରେମର ନୁହନ୍ତା ଏଡ଼େ ଆଦର ।

ସେଠାରେ ପୁଷ୍ପ ଲାଭ କରନ୍ତି । ରାଜା ଯେତେ ବୁଝାଇଲେ ରାଣୀ କିଛି ମାନିଲେ ନାହିଁ । ତତ୍ପରେ ସେମାନେ ଚନ୍ଦ୍ରଧ୍ୱଜ ବନରେ ଉପସ୍ଥିତ ହୋଇ ସ୍ନାନାଦି ସାରି ଫଳମୂଳ ଭକ୍ଷଣ କଲେ । ସେଠାରେ ଭ୍ରମଣ କରୁଁ କରୁଁ ରାଜା ଧୀବରମାନଙ୍କୁ ଦେଖି ମତ୍ସ୍ୟ ଧରିବା ପାଇଁ ଅନୁରୋଧ କଲେ । ସେମାନେ ମାଛ ଧରି ଏକ ରକୁଳ ମତ୍ସ୍ୟ ରାଜାଙ୍କୁ ଦେଲେ । ରାଜା ତାହା ପୋଡ଼ିଦେବା ପାଇଁ ରାଣୀଙ୍କୁ କହି ସ୍ନାନପାଇଁ ଗଲେ । ଚିନ୍ତା ମାଛ ପୋଡ଼ି ବିଚାର କଲେ, ଯେ କ୍ଷୀର ନବନୀତ ଭକ୍ଷଣ କରୁଥିଲେ ତାଙ୍କୁ ଏ ପୋଡ଼ା ମାଛ ଦେବି କିପରି ? ଯାଉଛି ସରୋବରରୁ ଧୌତ କରି ଆଣେ । ରାଣୀ ଧୋଉଁ ଧୋଉଁ ସେ ମାଛ ପଳାଇଲା । ଏହା ଦେଖି ସେ ଅତ୍ୟନ୍ତ ଆଶ୍ଚର୍ଯ୍ୟ ହୋଇ କ୍ରନ୍ଦନ କରିବାକୁ ଲାଗିଲେ । ରାଜା ଏକଥା ଶୁଣି ମନ୍ଦ ମନ୍ଦ ହସି ରାଣୀଙ୍କୁ କହିଲେ, ପ୍ରିୟେ, ମୋର ଦୁର୍ଦ୍ଦିନ ଉପସ୍ଥିତ ହୋଇଅଛି, କାନ୍ଦିଲେ କଅଣ ହେବ ? ନିଜ କର୍ମାର୍ଜିତ ପାପ ଅବଶ୍ୟ ଭୋଗ କରିବା । କିନ୍ତୁ, ଭଗବାନଙ୍କ ନିକଟରେ ଏତିକି ପ୍ରାର୍ଥନା ଯେପରି ଧର୍ମରୁ ମନ ବିଚଳିତ ନ ହେଉ ।

ଏହିପରି ପାଞ୍ଚବର୍ଷ ପରେ ସେମାନେ ଏକ ନଗରରେ ଉପସ୍ଥିତ ହୋଇ କାଠ କଟାଳିଙ୍କ ବାସସ୍ଥାନ ପାଖରେ କୁଟୀରଟିଏ ନିର୍ମାଣ କରି ବାସ କଲେ । ସେଠାରେ ଏହାଙ୍କ ଭଦ୍ର ବ୍ୟବହାରରେ ସମସ୍ତେ ପରମ ଆନନ୍ଦିତ । ରାଜା ଚନ୍ଦନକାଷ୍ଠ କାଟି ବଜାରରେ ବିକ୍ରୟ କରନ୍ତି । ସେଥିରେ ପ୍ରଚୁର ଧନ ଲାଭ କରି କାଠ କଟାଳି ବନ୍ଧୁମାନଙ୍କୁ ଖୁଆନ୍ତି ଓ ଅତିଥି ଅଭ୍ୟାଗତଙ୍କୁ ଦିଅନ୍ତି । ଚିନ୍ତାଙ୍କ ପାକ ସାମଗ୍ରୀ ଅମୃତୋପମ । ସେମାନେ ଭୋଜନ କରି ଧନ୍ୟ ଧନ୍ୟ କରି ପ୍ରସ୍ଥାନ କରନ୍ତି । କିଛିଦିନ ପରେ ସେହି ଗ୍ରାମ ସନ୍ନିକଟ ନଦୀରେ ଦିନେ ଏକ ମହାଜନର ନୌକା ଚଡ଼ାରେ ଲାଗିଲା । ସେ ଯେତେ ଚେଷ୍ଟା କଲା, ବୃଥା ହେଲା । ଶନି ଦୈବଜ୍ଞ ରୂପରେ ଆସି ମହାଜନକୁ କହିଲା,—ସତୀ ନାରୀ ସ୍ପର୍ଶରେ ଏହା ଭାସିବ । ମହାଜନ କାଠକଟାଳି ସ୍ତ୍ରୀଙ୍କୁ ବହୁତ ଅନୁନୟ ବିନୟ କରି ନେଇ ଯାଇ ନୌକା ସ୍ପର୍ଶ କରାଇଲା, ମାତ୍ର ଫଳ କିଛି ହେଲା ନାହିଁ । ତତ୍ପରେ ଚିନ୍ତାଙ୍କୁ ଆସି ପ୍ରାର୍ଥନା କଲା । ସେ କହିଲେ, ସ୍ୱାମୀଙ୍କ ବିନା ଆଦେଶରେ ମୁଁ ଯିବି କିପରି ? ପୁଣି ମହାଜନ ନିତାନ୍ତ ବ୍ୟସ୍ତ ହେବାରୁ ଚିନ୍ତା ବିଚାର କଲେ, କାତର ଶରଣାଗତଙ୍କୁ ରକ୍ଷା କଲେ ଧର୍ମ ହୁଏ । ଯେବେ ଏହାର ପ୍ରାର୍ଥନା ଅଗ୍ରାହ୍ୟ କରେଁ, ତେବେ ମହାପାପ ହେବ । ଯାହା ହେଉ, ମୁଁ ଯାଉଛି, ରାଜା ଆସିଲେ ସମସ୍ତ ଜଣାଇ କ୍ଷମା ମାଗିନେବି । ଚିନ୍ତା ମହାଜନ ସହ ଗମନ କରି ଯେପରି ନୌକାସ୍ପର୍ଶ କଲେ ତାହା ଭାସି ଉଠିଲା । ସୌଦାଗର ମନରେ ଭାବିଲା, ଆଉ ଯେବେ ନୌକା ଅଟକିବ, ଏ ନାରୀ ଥିଲେ ସହଜରେ ମୁକ୍ତ ହେବ । ଏହାଙ୍କୁ ତ୍ୟାଗ କରି ଯିବା ଉଚିତ ନୁହେଁ । ସେ ତାହାଙ୍କୁ ନୌକା ଉପରକୁ କୌଶଳରେ ଉଠାଇ ନେଲା । ଚିନ୍ତା ନିତାନ୍ତ ଆକୁଳ ହୋଇ କ୍ରନ୍ଦନ କଲେ ଓ ସୂର୍ଯ୍ୟଙ୍କୁ ପ୍ରାର୍ଥନା କରି ଗଳିତ ଧବଳ ମୂର୍ତ୍ତି ଧାରଣ କଲେ । ରାଜା ବନରୁ ଆସି ସମସ୍ତ ଶ୍ରବଣ କରି ବହୁତ ବିଳାପ କଲେ ଓ ଶେଷରେ ନଦୀକୂଳେ କୂଳେ ଯାଉଁ ଯାଉଁ ସୁରଭୀ ଆଶ୍ରମରେ ଉପସ୍ଥିତ ହେଲେ । ସୁରଭୀ ରାଜାଙ୍କଠାରୁ ସମସ୍ତ ବିଷୟ ଅବଗତ ହୋଇ କହିଲେ, ଦୁଃଖିତ ହୁଅ ନାହିଁ, ଅବଶ୍ୟ ସୁଦିନ ଆସିବ । ତୁମ୍ଭେ ଏହିଠାରେ ବାସକର, ମୁଁ ତୁମ୍ଭଙ୍କୁ ଏକଧାର ଦୁଗ୍ଧ ଦେବି । ଏଠାରେ ଥିଲେ ଶନି ତୁମ୍ଭର କିଛି କ୍ଷତି କରି ପାରିବ ନାହିଁ । ଆଶ୍ୱାସନା ପାଇ ରାଜା ସେଠାରେ ରହିଲେ । ମନୋରଥ ନାମ୍ନୀ ଯେଉଁ ଦୁଗ୍ଧ ପାନ କରନ୍ତି ସେଥିରେ ଭୂମି ଆର୍ଦ୍ର ହୁଏ । ରାଜା ସେହି ମୃତ୍ତିକାକୁ ଚିନ୍ତା ଓ ଶ୍ରୀବତ୍ସ ନାମ ସ୍ମରଣ କରି ଗୋଟିଏ ଗୋଟିଏ ଖଣ୍ଡ ତିଆରି କରନ୍ତି—ସେ ଗୁଡ଼ିକ ସ୍ୱର୍ଣ୍ଣଇଟା । କିଛିଦିନ ପରେ ସେହି ମହାଜନ ସେହି ନଦୀରେ ନୌକାରେ ଯାଉଥିବାର ଦେଖି ଶ୍ରୀବତ୍ସ ତାଙ୍କୁ ଡାକି କହିଲେ, ମୋର ଯେତେଗୁଡ଼ିଏ ସ୍ୱର୍ଣ୍ଣ ଇଟା ଅଛି, ଦୟା କରି ସେ ସବୁକୁ ଯେବେ ତୁମ୍ଭ ନୌକାରେ ନେଇ ଯାଆନ୍ତ, ମୁଁ ତୁମ୍ଭ ସହିତ ଯାଇ ସେ ଗୁଡ଼ିକ ବିକ୍ରୟ କରି କିଛି ଧନ ପାଆନ୍ତି । ରାଜାଙ୍କ ବିନୟ ବଚନରେ ସୌଦାଗର ହୃଷ୍ଟ ହୋଇ କୂଳରେ ନୌକା ଲଗାଇ ସେ ସମସ୍ତ ସ୍ୱର୍ଣ୍ଣଇଟା ଆପଣା ନୌକାରେ ନେଇ ରଖିଲା ଓ ଶ୍ରୀବତ୍ସ ମଧ୍ୟ ସେହି ନୌକାରେ ଚଢ଼ିଲେ । ଖଣ୍ଡେ ଦୂର ଯାଇ ବଣିକ ସେ ଦୁଷ୍ଟ ଲୋଭରେ ରାଜାଙ୍କୁ ଜଳକୁ ପେଲିଦେଲା । ରାଜା ଚିନ୍ତା ନାମ ଧରି ଉଚ୍ଚରେ ରୋଦନ କଲେ । ଚିନ୍ତା ଜାଣିପାରି ଏକ ତକିଆ ଫିଙ୍ଗିଦେଲେ । ରାଜା ତାହାକୁ ଆଶ୍ରୟ କରି ଭାସି ଭାସି ଗଲେ । ତତ୍ପରେ ସେ ଯାଇ ସୌତିପୁରରେ ରମ୍ଭାବତୀ ମାଲୁଣୀ ଘରେ ବାସ କଲେ ।

ସ୍ୱପ୍ନେ ବଛେ ଦଣ୍ଡ ପଦ୍ମିନୀ ପୀରତ ପ୍ରାତେ ଯିବା ସ୍ତ୍ରକର ।

ବାସୁଦେବ ସୌଭପୁରର ରାଜା । ତାଙ୍କ କନ୍ୟା ନାମ ଭଦ୍ରାବତୀ । ସେ ଶ୍ରୀବସଙ୍କୁ ସ୍ୱାମୀ ପାଇବା ନିମିତ୍ତ ଦୁର୍ଗାଙ୍କୁ ଆରାଧନା କରୁଥିଲେ । ଦୁର୍ଗା ତାଙ୍କୁ ବରଦେଲେ,--ରମ୍ଭାବତୀ ମାଳୁଣୀଘରେ ତୁମ୍ଭର ସ୍ୱାମୀ ଅଛନ୍ତି, ତାଙ୍କୁ ତୁମ୍ଭେ ପାଇବ । ଭଦ୍ରାବତୀଙ୍କର ସ୍ୱୟମ୍ବର ହେଲା । ଶ୍ରୀବସ ସେ ସଭାକୁ ଯାଇଥିଲେ । ଭଦ୍ରାବତୀ ସ୍ୱପ୍ନାଦେଶ ଲାଭକରି ତାହାଙ୍କ କଣ୍ଠରେ ବରଣମାଳା ଦେଲା । ରାଜା ଅନୁତାପ କରି କନ୍ୟାକୁ ବାହାରେ ଅନ୍ୟ ଏକ ଗୃହରେ ରଖାଇଲେ ।

ଶ୍ରୀବସ ଶ୍ୱଶୁରଙ୍କଠାରୁ ଆଦେଶ ଲାଭକରି ଷୀରୋଦନଦୀ ଘାଟ ଜଗୁଆଳ ହେଲେ । ଘାଟରେ ଯେତେ ନୌକା ଯାତାୟାତ କରେ ରାଜା ସମସ୍ତ ଦେଖି ଶୁଣନ୍ତି, କଛିଦିନ ପରେ ସେହି ମହାଜନର ନୌକା ସେଠାରେ ଯାଇ ପହଞ୍ଚିଲା । ରାଜା ତାକୁ ଛାଡ଼ି ତା ନୌକାରୁ ସ୍ୱର୍ଣ୍ଣ ତକ୍ତାମାନ କୁହାଇ ଆଣିଲେ । ସେ ବାସୁଦେବ ରାଜାଙ୍କୁ ନିବେଦନ କଲା । ରାଜା ଶ୍ରୀବସଙ୍କୁ ଡକାଇ ପଚାରିବାରୁ ସେ କହିଲେ,—ଯେବେ ସେ ଯୁକ୍ତ—ସ୍ୱର୍ଣ୍ଣ ତକ୍ତା ମହାଜନର, ତେବେ ସେ ତାହା ଦୁଇଖଣ୍ଡ କରୁ । ଯେବେ ଖଣ୍ଡେ ତକ୍ତା ଦୁଇଭାଗ ହେବ, ତେବେ ସେ ସେ ସମସ୍ତ ନେଇଯିବ, ଆଉ ମୁଁ ଯେବେ ତାହା କରେଁ, ତେବେ ସେ ସବୁ ମୋର । ମହାଜନ ନାନାପ୍ରକାର ଚେଷ୍ଟା କରି ବ୍ୟର୍ଥ ମନୋରଥ ହେଲା ଓ ଶ୍ରୀବସ ତାହା ନିହମାକରେ ଦୁଇଖଣ୍ଡ କରିଦେଲେ । ବାସୁଦେବ ସେଠାରେ ତାଙ୍କର ପରିଚୟ ପାଇ ପୂର୍ବ କଥାମାନ ଶ୍ରବଣକରି ନୌକାରୁ ସାଦରେ ଚିନ୍ତା ସତୀଙ୍କୁ ଆଣାଇଲେ । ଚିନ୍ତା ସୂର୍ଯ୍ୟଙ୍କୁ ସ୍ମରଣ କରି ନିଜର ପୂର୍ବଦେହ ଲାଭକଲେ । ପତି ପତ୍ନୀଙ୍କର ମିଳନ ହେଲା । ଦୁଇ ରାଣୀଙ୍କୁ ଘେନି ଶ୍ରୀବସ ସୁଖରେ ରହିଲେ । ଦ୍ୱାଦଶ ବର୍ଷ ଅତୀତ ପରେ ଶନି ରାଜାଙ୍କୁ ବର ଦେଇ ଅଦୃଶ୍ୟ ହେଲେ । ରାଜା ପୁନର୍ବାର ନିଜରାଜ୍ୟ ଲାଭ କଲେ ।



## ସୀତା ବନବାସ ।

ସୀତା ମିଥିଳାର ରାଜା ରାଜର୍ଷି ଜନକଙ୍କ କନ୍ୟା । ହରଧନୁ ଭଗ୍ନ କରି ଅଯୋଧ୍ୟାଧିପତି ଦଶରଥଙ୍କ ଜ୍ୟେଷ୍ଠପୁତ୍ର ଶ୍ରୀରାମଚନ୍ଦ୍ର ଏହାଙ୍କୁ ବିବାହ କରିଥିଲେ । ଯେତେବେଳେ ପିତୃସତ୍ୟ ପାଳନ ନିମିତ୍ତ ରାମଚନ୍ଦ୍ର ବନଗମନ କଲେ, ପତିପ୍ରାଣା ଜାନକୀ ଓ ଭ୍ରାତୃଭକ୍ତ ଲକ୍ଷ୍ମଣ ତାହାଙ୍କର ଅନୁଗମନ କରିଥିଲେ । ଲଙ୍କେଶ୍ୱର ଦୁର୍ବୃତ୍ତ ରାବଣ ସୀତାଙ୍କୁ ଦଣ୍ଡକାରଣ୍ୟରୁ ହରଣ କରି ନେଲା । ଶ୍ରୀରାମ ଋକ୍ଷ କପିଙ୍କ ସହାୟତାରେ ସାଗର ବନ୍ଧନ କରି ରକ୍ଷକୁଳ ନିର୍ମୂଳ କଲେ । ତଦନନ୍ତର ସେ ସୀତାଙ୍କ ସହ ଅଯୋଧ୍ୟାର ରାଜସିଂହାସନରେ ଉପବେଶନ କରି ପ୍ରଜାପାଳନ କରିବାକୁ ଲାଗିଲେ । ଏଠାରେ ଶ୍ରୀରାମ ସୁଖୀ ହୋଇ ପାରିଲେ ନାହିଁ । ସୀତା ରାବଣ ଗୃହରେ ଥିଲେ, ଏଣୁ ତାଙ୍କର ଅସତୀ ନାମ ରଟନା ହେଲା । ରାମ ପ୍ରଜାରଞ୍ଜନ ନିମିତ୍ତ ଜାନକୀଙ୍କୁ ଗୃହରେ ରଖିବାକୁ ଅସମ୍ମତ ହେଲେ ଏବଂ ତୀର୍ଥଦର୍ଶନ ଛଳରେ ଲକ୍ଷ୍ମଣଦ୍ୱାରା ତାଙ୍କୁ ବନକୁ ପ୍ରେରଣ କଲେ । ଲକ୍ଷ୍ମଣ ଭ୍ରାତୃଆଜ୍ଞା ଲଙ୍ଘନରେ ଅକ୍ଷମ ହୋଇ ଏ ନିଷ୍ଠୁର କାର୍ଯ୍ୟ କରିବାକୁ ଗଲେ । ଯେଉଁ ଲକ୍ଷ୍ମଣ ନିବିଡ଼ ଅରଣ୍ୟରେ ଶତ୍ରୁ ହସ୍ତରୁ ସୀତାଙ୍କୁ ରକ୍ଷା କରିବା ପାଇଁ ଚତୁର୍ଦ୍ଦଶବର୍ଷ ଅନାହାରରେ, ଅନିଦ୍ରାରେ କୁଟୀର ଦ୍ୱାର ରକ୍ଷା କରିଥିଲେ, ଯେଉଁ ସୀତାଙ୍କୁ ଉଦ୍ଧାର କରିବାଲାଗି ଲଙ୍କା ଯୁଦ୍ଧରେ ପ୍ରତ୍ୟହ ନିଜ ପ୍ରାଣକୁ ତୃଣ ପରି ତୁଚ୍ଛଜ୍ଞାନ କରି ଯୁଦ୍ଧ କରୁଥିଲେ, ଆଜି ସେହି ସୀତାଙ୍କୁ ସାମାନ୍ୟ ଅନାଥିନୀ ପରି ଶ୍ୱାପଦସଙ୍କୁଳ ବନରେ ବିସର୍ଜନ ଦେବାକୁ ଗଲେ ।

ସୌମିତ୍ରି ଗଙ୍ଗାର ଅରଣ୍ୟରେ ସୀତାଙ୍କୁ ରଥରୁ ଓହ୍ଲାଇ ଦେଇ ସଜଳ ନୟନରେ ରାମଙ୍କ ଆଦେଶ ଜ୍ଞାପନ କଲେ । ସେ ଅକସ୍ମାତ୍ ଏ ନିଦାରୁଣ ବାର୍ତ୍ତା ଶ୍ରବଣ କରି ମୂର୍ଚ୍ଛିତା ହେଲେ । ଲକ୍ଷ୍ମଣ ଜାହ୍ନବୀରୁ ଶୀତଳ ସଲିଳ ଆଣି ତାଙ୍କର ଶୁଶ୍ରୂଷା କଲେ । ସେ ଚେତା ଲଭି ପ୍ରକୃତିସ୍ଥା ହୋଇ କହିଲେ,-ପତି ନାରୀଙ୍କର ଗୁରୁ, ସ୍ୱାମୀଙ୍କର ଆଦେଶ ପାଳନ ସତୀର ପରମ କର୍ତ୍ତବ୍ୟ । ସ୍ୱାମୀଙ୍କ ଆଦେଶରେ ମୁଁ ପ୍ରାଣ ଦେଇ ପାରିଥାନ୍ତି, ବନବାସ ତ ଅତି ସାମାନ୍ୟ କଥା । ଯାଅ ଲକ୍ଷ୍ମଣ, ଆର୍ଯ୍ୟ ପୁତ୍ରଙ୍କୁ କହିବ, ଯେଉଁ କାର୍ଯ୍ୟରେ ତାଙ୍କର ସୁଖ, ସେଥିରେ ମୋର ସୁଖ ଅଛି ସେ ମୋତେ ସିନା ଦାସୀପଣରୁ ଅନ୍ତର କଲେ, ପ୍ରଜାପଣରୁ ତ ଅନ୍ତର କରି ପାରିବେ ନାହିଁ । ତାଙ୍କର ପ୍ରଜାରଞ୍ଜନ ବ୍ରତ ସାର୍ଥକ ହେଉ, ଏତିକି ମୋର ବିଭୁପାଦପଦ୍ମରେ ପ୍ରାର୍ଥନା ।

ଲକ୍ଷ୍ମଣ ବାଲ୍ମୀକିଙ୍କ ଆଶ୍ରମ ନିକଟରେ ସୀତାଙ୍କୁ ଛାଡ଼ି ଫେରିଗଲେ । ଏହା ଶୁଣି ସୀତା ମୂର୍ଚ୍ଛିତ ହୋଇପଡ଼ିଲେ । ଏହି ସମୟରେ ମହର୍ଷି ବାଲ୍ମୀକି ସେଠାରୁ ଆସି ସୀତାଙ୍କୁ ସ୍ୱ ଆଶ୍ରମକୁ ଆଣି

ଲକ୍ଷ୍ମଣ ଖାଣ୍ଡନସ୍ଥାନରେ ସୀତାଙ୍କର ସଦବନ୍ଧନା କରି ଫେରିଗଲେ ପରେ ମୂର୍ଚ୍ଛିମତୀ ସତୀ ଜାନକୀ ହା ରାମ ! କହି ଭୂତଳରେ ମୂର୍ଚ୍ଛିତା ହେଲେ । ଏହି ସମୟରେ ପ୍ରଖ୍ୟାତ କବି ବାଲ୍ମୀକି ସେଠାରୁ ଅନ୍ତଃସତ୍ତ୍ୱା ସୀତାଙ୍କ ସ୍ୱ ଆଶ୍ରମକୁ ଆଣି ଶୁଶ୍ରୂଷା କଲେ । କିଛିଦିନ ପରେ ସୀତାଙ୍କ ଗର୍ଭରୁ ଦୁଇଟି ଯମଜ ସନ୍ତାନ ଜାତ ହେଲେ । ଏ ଦୁହିଙ୍କ ଅକୃତ ଅନୁରୂପ ସମାନ ଥିଲା । ମୁନି ତାଙ୍କର ନାମ ଲବ-କୁଶ ରଖିଲେ । ଆଶ୍ରମରେ ସେମାନେ ଲାଳିତ ପାଳିତ ଓ ଶିକ୍ଷିତ ହୋଇ ଯୁଦ୍ଧ ବିଦ୍ୟାରେ ଅସୀମ ନିପୁଣତା ଲାଭ କଲେ ଓ ମହର୍ଷି ରଚିତ ସମଗ୍ର ରାମାୟଣ ଗାନରେ ସୁଦକ୍ଷ ହେଲେ ।

ଶ୍ରୀରାମଚନ୍ଦ୍ର ଅଶ୍ୱମେଧ ଯଜ୍ଞ ଆରମ୍ଭ କଲେ । ସସ୍ତ୍ରୀକ ଯଜ୍ଞ କରିବାକୁ ହୁଏ ବୋଲି ସେ ସୀତାଙ୍କର କନକ ମୂର୍ତ୍ତି ନିର୍ମାଣ କରିଇ ତାହାଙ୍କ ସହ ଯଜ୍ଞ ସମ୍ପାଦନ କଲେ । ତାହାଙ୍କର ଭ୍ରାତାଗଣ ଯଜ୍ଞାଶ୍ୱ ସହ ଦିଗ୍‌ବିଜୟରେ ବହିର୍ଗତ ହେଲେ । ଅଶ୍ୱ ସମସ୍ତ ରାଜ୍ୟ ଭ୍ରମଣ କରି ବାଲ୍ମୀକି ଆଶ୍ରମରେ ଉପସ୍ଥିତ ହେଲା । ଲବ କୁଶ ସୁନ୍ଦର ସୁସଜ୍ଜିତ ଅଶ୍ୱ ଦେଖି ବାଲ୍ୟଲଭ ଚପଳତା ବଶତଃ ତାହାକୁ ବାନ୍ଧି କଲେ । ରାମଙ୍କ ସୈନ୍ୟ ସେମାନଙ୍କୁ ଅଶ୍ୱ ଛାଡ଼ିଦେବାପାଇଁ କହି ଭୟ ଦେଖାଇବାରୁ ସେମାନେ ହସି ଉଡ଼ାଇଦେଲେ । ପରିଶେଷରେ ଯୁଦ୍ଧ ହେଲା । ଭରତ, ଲକ୍ଷ୍ମଣ, ଶତ୍ରୁଘ୍ନ ସେ ବାଳକଦ୍ୱୟଙ୍କ ଯୁଦ୍ଧରେ ପରାଜିତ ହୋଇ ନିହତ ହେଲେ ।

ଶ୍ରୀରାମ ଏ ଦୁଃସମ୍ବାଦ ଶ୍ରବଣ କରି ଯୁଦ୍ଧକ୍ଷେତ୍ରରେ ଉପସ୍ଥିତ ହେଲେ । ଶିଶୁଦ୍ୱୟଙ୍କୁ ଦେଖି ରାମଙ୍କ ହୃଦୟରୁ ସ୍ୱତଃ ସ୍ନେହଧାର ପ୍ରବାହିତ ହେଲା । ସେ ସେମାନଙ୍କୁ ଅଶ୍ୱ ପ୍ରତ୍ୟର୍ପଣ କରିବା ପାଇଁ ବହୁତ ବୁଝାଇଲେ, କିନ୍ତୁ ଫଳ ବୃଥା ହେଲା । ଶ୍ରୀରାମ ବାଧ୍ୟ ହୋଇ ଯୁଦ୍ଧ କରିଲେ ଓ ପରାଜିତ ହୋଇ ନିହତ ହେଲେ ।

ଜନକନନ୍ଦିନୀ ଏ ଶୋକସମ୍ବାଦ ପ୍ରାପ୍ତିମାତ୍ରକେ ଧାଇଁ ଆସିଲେ ଓ ଶିଶୁଦ୍ୱୟଙ୍କୁ ବହୁତ ଭର୍ତ୍ସନା କଲେ । ତତ୍ପରେ ମହର୍ଷି ବାଲ୍ମୀକି ଆସି ସେମାନଙ୍କୁ ଜୀବିତ କଲେ । ପିତା ପୁତ୍ରଙ୍କର ମିଳନ ହେଲା । ଯଜ୍ଞସ୍ଥଳକୁ ଆସି ଶ୍ରୀରାମଚନ୍ଦ୍ର ଜାନକୀଙ୍କୁ ସତୀତ୍ୱ ଦେଖାଇବା ପାଇଁ ପରୀକ୍ଷା ଦେବାକୁ କହିଲେ । ସୀତା ପୂର୍ବେ ଲଙ୍କାପୁରରେ ପରୀକ୍ଷା ଦେଇଥିଲେ । ଶ୍ରୀରାମଚନ୍ଦ୍ର ସୀତାଙ୍କ ସତ୍ତ୍ୱ, ସତୀବ୍ରତା ଜାଣି କେବଳ ଲୋକଲଜ୍ଜାବଶତଃ ବନବାସିନୀ କରାଇଥିଲେ । ସମ୍ପ୍ରତି ଭାରତର ସର୍ବ ଶ୍ରେଷ୍ଠ ରାଜାଗଣ ଓ ସମସ୍ତ ଋଷି ପ୍ରଜାବର୍ଗଙ୍କ ସମକ୍ଷରେ ପୁନର୍ବାର ପରୀକ୍ଷା ଦେଇ ସମସ୍ତଙ୍କ ହୃଦୟରୁ ସନ୍ଦେହ ଦୂର କରିବା ପାଇଁ ଆଦେଶ ଦେଲେ । ସୀତା ଅଭିମାନରେ ପରୀକ୍ଷା ଦେବାକୁ ସମ୍ମତ ନ ହୋଇ ସନ୍ତପ୍ତ ହୃଦୟରେ ଜନନୀ ଧରଣୀଙ୍କୁ ତାଙ୍କ କୋଳରେ ସ୍ଥାନ ଦେବା ପାଇଁ କହିଲେ । ସହସା ଯଜ୍ଞସ୍ଥଳ ଦ୍ୱିଧାଗତ ହେଲା ଓ ବସୁମତୀ ଜାନକୀଙ୍କୁ କୋଳରେ ଧରି ସେହି ଗହ୍ୱରରେ ଅଦୃଶ୍ୟ ହେଲେ । ସଭାସ୍ଥ ଲୋକେ ଚିତ୍ରପୁତ୍ତଳିକା ପରି ସ୍ଥିର ହୋଇ ରହିଲେ ।



# ପ୍ରିୟବ୍ରତ ।

ମହାରାଜ ମନୁ ବ୍ରହ୍ମାଙ୍କର ପ୍ରିୟପୁତ୍ର । ତାଙ୍କର ଶାସନ ସମୟ । ରାଜ୍ୟରେ ଅଶାନ୍ତି, ଅନାଚାର, ଅତ୍ୟାଚାର ଆଦି ନାହିଁ । ଶାନ୍ତିର ସ୍ନେହ ସର୍ବତ୍ର ପ୍ରବାହିତ, ଅଣୁର ନିଷ୍ଠାରେ ସମସ୍ତେ ସନ୍ତୁଷ୍ଟ, ରାଜସ୍ୱରେ ସମସ୍ତଙ୍କ ଶିର ଅବନତ । ସେ ଆଶ୍ରମ ଚତୁଷ୍ଟୟର ରକ୍ଷାକର୍ତ୍ତା ।

କାଳକ୍ରମେ ମନୁଙ୍କର ଏକ ପୁତ୍ର ଜାତ ହେଲା, ତାଙ୍କ ନାମ ପ୍ରିୟବ୍ରତ । ଅସାଧାରଣ ପ୍ରତିଭାରେ ପ୍ରିୟବ୍ରତ ଅଳ୍ପ ଦିନରେ ଶୈଶବ ଶିକ୍ଷାର ଚରମସୀମାରେ ଉପନୀତ ହେଲେ । ଏକାଦଶ ବର୍ଷରେ ଶାସ୍ତ୍ରୀୟ ବିଧାନାନୁଯାୟୀ ତାଙ୍କର ଉପନୟନ ହେଲା । ଶାସ୍ତ୍ର ଓ ଅସ୍ତ୍ର ବିଦ୍ୟାରେ ଯଥେଷ୍ଟ ନିପୁଣତା ଲାଭ କରି ଉପନୟନ ପରେ ଦ୍ୱାଦଶବର୍ଷ ଗୁରୁ ଗୃହରେ ରହି ଅଧ୍ୟୟନ ଓ ବ୍ରହ୍ମଚର୍ଯ୍ୟ ପାଳନ ପୂର୍ବକ ତେଇଶବର୍ଷ ବୟସରେ ଶାନ୍ତ, ଶିଷ୍ଟ, ସଂଯତ ଓ କ୍ଳେଶସହିଷ୍ଣୁ ହୋଇ ପ୍ରିୟବ୍ରତ ପିତାଙ୍କଠାରେ ଉପସ୍ଥିତ ହେଲେ । କ ଜ୍ଞାନରେ-କ ବଳ୍ପନାରେ-କ ସମାଜନୀତିରେ-କ ରାଜନୀତିରେ ପୁତ୍ର ଯେତାଠାରୁ କୌଣସି ଅଂଶରେ ନ୍ୟୂନ ନୁହନ୍ତି, ସ୍ଥଳ ବିଶେଷରେ ବରଂ ବେଶୀ, ଏହା ଦେଖି ମହାରାଜ ମନୁ ପରମ ଆପ୍ୟାୟିତ ହେଲେ । ତଦନନ୍ତର ପ୍ରିୟବ୍ରତ ଗୁରୁବ୍ରାହ୍ମଣଙ୍କ ଅନୁମତି ନେଇ ପୃଥିବୀର ସର୍ବତ୍ର ପର୍ଯ୍ୟଟନ କଲେ । ଯେଉଁ ସବୁ ମନସ୍ୱୀ ସାଧୁ ପୁରୁଷଙ୍କ ସହିତ

ଅଳାପ କରୁଥିଲେ ସେଥିରୁ ଜ୍ଞାନ ଓ ଭକ୍ତିବାଦ ଶୁଣି ତାଙ୍କ ମନରେ ଘୋର ସନ୍ଦେହ ଜାତ ହେଲା । ପୁଣି ପ୍ରିୟବ୍ରତ ଚିନ୍ତା ଅବଲମ୍ବନ କରି ଦେଖିଲେ ଯେ ଜ୍ଞାନମାର୍ଗଠାରୁ ଭକ୍ତି-ମାର୍ଗ ତାଙ୍କ ପକ୍ଷରେ ଶ୍ରେୟସ୍କାରକ । ସେ ସେହି ପଥରେ ଅଗ୍ରସର ହେଲେ । ସେ ସର୍ବଦା ହରିଗୁଣାନୁବାଦ ଶ୍ରବଣ, କୀର୍ତ୍ତନ ଓ ସ୍ମରଣ କରି ଆପଣା ମନରେ ଅତ୍ୟନ୍ତ ସନ୍ତୁଷ୍ଟ ହେଲେ । ଅଚିରେ ଏହି ଭକ୍ତି ରସରେ ତାଙ୍କ ହୃଦୟ ଅପ୍ଲୁତ ହୋଇ ଉଠିଲା, ଓ ସେ ଅଚିନ୍ତ୍ୟ ଆତ୍ମପ୍ରସାଦ ଲାଭ କଲେ । ମନୁ ଦେଖିଲେ, ପୁତ୍ରର ଭକ୍ତି ପରବଶତାରେ ତାଙ୍କର ଅନୁଶାସନ ଲଙ୍ଘିତ ହେବାର ଉପକ୍ରମ ହେଲା । ସଂସାରରେ ସମସ୍ତ ସବୁ କାର୍ଯ୍ୟ କଲେ ସତ୍ୟ, ମାତ୍ର ଅସକ୍ତ ହୋଇ ସଙ୍କୀର୍ତ୍ତନରେ । ସ୍ୱାମେ-ପତ୍ନୀରେ-ଗୃହେ ଦାରୁଣ ଯାଶ ଏପରି ବନ୍ଧ-ବାକୁ ଲାଗିଲା ଯେ ସଂସାରଶ୍ରମ ଜ୍ୱାଳିଯିବାକୁ ବସିଲା । ସଂସାର ପତି କାହାରି ମନ ନ ଥିବାରୁ ଦାର ପରିଗ୍ରହ ପ୍ରଭୃତି ଆଉ କେହି କରିବାକୁ ରାଜି ହେଲେ ନାହିଁ । ଦାମ୍ପତ୍ୟ ଜୀବନ ନ ହେଲେ ସୃଷ୍ଟିସଂଖ୍ୟା ବୃଦ୍ଧି ପାଇବ କିପରି ? ମନୁ ଅନନ୍ୟୋପାୟ ହୋଇ ପିତା ବ୍ରହ୍ମାଙ୍କୁ ସ୍ମରଣ କଲେ । ବ୍ରହ୍ମା ମାନସ ପୁତ୍ର ନାରଦଙ୍କୁ ତାଙ୍କ କଥା ପ୍ରସଙ୍ଗରେ ପ୍ରିୟବ୍ରତ ଯେ ପରମ ବୈଷ୍ଣବ ଏ କଥା କହିବାରୁ ସେ ବୀଣାଯନ୍ତ୍ର ବଜାଇ ହରିନାମ ଗାଇ ମର୍ତ୍ତ୍ୟ ଭୁବନକୁ ଆଗମନ କଲେ ।

ଦେବଶିଳ୍ପୀ ବିଶ୍ୱକର୍ମାଙ୍କ କନ୍ୟା ନାମ ବର୍ହିଷ୍ମତୀ । ସେ ରୂପ ଗୁଣରେ ଅଲୌକିକସାମାନ୍ୟା । ବିଶ୍ୱକର୍ମା ସର୍ବଦା ଚିନ୍ତିତ କାହାକୁ ତାଙ୍କର ହୃଦୟସର୍ବସ୍ୱ ଅର୍ପଣ କରିବେ ବୋଲି । କିଛିଦିନ ପରେ ପିତା ପୁତ୍ରୀ ଦୁହେଁ ଭ୍ରମଣ କରୁଁ କରୁଁ ଗନ୍ଧମାଦନ ପର୍ବତରେ ଉପସ୍ଥିତ ହେଲେ । ସେଠାରେ ସେମାନେ ଦେଖିଲେ ଦେବର୍ଷି ନାରଦ ଓ ପ୍ରିୟବ୍ରତଙ୍କୁ । ବିଶ୍ୱକର୍ମା ସେ ଦୁହିଁଙ୍କର ପରିଚୟ ପାଇ ପରମ ଆନନ୍ଦିତ ହେଲେ ଓ ଦିବ୍ୟ ଚକ୍ଷୁରେ ଦେଖିଲେ ସେହି ତରୁଣ ତପସ୍ୱୀ ପାଣିରେ ତାଙ୍କର ହୃଦୟର ଏକମାତ୍ର ଆନନ୍ଦରୂପିଣୀ କନ୍ୟା ବର୍ହିଷ୍ମତୀ ନିର୍ଭୟରେ ଅଲୌକିକ କରି ଶୋଭା ପାଉଅଛି ।

ମହାରାଜ ମନୁ ମହାରାଣୀ ଶତରୂପାଙ୍କ ସହିତ ପୁତ୍ରକୁ ଘରକୁ ଫେରାଇ ନେବା ପାଇଁ ଗନ୍ଧମାଦନକୁ ଆସିଥିଲେ । ପଥରେ ବିଶ୍ୱକର୍ମାଙ୍କ ସହିତ ସାକ୍ଷାତ ହେଲା । ସେଠାରେ ବର୍ହିଷ୍ମତୀଙ୍କ ପାଣିବଧୂ କରିବେ ବୋଲି ମହାରାଣୀ ସ୍ଥିର କରି ଗଲେ । ପ୍ରିୟବ୍ରତ ପିତାମାତାଙ୍କୁ ଦର୍ଶନ କରି ସାଷ୍ଟାଙ୍ଗ ପ୍ରଣାମ କଲେ । ମନୁ ପୁତ୍ରକୁ ସଂସାରକୁ ଫେରାଇ ନେବାପାଇଁ ବହୁ ଆଦେଶ-ଉପଦେଶ-ପରାମର୍ଶରେ ବାକ୍ୟ ମିନତି ମଧ୍ୟ କଲେ । କିନ୍ତୁ କିଛି ଫଳୋଦୟ ହେଲା ନାହିଁ । ପ୍ରିୟବ୍ରତ ଅଟଳ ରହିଲେ । ବିଶ୍ୱକର୍ମା ମଧ୍ୟ ଏହିପରି ଚେଷ୍ଟା କରି ବ୍ୟର୍ଥମନୋରଥ ହେବାରୁ ମନୁ ଓ ବିଶ୍ୱକର୍ମା ବ୍ରହ୍ମାଙ୍କୁ ଆରା-ଧନା କଲେ । ବ୍ରହ୍ମା ଦେବଗଣଙ୍କ ସହ ସେଠାରେ ଉପସ୍ଥିତ ହେବାରୁ ମନୁ ପିତାଙ୍କୁ ସାଷ୍ଟାଙ୍ଗେ ପ୍ରଣିପାତ କଲେ । ବ୍ରହ୍ମା ପ୍ରିୟବ୍ରତଙ୍କୁ ନାନାପ୍ରକାର ପ୍ରବୋଧ ଦେଇ କହିଲେ, ସଂସାରରେ ରହି ସଂସାରୀ ହୋଇ ଯେ ହରି ସାଧନା କରିପାରେ, ସେ ପ୍ରକୃତ ସାର ଓ ସାଧକ । ସଂସାରଶ୍ରମ ପରିତ୍ୟାଗ ଯଦି ସମସ୍ତେ କରନ୍ତି ତେବେ ସୃଷ୍ଟି ବିଲୟ ହୋଇଯିବ । ଏହିପରି ଉପ-ଦେଶରେ ପ୍ରିୟବ୍ରତ ପୁନଃ ସଂସାରଶ୍ରମକୁ ଯିବାପାଇଁ ସ୍ୱୀକୃତ ହେଲେ । ତହୁଁ ବ୍ରହ୍ମା ବର୍ହିଷ୍ମତୀଙ୍କୁ ବିବାହ କରିବାପାଇଁ ପ୍ରିୟବ୍ରତଙ୍କୁ ଆଦେଶ କରି ସ୍ୱର୍ଗକୁ ଗଲେ । ଶୁଭଲଗ୍ନରେ ଶୁଭ ପରିଣୟ କ୍ରିୟା ସମ୍ପନ୍ନ ହେଲା ।

ପ୍ରିୟବ୍ରତ ରାଜା ହୋଇ ପରମ ସୁଖରେ ପ୍ରଜା ପାଳନ କଲେ । ରାଜ୍ୟମୟ ସର୍ବତ୍ର ଶାନ୍ତି ଓ ଶୃଙ୍ଖଳା ବିରାଜିତ ହେଲା । ମାତ୍ର ପ୍ରିୟବ୍ରତଙ୍କର ପୁତ୍ରାଦି କିଛି ନ ହେବାରୁ ବର୍ହିଷ୍ମତୀଙ୍କ ମନରେ ଦୁଃଖ । ତତ୍ପରେ ସେ ପତିଙ୍କୁ ବିବାହ କରାଇଲେ ସତ୍ୟ ମାତ୍ର ଫଳ କିଛି ହେଲା ନାହିଁ । ପରେ ପ୍ରଥମେ ବର୍ହିଷ୍ମତୀଙ୍କର ଅଗ୍ନୀଧ୍ର ନାମରେ ଏକ ପୁତ୍ର ଜାତ ହେଲା ଓ ଦ୍ୱିତୀୟ ପତ୍ନୀଙ୍କଠାରୁ ତାମସ, ରୈବତ ଓ ଉତ୍ତମ ତିନିପୁତ୍ର ଜାତ ହେଲେ । ପୁଣି କାଳକ୍ରମେ ସବନ, କବି, ମହାବୀର ଯଜ୍ଞବାହୁ, ଇଧ୍ମଜିହ୍ୱ, ଘୃତପୃଷ୍ଠ, ମେଧାତିଥି, ବୀତିହୋତ୍ର ଓ ହିରଣ୍ୟରେତା ନବପୁତ୍ର ଏବଂ ଊର୍ଜ୍ଜସ୍ୱତୀ ଓ ସୁରୂପା ନାମରେ ଦୁଇ କନ୍ୟା ଜାତ ହେଲେ । ପ୍ରଥମ ତିନିପୁତ୍ର ସଂସାରବିରାଗୀ ହୋଇ ତପସ୍ୟା କରିବାକୁ ଗଲେ । ସଂସାରର ସକଳ ପ୍ରକାର ସୁଖ ଭୋଗ କରି ବାର୍ଦ୍ଧକ୍ୟରେ ପ୍ରିୟବ୍ରତ ଓ ବର୍ହି-ଷ୍ମତୀ ବାନପ୍ରସ୍ଥାବଲମ୍ବନ କଲେ । ଶୁକ୍ରାଚାର୍ଯ୍ୟଙ୍କ ସହିତ ଊର୍ଜ୍ଜସ୍ୱତୀଙ୍କର ବିବାହ ହୋଇଥିଲା । ତାମସ, ରୈବତ ଓ ଉତ୍ତମ ବିଧି—ପ୍ରବର୍ତ୍ତନ କରି ମନୁ ନାମରେ ବିଖ୍ୟାତ ହେଲେ । ଜ୍ୟେଷ୍ଠପୁତ୍ର ଅଗ୍ନୀଧ୍ର ସମ୍ରାଟ୍ ହେଲେ ।

ବାହାରକୁ ଅନ୍ୱେଷଣ ନ କରେ ରତନ ।

# ଦୋହାବଳୀ

## ଗୁରୁ ନାନକ ।

"ସାଚ୍ଚା ସାହେବ, ସାଚ୍ ନାଁଇ ଭାଖିଆ ଭାଉ ଅପାର
ଆଖେ ମାଂଗହେ ଦେ ଦେ ଦାତ କରେ ଦାତାର
ଫେର କି ଅଗେ ରଖିଏ, ଜିତୁ ଦିସେ ଦରବାର ?
ମୁହଁ କି ବୋଲନ ବୋଲିଏ ଜିତୁ ସୁଣ ଧରେ ପିଆର,
ଅମୃତ ବେଲା ସଚ ନାଁଉ ବଡ଼ିଆଇ ବିଚାର
କରମୀ ଆବେ, କପଡ଼ା ନଦରୀ ମୋଖଦୁଆର ।
ନାନକ, ଏବେଁ ଜାଣିଏ ସଭ ଆପେ ସଚିଆର ।"

ପରମାତ୍ମା ସତ୍ୟ ସ୍ୱରୂପ, ତାହାଙ୍କର ନାମ ସତ୍ୟ ଏବଂ ତାହାଙ୍କର ନାମ ଅନନ୍ତ । ତାହାଙ୍କ ନିକଟରେ ଯେ ଯାହା ପ୍ରାର୍ଥନା କରୁଅଛି, ସେ ତାହା ପ୍ରାପ୍ତ ହେଉଅଛି, କୌଣସି ବିଷୟ ତାଙ୍କ ସମ୍ମୁଖରେ ରଖିଲେ, ଅର୍ଥାତ୍ କି କାର୍ଯ୍ୟ କଲେ ପରମାତ୍ମାଙ୍କର ସାକ୍ଷାତ ମିଳେ ? ଏହି ପ୍ରଶ୍ନର ଉତ୍ତରରେ ନାନକ କହୁଅଛନ୍ତି ଯେ, ପରମାତ୍ମାଙ୍କର ମହିମା ଯାହା ଶୁଣିବାକୁ ଭଲ ଲାଗେ, ତାହା ମୁଖରେ ବର୍ଣ୍ଣନା କରିବ, ଅତି ପ୍ରତ୍ୟୁଷରେ ତାହାଙ୍କର ସତ୍ୟ ନାମ ଓ ମହିମାର ବିଚାର କରିବ । କର୍ମ ଦ୍ୱାରା ଜୀବ ପଞ୍ଚଭୌତିକ ଶରୀର ଗ୍ରହଣ କରେ ଏବଂ ଜ୍ଞାନରୂପ ବସ୍ତୁକୁ ଲକ୍ଷ୍ୟ କରି ମୋକ୍ଷ ପ୍ରାପ୍ତ ହୁଏ, ଏହିପରି ଜ୍ଞାନ ପ୍ରାପ୍ତ ହେଲେ ମୁଁ ଅର୍ଥାତ୍ ଦ୍ରଷ୍ଟା ସତ୍ୟ ଏବଂ ଦୃଶ୍ୟ ମଧ୍ୟ ସତ୍ୟ ବୋଲି ବୋଧ ହୁଏ ।

"ତୀରଥ ନାଁବା, ଜେ ତିସୁ ଭାବା, ବିନ ଭାଣେ କି ନାଇ କରି ।
ଜେତୀ ସିରଠି ଉପାଇ ବେଖା, ବିନୁ କରମା କି ମିଲେ ଲଈ ।
ମତି ବିଚ ରତନ, ଜବାହାର ମାଣିକ,
ଜେ ଇକ ଗୁରକୀ ସିଖ ସୁଣୀ, ଗୁରା ଇକ ଦେହି ବୁଝାଇ ।
ସଭନ୍ ଜୀଆଁକା ଏକଦାତା, ସୋମେ ବିସରି ନ ଜାଇ ।"

ପରମାତ୍ମାଙ୍କର ମନନ ଭିନ୍ନ ଅମୃତରୂପୀ ତୀର୍ଥରେ କେହି ସ୍ନାନ କରିବାକୁ ସକ୍ଷମ ହୁଏ ନାହିଁ । ଅନୁଭବ ଭିନ୍ନ ସେହି ତୀର୍ଥ ଲାଭ କରିବାର ଅନ୍ୟ ଉପାୟ ନାହିଁ । ଯେତେ ପ୍ରକାର ଜୀବ ସୃଷ୍ଟି ହୋଇଅଛି, ସେମାନେ ଅତ୍ମକର୍ମ ଭିନ୍ନ ପରମାତ୍ମାଙ୍କ ସହିତ ମିଳିତ ହୋଇ ପାରନ୍ତି ନାହିଁ । ସକଳ ମନୁଷ୍ୟଙ୍କ ଭିତରେ ଜ୍ଞାନରୂପ ମଣିମାଣିକ୍ୟାଦି ବିରାଜ କରୁଅଛି, କିନ୍ତୁ ସଦ୍‌ଗୁରୁଙ୍କ କୃପାଦ୍ୱାରା ଜ୍ଞାନରୂପ ରତ୍ନାଦି ଲାଭ ହୁଏ । ନାନକ କହୁଛନ୍ତି ଯେ, ପରମାତ୍ମାଙ୍କର ଅନୁଭବ, ବାକ୍ୟ ଦ୍ୱାରା ବ୍ୟକ୍ତ କରିହୁଏ ନାହିଁ । ସଦ୍‌ଗୁରୁଙ୍କ କୃପାରେ ଜ୍ଞାନରୂପ ଦେହ ଲାଭ ହୁଏ । ପରମାତ୍ମା ଯେ, ସକଳ ଜୀବଙ୍କର ଏକମାତ୍ର ଦାତା, ତାହା କଦାପି ଭୁଲିବ ନାହିଁ ।

"ଭରିଏ ହଥ ପୈର ତନ ଦେହ,
ପାନୀ ଧୋତେ ଉତରସ୍ ଖେହ୍ ।
ମୂତ ପଲିତୀ କାପଡ଼୍ ହୋଇ,
ଦେ ସାବୁନ ଲଇଏ ଓହ୍ ଧୋଇ ।
ଭରିଏ ମତି ପାପ କେ ସଙ୍ଗ,
ଓହ୍ ଧୋପେ ନାବ କେ ରଙ୍ଗ ।
ପୁନୀ ପାପୀ ଆଖନ୍ ନାହ୍,
କର କର କରନା ଲିଖ ଲେ ଜାହ୍ ।
ଅପେ ବୀଜ ଅପେ ହି ଖାହ୍,
ନାନକ ହୁକମୀ ଆବେ ଜାହ୍ ।

ହସ୍ତ ପଦ ଏବଂ ଶରୀରରେ ମଇଳା ଲାଗିଲେ ଜଳରେ ଧୌତ କଲେ ତାହା ଦୂର ହୁଏ । ବିଷ୍ଠା ଏବଂ ମୂତ୍ର ଦ୍ୱାରା ଲୁଗା ମଳିନ ହେଲେ ସାବୁନରେ ଧୋଇଲେ, ସେମାନ ଧୌତ ହୋଇଥାଏ । ପାପ ଦ୍ୱାରା ଯଦି ମନ ପରିପୂର୍ଣ୍ଣ ହୁଏ, ଅର୍ଥାତ୍ ଅବିଦ୍ୟା ଦ୍ୱାରା ଯଦି ଲୋକେ ଭ୍ରମରେ ଆବୃତ ହୋଇ ଥାଆନ୍ତି, ତାହା ହେଲେ ପରମାତ୍ମାଙ୍କ ଦ୍ୱାରା, ଅର୍ଥାତ୍ ନାମରୂପୀ ଅନୁଭବ ଦ୍ୱାରା ମଳିନତା ରୂପ ଭ୍ରମ ଏବଂ ସଂଶୟ ଦୂର ହୁଏ । ପୁଣ୍ୟବାନ୍ ଏବଂ ପାପୀ ବୋଲି କୌଣସି ବ୍ୟକ୍ତି ନାହିଁ, ଅବିଦ୍ୟାର ଭ୍ରମରେ ପାପ ଓ ପୁଣ୍ୟ ବୋଲି ଦୁଇପ୍ରକାର ଭ୍ରାନ୍ତି ଦୃଷ୍ଟି ଗୋଚର ହୋଇଥାଏ । ଏହି ଭ୍ରମକୁ ଯେଉଁ ବ୍ୟକ୍ତି ନିଶ୍ଚୟ କରି ଗ୍ରହଣ କରେ ତାହା ନିକଟରେ ପାପ କିମ୍ବା ପୁଣ୍ୟ ବୋଲି ଗଣ୍ୟ ହୁଏ । ମାନବ ନିଜେ କର୍ମ କରିଥାଏ ଏବଂ ନିଜେ ମଧ୍ୟ କର୍ମର ଫଳ ଭୋଗ କରିଥାଏ । ନାନକ କହୁଅଛନ୍ତି ଯେ, ପରମାତ୍ମାର ଆଦେଶ ଅନୁସାରେ ଲୋକେ ସଂସାରରେ ଏହି ଭ୍ରାନ୍ତି ବଶତଃ ଯାତାୟାତ କରୁ ଅଛନ୍ତି ।



ତୀର୍ଥ କରନ୍ତି ସର୍ବେ ତାଙ୍କୁ ଅନ୍ୱେଷଣ ।

# ତୁଳସୀ ଦାସ ଓ କବୀର

## ଦୋହାବଳୀ ।

ତୁଳସୀ ଇହ ସଂସାର ମେ ପାଁଚ ରତନ ହୈଁ ସାର ।
ସାଧୁସଙ୍ଗ, ହରିକଥା, ଦୟା, ଦାନ, ଉପକାର ।

ହେ ତୁଳସି ! ଜଗତରେ ପାଚଟି ଅମୂଲ୍ୟ ରତ୍ନ ଅଛି । ଯଥା—ସାଧୁସଙ୍ଗ, ହରିକଥା, ଦୟା, ଦାନତା ଓ ପରର ଉପକାର ।

ତୁଳସୀ ଯବ ଜଗମେ ଅୟୋ ଜଗ ହାଁସେ ତୋମ୍ ରୋୟେ ।
ଏସୀ କରଣି କର ଚଲୋକ ତୋମ୍ ହାଁସ ଜଗ ରୋୟେ ॥

ହେ ତୁଳସି, ତୁମ୍ଭେ ଯେତେବେଳେ ଭୂମିଷ୍ଠ ହୋଇଥିଲ, ସେତେବେଳେ ତୁମ୍ଭଙ୍କୁ ଦେଖି ସମସ୍ତେ ହସିଥିଲେ । କିନ୍ତୁ ସେ ସମୟରେ ତୁମ୍ଭେ କ୍ରନ୍ଦନ କରିଥିଲ । ବର୍ତ୍ତମାନ ତୁମ୍ଭେ ଏହି ଯଶୋକୀର୍ତ୍ତି ରଖି ହସି ହସି ଗମନ କର ଯେ, ତୁମ୍ଭ ପାଇଁ ଯେପରି ସମସ୍ତେ ରୋଦନ କରୁଥିବେ ।

ଯାଁହା କାମ ତାଁହା ରାମ ନହିଁ ଯାଁହା ରାମ ତାହା ନହି କାମ
ଦୋନେ ଏକ ନହିଁ ମିଳେ ରବି ରଜନୀ ଏକ ଠାମ ॥

ଯେଉଁଠାରେ କାମ ( କାମନା ) ସେଠାରେ ରାମ ରହେ ନାହିଁ, ସେହିପରି ରାମ ଯେଉଁଠାରେ ଥାନ୍ତି ସେଠାରେ କାମ ( କାମନା ) ନାହିଁ । ଯେପରି ଦିବାନିଶି ଏକସ୍ଥାନରେ ରହିପାରେ ନାହିଁ ।

ଦେନେକୋ ଅନ୍ନଦାନ ହ୍ୟାୟ ଲେନେକୋ ସତ୍ୟନାମ ।
ତରନେ କୋ ହ୍ୟାୟ ଦୀନତା, ଡୁବନକୋ ଅଭିମାନ ॥

ଦାନ କରିବାକୁ ହେଲେ ଅନ୍ନଦାନ, କିନ୍ତୁ ଗ୍ରହଣ କରିବାକୁ ହେଲେ ଭଗବାନଙ୍କର ସତ୍ୟନାମ, ପରିତ୍ରାଣ ପାଇବାକୁ ହେଲେ ଦୀନତା ଓ ପାପପଙ୍କରେ ନିମଗ୍ନ ହେବାର ପକ୍ଷେ ମାନଅଭିମାନହିଁ ପ୍ରଧାନ ।

ତୁଳସୀ ତହିଁ ଯାଇୟେ ଯାଁହା ଅଦର ନା କରେ କୋଇ ।
ମାନ ଘାଟେ ମନ ମରେ ରାମକୋ ସ୍ମରଣ ହୋଇ ॥

ହେ ତୁଳସି, ତୁମ୍ଭେ ସେଠାକୁ ଯିବ, ଯେଉଁଠି କେହି ତୁମ୍ଭଙ୍କୁ ଅଦର କରନ୍ତି ନାହିଁ, କାହିଁକି ନା, ସେଥିରେ ମାନର ଲାଘବ ହେଲେ, ମନରେ ଅଘାତ ପାଇ ରାମଙ୍କ ସ୍ମରଣ ହେବ ।

ସୁଖମେ ସୁମିରଣ ନା କିୟା ଦୁଃଖମେ କିୟା ଯୋ ୟାଦ ।
କହେ କବିର ତା ଦାସକି କ୍ୟାଁଓ ଲାଗେ ଫରିୟାଦ ॥

ହେ କବିର ! ସୁଖଭୋଗ କାଳରେ ଭଗବାନଙ୍କୁ ସ୍ମରଣ ନ କରି ଯେଉଁ ବ୍ୟକ୍ତି ଦୁଃଖ ସମୟରେ ତାହାଙ୍କୁ ଚିନ୍ତାକରେ, ସେ ବ୍ୟକ୍ତି କିପରି ଭଗବାନଙ୍କ ନିକଟରୁ ଉପକାର ପାଇବାର ଦାବି କରିପାରେ ?

କବିର ପ୍ରେମ ନ ଖେତ ଉପଜେ ପ୍ରେମ ନ ହାଟ ବିକାୟ ।
ବିନା ପ୍ରେମକା ମାନୋୟା ବାନ୍ଧା ଯମପୁର ଯାୟ ॥

ହେ କବିର, ପ୍ରେମ କ୍ଷେତରେ ଉତ୍ପନ୍ନ ହୁଏ ନାହିଁ, ଏବଂ ପ୍ରେମ ବଜାରରେ ବିକାଯାଏ ନାହିଁ । ଯାହାର ପ୍ରେମ ନାହିଁ, ଯମଦୂତଗଣ ତାହାକୁ ବନ୍ଧନ ପୂର୍ବକ ନେଇଯାନ୍ତି ।

ଚଲୋ ଚଲେ ସବ କୋଇ କହେ ପହୁଞ୍ଚେ ବିରଲା କୋଇ ।
ଏକ କନକ ଅଓର କାମିନୀ ଦୁର୍ଗମ ଘାଟି ଦୋଇ ॥

ଈଶ୍ୱରଙ୍କ ନିକଟକୁ ଚାଲ ଚାଲ ବୋଲି ସମସ୍ତେ କହନ୍ତି, କିନ୍ତୁ ଅଳ୍ପଲୋକ ମାତ୍ର ପହଞ୍ଚନ୍ତି; କାରଣ କାମିନୀ କାଞ୍ଚନରୂପ ଦୁଇଟି ପ୍ରବଳ ଘାଟି ଅତିକ୍ରମ କରି ଗମନ କରିବା, ନିତାନ୍ତ ଅସାଧ୍ୟ ବ୍ୟାପାର ।

ସଦ୍‌ଗୁରୁ ପାଓୟେ ଭେଦ ବାତାଓୟେ ଜ୍ଞାନ କରେ ଉପଦେଶ
ତବ କୟଲା କ ମୟଲା ଛୁଟେ ଯବ ଅଗ କରେ ପରବେଶ ॥

ଅଙ୍ଗାର ମଧରେ ଅଗ୍ନି ପ୍ରବିଷ୍ଟ ହେଲେ ଯେପରି ମଳିନତା ଦୂରୀଭୂତ ହୋଇଥାଏ, ସେହିପରି ମାନବଗଣ ସଦ୍‌ଗୁରୁ କର୍ତ୍ତୃକ ଉପଦିଷ୍ଟ ହେଲେ ବ୍ରହ୍ମଜ୍ଞାନ ଲାଭ କରିପାରନ୍ତି ।

ବିପଦ୍ ବରବର ସୁଖ ନହିଁ ଯୋ ଥୋଡ଼ାଦିନ ହୋଇ ।
ଲୋକ ବନ୍ଧୁ ନୈଷତା ଜାନ ପଡ଼େ ସବ୍ କୋଇ ॥

ବିପଦ୍ ଯଦି ଅଳ୍ପକାଳସ୍ଥାୟୀ ହୁଏ, ତେବେ ତାହା ଅପେକ୍ଷା ସୁଖ ଅଛି ନାହିଁ । କାହିଁକି ନା, ବିପଦ୍‌କାଳେ ବନ୍ଧୁ-ବାନ୍ଧବ ଓ ଅପରିଚିତଲୋକଙ୍କୁ ବିଲକ୍ଷଣ ବୁଝେ ଚିହ୍ନି ପାରୁଯାଏ ।

ଗୁଣର ଆଦର ଖୋଜେ ନାହିଁ ଗୁଣୀନର ।

ରଜା ରାଜ୍ୟ ବଶ କରେ, ଶୂର କରେ ରଣ ଜୟ ।
ଆପଣା ମନକୋ ବଶ କରେ, ସଦ୍‌କ୍ସା ସେହି ହୋଇ ॥

ଯୋଦ୍ଧା ରଣେ ଜୟଲାଭ କରେ ଓ ରାଜା ରାଜ୍ୟ ବଶ କରେ, କିନ୍ତୁ ଆପଣାର ମନକୁ ଯେ ବଶୀଭୂତ କରିପାରନ୍ତି, ସେ ପ୍ରକୃତ ବୀର ।

ବକ୍ରା ମୋହିନୀ ସୁନ୍ଦରୀ ବାଘିନୀ ପଲକ୍ ପଲକ୍ ଲହୁ ଶୋଷେ
ଦୁନିଆ ସବୁ ବାଉରା ହୋଇକେ ଘର ଘର ବାଘିନୀ ପୋଷେ ॥

କାମିନୀଗଣ ମୋହିନୀରୂପରେ ବନରେ ଏବଂ ଘରରେ ବାଘୁଣୀ ପରି ପୁରୁଷଗଣଙ୍କର ଶୋଣିତ ଶୋଷଣ କରନ୍ତି, ତଥାପି ପୃଥିବୀର ଲୋକମାନେ ଏପରି ବାଉଳା ଯେ, ଘରେ ସେ ବାଘୁଣୀ ପୋଷିଥାନ୍ତି ।

ସତ ବରାବର ତପ ନହି, ଝୁଠ ବରାବର ପାପ ।
ଯା କେ ହିରଦେ ସାଚ ହୈ ତା କେ ହିରଦେ ଆପ ॥

ସତ୍ୟ ପରି ତପ ନାହିଁ, ମିଥ୍ୟା ତୁଲ୍ୟ ପାପ ନାହିଁ, ଅତଏବ ଯାହାର ହୃଦୟରେ ସତ୍ୟ ପ୍ରତିଷ୍ଠିତ, ତାହାର ହୃଦୟରେ ଆପଣ ( ଭଗବାନ ) ବିରାଜିତ ଥାନ୍ତି ।

ବୋଲ୍‌କେ ମୋଲ୍ ନହିଁ ଯୋ କହିନେ ଜାନେ ବୋଲ୍ ।
ହୃଦୟ ତରାଜୁ ତୌଲ୍‌କେ ତବହିଁ ବୋଲ୍‌କେ ଖୋଲ୍ ॥

କଥା ଯଦି କହି ପାରିବ, ତେବେ ସେ ବାକ୍ୟର ମୂଲ୍ୟ ନାହିଁ, ଅତଏବ ହୃଦୟରେ ଚିନ୍ତା କରି ବାକ୍ୟ ସକଳ ପ୍ରୟୋଗ କରିବ ।

ଅତି କା ଭଲା ନା ବୋଲନା ଅତି କା ଭଲା ନା ଚୁପ୍ ।
ଅତି କା ଭଲା ନା ବର୍ଷା ବାଦର, ଅତି କା ଭଲା ନା ଧୂପ୍ ॥

ଯେପରି ଅତି ବର୍ଷା ଏବଂ ଅତି ରୌଦ୍ର ଭଲ ନୁହେ ତଦ୍ରୂପ ଅଧିକ ଭାଷଣ ଓ ଅଧିକ ମୌନ ରହିବା କାହାର ପକ୍ଷରେ ଭଲ ନୁହେ ।

ଜାହାଁ ଦୟା ତାହାଁ ଧରମ ହୈ ଜାହାଁ ଲୋଭ ତାହାଁ ପାପ ।
ଜାହାଁ କ୍ରୋଧ ତାହାଁ କାଲ ହୈ ଜାହାଁ କ୍ଷମା ତାହାଁ ଆପ ॥

ଯେଉଁଠାରେ ଦୟା ସେଠାରେ ଧର୍ମ, ଯେଉଁଠାରେ ଲୋଭ ସେଠାରେ ପାପ, ଯେଉଁଠାରେ କ୍ରୋଧ ସେଠାରେ କାମ ଏବଂ ଯେଉଁଠାରେ କ୍ଷମା ସେହିଠାରେ ଭଗବାନ ବିରାଜିତ ।

କାନ୍ ଫୁଁକା ଗୁରୁ ହଦ୍‌କା ବେହଦ୍‌କା ଗୁରୁ ଔର ।
ବେହଦ୍‌କା ଗୁରୁ ଯବ ମିଲେ ତୋ ଲଗେ ଠିକନା ଠୌର ॥

କାନଫୁଙ୍କା ଗୁରୁ ସାମାନ୍ୟ, ଅସାମାନ୍ୟ ଗୁରୁ ଯେ, ସେ ଅନ୍ୟ ପ୍ରକାର, ସେହି ଅସାମାନ୍ୟ ଗୁରୁ ଯେବେ ମିଳେ ତେବେ ପରିତ୍ରାଣ ସ୍ଥିର ନିଶ୍ଚୟ ଜାଣ ।

ପଣ୍ଡିତ ଔର ମଶାଲଚି ଦୋନୋ ସୁଝେ ନାହି ।
ଅଉରଣ କୋ କରେ ଚାନ୍ଦନା ଆପ୍ ଅନ୍ଧାରେ ମାହି ॥

ପଣ୍ଡିତ ଆଉ ମଶାଲଚି ଏହି ଦୁଇଜଣ ଦେଖି ପାରନ୍ତି ନାହିଁ; କାହିଁକିନା, ଏମାନେ ଅପରଙ୍କୁ ଆଲୋକ ଦେଖାଇ ନିଜେ ଅନ୍ଧକାରରେ ଅବସ୍ଥାନ କରନ୍ତି ।

ଗୁରୁକୋ କୀଜୟେ ଦଣ୍ଡବତ୍ କୋଟି କୋଟି ପରଣାମ ।
କୀଟ ନା ଜାନେ ଭୃଙ୍ଗକୋ ଗୁରୁ କର୍‌ଲେ ଆପ୍ ସମାନ୍ ॥

ଗୁରୁଙ୍କୁ କୋଟି କୋଟି ଦଣ୍ଡବତ୍ ଓ ପ୍ରଣାମ କର । ସେ ତୁମ୍ଭଙ୍କୁ ନିଜ ପରି କରି ନେବେ । ଯେପରି ପୋକ ଭ୍ରମର କୀଟକୁ ଜାଣେ ନାହିଁ କିନ୍ତୁ, ଭ୍ରମର ପୋକକୁ ଦଂଶନ ପୂର୍ବକ ଆତ୍ମ-ତୁଲ୍ୟ କରି ନିଏ ।

କ୍ୟା ହିନ୍ଦୁ କ୍ୟା ମୁସଲମାନ କ୍ୟା ଇସାଇ ଜୈନ ।
ଗୁରୁଭକ୍ତି ପୂରଣ ବିନା କୈନା ପାଓୟେ ଚୈନ ॥

ହିନ୍ଦୁ, ମୁସଲମାନ, ଖ୍ରୀଷ୍ଟିୟାନ ଓ ଜୈନ ପ୍ରଭୃତି ସକଳ ଧର୍ମାବଲମ୍ବୀଲୋକମାନେ ଗୁରୁଭକ୍ତି ଲାଭ ବ୍ୟତୀତ କଦାପି ସୁଖୀ ହୋଇ ପାରନ୍ତି ନାହିଁ ।

ଭକ୍ତି ବୀଜ ବିନସେ ନହି ଆୟ ପଡ଼େ ଯୋ ଝୋଲ ।
କାଞ୍ଚନ ଯୋ ବିଷ୍ଟା ପଡ଼େ ଘଟେ ନା ତା କା ମୋଲ ॥

ଯେତେ ବିଘ୍ନ ଆସୁ ପ୍ରକୃତ ଭକ୍ତିବୀଜ କଦାପି ବ୍ୟର୍ଥ ହେବାର ନୁହେ, ତାହାର ଫଳ ଅବଶ୍ୟ ଫଳିବ । ସ୍ୱର୍ଣ୍ଣ ବିଷ୍ଟାରେ ପତିତ ହେଲେ ସୁଦ୍ଧା କଦାପି ତାହାର ମୂଲ୍ୟ ହ୍ରାସ ହୁଏ ନାହିଁ ।

ଖାୟା ପାକାୟା ଲୁଟାୟା ଦେ କରଲେ ଆପନା କାମ ।
ଚଲ୍‌ତି ବିରିୟା ରେନବ ସଙ୍ଗ ନା ଚଲେ ଛଦାମ ॥

ଖାଇ, ଖୁଆଇ, ବିତରଣ କରି, ଆପଣା କର୍ମ କରି ନିଅ । ହେ ମାନବଗଣ ! ଏହା ନିଶ୍ଚୟ ଜାଣି ଥାଅ ଯେ, ମୃତ୍ୟୁକାଳରେ ତୁମ୍ଭ ସଙ୍ଗରେ ଏକ କପର୍ଦ୍ଦକ ଯିବ ନାହିଁ ।

ନାମ ରତନ ଧନ ପାୟ କର ଗାଁଠି ବାଁଧ ନା ଖୋଲ ।
ନାହି ପଣ ନାହି ପାରଖୁ ନାହି ଗାହକ ନାହି ମୋଲ ॥

ନାମରତ୍ନ ମିଳିଲେ ପାଇଥାଅ. ତେବେ ଯତ୍ନପୂର୍ବକ ଗଣ୍ଠି ବନ୍ଧନ କରି ରଖିଦିଅ, ଖୋଲ ନାହିଁ । ସେ ଯେ ଅମୂଲ୍ୟଧନ, ତାହାର ପଣ ନାହିଁ, ପରୀକ୍ଷକ ନାହିଁ, ଗ୍ରାହକ ନାହିଁ ଏବଂ ମୂଲ୍ୟ ମଧ୍ୟ ନାହିଁ ।

ଘରମେ ରହେ ତୋ ଭକ୍ତି କର ନାତର କର ବୈରାଗ ।
ବୈରାଗୀ ହୋୟ ବନ୍ଧନ କରେ ତାକା ବଡ଼ା ଅଭାଗ ।

ଯଦି ଗୃହାଶ୍ରମରେ ରହ, ତେବେ ଭକ୍ତିକର, ନଚେତ୍ ବୈରାଗୀ ହୋଇ ଯେ ବ୍ୟକ୍ତି ମାୟାମୋହାଦିରେ ଅବଦ୍ଧ ହୁଏ, ସେ ଅତି ଦୁର୍ଭାଗ୍ୟ ପୁରୁଷ ।

ହାଡ଼ ଜ୍ୱଲେ ଯୈଁଓ ଲକଡ଼ି କେଶ ଜ୍ୱଲେ ଯୈଁଓ ଘାସ ।
ସବ ଜଗ ଜଲ୍‌ତା ଦେଖ୍‌କର ଭୟେ କବୀର ଉଦାସ ।

ମାନବ ଦେହ କ୍ଷଣଭଙ୍ଗୁର । ମନୁଷ୍ୟଗଣ ମରିଗଲେ, ଲୋକେ ସେମାନଙ୍କର ଅସ୍ଥି କାଷ୍ଠ ପରି ଏବଂ କେଶପାଶ ତୃଣ ପରି ଜ୍ୱଳାନ୍ତି ! ଏହା ଦେଖି ଶୁଣି କବୀର ଉଦାସ ହୋଇଛନ୍ତି ।

କୁଶଲ କୁଶଲ ହି ପୂଛତେ ଜଗମେ ରହା ନ କୋୟ ।
ଜରା ମୁଇ ନା ଭୟ୍ ମୁଆ କୁଶଲ କାଁହାସେ ହୋୟ ।

ତୁମ୍ଭେ ଭଲ ଅଛ, ତୁମ୍ଭେ ଭଲ ଅଛ ବୋଲି ସମସ୍ତେ ପଚାରନ୍ତି । କିନ୍ତୁ ଜଗତରେ ସର୍ବଦା ଜରା ମୃତ୍ୟୁଭୟ ରହିଅଛି, ସେଠାରେ କିପରି ଲୋକମାନେ ଭଲ ରହି-ପାରନ୍ତି ?

ତନ କୋ ଯୋଗୀ ସବ କୋଇ କରେ—
ମନ ଯୋଗୀ କରେନା କୋୟ ।
ସହଜେ ସବ ସିଧ ପାଇୟେ
ଯୋ ମନ ଯୋଗୀ ହୋୟ ।

ଶରୀରକୁ ସମସ୍ତେ ଯୋଗୀ ସଜାଇଥାନ୍ତି, କିନ୍ତୁ ମନକୁ କେହି ଯୋଗୀ କରନ୍ତି ନାହିଁ । ଯଦି ମନକୁ ଯୋଗୀ କରି ହୁଏ, ତାହାହେଲେ ସହଜରେ ସିଦ୍ଧିଲାଭ ହୁଏ ।

କବୀର ଜ୍ଞାନ ସମାଜନ୍ ପ୍ରେମସୁଖ୍, ଦୟା ଭକ୍ତି ବିଶ୍ୱାସ ।
ଗୁରୁ ସେବାତେ ପାଇୟେ, ସଦ୍‌ଗୁରୁ ଚରଣ ନିବାସ୍ ।

କବୀର ! ଅସ୍ୱଷ୍ଣନ ସମାନରୂପ ସ୍ଥିତହିଁ ପ୍ରେମର ସୁଖ । ଏହିପରି ନିଜେ ସୁଖୀ ହୋଇ ଅନ୍ୟମାନେ ଯହିଁରେ ସୁଖୀ ହୁଅନ୍ତି, ତଦ୍ ବିଷୟରେ ଯତ୍ନବାନ୍ ହେବାର ନାମ ଦୟା, ଏହିପରି ଦୟା କରି ଦେଖାଯାଏ ଯେ, ଗୁରୁବାକ୍ୟ ଦ୍ୱାରା ମୁଁ ସୁଖୀ ହୋଇଅଛି ଏବଂ ସୁଖୀ ହେଉଅଛି । ଏହା ଦ୍ୱାରା ଭକ୍ତି ବଢ଼ିଥାଏ । ଏହିପରି ଭକ୍ତି ବୃଦ୍ଧି ପାଇ ବିଶ୍ୱାସ ଉତ୍ପନ୍ନ ହୁଏ । ବିଶ୍ୱାସହିଁ ପ୍ରବଞ୍ଚନ ଏବଂ ପ୍ରବଞ୍ଚନ ମଧ୍ୟ ବ୍ରହ୍ମ । ଏହା ଅନୁସାର ଅନୁଗାମୀ ହେଲ ମାତ୍ରେ ବ୍ରହ୍ମଜ୍ଞାନ ଜନ୍ମେ ।

ଜନ ଜନ ସମ୍ପଳ ନ ଭଏୁ ଅପୁରର ପାଠନ ଘର ।
ଝୋଲ ପଡ଼େ ଦନ ଅଥୟେ, ସମ୍ବଳ କୀୟ ନ ଜାୟ ।

ଏପରି ମାନବ ଜୀବନ ଲାଭ କରି, ସମୟ ଥାଉଁ ଥାଉଁ ପରକାଳ ପାଇଁ କିଛି ସଞ୍ଚୟ ନ କଲ, ତାହା ହେଲେ ଜୀବନ-ସୂର୍ଯ୍ୟ ଅସ୍ତ ଯିବା ସମୟରେ ମଧ୍ୟ କିଛି ସଞ୍ଚୟ କରି ପାରିବ-ନାହିଁ ।

ଜେଠେ ଭୀତେ ସ୍ୱମରସ, ଭକସେତ କବନ୍ତୁଁ ନ ଭୂଖ ।
ଅନୁଭବ ଭାବ ନ ଦରସୈ, ତେ ନର ସୁଖ ନ ଦୁଃଖ ।

ଭକ୍ତି ରସରେ ଆପ୍ଲୁତ ବ୍ୟକ୍ତି କଦାପି ମଳିନ ବା ଅସୁସ୍ଥ ହୁଏ ନାହିଁ । ସେ ସର୍ବଦା ପ୍ରସନ୍ନ । ବାସନା ତାହାକୁ ସ୍ପର୍ଶ କରେ ନାହିଁ, ସୁଖ ଓ ଦୁଃଖରେ ତାହାର କୌଣସି ପରିବର୍ତ୍ତନ ନାହିଁ ।

ସାଧୁ ଭୟା ତୋ କ୍ୟା ଭୟା. ଜୋ ନହିଁ ବୋଲ ବିଚାର ।
ହତେ ପରାଇ ଆତ୍ମା, ଜୀଭ ଲିୟେ ତଲବାର ॥

ସତ୍ୟାସତ୍ୟ ବିଚାର କରି ଯେଉଁ ବ୍ୟକ୍ତି କଥା କହେ ନାହିଁ, ସେ ଯଦି ସାଧୁର ବେଶ ଧାରଣ କରେ, ସେଥିରେ କି ଲାଭ ? ତାହାର ଜିହ୍ୱାରୂପ ତରବାର ଦ୍ୱାରା ଅପରର ଆତ୍ମା ବିନଷ୍ଟ କରେ ।

ଜାକୋ ଗୁରୁହେଁ ଆଁଧାର, ଚେଲା କହା କରାୟ ।
ଅନ୍ଧେ ଅନ୍ଧ ଠେଲିୟା, ଦୋନୁ କୂପ ପରାୟ ॥

ଗୁରୁ ଯେଉଁମାନଙ୍କର ଅନ୍ଧ, ସେମାନଙ୍କର ଶିଷ୍ୟମାନେ କ'ଣ କରିବେ ? ଅନ୍ଧ ଅନ୍ଧକୁ ଠେଲି ଚାଲିତ ହୋଇ ଦୁହେଁ ମଧ୍ୟ କୂପରେ ପଡ଼ି ଥାଆନ୍ତି ।

ପୂରା ସାହବ ସେଇୟେ, ସବ ବିଧି ପୂରା ହୋଇ ।
ଓଛେ ନେହ ଲଗାଇୟେ, ମୂଲୌ ଆବୈ ଖୋଇ ॥

ଯେଉଁ ବ୍ୟକ୍ତି ସେହି ପୂର୍ଣ୍ଣ ପରମେଶ୍ୱରଙ୍କୁ ସେବିଥାଏ, ତାହାର ସମସ୍ତ କାମ ପୂର୍ଣ୍ଣ, କିନ୍ତୁ ଯାହାର ମନ ଅସାର

ବସ୍ତୁରେ ଅସକ୍ତ, ତାହାର ମୂଳ ପର୍ଯ୍ୟନ୍ତ ମଧ୍ୟ ବିନଷ୍ଟ ହୋଇଯାଏ ।

ଭକ୍ତି ପିପ୍ପାସା ସମକା, କୈସେ ପ୍ୟାସା ଅଗେ ।
ସାରି ବାସନ ଜରି ଗୟୀ, ଫିର ଲାଗୈ ମାଁଗି ॥

ଅଗ୍ନି ସ୍ପର୍ଶରେ ସମୁଦାୟ ଦେଶ ଧ୍ୱଂସ ହୋଇଗଲେ ମଧ୍ୟ ଲୋକେ ଯେପରି ଅଗ୍ନିର ବ୍ୟବହାର ତ୍ୟାଗ କରନ୍ତି ନାହିଁ, ସେହିପରି ଈଶ୍ୱର ଭକ୍ତି ଦ୍ୱାରା ସାଂସାରିକ ସୁଖର ବିଶେଷ ହାନି ହେଲେ ମଧ୍ୟ, ସାଧୁ ବ୍ୟକ୍ତିଗଣ ତାହାହିଁ ପ୍ରାର୍ଥନା କରିଥାନ୍ତି ।

ଶ୍ରୋତା ତୋ ଘରହୀ ନହୀ, ବକ୍ତାବଦୈ ସୋ ବାଦ ।
ଶ୍ରୋତାବକ୍ତା ଏକଘର, ତବ କଥନୀ କୋ ସ୍ୱାଦ ।

ଯେତେବେଳେ ଶ୍ରୋତା ନଥାନ୍ତି, ସେତେବେଳେ ସେହିସ୍ଥାନରେ ବକ୍ତାର ବକ୍ତୃତା ବୃଥା ହୁଏ । ଶ୍ରୋତା ଏବଂ ବକ୍ତା ଏକତ୍ର ହେଲେ ବକ୍ତୃତାର ଫଳ ହୋଇଥାଏ । ଅର୍ଥାତ୍ ଈଶ୍ୱର ଆମ୍ଭମାନଙ୍କ ଅନ୍ତରରେ ସର୍ବଦା କଥା କହୁଅଛନ୍ତି, କିନ୍ତୁ ଆମ୍ଭମାନଙ୍କର ମନ ଭିତରେ ନ ଥିବାରୁ ତାଙ୍କର ଉପଦେଶ ବୃଥା ନଷ୍ଟ ହେଉଅଛି । ମନ ଓ ଈଶ୍ୱର ଏକତ୍ର ହେଲେ ସେହି ଉପଦେଶ ଫଳ ହୁଏ ।

ଜୌଲୌଁ ତାର ଜଗମଗୈ, ଜୌଲୌଁ ଉଗୈ ନ ସୂର ।
ଜୌଲୌଁ ଜୀୟ ଜଗ କର୍ମବଶ, ଜୌଲୌଁ ଜ୍ଞାନ ନ ପୂର ।

ଯେ ପର୍ଯ୍ୟନ୍ତ ସୂର୍ଯ୍ୟ ଉଦୟ ହୋଇ ନ ଥାଏ, ସେ ପର୍ଯ୍ୟନ୍ତ ତାରମାଳା ଝିକ୍‌ମିକ୍ କରୁଥାନ୍ତି । ସେହିପରି ଯେ ପର୍ଯ୍ୟନ୍ତ ମାନବର ବ୍ରହ୍ମଜ୍ଞାନ ଅନ୍ତରରେ ପ୍ରକାଶିତ ହୋଇ ନ ଥାଏ, ସେ ପର୍ଯ୍ୟନ୍ତ ତାହାର ବିଷୟଜ୍ଞାନ କାର୍ଯ୍ୟକାରୀ ଥାଏ ।

ଜୈସୀ ଲଗି ଓରକୀ, ତୈସୀ ନିବହି ଓର ।
କୌଡ଼ୀ କୌଡ଼ୀ ଜୋରିକେ, ପୂଞ୍ଜୀ ଲକ୍ଷ କରୋର ॥

ପ୍ରଥମେ ହୃଦୟରେ ଯେତିକି ଧର୍ମଭାବର ବିକାଶ ହୁଏ, ସେତିକି ଅଳ୍ପ ଅଳ୍ପ କରି ଚିରଜୀବନ ବର୍ଦ୍ଧିତ କର । କଉଡ଼ିଏ କଉଡ଼ିଏ ସଞ୍ଚୟ କଲେ ଶେଷରେ ଲକ୍ଷ ମୁଦ୍ରା ହୋଇଥାଏ ।

ସାଧୁ ହୋନା ଚହହି ଜୋ, ପକ୍କାକେ ସଙ୍ଗ ଖେଲ ।
କାଚା ସର ଯୌ ପେରିକେ, ଖଲ ଭୟୀ ନହିଁ ତେଲ ।

ତେଲ ଅଥବା ପିଡୁଆ ପ୍ରସ୍ତୁତ କରିବାକୁ ହେଲେ କଞ୍ଚା ସୋରିଷରୁ ଯେପରି ତାହା ପ୍ରସ୍ତୁତ ହୁଏ ନାହିଁ (ପକ୍କା ସୋରିଷର ଆବଶ୍ୟକ ହୁଏ), ସାଧୁ ହେଉଁ ହେଉଁ ସେହିପରି ପୁପକ୍ୱ ଗୁରୁଗଣ ଦ୍ୱାରା ଜୀବ ପରିଚାଳିତ କରିବାକୁ ହୁଏ ।

ଜାକୀ ଜିହ୍ୱା ବନ୍ଧ ନହିଁ, ହୃଦୟା ସହିଁ ସାଁଚ ।
ତାକେ ସଙ୍ଗ ନ ଲାଗିୟେ, ଘାଲେ ବାଟିୟା କାଁଚ ॥

ଯାହାର ଜିହ୍ୱା ସଂଯତ ନୁହେ ଏବଂ ହୃଦୟ ସତ୍ୟ ନୁହେ, ତାହାକୁ ସଙ୍ଗୀ କର ନାହିଁ, କାରଣ, ସେ ତୁମ୍ଭଙ୍କୁ ମନ୍ଦ ପଥରେ ନେଇଯିବ ।

ହୀରା ପରା ବଜାରମେ, ରହା ଛାର ଲପଟାୟ ।
ବହୁତକ ମୂରଖ ଚଲିଗୟେ, ପାରଖ ଲୟା ଉଠାୟ ॥

ବଜାରରେ ଧୂଳିରାଶି ମଧ୍ୟରେ ହୀରକଖଣ୍ଡ ପଡ଼ି ରହିଅଛି । ସହସ୍ର ସହସ୍ର ମୂର୍ଖ ଯାତାୟାତ କରୁଅଛନ୍ତି, କିନ୍ତୁ ଯେଉଁ ବ୍ୟକ୍ତି ଜହୁରୀ, ସେ ତାହା ଉଠାଇ ନିଏ ।

ସ୍ୱପନେ ସୋୟା ମାନବା, ଖୋଲି ଦେଖୈ ଜୋ ନୈ ।
ଜୀବ ପରା ବହୁ ଲୂଟ ମେଁ, ନ କଛୁ ଲେନ ନ ଦେନ ॥

ମାନବ ମୋହ ନିଦ୍ରାରେ ଅଚେତନ ଥାଇ ସ୍ୱପ୍ନରେ ଦିନ ଅତିବାହିତ କରୁଅଛି । ଯେବେ ଥରେ ନୟନ ଉନ୍ମୀଳନ କରେ, ସେ ତେବେ ଦେଖେ ଯେ, ତାହାର ଜୀବନ ଅତି ଅକିଞ୍ଚିତ୍କର କାର୍ଯ୍ୟରେ ପଡ଼ି ରହିଅଛି, ଏବଂ ସେଥିରେ ସେ କୌଣସି ପ୍ରକାର ଉପକୃତ ହୋଇ ପାରୁନାହିଁ ।

ମାୟା ତ୍ୟାଗେ କ୍ୟା ଭୟା, ମାନ ତ୍ୟାଜା ନହିଁ ଜାୟ ।
ଜେହି ମାନେ ମୁନିବର ଠଗେ, ମାନ ସବନ କୋ ଖାୟ ॥

କେବଳ ମାୟା ତ୍ୟାଗ କଲେ କ'ଣ ହେବ, ଯଦି ମାନ (ପଦମର୍ଯ୍ୟାଦା) ତ୍ୟାଗ କରା ନ ଯାଏ । ଯେଉଁ ମାନରେ କେତେ ମୁନିଋଷିଙ୍କର ମଧ୍ୟ ପତନ ହୋଇଅଛି, ସେହି ମାନ ସମସ୍ତଙ୍କୁ ବିନଷ୍ଟ କରୁଅଛି ।

ଲୋହେକୀ ନାବରୀ, ପାହନ ଗରୁୟା ଭାର ।
ଶିରମେଁ ବିଷକୀ ମୋଟରୀ, ଉତରଣ୍ ଚହେ ପାର ॥

ସେହିପରି ସ୍ଥୂଳଭାବ ବିଶିଷ୍ଟ ଦେହ-ତରୀରେ ମନ ପ୍ରସ୍ତର ବୋଝାଇ କରି ଏବଂ ବିଷୟ-ବିଷର ଭାର ମସ୍ତକରେ ନେଇ ଜୀବବୃନ୍ଦ କୌଣସି ଭରସାରେ ଧରାର୍ ସାଗରର ପାରି ହେବାକୁ ଇଚ୍ଛାକରନ୍ତି ।

ଜନାଙ୍ଗବାଦରୁ କେବେ ନ ମିଳେ ନିସ୍ତାର ।

ଯାବତ ନେତ୍ର ଉନମତ୍ତ, ଭୂତ ସମ ଅସ୍ମାନ ।
ସବ ଦୁନିଆଁ ବୈଷ୍ଣବ ଭଇ, ଗୁରୁ ନ ଲଟଗ୍ୟା କାନ ॥

ଶ୍ରାବଣମାସର ବାଉଦନ୍ଦୁ ଅକାଶରେ ରହିଗଲେ ଅର୍ଥାତ୍ ବର୍ଷଣ ନ ହେଲେ ଯେପରି ତାହାଦ୍ୱାରା କୌଣସିଫଳ ହୁଏ ନାହିଁ, ସେହିପରି ଉପଦେଶ ସବୁ କେବଳ ଶୁଣି ଯେବେ ହୃଦୟକୁ ସ୍ପର୍ଶ ନ କରେ, ତେବେ ସେଥିରେ ଧର୍ମ-ସମାଜଭୁକ୍ତ ହୋଇ ପାରନ୍ତି, କିନ୍ତୁ ସଦ୍‌ଗୁରୁଙ୍କର (ଈଶ୍ୱରଙ୍କର) ସାକ୍ଷାତ୍ ମିଳେ ନାହିଁ ।

ଖଙ୍କ ଖଙ୍କ ଲେଁ ଦଙ୍କ ହ୍ୱୈ, ନଦସ୍ତ ଅସ୍ତ ଲୌ ରାଜ ।
ଭକ୍ତି ମହାତମ ନା ତୁଲୈ, ଏ ସବ କୌନେ କାଜ ॥

ଯଦି ଧନର ସଂଖ୍ୟା ଖଙ୍କ, ନିଖଙ୍କ ପରିମାଣ ହୁଏ ଏବଂ ଉଦୟାସ୍ତ ବ୍ୟାପୀ ସମୁଦାୟ ପୃଥିବୀ ରାଜତ୍ୱ ହୁଏ, ତଥାପି ମଧ୍ୟ ତାହା ଭକ୍ତି ମାହାତ୍ମ୍ୟର ତୁଳନାରେ କିଛି ନୁହେ । ତେବେ ଏହି ( ଅସାର ) ଧନରେ କି ପ୍ରୟୋଜନ ?



# ମହାଜନ ଉକ୍ତି ।

୧—ଯେଉଁ କଣ୍ଠରୁ କାତରର ନିମିତ୍ତ କାତରୋକ୍ତି ନିଃସୃତ ନ ହେଲା ସେ କଣ୍ଠ ରୁଦ୍ଧ ହେଉ । ଯେଉଁ ଲେଖନୀ ଅନ୍ୟର ଉପକାର ନିମନ୍ତେ ନ ଲେଖିଲା ସେ ଲେଖନୀ ନିଷ୍ଫଳ ହେଉ । ବଙ୍କିମ ଚନ୍ଦ୍ର

୨—ହଠାତ୍ ବଡ଼ଲୋକ ହେବା ବାସନାରେ ଅସମ୍ଭବ ଲାଭ ନିମନ୍ତେ ବ୍ୟସ୍ତ ହେବ ନାହିଁ । ସଚ୍ଚୋଟରେ କ୍ରମେ କ୍ରମେ ଲାଭ କରିବାହିଁ ସ୍ୱାଭାବିକ ।
ଲର୍ଡ଼ ଚେଷ୍ଟାର ଫିଲଡ

୩—ବାଗ୍ମିତା ଗୋଟିଏ ମହାଶକ୍ତି । ବକ୍ତୃତା ଜାତିକୁ କର୍ମ ପ୍ରବୃତ୍ତି ଦିଏ ଓ ମନୁଷ୍ୟକୁ ସାହସୀ କରେ । ଏହି ବାଗ୍ମିତା ମଧ୍ୟ ଦେଶର ଧ୍ୱଂସର କାରଣ ।
ଲିନ୍‌କ ଲନ

୪—ମନୁଷ୍ୟ ଯାହା ପାଇବାର କାମନା କରେ, ତତ୍‌କ୍ଷଣାତ୍ ତାହା ପାଇଥାଏ, ଏହା ହେଲା ଧନର କାର୍ଯ୍ୟ, କିନ୍ତୁ ମନୁଷ୍ୟର କୌଣସି କ୍ଷମତାର ପରିଚାୟକ ନୁହେ । ମାତ୍ର ଧନର ଅଭାବରେ ମଣିଷ ଯାହା ଇଚ୍ଛା ତାହା ପ୍ରାପ୍ତ ହେବ, ଏପରି କରି ପାରିବାର ନାମ କ୍ଷମତା । ପ୍ରଚୁର ଅର୍ଥ ଥିଲେ ନ ସବୁ ମିଳିଯିବେ କିନ୍ତୁ ଅର୍ଥର ଅଭାବରେ କୌଣସି କାର୍ଯ୍ୟ କରି ବାସନା ପୂରଣ କରିବା ବାହାଦୁରୀ ।
ଜର୍ଜ ମ୍ୟାକଡୋନଲ୍ଡ

୫—ଯେଉଁ କାର୍ଯ୍ୟ ସମ୍ବନ୍ଧ କହି ପାରିବ ନାହିଁ, ସେପରି କାର୍ଯ୍ୟରେ ହସ୍ତକ୍ଷେପ ମଧ୍ୟ କରିବ ନାହିଁ । ଯାହା ସ୍ୱୀକାର କରିବ, ତାହା ସମ୍ପନ୍ନ କରିବ ।
ଜର୍ଜ ଓ୍ୱାସିଂଟନ

୬—ପାର୍ଶ୍ୱସ୍ଥ ପ୍ରକୋଷ୍ଠରେ ଠିକ ବାସନ ବର୍ତ୍ତନ ଭଙ୍ଗାର ଶବ୍ଦ ପରି ଶିଶୁମାନଙ୍କର କ୍ରନ୍ଦନ ସହ୍ୟ କରିବାର ଶକ୍ତି ଯେଉଁମାନଙ୍କର ନାହିଁ, ସେମାନଙ୍କର ବିବାହ କରିବା ଉଚିତ ନୁହେଁ ।
ଡ଼ଜନ୍‌ସନ୍

୭—ଅପଣାର ଚତୁର୍ଦ୍ଦିଗରେ ବେଦନା ନୁହେଁ,—ଆନନ୍ଦ କୋଣ୍ଡି କରିବାର ଯେଉଁ ଇଚ୍ଛା, ତାହା ଅପେକ୍ଷା ଅମ୍ଭମାନଙ୍କର ଦେହ ଏବଂ ଚେହେରାକୁ ଅଧିକ ପରିମାଣରେ ସୁନ୍ଦର କରିପାରେ ଏପରି କିଛିନାହିଁ ।
ଆର. ଡବ୍ଲିଉ. ଇମାର୍ସନ

୮—ଜୀବନର କଠୋର ଅଗ୍ନିପରୀକ୍ଷାରେ ଏହି ଶିକ୍ଷା ହୁଏ ଯେ, ହିଂସା ଦ୍ୱେଷ ପ୍ରଭୃତିରେ ମନୁଷ୍ୟ ପଶୁରୂପେ ପରିବର୍ତ୍ତିତ ହୋଇଯାଏ, କିନ୍ତୁ ପ୍ରେମ ଓ ସ୍ନେହ ହିଁ ମନୁଷ୍ୟକୁ ମହତ୍ କରେ ଏବଂ ଦେବତାରୂପେ ପରିବର୍ତ୍ତିତ କରିପାରେ ।
ଶଶିଭୂଷଣ ।

୯—ଲୋକର ଅଜ୍ଞାତସାରରେ ସଂସାରରେ ନିଜର କର୍ତ୍ତବ୍ୟ କାର୍ଯ୍ୟ ସମ୍ପନ୍ନ କରି ନିର୍ଜନରେ ଜୀବନ ଯାପନ କର, ଲୋକେ ଜାଣି ପାରିବେ ନାହିଁ ଯେ, ମୁଁ ଗୋଟିଏ ଲୋକ ସଂସାରରେ ବାସ କରୁଅଛି । ଏଥିରେ ଏକା ଶାନ୍ତି ମିଳିଯାରେ ।
ଶଶିଭୂଷଣ ।

୧୦—ଦୁଃଖୀ ଶିଶୁକୁ ଆନନ୍ଦିତ କଲେ ସ୍ୱର୍ଗରେ ଆନନ୍ଦଧ୍ୱନି ଉତ୍ଥିତ ହୁଏ । ଅନାଥ ଶିଶୁକୁ ଗୃହକୁ ଆନୟନ କଲେ ସ୍ୱର୍ଗରାଜ୍ୟ ପ୍ରତିଷ୍ଠିତ ହୁଏ ।
ମିସ୍ ଫିଲଡ ।

୧୧—ଶିଶୁମାନେହିଁ ସ୍ୱର୍ଗ ମାନବ । ଶିଶୁମାନେ ହିଁ ଭବିଷ୍ୟତ ବଂଶ ଓ ଜାତିର ଆଶା ।

ଓୟର୍ଡ଼ସ୍ୱାର୍ଥ ।

୧୨—ଅଯତ୍ନପାଳିତ ବାଳକମାନେ ପରେ ଜାତିର ପାପସ୍ତର ବୃଦ୍ଧି କରିଥାନ୍ତି ।

ବିଲାତରେ ଜଣେକ କାରାଗାର ପରିଦର୍ଶକ ।

୧୩—ପିତୃତ୍ୱ ଓ ମାତୃତ୍ୱ ପରି ଜୀବନରେ କୌଣସି କାର୍ଯ୍ୟ ଏତେ ମହାନ୍, ଏତେ ସୁନ୍ଦର, ଏତେ ହିତକର ନୁହେଁ । ଏହି ପିତୃତ୍ୱ, ମାତୃତ୍ୱ ବୋଧରେ ଅନନ୍ତ ଓ ଶାନ୍ତିର ମିଳନ ହୁଏ । ମାତା, ପିତା ସନ୍ତାନ ସକାଶେ ପରମେଶ୍ୱରଙ୍କ ନିକଟରେ ଦାୟୀ ।

ଶ୍ରୀମତୀ କେଲ୍‌ଜ ।

୧୪—ହେ ଦେବଶିଶୁ, ହେ ସ୍ୱର୍ଗର ଆନନ୍ଦ । ତୁମ୍ଭର ସାନ୍ନିଧ୍ୟନରେ ଜଗତର ଅନାଗତ କଲ୍ୟାଣ ପାଠ କରୁଅଛି ।

ଏମାରସନ ।

୧୫—ମୃତ ପ୍ରତି ସମ୍ମାନ ଏବଂ ଶିଶୁମାନଙ୍କ ପ୍ରତି ଯତ୍ନ ଦ୍ୱାରା ଜାତିର ମହତ୍ତ୍ୱ ଜଣା ଯାଇଥାଏ ।

ରେଭରେଣ୍ଡ ମ୍ୟାକ୍ସର ମ୍ୟାନ ।

୧୬—ଯେଉଁ ନଗରରେ ସ୍ୱାସ୍ଥ୍ୟବାନ୍ ପିତା ଓ କ୍ଲେଶସହ ମାତା ବାସ କରନ୍ତି ସେହି ନଗରହିଁ ସର୍ବଶ୍ରେଷ୍ଠ ।

ହ୍ୱାଇଟ୍‌ମେନ

୧୭—ମନର ଚଞ୍ଚଳତାରୁ ସକଳ ଅନର୍ଥର ଉତ୍ପତ୍ତି, ପ୍ରଥମତଃ ନିଜର ଶରୀରକୁ ଇଚ୍ଛାନୁରୂପ ବଶ କରି ପାରିଲେ କ୍ରମଶଃ ମନ ମଧ୍ୟ ବଶୀଭୂତ ହୁଏ ଏବଂ ପୁନଃ ପୁନଃ ବୈରାଗ୍ୟ ଓ ଈଶ୍ୱର ଅଭ୍ୟାସ ଦ୍ୱାରା ମନର ଚଞ୍ଚଳତା ନଷ୍ଟ ହୁଏ । ଅଜ୍ଞାତ ।

୧୮—ଆତ୍ମଜ୍ଞାନ, ଆତ୍ମସଂଯମ ଓ ଆତ୍ମସମ୍ମାନ ଯାହାର ଅଛି, ସେ ସମ୍ରାଟ୍ ପରି କ୍ଷମତାଶାଳୀ ।

ଟେନିସନ ।

୧୯—ଜଗତରେ ଏପରି ଗ୍ରନ୍ଥକାର କିଏ ? ଯେ ନାରୀର ଚକ୍ଷୁ ଅପେକ୍ଷା ସୌନ୍ଦର୍ଯ୍ୟ ଶିକ୍ଷା ଦେଇ ପାରନ୍ତି ।

ସେକ୍ସପିଅର

୨୦—ପ୍ରତ୍ୟେକ ବଡ଼ ବ୍ୟାପାର ମୂଳରେ ସ୍ତ୍ରୀଲୋକ ବିଦ୍ୟମାନ

ଡ଼ି ଲାମାର୍ଟାଇନ୍

୨୧—ସୁନ୍ଦରୀ ରମଣୀ ରତ୍ନସ୍ୱରୂପା । ସତୀ ରମଣୀ ଅମୂଲ୍ୟ ଧନାଗାର । ସାନିଡ

୨୨—ଟିକିଏ ଗାମ୍ଭୀର୍ଯ୍ୟର ଅଭାବରେ ମନୁଷ୍ୟ ଅନେକ ସ୍ଥଳରେ ଅପମାନିତ ହୁଏ ।

ଅଜ୍ଞାତ

୨୩—ଟଙ୍କା ଓ ସମୟ ଉଭୟ ମୂଲ୍ୟବାନ୍ । ଟଙ୍କା ଚୋରି କଲେ ପାପ ହୁଏ । ସେହିପରି କାହାର ସମୟ ନଷ୍ଟ କରିବା ମଧ୍ୟ ପାପ । ଅଜ୍ଞାତ

୨୪—ସମସ୍ତଙ୍କ କଥା ଶୁଣିବ ମାତ୍ର କାହାରିକୁ କିଛି କହିବ ନାହିଁ ।

ସେକ୍ସପିଅର ।

୨୫—ଅପର ସମ୍ମାନ କଦାପି ନଷ୍ଟ କରନାହିଁ । ନିଜର ମାନ ମଧ୍ୟ ଠିକ୍ ସେହିପରି କାହାଦ୍ୱାରା ନଷ୍ଟ ହେବ ।

ଅଜ୍ଞାତ ।

୨୬—ଯେ ଜନ ଈଶ୍ୱର ବିଶ୍ୱାସୀ, ନରହେ ସେହି ଉପବାସୀ ।

ଫକୀରମୋହନ ।

୨୭—ପ୍ରବଳର ଆରକ୍ତ ଚକ୍ଷୁ ଅପେକ୍ଷା ଦୁର୍ବଳ, ଦୀନହୀନର ଅଶ୍ରୁଜଳ ପ୍ରକୃତରେ ଭୟାନକ । ଦୀନର ଦୁଃଖ ମୋଚନରେ ପ୍ରାଣ ଗଲେ ସୁଦ୍ଧା ଗୌରବ ଅଛି ।

ଅଜ୍ଞାତ ।

୨୮—ମନୁଷ୍ୟର ସୌଭାଗ୍ୟ ତାହାର ନିଜ ହାତରେ । ଉଦ୍ୟୋଗୀ ହେଲେ ସମସ୍ତ ଜନ୍ମନକ୍ଷତ୍ର ତୁମ୍ଭର ଅନୁକୂଳ ହେବ-ନିଜର ସୌଭାଗ୍ୟ ନିଜେ ଫେରାଇ ପାରିବ ।

ଅଜ୍ଞାତ ।

୨୯—ସନ୍ତାନ ସଦ୍‌ବଂଶରେ ଜାତ ହେଲେ ଇହଲୋକ ଓ ପରଲୋକରେ ମଙ୍ଗଳର କାରଣ ହୁଏ ।

କାଳିଦାସ ।

୩୦—ପୂଜ୍ୟ ବ୍ୟକ୍ତିମାନଙ୍କର ପୂଜାର ବ୍ୟତିକ୍ରମ ହେଲେ ମଙ୍ଗଳପଥରେ ବାଧା ଘଟିଥାଏ ।

କାଳିଦାସ

ଚନ୍ଦ୍ରର କଳଙ୍କରୂପେ କଟର ଆରୋପିତ ।

୩୧—ଅଳ୍ପ ବିଦ୍ୟା ଭୟଙ୍କରୀ ।  ପୋପ ।

୩୨—ଦୋଷୀର ମନ ସନ୍ଦେହପୂର୍ଣ୍ଣ ।  ସେକ୍ସପିଅର ।

୩୩—ଚରିତ୍ର ଜୀବନର ସମ୍ମାନ ଓ ରାଜମୁକୁଟ ।  ସ୍ମାଇଲ୍ସ ।

୩୪—କୃତ୍ରିମ ମିତ୍ର ଅପେକ୍ଷା ଅକୃତ୍ରିମ ଶତ୍ରୁ ଭଲ ।  କାଉପର ।

୩୫—ଜ୍ଞାନହିଁ ଶକ୍ତି, କିନ୍ତୁ ଚରିତ୍ର ଜ୍ଞାନଠାରୁ ଅଧିକ ଶକ୍ତିମାନ୍ ।  ସ୍ମାଇଲ୍ସ ।

୩୬—ବୃକ୍ଷକୁ ତରୁଣ ଓ କୋମଳ ଅବସ୍ଥାରେ ଯେତେବେ ସଳଖ ଭାବରେ ବଢ଼ିବାକୁ ଦିଆ ନ ଯାଏ, ବୃଦ୍ଧ ଓ କଠିନ ହୋଇଗଲେ ତାହାକୁ ଅଉ ସିଧା କରାଯାଇ ପାରେ ନାହିଁ ।  ଅଜ୍ଞାତ ।

୩୭—ହୃଦୟହୀନ ମନ, ଚରିତ୍ରହୀନ ଜ୍ଞାନ, ସାଧୁତାହୀନ ଚତୁରତା—ଯଥାସ୍ଥାନରେ ଶକ୍ତିଶାଳୀ; କିନ୍ତୁ ସେହି ଶକ୍ତିଗୁଡ଼ିକ ଅନିଷ୍ଟର ପ୍ରସୂତି ।  ସ୍ମାଇଲ୍ସ ।

୩୮—ସାଧୁତା, ପ୍ରଫୁଲ୍ଲତା ଓ ପ୍ରତ୍ୟୁତ୍ପନ୍ନମତିତା—ସୁବିବେଚିତ-କାର୍ଯ୍ୟର କଷ୍ଟିପଥର ଅଟେ ।  ରସ୍କିନ୍ ।

୩୯—ଉପଦେଶର ସଦ୍‌ବ୍ୟବହାରହିଁ ସୁଖକର । ତଦ୍ଦ୍ୱାରା ମନୁଷ୍ୟର ଶକ୍ତି ଏବଂ ସାମର୍ଥ୍ୟର ବିକାଶ ପାଏ ।  ସ୍ମାଇଲସ୍ ।

୪୦(କ)—ଶିକ୍ଷାର ମହତ୍ ଉଦ୍ଦେଶ୍ୟ ଏହି ଯେ ତାହା ଯୁବକକୁ କ୍ରମଶଃ ନିଜେ ନିଜର ପ୍ରଭୁ ହେବାପାଇଁ ଅଭ୍ୟସ୍ତ କରିବ ।  ଏସ୍. ସ୍ମିଥ ।

(ଖ) କୃତଜ୍ଞ ହେବା ପୂର୍ବରୁ ନ୍ୟାୟପରାୟଣ ହେବା ଆମ୍ଭମାନଙ୍କର ଉଚିତ ।  ଗୋଲ୍ଡ ସ୍ମିଥ ।

୪୧—ଯେଉଁମାନଙ୍କ ସମ୍ବନ୍ଧରେ ଆମ୍ଭମାନଙ୍କର କୌଣସି ଜ୍ଞାନ ନାହିଁ ସେମାନଙ୍କୁ ଆମ୍ଭେମାନେ ଘୃଣାକରୁଁ ଏବଂ ଘୃଣାକରୁଁ ବୋଲି ସେମାନଙ୍କୁ ଜାଣିବାକୁ ଯତ୍ନ ନାହିଁ ।  କଲ୍‌ଟନ୍ ।

୪୨—ମନ ସ୍ୱସ୍ଥାନରେ ଶକ୍ତିଶାଳୀ ଏବଂ ଏହା ନିଜେ ନିଜ-ମଧ୍ୟରେ ନରକରେ ସ୍ୱର୍ଗ ଓ ସ୍ୱର୍ଗରେ ନରକ ସୃଷ୍ଟିକରେ ।  ଅଜ୍ଞାତ ।

୪୩—ନିରୀହ ଓ ଶାନ୍ତମନସ୍କ ମନ ପକ୍ଷରେ ପ୍ରସ୍ତର ନିର୍ମିତ କାରାଗାର କାରାଗାର ନୁହେ ଏବଂ ଲୌହ ନିର୍ମିତ ପଞ୍ଜୁରୀ ପଞ୍ଜୁରୀ ନୁହେ, ମାତ୍ର ତପୋବନ ସ୍ୱରୂପ ।  ଲଭ୍‌ଲେସ୍ ।

୪୪—ଯେ ଈଶ୍ୱର ସୃଷ୍ଟ କ୍ଷୁଦ୍ର ବୃହତ୍ ସମସ୍ତଙ୍କୁ ସ୍ନେହଚକ୍ଷୁରେ ଦେଖେ ସେ ଈଶ୍ୱରଙ୍କୁ ସମସ୍ତଙ୍କଠାରୁ ଅଧିକ ଆରାଧନା କରେ ।  କଲେରିଜ୍ ।

୪୫—ପ୍ରକୃତ ମହତ୍ତ୍ୱ କେବଳ ପତନବର୍ଜ୍ଜନ ଉତ୍ଥାନରେ ନିବଦ୍ଧ ନୁହେ, ୧ଥର ତାହା ପ୍ରତିଥର ପତନ ପରେ ଉତ୍ଥାନରେହିଁ ନିହିତ ।  ଅଜ୍ଞାତ ।

୪୬—ସହ୍ୟକର; ଯେ ସହ୍ୟ କରିପାରେ, ସେ ସମସ୍ତଙ୍କର ସ୍ନେହ ଓ ଆଦରର—ସମ୍ମାନପାତ୍ର ।  ଅଜ୍ଞାତ ।

୪୭—ବ୍ୟବହାରରେ ଭଦ୍ରତାର ପରିଚୟ ମିଳେ ।  ଅଜ୍ଞାତ ।

୪୮—କାମିନୀ ଓ କାଞ୍ଚନ ନରକର ଦ୍ୱାର ।  ଅଜ୍ଞାତ ।

୪୯—କର୍ତ୍ତବ୍ୟ ଈଶ୍ୱର ସେବା—କର୍ତ୍ତବ୍ୟ ଈଶ୍ୱର—  ସଚ୍ଚିଦାନନ୍ଦ ।

୫୦—ହିଂସାପ୍ରଣୋଦିତ ତରବାରିର ଜୟ—ଜୟ ନୁହେ ।  ମଧୁସୂଦନ ।

୫୧—ଏ ଜୀବନ ବୀଣାର ଝଙ୍କାର ତୁଲ୍ୟ ।  ମଧୁସୂଦନ ।

୫୨—ପ୍ରକୃତ ଯୋଗ୍ୟତା ଅର୍ଜ୍ଜନ କରିବାକୁ ସମ ଲୋକେ ପୃଥିବୀରେ ଅତି କମ ।  ରାଧାନାଥ

୫୩—ସ୍ନେହ ଥିଲେ ଅନିଷ୍ଟ ଶଙ୍କା ହୁଏ । ଧନ ଜନ ପରିବାରାଦି ସ୍ୱାତନ୍ତ୍ର୍ୟବିରୋଧୀ ଅଟନ୍ତି ।  ରାଧାନାଥ ।

୫୪ ।—ପ୍ରେମର ଜନକକୁ ସମ୍ମୁଖରେ ରଖି ତ୍ୟାଗ କରିବାର ନାମ ତ୍ୟାଗ । ମନେ ମନେ ତ୍ୟାଗ ଭ୍ରାନ୍ତିମୂଳକ ଓ ଅସମ୍ପୂର୍ଣ୍ଣ ।  ହରନାଥ ଠାକୁର

୫୫ ।—ଯେଉଁ କାର୍ଯ୍ୟ କରି ସାରିଲା ପରେ ଅନୁତାପ ଆସେ ତା'ର ନାମ ପାପ ।  ହରନାଥ ଠାକୁର

୬୬—ସଂସ୍ଥାୟୀ ଦୁଃଖ କ୍ଷଣକ ନିମନ୍ତେ ଅପେ ଅନ୍ତର୍ହିତ ହୁଏ । କିନ୍ତୁ ଚିରନ୍ତନ ପ୍ରକାଶ କାର୍ଯ୍ୟ କରିଯାଏ, ଆମ୍ଭମାନଙ୍କର ଅଜ୍ଞାନ ଅନ୍ଧକାର ଦୂର କରିଦିଏ । ଆମ୍ଭେମାନେ ଆପାତ ରମଣୀୟ କ୍ଷଣିକ ବାହ୍ୟ ବସ୍ତୁ ଛାଡ଼ି ଅନ୍ତର ଭିତରେ ନିତ୍ୟ ସତ୍ୟ ଏବଂ ଚିରନ୍ତନଙ୍କ ପ୍ରତି ଦୃଷ୍ଟି ନିକ୍ଷେପ କରିବାକୁ ଚେଷ୍ଟା କରୁଁ ।

କେ ଚନ୍ ଥିଅନ୍

୬୭—କେବଳ ମାତ୍ର ଜୀବନର ଗମ୍ଭୀର ଓ ମହତ୍ ଦୁଃଖରେ ଧୈର୍ଯ୍ୟ ଅଭ୍ୟାସ କଲେ ଚଳିବ ନାହିଁ, ପ୍ରତିଦିନ ଅବଶ୍ୟମ୍ଭାବୀ ତୁଚ୍ଛା ଦୁଃଖ ବିରକ୍ତି ଓ ଅସନ୍ତୋଷରେ ଅଧିକ ଧୈର୍ଯ୍ୟ ଅଭ୍ୟାସ କରିବାକୁ ହେବ ।

ସେଣ୍ଟ. ଫ୍ୟାନ୍‌ସିସ, ଡ. ସେଲ୍‌ସ

୬୮—ଯେଉଁମାନେ ଅନନ୍ତ ପଥର ଯାତ୍ରୀ ସେମାନଙ୍କ ସୁଖ ଦୁଃଖ ପ୍ରିୟ ଅପ୍ରିୟ, ଲାଭ-କ୍ଷତି ଅବକୁ ଭଗିବାନଙ୍କ ଦାନ ବୋଲି ଜ୍ଞାନ କରି ପ୍ରଫୁଲ୍ଲ ଚିତ୍ତରେ ଗ୍ରହଣ କରନ୍ତି-ଅସୁବିଧା ବୈଷମ୍ୟରେ କାତର ହୁଅନ୍ତି ନାହିଁ ।

ଏକେ. ସ୍ୱିଅସ୍. ଟିକାସ୍

୬୯—ଆପଣାକୁ ସାମାନ୍ୟ ଲୋକ ପରି ଜାଣି କାର୍ଯ୍ୟ କରିବାର ଅନେକ ଦିନରେ ଶିକ୍ଷା ହୁଏ । ଆନ ଲୋକେ ଆମ୍ଭଙ୍କୁ ଅଧମ ଜାଣିଲେ ବୋଲି ସେମାନଙ୍କଠାରେ କ୍ରୋଧ ନ କରିବାର ଅନେକ ଦିନରେ ଶିକ୍ଷା ହୁଏ ।

ରାଧାନାଥ

୭୦—ଯେଉଁ ଲୋକ ତୁମ୍ଭଙ୍କୁ ମନ୍ଦ ଲୋକ ବୋଲି ଜାଣନ୍ତି, ତାଙ୍କଠାରେ ଶତ୍ରୁତା ନ କରି ବରଂ ତାଙ୍କର ସେହି ସଂସ୍କାରକୁ ଦୂର କରିବା ନିମନ୍ତେ ଚେଷ୍ଟା କରିବାର ଉଚିତ । ରାଧାନାଥ

୭୧—ସଂସାରର ଗତି ଯାହା ଯେମାନେ ସୂକ୍ଷ୍ମ ରୂପରେ ଜାଣି ଅଛନ୍ତି, ସେମାନଙ୍କର ମନ ଏପରି ଉଦାସୀନ ହୋଇଥାଏ ଯେ ସେମାନେ ପ୍ରଶଂସକକୁ ନିନ୍ଦୁକଠାରୁ ବିଶେଷ କରି ପାରନ୍ତି ନାହିଁ । ରାଧାନାଥ

୭୨—ଏକ ଶ୍ରେଣୀର ଲୋକ ଅଛନ୍ତି, ଯେଉଁମାନେ କେବଳ ଆପଣାର ଚିନ୍ତାରେ ବ୍ୟସ୍ତ—ସେମାନେ କି ମନୁଷ୍ୟ ? ଏପରି ଲୋକ ଅଛନ୍ତି ଯେଉଁମାନେ ପରମାତ୍ମା ଓ ପରର ଅନିଷ୍ଟ ଚିନ୍ତା ଦ୍ୱାରା ଆନନ୍ଦ ଅନୁଭବ କରନ୍ତି, ସେମାନେ ମନୁଷ୍ୟ ? ଏପରି ଲୋକ ଅନେକ ଅଛନ୍ତି—ଯେଉଁମାନେ ପରର ସୁଖ ଦେଖିଲେ ଜଳି ପୋଡ଼ି ମରନ୍ତି, ସେମାନେ କି ମନୁଷ୍ୟ ? ସେହିମାନେ ମନୁଷ୍ୟ-ଯେଉଁମାନେ ପରର ଦୁଃଖକୁ ଆପଣାର ଦୁଃଖ ବୋଲି ମନେ କରନ୍ତି, ଆପଣାର ଦୁଃଖ ଦୂର କରି ପରକୁ ସୁଖୀ କରି ପାରିଲେ ଆନନ୍ଦିତ ହୁଅନ୍ତି । ସଞ୍ଜିବନୀ ପତ୍ରିକା

୭୩—ଯେଉଁ ଲୋକର ଶତ୍ରୁ ବେଶୀ, ତାହାର ସତ୍ ଏବଂ ଭଦ୍ର ହେବା ଆବଶ୍ୟକ, କାରଣ ସତତା ଏବଂ ମହତ୍ତ୍ୱ ନିକଟରେ ଶତ୍ରୁ ମଣ୍ଡଳୀ ନତମସ୍ତକ ହୁଅନ୍ତି ।

ଅଜ୍ଞାତ

୭୪ (କ)—ଫଳର କାମନା ଥିଲେ ପୁଷ୍ପ ନଷ୍ଟ କରିବ ନାହିଁ ।

(ଖ)—ବହୁଦର୍ଶିତାହିଁ ଉତ୍ତମ ଶିକ୍ଷକ,
ଯେ ବହୁଦର୍ଶୀ ନୁହେଁ ସେ ମୂର୍ଖ ।

(ଗ)—ଅନିଶ୍ଚିତ ଆଶା ଅପେକ୍ଷା ନିଶ୍ଚିତ ଆଶାର ସାମାନ୍ୟ ମଧ୍ୟ ଉତ୍ତମ । ଅଜ୍ଞାତ

୭୫—ଯଦି କୌଣସି ଲୋକ ତାହାର ସମସ୍ତ ଅର୍ଥ ମସ୍ତିଷ୍କ କାର୍ଯ୍ୟରେ ନ୍ୟସ୍ତ କରେ ତାହାହେଲେ ସେହି ଅର୍ଥ ଆଉ କେହି ନେଇ ପାରିବ ନାହିଁ । ଜ୍ଞାନାର୍ଜ୍ଜନରେ ନ୍ୟସ୍ତ ଅର୍ଥ ସର୍ବଦା ଅଧିକ ସୁଧ ମଧ୍ୟ ପ୍ରଦାନ କରେ ।

ଆମେରିକାର ଜଣେ ପ୍ରସିଦ୍ଧ ବ୍ୟାବସାୟୀ

୭୬—ଇଟାଲିର କୌଣସି ଯଥେଚ୍ଛାଚାରୀ ଭୂସ୍ୱାମୀର ବଂଶଧର ଅପେକ୍ଷା କୌଣସି ସାଧୁ ଓ ମହତ୍‌ବ୍ୟକ୍ତିଙ୍କର ବଂଶଧର ବୋଲି ପରିଚୟ ଦେବା ମୁଁ ଅଧିକ ଶ୍ଲାଘାର ବିଷୟ ମନେ କରେ । ଆମ୍ଭର ବଂଶ ଗୌରବ ଆମ୍ଭଦ୍ୱାରା ପ୍ରତିଷ୍ଠିତ ହେବ ଏବଂ ସମସ୍ତ ଫରାସୀ ଜାତି ଆମ୍ଭଙ୍କୁ ଉପାଧି ଦ୍ୱାରା ବିଭୂଷିତ କରିବେ ।

ନେପୋଲିୟନ

୭୭—କ୍ଷମାଶୀଳତା ମାନବର ମହାର୍ଦ୍ଦ ଭୂଷଣ ଏବଂ ଜୀବନର ବହୁବିଧ ଅଶାନ୍ତିର ପ୍ରତିଷେଧକ ଓ ଅଶେଷ ମଙ୍ଗଳ-ଜନକ । ଅଜ୍ଞାତ

ପ୍ରତ୍ୟେକରେ ବିଶେଷତ୍ୱ ଅଛି କିଛି ରହି ।

୬୮—ଅନବରତ ହାସ୍ୟ ବା ଉଚ୍ଚହାସ୍ୟ ନିର୍ବୁଦ୍ଧିତା ଏବଂ ନୀଚତାର ପରିଚାୟକ । ଏହି ହାସ୍ୟକୁ ଅଶିକ୍ଷିତ ଏବଂ କ୍ଷୁଦ୍ରଚିତ୍ତ ବ୍ୟକ୍ତିମାନେ ଆମୋଦ ନାମରେ ଅଭିହିତ କରିଥାନ୍ତି । ମୋ ମତରେ ଉଚ୍ଚହାସ୍ୟ ଉନ୍ନତ ହୃଦୟର ପରିଚାୟକ ନୁହେଁ । ଯଥାର୍ଥ କୌତୁକ କୌଣସି ବ୍ୟକ୍ତିକୁ ଉଚ୍ଚଭାବରେ ହସାଇ ପାରେ ନାହିଁ । ପ୍ରକୃତ କୌତୁକ ମନୁଷ୍ୟକୁ ଭିତରେ ଆନନ୍ଦିତ କରେ,—ଶ୍ରୋତାର ମୁଖ ପ୍ରଫୁଲ୍ଲ କରେ ମାତ୍ର । ଭଣ୍ଡପଣିଆ ଉଚ୍ଚହାସ୍ୟର ଉତ୍ତେଜନା କରେ, କିନ୍ତୁ ଭଣ୍ଡତା ସଭ୍ୟସମାଜର ପ୍ରଶଂସନୀୟ ନୁହେ । କୌତୁକ ମଧ୍ୟ ସମସ୍ତ ସମୟରେ ଆବଶ୍ୟକ ସତ୍ୟ, କିନ୍ତୁ ଏପରି କୌତୁକ ଯାହା ମନୁଷ୍ୟର ଉଚ୍ଚହାସ୍ୟର ଉତ୍ତେଜନା କରେ ଏବଂ ବିବିଧ ପ୍ରକାର ମୁଖଭଙ୍ଗୀର ସୃଷ୍ଟିକରେ—ସଭ୍ୟସମାଜରେ ସେପରି ହାସ୍ୟ ପ୍ରଶଂସାର୍ହ ବୋଲି କହି ନ ପାରେଁ ।

ଲର୍ଡ ଚେଷ୍ଟାର ଫିଲଡ୍

୬୯—ପୁତ୍ରର ଦୋଷ ଗୁଣ ସମ୍ପୂର୍ଣ୍ଣରୂପେ ମାତାଠାରେ ନିର୍ଭର କରେ । ମୋର ମାତା ଉଚ୍ଚହୃଦୟା ହୋଇ ନ ଥିଲେ ମୁଁ କେବେହେଁ ଏତେ ଉନ୍ନତିଲାଭ କରି ପାରି ନ ଥାନ୍ତି ।

ନେପୋଲିୟନ

୭୦—କଥାବାର୍ତ୍ତା ଯୌଥ କାରବାର ପରି ସାଧାରଣର ସମ୍ପତ୍ତି । ଏକାକୀ କହି ଅନ୍ୟକୁ କହିବାକୁ ଅବକାଶ ନ ଦେବା ଏକପ୍ରକାର ପ୍ରତାରଣା ଏବଂ ନୀଚତାର ପରିଚାୟକ ।

ଲର୍ଡ ଚେଷ୍ଟାର ଫିଲ୍ଡ

୭୧—ଜୀବନରେ ଯେ ସବୁଠାରୁ ପ୍ରିୟ, ବେଦନା ଯେବେ ଠିକ୍ ତାହା ନିକଟରୁ ମିଳେ, ତେବେ ସେହି ବେଦନାର ତୀବ୍ରତା ଯେ କେତେ ଭୟଙ୍କର, ତାହା ବୁଝାଇ ଦେବାର ପ୍ରୟାସ ଯେ ବେଦନା ପାଇଥାଏ ତାହାର ଆଉ ଦୀ ରହେନାହିଁ ।

ଶଶିଭୂଷଣ ।

୭୨—ଜଡ଼ ନାଳକ ପଦାର୍ଥକୁ ସାଧାରଣ ମନୁଷ୍ୟ ଫେରିବାକୁ ଇଚ୍ଛା କଲେହେଁ ଫେରି ପାରେ ନାହିଁ । ଯେ ଫେରିବାକୁ ସମର୍ଥ ହୋଇଅଛି, ସେ ଅନେକ ଗୁଡ଼ିଏ ଭ୍ରମ ପ୍ରମାଦରୁ ରକ୍ଷା ପାଇଅଛି ।

ଶଶିଭୂଷଣ ।

୬୭—ଯେ ପରପାଇଁ ସର୍ବସ୍ୱ ତ୍ୟାଗ କରିପାରେ—ଇହଲୋକ, ପରଲୋକ ସକଳ ଆଶାରେ ଜଳାଞ୍ଜଳି ଦେଇପାରେ—ଜଗତର ମଙ୍ଗଳ ନିମନ୍ତେ, ଧ୍ୟେୟ ସତ୍ୟର ପୂଜା ନିମନ୍ତେ ନିଜର ଜୀବନକୁ ଉତ୍ସର୍ଗ କରିପାରେ, ସେହି ଏକା ପ୍ରକୃତ ତ୍ୟାଗୀ ।

ଅମର ବାଣୀ

## ରତ୍ନଚୟନ ।

| ପ୍ରଶ୍ନ | | | ଉତ୍ତର |
|---|---|---|---|
| ସାହସୀ କିଏ ? | ... | ... | ଯେ ସତ୍ୟବାଦୀ । |
| ବାଳକ କିଏ ? | ... | ... | ଯେ ପ୍ରେମିକ । |
| ସ୍ୱାଧୀନ କିଏ ? | ... | ... | ନିଷ୍କାମ ବ୍ୟକ୍ତି । |
| ଭୀରୁ କିଏ ? | ... | ... | ସ୍ୱାର୍ଥପର ବ୍ୟକ୍ତି । |
| ଜୟ କାହାର ? | ... | ... | ପ୍ରେମର । |
| ଅହଂକାରୀ କିଏ ? | ... | ... | ଯେ ଫଳତ୍ୟାଗୀ । |
| ନିଶ୍ଚିନ୍ତ କିଏ ? | ... | ... | ଯେ ସୂକ୍ଷ୍ମଦର୍ଶୀ । |
| ବାଳକ ସୁନ୍ଦର କାହିଁକି ? | | ... | ସରଳ ବୋଲି । |
| ଯୁବକ ସୁନ୍ଦର କାହିଁକି ? | | ... | ଉତ୍ସାହୀ ବୋଲି । |
| କୁସୁମ ଠାରୁ କ'ଣ ସୁନ୍ଦର ? | | ... | ପ୍ରଫୁଲ୍ଲତା । |
| ପାଷାଣ ଠାରୁ ଦୃଢ଼ କ'ଣ ? | | ... | ପ୍ରତିଜ୍ଞା । |
| କାହାର ଅନ୍ତ ନାହିଁ ? | | ... | ସର୍ବସ୍ୱତ୍ୟାଗର । |
| ଦୀନବନ୍ଧୁ ନାହିଁ କାହାର ? | | ... | ଅଳସର । |
| କିଏ ସବୁ ଜାଣେ ? | ... | ... | ମିଥ୍ୟାବାଦୀ । |
| କାହାର ସ୍ୱଜନଙ୍କର ପତନ ନାହିଁ ? | | ... | ନ୍ୟାୟର । |
| ସଂସାରରେ ନିଜର କିଏ ? | | | ଯେତେବେଳେ ଯାର ମନ ରହିବ, ସେତେବେଳେ ସେ ନିଜର । |
| ବିଶ୍ୱର ନମସ୍ୟ କିଏ ? | | ... | ଅସ୍ତ୍ରତ୍ୟାଗୀ । |
| ଅମୃତ ପରି ପ୍ରଖର ତେଜ କାହାର ? | | | ସତ୍ୟର । |
| ନରକ ଭୋଗ କ'ଣ ? | | ... | ଦାସତ୍ୱ । |
| ସର୍ବନାଶର ମୂଳ କିଏ ? | | ... | ଅଧୀନତା । |
| ପୌରୁଷ ବର୍ଦ୍ଧକ କିଏ ? | | ... | ନିଜର ଶକ୍ତି । |
| ସୁଖରେ ଶୟନ କରେ କିଏ ? | | ... | ଧାର୍ମିକ । |
| ସୁପ୍ରଭାତ କାହାର ? | ... | ... | ଶ୍ରମଶୀଳର । |
| ବୃଦ୍ଧବୟସରେ ବିଶ୍ରାମ ଶଯ୍ୟା କିଏ ? | | | ମିତବ୍ୟୟିତା । |
| ସମ୍ମାନ ନାହିଁ କାହାର ? | | ... | ଭିକ୍ଷୁକର । |
| ବଜ୍ର କିଏ ? | ... | ... | ସ୍ୱଜନକୋପ । |

ଉତ୍ତମ ସୁଖ କ'ଣ ? } ଅନ୍ୟକୁ ଭଲ ଦେବା ଓ ଅପରର ଭଲ କରିବା ।
କିଏ ସମସ୍ତଙ୍କ ଚକ୍ଷୁକୁ ଅନ୍ଧ କରିଦିଏ ? ... ସ୍ୱାର୍ଥ ।
ଶୂର କିଏ ? ... ... ଇନ୍ଦ୍ରିୟଜୟୀ ।
ଅଶୁଭ କଅଣ ? ... ... ମୂର୍ଖାମୀ ।
ବିଜ୍ୟ କିଏ ? ... ... ସତପାଳିତ ଅଙ୍ଗ ।
ପ୍ରିୟତମା କିଏ ? ... କୁଳଧର୍ମରକ୍ଷିଣୀ ।
ଶ୍ରେଷ୍ଠ ଧନ କଅଣ ? ... ବିଦ୍ୟା ।
ସୁଖ କଅଣ ? ... ଅପ୍ରବାସପରତା ।
ଲାଭ କଅଣ ? ... ... ଗୁଣିଙ୍କ ସହବାସ ।
ହାନି କଅଣ ? ... ... ବିନୟଧ୍ୱଂସ ।
ନିପୁଣତା କଅଣ ? ... ... ଧର୍ମକର୍ମରେ ଆସକ୍ତି ।
ଉତ୍କୃଷ୍ଟ ବୃତ୍ତି କଅଣ ? ... ସେବା ।
ସର୍ବଦା ଭୟ କାହାର ? ... ଅଳ୍ପଭିତ ବ୍ୟକ୍ତିମାନଙ୍କର ।
ଅବଳା ମଧ୍ୟରେ ଦୁଃଖିନୀ କିଏ ? ... ବିଧବା ।
ମହତ୍ ବ୍ୟକ୍ତିଙ୍କର ଦୁଃଖ କଅଣ ? ମାନ ଏବଂ ପୂଜାର ଅଭାବ ।
ଜ୍ଞାନ କଅଣ ? ... ଭଗବାନଙ୍କ ଦେହରେ ନିଷ୍ଠାବୁଦ୍ଧି ।
ଦମ କଅଣ ? ... ... ଇନ୍ଦ୍ରିୟ ସଂଯମ ।
ଧୃତି କଅଣ ? ... ... ଜିହ୍ୱା ଉପସ୍ଥ ଓ ଜୟ ।
ତିତିକ୍ଷା କଅଣ ? ... ... ସର୍ବ ସୁଖରେ ଶାନ୍ତି ।
ଦାନ କଅଣ ? ... ... ପରକୁ ଦଣ୍ଡତ୍ୟାଗ ।
ତପ କଅଣ ? ... ... ସର୍ବକାମ ବର୍ଜନ ।
ଶୌର୍ଯ୍ୟ କଅଣ ? ... ... ନିଜ ସ୍ୱଭାବ ଜୟ ।
ସତ୍ୟ କଅଣ ? ... ସର୍ବଭୂତରେ ସମାନ ଦୃଷ୍ଟି ।
ଋତ କଅଣ ? ... ପ୍ରିୟ ପୁଣି ସତ୍ୟ ଯାହା ।
ଶୌଚ କଅଣ ? ... ସକଳ କର୍ମଫଳ ତ୍ୟାଗ ।
ତ୍ୟାଗ କଅଣ ? ... ସଂସାରରେ ସନ୍ନ୍ୟାସ ଲକ୍ଷଣ ।
ଧନାଢ୍ୟ କିଏ ? ... ଯେ ସର୍ବଦା ଇଷ୍ଟଧର୍ମ ପାଳନ କରନ୍ତି ।
ଦକ୍ଷିଣା କଅଣ ? ... ... ଜ୍ଞାନ ଉପଦେଶ ।
ବଳ କଅଣ ? ... ସୁଦୃଢ଼ରେ ପବନ ଧାରଣ ।
ଲାଭ କଅଣ ? ... ଭଗବାନଙ୍କ ଠାରେ ଭକ୍ତି ।
ବିଦ୍ୟା କଅଣ ? ... ପ୍ରାଣି ବିଷୟରେ ଭେଦବୁଦ୍ଧି ନ କରିବା ।
ଲଜ୍ଜା କଅଣ ? ... ନିନ୍ଦିତ କର୍ମକୁ ଡରିବା ।
ମହାସୁଖୀ କିଏ ? ଯେ ଦୁଃଖ ସୁଖକୁ ସମାନ ମନେ କରନ୍ତି ।
ମହାଦୁଃଖୀ କିଏ ? ... ଯେ ସର୍ବଦା କାମଭୋଗରେ ଲୁବ୍ଧ ।
ପଣ୍ଡିତ କିଏ ? ... ଯେ ଅସାର ବନ୍ଧ ମୋକ୍ଷ ଜାଣନ୍ତି ।

ମୂର୍ଖ କିଏ ? } ଦେହ, ଗେହ, ଇନ୍ଦ୍ର ଘର ଯୋଗୁଁ ଯେ ଅହଂକାର କରନ୍ତି ।
ସ୍ୱର୍ଗ କଅଣ ? ... ... ସତ୍ତ୍ୱଗୁଣ ଉଦୟ ।
ନରକ କଅଣ ? ... ... ତମୋଗୁଣ ଉଦୟ ।
ଘର କଅଣ ? ... ... ମନୁଷ୍ୟ କଳେବର ।
ଧନୀ କିଏ ? ... ଭଗବାନଙ୍କ ସର୍ବାଙ୍ଗରେ ଯାର ମନ ।
ଦରିଦ୍ର କିଏ ? ... ଭଗବାନଙ୍କ ଭାବରେ ଯାର ଚିତ୍ତ ନାହିଁ ।
କୃପଣ କିଏ ? ... ଯେ ଇନ୍ଦ୍ରିୟ ଜୟ କରନ୍ତି ନାହିଁ ।
ସଂସାରର ମୂଳ କଣ ? ... ... ଚିନ୍ତା ।
ଲଘୁତାର ମୂଳ କଣ ? ... ଯାଚ୍ଞା ।
ମହତ୍ତ୍ୱର ମୂଳ କଣ ? ... ଅଯାଚ୍ଞା ।
ଦିବ୍ୟବ୍ରତ କଣ ? ... ସମସ୍ତଙ୍କ ନିକଟରେ ଦୀନଭାବ ପ୍ରକାଶ ।
ଧନ୍ୟ କିଏ ? ... ... ପରୋପକାରୀ ।
ପରମ ତୀର୍ଥ କିଏ ? ... ନିଜର ବିଶୁଦ୍ଧ ମନ ।
ମୃତ୍ୟୁ କିଏ ? ... ... ନିଜର ଅପଯଶ ।
ଅତୃପ୍ତ କିଏ ? ... ... ଆଶା ।
ଦେବାକୁ ଉପଯୁକ୍ତ କ'ଣ ? ... ଅଭୟ ।
ମୁକ୍ତି କଣ ? ... ... ବିଷୟର ବିରାଗ ।
ଦୁଃଖର କାରଣ କଣ ? ... ମମତା ।
ପରମ ସୁହୃଦ୍ କିଏ ? ... ବିପଦ୍ କାଳରେ ସାହାଯ୍ୟଦାତା ।
ମିଛ ପର ବିଷ କିଏ ? ... ପୁତ୍ର, କନ୍ୟା, ଜାୟା ପ୍ରଭୃତି ।
ପାପୀର କର୍ତ୍ତବ୍ୟ କଣ ? ... ପତିତପାବନ ବିଶ୍ୱନାଥଙ୍କ ଆରାଧନା ।
ଜନନୀ ପରି ସୁଖଦାୟିନୀ କିଏ ? ... ବିଦ୍ୟା ।
ଅତିଶୟ ଦୁଃଖ କଣ ? ... ନିଜର ମୂର୍ଖତା ।
କାହାର ସଙ୍ଗ କରିବା ଓ କାହା ସହିତ ବାସ କରିବା ଅକର୍ତ୍ତବ୍ୟ } ମୂର୍ଖ, ପାପୀ ଓ ଖଳସହିତ ।
କିଏ ଜଗତକୁ ଜୟ କରିଛି ? ... ଯେ ମନକୁ ଜୟ କରିଛି ।
ସର୍ବଦା କଣ ଶୁଣିବା ଉଚିତ ? ... } ଗୁରୁ ଉପଦେଶ ଓ ବେଦବାକ୍ୟ ।
ଧନୀ କିଏ ? ... ... ଯେ ସର୍ବଦା ସନ୍ତୁଷ୍ଟଚିତ୍ତ ।
ଦରିଦ୍ର କିଏ ? ... ଯାହାର ବଳବତୀ ଆଶା ଅଛି ।
ପ୍ରାଣୀମାନଙ୍କର ହିତ କଣ ? ... ସତ୍ୟ ।
ଉତ୍ତମ କର୍ମ କଣ ? ... ଯହିଁରେ ଶ୍ରୀକୃଷ୍ଣ ପ୍ରୀତ ହୁଅନ୍ତି ।
ପଶୁ ଅପେକ୍ଷା ମହାପଶୁ କିଏ ? } ଯାହାର ଅନୁଷ୍ଠାନ ନାହିଁ ଏବଂ ଯେ ପ୍ରାଚୀନ ଶାସ୍ତ୍ରାନୁସାରେ ଧର୍ମାନୁଷ୍ଠାନ କରେ ନାହିଁ ।

ସହେ ଯେହ୍ନେ ଆଚ୍ଛାଦିତ ଲକ୍ଷ୍ମୀନ ଗଞ୍ଜନ । ସେହ୍ନେ ଏକା ଦୁର୍ଭିକ୍ଷେ ସର୍ବାଙ୍ଗେ ଭଞ୍ଜନ ।

### ମହାମାନ୍ୟ

# ସମ୍ରାଟ୍ ପଞ୍ଚମଜର୍ଜ୍ଜଙ୍କର

## ରଜତ ଜୁବିଲୀ ଉତ୍ସବ ।

ମହାମହିମ ଭାରତସମ୍ରାଟ୍ ପଞ୍ଚମଜର୍ଜ୍ଜଙ୍କ ପଞ୍ଚବିଂଶ ବର୍ଷ ରାଜତ୍ୱ ସମାପ୍ତିରେ ରାଜଭକ୍ତିର ନିଦର୍ଶନ ସ୍ୱରୂପ ବ୍ରିଟିଶ ସାମ୍ରାଜ୍ୟର ସବୁଠି ରଜତ ଜୁବିଲୀ ମହୋତ୍ସବ ପ୍ରତିପାଳିତ ହୋଇଅଛି । ଏହା ପୃଥିବୀର ଇତିହାସରେ ଗୋଟିଏ ବିଶେଷ ଚିରସ୍ମରଣୀୟ ଘଟଣା ।

ସମ୍ରାଟ୍ ପଞ୍ଚମଜର୍ଜ୍ଜ ମହାରାଣୀ ଭିକ୍ଟୋରିଆଙ୍କର ପୌତ୍ର, ଏବଂ ସପ୍ତମ ଏଡ୍‌ୱାର୍ଡ଼ଙ୍କର ଦ୍ୱିତୀୟ ପୁତ୍ର ଅଟନ୍ତି । ଏହି ମହାପୁରୁଷ ୧୮୬୫ ମସିହା ଜୁନ ମାସ ୩ ତାରିଖ ଦିନ ଭୂମିଷ୍ଠ ହୋଇଥିଲେ ।

ସେ ପ୍ରଥମେ ଓ୍ୱେଲିଙ୍ଗଟନ କଲେଜରେ ଶିକ୍ଷାଗ୍ରହଣ କରିଥିଲେ । ତତ୍ପରେ ସେ ବ୍ରିଟାନିଆରେ ନୌବିଦ୍ୟା ଶିକ୍ଷା କଲେ । ତାହାଙ୍କର ବାଲ୍ୟାବସ୍ଥା କେତେ ଆମୋଦ ପ୍ରମୋଦରେ କଟି ନ ଥିଲା ବରଂ ଶୃଙ୍ଖଳାବଦ୍ଧ ଥିଲା ।

ସପ୍ତମ ଏଡ୍‌ୱାର୍ଡ଼ଙ୍କର ପ୍ରଥମପୁତ୍ର ଅସମୟରେ ପ୍ରାଣତ୍ୟାଗ କରିବାରୁ ଜର୍ଜ ପିତାଙ୍କ ସିଂହାସନର ଉତ୍ତରାଧିକାରୀ ହେଲେ । ସେ ଯୁବରାଜ ହୋଇ ୧୯୦୫ ରେ ଭାରତବର୍ଷକୁ ଶୁଭାଗମନ କରିଥିଲେ । ଭାରତର କି ରାଜା କି ପ୍ରଜା ସମସ୍ତେ ତାହାଙ୍କୁ ଆନନ୍ଦ ଏବଂ ଭକ୍ତିପୂର୍ଣ୍ଣ ଚିତ୍ତରେ ଗ୍ରହଣ କରିଥିଲେ । ରାଜାଧିରାଜ ସପ୍ତମ ଏଡ୍‌ୱାର୍ଡ଼ଙ୍କ ସ୍ୱର୍ଗାରୋହଣ ପରେ ଜର୍ଜ୍ଜ ୧୯୧୦ ମସିହା ମେ ମାସ ୬ ତାରିଖରେ ପିତୃସିଂହାସନରେ ଅଭିଷିକ୍ତ ହେଲେ । ଯେଉଁ ଦିନ ଭାରତ ସମ୍ରାଟ୍ ପଞ୍ଚମଜର୍ଜ୍ଜ ଓ ସମ୍ରାଜ୍ଞୀ ମେରୀ ଦିଲ୍ଲୀ ସିଂହାସନ ଆରୋହଣ କଲେ ସେ ଦିନ ଭାରତବାସୀଙ୍କ ପ୍ରାଣରେ ଯେଉଁ ଅପୂର୍ବ ଆନନ୍ଦ ଅନୁଭୂତ ହୋଇଥିଲା ତାହା ବର୍ଣ୍ଣନାତୀତ ଏବଂ ପ୍ରକୃତ ଆନନ୍ଦର ନିଦର୍ଶନ । ସେ ସନ ୧୯୧୧ ମସିହା ଡିସେମ୍ବର ତା ୧୨ ରିଖ ଦିନ ଦିଲ୍ଲୀଠାରେ ଗୋଟିଏ ଦରବାର କରିଥିଲେ । ସେ ଦିନ ଭାରତର ପ୍ରତ୍ୟେକ ସ୍କୁଲ, କଲେଜ, ଅଫିସ ପ୍ରଭୃତି ବନ୍ଦ ଥିଲା । ଭାରତରେ ଆବାଳବୃଦ୍ଧବନିତା ବିଶେଷ ଆନନ୍ଦ ଉପଭୋଗ କରିଥିଲେ । ସମ୍ରାଟ୍ ଓ ସାମ୍ରାଜ୍ଞୀ ଅନେକ ବଡ଼ ବଡ଼ ସହର ଯଥା ବମ୍ବେଇ, କଲିକତା, ଆଗ୍ରା ଏତଦ୍‌ବ୍ୟତୀତ ଦେଶୀୟରାଜ୍ୟ ବରୋଦା, ଆଜମୀର, ଜୟପୁର ପ୍ରଭୃତି ଭ୍ରମଣ କରିଥିଲେ । ତାହାଙ୍କର ଏହି ଶୁଭାଗମନ ଚିରସ୍ମରଣୀୟ, ଯେହେତୁ, ଭାରତବର୍ଷର ରାଜଧାନୀ କଲିକତା ପରିବର୍ତ୍ତେ ଦିଲ୍ଲୀ ହୋଇଅଛି । ଦରବାରଦିନଠି ମନେ ରଖିବା ଲାଗି ଅଦ୍ୟାବଧି ସ୍କୁଲ କଲେଜ ପ୍ରଭୃତି ବନ୍ଦ ହେଉଅଛି । ଏଦିନ ଛାତ୍ରମାନେ ସମ୍ରାଟ୍ ଓ ସାମ୍ରାଜ୍ଞୀଙ୍କ ମଙ୍ଗଳକାମନା କରି ଭଗବାନଙ୍କ ନିକଟରେ ପ୍ରାର୍ଥନା କରନ୍ତି । ରାଜା ରାଜ୍ୟର ପାଳକ ଓ ରକ୍ଷକ । ରାଜା ମାନବ ଦେହଧାରୀ ଦେବତା । "ମହତୀ ଦେବତା ହ୍ୟେଷା ନରରୂପେଣ ତିଷ୍ଠତି" । ଏହି ଉକ୍ତି ଅକ୍ଷରେ ଅକ୍ଷରେ ସତ୍ୟ । ରାଜଶକ୍ତିର ଉପାଦେୟତା ଓ ଆବଶ୍ୟକତା ଯୁଗେ ଯୁଗେ ଏବଂ କାଳେ କାଳେ ପରୀକ୍ଷିତ ଓ ଅନୁଭୂତ ହୋଇ ଆସୁଅଛି । ଏକସମୟରେ ଏହି ଦେଶରେ ରାଜଶକ୍ତିର ଅଭାବରୁ ରାଜ୍ୟ ଧ୍ୱଂସର ଅବନତିର କବଳରେ ପଡ଼ିଥିଲା । ଇତିହାସରୁ ଜଣାଯାଏ ମୁସଲମାନ ଓ ମରହଟ୍ଟାମାନଙ୍କ ସମୟରେ ଦେଶର ଅବସ୍ଥା କିପରି ଥିଲା । ସେ ସମୟରେ ଘୋରଅରାଜକତା ବିରାଜିତ ଥିଲା । ଲୋକମାନେ ବଡ଼ ଅଶାନ୍ତିରେ କାଳାତିପାତ କରୁଥିଲେ । ଧନ ସମ୍ପଦ ବିପଦପୂର୍ଣ୍ଣ ଥିଲା । ଆଇନକାନୁନ ସେତେବେଳେ ଜଣା ନ ଥିଲା । ଘୋରଅରାଜକତା ବିଶୃଙ୍ଖଳତା ରାଜତ୍ୱ କରୁଥିଲା । ଏହି ସବୁ ଅତ୍ୟାଚାରରୁ ଆମ୍ଭମାନଙ୍କୁ ରକ୍ଷା କରିବାପାଇଁ

କଥା କଥିକେ ମୋ ଛାତ୍ର ବହୁ ସୁନ୍ଦରଦର୍ପ ।

ବମ୍ବାଇ ପର୍ଯ୍ୟନ୍ତ ଇଉରୋପୀୟମାନଙ୍କୁ ଏଠାରେ ଶାସନ କରିବା ପାଇଁ ଆଣିଲେ । ସେମାନେ ରାଜ୍ୟର ଭାର ଗ୍ରହଣ କରି ନ ଥିଲେ ଭାରତବର୍ଷର ଇତିହାସ ଅନ୍ୟ ଆକାର ଧାରଣ କରିଥାନ୍ତା । ଆଜ କିନ୍ତୁ ସେ ଦିନ ନାହିଁ । ଆଜ ଦେଶେ ଦେଶେ, ଘରେ ଘରେ ଶାନ୍ତି ବିରାଜିତ । ଆଜ ଭାରତବାସୀ ମହା ସୁଖରେ କାଳାତିପାତ କରୁଅଛନ୍ତି । ଆଜ ଭାରତର ନାନାସ୍ଥଳରେ ଉନ୍ନତିର ସୂଚନା ଦେଖାଯାଉଅଛି । କେବଳ ଏତିକି ନୁହେଁ, ଅଦ୍ଭୁତ ବୃଟିଶଜାତୀୟ ବୈଜ୍ଞାନିକ ପ୍ରଭାବ ଦେଶ ବିଦେଶକୁ ଚମତ୍କୃତ କରୁଅଛି କହିଲେ ଅତ୍ୟୁକ୍ତି ହେବ ନାହିଁ । ଏହି ଉନ୍ନତିର ମୂଳରେ ସେହି ମହାମାନବ ସମ୍ରାଟ୍ ପଞ୍ଚମଜର୍ଜ ବିଦ୍ୟମାନ ।

ଆଜ କୌଣସି କ୍ଷେତ୍ରରେ ଭେଦାଭେଦ ନାହିଁ, ଘୃଣା ବା ଦ୍ୱେଷର ଚିହ୍ନ ନାହିଁ । ଆଜ ସମସ୍ତେ ସମାନ ସମସ୍ତେ ମିତ୍ର । ମୈତ୍ରୀ, ପ୍ରୀତି ଓ ସାମ୍ୟନୀତି ବୃଟିଶ ଶାସନର ମୂଳମନ୍ତ୍ର । ଆଜ କେହି ନୀଚ ବୋଲି ଅନାଦୃତ ନୁହେ ବା ଦୁର୍ବଳ ବୋଲି ନ୍ୟାଯ୍ୟ ଅଧିକାରରୁ ବଞ୍ଚିତ ନୁହେଁ । ଏହାହିଁ ବୃଟିଶ ରାଜତନ୍ତ୍ରର ମହାଦାନ । ବୃଟିଶ ରାଜତ୍ୱ ଆରମ୍ଭରୁ ଏହି ଉଦାର ନୀତି ପ୍ରଚଳିତ ହୋଇ ଆସୁଅଛି ।

ବିଗତ ଇଉରୋପୀୟ ମହା ସମରର ଭୁମୁଳ ଆନ୍ଦୋଳନରେ ଇଉରୋପୀୟ ଶକ୍ତିଗଣ ବ୍ୟାପୃତ ଥିଲା ବେଳେ ଭାରତବର୍ଷରେ ଶାନ୍ତି ସମ୍ପୂର୍ଣ୍ଣରୂପେ ବିରାଜିତ ଥିଲା । ଏହି ମହାଯୁଦ୍ଧର ଭୟାବହ ସମ୍ବାଦ ଶ୍ରବଣ କରି ଭାରତବାସୀଙ୍କ ହୃଦୟରେ ମହାବ୍ୟଥା ଜାତ ହେଉଥିଲା ଏବଂ ସେ ଆପଣା ଶକ୍ତି ଅନୁସାରେ ସମ୍ରାଟଙ୍କୁ ଯଥୋଚିତ ରାଜଭକ୍ତି ପ୍ରଦର୍ଶାଇଥିଲେ । ପରିଶେଷରେ ନ୍ୟାୟପରାୟଣ ବୃଟିଶ ଜାତି ବିଜୟ ନିଶାଣ ଉଡ଼ାଇ ଆସିଲେ ଏବଂ ଭାରତବାସୀ ମହା ଆନନ୍ଦିତ ହେଲେ ।

ସମ୍ରାଟ୍ ପଞ୍ଚମଜର୍ଜଙ୍କ ଶାସନ ସମୟ ଆବିଷ୍କାରର ସମୟ ବା Invention Period ବୋଲି କଥିତ ହୋଇପାରେ । ଏହି ଗତ ୨୫ ବର୍ଷ ମଧ୍ୟରେ ନାନାପ୍ରକାର ଯନ୍ତ୍ର, କଳକବ୍ଜା ପ୍ରଭୃତି ଆବିଷ୍କୃତ ହୋଇଅଛି । ଏତଦ୍‌ବ୍ୟତୀତ ଉଡ଼ାଜାହାଜ, ବେତାର, ଟେଲି ପ୍ରଭୃତି ହୋଇଅଛି । ବୃଟିଶ ରାଜତ୍ୱରେ ରେଲ୍‌ଷ୍ଟେସନ, ଟେଲିଗ୍ରାଫ, ଷ୍ଟିମର, ରାଜମାର୍ଗ, ପୟଃପ୍ରଣାଳୀ ଖନନ ଏବଂ ପୋଷ୍ଟଅଫିସ ସ୍ଥାପନ ଦ୍ୱାରା ବହୁ ସୁବିଧା ହୋଇଅଛି । ସ୍ଥାନେ ସ୍ଥାନେ ଦାତବ୍ୟ ଚିକିତ୍ସାଳୟମାନ ସ୍ଥାପିତ ହୋଇ ଜନସାଧାରଣଙ୍କ ଉପକାରର ସୁବିଧା ହୋଇଅଛି, ବିଶେଷରେ ନଗରର ସ୍ୱାସ୍ଥ୍ୟବିଧାନ ପାଇଁ ଯତ୍ନ କରାଯାଉଅଛି ।

ଗ୍ରାମ ଓ ନଗରମାନଙ୍କରେ ବିଦ୍ୟାଳୟମାନ ସ୍ଥାପିତ ହେବାରୁ ଜାତିଧର୍ମ ନିର୍ବିଶେଷରେ ସମସ୍ତେ ବିଦ୍ୟାଲାଭ କରିପାରୁଅଛନ୍ତି । ମୁଦ୍ରାଯନ୍ତ୍ରର ସୁଲଭତା ଓ ସ୍ୱାଧୀନତା ଯୋଗୁଁ ପୁସ୍ତକମାନ ପ୍ରକାଶିତ ହୋଇ ସୁଲଭ ହେଉଅଛି । ସମ୍ବାଦପତ୍ର ପ୍ରଚାର ଦ୍ୱାରା ଲୋକମାନେ ସୁଦୂରବର୍ତ୍ତୀ ସ୍ଥାନର ସମ୍ବାଦ ଘରେ ବସି ଅବଗତ ହେଉଅଛନ୍ତି ।

ଇଂରାଜୀଭାଷା ଆମ୍ଭମାନଙ୍କର ରାଜଭାଷା, ଏହା ଦ୍ୱାରା ଆମ୍ଭେମାନେ ପାଶ୍ଚାତ୍ୟଦର୍ଶନ ଓ ବିଜ୍ଞାନରେ ବ୍ୟୁତ୍ପନ୍ନ ହେବାକୁ ସମର୍ଥ ହୋଇଅଛୁଁ । ଭାରତବର୍ଷ ନାନାଜାତି ଓ ନାନାଭାଷା ପ୍ରଚଳନର ଦେଶ । ବର୍ତ୍ତମାନ କେବଳ ଇଂରାଜୀ ଭାଷା ଦ୍ୱାରା ଭିନ୍ନ ଭିନ୍ନ ପ୍ରଦେଶର ଅଧିବାସୀଙ୍କ ସହିତ ଆଳାପ ପରିଚୟ କରିବାର ସୁଯୋଗ ସୁବିଧା ପାଉଅଛୁଁ । ପୁଣି ଏତଦ୍ୱାରା ପରସ୍ପର ମଧ୍ୟରେ ମିତ୍ରତା ବନ୍ଧନ ଦୃଢ଼ୀଭୂତ ହେଉଅଛି । ପ୍ରତ୍ୟେକ ଜିଲ୍ଲା ଓ ପ୍ରଦେଶରେ ଦେଓ୍ୟାନୀ ଏବଂ ଫୌଜଦାରୀ ବିଚାରାଳୟମାନ ସ୍ଥାପିତ ହୋଇ ଦେଶର ଶାନ୍ତିରକ୍ଷା କରୁଅଛି । ଅପିଲ କରିବା ପାଇଁ ହାଇକୋର୍ଟ ମଧ୍ୟ ଅଛି । ଦେଶୀୟ ଲୋକମାନେ ଉଚ୍ଚ ରାଜକାର୍ଯ୍ୟରେ ନିଯୁକ୍ତ ହେଉଅଛନ୍ତି ।

ଶାନ୍ତି ଦେଶର ମେରୁଦଣ୍ଡ । ତୈମୁରଲଙ୍ଗ, ନାଦିରସାହ ପ୍ରଭୃତି ବିଦେଶୀୟ ଶତ୍ରୁମାନଙ୍କ ଆକ୍ରମଣ ଓ ଲୁଣ୍ଠନ ଏବଂ ପାର୍ବତୀୟ ଜାତିମାନଙ୍କ ଉପଦ୍ରବ ଆଜକାଲି ଆଉ ନାହିଁ । ପ୍ଲେଗ, ଓଲାଉଠା ଭୟରୁ ଦେଶ ଅନେକ ପରିମାଣରେ ରକ୍ଷା ଲାଭ କରିଥିବାରୁ ଆମ୍ଭମାନଙ୍କର ଧନ, ପ୍ରାଣ ବର୍ତ୍ତମାନ ନିରାପଦ ।

ଭାରତବର୍ଷରେ କେବେହେଁ ଏପରି ଶାନ୍ତି ଦେଖିବାକୁ ମିଳି ଯାଇ ନ ଥିଲା । ୧୯୩୫ ମସିହା ଜାନୁୟାରୀ ୧୭ ତାରିଖ ଦିନ ଏହି ଉତ୍ସବର ଘୋଷଣା ସବୁ ଭାରତବାସୀଙ୍କ ନିକଟରେ



ସମ୍ପାଦକ ଶ୍ରୀଚନ୍ଦ୍ର ପଣ୍ଡା, ବି. ଏ.



ପଣ୍ଡିତ ଲୂକମଣି ଦାସ କାବ୍ୟତୀର୍ଥ



ଶ୍ରୀଯୁକ୍ତ ଗୋପାଳଚରଣ ପଟ୍ଟନାୟକ, ବି. ଏ., ବି. ଏଲ୍.,
ମୟୂରଭଞ୍ଜ ଷ୍ଟେଟ୍ ସ୍କୁଲ୍'ର ଶିଳ୍ପ ଓ ପ୍ରାଥମିକ ଶିକ୍ଷା
[illegible] ଡାଇରେକ୍ଟର୍



ଅଧ୍ୟାପକ ଶ୍ରୀଯୁକ୍ତ ଅର୍ତ୍ତବଲ୍ଲଭ ମହାନ୍ତି, ଏମ୍. ଏ.